**ଶେଷସ୍ତମ୍ଭ**
ସୁରେନ୍ଦ୍ର ମହାନ୍ତି

**ପ୍ରକାଶକ: ଆମ ଓଡ଼ିଶା**
୪ ଆର୍‌୧/୨, ଇଉନିଟ୍-୩
ଭୁବନେଶ୍ୱର-୭୫୧୦୦୧

ମୁଦ୍ରଣ: ଡୁଡୁଲି ପ୍ରୋସେସ୍ ଆଣ୍ଡ ଅଫ୍‌ସେଟ୍
ବାପୁଜୀନଗର, ଭୁବନେଶ୍ୱର - ୭୫୧୦୦୯

ପ୍ରଥମ ସଂସ୍କରଣ: ଡିସେମ୍ବର, ୨୦୧୭


ପ୍ରଚ୍ଛଦ: ଶଶିକାନ୍ତ ରାଉତ

ମୂଲ୍ୟ: ଟ. ୫୦୦/-

**Shesastamva**
Surendra Mohanty

Publisher: Aama Odisha,
4R 1/2, Unit-3, Bhubaneswar-1
e-mail: aamaodisha@gmail.com

Printer: Duduly Process & Offset
Bapuji Nagar, Bhubaneswar-751009

First Print: November, 2017



Cover: Shasikanta Rout

Price: Rs. 500/-

ISBN: 978-93-84213-19-0

# ଦୁଇପଦ

'ସମ୍ବାଦ'ରେ ସୁରେନ୍ଦ୍ର ମହାନ୍ତି ଲେଖିଥିବା 'ଶେଷସ୍ତମ୍ଭ'ର ପୂର୍ଣ୍ଣାଙ୍ଗ ସଂସ୍କରଣ ଆଜି ପ୍ରକାଶପାଉଛି। ଏହା ମୋ ପାଇଁ ଅତ୍ୟନ୍ତ ଆନନ୍ଦର କଥା। ସୁରେନ୍ଦ୍ର ମହାନ୍ତି 'ସମ୍ବାଦ'ର ପ୍ରଥମ ସଂପାଦକ ଥିଲେ। ୩୦ ଏପ୍ରିଲ୍ ୧୯୮୭ରେ ସଂପାଦକ ଦାୟିତ୍ୱରୁ ଅବ୍ୟାହତି ନେବା ପରେ ବି 'ସମ୍ବାଦ' ସହ, ବିଶେଷ କରି 'ସମ୍ବାଦ'ର 'ସାହିତ୍ୟ' ପୃଷ୍ଠା ସହ ତାଙ୍କର ସଂପର୍କ ଅବ୍ୟାହତ ଥିଲା। ତାଙ୍କର ବିୟୋଗ ଘଟିଲା ୨୧ ଡିସେମ୍ବର ୧୯୯୦ରେ। ତାହାର ମାତ୍ର ଛଅ ଦିନ ପୂର୍ବରୁ, 'ଶେଷସ୍ତମ୍ଭ'ରେ ତାଙ୍କର ଶେଷ ଲେଖାଟି ପ୍ରକାଶ ପାଇଥିଲା।

୧୯୮୪ ମସିହା ଅକ୍ଟୋବର ୪ ତାରିଖ ଦିନ 'ସମ୍ବାଦ' ଜନ୍ମ ନେଇଥିଲା। ସେ ଦିନଟି ଥିଲା ବିଜୟା ଦଶମୀ। କିନ୍ତୁ ସଂଯୋଗକୁ ସେ ଦିନଟି ଥିଲା ଗୁରୁବାର। ସେତେବେଳେ 'ସାହିତ୍ୟ' ପୃଷ୍ଠାପାଇଁ ଗୁରୁବାର ଦିନଟି ଧାର୍ଯ୍ୟ ହୋଇଥିଲା। ତେଣୁ ପ୍ରଥମ ସଂଖ୍ୟାରେ ହିଁ ସ୍ଥାନ ପାଇଥିଲା 'ସାହିତ୍ୟ' ପୃଷ୍ଠା। ସେହିଥିରେ ପ୍ରକାଶ ପାଇଥିଲା ସୁରେନ୍ଦ୍ର ମହାନ୍ତିଙ୍କ 'ଶେଷସ୍ତମ୍ଭ'ର ପ୍ରଥମ ଲେଖା। କିପରି ଏକ ପ୍ରୟୋଜନବୋଧରୁ ତାଙ୍କୁ ସେହି ଲେଖାଟି ଲେଖିବାକୁ ପଡ଼ିଥିଲା, ତାହା ସେ 'ଶେଷସ୍ତମ୍ଭ'ର ପ୍ରଥମ ଖଣ୍ଡ ପ୍ରକାଶପାଇବା ବେଳେ ତାହାର ଭୂମିକାରେ ଲେଖିଛନ୍ତି। କାହିଁକି ସେହି ସ୍ତମ୍ଭର ନାଆଁ 'ଶେଷସ୍ତମ୍ଭ' ତାହା ମଧ୍ୟ ସୂଚାଇଛନ୍ତି। ଆଜି 'ଶେଷସ୍ତମ୍ଭ'ର ଏହି ପୂର୍ଣ୍ଣାଙ୍ଗ ସଂସ୍କରଣ ପ୍ରକାଶ ପାଇବା ବେଳେ, ପ୍ରିୟ ପାଠକ-ପାଠିକାଙ୍କ ଅବଗତିପାଇଁ ସେହି 'ଭୂମିକା'ଟିକୁ ମଧ୍ୟ ଏଠାରେ ପୁନର୍ମୁଦ୍ରିତ କରୁଛୁ।

୧୯୮୯ ଜୁନ୍ ୨୧ରେ ଇଷ୍ଟର୍ଣ୍ଣ ମିଡ଼ିଆ ଲିମିଟେଡ୍ ପକ୍ଷରୁ ପ୍ରକାଶିତ 'ଶେଷସ୍ତମ୍ଭ'ର ପ୍ରଥମ ଖଣ୍ଡରେ ଶହେଟି ଲେଖା ସଂକଳିତ ହୋଇଥିଲା। ସୁରେନ୍ଦ୍ର ମହାନ୍ତିଙ୍କ ବିୟୋଗର ପ୍ରାୟ ଦଶ ବର୍ଷ ପରେ, ୨୦୦୦ ମସିହାରେ ଆଉ ୯୧ଟି ଲେଖାକୁ ନେଇ କଟକର

ଫ୍ରେଣ୍ଡସ୍ ପବ୍ଲିଶର୍ସ ପକ୍ଷରୁ ଆଉ ଖଣ୍ଡିଏ ବହି ମଧ୍ୟ ପ୍ରକାଶ ପାଇଥିଲା। ଦୁଇଟିଯାକ ବହି ଦୀର୍ଘ ବର୍ଷ ହେଲା ଦୁଷ୍ପ୍ରାପ୍ୟ। ତେଣୁ ପାଠକ-ପାଠିକାଙ୍କ ଚାହିଦାକୁ ଦୃଷ୍ଟିରେ ରଖି ଆଜି ଏହି ପୂର୍ଣ୍ଣାଙ୍ଗ ସଂକଳନ ପ୍ରକାଶ ପାଉଛି।

ପୂର୍ବରୁ ପ୍ରକାଶିତ ଦୁଇଟିଯାକ ପୁସ୍ତକରୁ କୌଣସିଟିରେ ସଂକଳିତ ନ ହୋଇ 'ସମ୍ବାଦ' ପୃଷ୍ଠାରେ ରହିଯାଇଥିବା ୫୬ଟି ନୂଆଲେଖା ଏଥିରେ ପ୍ରଥମ କରି ସଂକଳିତ ହୋଇଛି। ଏପରିକି ୧୯୮୪ ଅକ୍ଟୋବର ୪ ତାରିଖ ଦିନ ପ୍ରକାଶିତ 'ଶେଷସ୍ତମ୍ଭ'ର ପ୍ରଥମ ଲେଖା ବି କୌଣସିଟିରେ ସଂକଳିତ ହୋଇ ନଥିଲା। ପୂର୍ବରୁ ସଂକଳିତ ଲେଖାଗୁଡ଼ିକରେ ସେସବୁର ପ୍ରକାଶକାଳ ସଂପର୍କରେ ସଂପୂର୍ଣ୍ଣ ସୂଚନା ନଥିଲା କିମ୍ବା ପ୍ରକାଶନର କ୍ରମ ରକ୍ଷା କରାଯାଇ ନଥିଲା। ପାଠକ-ପାଠିକା ଓ ଗବେଷକଙ୍କ ସୁବିଧାକୁ ଦୃଷ୍ଟିରେ ରଖି ଏଥିରେ ଲେଖାଗୁଡ଼ିକର କ୍ରମ ରକ୍ଷା କରାଯିବା ସହିତ ପ୍ରକାଶକାଳ ସଂପର୍କରେ ସୂଚନା ଦିଆଯାଇଛି। ଆଶା, ଏହା ସେମାନଙ୍କର ସହାୟକ ହେବ।

ପୂର୍ବରୁ ଆମେ ଜାନକୀବଲ୍ଲଭ ପଟ୍ଟନାୟକଙ୍କଦ୍ୱାରା ଅନୂଦିତ 'ବଙ୍କିମ ଉପନ୍ୟାସମାଳା'କୁ ସମଗ୍ର ଭାବେ ଛଅଖଣ୍ଡରେ ପ୍ରକାଶ କରିଛୁ। ସେହିପରି ଜୟନ୍ତୀ ପଟ୍ଟନାୟକଙ୍କଦ୍ୱାରା ଅନୂଦିତ କେ.ଏମ୍. ମୁନ୍‌ସୀଙ୍କ 'କୃଷ୍ଣାବତାର'କୁ ମଧ୍ୟ ସାତଖଣ୍ଡର ଏକ ପୂର୍ଣ୍ଣାଙ୍ଗ ସେଟ୍ ଭାବରେ ପ୍ରକାଶ କରିଛୁ। ଏହି କ୍ରମରେ ଗତବର୍ଷ ଡିସେମ୍ବର ମାସରେ, ଆମେ ଓଡ଼ିଶାର ଆଉ ଜଣେ ପ୍ରସିଦ୍ଧ କଥାକାର ଅଖିଳମୋହନ ପଟ୍ଟନାୟକଙ୍କର ସମଗ୍ର ଗଳ୍ପର ଏକ ସଂକଳନ 'ଅଖିଳାୟନ' ନାମରେ ପ୍ରକାଶ କରିଥିଲୁ। ଆଜି ସୁରେନ୍ଦ୍ର ମହାନ୍ତିଙ୍କ 'ଶେଷସ୍ତମ୍ଭ'ର ପୂର୍ଣ୍ଣାଙ୍ଗ ସଂକଳନ ସେହି କ୍ରମରେ ଆଉ ଏକ ମୂଲ୍ୟବାନ ପୁସ୍ତକ।

ଆଶା, ଆମର ପ୍ରିୟ ପାଠକ-ପାଠିକା ପୂର୍ବ ସଂକଳନଗୁଡ଼ିକ ପରି ଏହାକୁ ଆଦର କରିବେ।

**ସୌମ୍ୟରଂଜନ ପଟ୍ଟନାୟକ**

# ଭୂମିକା

୧୯୮୪ ମସିହାରେ ମୋର ସଂପାଦନାରେ 'ସମ୍ବାଦ' ଆତ୍ମପ୍ରକାଶ କରିଥିଲା। ମୁଁ ସଂପାଦକ ଥିବାବେଳେ ଏହାର ସାପ୍ତାହିକ ସାହିତ୍ୟ ପୃଷ୍ଠାର ସଂପାଦନାକୁ ପ୍ରତ୍ୟକ୍ଷ ଭାବରେ ନିୟନ୍ତ୍ରଣ କରୁଥିଲି। ସେତେବେଳେ ମୁଁ ଗୋଟିଏ ନିୟମ ବାନ୍ଧିଥିଲି ଯେ ସାହିତ୍ୟ ପୃଷ୍ଠାରେ କୌଣସି କବିତା ଆଦୌ ପ୍ରକାଶ ପାଇବ ନାହିଁ। କବିତା ପ୍ରତି ଏହା ମୋର ଅହେତୁକ ଅଶ୍ରଦ୍ଧା ବୋଲି ସେତେବେଳେ କେତେକ ସହକର୍ମୀ ମୋର ଏ ପ୍ରକାର ନିଷ୍ପତ୍ତି ବିରୁଦ୍ଧରେ ପ୍ରତିବାଦ ଉଠାଇଥିଲେ, କିନ୍ତୁ ମୁଁ ସେମାନଙ୍କୁ ବୁଝାଇ ଦେଇଥିଲି, ଗୋଟିଏ ଦୈନିକ ପତ୍ରିକାରେ କବିତାଟିଏ ପ୍ରକାଶିତ ହେଲେ କବିତାଟିର ଯଥାର୍ଥ ମର୍ଯ୍ୟାଦା ରହେ ନାହିଁ କିମ୍ବା କାବ୍ୟାମୋଦୀ ପାଠକମାନଙ୍କ ମନରେ ତାହା ଆଦୌ ରେଖାପାତ କରେନାହିଁ। ସାହିତ୍ୟ-ପତ୍ରିକାମାନଙ୍କରେ କବିତାଟିଏ ପ୍ରକାଶ ପାଇଲେ, ତାହା ପାଠକ ମନରେ ଯେମିତି ରେଖାପାତ କରେ ଦୈନିକ ପତ୍ରିକାର ସ୍ଥୂଳତା ମଧ୍ୟରେ ପ୍ରକାଶିତ କବିତାଟି ସେପରି ରେଖାପାତ କରିପାରେ ନାହିଁ। ସେଥିପାଇଁ 'ସମ୍ବାଦ'ର 'ସାହିତ୍ୟ' ପୃଷ୍ଠା ମୋ ନିୟନ୍ତ୍ରଣରେ ଥିବା ପର୍ଯ୍ୟନ୍ତ ସେଥିରେ କବିତା ଆଦୌ ପ୍ରକାଶ ପାଉ ନଥିଲା।

ଏହାର 'ସାହିତ୍ୟ' ପୃଷ୍ଠାର ପ୍ରଥମ ସଂଖ୍ୟାରେ ହଠାତ୍ ଆଠ /ଦଶ କଲମ ଇଞ୍ଚ ସ୍ଥାନପାଇଁ ଗଦ୍ୟ ଲେଖାଟିଏ ପ୍ରୟୋଜନ ପଡ଼ିଲା। ମୋର ସହକାରୀ ଆସି କହିଲେ, "ଏତେ ଛୋଟ ଗଦ୍ୟ ଲେଖାଟିଏ ବା କାହିଁ ? ବରଂ କବିତାଟିଏ ଦେଇ ଦେଉଛି।" ମୁଁ ତାଙ୍କୁ ଉତ୍ତର ଦେଲି, "ମୋର ନିଷ୍ପତ୍ତି ଅପରିବର୍ତ୍ତନୀୟ। କବିତାଟିଏ ଶୂନ୍ୟସ୍ଥାନ ପୂରଣ କରିବା ପରି ସେଠାରେ ଛପାଇଦେଲେ, କବିତାର ଅମର୍ଯ୍ୟାଦା ହେବ।" ସହକାରୀ କହିଲେ, "ତା'ହେଲେ ଆପଣ ସେହି ସ୍ଥାନପାଇଁ ଲେଖାଟିଏ ଦିଅନ୍ତୁ।" ଅଗତ୍ୟା ମୋତେ ବହୁ ଶ୍ରମ ସ୍ୱୀକାର କରି ସେତିକି ଶୂନ୍ୟସ୍ଥାନ ପୂରଣ କରିବାପାଇଁ ସେହିଠାରେ ଲେଖାଟିଏ ଲେଖିବାପାଇଁ ପଡ଼ିଲା। ସେଥିପାଇଁ, ସେହିଦିନୁ ଏହାର ନାମ 'ଶେଷସ୍ତମ୍ଭ' ରହିଆସିଛି ଓ

ଏହା ସାହିତ୍ୟ ପୃଷ୍ଠାର 'ଶେଷସ୍ତମ୍ଭ' ତଳେ ପ୍ରକାଶ ପାଇ ଆସୁଅଛି। ପାଠକମାନଙ୍କର ପ୍ରବଳ ଆଗ୍ରହ ଫଳରେ କେବଳ, ଏଇ ସ୍ତମ୍ଭଟି ଏପର୍ଯ୍ୟନ୍ତ ଧାରାବାହିକ ଭାବରେ- ମଝିରେ, କେବେକେବେ ବ୍ୟତିକ୍ରମ ଛାଡ଼ିଦେଲେ- ପ୍ରତି ସପ୍ତାହରେ ପ୍ରକାଶ ପାଇଆସୁଛି। ଗୋଟିଏ ଦୁଇଟି ସଂଖ୍ୟାରେ 'ଶେଷସ୍ତମ୍ଭ' ପ୍ରକାଶ ନପାଇଲେ, ବହୁ ଆଗ୍ରହୀ ପାଠକ ପତ୍ରଲେଖି, ଏହା କାହିଁକି ପ୍ରକାଶ ନପାଇଲା ବୋଲି ଅନୁଯୋଗ କରନ୍ତି। ସେମାନଙ୍କର ଗଭୀର ଶ୍ରଦ୍ଧା ଫଳରେ କେବଳ, ମୁଁ ତଥାପି ଏହାକୁ ଲେଖିଚାଲିଛି। ବସ୍ତୁତଃ 'ଶେଷସ୍ତମ୍ଭ' ହେଉଛି ଏକମାତ୍ର ସ୍ତମ୍ଭ 'ସମ୍ବାଦ' ଆରମ୍ଭ ଦିନୁ ଯାହା ଏପର୍ଯ୍ୟନ୍ତ ପ୍ରକାଶ ପାଇଆସୁଛି।

ଆରମ୍ଭରେ ସ୍ଥିର କରିଥିଲି, ଏହି ସ୍ତମ୍ଭର ଲେଖାସବୁ ସାହିତ୍ୟ ଓ ସମାଜ ସଂପର୍କିତ ହେବ। ସେହିପରି କେତେକ ଲେଖା ମଧ୍ୟ ଆରମ୍ଭରେ 'ଶେଷସ୍ତମ୍ଭ'ର ବିଷୟବସ୍ତୁ ଥିଲା। ସେସବୁ ପାଠକମାନଙ୍କପାଇଁ ଚିତ୍ତାକର୍ଷକ ଥିଲେ ହେଁ କେତେକ ପାଠକ ମୋର ନିଜର ଉପଲବ୍ଧି ସଂପର୍କରେ ଏହି ସ୍ତମ୍ଭରେ ଲେଖିବାପାଇଁ ବ୍ୟକ୍ତିଗତ ଭାବରେ ମୋତେ ଅନୁରୋଧ କଲେ ଏବଂ ପତ୍ର ଲେଖିଲେ। କ୍ରମେ ତେଣୁ 'ଶେଷସ୍ତମ୍ଭ'ର ଲେଖାସବୁ ବ୍ୟକ୍ତିନିଷ୍ଠ ହୋଇ ଉଠିଲା। ଏ ପର୍ଯ୍ୟନ୍ତ ମଧ୍ୟ ସେହି ବ୍ୟକ୍ତିନିଷ୍ଠତା 'ଶେଷସ୍ତମ୍ଭ'ର ଲକ୍ଷ୍ୟଣୀୟ ଆଭିମୁଖ୍ୟ ହୋଇରହିଛି।

ସମାଲୋଚକମାନେ 'ଶେଷସ୍ତମ୍ଭ'ର ଲେଖାଗୁଡ଼ିକୁ କେଉଁ ଶ୍ରେଣୀ (Genre) ରୂପେ ଗ୍ରହଣ କରିବେ, ତାହା କହିବା ମୋ ପକ୍ଷରେ କଠିନ। ଏସବୁ ପ୍ରବନ୍ଧ ବା ମିତ-ପ୍ରବନ୍ଧ ନୁହେଁ। କାରଣ ଏଥିରେ କୌଣସି ତତ୍ତ୍ୱକୁ ପ୍ରତିପାଦିତ କରିବାର ଉଦ୍ୟମ ନାହିଁ। ଏସବୁ ମଧ୍ୟ ରମ୍ୟରଚନା ଶ୍ରେଣୀର ନୁହେଁ। କାରଣ ଏଥିରେ ରମ୍ୟତା ବା ଚଟୁଳତାର ଘୋର ଅଭାବ। ତେବେ ମୋ ନିଜର ବ୍ୟକ୍ତିଗତ ଉପଲବ୍ଧି ଉପରେ ଏସବୁ ଆଧାରିତ ଥିବାରୁ ଏହା ଆଗ୍ରହୀ ପାଠକମାନଙ୍କର ପ୍ରାଣକୁ ଯେ ସ୍ପର୍ଶ କରିପାରୁଛି, ସେଥିରେ ସନ୍ଦେହ ନାହିଁ। 'ଶେଷସ୍ତମ୍ଭ'ର ପ୍ରଥମ ୧୦୦ ଗୋଟି ରଚନା ଏଥିରେ ସନ୍ନିବିଷ୍ଟ ହୋଇଛି। ଇଷ୍ଟର୍ଣ୍ଣ ମିଡ଼ିଆର ଆଗ୍ରହ ଫଳରେ କେବଳ ଏହା ଆଜି ପୁସ୍ତକ ଆକାରରେ ପ୍ରକାଶ ପାଇବା ସମ୍ଭବ ହୋଇପାରିଛି। ଏଥିପାଇଁ ପାଠକମାନଙ୍କର ଆଗ୍ରହ ଓ ଅନୁରୋଧ ମଧ୍ୟ କମ୍ ନଥିଲା। ସେଥିପାଇଁ ଏହି ସ୍ତମ୍ଭର ସୁଧୀ ପାଠକପାଠିକା ଓ ଇଷ୍ଟର୍ଣ୍ଣ ମିଡ଼ିଆ କର୍ତ୍ତୃପକ୍ଷଙ୍କଠାରେ ମୁଁ ନିଶ୍ଚିତ ଭାବରେ ଋଣୀ।

**ସୁରେନ୍ଦ୍ର ମହାନ୍ତି**

୧୯ ଜୁନ୍, ୧୯୮୯, ଦେବସ୍ନାନ ପୂର୍ଣ୍ଣିମା

# ସୂଚିପତ୍ର

ପ୍ରବନ୍ଧ

ସୂଚୀପତ୍ର

ସୂଚୀପତ୍ର

ସୂଚୀପତ୍ର

ପ୍ରବନ୍ଧ

## ସୂଚୀପତ୍ର

## ସୂଚୀପତ୍ର

## ସୂଚୀପତ୍ର

## ସୂଚୀପତ୍ର

# ଓଡ଼ିଆ ଭାଷା ଓ ଆମେ

ଚଳିତବର୍ଷ ଇଂରାଜୀ ଭାଷାର ସୁପ୍ରସିଦ୍ଧ ଅକ୍ସଫୋର୍ଡ଼ ଡିକ୍ସନାରୀର ଶତବର୍ଷ ପୂର୍ଣ୍ଣ ହେଲା। ଏହି ଉପଲକ୍ଷେ ନୂତନ ଅକ୍ସଫୋର୍ଡ଼ ଡିକ୍ସନାରୀର ଯେଉଁ ନୂତନ ସଂସ୍କରଣ ପ୍ରକାଶ ପାଇଛି, ସେଥିରେ ଉତ୍‌ପ୍ରେକ୍ଷା ଓ ପ୍ରୟୋଗ ସନ୍ନିବେଶିତ ହୋଇଛି।

ବସ୍ତୁତଃ ପରିବର୍ତ୍ତନଶୀଳ ସମୟ ଓ ସମାଜ ସହିତ ତାଳରଖି ଭାଷା ଗତି କରିଥାଏ। ଭାଷା ରକ୍ଷଣଶୀଳ ହୋଇ ଏକ ନିର୍ଦ୍ଦିଷ୍ଟ ଗଣ୍ଡି ମଧ୍ୟରେ ସୀମିତ ହୋଇଗଲେ ଏହା ପ୍ରାଣଶକ୍ତି ହରାଇବା ସଙ୍ଗେ ସଙ୍ଗେ ଭାବପ୍ରକାଶରେ ମଧ୍ୟ ପ୍ରତିବନ୍ଧକ ସୃଷ୍ଟି କରିଥାଏ। ଭାଷାର ଏହି ପରିବର୍ତ୍ତନ ଓ ପରିବର୍ଦ୍ଧନ ପ୍ରକ୍ରିୟାରେ ବହୁ ପ୍ରାଚୀନ ଶବ୍ଦ ଲୁପ୍ତ (ଅବ୍‌ସୋଲେଟ୍) ଓ ବହୁ ନୂତନ ଶବ୍ଦ ପ୍ରଚଳିତ ହୋଇଥାଏ। ଉଦାହରଣ ସ୍ୱରୂପ ମାର୍କଣ୍ଡ ଦାସ ଓ ସାରଳା ଦାସଙ୍କ ଓଡ଼ିଆ ଶବ୍ଦ ଓ ତାହାର ପ୍ରୟୋଗ ଓଡ଼ିଆ ଭାଷାରେ ଆଜି ଖୋଜିଲେ ମିଳିବ ନାହିଁ। ଅପରପକ୍ଷରେ ମୋଗଲ, ମରହଟ୍ଟା ଓ ଇଂରେଜ ଶାସନ କାଳରେ ଓଡ଼ିଆ ଭାଷାକୁ ବହୁ ଯାବନିକ, ପର୍ତ୍ତୁଗୀଜ ଓ ଇଂରାଜୀ ଶବ୍ଦ ଆସିଅଛି। ଊନବିଂଶ ଶତାବ୍ଦୀରେ ଓଡ଼ିଆ ଭାଷାରେ ବହୁ ବହିରାଗତ ଶବ୍ଦ ଗ୍ରଥିତ କରାଯାଇଥିଲା। ତାହାଥିଲା ଆଧୁନିକ ଓଡ଼ିଆ ଭାଷାର ପ୍ରବର୍ଦ୍ଧମାନ କାଳ। କିନ୍ତୁ ସଂପ୍ରତି ଓଡ଼ିଆ ଭାଷାରେ ଏକ ଖପରାଡିଆଁ ପ୍ରବୃତ୍ତି ପରିଲକ୍ଷିତ ହେଉଛି। ଭାଷାର ବିଶୁଦ୍ଧତା ନାମରେ କୌଣସି ବଙ୍ଗଳା, ଇଂରାଜୀ ବା ହିନ୍ଦୀ ଶବ୍ଦ ଓଡ଼ିଆ ସାହିତ୍ୟ ରଚନାରେ ପରିଲକ୍ଷିତ ହେଲେ ଭାଷାର ବିଶୁଦ୍ଧତା ନଷ୍ଟ ହେଲା ବୋଲି ଆର୍ତ୍ତନାଦ ଶୁଣିବାକୁ ମିଳୁଛି। ସେଥିପାଇଁ ଏକ୍‌ଜିକ୍ୟୁଟିଭ୍ ଇଞ୍ଜିନିୟର ସ୍ଥାନରେ 'ନିର୍ବାହୀ ଯନ୍ତ୍ରୀ', ସେକ୍ରେଟାରିଏଟ୍ ସ୍ଥାନରେ 'ମହାରକଣୀକ' ବା 'ସଚିବାଳୟ' ପରି ବହୁ କିମ୍ଭୂତ ଶବ୍ଦ ସୃଷ୍ଟି ହେଉଛି, ଯାହାକୁ ଲୋକେ ନା ବୁଝିପାରୁଛନ୍ତି, ନା ଭାବପ୍ରକାଶରେ ଏସବୁ ଶବ୍ଦ ସହାୟକ ହେଉଛି। ସେକ୍ରେଟେରିଏଟ୍ କହିଲେ ରାସ୍ତାର ରିକ୍ସାବାଲା ସୁଦ୍ଧା ବୁଝିବ। କିନ୍ତୁ ମହାକରଣୀକ  ବା ସଚିବାଳୟ କହିଲେ ଅଭିଧାନ ଖୋଜିବାକୁ ପଡ଼ିବ। ଏକ୍‌ଜିକ୍ୟୁଟିଭ୍ ଇଞ୍ଜିନିୟର କହିଲେ କଣ୍ଟ୍ରାକ୍ଟରଠାରୁ ମଜୁରିଆଙ୍କ ପର୍ଯ୍ୟନ୍ତ ସମସ୍ତେ ବୁଝିବେ। କିନ୍ତୁ ନିର୍ବାହୀ

ଯନ୍ତ୍ରୀ କହିଲେ ବୁଝିବେ କେତେଜଣ ? 'ରିଟ୍' (Writ) ଗୋଟିଏ ପାରିଭାଷିକ ଶବ୍ଦ। ଏ ଶବ୍ଦକୁ ଏବେ ମାମଲାବାଜିର ପ୍ରସାଦରେ ଗାଁ ଲୋକେ ସୁଦ୍ଧା ବୁଝୁଛନ୍ତି, କିନ୍ତୁ 'ରିଟ୍' ପରିବର୍ତ୍ତେ ଯଦି 'ଯାଚିକା' ପ୍ରୟୋଗ କରାଯାଏ, ତା'ହେଲେ ଯେଉଁ ଶବ୍ଦ ଉପଯୁକ୍ତ ସେ ଶବ୍ଦ ଭାଷା ଭିତରକୁ ଆସିବା ଆବଶ୍ୟକ। ଓଡ଼ିଆ ଭାଷାର ବିଶୁଦ୍ଧତାକୁ ସେଥିପାଇଁ ଅଗ୍ରପ୍ରାଧ୍ୟାନ୍ୟ ଦେବାରେ ଦ୍ୱିମତ ନାହିଁ। କିନ୍ତୁ ସେପରି ଶବ୍ଦ ଯଦି ଭାବପ୍ରକାଶରେ ସକ୍ଷମ ନହେଲା, ତା' ହେଲେ ଅନ୍ୟ ଭାଷାର ଶବ୍ଦ ବା ପ୍ରୟୋଗବିଧି ବ୍ୟବହାର କରିବାରେ କୌଣସି ପ୍ରତିବନ୍ଧକ ରହିବା ଉଚିତ ନୁହେଁ।

ଅକ୍ସଫୋର୍ଡ଼ ଅଭିଧାନର ଏହି ନୂତନ ସଂସ୍କରଣରେ ଏହିପରି ବହୁ ନୂତନ ଶବ୍ଦ ଓ ପ୍ରୟୋଗ ଆମେରିକାନ୍ ସାହିତ୍ୟରୁ ଆସିଛି। ସର୍ବତ୍ର ଯେପରି ଭାଷା ନାମରେ ବିଶୁଦ୍ଧତାବାଦୀ ଥାଆନ୍ତି, ଇଂରାଜୀ ଭାଷାରେ ମଧ୍ୟ ସେହିପରି ବିଶୁଦ୍ଧତାବାଦୀମାନେ ଅଛନ୍ତି। କେତେକ ଶବ୍ଦ ଓ ପ୍ରୟୋଗ ପ୍ରତି ସେମାନେ ନାସିକା କୁଞ୍ଚନ କରୁଛନ୍ତି। ଉଦାହରଣ ସ୍ୱରୂପ ସେଥିରୁ ଗୋଟିଏ ଶବ୍ଦ ହେଲା 'ହୋପ୍‌ଫୁଲି' (Hopefully)। ଏ ଶବ୍ଦଟିର ପ୍ରୟୋଗ ହେଲା, "ହୋପ୍‌ଫୁଲି ଏଗ୍‌ସ ଆର୍ ଫ୍ରେସ୍" ଅର୍ଥାତ୍ "ଆଶାର କଥା। ଡିମ୍ବଗୁଡ଼ିକ ତାଜା।" କିନ୍ତୁ ଶବ୍ଦଟି ବ୍ୟାକରଣବିରୋଧୀ ବୋଲି ଇଂରାଜୀ ଭାଷାର ବିଶୁଦ୍ଧତାବାଦୀମାନେ ପ୍ରବଳ ଚିତ୍କାର ଆରମ୍ଭ କରିଛନ୍ତି। ଏଥିରେ ପୁଣି ଏକଦା କ୍ରୁଦ୍ଧ-କବିଗୋଷ୍ଠୀ (angry poet)ର ଗୁରୁ କିଙ୍ଗ୍‌ସଲି ମାର୍ଟିନ୍ (Kingsley Martin) ନେତୃତ୍ୱ ନେଇଛନ୍ତି। ଯୌବନରେ ସେ ଥିଲେ ସତ୍ତାଦ୍ରୋହୀ। କିନ୍ତୁ ଏବେ ବାଷଠି ବର୍ଷ ବୟସରେ ପ୍ରଚଣ୍ଡ ରକ୍ଷଣଶୀଳ ହୋଇ ବ୍ୟାକରଣବାଦୀ ହୋଇପଡ଼ିଛନ୍ତି। ଅକ୍ସଫୋର୍ଡ଼ ଅଭିଧାନର କର୍ତ୍ତୃପକ୍ଷଙ୍କ କୈଫିୟତ୍ ହେଉଛି ଏପରି ଶବ୍ଦସବୁ ରାସ୍ତାରେ ଘାଟରେ ଯୁବକମାନେ ବ୍ୟବହାର କଲେଣି।

ବ୍ୟାକରଣବାଦୀମାନଙ୍କର କାରବାର ପଣ୍ଡିତମାନଙ୍କ ସହିତ। କିନ୍ତୁ ସାହିତ୍ୟର ସୀମା ବହୁ ବ୍ୟାପକ। ବିଦଗ୍ଧଠାରୁ ଆରମ୍ଭ କରି ସାଧାରଣ ଜନତା ପର୍ଯ୍ୟନ୍ତ ସମସ୍ତଙ୍କ ସହିତ ଏହାର ପରିଚୟ। ତେଣୁ ଜନସାଧାରଣଙ୍କ ମଧ୍ୟରେ ଯେଉଁସବୁ ଶବ୍ଦ ବା ପ୍ରୟୋଗବିଧି ପ୍ରଚଳିତ, ସାହିତ୍ୟ ଓ ସମ୍ବାଦପତ୍ର ଭିତରକୁ ସେସବୁ ନ ଆସିବ ବା କାହିଁକି ? ବିଶୁଦ୍ଧତାବାଦୀମାନଙ୍କର ସ୍ଲୋଗାନ୍‌ରେ ମିଶିଗଲେ ଭାଷା ଓ ଏହାର ପ୍ରକାଶଶକ୍ତି ଯେ ପଙ୍ଗୁ ହୋଇପଡ଼ିବ, ଉଲ୍ଲେଖ କରିବା ନିଷ୍ପ୍ରୟୋଜନ।

ଏହି ପୃଷ୍ଠଭୂମିରେ ବିଚାର କଲେ ହତାଶ ହେବାକୁ ପଡ଼େ। ଓଡ଼ିଆରେ ଏ ପର୍ଯ୍ୟନ୍ତ ଖଣ୍ଡେ କାଳୋପଯୋଗୀ ଅଭିଧାନ ପ୍ରସ୍ତୁତ ହୋଇପାରିଲା ନାହିଁ। ଓଡ଼ିଆ ଭାଷାରେ ଅଭିଧାନ କହିଲେ ବୁଝାଉଛି ଏ ଶତାବ୍ଦୀର ଆରମ୍ଭ ବେଳେ ପ୍ରକାଶ ପାଇଥିବା 'ପ୍ରମୋଦ ଅଭିଧାନ' ଓ ପଣ୍ଡିତ ଗୋପୀନାଥ ନନ୍ଦଙ୍କ 'ଓଡ଼ିଆ ଶବ୍ଦତତ୍ତ୍ୱ ଅଭିଧାନ'। ପଣ୍ଡିତ ଗୋପୀନାଥ ନନ୍ଦଙ୍କର

ଅଭିଧାନରେ ବହୁ ଅଧୁନା ପ୍ରଚଳିତ ଶବ୍ଦ ଖୋଜିଲେ ମିଳିବ ନାହିଁ। ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟରେ ପ୍ରଚଳିତ ଶବ୍ଦମାନଙ୍କୁ କେବଳ ଏହି ଅଭିଧାନରେ ପଣ୍ଡିତ ନନ୍ଦ ସଂଗ୍ରହିତ କରିଅଛନ୍ତି। 'ପ୍ରମୋଦ ଅଭିଧାନ'ରେ ସେହିପରି ଆଧୁନିକ ପ୍ରଚଳିତ ଶବ୍ଦ ଖୋଜିଲେ ମିଳିବ ନାହିଁ। ଏହା ଫଳରେ ଓଡ଼ିଆ ଶବ୍ଦକୋଷର ପରିସର ଯେ ଅତ୍ୟନ୍ତ ସଂକୁଚିତ ଓ ସୀମିତ ହୋଇପଡୁଛି କହିବା ବାହୁଲ୍ୟ ମାତ୍ର। ତେଣୁ ସ୍ୱାଭାବିକ ଭାବରେ ଆଧୁନିକ ଓଡ଼ିଆ ସାହିତ୍ୟ ସାମ୍ପ୍ରତିକ ଭାବଧାରା ପ୍ରକାଶ କରିବାରେ ଅକ୍ଷମ ହୋଇ ପଡୁଛି। ଓଡ଼ିଶାର ବିଭିନ୍ନ ବିଶ୍ୱବିଦ୍ୟାଳୟ ଓ ଓଡ଼ିଶା ସାହିତ୍ୟ ଅକାଦେମୀ ବା ବିଭିନ୍ନ ସଂସ୍ଥା ଓଡ଼ିଆରେ ଖଣ୍ଡେ ପୂର୍ଣ୍ଣାଙ୍ଗ ଅଭିଧାନ ପ୍ରସ୍ତୁତ କରିବା ଦିଗରେ ଆଗ୍ରହ ପ୍ରକାଶ କରିବା ଆବଶ୍ୟକ। କାରଣ, ଭାଷାର ଉନ୍ନତି ସେମାନଙ୍କ ଉଦ୍ୟମ ଉପରେ ନିର୍ଭରଶୀଳ।

୪/୧୦/୧୯୮୪

# ଦୁଃସ୍ଥ ସାହିତ୍ୟିକ

ସାହିତ୍ୟିକମାନଙ୍କର ଦୁଃସ୍ଥତା କେବଳ ଯେ ଭାରତୀୟ ସମାଜ ଓ ସାଂସ୍କୃତିକ ପରିବେଶର ଏକ ବିକୃତି ତାହା ନୁହେଁ, ଊଣା ଅଧିକେ ଏହା ପ୍ରାୟ ସବୁ ଦେଶରେ ପରିଲକ୍ଷିତ ହୋଇଥାଏ। ଅବଶ୍ୟ ଯେଉଁ ଦେଶ ଓ ସମାଜରେ ସାହିତ୍ୟ ରାଷ୍ଟ୍ରଦ୍ୱାରା ନିୟନ୍ତ୍ରିତ, ସେ ଦେଶରେ ସାହିତ୍ୟିକମାନଙ୍କର ଦୁଃସ୍ଥତା ନାହିଁ। ରାଷ୍ଟ୍ରୀୟ ଅନୁଦାନରେ ସେମାନେ ବେଶ୍ ସ୍ୱଚ୍ଛଳ। କିନ୍ତୁ ଯେଉଁ ଦେଶ ଓ ସମାଜରେ ସାହିତ୍ୟିକ ରାଷ୍ଟ୍ର ପରିବର୍ତ୍ତେ ସମାଜ ଉପରେ ନିର୍ଭରଶୀଳ, ସେ ଦେଶରେ ସାହିତ୍ୟିକମାନଙ୍କର ଦୁଃସ୍ଥତା ସର୍ବଦେଶୀୟ।

ଇଂଲଣ୍ଡର ଦୁଃସ୍ଥ ସାହିତ୍ୟିକମାନଙ୍କୁ ସାହାଯ୍ୟ ଦେବା ଉଦ୍ଦେଶ୍ୟରେ ପ୍ରାୟ ଦୁଇ ଶତାବ୍ଦୀ ତଳେ 'ରୟାଲ ଲିଟେରାରୀ ଫଣ୍ଡ୍' ସ୍ଥାପିତ ହୋଇଥିଲା। 'ପେନିଲେସ୍' ବା କପର୍ଦ୍ଦକଶୂନ୍ୟ ଲେଖକମାନଙ୍କୁ ଦୁଃସ୍ଥ ପରିସ୍ଥିତିରେ ସାହାଯ୍ୟ ଦେବା ଏହି ପାଣ୍ଠିର ଉଦ୍ଦେଶ୍ୟ। ଏହାର ପୁରୁଣା ରେକର୍ଡ଼ପତ୍ରରୁ ଜଣାପଡ଼ିଛି- ସାମୁଏଲ୍ କଲେରିଜ୍, ଡି.ଏଚ୍. ଲରେନ୍ସ ଓ ଜେମ୍ସ ଜଏସଙ୍କ ପରି ଇଂରାଜୀ ସାହିତ୍ୟର ସୁପ୍ରତିଷ୍ଠିତ କବି ଓ ଔପନ୍ୟାସିକମାନେ ସୁଦ୍ଧା ଏକଦା ସାହାଯ୍ୟପାଇଁ ରୟାଲ୍ ଲିଟେରାରି ଫଣ୍ଡ୍‌ର ଦ୍ୱାରସ୍ଥ ହୋଇଥିଲେ। ଏମାନଙ୍କ ଆବେଦନପତ୍ରରୁ ସେହି ବିଶ୍ୱବିଶ୍ରୁତ ଲେଖକମାନଙ୍କର ଜୀବନ ସଂପର୍କରେ କେତେକ ଅପ୍ରକାଶିତ ତଥ୍ୟ ମିଳିଥାଏ। ୧୭୯୦ ଖ୍ରୀଷ୍ଟାବ୍ଦରୁ ୧୯୧୮ ଖ୍ରୀଷ୍ଟାବ୍ଦ ମଧ୍ୟରେ ପ୍ରାୟ ୩୦୬୦ ଆବେଦନପତ୍ରକୁ ଏବେ ମାଇକ୍ରୋ ଫିଲ୍ମରେ ମୁଦ୍ରିତ କରାଯାଇ ପ୍ରତି ସେଟ୍ ୪୨୦୦ ପାଉଣ୍ଡ (ଆନୁମାନିକ ୭୦ ହଜାର ଟଙ୍କା) ମୂଲ୍ୟରେ ବିକ୍ରୟ କରାଯାଉଛି। ଅର୍ଥାତ୍ ଅତୀତର ମହାନ୍ ଲେଖକମାନଙ୍କର ଦୁଃସ୍ଥତା ବର୍ତ୍ତମାନ ଏକ ଲାଭପ୍ରଦ ବ୍ୟବସାୟରେ ପରିଣତ ହୋଇଅଛି। ରୟାଲ ଲିଟେରାରୀ ଫଣ୍ଡ୍‌କୁ ସାହାଯ୍ୟପାଇଁ ଆବେଦନପତ୍ରକୁ ନିୟମାନୁସାରେ ଜଣେ ଲେଖକ ସୁପାରିଶ କରିବା କଥା। ପ୍ରସିଦ୍ଧ କବି ସାମୁଏଲ୍ ଟେୟଲର କଲେରିଜ୍‌ଙ୍କର ଆବେଦନପତ୍ରକୁ ଏପରି ଭାବରେ ସୁପାରିଶ କରିଛନ୍ତି: "ଜଣେ ଅନନ୍ୟ ପ୍ରତିଭାଶାଳୀ, ବିଦ୍ୱାନ ବର୍ତ୍ତମାନ ଘୋର ଦୁଃସ୍ଥତାର ସମ୍ମୁଖୀନ ହୋଇଛନ୍ତି। ତାଙ୍କର ସ୍ତ୍ରୀ

ଆସନ୍ନପ୍ରସବା, ଶାଶୁ ମୃତ୍ୟୁ ଶଯ୍ୟାରେ" ଇତ୍ୟାଦି। ଭିକ୍ଟୋରିଆନ୍ ଯୁଗରେ ଏହିପରି ଦୁଃସ୍ଥ ଅବସ୍ଥାରେ ଲେଖକମାନଙ୍କୁ ଯେଉଁ ବାର୍ଷିକ ସାହାଯ୍ୟ ମିଳୁଥିଲା, ତାହା ୩୦ ଗିନି ବା ଆନୁମାନିକ ୬୦୦ ଟଙ୍କାରୁ ବେଶି ନୁହେଁ। ସେଇ ତୁଳନାରେ ଭାରତରେ କେତେକ ରାଜ୍ୟ ସରକାର ଦୁଃସ୍ଥ ଲେଖକଙ୍କୁ ଯେଉଁ ପରିମାଣର ସାହାଯ୍ୟ ଦେଉଛନ୍ତି ତାହା ନିତାନ୍ତ ନୈରାଶ୍ୟଜନକ ନୁହେଁ।

୧୭୯୦ ଖ୍ରୀଷ୍ଟାବ୍ଦରେ ରୟାଲ୍ ଲିଟେରାରୀ ଫଣ୍ଡ୍ ଜଣେ ପାଦ୍ରୀ ଡେଭିଡ୍ ଉଇଲିୟମ୍‌ଙ୍କଦ୍ୱାରା ସ୍ଥାପିତ ହୋଇଥିଲା। ପ୍ଲାଟୋଙ୍କର ଜଣେ ପ୍ରସିଦ୍ଧ ଅନୁବାଦକ ଫ୍ଲୋଇୟର ସିଡ଼େନ୍ ହଂ ମହାଜନମାନଙ୍କୁ ଋଣ ପରିଶୋଧ କରି ନପାରି କାରାଦଣ୍ଡ ଭୋଗିଲେ। କାରାବାସରେ ଥାଇ ତାଙ୍କର ମୃତ୍ୟୁ ଘଟିଲା। ଏହି ସମ୍ବାଦ ଡେଭିଡ୍ ଉଇଲିଅମ୍‌ସଙ୍କୁ ଲେଖକମାନଙ୍କର ଦୁଃସ୍ଥତା ପ୍ରତି ସଚେତନ କରି ଦେଇଥିଲା। ରୟାଲ୍ ଲିଟେରାରୀ ଫଣ୍ଡ ତାର ଫଳଶ୍ରୁତି। ସାହିତ୍ୟ-କୃତି ଏହି ପାଣ୍ଠିରୁ ସାହାଯ୍ୟ ପାଇବାର ଏକମାତ୍ର ନିୟାମକ। ଦୁଃସ୍ଥତା-ପୀଡ଼ିତ, ପ୍ରତିଷ୍ଠିତ ଲେଖକମାନଙ୍କୁ ବଞ୍ଚାଇ ରଖିବା ଏହାର ଯେତେଟା ଉଦ୍ଦେଶ୍ୟ ନୁହେଁ; ସାହିତ୍ୟ-କୃତି ନିର୍ବିଶେଷରେ ସମସ୍ତଙ୍କୁ 'ଢୋକେ ପିଇ ଦଣ୍ଡେ ଜୀଇ' ନ୍ୟାୟରେ ବଞ୍ଚାଇ ରଖିବା ଏହି ପାଣ୍ଠିର ଉଦ୍ଦେଶ୍ୟ। ସେଥିପାଇଁ ଆବେଦନକାରୀ ପ୍ରତ୍ୟେକ ଲେଖକଙ୍କରର କବିତା, ଉପନ୍ୟାସ ବା ଜୀବନସ୍ମୃତି ପରି କିଛି ନା କିଛି ପ୍ରକାଶିତ ରଚନା ଥିବା ଆବଶ୍ୟକ। ଡିଟେକ୍‌ଟିଭ୍ ଉପନ୍ୟାସ ହେଲେ ବି ଚଳିବ। ସାହିତ୍ୟିକମାନେ ଅର୍ଥନୈତିକ ଉତ୍ପାଦନ ଓ ବଣ୍ଟନ ବ୍ୟବସ୍ଥାରେ ପ୍ରତ୍ୟକ୍ଷ ଅଂଶଗ୍ରହଣ କରୁନଥିବା ହେତୁ ଦୁଃସ୍ଥତାପୀଡ଼ିତ ହେବା ସ୍ୱାଭାବିକ। କାରଣ ଅର୍ଥନୈତିକ ପ୍ରତିଦ୍ୱନ୍ଦ୍ୱିତାକୁ କେନ୍ଦ୍ରକରି ଗଢ଼ା ହୋଇଥିବା ସମାଜର ଚଳଣି ଓ ମୂଲ୍ୟବୋଧ ସହିତ ଏମାନେ ନିଜକୁ ଖାପଖୁଆଇ ପାରନ୍ତି ନାହିଁ। କିନ୍ତୁ ସେମାନଙ୍କର ସଂଗ୍ରାମ ଓ ଯନ୍ତ୍ରଣା ସମାଜର ରୁଚି, ମାନସିକତା ଓ ମୂଲ୍ୟବୋଧକୁ ଯେପରି ସମୃଦ୍ଧ କରିଛି ତାହା ଏଠାରେ ଉଲ୍ଲେଖ କରିବା ନିଷ୍ପ୍ରୟୋଜନ। ସେମାନଙ୍କ ପ୍ରତି ସମାଜ ଓ ରାଷ୍ଟ୍ରର ଯେ ନିଶ୍ଚିତ ଦାୟିତ୍ୱ ରହିଛି, ତାହାର ଉଲ୍ଲେଖ ଏଠାରେ ନକଲେ ଚଳିବ।

ଓଡ଼ିଶା ସରକାର ରାଜ୍ୟର ଦୁଃସ୍ଥ ସାହିତ୍ୟିକ, କଳାକାର ଓ କ୍ରୀଡ଼ାବିତ୍‌ମାନଙ୍କପାଇଁ ପେନ୍‌ସନ୍‌ର ବ୍ୟବସ୍ଥା କରିଛନ୍ତି। ପୂର୍ବେ ଜନତା ସରକାର ବେଳେ ଯେଉଁ ପରିମାଣରେ ଓ ଯେତେ ସଂଖ୍ୟାରେ ସାହାଯ୍ୟ ମିଳୁଥିଲା, ତା' ତୁଳନାରେ ଏବେ ସରକାର ବହୁ ସଂଖ୍ୟକ ଦୁଃସ୍ଥ ସାହିତ୍ୟିକଙ୍କୁ ବର୍ଦ୍ଧିତ ପରିମାଣରେ ପେନ୍‌ସନ୍ ଦେଉଛନ୍ତି।

କିନ୍ତୁ ଅଭିଜ୍ଞତାରୁ ଜଣାପଡୁଛି, ସ୍ୱଚ୍ଛଳ ଅବସ୍ଥାରେ ଥିବା କେତେକ ସାହିତ୍ୟିକ ଏ ପେନ୍‌ସନ୍ ପାଉଥିଲେ ହେଁ ପ୍ରକୃତରେ ଦୁଃସ୍ଥ ଲେଖକମାନେ ଏଥିରୁ ବଞ୍ଚିତ ହୋଇଛନ୍ତି।

ଉଦାହରଣ ଦେବା ନିଷ୍ପ୍ରୟୋଜନ। ପେନ୍‌ସନ୍ ପାଉଥିବା ବ୍ୟକ୍ତିମାନଙ୍କର ତାଲିକା ଓ ସଂଗତି ତନଖି କରାଗଲେ ଏହାର ସତ୍ୟତା ଜଣାପଡ଼ିବ। ପୁଣି ଏଥିରେ ପ୍ରଭାବ ଓ ଧରାଧରି କାର୍ଯ୍ୟ ଯେ ନ କରୁଛି ତାହା ନୁହେଁ। ସେଥିପାଇଁ ଇଂଲଣ୍ଡର ରୟାଲ୍ ଲିଟେରାରୀ ଫଣ୍ଡ୍ ପରି ଏହି ପେନ୍‌ସନ୍ ପାଣ୍ଠି ଏକ ସ୍ୱୟଂଶାସିତ ସଂସ୍ଥାଦ୍ୱାରା ପରିଚାଳିତ ହେବା ଆବଶ୍ୟକ। ପ୍ରତ୍ୟେକ ଆବେଦନପତ୍ର ଜଣେ ବିଶିଷ୍ଟ ସାହିତ୍ୟିକଙ୍କଦ୍ୱାରା ମଧ୍ୟ ଅନୁମୋଦିତ ହେବା ବାଞ୍ଛନୀୟ। ପରିଶେଷରେ ଏ ଆବେଦନପତ୍ରଗୁଡ଼ିକର ବିଚାର ଓ ମୀମାଂସା ସାହିତ୍ୟିକମଣ୍ଡଳୀଦ୍ୱାରା ହିଁ ନିୟନ୍ତ୍ରିତ ହେବା ସମୀଚୀନ। ତା' ନହେଲେ ଦୁଃସ୍ଥ ସାହିତ୍ୟିକମାନଙ୍କୁ ସାହାଯ୍ୟ ଦେବାର ବ୍ୟବସ୍ଥା ବହୁଳାଂଶରେ ଯେ ଲକ୍ଷ୍ୟଚ୍ୟୁତ ହେବ, ଏଥିରେ ସନ୍ଦେହ ନାହିଁ।

୧୮/୧୧/୮୪

# ସାହିତ୍ୟିକର ଜୟମାଲ୍ୟ

ବିଶ୍ୱସାହିତ୍ୟର ସର୍ବୋଚ୍ଚ ସମ୍ମାନ, ନୋବେଲ୍ ପୁରସ୍କାର, ଚେକୋସ୍ଲୋଭାକନ୍ କବି ସେଫୋର୍ଟ ଏ ବର୍ଷ ପାଇବା ସଂପର୍କରେ ପୃଥିବୀର ବହୁ ପ୍ରଖ୍ୟାତ ବର୍ଷୀୟାନ୍ ଲେଖକ ଯେପରି ବିସ୍ମିତ ହୋଇଥିବେ, ତାହା ଏହି ପୃଷ୍ଠାରେ ପ୍ରକାଶିତ ଏକ ନିବନ୍ଧରେ ସୂଚିତ ହୋଇଅଛି। ବସ୍ତୁତଃ, ନୋବେଲ୍ ପୁରସ୍କାର ହେଉ ବା ଜ୍ଞାନପୀଠ ପୁରସ୍କାର ହେଉ- ସବୁ ପୁରସ୍କାରର ନେପଥ୍ୟରେ ଅଧିକାଂଶ କ୍ଷେତ୍ରରେ, ରାଜନୈତିକ ବିଚାର ଯଥାର୍ଥ ସାହିତ୍ୟିକ ମୂଲ୍ୟାୟନକୁ ପ୍ରଭାବିତ କରିଥାଏ। ଏହାକୁ ଅସ୍ୱୀକାର କରିବାର ଅର୍ଥ ସତ୍ୟକୁ ଆଖି ମିଟିକା ମାରିବା।

ଏପରି ହେବା ଉଚିତ ନୁହେଁ। ମନେରଖିବା ଉଚିତ, ସାହିତ୍ୟପାଇଁ ପୁରସ୍କାର ଏକ ସାତ୍ତ୍ୱିକ ସ୍ୱୀକୃତି ! ଏଥିରେ ତାମସିକତା ରହିବା ଉଚିତ ନୁହେଁ। କିନ୍ତୁ ନୋବେଲ୍ ପୁରସ୍କାର ହେଉ ବା ଜ୍ଞାନପୀଠ ଭଳି ପୁରସ୍କାର ହେଉ, ଏହା ସାହିତ୍ୟ ସୃଷ୍ଟି ଓ ସ୍ରଷ୍ଟାଙ୍କର ପ୍ରକୃତ ମୂଲ୍ୟାୟନ ବୋଲି କେହି କସ୍ମିନ୍‌କାଳେ ଭାବିବା ଉଚିତ ନୁହେଁ। ଏହି ସ୍ତମ୍ଭର ପାଠକପାଠିକାଙ୍କୁ ମୁଁ ପୂରା ଗୋଟିଏ ସପ୍ତାହ ସମୟ ଦେଲି। ଇତି ମଧ୍ୟରେ ସେମାନେ ମୋତେ ଯଦି ସାହିତ୍ୟରେ ପ୍ରଥମ ନୋବେଲ୍ ପୁରସ୍କାର କିଏ ପାଇଲେ ଜଣାଇ ପାରନ୍ତି, ତା'ହେଲେ ଉପକୃତ ହୁଅନ୍ତି। ଅଥଚ ସେଇ ବର୍ଷ ଉପନ୍ୟାସ ଜଗତର ସମ୍ରାଟ, ଟଲଷ୍ଟୟ ବଞ୍ଚି ରହିଥିଲେ। 'ୱାର ଏଣ୍ଡ୍ ପିସ୍' ପରି ଉପନ୍ୟାସ ଲେଖି ସାରିବା ପରେ ସୁଦ୍ଧା, ତାଙ୍କୁ ସ୍ୱେଡ଼ିଶ୍ ଅକାଦେମୀ ସ୍ୱୀକୃତି ଦେଲେ ନାହିଁ ! ପ୍ରଥମ ନୋବେଲ୍ ପୁରସ୍କାର ବିଜେତା ବିସ୍ମୃତିର ଅଳିଆ ଟୋକେଇରେ ହଜି ଗଲେଣି। କିନ୍ତୁ ଟଲଷ୍ଟୟ ଆଜି ମଧ୍ୟ ଜୀବନ୍ତ। ସାର ଉଇନ୍‌ଷ୍ଟନ୍ ଚର୍ଚ୍ଚିଲ୍ ଯେଉଁ ନିୟାମକ ଅନୁସାରେ ସାହିତ୍ୟରେ ନୋବେଲ୍ ପୁରସ୍କାର ପାଇଲେ, ଠିକ୍ ସେହି ନିୟାମକ ମହାତ୍ମା ଗାନ୍ଧୀଙ୍କ କ୍ଷେତ୍ରରେ ପ୍ରୟୋଗ କରାଯାଇ ଥିଲେ ସେ ମଧ୍ୟ ନୋବେଲ୍ ପୁରସ୍କାରପାଇଁ ହକ୍‌ଦାର ଥିଲେ। ମହାତ୍ମା ଗାନ୍ଧୀଙ୍କ ଇଂରାଜୀ ଗଦ୍ୟ ଶୈଳୀ ଯେପରି ଅନବଦ୍ୟ ସେହିପରି ଅନୁପମ।

ଇଂରାଜୀ ସାହିତ୍ୟରେ ବହୁ ଧୂରୀଣ ବ୍ୟକ୍ତି ଏହା ସ୍ୱୀକାର କରନ୍ତି । ପ୍ରସିଦ୍ଧ ଫରାସୀ ଔପନ୍ୟାସିକ, ଆନାତୋଲ ଫ୍ରାଁସ୍ ମଧ୍ୟ ପରିଣତ ବାର୍ଦ୍ଧକ୍ୟ ପର୍ଯ୍ୟନ୍ତ ସୁଦ୍ଧା ଅପେକ୍ଷା କରିଥିଲେ ଫରାସୀ ଅକାଦେମୀର ସଭ୍ୟ ହେବାପାଇଁ । କିନ୍ତୁ ତାଙ୍କ ସମସାମୟିକ ଫରାସୀ ଅକାଦେମୀର ସଭ୍ୟମାନଙ୍କ ନାମ, ଗୋତ୍ର କେହି ଜାଣନ୍ତି ନାହିଁ । ଅଥଚ ଆନାତୋଲ୍ ଫ୍ରାଁସ୍ ଆଜି ମଧ୍ୟ ଶ୍ରଦ୍ଧାର ସହିତ ପଠିତ ଓ ଆଲୋଚିତ । ଏହିପରି ବହୁ ଉଦାହରଣ ଦିଆଯାଇପାରେ ।

ଇଂଲଣ୍ଡରେ ରାଜକବି ବା 'ପୋଏଟ୍ ଲରିଏଟ୍' ହେବା ଏକ ବଡ଼ ସମ୍ମାନ ବୋଲି ଅନେକେ ବିଚାର କରନ୍ତି । କିନ୍ତୁ ଆଜି ଇଂଲଣ୍ଡରେ ପୋଏଟ୍ ଲରିଏଟ୍ କିଏ ? ତାହା ହଠାତ୍ କହିବାର ଉପାୟ ନାହିଁ । ଏହା ରୀତିମତ ଗବେଷଣା ସାପେକ୍ଷ । କାରଣ ଏହି ନାମ ସବୁ ଅତି ଅବାନ୍ତର । ଏହି ପୋଏଟ୍ ଲରିଏଟ୍‌ମାନେ ରାଜକୀୟ ସ୍ୱୀକୃତିର ସନନ୍ଦ ଧରି, କାନରେ କୁଣ୍ଡଳ ଲମ୍ବାଇ, ଯେତେ ବୁଲିଲେ ସୁଦ୍ଧା କେହି ଏମାନଙ୍କୁ ଆଡ଼ ଆଖିରେ ଅନାନ୍ତି ନାହିଁ । ବସ୍ତୁତଃ ଇଂରାଜୀ ସାହିତ୍ୟର ଐତିହାସିକମାନେ ଜାଣିଥିବେ, ପ୍ରଥମ ପୋଏଟ୍ ଲରିଏଟ୍ ଡ୍ରାଇଡେନ୍ ଓ ତା'ପରେ କବି ୱାଡ୍‌ସ୍‌ୱାର୍ଥ, ଟେନିସନ୍‌ଙ୍କ ବ୍ୟତୀତ ଆଉ ମାତ୍ର ଦୁଇଜଣ କବି, ରବର୍ଟ ବ୍ରିଜ୍ ଓ ସି ଡ଼ି ଲୁଇସ୍ ପୋଏଟ୍ ଲରିଏଟ୍ ହୋଇଥିଲେ ।

ଟେନିସନ୍ ପୋଏଟ୍ ଲରିଏଟ୍ ହେବା ପରେ କବି ବ୍ରାଉନ୍ ତାଙ୍କୁ 'ଲଷ୍ଟ ଲିଡ଼ର' ଶୀର୍ଷକ ଏକ କବିତାରେ ଆକ୍ଷେପ କରିଥିଲେ । ଅନେକେ ମଧ୍ୟ ଏଥିପାଇଁ ରାଜି ନୁହନ୍ତି । ରାଜକୀୟ ସମ୍ମାନ ବା ରାଷ୍ଟ୍ରର ସ୍ୱୀକୃତି ସାହିତ୍ୟିକର ସ୍ୱୀକୃତି ହୋଇପାରେ, କିନ୍ତୁ ସାହିତ୍ୟର ଆଦୌ ନୁହେଁ । ମୁଁ ଚିରକାଳ ବିଶ୍ୱାସ କରି ଆସିଛି- ବିଦ୍‌ଗଧ ପାଠକ ସମାଜ, କବି ଓ ଲେଖକକୁ ଯେଉଁ ସ୍ୱୀକୃତି ଦିଅନ୍ତି, ତାହା ହିଁ ସେମାନଙ୍କର ଶ୍ରେଷ୍ଠ ଜୟମାଲ୍ୟ । ଶିରୀପା, କୁଣ୍ଡଳ, ସନନ୍ଦ ଏ ସବୁ ବାହ୍ୟ । କୌଣସି ସଚ୍ଚା ସାହିତ୍ୟିକ କେବେ ଏସବୁ ପାଇଁ ବ୍ୟାକୁଳ ହୋଇନାହିଁ । ଯଦି କେବେ ଏସବୁ ମିଳେ, ସେଥିପ୍ରତି ଅନାଗ୍ରହ ପ୍ରକାଶ ପାଇବା ମଧ୍ୟ ଆତ୍ମପ୍ରବଞ୍ଚନା ହେବ । ମିଳିଲେ ଭଲ, ନମିଳିଲେ ଦୁଃଖ ନାହିଁ । ଏପରି ଅନାସକ୍ତି ଓ ଉପେକ୍ଷା ନ ରହିଲେ ବହୁ ସମ୍ଭାବନାପୂର୍ଣ୍ଣ ଲେଖକ ଓ କବି ବ୍ୟର୍ଥତାରେ ନୀରବ ହୋଇଯିବେ ।

*୧/୧୧/୮୪*

# ସାହିତ୍ୟ ଓ ସମାଜ

ଜଣେ ପାଠକ ହିସାବରେ ଇଏ ମୋର ବ୍ୟକ୍ତିଗତ ମତ। ଏହାଠାରୁ ଯଦି କେହି ଭିନ୍ନମତ ପୋଷଣ କରନ୍ତି ତା' ହେଲେ ମୋର ସେଥିରେ ଆପତ୍ତି ନାହିଁ। ଆଜିକାଲି ସବୁ ଭାରତୀୟ ଭାଷା ସାହିତ୍ୟରେ ଯେଉଁ ଅବକ୍ଷୟ ଦେଖାଦେଇଛି, ଏହା ମୂଳରେ ରହିଛି- ମୋ ମତରେ କବି, ନାଟ୍ୟକାର, ଔପନ୍ୟାସିକ ଅବା ଗାଳ୍ପିକମାନଙ୍କ ମଧ୍ୟରେ ଏକ ଚିନ୍ତା ସଙ୍କଟ। ଅର୍ଥାତ୍, ସେମାନେ ଚିନ୍ତାରାଜ୍ୟରେ ଗୋଟିଏ ଭଉଁରୀ ଭିତରେ ପଡ଼ିଯାଇ ସେଥିରୁ ନିଷ୍କୃତିର ବାଟ ଖୋଜି ପାଉନାହାନ୍ତି। ମୁଁ ସେମାନଙ୍କୁ ବାଟ ଦେଖାଉଛି ବୋଲି ସେମାନେ କେହି ଭାବିବା ଉଚିତ ନୁହେଁ। ଅନେକ ସମୟରେ ନାପିତମାନେ ସୁଦ୍ଧା ବରିଆ ଜାଳି ରାତି ଅନ୍ଧାରରେ ପଥ ପ୍ରଦର୍ଶନ କାର୍ଯ୍ୟ କରିଥାଆନ୍ତି। ମୋ ପିଲା ବେଳେ ଟର୍ଚ୍ଚ ନଥିବାରୁ ଅନ୍ଧାର ରାତିରେ ଆମେ ଏହିପରି ପଥ ପ୍ରଦର୍ଶକଙ୍କ ଉପରେ ନିର୍ଭର କରୁଥିଲୁ। ଇଦାନୀଂ, 'ବହୁ ପଥପ୍ରଦର୍ଶକ' ସେହି ଶ୍ରେଣୀର। ତେଣୁ ମତେ କେହି ପଥପ୍ରଦର୍ଶକ ବୋଲି ଧରିନେବା ଉଚିତ ନୁହେଁ। ସେ କାର୍ଯ୍ୟ କରିବାର ଅଭିପ୍ରାୟ ମଧ୍ୟ ମୋର ନାହିଁ।

କୌଣସି ସାହିତ୍ୟିକ ସମାବେଶରେ ଉଦ୍‌ଘାଟକ, ମୁଖ୍ୟବକ୍ତାଙ୍କଠାରୁ ଆରମ୍ଭ କରି ଉପସ୍ଥିତ ସାହିତ୍ୟିକମାନଙ୍କ ପର୍ଯ୍ୟନ୍ତ ଭାଷଣ ଦେଲାବେଳେ ସମସ୍ତେ ଉଦ୍‌ବୋଧନ ଦେଇଥାନ୍ତି, ସାହିତ୍ୟିକମାନେ ସମାଜକୁ ବାଟ ଦେଖାନ୍ତୁ। ରାଜନୈତିକ ନେତାମାନେ ସମାଜକୁ ବଦଳାଇବାପାଇଁ ଠିକା ନେଇଥିବା ବେଳେ, ପୁଣି ବାବା ଓ ଗୁରୁମାନଙ୍କ ସଂଖ୍ୟା ଅସଂଖ୍ୟ ହେଉଥିବା ବେଳେ, ବିଚରା ସାହିତ୍ୟିକ ଉପରେ କାହିଁକି ଏ ଦାୟିତ୍ୱର ବୋଝ ଲଦାଯିବ ଓ ସେ ବୋଝ ବୋହିବାପାଇଁ ତାର କି ଶକ୍ତି ବା ପ୍ରସ୍ତୁତି ଅଛି, ଏ କଥା କେହି ଥରେ ହେଲେ ଭାବନ୍ତି ନାହିଁ। ଅଥଚ ସାହିତ୍ୟିକମାନେ ସୁଦ୍ଧା ସେହି ପାଲାରେ ପାଳିଆ ହୋଇ ସେହିପରି ଦୁହା ଉଠାନ୍ତି। ଏସବୁ ଶୁଣିଲାବେଳେ ମୋର ମନେହୁଏ, ଏହାଠାରୁ ବଳି ଆତ୍ମପ୍ରବଞ୍ଚନା ଓ ବୌଦ୍ଧିକ ଶଠତା ବୋଧହୁଏ ଆଉ କିଛି ନାହିଁ। ନେତାମାନଙ୍କ କଥା ଛାଡ଼। ସଂପ୍ରତି ଉଦ୍‌ବୋଧନ ଦେବା ତ ସେମାନଙ୍କର ଏକମାତ୍ର

କାର୍ଯ୍ୟ। କିନ୍ତୁ ପେଟ ହାଟ ନେଇ, କୃତି ଚାକିରି ନେଇ ବ୍ୟସ୍ତ ଥିବା ଆଜିର ଲେଖକମାନଙ୍କୁ ସମାଜର ବାସ୍ତବତା ଅଙ୍ଗେ ନିଭାଇବାପାଇଁ ଅଥବା ତାହାକୁ ପରିବର୍ତ୍ତନ କରିବାର ଉପାୟ ଚିନ୍ତା କରିବାପାଇଁ ବେଳ କାହିଁ ? ଗୋବର ଉପରେ ପ୍ରବନ୍ଧ ଲେଖିବା ଏକ କଥା କିନ୍ତୁ ଗୋରୁ ହାଟରେ ଗାଈର କିସମ ବୁଝିବା ଅନ୍ୟ ଏକ କଥା।

ସମାଜକୁ ବଦଳେଇବାକୁ ହେଲେ, ବୃହତ୍ତର ଜନମାନସ ସହିତ ସୃଷ୍ଟି ମାଧ୍ୟମରେ ନିବିଡ଼ ଯୋଗସୂତ୍ର ରକ୍ଷା କରିବାପାଇଁ ପଡ଼ିବ। ତା' ନହେଲେ ସବୁ ସାହିତ୍ୟ କାଳ ଆଗରେ ମୂଳା ଚୋବାଇବାଠାରୁ ଭିନ୍ନ ବୋଲି କହି ହେବ ନାହିଁ। ଆଜିର ଲେଖକମାନେ ସମସ୍ତେ ଉଚ୍ଚ ଇଂରାଜୀ ଶିକ୍ଷିତ। ଇଂରାଜୀ ସାହିତ୍ୟ ସହିତ ଅଳ୍ପ ପରିଚିତ ଲେଖକମାନେ ମଧ୍ୟ ଅଛନ୍ତି। ଏହା ଦୋଷାବହ ନୁହେଁ। ମଧ୍ୟଯୁଗର କବିମାନେ ସଂସ୍କୃତ ସାହିତ୍ୟର କବି ଓ ଆଳଙ୍କାରିକମାନଙ୍କଦ୍ୱାରା ପ୍ରଭାବିତ ହେଉଥିଲେ। ଏହା ଫଳରେ ଭାରତୀୟ ଭାଷା ସାହିତ୍ୟମାନଙ୍କରେ ଯେଉଁ ସାହିତ୍ୟ ସୃଷ୍ଟି ହେଉଥିଲା ତାହା ଭାରତୀୟ ଚିନ୍ତା, ଚେତନା ଓ ଉପଲବ୍‌ଧିକୁ ସ୍ପର୍ଶ କରିପାରୁଥିଲା। ଊନବିଂଶ ଶତାବ୍ଦୀର ଶେଷପାଦରେ ଭାଷା ସାହିତ୍ୟର ଲେଖକମାନେ ଇଂରାଜୀ ସାହିତ୍ୟ ଦ୍ୱାରା ପ୍ରଭାବିତ ହେବା ଆରମ୍ଭ କଲେ। କିନ୍ତୁ ଊନବିଂଶ ଶତାବ୍ଦୀରେ ପାଶ୍ଚାତ୍ୟ ସମାଜର ଅବସ୍ଥା ମୋଟାମୋଟି ଭାବରେ ତତ୍‌କାଳୀନ ଭାରତୀୟ ସମାଜଠାରୁ ବିଶେଷ ଦୂରବର୍ତ୍ତୀ ନଥିଲା। ସେତେବେଳ ପର୍ଯ୍ୟନ୍ତ ପଶ୍ଚିମ ଦୁନିଆରେ ଯନ୍ତ୍ରଶିଳ୍ପର ବିକାଶ ଆଦିମ ସ୍ତରରେ ଥିଲା। ତେଣୁ ସ୍ୱାଭାବିକ ଭାବରେ ଉଭୟ ପ୍ରାଚ୍ୟ ଓ ପାଶ୍ଚାତ୍ୟ ସଂସ୍କୃତି ଥିଲା କୃଷିଭିତ୍ତିକ। ଟେନିସନ୍ ବା ଚାର୍ଲସ ଡିକେନ୍‌ସ ପ୍ରମୁଖ କବି ଓ ଔପନ୍ୟାସିକମାନେ ଭାଷା ସାହିତ୍ୟକୁ ପ୍ରଭାବିତ କରିବାଦ୍ୱାରା ପ୍ରକାରାନ୍ତରେ ଭାଷା ସାହିତ୍ୟକୁ ସମୃଦ୍ଧ କରିବା ସଙ୍ଗେ ସଙ୍ଗେ ପାଠକମାନଙ୍କ ଚିନ୍ତା ଓ ଚେତନାକୁ ସଂପ୍ରସାରିତ କରିପାରୁଥିଲେ। ଉଭୟ ପାଶ୍ଚାତ୍ୟ ଓ ପ୍ରାଚ୍ୟ ସାହିତ୍ୟରେ ସମାଜ ଓ ବ୍ୟକ୍ତି ମଧ୍ୟରେ ସେଦିନ ଥିଲା ଏକ ନିବିଡ଼ ସଂପର୍କ।

କିନ୍ତୁ ଦ୍ୱିତୀୟ ମହାଯୁଦ୍ଧ ପରଠାରୁ ପାଶ୍ଚାତ୍ୟ ସାହିତ୍ୟରେ ଯେଉଁ ଯୁଗ ଆରମ୍ଭ ହୋଇଛି, ସମାଲୋଚକମାନେ ତାହାକୁ କହୁଛନ୍ତି 'ପୋଷ୍ଟମଡ଼ର୍ଣ୍ଣ ଏଜ୍' ବା ଓ୍ୱତ୍ତର ଆଧୁନିକ ଯୁଗ। ଏହି ଯୁଗର ସାହିତ୍ୟର ମୁଖ୍ୟ ପ୍ରକୃତି ହେଲା କବି ଓ ଔପନ୍ୟାସିକ ବା ଗାଳ୍ପିକ ସମାଜଠାରୁ ନିଜକୁ ଦୂରେଇ ନେଇ ପହଞ୍ଚିଛି ନିଜ ଅବଚେତନର ଏକ ରହସ୍ୟମୟ କୁହୁଡ଼ିବୋଳା ଅନ୍ଧଗଳି ଭିତରେ। ଏହି ପ୍ରକ୍ରିୟା ତାକୁ ଆଣି ଦେଇଛି ଏକ ଉପଲବ୍‌ଧି, ଯାହା ତାର ସଂପୂର୍ଣ୍ଣ ନିଜସ୍ୱ ଓ ବ୍ୟକ୍ତିଗତ। ବୃହତ୍ତର ସମାଜର ସେଥିରେ କୌଣସି ଅଂଶ ନାହିଁ ବା ଉପଲବ୍‌ଧି ନାହିଁ। ଏ ପ୍ରକାର ଉପଲବ୍‌ଧିକୁ ପ୍ରକାଶ କରିବାପାଇଁ ସେ ପ୍ରତ୍ୟହ ଆଶ୍ରୟ ନେଉଛି ନିତ୍ୟ ନୂତନ ଆଙ୍ଗିକ, ଶୈଳୀ ଓ ରୂପକର। ଏହାର ସେ ନାମକରଣ କରିଛି

'ଏକ୍ସପେରିମେଣ୍ଟେସନ୍'। କିନ୍ତୁ ଏ କସରତ୍ ସବୁ ପାଠକର ପ୍ରାଣକୁ ସ୍ପର୍ଶ କରି ପାରୁନାହିଁ। ବୃହତ୍ତର ପାଠକ ସମାଜ ତ୍ରାହିତ୍ରାହି ଡାକ ଛାଡ଼ି ହିନ୍ଦୀ ଫିଲ୍ମ ମାଗାଜିନ୍ କିଣୁଛି। ଏ ପରିସ୍ଥିତିରେ ସାଂପ୍ରତିକ ସାହିତ୍ୟିକମାନେ ସଭା ସମିତିଗୁଡ଼ିକରେ ସମାଜକୁ ବଦଳେଇବାର ଦାୟିତ୍ୱ ସାହିତ୍ୟ ଉପରେ ନ୍ୟସ୍ତ ବୋଲି ଯଦି ପରସ୍ପର ପରସ୍ପରକୁ ଉଦ୍‌ବୋଧନ ଦିଅନ୍ତି, ତେବେ ତାହାଠାରୁ ବଳି ଶୂନ୍ୟଗର୍ଭ ସଂଳାପ ଆଉ କିଛି ହୋଇନପାରେ।

ସମାଜକୁ ବଦଳେଇବାର ଦାୟିତ୍ୱ କାଳେ କାଳେ ସାହିତ୍ୟିକମାନଙ୍କ ଉପରେ ନ୍ୟସ୍ତ ରହିଆସିଛି। ଆଜିର ସାହିତ୍ୟିକ ମଧ୍ୟ ସେ ଦାୟିତ୍ୱ ନେବା ଉଚିତ। ରାଜନୈତିକ ନେତାମାନେ ସରକାର ବଦଳେଇ ପାରନ୍ତି, କିନ୍ତୁ ସମାଜକୁ କଦାପି ବଦଳେଇ ପାରିବେ ନାହିଁ। କାରଣ ସମାଜ ଭୋଟ୍ ବଳରେ ବଦଳେ ନାହିଁ। ଏ ଦାୟିତ୍ୱ ସାହିତ୍ୟିକର। କିନ୍ତୁ ସେଥିପାଇଁ ସର୍ବପ୍ରଥମେ ଭାଷା-ସାହିତ୍ୟର ସାହିତ୍ୟିକମାନଙ୍କୁ ପାଶ୍ଚାତ୍ୟ ସାହିତ୍ୟରେ ପୋଷ୍ଟ-ମଡ଼ର୍ଣ୍ଣିଜିମ୍‌ର ମୋହ ଛାଡ଼ି ରିଆଲିଜମ୍ ବା ବାସ୍ତବତାବାଦର ପନ୍ଥା ଧରିବାକୁ ପଡ଼ିବ।

*୧୫/୧୧/୮୪*

# ଆତ୍ମାର ବାର୍ତ୍ତାବହ

ୟୁରୋପିୟାନ୍ ସାହିତ୍ୟ, ସୋଭିଏତ୍ ସାହିତ୍ୟ ବା ଆମେରିକାନ୍ ସାହିତ୍ୟ କହିଲେ, ସେ ସବୁ ସାହିତ୍ୟର ଏକ ନିର୍ଦ୍ଦିଷ୍ଟ ପ୍ରବୃତ୍ତି ଅଛି, ସ୍ୱାଦ ଅଛି ଓ ଚେହେରା ବି ଅଛି। ଆମେରିକାନ୍ ସାହିତ୍ୟକୁ ବାଦ୍ ଦେଲେ ଅନୁବାଦ ମାଧ୍ୟମରେ ୟୁରୋପର ବିଭିନ୍ନ ଭାଷାର ସାହିତ୍ୟ ୟୁରୋପିୟାନ୍ ସାହିତ୍ୟରେ ପରିଣତ ହୁଏ। ଫ୍ରେଞ୍ଚ୍ ଭାଷା ମୁଖ୍ୟତଃ ଏହି ଅନୁବାଦର ମାଧ୍ୟମ। ୟୁରୋପରେ ପ୍ରତ୍ୟେକ ଲେଖକ ନିଜ ମାତୃଭାଷା ବ୍ୟତୀତ ଆଉ ଗୋଟିଏ ୟୁରୋପିୟାନ୍ ଭାଷା ବି ଆୟତ୍ତ କରିଥାଆନ୍ତି। ତେଣୁ ଅନୁବାଦ ମାଧ୍ୟମରେ ପ୍ରତି ଆଞ୍ଚଳିକ ବା ଦେଶର ସାହିତ୍ୟ ୟୁରୋପୀୟ ସାହିତ୍ୟରେ ପରିଣତ ହୋଇଥାଏ। ଏପରିକି ଅଖ୍ୟାତ ଅଜ୍ଞାତ ଆଇସ୍‌ଲାଣ୍ଡର ଔପନ୍ୟାସିକ ହାଲ୍‌ଡର ଲାକ୍‌ସନେସ୍ ମଧ୍ୟ ଅନୁବାଦ ମାଧ୍ୟମରେ ନୋବେଲ୍ ପୁରସ୍କାରରେ ସମ୍ମାନିତ ହୋଇପାରିଅଛନ୍ତି।

ସୋଭିଏତ୍ ସାହିତ୍ୟ କ୍ଷେତ୍ରରେ ମଧ୍ୟ ସେହି କଥା। ଇଉ.ଏସ୍.ଏସ୍.ଆର୍.ରେ ପ୍ରତି ସୋଭିଏତ୍‌ର ସାହିତ୍ୟ ଋଷିଆନ୍ ଭାଷାରେ ଅନୂଦିତ ହୋଇ ସୋଭିଏତ୍ ସାହିତ୍ୟ ରୂପେ ପରିଚିତ ହେଉଅଛି। କିନ୍ତୁ ସେହି ଅର୍ଥରେ ଭାରତୀୟ ସାହିତ୍ୟବୋଲି କିଛି ଅଛି କି ? ଆଜି ଯାହାକୁ ଭାରତୀୟ ସାହିତ୍ୟ ବୋଲି କୁହାଯାଇପାରିବ, ତାହା ହେଲା ମହାକାବ୍ୟ ଓ ନାଟକ ଯୁଗର ସଂସ୍କୃତ ସାହିତ୍ୟ। କାରଣ, ହିମାଚଳଠାରୁ କୁମାରୀକା ପର୍ଯ୍ୟନ୍ତ, ସର୍ବତ୍ର ତାହାର ରସାମୋଦୀ ପାଠକ ରହିଛନ୍ତି। ମାତ୍ର ସାଂପ୍ରତିକ ଭାଷା ସାହିତ୍ୟ କ୍ଷେତ୍ରରେ ତାହା ଆଶା କରିବା ବିଡ଼ମ୍ବନା ମାତ୍ର। ଭାଷା ହିଁ ଏ କ୍ଷେତ୍ରରେ ସବୁଠାରୁ ବଡ଼ ପ୍ରତିବନ୍ଧକ।

ହିନ୍ଦୀରେ ମୁନ୍‌ସୀ ପ୍ରେମଚନ୍ଦ ବା ବଙ୍ଗଳାରେ କବି ରବୀନ୍ଦ୍ରନାଥ ଠାକୁରଙ୍କ ପରି କେତେକ ଭାଗ୍ୟବାନ୍ ଔପନ୍ୟାସିକ ଓ କବିଙ୍କ ବ୍ୟତୀତ ଅନ୍ୟମାନଙ୍କ କୃତି ବିଷୟରେ, ସେମାନଙ୍କ ସାଂସ୍କୃତିକ ପରିସୀମା ବାହାରେ କେହି ପ୍ରାୟ କିଛି ଜାଣନ୍ତି ନାହିଁ। ଏ ପରିସ୍ଥିତିରେ ଫକୀର ମୋହନ ସେନାପତିଙ୍କ 'ଛ ମାଣ ଆଠଗୁଣ୍ଠ' ବା 'ମାମୁ' ଉପନ୍ୟାସ, ବୈଷ୍ଣବ ଚରଣ ଦାସଙ୍କ 'ମନେମନେ', ଉପେନ୍ଦ୍ର କିଶୋର ଦାସଙ୍କ 'ମଲାଜହ୍ନ', କାଳିନ୍ଦୀ ଚରଣ



ଶେଷସ୍ତମ୍ଭ ▪ ୨୮

ପାଣିଗ୍ରାହୀଙ୍କ 'ମାଟିର ମଣିଷ' ବା ଗୋପୀନାଥ ମହାନ୍ତିଙ୍କ 'ପରଜା' ପରି ଉପନ୍ୟାସ ଯାହା ଅନୁବାଦ ମାଧ୍ୟମରେ ବିଶ୍ୱ ସାହିତ୍ୟର ମୁଖ୍ୟସ୍ରୋତରେ ସ୍ଥାନ ପାଇପାରନ୍ତା, ତାହା କେବଳ ଓଡ଼ିଆ ପାଠକ ବ୍ୟତୀତ ଓଡ଼ିଶା ବାହାରେ ଅନ୍ୟମାନଙ୍କପାଇଁ ଅଜ୍ଞାତ ହୋଇ ରହିଅଛି। ଏଥିରୁ ଅବଶ୍ୟ ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ୍ ବା ସାହିତ୍ୟ ଅକାଦେମୀଦ୍ୱାରା କୌଣସି କୌଣସି କୃତି ବିଭିନ୍ନ ଭାଷାରେ ଅନୂଦିତ ହୋଇଅଛି। ମାତ୍ର ସେସବୁ ସମୀକ୍ଷା (ରିଭିଉ) ଅଭାବରେ ବୃହତ୍ତର ପାଠକ ସମାଜରେ କୌଣସି ରେଖାପାତ କରିପାରି ନାହିଁ। ଅଥଚ, ଏସବୁ କୃତି ଭାରତୀୟ ସାହିତ୍ୟର ଯେ ଗୋଟିଏ ଗୋଟିଏ ବିଶିଷ୍ଟ ସମ୍ପଦ, ଏହା ସମସ୍ତେ ସ୍ୱୀକାର କରିବେ। ସଫଳ ଅନୁବାଦ ଓ ଅନୁବାଦକମାନଙ୍କର ଅଭାବ ଏ କ୍ଷେତ୍ରରେ ପ୍ରଧାନ ଅନ୍ତରାୟ।

ଏକ ସମୟରେ ସ୍ୱର୍ଗତ ପ୍ରଧାନମନ୍ତ୍ରୀ ଜବାହରଲାଲ ନେହରୁଙ୍କ ପ୍ରେରଣାରେ ଭାରତ ସରକାରଙ୍କ ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ୍ ଏକ ବ୍ୟାପକ ଅନୁବାଦ ଯୋଜନା ହାତକୁ ନେଇଥିଲେ। ମାତ୍ର ଏବେ ତାହା ପରିତ୍ୟକ୍ତ ହୋଇପଡ଼ିଛି। ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ ବିଭିନ୍ନ ଭାଷା ସାହିତ୍ୟକୁ ଅନୁବାଦ ମାଧ୍ୟମରେ ପରିଚିତ କରାଇବା ପରିବର୍ତ୍ତେ ମୂଳ ଇଂରାଜୀ ଲେଖା ପ୍ରକାଶ କରିବା ଉପରେ ବର୍ତ୍ତମାନ ବେଶୀ ଗୁରୁତ୍ୱ ଦେଉଛନ୍ତି। ପୁଣି, ସୃଷ୍ଟିଧର୍ମୀ ଲେଖକମାନେ ଅନୁବାଦ ଅପେକ୍ଷା ନିଜ ସୃଷ୍ଟିକର୍ମରେ ଅଧିକ ଆଗ୍ରହୀ ହୋଇଥିବା ହେତୁ ସଫଳ ଅନୁବାଦ କ୍ୱଚିତ୍ ସମ୍ଭବ ହୋଇପାରୁଅଛି। ଅଥଚ ପାଶ୍ଚାତ୍ୟ ସାହିତ୍ୟରେ ସଫଳ ଅନୁବାଦକମାନେ କ୍ରମେ ଅଧିକ ଗୁରୁତ୍ୱପୂର୍ଣ୍ଣ ହୋଇଉଠୁଛନ୍ତି। ଇଂରାଜୀ ସାହିତ୍ୟର ଛାତ୍ରମାନେ ଜାଣନ୍ତି, କବି ଫିଜରାଲଡ଼୍ ନଥିଲେ ଓମର ଖାୟାମଙ୍କ ରୁବାୟତର କାବ୍ୟିକ ସୌନ୍ଦର୍ଯ୍ୟ ସହିତ ବିଶ୍ୱବାସୀ କଦାପି ପରିଚିତ ହୋଇପାରି ନଥାନ୍ତେ। ଏବେ ନୋବେଲ୍ ପୁରସ୍କାର ବିଜେତା ସ୍ପାନିସ୍ ଲେଖକ ଗାବ୍ରିଏଲ୍ ଗାର୍ସିଆ ମାର୍କୁଇଜ୍‌ଙ୍କ 'ୱାନ୍‌ହନ୍‌ଡ୍ରେଡ୍ ଇୟର୍ସ ଅଫ୍ ସଲିଟ୍ୟୁଡ୍' ଇଂରାଜୀରେ ରାବାସାଙ୍କଦ୍ୱାରା ଅନୂଦିତ ହୋଇ ଖୁବ୍ ପ୍ରସିଦ୍ଧି ଅର୍ଜନ କରିଅଛି। କେତେକ ସମାଲୋଚକଙ୍କ ମତରେ କୁଆଡ଼େ ମୂଳ ସ୍ପାନିସ୍ ଅପେକ୍ଷା ଏହି ଇଂରାଜୀ ଅନୁବାଦଟି ଅଧିକ ସଫଳତା ଅର୍ଜନ କରିପାରିଛି। ଆମେ ଭାରତରେ ଏହି କୃତି ସହିତ ଯଦି ପରିଚିତ ହୋଇପାରୁଛୁ, ତା' କେବଳ ଅନୁବାଦ ମାଧ୍ୟମରେ।

କିନ୍ତୁ ଦୁର୍ଭାଗ୍ୟର ବିଷୟ, ଆମ ଦେଶରେ, ବିଶେଷତଃ ଓଡ଼ିଶାରେ ଏ ମାଧ୍ୟମଟି ନାହିଁ କହିଲେ ଚଳେ। ଯେଉଁ କେତେକ ଅନୁବାଦ ଅଛି, ସେସବୁ ସ୍ୱାଦ-ରୁଚିହୀନ। ଅନୁବାଦକମାନେ ଭୁଲିଯାଇଛନ୍ତି ଯେ, ଅନୁବାଦ ମଧ୍ୟ ମୂଳ ରଚନା ପରି କିମ୍ବା ତା'ଠାରୁ ବେଶି ରସାଳ ହୋଇପାରେ। ଏଥିପାଇଁ କେବଳ ନିଜ ମାତୃଭାଷାରେ ନୁହେଁ, ଯେଉଁ ଭାଷାରୁ ଅନୁବାଦ କରାଯାଇଛି, ସେ ଭାଷାର 'ଇଡ଼ିଅମ' ସହିତ ଭଲ ଭାବରେ ପରିଚୟ

ଥିବା ଆବଶ୍ୟକ। ମାତ୍ର ତାହାର ଅଭାବରେ ଅନୁବାଦ ସବୁ ନିତାନ୍ତ କାଠୁଆ ହୋଇ ପଡୁଛି। ଅନୁବାଦକମାନଙ୍କୁ ଏହି ପ୍ରସଙ୍ଗରେ ରୁଷିଆର ପ୍ରଖ୍ୟାତ କବି ଆଲେକ୍‌ଜାଣ୍ଡାର ପୁଷ୍କିନଙ୍କର ଏକ ପ୍ରସିଦ୍ଧ ଉକ୍ତି ସ୍ମରଣ କରାଇଦେଉଛି- ସେ ଅନୁବାଦକମାନଙ୍କ ସଂପର୍କରେ କହିଥିଲେ, ସେମାନେ ହେଉଛନ୍ତି "The Couriers of humam spirit" (ମନୁଷ୍ୟର ଆତ୍ମାର ବାର୍ତ୍ତାବହ) । କିନ୍ତୁ ଓଡ଼ିଆ ସାହିତ୍ୟ ପାଇଁ ଆଜି ସେ ବାର୍ତ୍ତାବହମାନେ କାହାନ୍ତି ? ମୁଁ ସେହିମାନଙ୍କ ଅପେକ୍ଷା କରିଛି।

୨୯/୧୧/୮୪

# କାବ୍ୟନାୟିକା

ପୃଥିବୀରେ ଏପରି କୌଣସି କବି ନାହାନ୍ତି, ଯାହାଙ୍କର ପ୍ରଥମ କବିତା ତାଙ୍କ ଯୌବନର ପ୍ରଥମ କାବ୍ୟନାୟିକାଦ୍ୱାରା ଅନୁପ୍ରେରିତ ହୋଇନାହିଁ। କବିଟି ଅବଶ୍ୟ ନିତାନ୍ତ କାଠୁରିଆ ହୋଇଥିଲେ, ସୂର୍ଯ୍ୟ-ଚନ୍ଦ୍ର-ଗ୍ରହ-ତାରା ବା ଗାଈଗୋରୁ ଉପରେ ତାଙ୍କର ପ୍ରଥମ କବିତା ଲେଖିଥାଇପାରନ୍ତି। ପ୍ରଥମ ଚୁମ୍ବନ ପରି, ପ୍ରଥମ କବିତା ଲେଖିବାରେ ତ ରହିଥାଏ ବହୁ ଉତ୍ତେଜନା। କିନ୍ତୁ କବିଙ୍କର ପ୍ରଥମ କାବ୍ୟଗୁଚ୍ଛ ଦିବାଲୋକ ଦେଖିବା ଯେ କିପରି ଉତ୍ତେଜନାପୂର୍ଣ୍ଣ ହୋଇପାରେ, ଅନୁଭବୀମାନେ କେବଳ ତାହା ଅନୁମାନ କରିପାରନ୍ତି।

ଊନବିଂଶ ଶତାବ୍ଦୀର ପ୍ରସିଦ୍ଧ ରୋମାଣ୍ଟିକ୍ ଇଂରାଜୀ କବି ଲର୍ଡ଼ ବାଇରନ୍‌ଙ୍କୁ ସେତେବେଳେ ବୟସ ପ୍ରାୟ ସତର। କିଛି ବର୍ଷ ପୂର୍ବରୁ ସେ ଏକାଧିକ ବାଳିକାଙ୍କ ସହିତ ପ୍ରେମରେ ପଡ଼ି, କାହାଠାରୁ ଗୋଟିଏ ଚୁମ୍ବନ, କାହାଠାରୁ ଟିକିଏ ସ୍ପର୍ଶ, ଆଉ କାହାଠାରୁ ବା ଟିକିଏ ଆଡ଼ଚାହାଣୀ ଓ ପରିଶେଷରେ ସମସ୍ତଙ୍କଠାରୁ ଉପେକ୍ଷା ବ୍ୟତୀତ ଆଉ କିଛି ପାଇ ନଥିଲେ। ମାତ୍ର ଏହି ସ୍ୱପ୍ନିଳ ଅନୁଭୂତି ତାଙ୍କୁ କରିଥିଲା କବି। ଆଦ୍ୟ ଯୌବନର ସବୁ କାବ୍ୟନାୟିକାଙ୍କ ଉଦ୍ଦେଶ୍ୟରେ ସେ ଲେଖିଥିଲେ କବିତା। ଏଥିପାଇଁ ପ୍ରକାଶକ ତ ମିଳନ୍ତେ ନାହିଁ; ସେ ତେଣୁ ନିଜ ଖର୍ଚ୍ଚରେ ରାତାରାତି ଉଜାଗର ରହି, ତାଙ୍କର ପ୍ରଥମ କବିତାଗୁଚ୍ଛ Fugitive Pieces ଛାପାଇଲେ। ଯେଉଁଦିନ ଏହାର ପ୍ରଥମ କେତେଖଣ୍ଡ କପି ଲର୍ଡ଼ ବାଇରନ୍‌ଙ୍କ ହାତକୁ ଆସିଲା; ସେଦିନର ଆନନ୍ଦ, ଉନ୍ମାଦନା କେଜାଣି ପ୍ରେମିକାର ସାନ୍ନିଧ୍ୟଠାରୁ ସୁଦ୍ଧା ବଳିଗଲା। ସେ କବି ! ପୌରୁଷର ଏହାଠାରୁ ବଳି ଆଉ କି ବୀର୍ଯ୍ୟଦୀପ୍ତ ଘୋଷଣା ଥାଇପାରେ ? ଅତି ଉତ୍ସାହରେ ଲର୍ଡ଼ ବାଇରନ୍ ପ୍ରଥମ କପିଟିକୁ ଧରାଇଦେଲେ ତାଙ୍କର ଜଣେ ଶୁଭାକାଂକ୍ଷୀ ପାଦ୍ରୀ ବେଚରଙ୍କୁ ! ବେଚର୍ ସହଜେ ପାଦ୍ରୀ; ତହିଁରେ ପୁଣି ଧର୍ମାନ୍ଧ କାଷ୍ଠରସିକ। ବହିଟିରେ ଗୋଟିଏ ପ୍ରେମ କବିତା ଥିଲା, ଯାହାର ଶୀର୍ଷକ- 'ଟୁ ମେରୀ' ବା 'ମେରୀଙ୍କ ପ୍ରତି'। ଏ ମେରି ମଧ୍ୟ ଥିଲେ ଲର୍ଡ଼ ବାଇରନ୍‌ଙ୍କ ଆଦ୍ୟ ଯୌବନର ନାୟିକାମାନଙ୍କ ମଧ୍ୟରୁ ଜଣେ। ତାଙ୍କରି ଉଦ୍ଦେଶ୍ୟରେ ଏ କବିତାଟି ରଚିତ ହୋଇଥିଲା।

ପାଦ୍ରୀ ବେକରଙ୍କ ଆଖିରେ ଏ କବିତାଟି ପଡ଼ିବା ମାତ୍ରେ ସେ କ୍ରୋଧରେ ଅସ୍ଥିର। ମେରୀ ଖ୍ରୀଷ୍ଟଧର୍ମରେ ପୂଜନୀୟା ଦେବୀ। ତାଙ୍କ ନାମରେ ପୁଣି ଏପରି କବିତା ? ବିଚରା ବାଇରନ୍ ବେଚର୍‌ଙ୍କ ପାଖରୁ ଆଶା କରୁଥିଲେ ପ୍ରଶସ୍ତି, କିନ୍ତୁ ପରିଣାମରେ ପାଇଲେ ବିଷମ ପତ୍ରାଘାତ। ବାଇରନ୍ କିଛି ଗୋଟାଏ ତ୍ରୁଟି କରିପକାଇଛନ୍ତି ଭାବି ଛାପାଖାନାରେ ଥିବା ଛାପାବହିର କପିଗୁଡ଼ିକୁ ପୋଡ଼ି ଧ୍ୱଂସ କରିଦେଲେ। ଦୈବାତ୍, ତା' ପୂର୍ବରୁ ଖଣ୍ଡେ କପି ଏଡ଼ିନ୍‌ବର୍ଗ ବିଶ୍ୱବିଦ୍ୟାଳୟକୁ ଚାଲିଯାଇଥିଲା। ତା' ନହେଲେ ଲର୍ଡ଼ ବାଇରନଙ୍କ ପ୍ରଥମ କବିତାଗୁଚ୍ଛର ସତ୍ତା ଇ ନଥାନ୍ତା। (କିନ୍ତୁ, ପାଦ୍ରୀ ବେଚର୍ ତାଙ୍କ କପିଟିକୁ ସଯତ୍ନ ଲୁଚାଇ ରଖିଥିଲେ, ହୁଏତ ନିରୋଳା ମୁହୂର୍ତ୍ତରେ ପଢ଼ି ଉପଭୋଗ କରିବାପାଇଁ!) ଲର୍ଡ଼ ବାଇରନ୍ କିନ୍ତୁ ଠିକ୍ ଏହା ପରେ ପରେ ସେହି କବିତାଗୁଚ୍ଛର ଶୀର୍ଷକ ବଦଳାଇ, ସେଥିରୁ 'ଟୁ ମେରୀ' କବିତାଟି ବାଦ୍ ଦେଇ ତାହାକୁ 'Poems on Various Occasions' ନାମରେ ଛପାଇ ଦେଲେ। ୧୮୦୭ ଖ୍ରୀଷ୍ଟାବ୍ଦ ପହିଲା ଜାନୁଆରି ଦିନ ଏହା ପ୍ରକାଶ ପାଇଲା। ଉଲ୍ଲେଖ କରିବା ନିଷ୍ପ୍ରୟୋଜନ, ଏହି କବିତାଗୁଚ୍ଛଟି ସେଦିନ ଲର୍ଡ଼ ବାଇରନ୍‌ଙ୍କୁ ଇଂରାଜୀ ସାହିତ୍ୟ ଜଗତରେ ବେଶ୍ ଆଦୃତ କରିଦେଇଥିଲା।

ଲର୍ଡ଼ ବାଇରନ୍‌ଙ୍କ ଜୀବନର ଏହି ଘଟଣାର ଗୋଟିଏ ନୀତିଶିକ୍ଷା ରହିଛି। ତରୁଣ କବି ଓ ଲେଖକମାନେ ସେମାନଙ୍କ କୃତି ସଂପର୍କରେ କାଳେ କାଳେ ବେଚର୍‌ଙ୍କ ପରି କାଷ୍ଠରସିକମାନଙ୍କ ପାଖକୁ ସେମାନଙ୍କ ମତାମତ ବା ପ୍ରଶସ୍ତି ପାଇଁ ଯାଇଥାଆନ୍ତି। ମାତ୍ର ସେମାନେ କଦାପି ଉତ୍ସାହ ତ ଦିଅନ୍ତି ନାହିଁ; ଶୁଣାନ୍ତି ହିତୋପଦେଶ ! ତରୁଣ କବି ବା ଲେଖକଟି ବିଚାରା ସେହି ଉପଦେଶାଘାତରେ ଧରାଶାୟୀ ହୋଇପଡ଼େ। ଲର୍ଡ଼ ବାଇରନ୍‌ଙ୍କ ପରି ଆତ୍ମପ୍ରତ୍ୟୟ ଥାଏ ବା କେତେଜଣଙ୍କର ? କବି ବା ଲେଖକପାଇଁ ସ୍ୱପ୍ନ କେବଳ ଯଥେଷ୍ଟ ନୁହେଁ, ପ୍ରୟୋଜନ ମଧ୍ୟ ନିଜର ସୃଷ୍ଟିକର୍ମରେ ପ୍ରଚଣ୍ଡ ଆତ୍ମପ୍ରତ୍ୟୟ।

୬।୧୨।୮୪

# ଉପନ୍ୟାସ-ସଙ୍କଟ

କେବଳ ଓଡ଼ିଆ ସାହିତ୍ୟ କାହିଁକି, ଅନ୍ୟ ଭାରତୀୟ ଭାଷା-ସାହିତ୍ୟରେ ମଧ୍ୟ ଲୋକପ୍ରିୟ, ବଜାର କାଟ୍‌ତିଧର୍ମୀ ଉପନ୍ୟାସମାନ ପ୍ରଚୁର ପରିମାଣରେ ପ୍ରକାଶିତ ହେଉଥିଲେ ହେଁ ସାହିତ୍ୟର ଇତିହାସରେ ପଦଚିହ୍ନ ରଖିଯିବା ଭଳି ବସ୍ତୁନିଷ୍ଠ, ଭାବନିଷ୍ଠ ରସୋତ୍ତୀର୍ଣ୍ଣ ସାର୍ଥକ ଉପନ୍ୟାସ ଆଉ ପ୍ରାୟ ଲେଖାଯାଉ ନାହିଁ କହିଲେ ଚଳେ। ଯଦି ହେଉଥାଆନ୍ତା, ତା'ହେଲେ ସେ ସବୁ ଆଲୋଚିତ ହୋଇ, ଲୋକଦୃଷ୍ଟିକୁ ଆସନ୍ତାଣି। ଏଥିରେ ହୁଏତ କେଉଁଠି କେଉଁଠି ବ୍ୟତିକ୍ରମ ଥାଇପାରେ। କିନ୍ତୁ ମୋଟାମୋଟି ଭାବରେ ସାଂପ୍ରତିକ ଉପନ୍ୟାସର ଏହା ହେଉଛି ଚେହେରା।

ଓଡ଼ିଆ ସାହିତ୍ୟର ଏକ ଅସମୟରେ କାଳିନ୍ଦୀ ଚରଣ ପାଣିଗ୍ରାହୀ, କାହ୍ନୁଚରଣ ମହାନ୍ତି, ଗୋପୀନାଥ ମହାନ୍ତିଙ୍କ ବ୍ୟତୀତ ଆହୁରି ବହୁ ଗୌଣ ଔପନ୍ୟାସିକ ଉପନ୍ୟାସ ରଚନା କରିଥିଲେ। ଓଡ଼ିଆ ଉପନ୍ୟାସ କେହି ଆଲୋଚନା କଲେ, ସେଇମାନଙ୍କ ଯୁଗ ଓ କାଳକୁ ମୁଖ୍ୟତଃ ଆଶ୍ରୟ କରିବାକୁ ହିଁ ପଡ଼ିବ। ସେମାନେ ଏବେ ନିଃଶେଷିତ ବୟସ ପରି, ସୃଷ୍ଟି ମଧ୍ୟ ସୀମିତ। କିନ୍ତୁ ବର୍ଷୀୟାନ୍ ଔପନ୍ୟାସିକମାନେ ଆଜି ନୀରବ ହୋଇପଡ଼ିଥିବା ବେଳେ, ସେମାନଙ୍କ ସ୍ଥାନ ପୂରଣ କରିବାପାଇଁ ଉତ୍ତର ସାଧକମାନେ କାହାନ୍ତି ? ଫକୀରମୋହନ ସେନାପତି ଯେଉଁ ଉପନ୍ୟାସ ସବୁ ଲେଖିଥିଲେ, ସେସବୁ ଏକାଧାରରେ ଥିଲା ଯେତିକି ଲୋକପ୍ରିୟ, ସେତିକି ବସ୍ତୁନିଷ୍ଠ ଓ ଭାବାବିଷ୍ଟ ମଧ୍ୟ। ତାଙ୍କ ଉପନ୍ୟାସମାନଙ୍କରେ ଉନବିଂଶ ଶତାବ୍ଦୀର ଶେଷ ଭାଗ ଓ ବିଂଶ ଶତାବ୍ଦୀର ଆଦ୍ୟ ଭାଗରେ ଓଡ଼ିଶାର ସାମାଜିକ, ଅର୍ଥନୈତିକ ଓ ସାଂସ୍କୃତିକ ଚିତ୍ର ବେଶ୍ ପରିସ୍ଫୁଟ ହୋଇଅଛି। ବହୁ ବର୍ଷର ବ୍ୟବଧାନ ପରେ ସୁଦ୍ଧା, ଫକୀରମୋହନଙ୍କର ଚରିତ୍ର ସବୁ ଆଜି ମଧ୍ୟ ଜୀବନ୍ତ ରହିପାରିଛନ୍ତି। କାଳିନ୍ଦୀ ଚରଣ 'ମାଟିର ମଣିଷ' ଉପନ୍ୟାସରେ ଅତି ରସୋତ୍ତୀର୍ଣ୍ଣ ଭାବରେ ଫୁଟାଇ ପାରିଛନ୍ତି ଯୌଥ ପରିବାରର 'ଟେନ୍‌ସନ୍'। କାହ୍ନୁଚରଣ ସେହିପରି ତାଙ୍କ ଉପନ୍ୟାସଗୁଡ଼ିକରେ ବିଂଶ ଶତାବ୍ଦୀର ମଧ୍ୟ ଭାଗରେ ପଲ୍ଲୀଭିତ୍ତିକ ଓଡ଼ିଶାର, ପଲ୍ଲୀ ସମାଜର ଚିତ୍ର ଅତି ନିଖୁଣ ଭାବରେ ଚିତ୍ରଣ

କରିଛନ୍ତି। ଗୋପୀନାଥ ସେହିପରି 'ପରଜା', 'ଅମୃତର ସନ୍ତାନ' ଓ 'ଦାଦିବୁଢ଼ା' ପ୍ରଭୃତି ଉପନ୍ୟାସରେ ଫୁଟାଇ ପାରିଛନ୍ତି ପରଜା, କନ୍ଧ ଓ ସୌରା ସମାଜର ଚିତ୍ର। ଏମାନଙ୍କୁ ଛାଡ଼ିଦେଲେ ଅନ୍ୟ ଗୌଣ ଔପନ୍ୟାସିକମାନଙ୍କର ଉପନ୍ୟାସରେ ସୁଦ୍ଧା ରହିଥିଲା ଜୀବନର ବାସ୍ତବ ଚିତ୍ର ସହିତ ଭାବଧର୍ମିତାର ସ୍ପର୍ଶ। କିନ୍ତୁ, ସପ୍ତଦଶକର ମଧ୍ୟଭାଗରୁ ଓଡ଼ିଆ ଉପନ୍ୟାସ କ୍ଷେତ୍ରରେ ଯେଉଁ ଭଟ୍ଟା ପଡ଼ିବା ଆରମ୍ଭ କରିଛି, ତାହା ବାସ୍ତବିକ ଉଦ୍‌ବେଗଜନକ। ଆଜିର ଲେଖକମାନଙ୍କ ମଧ୍ୟରେ ପ୍ରତିଭା ବା ଶକ୍ତିର ଅଭାବ ଅଛି ବୋଲି ମୁଁ ଆଦୌ ବିଶ୍ୱାସ କରେ ନାହିଁ। ପ୍ରକାଶକମାନେ ମଧ୍ୟ ଖଣ୍ଡେ ନୂଆ ଉପନ୍ୟାସ ଛାପିବାପାଇଁ ବଡ଼ ଉତ୍କଣ୍ଠାରେ ଅନାଇ ବସିଛନ୍ତି। ପାଠକମାନେ ମଧ୍ୟ ବ୍ୟାକୁଳ ଭାବେ ଖୋଜୁଛନ୍ତି ଖଣ୍ଡେ ନୂଆ ସାର୍ଥକ ଉପନ୍ୟାସ। ତା' ହେଲେ ଅଟକୁଛି କେଉଁଠି ? ଆଉ କାହିଁକି ପାଠକଙ୍କଠାରୁ ଆରମ୍ଭ କରି ସମାଲୋଚକଙ୍କ ପର୍ଯ୍ୟନ୍ତ ସବୁ ମହଲରେ ଚହଳ ପକାଇଲା ପରି, କୌଣସି ଉପନ୍ୟାସ ଓଡ଼ିଆରେ ଅନ୍ତତଃ ପ୍ରକାଶ ପାଉନାହିଁ ? ଲେଖକ ଓ ସମାଲୋଚକମାନେ ଏହା ନିଶ୍ଚୟ ଗଭୀର ଭାବରେ ଚିନ୍ତା କରିବାର କଥା।

ମୋର ମନେହୁଏ, ଏବର ଲେଖକମାନେ କ'ଣ ଲେଖିବେ, କିପରି ଲେଖିବେ, କେଉଁ ଆଙ୍ଗିକରେ ଲେଖିବେ, ସଲ୍‌ବେଲୋ ବା ସାଲିଙ୍ଗରଙ୍କ ଶୈଳୀରେ ଲେଖିବେ ନା ପ୍ରାକ୍-ଆଧୁନିକ ଆଙ୍ଗିକରେ ଲେଖିବେ, ତାହାହିଁ ହେଉଛି ସେମାନଙ୍କ ପକ୍ଷରେ ସମସ୍ୟା। କିନ୍ତୁ ସଲବେଲୋ ବା ସାଲିଙ୍ଗର ଓଡ଼ିଶାରେ କାହିଁକି, ଭାରତରେ ଯେ ବିଲ୍‌କୁଲ୍ ଅଚଳ ହୋଇଯିବେ, ତାହା ସେମାନେ ଚିନ୍ତାକରି ପାରନ୍ତି ନାହିଁ। ଚଳ୍‌ତିର ମୋହରେ, ସେମାନେ ସର୍ବାଧୁନିକ ପାଶ୍ଚାତ୍ୟ ଲେଖକମାନଙ୍କ ପ୍ରତି ଆକୃଷ୍ଟ। କିନ୍ତୁ, ଗାଆଁ କମାରଶାଳରେ ଗୋଟିଏ କମ୍ପ୍ୟୁଟର ବସାଇଦେଲେ, ତାହା ଯେପରି ଖାପଛଡ଼ା ହେବ, ଓଡ଼ିଶାର ପାଣିପବନରେ ସଲ୍‌ବେଲୋ ପ୍ରମୁଖ ସାଂପ୍ରତିକ ଆମେରିକାନ୍ ଔପନ୍ୟାସିକମାନଙ୍କୁ ଆମଦାନି କଲେ ତାହା ସେଇପରି ଖାପଛଡ଼ା ହୋଇଯିବ। ପୁଣି କେଉଁ କଥାବସ୍ତୁ ନେଇ ସେମାନେ ଉପନ୍ୟାସ ଲେଖିବେ, ସେଥିପାଇଁ କି ପ୍ରକାର ଚରିତ୍ର ସୃଷ୍ଟି କରିବେ, କି ପ୍ରକାର ଘଟଣାର ବିନ୍ୟାସରେ ଚରିତ୍ରସବୁ ପରିସ୍ଫୁଟ ହେବେ, ଏହିପରି ଆନୁଷଙ୍ଗିକ ସମସ୍ୟାମାନ ମଧ୍ୟ ରହିଛି।

ସାଂପ୍ରତିକ ଅଧିକାଂଶ ଉପନ୍ୟାସରେ ଯୌନତା ଓ ଶସ୍ତା ପ୍ରେମ ବ୍ୟତୀତ ଆଉ କିଛି ଦେଖିବାକୁ ମିଳେ ନାହିଁ। ଏପରିସବୁ ଉପନ୍ୟାସ ଲୋକପ୍ରିୟ ହୋଇପାରେ, ମାତ୍ର 'ସିରିଅସ୍' ପାଠକ ଓ ସମାଲୋଚକମାନଙ୍କୁ ଏହା କଦାପି ସ୍ପର୍ଶ କରିପାରିବ ନାହିଁ। କେଉଁ ଚରିତ୍ର ନେଇ ବା ଏମାନେ ଲେଖିବେ ? ବୃହତ୍ତର ସମାଜ ଓ ଜୀବନ ସଂଗ୍ରାମ ସହିତ ଏମାନଙ୍କର ନିବିଡ଼ ପରିଚୟ ନାହିଁ। ଯାହା କିଛି ଅନୁଭବ, ସେସବୁ ଉପରଠାଉରିଆ ! ଅଧିକାଂଶ ଲେଖକ ପୁଣି ସୌଖୀନ ଲେଖକ। ଲେଖା ତ ଓଡ଼ିଶା ପରି ରାଜ୍ୟରେ ପେସା ହୋଇ

ନପାରେ। ତଥାପି ଏମାନଙ୍କ ପାଇଁ ନିଶା ସୁଦ୍ଧା ନୁହେଁ। ତେଣୁ, ଜୀବନ୍ତ ଚରିତ୍ର ସୃଷ୍ଟି ମଧ୍ୟ ସମ୍ଭବ ହେଉନାହିଁ। ଆଉ, ଘଟଣାର ବିନ୍ୟାସପାଇଁ ଯେଉଁ ବହୁଦର୍ଶିତା ଓ ଜୀବନ ସଂପର୍କରେ ଗଭୀର ଅଭିଜ୍ଞତା ପ୍ରୟୋଜନ, ତାହାର ମଧ୍ୟ ଅଭାବ।

ସାଂପ୍ରତିକ ଲେଖକମାନଙ୍କର ପ୍ରଚେଷ୍ଟାକୁ ଗୌଣ କରିଦେବା ଉଦ୍ଦେଶ୍ୟରେ ମୁଁ ଏହା ଲେଖୁନାହିଁ। ମୁଁ କେବଳ ଏହି ସ୍ତମ୍ଭରେ କେତେକ ପ୍ରଶ୍ନ ଉତ୍‌ଥାପନ କରିଛି- ସେମାନଙ୍କର ବିଚାର ଓ ବିଶ୍ଳେଷଣପାଇଁ।

୧୩/୧୨/୮୪

# ଆଙ୍ଗିକ ଓ ଆତ୍ମିକ

ସଂପ୍ରତି ଆଙ୍ଗିକର ମୋହ, କବିମାନଙ୍କଠାରୁ ଆରମ୍ଭ କରି ଔପନ୍ୟାସିକ ଓ କ୍ଷୁଦ୍ରଗଳ୍ପ ଲେଖକମାନଙ୍କ ପର୍ଯ୍ୟନ୍ତ ସମସ୍ତଙ୍କୁ ପ୍ରବଳ ଭାବରେ ଘାରିଛି । ବସ୍ତୁତଃ ସାଂପ୍ରତିକ ଭାବନା, ଆବେଗ ଓ ଅନୁଭବକୁ ଅତୀତ ଦିନର ଆଙ୍ଗିକ ମାଧ୍ୟମରେ ରସୋତ୍ତୀର୍ଣ୍ଣ ଭାବରେ ପ୍ରକାଶ କରିବା ସମ୍ଭବ ନୁହେଁ । ଓଡ଼ିଆ ସାହିତ୍ୟର କ୍ରମବିକାଶଧାରାକୁ ଲକ୍ଷ୍ୟକଲେ ଦେଖାଯିବ, ଓଡ଼ିଆ ସାହିତ୍ୟରେ ଆଧୁନିକତାର ପ୍ରକାଶ ନୂତନ ଆଙ୍ଗିକ ମାଧ୍ୟମରେ ପ୍ରକାଶିତ ଓ ବିକଶିତ ହୋଇଆସିଛି । ରାଧାନାଥଙ୍କ 'ମହାଯାତ୍ରା' କାବ୍ୟର ଭାବସବୁ କ୍ଲାସିକାଲ୍ ବା ଧ୍ରୁପଦୀ । ଏହି କାବ୍ୟର ଆବେଗ ଓ ଭାବସଂପଦ, ତାଙ୍କ ପୂର୍ବବର୍ତ୍ତୀ କବିମାନଙ୍କର, ଏପରିକି ତାଙ୍କ ସମସାମୟିକ କାବ୍ୟକାର୍ତ୍ତିମାନଙ୍କର ଛନ୍ଦୋବଦ୍ଧ ଆଳଙ୍କାରିକ ଶୈଳୀରେ କଦାପି ରସୋତ୍ତୀର୍ଣ୍ଣ ଭାବରେ ପ୍ରକାଶ କରାଯାଇ ପାରିନଥାନ୍ତା । ସେଥିପାଇଁ କବିବର ରାଧାନାଥ 'ମହାଯାତ୍ରା'ରେ ଅମିତ୍ରାକ୍ଷର ଛନ୍ଦର ଶୈଳୀ ଓ ଆଙ୍ଗିକ ଅବଲମ୍ବନ କରିଥିଲେ ।

ଇଂରାଜୀ କବି ମିଲ୍‌ଟନ୍ ସପ୍ତଦଶ ଶତାବ୍ଦୀରେ ଅମିତ୍ରାକ୍ଷର ଛନ୍ଦର ପ୍ରବର୍ତ୍ତନ କରିଥିଲେ । ତାହା ତିନି ଶତାବ୍ଦୀ ପରେ ଓଡ଼ିଆ ସାହିତ୍ୟକୁ ଆସି 'ମହାଯାତ୍ରା'ରେ ସପିଣ୍ଡିକୃତ ହୋଇପାରିଥିଲା ।

ଏଠାରେ ଲକ୍ଷ୍ୟ କରିବାର କଥା, ଓଡ଼ିଆ କାବ୍ୟ-ରସିକମାନେ ଏହି କାବ୍ୟ ଶୈଳୀ ସହିତ ପୂର୍ବରୁ ପରିଚିତ ନଥିଲେ ହେଁ, 'ମହାଯାତ୍ରା' କାବ୍ୟର ବକ୍ତବ୍ୟ ଓ ଆତ୍ମା ଓଡ଼ିଆ-ପାଠକମାନଙ୍କର ଅବଚେତନକୁ ସ୍ପର୍ଶ କରିବାରେ କୌଣସି ପ୍ରତିବନ୍ଧକ ନଥିଲା । କାରଣ ଏହାର ବିଷୟବସ୍ତୁ ଥିଲା ମହାଭାରତ ପରି ପ୍ରାଚୀନ । ତଥାପି ଏଥିରେ ସେ ଊନବିଂଶ ଶତାବ୍ଦୀରେ ଉନ୍ମେଷ ଲାଭ କରିଥିବା ଜାତୀୟତାବାଦର ଆବେଗ ପ୍ରଭୃତି କେତେକ ନୂତନ ଆଭିମୁଖ୍ୟ, ମହାଭାରତବର୍ଣ୍ଣିତ ବିଷୟବସ୍ତୁର ପରିସର ମଧ୍ୟରେ ଅତି ନିଖୁଣ ଭାବରେ ଗ୍ରଥିତ ହୋଇପାରିଥିଲା । ଏହିପରି ଓଡ଼ିଆ ସାହିତ୍ୟରୁ ବହୁ ଉଦାହରଣ ଦିଆଯାଇପାରିବ, ଯେଉଁଠି ନୂତନ ନୂତନ ଶୈଳୀ ଓ ଆଙ୍ଗିକର ଅନୁଶୀଳନ କରାଯାଇଥିଲେ ହେଁ ତାହାର

ସୁଚିନ୍ତିତ ସପିଣ୍ଡୀକରଣ ହେତୁ ଓଡ଼ିଆ ସାହିତ୍ୟର କ୍ରମ ବିକାଶକୁ ସେ ସବୁ ସମୃଦ୍ଧ କରିଛି ସିନା, ତାହାକୁ ବାଧାଗ୍ରସ୍ତ କରି ନାହିଁ।

ଏଠାରେ ଏ ପ୍ରସଙ୍ଗରେ ସୂଚନା ଦେବାର ଉଦ୍ଦେଶ୍ୟ ହେଉଛି, ସାଂପ୍ରତିକ ସାହିତ୍ୟରେ ଆଙ୍ଗିକ ପ୍ରତି ଯେତେଟା ଗୁରୁତ୍ୱ ଆରୋପ କରାଯାଉଛି, ଆତ୍ମା ଓ ବକ୍ତବ୍ୟ ପ୍ରତି ସେତେଟା ଗୁରୁତ୍ୱ ଦିଆଯାଉ ନାହିଁ। ପୁଣି ନୂଆ ନୂଆ ଆଙ୍ଗିକ ଆମଦାନି କଲାବେଳେ ସେ ସବୁ କିପରି ସଫଳ ଭାବରେ ଓଡ଼ିଆ ସାହିତ୍ୟରେ, ତାହାର ମାଟି ଓ ଜଳବାୟୁରେ, ସପିଣ୍ଡୀକୃତ ହୋଇପାରିବ ସେ ଦିଗରେ ଲେଖକମାନେ ସଚେତନ ଥିବାଭଳି ମନେ ହେଉ ନାହାନ୍ତି। କିନ୍ତୁ ଆଙ୍ଗିକର ମୋହ କେବଳ ଯଥେଷ୍ଟ ନୁହେଁ। ଆଙ୍ଗିକ ଯେତେ ଅଭିନବ ଓ ଚମତ୍କାର ହେଲେ ସୁଦ୍ଧା, ଏଥିରେ ଯଦି ବକ୍ତବ୍ୟ ନଥାଏ ବା ବହୁ ରୋମନ୍ଥିତ ଅନୁଭୂତି ସବୁ ସର୍ବାଧୁନିକ ଆଙ୍ଗିକରେ କେତେଟା 'ଇମେଜ୍' ସାହାଯ୍ୟରେ ପ୍ରକାଶ କରାନଯାଏ, ତା'ହେଲେ ସାହିତ୍ୟର ଅଙ୍ଗ ଓ ଆତ୍ମା ମଧ୍ୟରେ ଦୁର୍ଲଙ୍ଘ୍ୟ ବ୍ୟବଧାନ କେବଳ ଯେ ରସସିଦ୍ଧିକୁ ବ୍ୟାହତ କରେ ତାହା ନୁହେଁ, ପାଠକମାନଙ୍କ ଚେତନାକୁ ମଧ୍ୟ ଏହା ସ୍ପର୍ଶ କରିପାରେ ନାହିଁ।

କବି ବା ଲେଖକ କେବଳ ନିଜର ପରିତୃପ୍ତିପାଇଁ ଲେଖିବାର କୌଣସି ଅର୍ଥ ହୁଏ ନାହିଁ। ଏହା ମଧ୍ୟ )ସାହିତ୍ୟର ଉଦ୍ଦେଶ୍ୟ ନୁହେଁ। ସେଥିପାଇଁ ମୁଁ କହେ ଆଙ୍ଗିକ କେବଳ ଯଥେଷ୍ଟ ନୁହେଁ। ମଫସଲ ଗାଁର ମାଟ୍ରିକ୍ ଫେଲ୍ କୌଣସି ଯୁବକ ଯଦି ଗୋଟାଏ ଚକଚକିଆ ବ୍ଲୁ ଲାଗୁନ୍ ଜିନ୍ସ୍ ପିନ୍ଧି, ମୁଣ୍ଡରୁ କେରାକେରା ବାଳ ଝୁଲାଇ, ଆଖିରେ ଗୋ ଗୋ କଳା ଚଷମା ପିନ୍ଧି ଦାଣ୍ଡକୁ ବାହାରେ, ତାକୁ ଯେମିତି କେହି 'ମଡ଼ର୍ଣ୍ଣ' ବୋଲି କହିବେ ନାହିଁ, ସେହିପରି ସର୍ବାଧୁନିକ ଆଙ୍ଗିକ ପ୍ରୟୋଗଦ୍ୱାରା କେବଳ ପ୍ରାକ୍ ଆଧୁନିକ ଯୁଗର ଭାବଧାରା ଘେନି କେହି କବିତା, ଗଳ୍ପ ବା ଉପନ୍ୟାସ ଲେଖିଲେ ତାହା କଦାପି ମଡ଼ର୍ଣ୍ଣ ହୋଇଯିବ ନାହିଁ। ଆଙ୍ଗିକ ଏକ ପନ୍ଥା ମାତ୍ର। ଏହା ଲକ୍ଷ୍ୟ ହେବା ଉଚିତ ନୁହେଁ।

୨୦/୧୨/୮୪

# ନବବର୍ଷର ଶୁଭେଚ୍ଛା

ନୂଆ ବର୍ଷର ପ୍ରଥମ ସକାଳେ, ଅତୀତ ବର୍ଷଗୁଡ଼ିକର ଫଟୋ ଆଲବମ୍ ସବୁ ଝଡ଼ାପୋଛା କରିବାଠାରୁ ବଳି ଦୟନୀୟ କାର୍ଯ୍ୟ ଆଉ କିଛି ନାହିଁ। ବର୍ତ୍ତମାନର ବିବର୍ଣ୍ଣ ପୃଷ୍ଠଭୂମିରେ, ଅତୀତ ଦିନର ଫିକା ପଡ଼ିଆସୁଥିବା ଏକଦା ଉଜ୍ଜ୍ୱଳ ଫଟୋଗ୍ରାଫ୍‌ଗୁଡ଼ିକୁ ଦେଖିଲେ, ନିଜ ପ୍ରତି ବାସ୍ତବିକ କରୁଣା ଜନ୍ମେ। ଯାହାହେଉ, ଏ ବର୍ଷ ବର୍ଷାରମ୍ଭ ଦିନ ସକାଳେ, ମୁଁ ସେଇ ପୁରୁଣା ଅଭ୍ୟାସବଶତଃ ଆଲବମ୍ ସବୁ ଝଡ଼ାପୋଛା କରୁଥିବା ବେଳେ ହଠାତ୍ ଆଜିଠୁ ୧୫ ବର୍ଷ ତଳେ, କଲିକତାର ନେସନାଲ୍ ଲାଇବ୍ରେରୀ ହଲ୍‌ରେ ମୋର 'ନୀଳଶୈଳ' ଉପନ୍ୟାସପାଇଁ, ମୋତେ କେନ୍ଦ୍ର ସାହିତ୍ୟ ଅକାଦମୀ ଉପାୟନ ପ୍ରଦାନର କେତେଖଣ୍ଡ କୀଟଦଂଷ୍ଟ ଫଟୋଗ୍ରାଫ୍ ଦେଖିବାକୁ ଆଦରରେ ଉଠାଇ ଧରିଲି। ମଞ୍ଚ ଉପରେ ଅକାଦମୀର ସଭାପତି, ଭାରତର ବିଶିଷ୍ଟ ବିଦ୍ୱାନ, ସ୍ୱର୍ଗତ ଡକ୍ଟର ସୁନୀତି କୁମାର ଚାଟାର୍ଜୀ ଓ କାର୍ଯ୍ୟକାରୀ ସମିତିର ସଦସ୍ୟ ଡକ୍ଟର ହରେକୃଷ୍ଣ ମହତାବ ଉପସ୍ଥିତ ଥିଲେ। ୧୫ ବର୍ଷ ତଳର ଡକ୍ଟର ମହତାବଙ୍କ ଚେହେରାକୁ ମୁଁ ହଠାତ୍ ଚିହ୍ନି ନପାରି ଚଷମା କାଚ ପୋଛିଲି। ସୁନ୍ଦର ସ୍ୱାସ୍ଥ୍ୟପୁଟ ଚେହେରା। ଦିଲ୍ଲୀରେ ଉପାୟନ ପ୍ରଦାନ ଉତ୍ସବରେ ମୁଁ ଯୋଗ ଦେଇ ନଥିବାରୁ ମୋ ପାଇଁ ଓ ସେ ବର୍ଷ ହିନ୍ଦୀ ସାହିତ୍ୟରେ ଯିଏ ଉପାୟନ ପାଇଥିଲେ ତାଙ୍କ ପାଇଁ ଏଇ ସ୍ୱତନ୍ତ୍ର ଉତ୍ସବର ଆୟୋଜନ ହୋଇଥିଲା।

ସଭାକକ୍ଷ କଲିକତାର ସୁଧୀବୃନ୍ଦଙ୍କଦ୍ୱାରା ଭରପୂର ଥିଲା। ଏ ଉପଲକ୍ଷ୍ୟରେ ଉପାୟନ ବିଜେତାଙ୍କୁ ଯେ ଗୋଟାଏ ଭାଷଣ ଦେବାକୁ ପଡ଼େ, ମୁଁ ଜାଣି ନଥିଲି କିମ୍ବା ସେମାନେ ମୋତେ ଆଗରୁ ଏ ସଂପର୍କରେ ସୂଚନା ଦେଇ ନଥିଲେ। ଉପାୟନ ଗ୍ରହଣ ପୂର୍ବରୁ, ଅକାଦେମୀର ସଂପାଦକ, ହଠାତ୍ ଉଠିପଡ଼ି ମୋତେ ଗୋଟିଏ ସଂକ୍ଷିପ୍ତ ଭାଷଣ ଦେବାପାଇଁ ଅନୁରୋଧ କଲେ। ଦୁଇ-ତିନି ମିନିଟ୍ କିଂକର୍ତ୍ତବ୍ୟବିମୂଢ଼ ପରି ଠିଆ ହୋଇ ରହିବା ପରେ, ଓଡ଼ିଆରେ ଭାଷଣ ଦେଲି। ଓଡ଼ିଆ ଓ ବଙ୍ଗଳା ଭାଷା ମଧ୍ୟରେ କୌଣସି ପାର୍ଥକ୍ୟ ନାହିଁ, କେବଳ କ୍ରିୟାପଦ, ସମାସାନ୍ତ ପ୍ରତ୍ୟୟ ଓ ଇଡ଼ିଅମ୍ ବିଶେଷତ୍ୱ ବ୍ୟତୀତ।

ନୋହିଲେ ଉଭୟ ଭାଷାର ଶତାଂଶ ୮୦ରୁ ବେଶୀ ତଦ୍ଭବ ଶବ୍ଦ ସଂସ୍କୃତ ଶବ୍ଦକୋଷରୁ ଆହୃତ, ଯଦ୍ୟପି ମାଗଧୀର ଏକ ଆଞ୍ଚଳିକ ବିଭାଷା ରୂପେ ଓଡ଼ିଆ, ବଙ୍ଗଳା ଅପେକ୍ଷା କିଛିଟା ପ୍ରାଚୀନତର। ଅନ୍ତତଃ ଓଡ଼ିଆର ପ୍ରାଚୀନ ଓ ମଧ୍ୟଯୁଗୀୟ ସାହିତ୍ୟ ସଂପଦ ସହିତ ତୁଳନା କଲେ ବଙ୍ଗଳାର ପ୍ରାଚୀନ ଓ ମଧ୍ୟଯୁଗୀୟ ସାହିତ୍ୟ ସଂପଦ ଅପେକ୍ଷାକୃତ ସାମାନ୍ୟ ମନେହୁଏ। ଅବଶ୍ୟ ଉଭୟ ଓଡ଼ିଆ ଓ ବଙ୍ଗଳାର କଥିତ ଭାଷା ମଧ୍ୟରେ ବହୁ ପାର୍ଥକ୍ୟ ରହିଛି। ମୁଁ କିନ୍ତୁ ଯେଉଁ ଓଡ଼ିଆରେ କହୁଥିଲି, ତାହା ଥିଲା ଷ୍ଟାଣ୍ଡାର୍ଡ଼ ଓଡ଼ିଆ, ଯାହା କୌଣସି ଶିକ୍ଷିତ ବଙ୍ଗୀୟଙ୍କ ପକ୍ଷରେ ବୁଝିବାରେ ଅସୁବିଧା ନଥିଲା।

ମୋର ପ୍ରାୟ ୭ ମିନିଟ୍ ବ୍ୟାପୀ ଭାଷଣର ମୂଳ ବକ୍ତବ୍ୟ ଥିଲା, ସାହିତ୍ୟର ଲକ୍ଷ୍ୟ କ'ଣ ? ସେଦିନ ମୁଁ କହିଥିଲି, କିଛି ଗୋଟାଏ ସାମାଜିକ ବା ରାଜନୈତିକ ବା 'ଇଉଟିଲିଟାରିଆନ୍' ଉଦ୍ଦେଶ୍ୟ ଧରି ସାହିତ୍ୟ ଯେ ଲେଖାଯିବ, ଏ ମତବାଦର ମୁଁ ସମର୍ଥକ ନୁହେଁ। ଓସ୍କାର, ୱାଇଲ୍ଡ଼, ଦିନେ ଏଡ୍‌ୱାର୍ଡ଼ିଆନ୍ ଯୁଗର ସାହିତ୍ୟର 'ଇଉଟିଲିଟାରିଆନ୍' ତତ୍ତ୍ୱର ପ୍ରତିବାଦ କରି କହିଥିଲେ, "ଆର୍ଟ ଫର ଇଟସ୍ ୱନ୍ ସେକ୍" ଅର୍ଥାତ୍ କଳାର ଉଦ୍ଦେଶ୍ୟ ସେହି କଳା। ସେହି କଳା ସୃଷ୍ଟି ମଧ୍ୟରୁ ରସଗ୍ରାହୀ ପାଠକସମାଜ ଯେଉଁ ବାର୍ତ୍ତା ଆହରଣ କରେ, ତାହା ହିଁ ସାହିତ୍ୟ ଓ ସାହିତ୍ୟିକର ବାର୍ତ୍ତା।

ଉଦାହରଣ ସ୍ୱରୂପ, ସମୁଦ୍ର ଲହରୀର କୌଣସି ବାର୍ତ୍ତା ନାହିଁ। ସିଏ ଏକ ପ୍ରାକୃତିକ ନିୟମରେ ତା'ର ଫେନକିରୀଟ ବେଳାଭୂମି ଉପରେ ଗୋଟିଏ ଦୁର୍ଦ୍ଦାନ୍ତ ବାଳକ ପରି, ଭାଙ୍ଗି, ଟୁକୁରା ଟୁକୁରା ଫୁଲ ପାଖୁଡ଼ା ପରି ଫିଙ୍ଗିଦେଇ ପୁଣି ସମୁଦ୍ର ଭିତରକୁ ଚାଲିଯାଏ। ଏହାର ବା କି ବାଣୀ ରହିଛି ? ସେହିପରି ସୂର୍ଯ୍ୟୋଦୟର ବା କି 'ମେସେଜ୍' ଅଛି ? ଅଥଚ ଏସବୁ ମନୁଷ୍ୟ ପ୍ରାଣରେ କେତେ ସ୍ପନ୍ଦନ ସୃଷ୍ଟି କରି ନାହାନ୍ତି ! ମନୁଷ୍ୟ କାଳେ କାଳେ ଏଥିରୁ କେତେ ଭାବ ଓ ଭାବନା ଆହରଣ ନକରିଛି ! ମୁଁ ସେଦିନ କହିଥିଲି, ସାହିତ୍ୟର ଏକମାତ୍ର ଲକ୍ଷ୍ୟ ହେବା ଉଚିତ ନାନ୍ଦନିକତା।

ଏହି କାରଣରୁ ମୁଁ ଦୈନିକ ସମ୍ବାଦପତ୍ର 'କଳିଙ୍ଗ'ର ସଂପାଦକ ଥିବାବେଳେ, ଏହାର ସାହିତ୍ୟ ପୃଷ୍ଠାରେ ବହୁ ତରୁଣ କବି ଓ ଲେଖକଙ୍କର ପରୀକ୍ଷା ଓ ନିରୀକ୍ଷାଧର୍ମୀ ଲେଖାସବୁ ଛପାଇ, ସେମାନଙ୍କୁ ଉତ୍ସାହିତ କରୁଥିଲି। ଏଥିପାଇଁ କେତେକ ପ୍ରବୀଣଙ୍କ ବିରାଗଭାଜନ ମଧ୍ୟ ହୋଇଥିଲି। ସେମାନଙ୍କ ସମାଲୋଚକମାନଙ୍କୁ ମୁଁ ନିରବ କରାଉଥିଲି। କିନ୍ତୁ ସପ୍ତମ ଦଶକର ମଧ୍ୟଭାଗ ବେଳକୁ ଦେଖେ, ସେ କବି ଓ ଲେଖକମାନେ ନିରବ ହୋଇଗଲେଣି। କେବଳ ପରୀକ୍ଷା ନିରୀକ୍ଷାର ପୁଞ୍ଜିରେ ବା କେତେଦିନ ଚଳିବ ? ସେମାନଙ୍କର ଲେଖାସବୁ କ୍ରମେ ଉଦ୍‌ଭଟ ପରୀକ୍ଷା ନିରୀକ୍ଷା ଓ ଆଧୁନିକତାର ମୋହରେ ଯେପରି କ୍ଳିଷ୍ଟ ହୋଇ ଉଠୁଥିଲା, ସେଥିରେ ସେମାନେ ଯେ ଅତି ଶୀଘ୍ର ନିରବ ହୋଇଯିବେ,

ସେହିପରି ଆଶଙ୍କା ମଧ୍ୟ କରୁଥିଲି। କିନ୍ତୁ ତାହା ଏତେ ଶୀଘ୍ର ସତ୍ୟ ହେବ ବୋଲି ମୋର ଧାରଣା ନଥିଲା। କେଉଁଠି କେବେ କାହାରି କାହାରି ସହିତ ଦେଖାହେଲେ, ପଚାରେ, "କ'ଣ ହେଲା ?" କିଏ ଚାକିରି କଲାଣି। ଯିଏ ଚାକିରି କରିନାହିଁ ସିଏ ସେଦିନର ବୀଟ୍‌ନିକ୍‌ମାନଙ୍କ ପରି, ଅଲରା ଦାଢ଼ି ଓ ମୁଣ୍ଡବାଳ ଝୁଲାଇ ବୁଲୁଛି। "କିହୋ କଥା କ'ଣ ? ଆଉ ଲେଖୁନା କାହିଁକି ?"

"ଆଜ୍ଞା, ଜୀବନରେ ସବୁ ଯନ୍ତ୍ରଣା, ବହୁ ଆଗୋନି।" ମୁଁ ପଚାରେ, "ପ୍ରେମ ଫ୍ରେମ କରି ବ୍ୟର୍ଥ ହୋଇଛ ନା କ'ଣ ?" ଦୀର୍ଘଶ୍ୱାସ ପକାଇ ସେମାନେ ଉତ୍ତର ଦିଅନ୍ତି, ସେଇ ଫଟା ରେକର୍ଡ଼ରେ ପିନ୍ ଲାଗିଗଲେ ଯେପରି ଶୁଭେ, "ଆଜ୍ଞା, ବହୁ ଯନ୍ତ୍ରଣା, ବହୁ ନିଃସଙ୍ଗତା।" ଲକ୍ଷ୍ୟକଲି ଜୀବନର ବାସ୍ତବତା ଓ ଅଭିଜ୍ଞତା ଏବଂ ବୃହତ୍ତର ସମାଜଠାରୁ ଏମାନେ ସଂପୂର୍ଣ୍ଣ ବିଚ୍ଛିନ୍ନ ରହି, ନିଜପାଇଁ ନିଜେ ଗୋଟିଏ ଗୋଟିଏ ନିର୍ଜନ ଦ୍ୱୀପରେ ପରିଣତ ହୋଇଛନ୍ତି। ସୁବିଧା ଥିଲେ ସେମାନଙ୍କୁ ଚା' କପେ ପିଆଇ ମୁଁ କହେ, "ଏହାର ସମାଧାନ ବାଳକଟା ସେଲୁନ୍‌ରେ। ପ୍ରଥମେ ଯାଇ ଦାଢ଼ି କାଟି ଗୋଟେ ଦାମି ଆଫ୍‌ଟର ସେଭିଂ ଲୋସନ୍ ମୁହଁରେ ବୋଳ। ଚୂଳସବୁ ଛୋଟଛୋଟ କରି କାଟ। ତା'ପରେ ଦେଖିବ, ତୁମକୁ ହାଲ୍‌କା ଲାଗିବ। ଆଉ ଜୀବନଧର୍ମୀ ଲେଖାସବୁ ଲେଖିବାକୁ ଚେଷ୍ଟାକର। ସେଥିପାଇଁ ସମାଜ ଓ ଜୀବନକୁ ଗଭୀର ଭାବରେ ଅନୁଧ୍ୟାନ କର। ସମାଜରେ ଯେତେସବୁ ଅବିଚାର, ବ୍ୟଭିଚାର, ଶୋଷଣ, ଲୁଣ୍ଠନ, ଶଠତା ଚାଲିଛି, ସେସବୁକୁ ଯେପରି ଦେଖୁଛ, ସେହିପରି ଲେଖ- କବିତାରେ, ଗପରେ, ପ୍ରବନ୍ଧରେ, ସମାଲୋଚନାରେ। ଜୀବନ ଓ ସମାଜ ସହିତ ଏହି ସଂପୃକ୍ତି ମଧ୍ୟରେ ତୁମର ନିଃସଙ୍ଗତା, ଯନ୍ତ୍ରଣାବୋଧ କଟିଯିବ। ତୁମର ଲେଖା ଆଉ ଏପରି ଉଦ୍ଭଟ ହେବନାହିଁ।"

ଆଜି, ମୁଁ ସାହିତ୍ୟର ନାନ୍ଦନିକତାରେ ତ ନିଶ୍ଚୟ ବିଶ୍ୱାସ କରେ। କିନ୍ତୁ ନାନ୍ଦନିକତାପାଇଁ କେବଳ ନାନ୍ଦନିକତା ଉଚିତ ନୁହେଁ। ଓସ୍କାର ୱାଇଲଡ୍ ଯେପରି ଏଡ଼ୱାର୍ଡ଼ିଆନ୍ ଯୁଗର ସାହିତ୍ୟାଦର୍ଶ ବିରୁଦ୍ଧରେ ସ୍ରଷ୍ଟାମାନଙ୍କର ପ୍ରତିକ୍ରିୟା ରୂପେ କହିଥିଲେ, "ଆର୍ଟ ଫର ଇଟ୍‌ସ ଓ୍ୱନ୍ ସେକ୍", ଆଜି ସେହିପରି ମୋ ସାଂପ୍ରତିକ କାଳର ଅର୍ଥହୀନ, ଉଦ୍ଦେଶ୍ୟହୀନ, ଦୁର୍ବୋଧ୍ୟ ସାହିତ୍ୟ ବିରୁଦ୍ଧରେ, ମୋର ପ୍ରତିକ୍ରିୟା ହେଉଛି, "ଆର୍ଟ ଫର ଲାଇଫ୍‌ସ ସେକ୍"।

ସେଥିପାଇଁ ନବବର୍ଷର ଆରମ୍ଭରେ ମୁଁ ତରୁଣ ଲେଖକଲେଖିକାମାନଙ୍କୁ ଆଶୀର୍ବାଦ ଓ ଶୁଭେଚ୍ଛା ଜଣାଇ; 'ସମ୍ବାଦ'ରେ ପ୍ରକାଶପାଇଁ ନାନ୍ଦନିକତା ସହିତ ଜୀବନଧର୍ମୀ ବାସ୍ତବତାର ସମନ୍ୱୟରେ ରଚିତ ଲେଖାସବୁ ଆମନ୍ତ୍ରଣ କରୁଛି। ସେଥି ସଙ୍ଗେ ସଙ୍ଗେ ଅନୁରୋଧ କରୁଛି, ସେମାନେ ଓଡ଼ିଆ ଅକ୍ଷରଗୁଡ଼ିକର ତାଳୁରେ ଗୋଟିଏ ଗୋଟିଏ

ଚନ୍ଦନଟିପା ନ ପିନ୍ଧାଇ, ବା ସେମାନଙ୍କ ପଛରେ 'ହଲନ୍ତ୍' ପରି ଗୋଟିଏ ଗୋଟିଏ ଲାଙ୍ଗୁଡ଼ ନ ଟାଣି, ଦୟାକରି ଯୁକ୍ତାକ୍ଷର ବ୍ୟବହାର କରି ଲେଖିବେ। ସୁଇଜରଲ୍ୟାଣ୍ଡର ବିଦେଶୀ ଇଞ୍ଜିନିୟରମାନେ ଯଦି ଓଡ଼ିଆ ଶବ୍ଦର ଉଚ୍ଚାରଣ ତତ୍ତ୍ୱ ବୁଝି ଯୁକ୍ତାକ୍ଷରରେ ଓଡ଼ିଆ ଟାଇପ୍ ରାଇଟ୍‌ର ତିଆରି କରିପାରିଲେ, ବଙ୍ଗଳା ଓ ହିନ୍ଦୀରେ ଯଦି ଯୁକ୍ତାକ୍ଷର ବ୍ୟତୀତ ଅକାରଣ 'ଅନୁସ୍ୱାର' ଓ 'ହଲନ୍ତ'ର ପ୍ରୟୋଗ ନାହିଁ, ତା'ହେଲେ ଓଡ଼ିଆରେ ତାହା ହେଉଛି କେଉଁ ଯୁକ୍ତିରେ ?

ନବବର୍ଷର ଶୁଭେଚ୍ଛା ସହ।

୦୩/୦୧/୮୫

# ଚୀନ୍ ସାହିତ୍ୟରେ ନୂତନ ଋତୁ

ଗତ ସପ୍ତାହରେ, ଏହି ସ୍ତମ୍ଭରେ, ସାଂପ୍ରତିକ ସାହିତ୍ୟର ଆଭିମୁଖ୍ୟ ସଂପର୍କରେ ମୁଁ ଲେଖିଥିଲି ଯେ ସାହିତ୍ୟ କ୍ରମେ ଯେପରି ଆତ୍ମକୈନ୍ଦ୍ରିକ ଓ ଲଘୁଧର୍ମୀ ହୋଇଉଠୁଛି, ତାହାର ଏକ ସ୍ୱାଭାବିକ ପ୍ରତିକ୍ରିୟା ରୂପେ ସମାଜ ସଚେତନ, ବାସ୍ତବତାବାଦ, ଜୀବନଧର୍ମୀ ସାହିତ୍ୟ ରଚିତ ହେବା ଆବଶ୍ୟକ। ପ୍ରତ୍ୟେକ ପ୍ରତିକ୍ରିୟା ପରି ଏ ପ୍ରତିକ୍ରିୟା ମଧ୍ୟ, ଏକ ନିର୍ଦ୍ଦିଷ୍ଟ କାଳର ଉପଲବ୍ଧିଦ୍ୱାରା ସୀମାବଦ୍ଧ। ଏହା ସାହିତ୍ୟର ସନାତନ ସଂଜ୍ଞା ବା ବ୍ୟାଖ୍ୟା ହୋଇ ନପାରେ। ସବୁ ଆପେକ୍ଷିକ ଥିବା ଦୃଷ୍ଟିରୁ ଇଏ ମଧ୍ୟ ଆପେକ୍ଷିକ ହେବାପାଇଁ ବାଧ୍ୟ। ଚୀନ୍‌ରେ ମଧ୍ୟ ଠିକ୍ ଏହି ପ୍ରକାର ପ୍ରତିକ୍ରିୟା ଭିନ୍ନ ଭାବରେ ପ୍ରକାଶ ପାଇଛି। ଏହି ସ୍ତମ୍ଭର ପାଠକମାନଙ୍କର ଅବଗତି ନିମିତ୍ତ ଲେଖୁଛି ଯେ ଚୀନ୍‌ର ଜିନ୍ ହୁଆ ସମ୍ବାଦ ସରବରାହ ସଂସ୍ଥାର ଏକ ବିବରଣୀ ଅନୁସାରେ, ଚାଇନିଜ୍ ରାଇଟର୍ସ ଆସୋସିଏସନ୍‌ରେ ବାର ହଜାର ପାଞ୍ଚ ଶହ ଲେଖକ ସଭ୍ୟ ରହିଛନ୍ତି। ଏହି ଆସୋସିଏସନ୍ ରାଷ୍ଟ୍ରଦ୍ୱାରା ନିୟନ୍ତ୍ରିତ ଓ ପରିଚାଳିତ। ସରକାର ଏହି ଲେଖକମାନଙ୍କର ଭରଣ ପୋଷଣର ସବୁ ଦାୟିତ୍ୱ ବହନ କରନ୍ତି।

ଆମ ଦେଶର ଅର୍ଥଚିନ୍ତା-ଜର୍ଜରିତ ଲେଖକମାନଙ୍କପାଇଁ ଏ ପ୍ରକାର ସମ୍ଭାବନା ଲୋଭନୀୟ ମନେ ହୋଇପାରେ, କିନ୍ତୁ ଲେଖକମାନଙ୍କୁ ଏଥିପାଇଁ ଚୀନ୍‌ରେ ଏକ ଦୁର୍ମୂଲ୍ୟ ଦେବାକୁ ପଡ଼ିଥାଏ। ସେ ଦେଶର ରାଷ୍ଟ୍ର ଚାହିଦା ଓ ନିର୍ଦ୍ଦେଶ ଅନୁସାରେ ଔପନ୍ୟାସିକ, କବି ଓ ନାଟ୍ୟକାର ପ୍ରଭୃତିଙ୍କୁ ଉତ୍ପାଦନବୃଦ୍ଧି, କଳକାରଖାନା, ଗହମ କ୍ଷେତ ପ୍ରଭୃତି ବିଷୟବସ୍ତୁ ନେଇ ସୃଷ୍ଟିଧର୍ମୀ ଲେଖାସବୁ 'ଉତ୍ପାଦନ' କରିବାକୁ ପଡ଼ିଥାଏ। କିନ୍ତୁ ଏହା ଫଳରେ ସୋଭିଏତ୍ ଋଷିଆର ସାହିତ୍ୟ ପରି, ଚୀନ୍‌ର ସାଂପ୍ରତିକ ସାହିତ୍ୟ ମଧ୍ୟ, ସରକାରୀ ପ୍ରଚାରର ବଳିବର୍ଦ୍ଦରେ ପରିଣତ ହୋଇଛି। ସାହତ୍ୟି ସେ ଦେଶରେ ଏତେ ବେଶୀ ରାଷ୍ଟ୍ରାୟତ୍ତ ହୋଇପଡ଼ିଛି ଯେ ସେଥିରେ କଳା ବା ନାନ୍ଦନିକତାର ସ୍ପର୍ଶ ସୁଦ୍ଧା ରହୁନାହିଁ। ସେଥିପାଇଁ 'ଚାଇନିଜ୍ ରାଇଟର୍ସ ଆସୋସିଏସନ୍'ର ସମ୍ବିଧାନ ଏବେ ବଦଳାଇ ସେଥିରେ କୁହାଯାଇଛି

ଯେ କେବଳ କୃଷକ, ଶ୍ରମିକ ଓ ସୈନ୍ୟମାନଙ୍କ ସଂପର୍କରେ ଅତୀତରେ ଯେପରି ସାହିତ୍ୟ ଲେଖାଯାଉଥିଲା, ତାହା ନହୋଇ, ସେଥିରେ ଜୀବନର ସାମଗ୍ରିକ ଦିଗର ଚିତ୍ର ଓ ଅନୁଭୂତି ପ୍ରକାଶପାଇବ। ସାହିତ୍ୟରେ ମତାନ୍ଧତା ରହିବ ନାହିଁ। ଏଥିରେ ଶତ ଚିନ୍ତନର କୁସୁମ ପ୍ରସ୍ଫୁଟିତ ହେବ। ଜୀବନର ଉଭୟ ଦିଗ ଆଲୋକ ଓ ଅନ୍ଧକାର, ଆନନ୍ଦ ଓ ବିଷାଦ, ସଫଳତା ଓ ବିଫଳତା, ଉଚିତ ଓ ଅନୁଚିତ- ସବୁ ପ୍ରକାଶ ପାଇବ।

ସାହିତ୍ୟ ଜୀବନଧର୍ମୀ। କମ୍ୟୁନିଷ୍ଟ ଦେଶମାନଙ୍କର ନିଃଶ୍ୱାସରୁଦ୍ଧ ପରିବେଶରେ ଏ ପ୍ରତିକ୍ରିୟା ଅତି ସ୍ୱାଭାବିକ। ଚୀନ୍‌ର ଅର୍ଥନୀତିରୁ ମାର୍କସିଜିମ୍ ଲେନିନିଜିମ୍ ବିଦାୟ ନେବା ପରେ, ସାହିତ୍ୟରୁ ମଧ୍ୟ ସେହି ମତାନ୍ଧତା ବିଦାୟ ନେଉଛି। ସୃଷ୍ଟିଧର୍ମୀ ସାହିତ୍ୟ ହେଉଛି ମୁକ୍ତ ଆକାଶ ପରି ଅବାରିତ। ଏଥିରେ ବହୁ ବର୍ଣ୍ଣର ସମାହାର ! କମ୍ୟୁନିଷ୍ଟ୍ ପରିଭାଷାରେ ଏହା 'ରିଭିଜନିଜମ୍' ହୋଇପାରେ, କିନ୍ତୁ ଏହା ସ୍ୱାଗତଯୋଗ୍ୟ ନିଶ୍ଚୟ।

୧୦/୦୧/୮୫

# ଫକୀରମୋହନ: ଗୋଠ ଓ ମଠ

ବଙ୍ଗଳା ଔପନ୍ୟାସିକ ବଙ୍କିମଚନ୍ଦ୍ରଙ୍କ ଜନ୍ମ-ଜୟନ୍ତୀ ମହାନଗରୀ କଲିକତାରେ ପାଳିତ ନହୋଇ ଅଲକ୍ଷିତରେ ଚାଲିଯିବ, ବା ଲକ୍ଷ୍ନୌରେ ହିନ୍ଦୀ ସାହିତ୍ୟର କଥାସମ୍ରାଟ ପ୍ରେମଚନ୍ଦଙ୍କ ଜନ୍ମଦିବସ ପାଳିତ ହେବ ନାହିଁ- ଏସବୁ ଉଦ୍ଭଟତମ ଚିନ୍ତାରେ ସୁଦ୍ଧା, କେହି କଳ୍ପନା କରିପାରିବେ ନାହିଁ। କିନ୍ତୁ ଓଡ଼ିଶା ହୋଇଥିଲେ, ଏହା ନ ହେଲେ ମଧ୍ୟ ଚଳନ୍ତା ! ଚଳିତ ମାସ ୧୪ ତାରିଖ ମକର ସଂକ୍ରାନ୍ତି ଦିନ, ଓଡ଼ିଆ ସାହିତ୍ୟର କଥା-ସମ୍ରାଟ ଫକୀରମୋହନଙ୍କର ଜନ୍ମ-ଜୟନ୍ତୀ ତିଥି ରାଜଧାନୀ ଭୁବନେଶ୍ୱରରେ କାହାରି ମନରେ ସୁଦ୍ଧା ପଡ଼ିଲା ନାହିଁ। ରାଜଧାନୀ ଭୁବନେଶ୍ୱରରେ ଉତ୍କଳ ବିଶ୍ୱବିଦ୍ୟାଳୟର ଓଡ଼ିଆ ବିଭାଗ, ଓଡ଼ିଶା ସାହିତ୍ୟ ଅକାଦମୀ, ଏକାଧିକ ଉଚ୍ଚ ଶିକ୍ଷାନୁଷ୍ଠାନ ଓ ବହୁ ସାଂସ୍କୃତିକ ଅନୁଷ୍ଠାନ ଥାଉଁଥାଉଁ, ଫକୀରମୋହନଙ୍କ ସ୍ମୃତି କାହାରି ମନରେ ଚେଇଁଲା ନାହିଁ। ଅଥଚ ଓଡ଼ିଶା ପ୍ରଦେଶ ଗଠନର ଆଦ୍ୟ ପର୍ଯ୍ୟାୟରେ, ଯେତେବେଳେ ପଡ଼ୋଶୀ ଆକ୍ରମଣରୁ ଓଡ଼ିଆ ଭାଷାର ଆତ୍ମରକ୍ଷା ସମସ୍ୟା ଏକ ସଂକଟରେ ପରିଣତ ହୋଇଥିଲା, ସେତେବେଳେ ଯେଉଁ ଅଙ୍ଗୁଳିମେୟ କେତେଜଣଙ୍କର ଅତନ୍ଦ୍ର ଉଦ୍ୟମ ଓ ଉତ୍ସର୍ଗୀକୃତ ସାଧନା ଫଳରେ ଓଡ଼ିଆ ଭାଷା ତିଷ୍ଠି ରହିପାରିଲା ଓ ସେହି ଭିତ୍ତି ଉପରେ, ଭାଷାସୂତ୍ରରେ ଓଡ଼ିଶାପାଇଁ ସ୍ୱତନ୍ତ୍ର ପ୍ରଦେଶ ଗଠନର ଦାବୀ ହେଲା, ପୁଣି ସେହି ଦାବୀ ଫଳରେ ଓଡ଼ିଶା ପ୍ରଦେଶ ଗଠିତ ହେଲା; ସେମାନଙ୍କ ମଧ୍ୟରେ ତଥ୍ୟ ଦୃଷ୍ଟିରୁ, ଫକୀରମୋହନ ସେନାପତି ଅଗ୍ରଗଣ୍ୟ। ଏକାଧାରରେ ତେଣୁ ତାଙ୍କୁ ଆଧୁନିକ ଓଡ଼ିଆ ଜାତୀୟତାର ଜନ୍ମଦାତା ଓ ଓଡ଼ିଆ ସାହିତ୍ୟରେ ଆଧୁନିକ ଯୁଗର ଅନ୍ୟତମ ପ୍ରତିଷ୍ଠାତା କହିଲେ, କଦାପି ଭାକ୍ତିକ ଅତିରଂଜନ ହେବ ନାହିଁ। ଅଥଚ ଓଡ଼ିଶାର ରାଜଧାନୀ ଭୁବନେଶ୍ୱରରେ, ତାଙ୍କର ଜନ୍ମତିଥି କେହି ସ୍ମରଣ ସୁଦ୍ଧା କଲେ ନାହିଁ।

ସେଦିନ ସନ୍ଧ୍ୟାରେ କିନ୍ତୁ, ରାଜଧାନୀ ଭୁବନେଶ୍ୱରର ଉପକଣ୍ଠରେ ଗଢ଼ିଉଠୁଥିବା ଗୋଟିଏ ନୂଆ କଲୋନୀର ଅଧିବାସୀମାନେ, ଅତି ଶ୍ରଦ୍ଧାରେ ଫକୀରମୋହନଙ୍କର ଜନ୍ମତିଥି

ପାଳନ କରିଥିଲେ। ଏହି ଉପଲକ୍ଷ୍ୟରେ ଆୟୋଜିତ ସାଧାରଣ ସଭାରେ ଯୋଗଦାନ କରି ମୁଁ ନିଜକୁ ପ୍ରକୃତରେ ଭାଗ୍ୟବାନ ମନେ କରିଥିଲି। ସେ କଲୋନୀରେ କୌଣସି ହୋମଡ଼ାଚୋମଡ଼ା ସାହିତ୍ୟିକ ଅବଶ୍ୟ ନଥିଲେ; ସେମାନେ ସମସ୍ତେ ଥିଲେ ମେହନତୀ ମଣିଷ। ବିଭିନ୍ନ ଅଫିସ୍‌ରେ ଦିନ ସାରା ଖଟଣି ଖଟି, ନିତାନ୍ତ ନିରୁତ୍ସବ ଭାବରେ ଦିନାତିପାତ କରନ୍ତି। ଏ କଲୋନୀର ନାମ ସେମାନେ ଶ୍ରଦ୍ଧାରେ ରଖିଛନ୍ତି ଫକୀରମୋହନ ନଗର। କିନ୍ତୁ ଫକୀରମୋହନ ନଗରରେ ଆଜି ପାଇପ୍‌ରେ ପାଣି ଆସିଲେ, କାଲି ବନ୍ଦ। କଲୋନୀ ଭିତରେ ରାସ୍ତା ନାହିଁ। କାର୍‌ରୁ ଓହ୍ଲାଇ, ସାମାନ୍ୟ ଶହେ ଗଜ ରାସ୍ତା ପେଣ୍ଡାଲ ପର୍ଯ୍ୟନ୍ତ ଚାଲିଚାଲି ଯିବାବେଳେ ସୁଦ୍ଧା, ମୋ ପରି ଲୋକଙ୍କ ପକ୍ଷରେ ଭୟଙ୍କର ଦୁର୍ଘଟଣାର ଆଶଙ୍କାକୁ ଉପେକ୍ଷା କରି ହେଉ ନଥିଲା। ଚିକିତ୍ସାର ବ୍ୟବସ୍ଥା ନାହିଁ, ଲାଇଟ୍ ନାହିଁ, ଇତ୍ୟାଦି ଇତ୍ୟାଦି। ତଥାପି ସେମାନେ ଓଡ଼ିଆ ଜାତିର ଅନ୍ୟତମ ପୂର୍ବସୂରୀ ଫକୀରମୋହନଙ୍କୁ ଅତି ଶ୍ରଦ୍ଧାର ସହିତ ସେଦିନ ସ୍ମରଣ କଲେ।

ସେଦିନ ଅପରାହ୍ଣରେ କିନ୍ତୁ କିଏ ନିଜକୁ ଓଡ଼ିଆ ସାହିତ୍ୟର ଏଭେରେଷ୍ଟ ତ ଆଉ କିଏ ବା ନିଜକୁ କାଞ୍ଚନଜଂଘା ମନେ କରୁଥିବା ସାହିତ୍ୟିକ ଓ ସେମାନଙ୍କ ବନ୍ଧୁମାନଙ୍କ ମେଳରେ ଯୋଗଦେବାର ଅବକାଶ ମୋତେ ମିଳିଥିଲା। ମୋ ବିଚାରରେ, ପ୍ରତ୍ୟେକ ସାର୍ଥକ ଶିଳ୍ପୀ ଊଣାଅଧିକେ ଅହଂକାରୀ। ଗୀତାର ବିଭୂତି ଯୋଗରେ ସ୍ୱୟଂ ଭଗବାନ ଶ୍ରୀକୃଷ୍ଣ ତ ନିଜ ଅହଂର ବହୁ ବର୍ଣ୍ଣନା କରିଅଛନ୍ତି। ଯାହାର ଅହଂ ନାହିଁ, ତାର ପ୍ରକୃତରେ କିଛି ନାହିଁ। ସିଏ ବା କ'ଣ ସୃଷ୍ଟି କରିପାରିବ। କିନ୍ତୁ ଅହଂ-ଚେତନା ବହୁସ୍ଫୀତ ଅହଂକାର ହେବା ଉଚିତ ନୁହେଁ। ପ୍ରକୃତ ଅହଂଭାବସମ୍ପନ୍ନ ବ୍ୟକ୍ତି ଅନ୍ୟର ଅହଂକୁ ମଧ୍ୟ ସମ୍ମାନ ଦେଇଥାଏ। ଯେମିତି ଭାରତବିଜୟୀ ଆଲେକ୍‌ଜାଣ୍ଡାର ଦିନେ ପରାଜିତ ପୁରୁଙ୍କୁ ଅହଂକୁ ସୁଦ୍ଧା ନମସ୍କାର କରିଥିଲେ। ମୋର ଏହି ମାନ୍ଧାତାକାଳିଆ ବିଚାର ଘେନି, ମୁଁ ସେଠାରେ ଯୋଗଦେବା ପରେ ଭାବିଥିଲି, ଫକୀରମୋହନଙ୍କୁ ଅନ୍ତତଃ ସେହି ଅବକାଶରେ କେହି ସ୍ମରଣ କରିବ ପରା ! କିନ୍ତୁ ଦୀର୍ଘ ଦେଢ଼ଘଣ୍ଟା କାଳ ବସି ବସି ଲକ୍ଷ୍ୟ କଲି, ଫକୀରମୋହନଙ୍କର 'ପ୍ରକୃତ ଉତ୍ତରାଧିକାରୀ' ବା ତତ୍ତୁଲ୍ୟ; ସେମାନଙ୍କ ମଧ୍ୟରେ କିଏ ଏହା ଘେନି ଯେତେ ପାରସ୍ପରିକ ପ୍ରଶସ୍ତିଗାନ କରାଗଲା, ସେ ଫକୀରମୋହନଟି କିଏ, ସେ ସଂପର୍କରେ କେହି ପଦେ ହେଲେ ସୁଦ୍ଧା ଉଚ୍ଚାରଣ କଲେ ନାହିଁ। ମୁଁ ସମସ୍ତଙ୍କୁ ନମସ୍କାର ପକାଇ ଉଠିଆସିଲି।

ବସ୍ତୁତଃ, ଓଡ଼ିଆ ସାହିତ୍ୟର ସାମ୍ପ୍ରତିକ ଦୈନ୍ୟ ମୂଳରେ ରହିଛି ସାହିତ୍ୟିକମାନଙ୍କର ଏହି ଆତ୍ମଦୈନ୍ୟ। ନିଜ ସଂପର୍କରେ ସେମାନେ ଏତେ ଆତ୍ମପ୍ରତ୍ୟୟହୀନ ଯେ ଗୋଟାଏ ଗୋଠ ନ ବାନ୍ଧିଲେ, ସେମାନଙ୍କର ଚଳେ ନାହିଁ। କିନ୍ତୁ ସେମାନେ ଭୁଲିଯାଆନ୍ତି, ଗୋଠ

ଦରକାର ନିରୀହ ମିରିଗ, ସମ୍ବରମାନଙ୍କପାଇଁ- ବାଘ ପାଇଁ କିନ୍ତୁ ଗୋଠର ପ୍ରୟୋଜନ ନଥାଏ। ସେ ଶିକାରୀକୁ ମାରେ, ନ ହେଲେ ଶିକାରୀ ଗୁଳିରେ ମରେ। ଗୋଠ ଗଢ଼ିବା ଆତ୍ମପ୍ରତ୍ୟୟହୀନ ଦୁର୍ବଳମାନଙ୍କର ଧନ୍ଦା।

ଓଡ଼ିଶା ସାହିତ୍ୟରୁ ସେଇ ଗୋଠ ଓ ମଠର ଅବସାନ କେବେ ହେବ ବୋଲି, ମୋର ନିଃସଙ୍ଗ ମୁହୂର୍ତ୍ତମାନଙ୍କରେ ମୁଁ ଦିନ ଗଣୁଚି। ତରୁଣମାନେ ମନେରଖନ୍ତୁ, କାଳ ଗୋଠକୁ ସ୍ମରଣ ରଖେ ନାହିଁ, ସ୍ମରଣ ରଖେ ବ୍ୟକ୍ତି ଓ ତାର କୃତିକୁ।

୧୭/୦୧/୮୪

# ଅବୈଷ୍ଣବ ଦୃଷ୍ଟିରେ ଶ୍ରୀଚୈତନ୍ୟ

ଖ୍ରୀଷ୍ଟୀୟ ପଞ୍ଚଦଶ ଶତାବ୍ଦୀର ପୃଷ୍ଠଭୂମିରେ ଶ୍ରୀଚୈତନ୍ୟ ଜଣେ ଯୁଗାବତାର ଥିଲେ ବୋଲି, ପୂର୍ବ ଭାରତୀୟ ସଂସ୍କୃତିର ଯେକୌଣସି ଅନାସକ୍ତ ଛାତ୍ର ନିଶ୍ଚୟ ସ୍ୱୀକାର କରିବେ। ତାଙ୍କ ପ୍ରଚାରିତ ଭକ୍ତିଧର୍ମର ପ୍ଲାବନରେ ଆଧ୍ୟାତ୍ମିକ କ୍ଷେତ୍ରରୁ ମନ୍ତ୍ରତନ୍ତ୍ରଭିତ୍ତିକ ଯୋଗସାଧନା ନାମରେ ଇନ୍ଦ୍ରଜାଲ ଓ ଅଭିଚାର ପ୍ରଭୃତିର ଆବର୍ଜନା କେବଳ ଯେ ବିଦୂରିତ ହୋଇଥିଲା ତାହା ନୁହେଁ, ସାମାଜିକ କ୍ଷେତ୍ରରେ ସ୍ପୃଶ୍ୟ-ଅସ୍ପୃଶ୍ୟ ମଧ୍ୟରେ ଭେଦାଭେଦ ମଧ୍ୟ ଦୂର ହୋଇପାରିଥିଲା। "ବାରଜାତି ତେରଗୋଲା, ବୈଷ୍ଣବ ହେଲେ ସବୁ ଗଲା"- ବର୍ଣ୍ଣାଶ୍ରମଧର୍ମୀ ସନାତନୀମାନେ ତାଙ୍କ ପ୍ରତି ସେଥିପାଇଁ କମ୍ ଆକ୍ଷେପ କରିନଥିଲେ। ବର୍ଣ୍ଣାଶ୍ରମର ନ୍ୟସ୍ତସ୍ୱାର୍ଥ ଶେଷକୁ ଅବଶ୍ୟ କାଏମ୍ ରହିଲା। ତଥାପି ଶ୍ରୀଚୈତନ୍ୟଙ୍କର ଭକ୍ତିଧର୍ମ ଏହି ସାମାଜିକ ବ୍ୟାଧି ଉପରେ ଯେ ପ୍ରବଳ କୁଠାରଘାତ ହାଣିଥିଲା, ସେଥିରେ ମଧ୍ୟ ସନ୍ଦେହ ନାହିଁ।

ଯବନ ହରିଦାସଙ୍କ ପରି କେତେକ ମୁସଲମାନ ମଧ୍ୟ ଭକ୍ତିଧର୍ମର ପ୍ରଭାବରେ ଆସି ହରିନାମ ସଂକୀର୍ତ୍ତନ କରିବାପାଇଁ କୁଣ୍ଠିତ ହୋଇ ନଥିଲେ। ରାଜନୈତିକ ନେତା ଓ ଦଳମାନେ ବିରାଟ ପ୍ରଚାରମାଧ୍ୟମମାନଙ୍କୁ ଧରି, ଏ ଦୁଇଟି କ୍ଷେତ୍ର- ଅର୍ଥାତ୍ ସାମ୍ପ୍ରଦାୟିକ ବୈଷମ୍ୟ ଓ ହିନ୍ଦୁ ସମାଜରୁ ସ୍ପୃଶ୍ୟ-ଅସ୍ପୃଶ୍ୟ ବିଚାର ତଥାପି ଲୋପ କରିପାରିଲେ ନାହିଁ। କିନ୍ତୁ ଶ୍ରୀଚୈତନ୍ୟ ନିଜର ଏକକ ସାଧନା ବଳରେ, ଏହା ସମ୍ଭବ କରିପାରିଥିଲେ। ତାଙ୍କୁ ତେଣୁ, ଅବତାର ରୂପେ ଯେ ଗ୍ରହଣ କରାଯାଇଅଛି, ତାହା ଭାକ୍ତିକ ଅତିରଂଜନ ଆଦୌ ନୁହେଁ। ଆଜି ଯଦି ସତ୍ୟସାଇବାବା ବା ଆଚାର୍ଯ୍ୟ ରଜନୀଶଙ୍କ ପରି ଗୁରୁମାନେ 'ଯେଟ୍-ସେଟ୍' ଯୁଗରେ ନିଜକୁ ଜଣେ ଜଣେ ସ୍ୱୟଂ ଭଗବାନ ବୋଲି ଘୋଷଣା କରି ପାରୁଛନ୍ତି ଓ ସେମାନଙ୍କର ହଜାର ହଜାର ଭକ୍ତ ତାହାକୁ ମଧ୍ୟ ବିଶ୍ୱାସ କରିପାରୁଛନ୍ତି, ତା'ହେଲେ ଶ୍ରୀଚୈତନ୍ୟ ଅବତାର ଥିଲେ ବୋଲି, ଅବିଶ୍ୱାସୀମାନେ ସୁଦ୍ଧା ଇତିହାସ ଦୃଷ୍ଟିରୁ କଦାପି ଅସ୍ୱୀକାର କରିବେ ନାହିଁ। ଶ୍ରୀଚୈତନ୍ୟଙ୍କ ନାମରେ ବହୁ ମଠ ଓ ସଂପ୍ରଦାୟ ପରବର୍ତ୍ତୀ

କାଳରେ ଗଡ଼ା ହେଲା ଓ ଖଟୁଲି ଉପରେ ବହୁ ମହନ୍ତଙ୍କର ମଧ୍ୟ ଅଭିଷେକ ହେଲା ସତ୍ୟ, କିନ୍ତୁ ଶ୍ରୀଚୈତନ୍ୟ ସ୍ୱୟଂ ଥିଲେ ଜଣେ ପରିବ୍ରାଜକ। ତାଙ୍କର ମଠ ନଥିଲା। ଉତ୍ତର ଭାରତରୁ ଦକ୍ଷିଣ ଭାରତ, ପୂର୍ବ ଭାରତରୁ ପଶ୍ଚିମ ଭାରତ, ଏହିପରି ପ୍ରବ୍ରଜ୍ୟା କରି କରି, ତାଙ୍କର ଜୀବନ ଅତିବାହିତ ହୋଇଗଲା। ଆକୁଳତା ଓ ଆବେଗକୁ ଘେନି କାବ୍ୟ କବିତା ନିଶ୍ଚୟ ଲେଖାଯାଇପାରେ ! କିନ୍ତୁ ପରମାତ୍ମା ସହିତ ଜୀବାତ୍ମା ବା ଶ୍ରୀକୃଷ୍ଣଙ୍କ ସହିତ ରାଧାଙ୍କର ମିଳନର ଆବେଗକୁ ମଧ୍ୟ ଆଧ୍ୟାତ୍ମିକ ସାଧନାର ଏକ ମାର୍ଗରେ ପରିଣତ କରାଯାଇପାରେ। ଏହାର ସଫଳ ଅନୁଶୀଳନ କରିଥିଲେ ଶ୍ରୀଚୈତନ୍ୟ ! ତାଙ୍କର ଏକମାତ୍ର ସାହିତ୍ୟିକ ରଚନା 'ଶିକ୍ଷାଷ୍ଟକ' ପଦାବଳୀରେ ସାଧନାର ଏହି ମାର୍ଗଟି ସୂଚିତ ହୋଇଅଛି। ତାଙ୍କର ଆଧ୍ୟାତ୍ମିକ ସାଧନା ମଧ୍ୟ ଥିଲା କାବ୍ୟମୟ।

ଶ୍ରୀଚୈତନ୍ୟ ଓଡ଼ିଆ କି ବଙ୍ଗାଳୀ ବୋଲି ବହୁ ନିଷ୍ଫଳ ବିତର୍କ ଅତୀତରେ ହୋଇଯାଇଛି; ଏବେ ଯେମିତି ଚାଲିଛି ଜୟଦେବ ବଙ୍ଗାଳୀ କି ଓଡ଼ିଆ ! ସଂସ୍କୃତି କ୍ଷେତ୍ରରେ କିନ୍ତୁ କିଏ କେଉଁ ରାଜ୍ୟର ଲୋକ ବା କେଉଁ ଭାଷା କହୁଥିଲେ, ତାହାକୁ ନେଇ ମାତିବା ଅନୁଚିତ। ସଂସ୍କୃତି କ୍ଷେତ୍ରରେ ଏ ସବୁର ବିଚାର ଅତି ଗୌଣ। ସେଥିରୁ ମିଳିବ ବା କ'ଣ ? କିନ୍ତୁ ଶ୍ରୀଚୈତନ୍ୟ ବଙ୍ଗ ଦେଶର ନଦିଆରେ ଜନ୍ମଗ୍ରହଣ କରିଥିଲେ ହେଁ, ତାଙ୍କ ଜୀବନର ଶେଷ ଅଠରବର୍ଷ ପୁଣ୍ୟଭୂମି ଉତ୍କଳର ନୀଳାଚଳ ଧାମରେ ଅତିବାହିତ ହୋଇଥିଲା। ଉତ୍କଳ ହିଁ ଥିଲା ତେଣୁ ତାଙ୍କର କର୍ମଭୂମି ଓ ଶେଷ ବିଶ୍ରାମ ଭୂମି ! ଓଡ଼ିଶାର ମାଟିରେ ତାଙ୍କର ମରଦେହ ମିଶିଯାଇଥିଲା। ତେଣୁ ଶ୍ରୀଚୈତନ୍ୟ ଯେ ଅତି ନିବିଡ଼ ଭାବରେ ଓଡ଼ିଶାର, ଏଥିରେ କ'ଣ ଆଉ ଯୁକ୍ତି ଚଳିପାରେ ? ମନୁଷ୍ୟ ଜୀବନରେ ଜନ୍ମଭୂମି ଅପେକ୍ଷା ତାହାର କର୍ମଭୂମି ହିଁ ମହତ୍ତର। କାରଣ କର୍ମଭୂମି ନଥିଲେ, ଜନ୍ମଭୂମି ଘେନି କେହି ମୁଣ୍ଡ ଖେଳାନ୍ତେ ନାହିଁ।

ଶ୍ରୀଚୈତନ୍ୟ ଓଡ଼ିଆଙ୍କ ପରି ଏକ ସମର-ବିଳାସୀ ଜାତିକୁ 'ମାଇଚିଆ' କରିଦେଲେ ବୋଲି ଐତିହାସିକ ଶ୍ରୀ ଆର୍.ଡି.ବାନାର୍ଜୀଙ୍କଠାରୁ ଆରମ୍ଭ କରି ପଣ୍ଡିତ ଶ୍ରୀ ନୀଳକଣ୍ଠ ଦାସ ଓ ଅଧ୍ୟାପକ ଶ୍ରୀ ପ୍ରଭାତ ମୁଖାର୍ଜୀଙ୍କ ପରି ବିଦ୍ୱାନମାନେ ମତ ପ୍ରକାଶ କରି ଯାଇଅଛନ୍ତି ଏବଂ ଏହି ଲେଖକଙ୍କ ପରି କେତେକ ବ୍ୟକ୍ତି ଅବିଚାରିତ ଭାବରେ ମଧ୍ୟ ତାହାକୁ କିଛିକାଳପାଇଁ ବିଶ୍ୱାସ କରିଛନ୍ତି। କିନ୍ତୁ କୃଷ୍ଣ ଦାସ କବିରାଜ ଗୋସ୍ୱାମୀଙ୍କର 'ଶ୍ରୀଚୈତନ୍ୟ ଚରିତାମୃତ' ପାଠ କଲେ ଦେଖାଯିବ, ଯେତେବେଳେ ଗୌଡ଼ ଦେଶରେ ନବାବ୍ ହୁସେନ୍ ଖାଁର ଆଦେଶରେ ଦାଣ୍ଡରେ ହରିନାମ ଉଚ୍ଚାରଣ କରିବା ନିଷିଦ୍ଧ ଥିଲା, ସେତେବେଳେ ଶ୍ରୀଚୈତନ୍ୟ ନିର୍ଭୟରେ ଦଳବଳ ଧରି ହରିଧ୍ୱନି ଦେଇ ବାହାରିଥିଲେ। ଶ୍ରୀଚୈତନ୍ୟଙ୍କ ପ୍ରଚାରିତ ଆଧ୍ୟାତ୍ମିକ ସାଧନାର ମାର୍ଗ ହୋଇ ରହିଛି

ତେଣୁ ନଗର-କୀର୍ତ୍ତନ। ଏ ସାଧନାର ସ୍ଥାନ ମହନ୍ତମାନଙ୍କର ମଠ-ଗମ୍ଭୀରାରେ ତୁଳସୀମାଳି ଗଡ଼ାଇବାରେ ନୁହେଁ, ରାଜଦାଣ୍ଡରେ !

ଶ୍ରୀଚୈତନ୍ୟଙ୍କୁ ମୁଁ ତେଣୁ ଦେଖିଛି, ଭାରତ-ଇତିହାସର ପ୍ରଥମ ସତ୍ୟାଗ୍ରହୀ ରୂପେ। ସେ ପୁଣି 'ଘେରାଉ'ର ପ୍ରଥମ ପ୍ରବର୍ତ୍ତକ। ଯେତେବେଳେ ନଦିୟାର ଚାନ୍ଦ୍‌କାଜୀ, ତାଙ୍କର ଶିଷ୍ୟମାନେ ହରିଧ୍ୱନି କରୁଥିବାରୁ ରାଜଦଣ୍ଡର ଭୟ ଦେଖାଇଲା; ସେତେବେଳେ ଶ୍ରୀଚୈତନ୍ୟ ଚାନ୍ଦ୍‌କାଜୀର ଗୃହ ଓ ଉଦ୍ୟାନ 'ଘେରାଉ' କରି ତାହାକୁ ଧ୍ୱସ୍ତବିଧ୍ୱସ୍ତ କରିଦେଲେ। ଚାନ୍ଦ୍‌କାଜୀ ଶେଷରେ ଶ୍ରୀଚୈତନ୍ୟଙ୍କଠାରେ ନତି ସ୍ୱୀକାର କଲା। ଏପରି ପୌରୁଷ ଭାରତୀୟ ମଧ୍ୟଯୁଗରେ ଆଉ କେଉଁଠି କ'ଣ ପ୍ରକାଶ ପାଇଛି ? ମୁଁ ଅନ୍ତତଃ ଜାଣେ ନାହିଁ।

ଆଜି ତେଣୁ ଶ୍ରୀଚୈତନ୍ୟଙ୍କ କର୍ମଭୂମି ଓଡ଼ିଶାରେ ତାଙ୍କ ଜନ୍ମର ପଞ୍ଚଶତବାର୍ଷିକୀ ପାଳନ କରାଯାଉଥିବା, ମୋ ପକ୍ଷରେ ତଥା ଓଡ଼ିଶାବାସୀଙ୍କ ପକ୍ଷରେ ପରମ ଆନନ୍ଦର ବିଷୟ। ମୁଁ ଏହାକୁ ସ୍ୱାଗତ କରୁଛି।

୨୪/୦୧/୮୫

# ବସନ୍ତ-ବିଦାୟ

ମୁଁ ସନାତନୀ ହିନ୍ଦୁ ନୁହେଁ। କିନ୍ତୁ ହିନ୍ଦୁ-ସଂସ୍କୃତିର ମୁଁ ଅତି ବଶମ୍ବଦ ଭକ୍ତ। ହିନ୍ଦୁ ସମାଜରେ ପ୍ରଚଳିତ ପୂଜାପାର୍ବଣମାନଙ୍କ ପ୍ରତି ଲକ୍ଷ୍ୟ କଲେ ଦେଖାଯିବ, ଏସବୁ ଉତ୍ସବ ମଧ୍ୟରେ, ମନୁଷ୍ୟ ପ୍ରକୃତି ସହିତ ନିବିଡ଼ ଯୋଗସୂତ୍ର ରକ୍ଷା କରିଥିଲା। ଇଏ କେବଳ ଲୋକ-ଚଳଣିରେ ନୁହେଁ। ସଂସ୍କୃତ ଓ ଭାଷାକାବ୍ୟ-ସାହିତ୍ୟରେ ଋତୁଚକ୍ର ବର୍ଣ୍ଣନାର ଯେଉଁ ଧାରା ପରିଲକ୍ଷିତ ହୁଏ, ତାହା ଏହି ନିବିଡ଼ ସଂପର୍କର ପରିଣତି। ଇଂରାଜୀ କାବ୍ୟ ସାହିତ୍ୟରେ ଅବଶ୍ୟ ପ୍ରକୃତିର ଆଲେଖ୍ୟ କବିମାନଙ୍କର ଲେଖନୀରେ ରସୋତ୍ତୀର୍ଣ୍ଣ ଭାବରେ ପରିସ୍ଫୁଟ ହୋଇଛି, ମାତ୍ର ଭାରତୀୟ କାବ୍ୟସାହିତ୍ୟରେ ପ୍ରକୃତି ଯେପରି ଏକ ଚରିତ୍ର ଭାବରେ, ପୁଣି ପ୍ରତି ଋତୁ-ପରିବର୍ତ୍ତନରେ, ତାହାର 'ମୂଡ଼' ବା ମେଜାଜର କାବ୍ୟିକ ବର୍ଣ୍ଣନା କରାଯାଇଛି, ଇଂରାଜୀ କାବ୍ୟ ସାହିତ୍ୟରେ ତାହା ବିରଳ ! ମଧ୍ୟଯୁଗୀୟ ଭାରତୀୟ ଚିତ୍ରକଳା ଓ ସ୍ଥାପତ୍ୟରେ ମଧ୍ୟ ଏହି ବିଭାବଟି ପରିସ୍ଫୁଟ। ହିନ୍ଦୁସ୍ତାନୀ ଶାସ୍ତ୍ରୀୟ ସଂଗୀତରେ ଅଛି ଏହି ଋତୁ ବର୍ଣ୍ଣନାର ଆଳାପ ! ବେଦର 'ଋତୁ' ବା ସତ୍ୟ ସେହିପରି ଥିଲା ତାହାର ଜୀବନ ଓ ସୂକ୍ଷ୍ମ ସୌନ୍ଦର୍ଯ୍ୟାନୁଭୂତିର ମୂଳ ପ୍ରେରଣା।

ବସନ୍ତର ଅଧିଷ୍ଠାତ୍ରୀ ଦେବୀ ବାଗ୍‌ଦେବୀ ସରସ୍ୱତୀ। ଇଏ ଋଗ୍‌ବେଦର "ବାଜେଷୁ ବାଜିନୀବତୀ" ସରସ୍ୱତୀ ନୁହନ୍ତି। ସିଏ ହେଲେ ସରସ୍ୱତୀ ନଦୀ, କିନ୍ତୁ କାବ୍ୟମୟୀ ବସନ୍ତର, ବୀଣାପୁସ୍ତକଧାରିଣୀ ବାଗ୍‌ଦେବୀ ସରସ୍ୱତୀ। ଏହାଙ୍କର ଆରାଧନା ହୁଏ ବସନ୍ତର ନବପୁଷ୍ପ-ପଲ୍ଲବରେ, ଆମ୍ର ମଞ୍ଜରୀର ନବ କିଶଳୟରେ। କିନ୍ତୁ ମୁଁ ଗୋଟିଏ ଦାରୁଣ ଆଘାତ ପାଇଲି, ଯେଉଁଦିନ ମୋର ଅଭିଜ୍ଞତା ହେଲା, ରାଜଧାନୀ ଭୁବନେଶ୍ୱରରେ ବାଗ୍‌ଦେବୀଙ୍କର ଆରାଧନା ହୁଏ ଅନ୍ୟର ଫୁଲବଗିଚା ଉଜାଡ଼ିବାରେ !

ମୁଁ ଯେଉଁଦିନ ପ୍ରଥମେ ଆସି ଏ ଘରେ ରହିଲି, ସେତେବେଳେ ମୋତେ ଏ ଜାଗା ଭାରି ଖାଁ ଖାଁ ଅପନ୍ତରା ଲାଗିଲା। ଚାରିଆଡ଼େ ଗେଙ୍ଗୁଟିଆ କଙ୍କରିଳ ପ୍ରାନ୍ତର। ତା'ରି ଉପରେ ରୋଗିଣା ଘାସର ଗୋଟିଏ ବିଷଣ୍ଣ ପ୍ରଲେପ। ମାଳୀକୁ ଧରି କ୍ରମେ ବହୁ କଷ୍ଟରେ

କେଇଧାଡ଼ି ଫୁଲଗଛ ଲଗାଇଲି। କେଳିକୁସୁମ, ଗେଣ୍ଡୁ, ସୂର୍ଯ୍ୟମୁଖୀ, ଡାଲିଆ, ମଲ୍ଲୀ ଆଉ ମଉସୁମୀ ଫୁଲ... ବିଶେଷ କିଛି ନୁହେଁ ! ତଥାପି ସେଥିରେ ଡାଲିଆ ଫୁଟିଲା, ଋତୁର ଫୁଲଗଛମାନେ ହସିଲେ, ରଙ୍ଗର ଚମକ ଖେଳାଇ। ମୁଁ ସରସ୍ୱତୀଙ୍କର ପୂଜା ପାଇଁ, ଏଇ ଫୁଲସବୁକୁ ନେଇ ମନେମନେ ମାଳା ଗୁନ୍ଥିଲି।

ସରସ୍ୱତୀ ପୂଜା ପୂର୍ବଦିନ ଆମ ଘରେ ଗୋଟିଏ ଛୋଟକାଟିଆ କଳହ ଲାଗିଲା। ମୁଁ କହିଲି, ରାତିରେ ଶୋଇବା ପୂର୍ବରୁ ଡାଲିଆ ସବୁ ତୋଳିନେବା। କେଳିକୁସୁମ ତୋଳି ମାଳା ଗୁନ୍ଥିବା। କିନ୍ତୁ ଅନ୍ୟପକ୍ଷ ଜିଦ୍ କଲେ, ସକାଳକୁ ବଗିଚାକୁ ଆଉ ଚାହିଁ ହେବ ନାହିଁ। ଶେଷରେ ମୁଁ ବହୁ ପକ୍ଷଙ୍କ କଥା ମାନିନେଇ, ସେଇ ପ୍ରସ୍ତାବରେ ରାଜି ହୋଇଗଲି। କିନ୍ତୁ ସକାଳେ ଭୃତ୍ୟର ଆର୍ତ୍ତନାଦ ଶୁଣି, ବିଛଣାରୁ ଉଠି ବସିଲି। ସେ ଗୋଟାଏ ଝଙ୍କାଳିଆ ବରଗଛ ଆଡ଼େ ଚାହିଁ ଚିତ୍କାର କରୁଛି, "ଆମ ବଗିଚା କିଏ ଲୁଟିନେଲା ?" ସେ ଲିଲି ରଙ୍ଗର ଡାଲିଆ, ଯାହାକୁ ମୁଁ ମନେ ମନେ ସ୍ଥିର କରିଥିଲି ବାଗ୍‌ଦେବୀଙ୍କ ଗଳାରେ ପଦକ ପରି ଝୁଲାଇବା ପାଇଁ, ନଥିଲା ! କଳାପାହାଡ଼ୀ ଆକ୍ରମଣରେ ଫୁଲସବୁ ତ ଆଉ ନଥିଲା, ଗଛ କେତେଟା ମଧ୍ୟ ଉପୁଡ଼ି ପଡ଼ିଥିଲା, ଝଡ଼ର ଆଘାତରେ ଲୋଟି ପଡ଼ିବା ପରି ! ଅନ୍ୟମାନଙ୍କ ଉପରେ ରାଗି ମୁଁ ମୋର କ୍ରୋଧ ପ୍ରଶମିତ କଲି। ଫୁଲସବୁ ଆଗରୁ ତୋଳି ରଖିଥିଲେ, ଏ ବିପ୍ରାତ ଘଟି ନଥାନ୍ତା। ସାମାନ୍ୟ କିଛି ଗେଣ୍ଡୁଫୁଲ ଓ ଗୋଟାଏ ଦି'ଟା ରୁଗ୍‌ଣ ଡାଲିଆରେ ବାଗ୍‌ଦେବୀଙ୍କର ଆରାଧନା ଚଳିଲା। ସାନ୍ତ୍ୱନା ଏତିକି- ବାଗ୍‌ଦେବୀ ଯେଉଁ ରାସ୍ତାଛକରେ, ସରସ୍ୱତୀ-ମଣ୍ଡପରେ ବସିଥାଆନ୍ତୁ ନା କାହିଁକି, ଏ ବଗିଚାର ଫୁଲସବୁ ତାଙ୍କୁଇତ ପୁଷ୍ପାଞ୍ଜଳି ଦିଆଯାଇଥିବ।

କିନ୍ତୁ ବୁଝିପାରିଲି ନାହିଁ- ଇଏ କେଉଁ ରୀତି ? ବସନ୍ତର ଅଧିଷ୍ଠାତ୍ରୀ ଦେବୀ ବାଗ୍‌ଦେବୀଙ୍କର ଆରାଧନାପାଇଁ ବସନ୍ତକୁ ହତ୍ୟା କରିବାରେ କେଉଁ ରୁଚି ? କେଉଁ ସଂସ୍କୃତିର ପରିଚୟ ? ଇଏ ଯେ ଏକ ନବ୍ୟ-ବର୍ବରତା, ଏଥିରେ ମୋର ସନ୍ଦେହ ରହିଲା ନାହିଁ। କିନ୍ତୁ ଶିଷ୍ଟ ବିଶିଷ୍ଟମାନଙ୍କର ଆବାସସ୍ଥଳୀ ଏ ରାଜଧାନୀରେ ଏହା ସମ୍ଭବ ହେଉଛି କିପରି ? ମୁଁ ଜାଣେ, ଏ ପ୍ରଶ୍ନର ଉତ୍ତର କେହି ଦେବେ ନାହିଁ କିମ୍ବା କାହାଠାରୁ ମୁଁ ଏହାର ଉତ୍ତର ଆଶା କରୁନାହିଁ।

ସେଦିନ ସନ୍ଧ୍ୟାରେ, ସ୍ଥାନୀୟ ରବୀନ୍ଦ୍ରମଣ୍ଡପର ଏକ ସଭାରେ, ବିଶିଷ୍ଟ ଗଳ୍ପଲେଖକଙ୍କ ସହିତ ସାକ୍ଷାତ ହେଲା। ସେ ମଧ୍ୟ ହା-ହୁତାଶ କରି କହିଲେ, ତାଙ୍କ ବଗିଚାରୁ ସରସ୍ୱତୀ ପୂଜାର ପୂର୍ବ-ରାତିରେ ଗୋଲାପ ଗଛସବୁ କୁଣ୍ଡ ସହିତ ଚୋରି କରି ନେଇଯାଇଛନ୍ତି। ଇଏ ବୋଧହୁଏ, ଭୁବନେଶ୍ୱର ବାସିନ୍ଦାମାନଙ୍କର ଏକ ସାଧାରଣ ଅଭିଜ୍ଞତା।

ସେଇଥିପାଇଁ ମୋର କ୍ରମେ ଗୋଟାଏ ଧାରଣା ଜନ୍ମୁଛି, ଯେଉଁ ସାଂସ୍କୃତିକ ଓ ଆଧ୍ୟାତ୍ମିକ ପୃଷ୍ଠଭୂମିରେ ଦିନେ ଏଇସବୁ ପୂଜାପାର୍ବଣର ବ୍ୟବସ୍ଥା ହୋଇଥିଲା, ତାହା ପରିବର୍ତ୍ତିତ କାଳର ଆଘାତରେ ମଧ୍ୟ ପରିବର୍ତ୍ତିତ ହୋଇଯାଇଛି। ପୂଜାପାର୍ବଣମାନେ ଆଜି ହୁଜୁଗ୍। ଏଥିରେ ନାନ୍ଦନିକତା ନାହିଁ, ଆଧ୍ୟାତ୍ମିକତା ତ ଦୂରର କଥା। ତେଣୁ ମୁକ୍ତିମଣ୍ଡପ ପଣ୍ଡିତ ସଭାର ବ୍ୟବସ୍ଥାପକମାନେ ଦୟାକରି ଆମ୍ଭର ପଞ୍ଜିକାମାନଙ୍କରୁ, ଏଇ ପୂଜାପାର୍ବଣମାନଙ୍କୁ ଲୋପ କରିଦେଇପାରିବେ କି ?

୩୧/୦୧/୮୪

# ଅବକ୍ଷୟ: ଆହ୍ୱାନ ଓ ପ୍ରତ୍ୟୁତ୍ତର

ଭଞ୍ଜନଗର, ଗଞ୍ଜାମରୁ ଜଣେ ପତ୍ର-ପ୍ରେରକ (ଶ୍ରୀ କୈଳାସ ତ୍ରିପାଠୀ) 'ଶେଷପ୍ରଶ୍ନ' ପଢ଼ି ଲେଖିଛନ୍ତି; "... ଆପଣଙ୍କୁ ଉପଦେଶ ଦେବାର ଅଧିକାର ମୋର ନାହିଁ। କିନ୍ତୁ ଆପଣଙ୍କଠୁ ସ୍ନେହର ଦାବିରୁ ଆପଣ ମୋତେ ଦୂରେଇ ଦେଇ ପାରିବେନି।... ସମ୍ପାଦକମାନେ (ବର୍ତ୍ତମାନର ସାହିତ୍ୟ ପତ୍ରିକାମାନଙ୍କର) ସ୍ପଷ୍ଟ ଭାବରେ କହୁଛନ୍ତି ଯେ ଉପଯୁକ୍ତ ଲେଖା ମିଳୁନି, ତେଣୁ ପ୍ରକାଶନରେ ବିଳମ୍ବ ଘଟୁଛି। ଅଥଚ, ପରବର୍ତ୍ତୀ ସଂଖ୍ୟା ଯେତେବେଳେ ବାହାରୁଛି, ପାଠକ ନିରାଶ ହେଉଛି। ଲେଖା ତେବେ ଉପଯୁକ୍ତ ମାନର ହେଉନାହିଁ କାହିଁକି ? ଏଥିପାଇଁ କିଏ ଦାୟୀ ? ଅଧିକାଂଶ ସମ୍ପାଦକ ଯେଉଁ ମନୋବୃତ୍ତି ଗ୍ରହଣ କରି, ସଂଖ୍ୟା ପରେ ସଂଖ୍ୟା, ପତ୍ରିକାସବୁ ପ୍ରକାଶ କରିଚାଲିଛନ୍ତି, ତାହା ସାଧାରଣ ପାଠକ ମନରେ କି ପ୍ରତିକ୍ରିୟା ସୃଷ୍ଟି କରୁଛି, କର୍ଣ୍ଣପାତ କରିବାକୁ ସୁଦ୍ଧା ସେମାନେ ପ୍ରସ୍ତୁତ ହେଉନାହାନ୍ତି। ଓଡ଼ିଶାରେ ସାହିତ୍ୟ ପତ୍ରିକା ସମ୍ପାଦକମାନଙ୍କର ମଜ୍ଜାଗତ ହୋଇଗଲାଣି ଯେ ସେମାନେ ଜଣେ ଜଣେ ସମ୍ପାଦକ କେବଳ ନୁହନ୍ତି, ଲେଖକମାନଙ୍କର ଗୁରୁବୋଲି ମଧ୍ୟ ଭାବନ୍ତି। ସେମାନଙ୍କୁ ପୁଣି ସମାଲୋଚନା କଲେ, ବିଚରା ସମାଲୋଚକର ଅବସ୍ଥା ମଧ୍ୟ ଦୟନୀୟ ହୋଇଥାଏ।... ତେବେ ଉତ୍କୃଷ୍ଟ ସାହିତ୍ୟ ସୃଷ୍ଟି ହେବାରେ ବାଧା କେଉଁଠି ? ଆପଣମାନଙ୍କ ପରି ସୁଯୋଗ୍ୟ ସାହିତ୍ୟିକମାନେ ଥାଉ ଥାଉ, ଯଦି ଏକଥା ଘଟେ, ତେବେ କା' ଆଗେ କହିବା ? ଅକାଦମୀ ବା ବିଭିନ୍ନ ଆନୁଷ୍ଠାନିକ ପୁରସ୍କାର ପାଇବା ପରେ ସଂପୃକ୍ତ ଲେଖକ ଯଦି ଭାବିନିଅନ୍ତି ଯେ ସେ ଯାହା ଲେଖିବାର ଲେଖିସାରିଛନ୍ତି, ତାଙ୍କର ଆଉ ଲେଖିବାର ଆବଶ୍ୟକତା ନାହିଁ- ଯାହା ଘଟିଚାଲିଛି ଏଇ ଓଡ଼ିଶାରେ ଅନ୍ତତଃ- ତେବେ ଭବିଷ୍ୟତ ରୂପରେଖ କ'ଣ ହେବ ?.... କେତେଗୁଡ଼ିଏ ପ୍ରଶ୍ନ ଆପଣଙ୍କ ପାଖକୁ ଲେଖିଗଲି। ଉତ୍ତର ମଧ୍ୟ ପାଇବି ବୋଲି ବିଶ୍ୱାସ। କାରଣ ଆପଣ ଅଭିଜ୍ଞ, ମୁଁ ଅନଭିଜ୍ଞ।"

ଯେଉଁମାନେ ବିଭିନ୍ନ ସାହିତ୍ୟର ଇତିହାସ ଅନୁଶୀଳନ କରିଥିବେ, ସେମାନେ ଲକ୍ଷ୍ୟ କରିଥିବେ, ପ୍ରତ୍ୟେକ ସାହିତ୍ୟର ଇତିହାସ, ଉତ୍‌ଥାନ-ପତନ ଭିତର ଦେଇ ଗତି କରିଥାଏ। ଗୋଟାଏ ଗୋଟାଏ ସମୟ ଆସେ, ଯେତେବେଳେ ଏକାଧିକ ପ୍ରତିଭାଧର କବି ଓ ଲେଖକ ନିଜ ନିଜ କୃତିରେ ସାହିତ୍ୟକୁ ସମୃଦ୍ଧ କରିଥାଆନ୍ତି। ପୁଣି, ତା'ପରେ ଆସିଯାଏ, ଅବକ୍ଷୟର କାଳ। ସେହି ଅବକ୍ଷୟ-କାଳର ଗତି ମଧ୍ୟ ଦିନେ ପରିବର୍ତ୍ତିତ ହୋଇଯାଏ ନୂତନ ଲେଖକମାନଙ୍କର ଲେଖନୀ ସ୍ପର୍ଶରେ। ତା'ପରେ ଆସେ ଉତ୍‌ଥାନ ଓ ଅଭ୍ୟୁତ୍‌ଥାନର ପର୍ବ। ମନୁଷ୍ୟର ଜୀବନ ପରି ତାହାର କୃତି ମଧ୍ୟ ଏହି ଅଲଂଘନୀୟ ନିୟମଦ୍ୱାରା ନିୟନ୍ତ୍ରିତ। ଓଡ଼ିଆ ସାହିତ୍ୟର ଇତିହାସ ପର୍ଯ୍ୟାଲୋଚନ କଲେ ଦେଖାଯିବ, ଅଷ୍ଟାଦଶ ଶତାବ୍ଦୀରେ, ରସକଲ୍ଲୋଳକାର କବି ଦୀନକୃଷ୍ଣଙ୍କଠାରୁ ଆରମ୍ଭ କରି ଉନବିଂଶ ଶତାବ୍ଦୀର ଆଦ୍ୟପାଦରେ କବି ଅଭିମନ୍ୟୁ ସାମନ୍ତସିଂହାରଙ୍କ ମୃତ୍ୟୁ ପର୍ଯ୍ୟନ୍ତ, ଓଡ଼ିଆ ଆଳଙ୍କାରିକ କାବ୍ୟ-ସାହିତ୍ୟର ଇତିହାସରେ ଥିଲା ଏକ ସ୍ୱର୍ଣ୍ଣଯୁଗ। କବି ଅଭିମନ୍ୟୁଙ୍କ ପରଠାରୁ କବିବର ରାଧାନାଥଙ୍କ ପର୍ଯ୍ୟନ୍ତ, ଓଡ଼ିଆ କାବ୍ୟ-ସାହିତ୍ୟର ଇତିହାସ ଏକ ଅନ୍ଧକାରଯୁଗ ମଧ୍ୟଦେଇ ଗତି କରିଥିଲା ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ; ଯଦ୍ୟପି ସେଇ କାଳରେ କବିସୂର୍ଯ୍ୟ ବଳଦେବ ଓ ଗୋପାଳକୃଷ୍ଣଙ୍କ ପରି ସ୍ୱଭାବକବିମାନେ ନିଜ ନିଜ କୃତିରେ, ଓଡ଼ିଆ ମଧ୍ୟଯୁଗୀୟ ସାହିତ୍ୟକୁ ସମୃଦ୍ଧ କରିପାରିଥିଲେ। ରାଧାନାଥଙ୍କ ପରବର୍ତ୍ତୀ ଯୁଗର ଇତିହାସରେ ମଧ୍ୟ, ଉତ୍‌ଥାନ-ପତନର ଏହି ତରଙ୍ଗ ପରିଲକ୍ଷିତ ହୋଇଥିଲା। ଏଥିପାଇଁ କିଏ ଦାୟୀ ଓ କାହିଁକି ଏପରି ହୁଏ, ତାହା ନିର୍ଣ୍ଣୟ କରିବା ଏକ କଠିନ ବ୍ୟାପାର। କିନ୍ତୁ ଆପାତଃ ଦୃଷ୍ଟିରେ, ତଥ୍ୟ ଦିଗରୁ, ଏହାକୁ ଅସ୍ୱୀକାର କରିବାର ଉପାୟ ନାହିଁ।

ଯେଉଁମାନେ ଆର୍ଣ୍ଣୋଲଡ୍ ଟଏନ୍‌ବୀଙ୍କର 'ଆଇଡ଼ିଆଜ୍ ଇନ୍ ହିଷ୍ଟ୍ରୀ' ପୁସ୍ତକ ପଢ଼ିଥିବେ, ସେମାନେ ଜାଣିଥିବେ, ବିଭିନ୍ନ ସଭ୍ୟତାର ଇତିହାସରେ ମଧ୍ୟ, ଏହି ପ୍ରବୃତ୍ତି ପରିଲକ୍ଷିତ ହୋଇଥାଏ। ସଭ୍ୟତାର ପତନ ଘଟେ, ଯେତେବେଳେ ନୂଆ ପରିସ୍ଥିତିର ଆହ୍ୱାନର ମୁକାବିଲା କରିବାପାଇଁ ପ୍ରୟୋଜନ ପଡୁଥିବା ନୂଆ ପ୍ରତ୍ୟୁତ୍ତର (ରେସ୍‌ପନ୍‌ସ) ସୃଷ୍ଟି ହୋଇପାରେ ନାହିଁ। ମୋର ମନେହୁଏ, ସାହିତ୍ୟର ଇତିହାସ କ୍ଷେତ୍ରରେ ମଧ୍ୟ ଏହି ଆହ୍ୱାନ ଓ ପ୍ରତ୍ୟୁତ୍ତର-ତତ୍ତ୍ୱଟି ପ୍ରଯୁଜ୍ୟ। ଆଜିର ସାହିତ୍ୟିକ ପରିସ୍ଥିତି ଏ ପିଢ଼ିର ଲେଖକମାନଙ୍କ ଆଗରେ ଯେଉଁ ଆହ୍ୱାନ ସୃଷ୍ଟି କରିଛି; ତାହାର ଉପଯୁକ୍ତ ପ୍ରତ୍ୟୁତ୍ତର ମିଳୁନାହିଁ। ସେ ପ୍ରତ୍ୟୁତ୍ତର ନ ମିଳିବା ପର୍ଯ୍ୟନ୍ତ, ଉପସ୍ଥିତ ଆହ୍ୱାନର ମୁକାବିଲା କରି, ଉନ୍ନତତର ସାହିତ୍ୟ ସୃଷ୍ଟି ହୋଇପାରିବା ସମ୍ଭବ ନୁହେଁ; ଯଦ୍ୟପି ଇତିମଧ୍ୟରେ ବ୍ୟକ୍ତିଗତ ସ୍ତରରେ, କାହାରି କାହାରି ରଚନାରେ ସମ୍ଭାବନା ଓ ପ୍ରତିଶ୍ରୁତିର ପ୍ରଚୁର ସ୍ୱାକ୍ଷର ରହିଥିବା ଅସମ୍ଭବ ନୁହେଁ।

ତଥାପି ପ୍ରଶ୍ନ ଉଠିପାରେ, ଆବଶ୍ୟକ ପଡୁଥିବା 'ରେସ୍‌ପନସ୍' ସୃଷ୍ଟି ହେଉନାହିଁ କାହିଁକି ? ଏହାର ଉତ୍ତର କେବଳ, ଦେଇପାରେ ମାର୍କସ୍‌ଙ୍କର ଦ୍ୱନ୍ଦ୍ୱବାଦ- ଅନ୍ୱୟ ପରେ ପ୍ରତ୍ୟନ୍ୱୟ ଆସେ, ଏହା ଅବଧାରିତ। ଅନ୍ୱୟ-ପ୍ରତ୍ୟନ୍ୱୟର ଗୁଣାତ୍ମକ ସଂଘର୍ଷ ମଧ୍ୟରୁ ଜନ୍ମ ନେବ ନୂତନ ଅନ୍ୱୟ, 'ସିନ୍ଥେସିସ୍' ବା ସମନ୍ୱୟ। ସେ ପର୍ଯ୍ୟନ୍ତ ଧୈର୍ଯ୍ୟ ଓ ଆତ୍ମବିଶ୍ୱାସର ସହିତ, ପ୍ରତ୍ୟେକ ଶୁଦ୍ଧ ସାହିତ୍ୟିକ, ନିଜକୁ ସହଜ ଲୋକପ୍ରିୟତାର ଊର୍ଦ୍ଧ୍ୱରେ ରଖି, ନିଜ ନିଜର ସାରସ୍ୱତ ସାଧନାରେ ବ୍ରତୀ ରହିବା ଆବଶ୍ୟକ।

ସମ୍ପାଦକମାନେ ଯାହା ପାଇଲେ, ତାକୁ ଛପାଇଲେ। ସେମାନଙ୍କୁ ବା ଲେଖକମାନଙ୍କୁ ଦୋଷ ଦେଇ ଲାଭ ନାହିଁ। ସତ୍‌ସାହିତ୍ୟ ସୃଷ୍ଟିରେ ପାଠକମାନଙ୍କର ମଧ୍ୟ ଏକ ନିର୍ଦ୍ଦିଷ୍ଟ ଭୂମିକା ରହିଛି।

*୦୭/୦୨/୮୫*

# ଯୌବନର ଜୟଯାତ୍ରା

ବିଶିଷ୍ଟ ଇଂରେଜୀ ଲେଖକ ଓ ଚିନ୍ତକ ଡିସ୍‌ରାଏଲୀ ଥରେ କହିଥିଲେ- "Almost everything that is great has been done by youth" ଅର୍ଥାତ୍, "ଯାହା କିଛି ମହାନ୍, ସେସବୁ ଯୌବନରେ ହିଁ ସାଧିତ ହୋଇଥାଏ।" ଯୌବନ ହେଲା ସୃଷ୍ଟି କର୍ମର ଚୂଡ଼ାନ୍ତ ମଧ୍ୟାହ୍ନ। ତା'ପରେ ମଧ୍ୟାହ୍ନ ସୂର୍ଯ୍ୟ, ଅପରାହ୍ଣର ଆକାଶରେ ଅବତରଣ କରେ ଲମ୍ବା ଲମ୍ବା ଛାଇ ପକାଇ। ଛାଇ କିନ୍ତୁ ସୃଷ୍ଟି ନୁହେଁ, ସୃଷ୍ଟିର ଛଳନା।

ଇତିହାସରେ ବହୁ କ୍ଷେତ୍ରରେ ପ୍ରାତଃସ୍ମରଣୀୟ ବହୁ ବ୍ୟକ୍ତିଙ୍କ ଜୀବନୀ ଓ ସାଧନା ଆଲୋଚନା କଲେ, ଡିସ୍‌ରାଏଲୀଙ୍କ ଏ ଉକ୍ତିର ସତ୍ୟତା ପ୍ରମାଣିତ ହୋଇଥାଏ। ଗୌତମ ବୁଦ୍ଧ ମହାବୋଧି ଲାଭ କରିଥିଲେ ୩୦ ବର୍ଷ ବୟସରେ। ଶଙ୍କରାଚାର୍ଯ୍ୟ ୩୦ ବର୍ଷ ବୟସ ବେଳକୁ ଜଗଦ୍‌ଗୁରୁ ରୂପେ ସ୍ୱୀକୃତି ଲାଭ କରିସାରିଥିଲେ। ଶ୍ରୀ ଚୈତନ୍ୟଙ୍କୁ ତାଙ୍କର ପୂର୍ବସୂରୀ ଅଦ୍ୱୈତାଚାର୍ଯ୍ୟ ପ୍ରମୁଖ 'ଅବତାର' ରୂପେ ଅଭିଷିକ୍ତ କରିଥିଲେ, ତାଙ୍କର ୨୪ ବର୍ଷ ବୟସରେ।

କେବଳ ଧର୍ମ-ସାଧନାର ଇତିହାସରେ ନୁହେଁ, ଯୁଦ୍ଧ ଓ ରାଷ୍ଟ୍ରନୀତିର ଇତିହାସରେ ମଧ୍ୟ ଏହି ଆଭିମୁଖ୍ୟ ଲକ୍ଷ୍ୟ କରାଯାଇପାରେ। ମହାତ୍ମା ଗାନ୍ଧୀ ୩୦ ବର୍ଷ ବୟସ ବେଳକୁ ଦକ୍ଷିଣ ଆଫ୍ରିକାରେ ଜେନେରାଲ୍ ସ୍ମଟସ୍‌ଙ୍କ ସହିତ ଚୁକ୍ତିସ୍ୱାକ୍ଷର କରି, ଦକ୍ଷିଣ ଆଫ୍ରିକୀୟ ଭାରତୀୟ ଜନତାର ଦୃଷ୍ଟିରେ ତ୍ରାଣକର୍ତ୍ତା ରୂପେ ପ୍ରତିଷ୍ଠିତ ହୋଇପାରିଥିଲେ। ଭାରତରେ ମଧ୍ୟ ସେତେବେଳକୁ ସେ ହୋଇ ସାରିଥିଲେ 'ମହାତ୍ମା'। ଇଂଲଣ୍ଡ-ଇତିହାସର ଏଡ୍‌ୱାର୍ଡ଼ ଦି ବ୍ଲାକ୍‌ପ୍ରିନ୍‌ସ ୧୬ ବର୍ଷ ବୟସରେ ହୋଇପାରିଥିଲେ 'ଦି ବାଟଲ୍ ଅଫ୍ କ୍ରେସୀ'ର ବିଜେତା। ଜୋଆନ୍ ଅଫ୍ ଆର୍କ ୧୭ ବର୍ଷ ବୟସରେ ଇଂଲଣ୍ଡଠାରୁ ଅରଲିନ୍‌ସ ଅଧିକାର କରିଥିଲେ। ରୁଷିଆର ଇଭାନ୍ ଦି ଟେରିବଲ୍ ୧୭ ବର୍ଷ ବୟସରେ ଜାର୍ ସିଂହାସନରେ ଅଭିଷିକ୍ତ ହୋଇଥିଲେ। ଆଲେକ୍‌ଜାଣ୍ଡାର ୨୧ ବର୍ଷ ବୟସ ବେଳକୁ ଇତିହାସରେ ବିଘୋଷିତ ହୋଇସାରିଥିଲେ, 'ଦି ଗ୍ରେଟ୍'।

କିନ୍ତୁ ତାରୁଣ୍ୟର ଏ ଜୟଯାତ୍ରା ସାହିତ୍ୟ କ୍ଷେତ୍ରରେ ଅଧିକ ସୁସ୍ପଷ୍ଟ। ସେକ୍ସପିଅର (୧୫୬୪) ଅପରାଜେୟ ନାଟ୍ୟକାର ରୂପେ ୨୭ ବର୍ଷ ବୟସ ବେଳକୁ ପ୍ରସିଦ୍ଧି ଅର୍ଜନ କରିସାରିଥିଲେ। ମିଲ୍‌ଟନ (୧୬୫୮) ୩୦ ବର୍ଷ ବୟସ ବେଳକୁ ରଚନା କରିସାରିଥିଲେ (ଲିସିଡ଼ାସ୍) Lycidas ପ୍ରଭୃତି ତାଙ୍କର ପ୍ରସିଦ୍ଧ ରଚନା। ଫରାସୀ ନାଟ୍ୟକାର ମଲିୟେର୍ (୧୬୨୨) ୨୩ ବର୍ଷ ବୟସ ବେଳକୁ ସେକ୍‌ସ୍ପିୟରଙ୍କ ଯଶପ୍ରଭାକୁ ମଳିନ କରିସାରିଥିଲେ। ଜେନ୍ ଅଷ୍ଟିନ୍ (୧୭୭୫) ୪୨ ବର୍ଷ ବୟସରେ ମୃତ୍ୟୁମୁଖରେ ପଡ଼ିବାବେଳକୁ ଇଂରାଜୀ ଉପନ୍ୟାସ ସାହିତ୍ୟରେ ସୁପ୍ରସିଦ୍ଧ ହୋଇସାରିଥିଲେ। ଭଲ୍‌ଟାୟାର (୧୬୯୪) ୩୧ ବର୍ଷ ବୟସ ବେଳକୁ ଫ୍ରାନ୍‌ସର ଅପ୍ରତିଦ୍ୱନ୍ଦ୍ୱୀ କବି ଓ ବିପ୍ଳବୀ ରୂପେ ପ୍ରତିଷ୍ଠା ଲାଭ କରିପାରିଥିଲେ। ରୁଷୋ (୧୭୧୨) ୩୭ ବର୍ଷ ବୟସରେ ହୋଇପାରିଥିଲେ ୟୁରୋପର ସୁପ୍ରସିଦ୍ଧ ତାତ୍ତ୍ୱିକ ଓ ପ୍ରାବନ୍ଧିକ। ୨୪ ବର୍ଷ ବୟସରେ ତରୁଣ କବି ଗେଟେ (୧୭୪୯) କାଳଜୟୀ 'ଫଷ୍ଟ୍' ରଚନା କରିସାରିଥିଲେ। ଇଂରାଜୀ କବି ୱାର୍ଡ଼ସ୍‌ୱର୍ଥ (୧୭୭୦)ଙ୍କର ସବୁ ପ୍ରସିଦ୍ଧକୃତି ରଚିତ ହୋଇସାରିଥିଲା ୩୮ ବର୍ଷ ବୟସ ପୂର୍ବରୁ। ଶେଲୀ, ବାୟରନ୍ ଓ କୀଟ୍‌ସ ପ୍ରଭୃତି କବିମାନଙ୍କର ସବୁ ପ୍ରସିଦ୍ଧକୃତି ଯୌବନରେ ହିଁ ରଚିତ ହୋଇଥିଲା।

ଭାରତୀୟ ନରଲେକର ୨୫ ବର୍ଷ ବୟସ ପୂର୍ବରୁ ସୁଦ୍ଧା ଆଇନ୍‌ଷ୍ଟାଇନ୍‌ଙ୍କ ଥିଓରି ଅଫ୍ ରିଲେଟିଭିଟି ସୂତ୍ରରେ, ପ୍ରମାଣ କରିସାରିଥିଲେ କେତେକ ତ୍ରୁଟି ଓ ଅପୂର୍ଣ୍ଣତା। ଯୌବନର ସିଦ୍ଧି ତେଣୁ ମନୁଷ୍ୟର ସଂସ୍କୃତି ଓ ସଭ୍ୟତାର ଇତିହାସ।

ଯୌବନ ଯେଉଁଠାରେ ସୃଷ୍ଟିସାଧନାରେ ପ୍ରଖର- ସେଠାରେ ସେ କାହାର ସ୍ୱୀକୃତିର ଅପେକ୍ଷା ରଖେ ନାହିଁ। ଶିଶୁ ଉଦ୍ଭିଦର କୋମଳ ସବୁଜିମା ମଧ୍ୟରେ ଥାଏ, ଏପରି ଏକ ଅପ୍ରତିରୋଧ୍ୟତା; ଯାହା ପାଷାଣ-ଶିଳାର କଠୋର ଆବରଣୀକୁ ସୁଦ୍ଧା ବିଦୀର୍ଣ୍ଣ କରି ଆତ୍ମଘୋଷଣା କରେ। ମାତ୍ର ଇତିହାସ ଓ ପ୍ରକୃତିର ଏହି ଅଭିଜ୍ଞତା ଭାରତର, ବିଶେଷତଃ ଓଡ଼ିଶାର ଯୁବଚେତନାରେ ତଥାପି ଉଦ୍ରିକ୍ତ ହୋଇ ପାରିନାହିଁ। ଏଠାରେ ଯୌବନ, ସିଦ୍ଧିର କାଳ ନୁହେଁ; ଏହା 'ପ୍ରୋବେସନ୍‌ରସିପ୍'ର କାଳ ରୂପେ ବିବେଚିତ। ସୂର୍ଯ୍ୟ ସନ୍ଧାନ ଏଠି ମଧ୍ୟାହ୍ନରେ ନୁହେଁ; ଅପରରାହ୍ଣର ପଡ଼ନ୍ତି ବେଳରେ। ତରୁଣ ଏଠାରେ ତେଣୁ, ନିଜର ଏକକ ସାଧନା ପରିବର୍ତ୍ତେ ପ୍ରତିଷ୍ଠିତ ପ୍ରବୀଣମାନଙ୍କ ବିରୁଦ୍ଧରେ ନେତିବାଦୀ ବିଦ୍ରୋହ ବା ବିସ୍ଫୋରଣରେ କେବଳ ଶତମୁଖ। ଏହା କିନ୍ତୁ ସ୍ୱାଭାବିକ ନୁହେଁ।

ତାରୁଣ୍ୟର ଧର୍ମ, ରିଜେକ୍‌ସନ୍ ବା ପ୍ରତ୍ୟାଖ୍ୟାନ। ତରୁଣ ଯଦି ଅତୀତର ସବୁ ପଦ୍ଧତି, ପରମ୍ପରା ଓ ମୂଲ୍ୟବୋଧକୁ ତାହାର ସମାଲୋଚନାଶୀଳ ପ୍ରଜ୍ଞାରେ ବିଶ୍ଳେଷଣ କରି ନୂତନର ସମ୍ଭାବନାରେ ସେସବୁକୁ ପ୍ରତ୍ୟାଖ୍ୟାନ ନକଲା; ତା'ହେଲେ ତରୁଣ ଓ ଅଳ୍ପ ବୟସର

'ଜରଦ୍‌ଗବ'ମାନଙ୍କ ମଧ୍ୟରେ ପାର୍ଥକ୍ୟ କ'ଣ ? ତାରୁଣ୍ୟ ସେଠାରେ ପରିଣତ ହୁଏ ଆଉ ଏକ ନୂତନ ନ୍ୟସ୍ତସ୍ୱାର୍ଥରେ। ପାଶ୍ଚାତ୍ୟ ଦେଶରେ ତାରୁଣ୍ୟର ଜୟଯାତ୍ରା ଏହି ରିଜେକ୍‌ସନ ମଧ୍ୟରୁ ନୂତନ ସଂସ୍କୃତି, ନୂତନ ସାହିତ୍ୟ ଏପରିକି ନୂତନ ସମାଜର ସନ୍ଧାନ କରୁଥିବା ବେଳେ ଆମର ତରୁଣ ପୁରାତନର ସ୍ୱୀକୃତି ପାଇଁ ବ୍ୟାକୁଳ। ତରୁଣ କଥାରେ ଚାହେଁ, ବନ୍ଧନମୁକ୍ତି। କିନ୍ତୁ ବନ୍ଧନର ଗ୍ରନ୍ଥି ତ ତାହାର ନିଜ ହୃଦୟ ଭିତରେ। ସେ ବନ୍ଧନରୁ ମୁକ୍ତି ମିଳିପାରେ କେବଳ, ପ୍ରଥମେ ନିଜ ବିରୁଦ୍ଧରେ ବିଦ୍ରୋହ ଘୋଷଣା କରିବାରେ। ଯିଏ ନିଜ ବିରୁଦ୍ଧରେ ବିଦ୍ରୋହ ଘୋଷଣା ନକରିଛି, ତାହାର ବିଦ୍ରୋହ ଅନ୍ୟ ବିରୁଦ୍ଧରେ ଦ୍ରୋହାଚରଣ ମାତ୍ର। ସେପରି ବିଦ୍ରୋହ କେବଳ ଶାନ୍ତିଭଙ୍ଗରେ ପର୍ଯ୍ୟବସିତ ହୁଏ। ତାହା ଆନାର୍କୀ।

୧୪/୦୨/୮୫

# ଜୀର୍ଣ୍ଣପଲ୍ଲବର ଆଶୀର୍ବାଦ

ଅନେକେ ଆଶ୍ଚର୍ଯ୍ୟ ହେବେ, ମୁଁ ଫକୀରମୋହନ ସେନାପତିଙ୍କ ପ୍ରତି ପ୍ରଥମେ ଆକୃଷ୍ଟ ହେବାବେଳେ, 'ଛମାଣ ଆଠଗୁଣ୍ଠ', 'ରେବତୀ', 'ରାଣ୍ଡୀପୁଅ ଅନନ୍ତା' ପ୍ରଭୃତି କୃତିକୁ ଏତେ ନିବିଡ଼ ଭାବେ ପଢ଼ି ନଥିଲି। 'ପୂଜାଫୁଲ' କବିତା ୧ ିରେ 'ଜୀର୍ଣ୍ଣ ପଲ୍ଲବର ଆଶୀର୍ବାଦ' କବିତାଟି ପଢ଼ି ସାରିବା ପରେ, ମୋର ଆବେଗପ୍ରବଣ ମନ ତାଙ୍କ ପ୍ରତି ଆକୃଷ୍ଟ ହୋଇଥିଲା। ବସ୍ତୁତଃ ସମଗ୍ର ଓଡ଼ିଆ ସାହିତ୍ୟରେ କାହିଁକି, ଭାରତୀୟ ସାହିତ୍ୟରେ ସୁଦ୍ଧା ତରୁଣ ପ୍ରତି ଜଣେ ପ୍ରବୀଣର ଏପରି ସ୍ୱତଃସ୍ଫୂର୍ତ୍ତ ଭାବାବେଗ ବିରଳ। ମୋର ଯୌବନରେ କୌଣସି ପ୍ରବୀଣଙ୍କଠାରୁ ସୁଦ୍ଧା ମୁଁ ଏ କବିତାର ମର୍ମୋଚ୍ଚାରଣ ଶୁଣି ନାହିଁ। କବିତାଟି ଏଠାରେ ଆଂଶିକ ଭାବରେ ଉଦ୍ଧାର କରିବାର ଲୋଭ ସମ୍ବରଣ କରିପାରୁ ନାହିଁ।

"ବସନ୍ତ ଆଗମେ ନବ ପଲ୍ଲବ ସକଳ,
ଦିଶୁଛନ୍ତି ମନୋହର କେମନ୍ତେ ସୁଢ଼ଳ।
ପାଦପର ରସ ବୃଥା କରେ ଅପଚୟ,
ହେଉଛି କୋମଳ ପତ୍ର ଖାଦ୍ୟ ଅପବ୍ୟୟ।
ଆଉ ମୁଁ ଶାଖାରେ ଲାଗି ଥିବି କି ଆଶୟେ,
ସ୍ଥାନ ଲଭି ବୃଦ୍ଧିପ୍ରାପ୍ତ ହେବେ କିଶଳୟେ,
ଆଶୀର୍ବାଦ ! ଆଶୀର୍ବାଦ ! ନବପତ୍ରଦଳ,
ଛାୟାଦାନେ ହୁଅ, ପାନ୍ଥ ପାଦପ ସମ୍ବଳ।"

ଏହି କବିତାଟି ବୟସରେ କନିଷ୍ଠମାନଙ୍କ ପ୍ରତି ମୋତେ ଏ ପର୍ଯ୍ୟନ୍ତ ଶ୍ରଦ୍ଧାଶୀଳ ରଖିଆସିଛି। ମୋ' ଜୀବନର ସବୁ ଅସଫଳତାର ସଫଳତା ଓ ସବୁ ଅପୂର୍ଣ୍ଣତାର ପୂର୍ଣ୍ଣତା, ମୁଁ ତରୁଣମାନଙ୍କଠାରେ ଦେଖିବାପାଇଁ ସବୁ ଦିନେ ଆଶାପୋଷଣ କରିଆସିଛି। କିନ୍ତୁ ତରୁଣମାନେ ମୋର ଆପାତ କଠୋରତାରେ ମୋ ପ୍ରତି କ୍ଷୁବ୍ଧ ଓ ଖଡ୍‌ଗହସ୍ତ। ସେମାନେ ମୋ'ଠାରୁ ଆଶା କରନ୍ତି, ମୁଁ ବାବାଜୀ ହୋଇ ଚାଲିଯାଏ ଓ ସେମାନେ ଦୀକ୍ଷିତ ନହୋଇ

ମୋ ଜାଗାରେ ବସନ୍ତୁ । ମୁଁ କିନ୍ତୁ ସେମାନଙ୍କୁ ପ୍ରଥମେ ଦୀକ୍ଷିତ ହେବାକୁ କହିଲେ, ସେମାନେ କହନ୍ତି, ଲୋକଟା ଅଖାଡୁଆ ! ମୁଁ ସେମାନଙ୍କୁ ରାଜନୀତିଠାରୁ ଆରମ୍ଭ କରି ସବୁକଥାରେ କହିଆସିଛି, "ବାବାଜୀ ହୋଇଯିବି କେଉଁ ଦୁଃଖରେ ? ତୁମେମାନେ ମୋତେ ଟାଣି ଫିଙ୍ଗିଦେବାକୁ ଚେଷ୍ଟା କଲେ, ମୁଁ ବାଧା ଦେବି ନାହିଁ। ମୁଁ ତୁମମାନଙ୍କୁ ଶ୍ରଦ୍ଧାରେ ଆଲିଙ୍ଗନ କରିବି।" ସେମାନେ ଭାବନ୍ତି ଇଏ ବୋଧହୁଏ ଧୃତରାଷ୍ଟ୍ରର ଆଲିଙ୍ଗନପାଇଁ ଆମନ୍ତ୍ରଣ ! ଏଇ 'କମ୍ୟୁନିକେସନ୍ ଗ୍ୟାପ୍' ଭିତରେ ମୁଁ ଭୁଲ୍‌ବୁଝାର ମିଞ୍ଜିମିଞ୍ଜି ଆଲୁଅରେ ରହିଯାଇଛି। କିନ୍ତୁ ଫକୀରମୋହନଙ୍କ ଭାଷାରେ ନବ-ପଲ୍ଲବ ଯଦି ପରିପୁଷ୍ଟ ପତ୍ରର ସବୁଜିମାରେ ସଘନ ନହୁଏ, ତା'ହେଲେ ସେ ପଥିକକୁ ଛାୟା ପ୍ରଦାନ କରିବ କିପରି ବା ପାଦପର ସମ୍ବଳ ହେବ କିପରି ? ଏଥିପାଇଁ ମଧ୍ୟ ସଂକଳ୍ପ ଓ ନିରଭିମାନୀ ସାଧନା ଆବଶ୍ୟକ। କିନ୍ତୁ ମୁଁ ଦୁଃଖର ସହିତ ଲକ୍ଷ୍ୟ କରୁଛି, ପ୍ରବୀଣମାନେ ଯେପରି ମଠ ଓ ଗୋଠ ଭିଆଇଥିଲେ, ତରୁଣମାନେ ମଧ୍ୟ ନିଜ ନିଜର ଉତ୍କର୍ଷପାଇଁ ସାଧନା ଭୁଲି, ଅତି ଅଳ୍ପ ଓ ସହଜ ସିଦ୍ଧିକୁ ପୁଞ୍ଜି କରି, ସେହିପରି ଗୋଟିଏ ଗୋଟିଏ ମଠ ଗଢ଼ିବାପାଇଁ ଗୋଠ ବାନ୍ଧୁଛନ୍ତି।

ବୌଦ୍ଧଧର୍ମଠାରୁ ଆରମ୍ଭକରି, ଖ୍ରୀଷ୍ଟଧର୍ମ ପର୍ଯ୍ୟନ୍ତ ଉଣାଅଧିକେ ସବୁ ଧର୍ମର ଇତିହାସ, କେହି ଆଲୋଚନା କଲେ ଦେଖିବେ, ଯେଉଁଦିନ ବୌଦ୍ଧବିହାରସବୁ ମଠରେ ପରିଣତ ହେଲା, ବା ଖ୍ରୀଷ୍ଟଧର୍ମ ଚର୍ଚ୍ଚମାନଙ୍କରେ ପରିଣତ ହୋଇ ରହିଲା, ଆଚାର୍ଯ୍ୟ ଓ ବିଶପ୍‌ମାନେ ଧର୍ମମହାମାତ୍ର ହୋଇ ବସିଲେ, ସେହିଦିନଠାରୁ ବୌଦ୍ଧଧର୍ମ ଓ ଖ୍ରୀଷ୍ଟଧର୍ମ ପ୍ରଭୃତିର ଅବକ୍ଷୟ ଆରମ୍ଭ ହେବାକୁ ଲାଗିଲା। ସେଥିପାଇଁ, ମଠ ଓ ଗୋଠତନ୍ତ୍ରର ମୁଁ ପ୍ରବଳ ବିରୋଧୀ। ପ୍ରବୀଣମାନେ ଆତ୍ମପ୍ରତ୍ୟୟହୀନ ହୋଇ, ଗୋଠ ଭେଳାଇ ପାରନ୍ତି। ସ୍ୱାଭାବିକ। ଅପରାହ୍ନର ପଡ଼ନ୍ତି ବେଳାରେ, ଭକ୍ତମାନଙ୍କଠାରୁ ଟିକିଏ ପ୍ରଶସ୍ତି ଶୁଣିବାପାଇଁ ଭଲ ଲାଗିବା ହିଁ ସ୍ୱାଭାବିକ। କିନ୍ତୁ ତରୁଣମାନେ ତ ଉଲଗ୍ନ ତରବାରୀ। ସେମାନେ ମଧ୍ୟାହ୍ନର ସୂର୍ଯ୍ୟାଲୋକରେ ଚକ୍‌ମକ୍ କରିବା କଥା। ଏତେ ଶୀଘ୍ର କ୍ଳାନ୍ତ ହୋଇ କୋଷବଦ୍ଧ ଭୂଷଣରେ ପରିଣତ ହେବାର କି ପ୍ରୟୋଜନ ? ସେମାନେ ଏ ବୟସରେ ଅଭିସମ୍ପାତ ଶୁଣିଲେ ବରଂ ଅଧିକ ତୀକ୍ଷ୍ଣ ଓ ଶାଣିତ ହେବେ। କାରଣ ଇସ୍ପାତ୍‌କୁ ପଥରରେ ଘଷିଲେ ଯାଇ, ତାହା ତୀକ୍ଷ୍ଣ ହୁଏ। ଆଉ ତାକୁ ଅଙ୍ଗୁର ରସରେ ପୋଛିଲେ ସେଥିରେ କଳଙ୍କି ଲାଗେ। ତରୁଣମାନେ ଏତେ ଅଳ୍ପରେ ସନ୍ତୁଷ୍ଟ ହେଉଛନ୍ତି କାହିଁକି ? ଜୀବନରେ ତୃଷା ଯଦି ମାତ୍ର କେଇ ବିନ୍ଦୁ ଜଳରେ ତୃପ୍ତ ହୋଇଗଲା, ତା'ହେଲେ ସମୁଦ୍ରକୁ ଶୋଷିବ କିଏ ? ତରୁଣମାନଙ୍କଠାରେ ଅଗସ୍ତିର ତୃଷା ପ୍ରକାଶ ପାଉ। ଚାତକ ପରି ଗୋଟିଏ ବିନ୍ଦୁ ବର୍ଷାଜଳ ସେମାନଙ୍କ ତୃଷା ପ୍ରଶମିତ ନ କରୁ !

୨୧/୦୨/୮୪

# ନାୟକ ନା ବିଦୂଷକ ?

ଏହି ସ୍ତମ୍ଭରେ କିଛିଦିନ ତଳେ ସାମ୍ପ୍ରତିକ ଓଡ଼ିଆ ଉପନ୍ୟାସରେ ସଙ୍କଟ ସମ୍ପର୍କରେ ମୁଁ ଏକ ଲେଖା ଲେଖିଥିଲି। ଓଡ଼ିଆ ଉପନ୍ୟାସରେ ବର୍ତ୍ତମାନ ଅବକ୍ଷୟ ଦେଖା ଦେଇଛି ବୋଲି ମୁଁ ସେଥିରେ ମୋ ନିଜର ବିଚାର ପ୍ରକାଶ କରିଥିଲି। କେହି କେହି ଏଥିରେ ଏକମତ ନୁହନ୍ତି। ସମସ୍ତେ ମୋ ସହିତ ଏକମତ ହୁଅନ୍ତୁ, ଏହା ମୋର ଉଦ୍ଦେଶ୍ୟ ନୁହେଁ। ମୁଁ ସବୁଦିନେ ଗୁରୁବାଦର ବିରୋଧୀ। ତେଣୁ, ମୋ କଥା ସମସ୍ତେ ଏକ ବାକ୍ୟରେ ସ୍ୱୀକାର କରନ୍ତୁ- ଏହା ମୋର ଚିନ୍ତାର ବହିର୍ଭୂତ। ମୁଁ କେବଳ ଅନ୍ୟମାନଙ୍କର ଚିନ୍ତା, ବିଚାର ଓ ବିତର୍କପାଇଁ ଏହି ସ୍ତମ୍ଭରେ କେତେକ ଉପାଦାନ ଯୋଗାଉଅଛି ମାତ୍ର।

ଏବେ କେନ୍ଦ୍ର ସାହିତ୍ୟ ଅକାଦେମୀର ମୁଖପତ୍ର 'ଇଣ୍ଡିଆନ୍ ଲିଟରେଚର'ର ଜାନୁଆରି, ଫେବ୍ରୁଆରି ୧୯୮୫ ସଂଖ୍ୟାରେ, ସାମ୍ପ୍ରତିକ ମାଲୟାଲୀ ସାହିତ୍ୟର ଉପନ୍ୟାସର ଅବସ୍ଥା ସଂପର୍କରେ ଗୋଟିଏ ପ୍ରବନ୍ଧ ପଢ଼ିଲି। ଆଧୁନିକ ଭାରତୀୟ ସାହିତ୍ୟ ମଧ୍ୟରେ ମାଲୟାଲୀ ସାହିତ୍ୟ ସମୃଦ୍ଧିଶାଳୀ। ଏହି ସାହିତ୍ୟର କବି ଓ ଔପନ୍ୟାସିକମାନେ ଏକାଧିକବାର କେନ୍ଦ୍ର ସାହିତ୍ୟର ଅକାଦେମୀ ଓ ଜ୍ଞାନପୀଠ ପୁରସ୍କାର ପାଇ ସାରିଲେଣି। କେରଳ ଆକାର ଓ ଲୋକ ସଂଖ୍ୟାରେ ଗୋଟିଏ କ୍ଷୁଦ୍ର ରାଜ୍ୟ ହେଲେ ହେଁ, ଏହି ରାଜ୍ୟରେ ସାକ୍ଷର ସଂଖ୍ୟା ଭାରତରେ ସର୍ବାଧିକ। ଏହି ଭାଷାରେ ପ୍ରକାଶିତ ଅନ୍ତତଃ ଦୁଇଟି ଦୈନିକ ପତ୍ରିକାର ପ୍ରସାର ଭାଷା-ସମ୍ବାଦପତ୍ରମାନଙ୍କ ମଧ୍ୟରେ ସର୍ବୋଚ୍ଚ ପର୍ଯ୍ୟାୟର ସାହିତ୍ୟ ପତ୍ରିକାମାନଙ୍କର ସଂଖ୍ୟା ଓ ପ୍ରସାର ମଧ୍ୟ ତଦ୍ରୂପ। ଏହାର ଲେଖକ ସହଯୋଗ- ସମିତି ବର୍ଷକୁ ପ୍ରାୟ ପାଞ୍ଚଶହରୁ ଅଧିକ ବହି ପ୍ରକାଶ କରିଥାଆନ୍ତି- ଇତ୍ୟାଦି ଇତ୍ୟାଦି।

କିନ୍ତୁ ଏହି ସାହିତ୍ୟରେ ମଧ୍ୟ ଉପନ୍ୟାସ, ବର୍ତ୍ତମାନ ଅବକ୍ଷୟଗ୍ରସ୍ତ। ଆଲୋଚିତ ପ୍ରବନ୍ଧରେ, ଶ୍ରୀ କେ. ଏସ୍. ପିଲାଇ ମାଲୟାଲୀ ଉପନ୍ୟାସ ସଂପର୍କରେ ଲେଖିଛନ୍ତି; ସାମୟିକ ପତ୍ରପତ୍ରିକାମାନଙ୍କର ପ୍ରସାର ବଢ଼ାଇବାପାଇଁ, ପ୍ରକାଶକମାନେ ଧାରାବାହିକ ଭାବରେ ପ୍ରକାଶ କରିବାପାଇଁ, ଉପନ୍ୟାସ ସବୁ ଖୋଜିଥାଆନ୍ତି। ଏବେ ସେହିମାନଙ୍କର ଚାହିଦା

ମେଣ୍ଟାଇବାପାଇଁ ଉପନ୍ୟାସ ସବୁ ଲେଖାଯାଉଛି। ଧାରାବାହିକ ଉପନ୍ୟାସଟିଏ ପତ୍ରପତ୍ରିକାରେ ବାହାରିଲେ ପାଠକମାନଙ୍କର ଆଦର ବଢ଼ିବା ସ୍ୱାଭାବିକ। ଏ ଉପନ୍ୟାସ ସବୁ କିନ୍ତୁ 'ସିରିଅସ୍' ହୋଇପାରେ ନାହିଁ। କାରଣ, ଏସବୁ ଭାବଧର୍ମୀ ହେବାକୁ ଚେଷ୍ଟାକଲେ, ଲୋକପ୍ରିୟ ହୋଇପାରିବ ନାହିଁ। ଲୋକପ୍ରିୟ ନହେଲେ ପତ୍ରପତ୍ରିକାମାନଙ୍କର କାଟ୍‌ତି ବଢ଼ିବ ନାହିଁ। କିନ୍ତୁ ପତ୍ରପତ୍ରିକାରେ ଏହି ଲୋକପ୍ରିୟ ଉପନ୍ୟାସସବୁ ପ୍ରକାଶ ପାଇସାରିବା ପରେ ଏହାର ଲେଖକମାନେ ପ୍ରକାଶକଟିଏ ଖୋଜି ପାଆନ୍ତି ନାହିଁ। ଧାରାବାହିକ ଭାବରେ ପତ୍ରପତ୍ରିକା ପୃଷ୍ଠାରେ ଲୋକପ୍ରିୟ ହେବା ଏକ କଥା, କିନ୍ତୁ ବହି ଆକାରରେ ପାଠକ ସମାଜରେ ଆଦୃତ ହେବା ଆଉ ଏକ ଭିନ୍ନେ କଥା। ସେଥିପାଇଁ ଅନେକ ଔପନ୍ୟାସିକ ପତ୍ରପତ୍ରିକାରେ ପ୍ରକାଶ ପାଇଥିବା ନିଜ ନିଜର ଉପନ୍ୟାସକୁ, ନିଜେ ଛପାଇ, ତାହାର ବିକ୍ରି କରାଉ ଅଛନ୍ତି।

କିନ୍ତୁ ଲେଖକ ଲେଖିଛନ୍ତି, ଏହିସବୁ ବ୍ୟାବସାୟିକ ବଜାରଚଲ୍‌ତି ଉପନ୍ୟାସ ପରିବର୍ତ୍ତେ, ପୁରୁଣା ଦିନର ପ୍ରସିଦ୍ଧ ଔପନ୍ୟାସିକମାନଙ୍କ ଉପନ୍ୟାସଗୁଡ଼ିକର ପୁନର୍ମୁଦ୍ରଣ ପ୍ରଚୁର ପରିମାଣରେ କରାଯାଉଛି। ଅର୍ଥାତ୍, ସାହିତ୍ୟପ୍ରେମୀମାନେ ଉପନ୍ୟାସଟିଏ ପଢ଼ିବାପାଇଁ ଚାହିଁଲେ, ଏହିସବୁ ଲୋକପ୍ରିୟ ଉପନ୍ୟାସ ପରିବର୍ତ୍ତେ ବିଗତ ଦିନର ପ୍ରସିଦ୍ଧ ଔପନ୍ୟାସିକମାନଙ୍କର ଶ୍ରେଷ୍ଠ କଳାକୃତି ସବୁକୁ ବେଶି ଆଦର କରୁଅଛନ୍ତି। ଏହି ଲୋକପ୍ରିୟ ଉପନ୍ୟାସଗୁଡ଼ିକରେ ମଧ୍ୟ ଗୋଟିଏ ନିର୍ଦ୍ଦିଷ୍ଟ ଅନୁପାନ ରହିଛି। ତାହା ହେଲା, କିଛି ଆପାତ-ରମଣୀୟ ବର୍ଣ୍ଣନା, ପ୍ରେମ, ବିରହ, ହର୍ଷ-ବିଷାଦ, ମାନ-ଅଭିମାନ ପ୍ରଭୃତି କେତେକ ଲଘୁ ଆବେଗର ସମଷ୍ଟି। ତା'ଉପରେ ପୁଣି, କିଛି ଶୂନ୍ୟଗର୍ଭ, ଆଦର୍ଶବାଦର ଉଦ୍‌ବୋଧନ; ଯା' ଏ ସବୁ ବଜାରକଟତିଧର୍ମୀ ଶସ୍ତା ହିନ୍ଦୀ ଫିଲ୍‌ମମାନଙ୍କରେ ଦେଖିବାକୁ ମିଳିଥାଏ। ଇଏ ହେଲା 'ପପୁଲାର' ଉପନ୍ୟାସମାନଙ୍କର ଅନୁପାନ।

ଏବେ ଦେଶରେ ସାକ୍ଷରତା ବୃଦ୍ଧି ପାଉଥିବାରୁ ବେଶୀ ଉପନ୍ୟାସ, ବଜାରରେ ଲୋକେ ଖୋଜୁଛନ୍ତି। ସାକ୍ଷର ଓ ଶିକ୍ଷିତ କିନ୍ତୁ ଏକ କଥା ନୁହେଁ। ବିଶ୍ୱବିଦ୍ୟାଳୟରେ ଶିକ୍ଷିତ ହୋଇ ସୁଦ୍ଧା, ଅନେକ 'ସାକ୍ଷର' ସ୍ତରରେ ରହିଥାଆନ୍ତି। ଶିକ୍ଷିତ ପାଠକଙ୍କଠାରେ ଯେଉଁ ମାର୍ଜିତ ରୁଚି ଥାଏ, ତାହା ସାକ୍ଷର ପାଠକମାନଙ୍କ ନିକଟରେ ସର୍ବଥା ମିଳେନାହିଁ। ସମାଜରେ ଏହିପରି ଉନ୍ନତ ରୁଚିଶୀଳ ଶିକ୍ଷିତମାନଙ୍କଠାରୁ ସାକ୍ଷରମାନଙ୍କର ସଂଖ୍ୟା ଅଧିକ। ପ୍ରକାଶକମାନେ ଏହି ବହୁସଂଖ୍ୟକ ସାକ୍ଷର-ପାଠକଙ୍କର ରୁଚିକୁ ଚାହିଁ, ଉପନ୍ୟାସ ପ୍ରକାଶ କରୁଥିବାରୁ, ଲୋକପ୍ରିୟ ଉପନ୍ୟାସମାନଙ୍କର ଚାହିଦା ବେଶୀ ହେବା ସ୍ୱାଭାବିକ।

କିନ୍ତୁ ଲୋକପ୍ରିୟ ସାହିତ୍ୟର ପ୍ରାବଲ୍ୟ ମଧ୍ୟରେ, କାଳାତିଶାୟୀ ଧ୍ରୁପଦୀ ସାହିତ୍ୟର ସତ୍ତା ଲୋପ ପାଇଥାଏ। ଅର୍ଥନୀତିର ଯେଉଁ ସୂତ୍ରଟି ଅଛି, 'କଳାଟଙ୍କା ଧଳାଟଙ୍କାକୁ

ବଜାରରୁ ତଡ଼ିଦିଏ'- ସାହିତ୍ୟ କ୍ଷେତ୍ରରେ ମଧ୍ୟ ବର୍ତ୍ତମାନ ତାହାର ପ୍ରୟୋଗ ଚାଲିଛି। ଲୋକପ୍ରିୟ ସାହିତ୍ୟର ପ୍ରାଦୁର୍ଭାବ ମଧ୍ୟରେ ଶୁଦ୍ଧ, କାଳତିଶାୟୀ ସାହିତ୍ୟ ନିରବ ହୋଇଯାଉଛି। ସାଂପ୍ରତିକ ମାଲୟାଲୀ ଉପନ୍ୟାସରେ ସଙ୍କଟ ବା ଅବକ୍ଷୟ, ଏହି ବିକୃତିର ପରିଣତି। ଇଏ ଖାଲି ମାଲୟାଲୀ ସାହିତ୍ୟରେ କାହିଁକି, ମୁଁ ଇତିପୂର୍ବେ ଯାହା କହିଛି, ଏହା ଊଣାଅଧିକେ ଭାରତର ସବୁ ପ୍ରାଦେଶିକ ସାହିତ୍ୟରେ ପରିଲକ୍ଷିତ ହେଉଛି।

କିନ୍ତୁ ଶୁଦ୍ଧକାଳର ଉଦ୍ଦେଶ୍ୟ, ସର୍ବଥା ସହଜ ଲୋକପ୍ରିୟତା ନୁହେଁ। ନାଟକରେ ବିଦୂଷକଠାରୁ ବଳି ଆଉ କେହି ବେଶି ଲୋକପ୍ରିୟ ନଥାଏ। କାରଣ ବିଦୂଷକ ନଥିଲେ, ଦର୍ଶକମାନଙ୍କ ହାତତାଳି, ହୁଇସିଲ୍ ପଡ଼େନାହିଁ। କିନ୍ତୁ ଟ୍ରାଜେଡ଼ିଧର୍ମୀ ନାଟକର ନାୟକ, ରସାପ୍ଳୁତ ଦର୍ଶକମାନଙ୍କ ପ୍ରାଣରେ ଯେଉଁ ଭାବ-ବିହ୍ୱଳତା ସୃଷ୍ଟିକରେ, ତା'ରି ଉପରେ ନାଟକ ଓ ଅଭିନୟର ସଫଳତା ବା ବିଫଳତା ନିର୍ଭର କରେ; ବିଦୂଷକର ଲୋକପ୍ରିୟତା ଉପରେ ଆଦୌ ନୁହେଁ। ଆମେ ତେଣୁ କ'ଣ ହେବାକୁ ଚାହୁଁ ? ଲୋକପ୍ରିୟ ବିଦୂଷକ ନା ନିର୍ଜନ ନାୟକ ?

୨୮/୦୨/୮୪

# ଓଡ଼ିଆ ଉପନ୍ୟାସର ଭୂମିକା

ଭାରତର ସବୁ ପ୍ରାଦେଶିକ ସାହିତ୍ୟକୁ ଲକ୍ଷ୍ୟ କଲେ ଦେଖାଯିବ, ସ୍ୱାଧୀନତା ପୂର୍ବରୁ ଓ ତାହାର ଅବ୍ୟବହିତ ପରେ, ଷଷ୍ଠ ଦଶକ ପର୍ଯ୍ୟନ୍ତ ଥିଲା ଏକ ଅଭିବୃଦ୍ଧିର କାଳ। ଓଡ଼ିଆ ଉପନ୍ୟାସ ସାହିତ୍ୟରେ ମଧ୍ୟ ଦେଖାଯିବ କାଳିନ୍ଦୀଚରଣଙ୍କ 'ମାଟିର ମଣିଷ'ଠାରୁ ଗୋପୀନାଥଙ୍କ 'ପରଜା' ପର୍ଯ୍ୟନ୍ତ ସବୁ ଏଇ ସମୟର ଚୌହଦୀ ଭିତରେ, ସୃଷ୍ଟି ହୋଇପାରିଥିଲା। 'ପରଜା' ପରେ ଗୋପୀନାଥଙ୍କ 'ଅମୃତର ସନ୍ତାନ' ବହନ କରିଛି ଗୋପୀନାଥଙ୍କ ଦୃଷ୍ଟିଶକ୍ତିର ଲେଉଟାଣି ଖରା। ଏଥିରେ ଔଜ୍ଜ୍ୱଲ୍ୟ ଅଛି। ନିଶ୍ଚୟ, କିନ୍ତୁ 'ପରଜା'ର ଦୀପ୍ତି ଏଥିରେ ଖୋଜିଲେ ମିଳିବ ନାହିଁ। (ଜଣେ ପାଠକ ହିସାବରେ ଇଏ ମୋର ବ୍ୟକ୍ତିଗତ ମତ)।

ସ୍ୱୟଂ ଗୋପୀନାଥ ଏହାଠାରୁ ହୁଏତ ଭିନ୍ନ ମତ ପୋଷଣ କରିପାରନ୍ତି। ଗୋପୀନାଥଙ୍କ ପରବର୍ତ୍ତୀକାଳୀନ ଉପନ୍ୟାସମାନଙ୍କରେ ଏପରିକି ଜ୍ଞାନପୀଠ ଧନ୍ୟ 'ମାଟିମଟାଳ'ରେ ସୁଦ୍ଧା 'ଅମୃତର ସନ୍ତାନ'ର କବିତାକୁ ଖୋଜିଲେ ମିଳିବ ନାହିଁ। ସ୍ଥାନେ ସ୍ଥାନେ ବିବରଣୀଧର୍ମୀ ଏହାର ବର୍ଣ୍ଣନା-ବିସ୍ତୃତିର ମରୁଭୂମିରେ ଅବଶ୍ୟ ରହିଛି, କବିତାଧର୍ମୀ ଗଦ୍ୟର ଓଏସିସ୍। 'ଅମୃତର ସନ୍ତାନ'ରେ ପଡ଼ନ୍ତି ବେଳର ଯେଉଁ ଲେଉଟାଣି ଖରା ପଡ଼ିଥିଲା ତାହା 'ମାଟିମଟାଳ'ରେ ଗୋଧୂଳିର ମଳିନ ଆଲୋକରେ ପରିଣତ ହୋଇଛି। ବସ୍ତୁତଃ, ଗୋପୀନାଥ 'ପରଜା' ପରେ ଅନ୍ୟ କୌଣସି ଉପନ୍ୟାସ ଲେଖି ନଥିଲେ, ତାଙ୍କ ସାହିତ୍ୟ-କୀର୍ତ୍ତି ଗୁଣାତ୍ମକ ଦୃଷ୍ଟିରୁ କଦାପି ଖର୍ବ ହୋଇନଥାନ୍ତା। ଗୋପୀନାଥ ନିରବ ହେବାର ଗୋଟିଏ ପୁରୁଷ ପରେ ଶାନ୍ତନୁ କୁମାର ଆଚାର୍ଯ୍ୟ ଓ ଚନ୍ଦ୍ରଶେଖର ରଥ ଅନ୍ୟ ଦୁଇଜଣ ପ୍ରମୁଖ ଔପନ୍ୟାସିକ ରୂପେ ଓଡ଼ିଆ ସାହିତ୍ୟରେ ଅବତୀର୍ଣ୍ଣ ହୋଇଛନ୍ତି। ଶାନ୍ତନୁଙ୍କ 'ନରକିନ୍ନର' ଉପନ୍ୟାସଟିକୁ ବହୁ ବର୍ଷ ପୂର୍ବେ ଦୈନିକ 'କଳିଙ୍ଗ'ରେ ଆଲୋଚନା କରି ମୁଁ ଲେଖିଥିଲି, "ଏକ ଅସାଧାରଣ ଉପନ୍ୟାସ, ଅସାଧାରଣ ଶୈଳୀରେ ଲିଖିତ ହୋଇଅଛି।" ଏହା ଅବଶ୍ୟ ଅବଚେତନଧର୍ମୀ ଚେତନା ପ୍ରବାହ ଆଙ୍ଗିକରେ ଲେଖାଯାଇଛି ବୋଲି ମୋର

ମନେହୁଏ। ଓଡ଼ିଆ ଉପନ୍ୟାସରେ 'ଫର୍ମ' ବା ଆଙ୍ଗିକରେ ଅନୁଶୀଳନ ଦୃଷ୍ଟିରୁ ଏହା ନିଶ୍ଚୟ ଏକ ଉଲ୍ଲେଖଯୋଗ୍ୟ ସୃଷ୍ଟି। କିନ୍ତୁ ତାଙ୍କର ପରବର୍ତ୍ତୀ ଉପନ୍ୟାସମାନଙ୍କରେ 'ନରକିନ୍ନର'ର ସିଦ୍ଧି ଓ ଚମତ୍କାରିତା ମିଳିଲା ପରି ମୋତେ ଲାଗେ ନାହିଁ।

ଚନ୍ଦ୍ରଶେଖରଙ୍କର 'ଅସୂର୍ଯ୍ୟ ଉପନିବେଶ' ଏକ ଉଲ୍ଲେଖଯୋଗ୍ୟ ଉପନ୍ୟାସ ନିଶ୍ଚୟ। ମନୋରଞ୍ଜନଧର୍ମୀ ଉପନ୍ୟାସମାନଙ୍କୁ ଛାଡ଼ିଦେଲେ ଏହାପରେ ଆଉ କି ଉଲ୍ଲେଖଯୋଗ୍ୟ ଉପନ୍ୟାସ ଇତି ମଧ୍ୟରେ ପ୍ରକାଶପାଇଛି ? ଶ୍ରୀ ନୃସିଂହ ଚରଣ ପଣ୍ଡାଙ୍କର 'ଚଣ୍ଡାଶୋକ' ଅବଶ୍ୟ ଏକ ଐତିହାସିକ ଉପନ୍ୟାସ। ଲେଖକ ଏଥିରେ ଅଧ୍ୟୟନ, ଧୈର୍ଯ୍ୟ ଓ ଅଧ୍ୟବସାୟର ସ୍ୱାକ୍ଷର ଯଥେଷ୍ଟ ପରିମାଣରେ ଦେଇଛନ୍ତି। କିନ୍ତୁ ପରିବେଶ ସୃଷ୍ଟିରେ ନୈପୁଣ୍ୟ ଏଥିରେ ସେଇ ଅନୁପାତରେ ପ୍ରକାଶ ପାଇନାହିଁ। ଐତିହାସିକ ଉପନ୍ୟାସ ଇତିହାସର କଙ୍କାଳ ଉପରେ ତ ନିଶ୍ଚୟ ଆଧାରିତ ହୋଇଥାଏ। ତା' ନହେଲେ ଏହା ଐତିହାସିକ ଉପନ୍ୟାସ ହେବ କିପରି ? କିନ୍ତୁ, ଇତିହାସ କ'ଣ ? ମୋ ବିଚାରରେ, ଏହା ହେଉଛି ମନୁଷ୍ୟର ଶିଳୀଭୂତ ଅଭିଜ୍ଞତା ବା 'ଫସିଲାଇଜ୍‌ଡ଼ ଏକ୍ସପେରିଏନ୍‌ସ'।

ଐତିହାସିକ ଯୁଗରେ ଯେଉଁସବୁ ଟେନ୍‌ସନ୍, ସଂଘର୍ଷ ଓ ସଂକଟ ରହିଥିଲା ଆଜି ମଧ୍ୟ ସେହି ସଙ୍କଟ ଭିନ୍ନ ଭାବରେ ପ୍ରକାଶ ପାଉଛି ମାତ୍ର। ଐତିହାସିକ ଉପନ୍ୟାସ ଯଦି ମନୁଷ୍ୟର ସେଇ ଆବେଗିକ ସଂଘର୍ଷର, ସେଇ ଟେନ୍‌ସନ୍‌ର ଚିରନ୍ତନ ଚିତ୍ରଟି ଆଙ୍କିପାରିଲା, ତା'ହେଲେ ତାହା ଯଥାର୍ଥରେ ରସୋତ୍ତୀର୍ଣ୍ଣ ଓ କାଳାତିଶାୟୀ ହେଲା ବୋଲି ବୁଝିବାକୁ ହେବ। ସେଥିପାଇଁ ପରିବେଶ, ଚରିତ୍ରଚିତ୍ରଣ ଏବଂ ଘଟଣା ସୃଷ୍ଟି- ଐତିହାସିକ ଉପନ୍ୟାସର ସାର୍ଥକ ଆଭିମୁଖ୍ୟ। ଇତିହାସର କଙ୍କାଳ ଉପରେ ଏସବୁ ପୁଟ ଦେଇ କେବଳ ତାହାକୁ ଏକ ସାର୍ଥକ ଐତିହାସିକ ଉପନ୍ୟାସରେ ପରିଣତ କରାଯାଇପାରିବ।

ମୁଁ ପୂର୍ବେ ଲେଖିଛି, ମନୋରଞ୍ଜନଧର୍ମୀ ଉପନ୍ୟାସ ସବୁ ପାଠକସମାଜରେ 'ସିରିଅସ୍' ଉପନ୍ୟାସମାନଙ୍କଠାରୁ ବେଶି ଆଦୃତ ହେଉଛି। କେତେଜଣ ସିରିଏସ୍ ଔପନ୍ୟାସିକଙ୍କ ଭାଗ୍ୟରେ ବା ଏହା ଜୁଟିବ ? କେହି ଏହାଦ୍ୱାରା ବୁଝିବା ଉଚିତ ନୁହେଁ ମୁଁ ଗୋଟିଏ ପ୍ରଚଣ୍ଡ ଉନ୍ନାସିକତାରେ ମନୋରଞ୍ଜନଧର୍ମୀ ଉପନ୍ୟାସମାନଙ୍କୁ, ଶୁଦ୍ଧ ସାହିତ୍ୟରେ ଅପାଙ୍‌କ୍ତେୟ ବୋଲି କହୁଛି। କିନ୍ତୁ ମୋତେ ଯେପରି କେହି ଭୁଲ୍ ନବୁଝନ୍ତି, ସେହି ଉଦ୍ଦେଶ୍ୟରେ ମୁଁ କହୁଛି, ଏସବୁ ଲଘୁ ମନୋରଞ୍ଜନଧର୍ମୀ ଉପନ୍ୟାସରେ ଜୀବନର ଜିଜ୍ଞାସା ନାହିଁ, ଟେନ୍‌ସନ୍ ନାହିଁ, ସଂଘର୍ଷର କୁଟିଳତା ନାହିଁ। ଏକ ସାମଗ୍ରିକ ଜୀବନଦର୍ଶନର ଚେହେରା ଏଥିରେ ନାହିଁ। ଏସବୁ ଏକ ନିର୍ଦ୍ଦିଷ୍ଟ ଅନୁପାନ ଅନୁସାରେ ପ୍ରସ୍ତୁତ। ବଙ୍ଗଳାରେ ଔପନ୍ୟାସିକ ଶଙ୍କରଙ୍କର ଉପନ୍ୟାସ ତ ଅଜସ୍ରସ୍ରାବୀ। ମାତ୍ର ମାଣିକ ବନ୍ଦ୍ୟୋପାଧ୍ୟାୟଙ୍କର 'ପଦ୍ମାନଦୀର୍ ମାଝୀ' ବା ବିଭୂତି ମୁଖୋପାଧ୍ୟାୟଙ୍କର 'ପଥେର୍ ପାଞ୍ଚାଲୀ' ବା ତାରାଶଙ୍କର

ଙ୍କର 'ହାଂସୁଲୀବାଙ୍କେର୍ ଉପକଥା' ଉପନ୍ୟାସ ସବୁ ଏବେ ସୁଦ୍ଧା ଯେପରି ଖୋଜିଲୋଡ଼ି ପୁଣି ଥରେ ପଢ଼ାଯାଇପାରେ, ସେପରି ଆଉ କେତେ ଉପନ୍ୟାସ ସାମ୍ପ୍ରତିକ ବଙ୍ଗଳା ସାହିତ୍ୟରେ ମିଳିବ ? ଆଜି ହିନ୍ଦୀ-ସାହିତ୍ୟରେ ଫଣୀଶ୍ୱର ନାଥ 'ରେଣୁ'ଙ୍କର 'ମୈଲା ଆଞ୍ଚଲ୍' ଉପନ୍ୟାସ ପରି ଆଉ କେତେଖଣ୍ଡ ଉପନ୍ୟାସ ଲେଖାଯାଇଛି ? ମୁଁ ଜାଣିନାହିଁ, ହୁଏତ ଲେଖାହୋଇଥିବ। କିନ୍ତୁ ମୋର ନମ୍ର ବକ୍ତବ୍ୟ ହେଉଛି, ଉପନ୍ୟାସ କେବଳ କାହାଣୀ ନୁହେଁ। କେବଳ ବର୍ଣ୍ଣନା ନୁହେଁ। ଏହା ଏକ ଯୁଗର ମହାକାବ୍ୟ। ଜୀବନର ଭାଷ୍ୟ। ଯଦି ଏହି ଭାଷ୍ୟକୁ ମନୋରଞ୍ଜନଧର୍ମୀ କରାଯାଇପାରିଲା, ତା'ହେଲେ, ସିଏ ତ ହେବ ସୁନାରେ ସୋହାଗା ପରି।

୦୭/୦୩/୮୪

# ଆଜି ହସର ଦୁର୍ଭିକ୍ଷ

ପାର୍ଲାମେଣ୍ଟର କେନ୍ଦ୍ର ପ୍ରକୋଷ୍ଠରେ, ଏହି ସ୍ତମ୍ଭର ଲେଖକ ବହୁ ଅଟ୍ଟହାସ୍ୟ ଶୁଣିଛି। ସେସବୁ ହ୍ରେଷାରବ ଶ୍ରେଣୀୟ। କାନ ଅତଡ଼ା ପଡ଼େ ଠିକ୍; କିନ୍ତୁ ଓଠରେ ମନଖୋଲା ହସଟିଏ ଫୁଟେ ନାହିଁ। ରାଜନୈତିକ ନେତାମାନେ ଭିତର ଆର୍ତ୍ତରୋଦନକୁ ବାହାରେ ହସ ଆକାରରେ ଫୁଟାନ୍ତି। ମୋର ମନେହୁଏ, ଆମେ ଅଟ୍ଟହାସ କରୁ, ଅଥବା ଅନ୍ୟ ପ୍ରତି ଉପହାସ କରୁ; କିନ୍ତୁ କେବେ ମନଖୋଲି ହସୁନାଇଁ।

ଆଶ୍ଚର୍ଯ୍ୟ ଲାଗେ, କଠୋର କାଠୁରିଆ ପ୍ରକୃତିର କମ୍ୟୁନିଷ୍ଟ ଦେଶମାନଙ୍କରେ କିନ୍ତୁ ହାସ୍ୟରସର ପ୍ରବଳ ପ୍ରଚେଷ୍ଟା ପରିଲକ୍ଷିତ ହୁଏ। ସୋଭିଏତ୍ ରୁଷିଆର 'କ୍ରୋକୋଡାଇଲ' ନାମରେ ଏକ ଉଚ୍ଚକୋଟୀର ହାସ୍ୟରସାତ୍ମକ ପତ୍ରିକା ରୂପେ ବେଶ୍ ପ୍ରସିଦ୍ଧ ଥିଲା। କିନ୍ତୁ ଭାରତୀୟ ଜୀବନରୁ ଶୁଦ୍ଧ ହାସ୍ୟରସ ବିଦାୟ ନେବା ସଙ୍ଗେ ସଙ୍ଗେ, ଏହି ପତ୍ରିକାଟି ମଧ୍ୟ ବନ୍ଦ ହୋଇଯାଇଛି। ଟ୍ରାଜେଡ଼ି ହେଉଛି, ଏହାର ସଂପାଦକ ଶଙ୍କର ଏବେ ସୁଦ୍ଧା ଜୀବିତ, ମାତ୍ର ତାଙ୍କ ପତ୍ରିକାଟି ଅବଲୁପ୍ତ।

ଏହିପରି ପୃଷ୍ଠଭୂମିରେ, ଗତ ଫେବୃଆରି ମାସରେ, ହାଇଦ୍ରାବାଦଠାରେ ବିଶ୍ୱ ହାସ୍ୟରସିକମାନଙ୍କର ପ୍ରଥମ ଅଧିବେଶନ ଲୋକସଭା ଅଧ୍ୟକ୍ଷ ଶ୍ରୀ ବଳରାମ ଝାକରଙ୍କ ସଭାପତିତ୍ୱରେ ଅନୁଷ୍ଠିତ ହୋଇଗଲା। ଆମର ସମ୍ବାଦପତ୍ରର ସମ୍ପାଦକ ଓ ପ୍ରକାଶକମାନେ ଏପରି ବେରସିକ ଯେ, ଏହି ପାଞ୍ଚଦିନବ୍ୟାପୀ ଆନ୍ତର୍ଜାତିକ ସମ୍ମେଳନର ସମ୍ବାଦ ଓ ବିବରଣୀକୁ କୌଣସି ସ୍ଥାନ ଦେଲେ ନାହିଁ। ଯେଉଁ ଧାଡ଼ିଏ ଦି' ଧାଡ଼ି କାଁଭାଁ କେଉଁଠି ବାହାରିଲା, ତାହା ନ ନୀରେ, ନ ତୀରେ ! ନେତାମାନଙ୍କର କ୍ରୋଧୋନ୍ମତ୍ତ ଆସ୍ଫାଳନ ଛାପିବାରେ ଆମ ସମ୍ପାଦକମାନେ ବେଶି ଆଗ୍ରହୀ। ତାହାହିଁ ବୋଧହୁଏ, ଏହି ସମ୍ମେଳନର ବିବରଣୀକୁ 'ବ୍ଲାକ୍ ଆଉଟ୍' କରିବାର କାରଣ ହୋଇପାରେ। ଯା ହେଉ, ଏହି ଅଧିବେଶନରେ, ୧୬୦ ଜଣ ଭାରତୀୟ ଓ ବୈଦେଶିକ ପ୍ରତିନିଧି ଯୋଗ ଦେଇଥିଲେ। ଏହାର ଆବାହକ ଥିଲେ, ହାଇଦ୍ରାବାଦର ଏକ ହାସ୍ୟରସିକଗୋଷ୍ଠୀ- 'ଜିନ୍ଦେ ଦିଲାନ୍'।

ସମ୍ମେଳନରେ ପ୍ରସ୍ତାବ ହୋଇଛି, ଭାରତରେ, ବିଶ୍ୱ ହାସ୍ୟରସିକ ସଂଘର ଗୋଟିଏ ଶାଖା ହାଇଦ୍ରାବାଦରେ ସ୍ଥାପିତ ହେବ। ଏହାର ପରବର୍ତ୍ତୀ କାର୍ଯ୍ୟକ୍ରମ ହେଉଛି, ପାକିସ୍ତାନ ଓ ବାଂଲାଦେଶରେ ଏହି ଅଧିବେଶନର ଆୟୋଜନ କରିବା। ବସ୍ତୁତଃ, ଏହି ସ୍ତାମ୍ଭିକ ମତରେ, ଯିଏ ମନଖୋଲି ହସିପାରେ, ସିଏ କଦାପି ମତାନ୍ଧ ଡିକ୍‌ଟେଟର ହୋଇପାରେନା। ଥରେ ଯଦି ପାକିସ୍ତାନର ଜିଆ ବା ବାଂଲାଦେଶର ଏରସାଦ୍ ମନଖୋଲି ହସିପାରନ୍ତେ ଓ ଅନ୍ୟମାନଙ୍କୁ ଦିଲ୍‌ଖୋଲା ଭାବରେ ହସାଇପାରନ୍ତେ, ତା'ହେଲେ ପାକିସ୍ତାନ ଓ ବାଂଲାଦେଶର ରାଜନୈତିକ ଚେହେରା ଅଲଗା ହୁଅନ୍ତା। ରାଜନୈତିକ ନେତାମାନେ ମୁରୁକି ହସନ୍ତି ଠିକ୍, ପଣ୍ଡିତ ନେହରୁଙ୍କ ପରେ ଆଉ କେହି ଦିଲ୍ ଖୋଲି ହସିବା ଏହି ସ୍ତାମ୍ଭିକ ଦେଖିନାହିଁ। ଚୁପ୍ ସଇତାନ୍‌ମାନଙ୍କର ଓଠନେଫଡ଼ା ମୁରୁକି ହସ ଅବଶ୍ୟ ଦେଖିଛି ପ୍ରଚୁର। ସେଥିପାଇଁ ବିଶ୍ୱ-ହାସ୍ୟରସିକ ଗୋଷ୍ଠୀର କର୍ମକେନ୍ଦ୍ର ଭାରତରେ ସ୍ଥାପିତ ହେବା ଯେପରି ଅଭିନନ୍ଦନୀୟ, ପାକିସ୍ତାନ୍ ଓ ବାଂଲାଦେଶରେ ଏହାର ପ୍ରସାର ସେତିକି ସ୍ୱାଗତଯୋଗ୍ୟ।

ଏହି ସ୍ତାମ୍ଭିକ ମତରେ, ଯଦି ବିଶ୍ୱ-ହାସ୍ୟରସିକ ସଂଘ ଏକ ଉତ୍ସବର ଆୟୋଜନ କରି, ସେଥିରେ ଭାରତର ଶ୍ରୀ ରାଜୀବ ଗାନ୍ଧୀ, ପାକିସ୍ତାନର ଜିଆ, ବାଂଲାଦେଶର ଜେନେରାଲ୍ ଏରସାଦ୍ ଓ ଶ୍ରୀଲଙ୍କାର ଶ୍ରୀ ଜୟବର୍ଦ୍ଧନେଙ୍କୁ ଏକାଠି କରାଇ; ଦିଲ୍‌ଖୋଲା ଭାବରେ ହସାଇ ପାରନ୍ତେ, ତା'ହେଲେ ଦକ୍ଷିଣ ଏସିଆରେ ଶାନ୍ତି, ମୈତ୍ରୀ ଓ ଗଣତାନ୍ତ୍ରିକ ସଦ୍‌ଭାବ ସୁଦୃଢ଼ ହୋଇପାରନ୍ତା। ବିବଦମାନ ଦେଶମାନଙ୍କରେ ସବୁ ଟେନ୍‌ସନ ଦୂରହୋଇ ମୈତ୍ରୀର ନୂତନ ଦିଗନ୍ତ ଉନ୍ମୋଚିତ ହୋଇପାରନ୍ତା। ହାଇଦ୍ରାବାଦର "ଜିନ୍ଦେ ଦିଲାନ୍ ସୋସାଇଟି" ଏ ଦିଗରେ ଉଦ୍ୟମ କରିବେ କି ?

ଆଜି ହସର ଦୁର୍ଭିକ୍ଷ ପ୍ରକୃତରେ ମଣିଷର ମନକୁ ଶୁଖାଇ, ଜ୍ୟେଷ୍ଠ ମାସର ଫଟାମାଟି ପରି କରିଦେଇଛି। ଶ୍ରୀ ଜୟବର୍ଦ୍ଧନେଙ୍କ ମୁହଁରେ ମୁଁ ଦେଖେ ସେଇ ଫଟାମାଟିର ଚେହେରା। ଜେନରାଲ୍ ଜିଆ ଓ ଜେନେରାଲ୍ ଏରସାଦ୍‌ଙ୍କ ମୁହଁରେ ମୁଁ ଲକ୍ଷ୍ୟକରେ ନିଦାଘର ଆକାଶ। ଶ୍ରୀ ରାଜୀବ ଗାନ୍ଧୀଙ୍କ ହସିଲା ମୁହଁର ଚେହେରା ଦେଖିବାପାଇଁ ମୁଁ ଟି.ଭି. ପର୍ଦ୍ଦାରେ ଅପେକ୍ଷା କରିଛି।

୧୪/୦୩/୮୫

# ଦାଢ଼ି ବନାମ ନିର୍ଦାଢ଼ି

ପାଠକମାନେ ଦୟାକରି ସ୍ମରଣ କରିବେ, କିଛି ସପ୍ତାହ ତଳେ, ଏଇ ସ୍ତମ୍ଭରେ ମୁଁ ତରୁଣମାନଙ୍କୁ, ବିଶେଷତଃ ତରୁଣ ଲେଖକ ଓ କବିମାନଙ୍କୁ ଯଥାଶୀଘ୍ର ଦାଢ଼ୀ କାଟିପକାଇବା ପାଇଁ ପରାମର୍ଶ ଦେଇଥିଲି। ଏହାର ଫଳ ସ୍ୱରୂପ କିଛି ଦିନ ପରେ ମୋ' ଚାରିପଟେ କେତୋଟି ଦାଢ଼ିବିହୀନ ତରୁଣ ଚେହେରା ଦେଖିବାର ସୁଯୋଗ ମିଳିଲା। ଦାଢ଼ି ରଖି ସେମାନେ ବଡ଼ ବିଷଣ୍ଣ ଦିଶୁଥିଲେ। କିନ୍ତୁ ଦାଢ଼ି କାଟିବା ପରେ, ସେମାନେ ଯେପରି ସ୍ମାର୍ଟ ଦିଶିଲେ, ସେମାନଙ୍କୁ ଏହାପରେ ଏଣିକି ଟିକିଏ ସାବଧାନରେ ଚଳିବାପାଇଁ ମୁଁ ପରାମର୍ଶ ମଧ୍ୟ ଦେଇଥିଲି।

ଶୁଣିଲି, ଜଣେ ତରୁଣ ସହକର୍ମୀ ଚା' ଦୋକାନରେ ବସି, ନିଜ ଦାଢ଼ିର ଭବିଷ୍ୟତ-ଚିନ୍ତାରେ ଉଦ୍‌ବିଗ୍ନ ହୋଇ, ଟିପ୍‌ପଣୀ କରୁଥିଲେ- "ମହର୍ଷି ଦେବେନ୍ଦ୍ର ନାଥ କି କବିଗୁରୁ ରବୀନ୍ଦ୍ର ନାଥ ଯଦି ଦୁର୍ଯୋଗକୁ ପେଟପାଟଣାପାଇଁ ଏଠି ଚାକିରି କରିଥାନ୍ତେ, ତା'ହେଲେ ସେମାନଙ୍କୁ କେଜାଣି ଦାଢ଼ି କାଟିବାକୁ ପଡ଼ିଥାଆନ୍ତା।" ମାତ୍ର କିଛି ଦିନ ପରେ ଦେଖିଲି, ତାଙ୍କ ଦାଢ଼ିଟି ଆଉ ନାହିଁ। ତାଙ୍କୁ ପାଖକୁ ଡାକି କହିଲି, "ଦେଖ ବାବୁ ! ଦାଢ଼ି ସହିତ ବୋଧହୁଏ 'ଜିନିଅସ୍'ର କିଛି ସଂପର୍କ ରହିଛି। ତା' ନହେଲେ, ଇଂରାଜୀ ସାହିତ୍ୟର ପ୍ରସିଦ୍ଧ କବି, ଔପନ୍ୟାସିକ, ନାଟ୍ୟକାରମାନେ ଯଥା ଚସର, ସେକ୍‌ସପିୟର, ଡିକେନ୍‌ସ, କାର୍ଲାଇଲ୍, ରସ୍କିନ୍, ବ୍ରାଉନିଂ, ଟେନିସନ୍, ସ୍ୱିନ୍‌ବର୍ଣ୍ଣ, ମେରେଡ଼ିଥ୍ ଓ ବାର୍ଣ୍ଣାଡ୍ ଶ' ପ୍ରମୁଖଙ୍କର ଦାଢ଼ିସବୁ ନଥାନ୍ତା।

ପ୍ରାବନ୍ଧିକ ଥମାସ୍‌ଫୁଲର 'ଓ୍ୱର୍ଦିସ୍ ଅଫ୍ ଇଂଲାଣ୍ଡ' ପ୍ରବନ୍ଧରେ ମଧ୍ୟ ଲେଖିଥିଲେ: "ଦାଢ଼ି ହେଉଛି ଚିବୁକ ତଳେ ଏକ ଅଳଙ୍କାର।" "ତୁମେ ଯଦି ନିହାତି ଦାଢ଼ି ରଖିବାକୁ ଚାହଁ, ତା'ହେଲେ ଏହାକୁ ଆବର୍ଜନା ପରିବର୍ତ୍ତେ ଭୂଷଣରେ ପରିଣତ କଲେ ମୋର ଆପତ୍ତି ନାହିଁ।" ପାଶ୍ଚାତ୍ୟ ଦର୍ଶନର ଆଦିଗୁରୁ ପ୍ଲାଟୋଙ୍କର ମଧ୍ୟ ଦାଢ଼ି ଥିଲା। ଲୁସିଏନ୍ ତାଙ୍କ ଦାଢ଼ି ଉପରେ ଟିପ୍‌ପଣୀ କରିଥିଲେ, "ଯଦି ଦାଢ଼ି ରଖିଲେ ପ୍ଲାଟୋ ହେଇହେବ,

ତା'ହେଲେ ପ୍ରତ୍ୟେକଟି ବୋଦା ଛେଳି ଗୋଟିଏ ଗୋଟିଏ ପ୍ଲାଟୋ ହେଇପାରନ୍ତେ। କରମଳା ମଠର ଶ୍ରୀଶ୍ରୀ ଅଭିରାମ ପରମହଂସ ତାଙ୍କ 'କଳି ଭାଗବତ'ରେ ଅନ୍ୟ ଭାବରେ ଏଇକଥା ଲେଖିଛନ୍ତି- ଯଦି ନଖ, ଦାଢ଼ି ବଢ଼ାଇଲେ ମୋକ୍ଷ ମିଳିବ ବୋଲି କେହି ଭାବୁଥାଏ, ତା'ହେଲେ ବଣର ମାଙ୍କଡ଼ ଭାଲୁମାନେ କେବେଠାରୁ ମୋକ୍ଷ ପାଇସାରନ୍ତେଣି। ତେଣୁ ଦାଢ଼ି ଗୋଟିଏ ଗହନ କଥା। ମୁଁ ଦୁଃଖିତ, କୌଣସି ଏକ ଅସତର୍କ ମୁହୂର୍ତ୍ତରେ ମୁଁ ଏ ଦାଢ଼ି-ବିସମ୍ବାଦ ଆରମ୍ଭ କରିଦେଇଥିଲି। ପରେ ଗବେଷଣା କରି ଦେଖିଲି, ବହୁ ପ୍ରତିଭାଧର ବ୍ୟକ୍ତିଙ୍କର ଦାଢ଼ୀ ଥିଲା। ଆମ ଦାଢ଼ିବାଲାଙ୍କ ଭିତରେ ଗୋଟିଏ ରବୀନ୍ଦ୍ରନାଥ ବା ୱାଲ୍ଟ ହୁଇଟ୍‌ମ୍ୟାନ, କାର୍ଲ ମାର୍କସ୍ ବା ଗୋପବନ୍ଧୁ ନାହାନ୍ତି ବୋଲି ମୁଁ କେଉଁ ସାହସରେ କହିବି ?

ଯେଉଁମାନେ ଦାଢ଼ିକୁ ତଥାପି ଅକର୍ତ୍ତିତ ରଖିଛନ୍ତି, ସେମାନେ ସ୍ମରଣ ରଖିବେ, ଦାଢ଼ିର ପରିଚର୍ଯ୍ୟା ଶୋଭନା କୁନ୍ତଳିନୀର କୁନ୍ତଳ-ପରିଚର୍ଯ୍ୟାଠାରୁ କୌଣସି ଗୁଣରେ କମ୍ ସମୟ ଓ ସାଧ୍ୟସାପେକ୍ଷ ନୁହେଁ। ମୁଁ ଅନେକ ଶ୍ମଶ୍ରୁଧାରୀ ପଞ୍ଜାବୀଙ୍କୁ ଦେଖିଛି। ସେମାନେ ପ୍ରତ୍ୟହ ଦାଢ଼ିର ପରିଚର୍ଯ୍ୟାରେ ଯେତିକି ସମୟ ଅତିବାହିତ କରନ୍ତି, ତାହା ନାରୀମାନଙ୍କର କେଶ-ଚର୍ଯ୍ୟାର ସମୟଠାରୁ କମ୍ ନୁହେଁ।

ଶିଖ୍‌ମାନଙ୍କର ଦାଢ଼ି ବିଶ୍ୱପ୍ରସିଦ୍ଧ। ଏ ଦାଢ଼ିର ଏକ ଚମତ୍କାରିତା ରହିଛି। ଚେହେରାକୁ ଏହା ପୌରୁଷଦୀପ୍ତ କରାଏ। ମୁଁ ରାସ୍ତାରେ ଯିବାଆସିବା ବେଳେ, ଦେଖେ ଟ୍ରକ୍ ଡ୍ରାଇଭରମାନେ ସୁଦ୍ଧା ରାସ୍ତା କଡ଼ରେ କେଉଁଠି ପାଣି ଦେଖିଲେ, ଖଣ୍ଡେ ଖଣ୍ଡେ ଗାରଟଣା ଅଣ୍ଡର ଓୟାର ପିନ୍ଧି ମହାଉଲ୍ଲାସରେ ଗାଧାନ୍ତି। ତା'ପରେ ପୋଷାକ ବଦଳାଇ ଟ୍ରକର ଡ୍ରାଇଭର ସିଟ୍‌ରେ ବସିପଡ଼ି, ସାମ୍ନା ଅଇନାକୁ ଚାହିଁ, ଦାଢ଼ି-ପରିଚର୍ଯ୍ୟାରେ ଲାଗିପଡ଼ନ୍ତି ସେତେବେଳେ ସେମାନଙ୍କର ନିର୍ବିକଳ୍ପ ସମାଧି ଯୋଗ। ଗଲା-ଅଇଲା ଟ୍ରାଫିକ୍ ପ୍ରତି ସେମାନଙ୍କର ଦୃଷ୍ଟି ନଥାଏ।

ଥରେ ମୋ ଗାଡ଼ି ଟ୍ରାଫିକ୍ ଜାମରେ ଅଟକିଗଲା। ଆଗରେ କେତେକ ଟ୍ରକ୍, ବସ୍, ଜୀପ୍ ଓ କାର୍ ଅଟକିପଡ଼ି ହର୍ଣ୍ଣ ଚିପୁଛନ୍ତି। ଡ୍ରାଇଭରକୁ ପଠାଇ ବୁଝିଲି, ଆଗ ଟ୍ରକର ଡ୍ରାଇଭର ଗୋଟାଏ ଅଖାଡୁଆ ବୁଲାଣି ମୋଡ଼ରେ ଟ୍ରକଟାକୁ ରଖି, ଦାଢ଼ି ସଜାଡୁଛନ୍ତି। ସେ ବର୍ତ୍ତମାନ କାହାର ନେହୁରା କି ନାଲିସ୍ ଶୁଣିବା ଅବସ୍ଥାରେ ନାହାନ୍ତି। ଅଗତ୍ୟା ଟ୍ରକ୍ ଡ୍ରାଇଭରଙ୍କର ଦାଢ଼ି ସେବା ସରିଲା। ସେ ଟ୍ରକ୍ ଛାଡ଼ିଲେ।

ଆମେ ଯେଉଁମାନେ ଟ୍ରାଫିକ୍ ଜାମ୍‌ରେ ପଡ଼ିଥିଲୁ, ସ୍ୱସ୍ତିର ନିଃଶ୍ୱାସ ଛାଡ଼ି, ସରୀସୃପ ପରି ଟ୍ରାଫିକ୍ ସ୍ରୋତରେ ମିଶିଗଲୁ। ତେଣୁ ଦାଢ଼ି ଯଦି ସୁବିନ୍ୟସ୍ତ ଓ ସଯତ୍ନ- ସେବିତ ତା'ହେଲେ ମୋର ଆପତ୍ତି ନାହିଁ। କାରଣ କାହା ଦାଢ଼ିରେ କି 'ଜିନିଅସ୍' ଅଛି ମୁଁ ଜାଣିବି କିପରି ?

ନିର୍ଦାଢ଼ିମାନେ କିନ୍ତୁ ହତାଶ ହେବାପାଇଁ କିଛି ନାହିଁ। ମୋର ପ୍ରିୟ ଇଂରାଜୀ କବି ଶେଲୀଙ୍କର ଦାଢ଼ି ନଥିଲା। ବାଇରନ୍‌ଙ୍କର ମଧ୍ୟ ନଥିଲା। କିଟସ୍‌ଙ୍କର ନଥିଲା। ଅର୍ଥାତ୍, ରୋମାଣ୍ଟିକ୍ ରିଭାଇଭାଲର ତିନିଜଣ ପ୍ରସିଦ୍ଧ କବିଙ୍କର ଦାଢ଼ି ନଥିଲା।

ତେବେ ମୋଟାମୋଟି ଭାବରେ ତରୁଣ ବନ୍ଧୁମାନଙ୍କୁ ମୋର ପରାମର୍ଶ ସେମାନେ ଦାଢ଼ି ଯଦି ନିହାତି ଅପରିହାର୍ଯ୍ୟ ବୋଲି ଭାବନ୍ତି ତା'ହେଲେ ଦାଢ଼ିକୁ ଅବିନ୍ୟସ୍ତ ଭାବରେ ଗୁଡ଼ାଏ ଜଞ୍ଜାଳ ପରି ଝୁଲାନ୍ତୁ ନାହିଁ। ମୋଟ କଥା ତରୁଣମାନଙ୍କ ଚେହେରାରେ, ମୁଁ ସବୁବେଳେ ଖୋଜୁଛି ମୋର ଅତୀତ ଯୌବନର ଚେହେରା।

*୧୮/୦୩/୮୪*

# ଆଜିର ପ୍ରଧାନ ଅତିଥି

ଭାରତର ପ୍ରାଚୀନ ରାଜତନ୍ତ୍ରରେ ବିଦୂଷକ ବୋଲି ଏକ ଗୋଷ୍ଠୀ ରାଜ ଦରବାରମାନଙ୍କରେ ଥିବା, ସଂସ୍କୃତ ନାଟକମାନଙ୍କରୁ ଜଣାପଡ଼େ। ରାଜାଙ୍କର ଦିଦ୍‌ଗଧ ଚଟୁଳ ସମାଲୋଚନା କରି, ସେଥିରୁ କିଛିଟା ହାସ୍ୟରସ ସୃଷ୍ଟି କରିବା, ଏମାନଙ୍କର ମୁଖ୍ୟ କାର୍ଯ୍ୟ ଥିଲା। ସେଦିନ ରାଜାମାନେ ମଧ୍ୟ ସେମାନଙ୍କର ସ୍ପଷ୍ଟ କଥନକୁ ବରଦାସ୍ତ କରୁଥିଲେ। ପରେ ମଧ୍ୟଯୁଗରେ, ରାଜଦରବାରମାନଙ୍କରେ, ବିଦୂଷକମାନଙ୍କ ସାଙ୍ଗକୁ ଆସିଲେ ଚାଟୁକାର ଓ ଭାଟ। ଭାଟମାନେ ନାନ୍ଦୀଗାନ କରନ୍ତି ଓ ଚାଟୁକାରମାନେ ଚାଟୁବାଣୀ ଶୁଣାନ୍ତି ! ବିଦୂଷକମାନଙ୍କ ଅପେକ୍ଷା କ୍ରମେ ଏହି ଚାଟୁକାର ଶ୍ରେଣୀର ପ୍ରାଧାନ୍ୟ ବଢ଼ିଲା। ସେମାନେ ଚଟୁଳ ସମାଲୋଚନା ପରିବର୍ତ୍ତେ ରାଜାମାନଙ୍କର ପ୍ରଶସ୍ତି ଗାନ କରି ବହୁ ଶାସନ ଓ ଅଗ୍ରହାର ଦାନ ପାଇଲେ। ସମାଜରେ ଚାଟୁକାରମାନଙ୍କ ପାଇଁ ଗୋଟିଏ ସ୍ୱତନ୍ତ୍ର ଗୋଷ୍ଠୀ ସୃଷ୍ଟି ହୋଇଗଲା। ଏମାନଙ୍କର ବୃତ୍ତି ହୋଇଗଲା, ଚାଟୁକାରିତା। ପରବର୍ତ୍ତୀ କାଳରେ ସେଥିପାଇଁ ବୋଧହୁଏ ଚାଟୁବାକ୍ୟ ଶ୍ରବଣର ପ୍ରତିକ୍ରିୟା ରୂପେ, ନିଜ ମୁହଁ ଉପରେ ନିଜର ପ୍ରଶସ୍ତି ଶୁଣିବାପାଇଁ ବା ଅନ୍ୟର ପ୍ରଶସ୍ତି କରିବାପାଇଁ, ଆସିଲା ସ୍ୱାଭାବିକ କୁଣ୍ଠା।

କିନ୍ତୁ ଗୁଣୀ ସମାଜରେ, ଗୁଣୀ ବ୍ୟକ୍ତିମାନଙ୍କର ପ୍ରଶସ୍ତି ଗାନ କରିବା ବା ଅକୁଣ୍ଠିତ ଚିତ୍ତରେ ସେମାନଙ୍କର ଗୁଣ ସ୍ୱୀକାର କରିବା, ଉଦାର ମାର୍ଜିତ ମନର ଗୋଟିଏ ପରିଚୟ ଥିଲା। ଚଳିତ ଶତାବ୍ଦୀର ଆରମ୍ଭରେ, ଫକୀର ମୋହନ ସେନାପତି, ଖୋଜିଲୋଡ଼ି ତାଙ୍କ ସମସାମୟିକ କାଳରେ, ଓଡ଼ିଶାରେ ଯେତେ ଗୁଣୀ ଓ ବିଶିଷ୍ଟ ବ୍ୟକ୍ତି ଥିଲେ, ସମସ୍ତଙ୍କର ଗୋଟି ଗୋଟି କରି ବିସ୍ତର ପ୍ରଶସ୍ତି ତାଙ୍କର 'ଉତ୍କଳ ଭ୍ରମଣ' ପଦ୍ୟରେ କୀର୍ତ୍ତନ କରିଅଛନ୍ତି। ବସ୍ତୁତଃ ସେ ସମୟରେ, ଓଡ଼ିଶାର ସାମାଜିକ ଓ ସାଂସ୍କୃତିକ ଜୀବନରେ କେଉଁ କେଉଁମାନେ ବିଶିଷ୍ଟ ବ୍ୟକ୍ତି ଥିଲେ, ତାହାର ଏକ ତାଲିକା 'ଉତ୍କଳ ଭ୍ରମଣ'ରୁ ଅକ୍ଲେଶରେ ମିଳିପାରିବ। କବି ଗଙ୍ଗାଧରଙ୍କର କାବ୍ୟଶୈଳୀ ଯେ ପୂରାପୂରି କବିବର ରାଧାନାଥ ରାୟଙ୍କଦ୍ୱାରା ପ୍ରଭାବିତ ଥିଲା, ତାହା ଆଦୌ ନୁହେଁ। ବରଂ ସମାଲୋଚକମାନେ କହିବେ, ରାଧାନାଥ

ଯୁଗରେ, କବି ଗଙ୍ଗାଧର ଥିଲେ ନିଜର ଅନନ୍ୟତାରେ ଉଜ୍ଜ୍ୱଳ, ଜଣେ କୀର୍ତ୍ତିମାନ କବି। ତଥାପି କବି ଗଙ୍ଗାଧର ମେହେର ଏକାଧିକ ପତ୍ରରେ, କବିବର ରାଧାନାଥଙ୍କର ବହୁ ପ୍ରଶସ୍ତି କରି, ତାଙ୍କ ନିକଟକୁ ନିଜ ରଚିତ କବିତା 'ସଂଶୋଧନ'ପାଇଁ ପଠାଇବାକୁ ତିଳେ ହେଲେ ସୁଦ୍ଧା କୁଣ୍ଠିତ ହୋଇ ନାହାନ୍ତି। ଏସବୁ ପ୍ରଶସ୍ତି କିନ୍ତୁ ଚାଟୁବାକ୍ୟ ନଥିଲା, ଥିଲା ରସିକ ମନର ସଶ୍ରଦ୍ଧ ରସ ନିବେଦନ। ଆଜି ଅବଶ୍ୟ ଆମେ ସବୁ ଏତେ ଅନୁଦାର ଓ ରସହୀନ ଯେ, ଫକୀରମୋହନ ବା ଗଙ୍ଗାଧରଙ୍କ ପରି କାହାର ପ୍ରଶସ୍ତି କରିବାପାଇଁ ଆମେ ଘୋର ସଙ୍କୁଚିତ, ବରଂ ନିନ୍ଦା କରିବାରେ ଆମର ମାନସିକତା ପରିତୃପ୍ତ ହୋଇଥାଏ।

ଆଜି କିନ୍ତୁ ଆମ ସମାଜ-ଜୀବନରେ, ଅନ୍ୟ ଏକ କ୍ଷେତ୍ରରୁ ଆମଦାନୀ ହେଇଛି 'ଚାମଚା' ବୋଲି ଗୋଟିଏ ଶବ୍ଦ। ରାଜନୀତିରେ କ୍ଷମତାସୀନମାନଙ୍କର ଅତିରଞ୍ଜିତ ପ୍ରଶସ୍ତି ଗାନ କରିବା ଓ ତାଙ୍କ ନାମରେ ଜିନ୍ଦାବାଦ ଧ୍ୱନିଦେବା ହେଉଛି, ଚାମଚା-ତନ୍ତ୍ରର ପ୍ରଧାନ ପ୍ରବୃତ୍ତି। ଏ ଗୁଣଗ୍ରାହୀତା କିନ୍ତୁ ସମୟସେବୀ। କ୍ଷମତାସୀନ ବ୍ୟକ୍ତିଟି କ୍ଷମତାରୁ ହଠାତ୍ ଚାଲିଯିବା ପରେ, ଚାମଚାମାନଙ୍କ ଦୃଷ୍ଟିରେ ସେ ଅପାଙ୍‌କ୍ତେୟ ହୋଇଉଠନ୍ତି। ଚାମଚା, ଅନ୍ୟ କେଉଁ କ୍ଷମତାସୀନଙ୍କ ଦରବାରରେ ହାଜର ହୋଇଯାଆନ୍ତି, ପ୍ରଶସ୍ତି ଗାନପାଇଁ। ଏସବୁ ଏବେ ଯଥେଷ୍ଟ ମନେ ନହେବାରୁ, ଚାମଚାମାନଙ୍କ ସ୍ଥାନରେ ଆସିଲେଣି 'ବେଲ୍‌ଚା' ଓ ଚାମଚାତନ୍ତ୍ର ସ୍ଥାନରେ ଆସିଲାଣି ବେଲଚା-ତନ୍ତ୍ର।

ରାଜନୀତିରେ ବେଲ୍‌ଚାତନ୍ତ୍ର ସାଙ୍ଗକୁ ସାହିତ୍ୟ ଓ ସଂସ୍କୃତି କ୍ଷେତ୍ରରେ ମଧ୍ୟ ଆସିଯାଇଛି ଶ୍ରେଣୀତନ୍ତ୍ର ବା ଗୋଷ୍ଠୀତନ୍ତ୍ର। ଗୋଷ୍ଠୀ ଗଠନ ହେଉନାହିଁ, କଳା ବା ସାହିତ୍ୟରେ କୌଣସି ନୂତନ ପ୍ରବୃତ୍ତି ବା ଆଭିମୁଖ୍ୟକୁ ଆଶ୍ରୟ କରି ମହନ୍ତ ମହାପୁରୁଷମାନେ ଏହା ଭେଳାଉଛନ୍ତି। ବଶମ୍ୱଦମାନଙ୍କଠାରୁ ପ୍ରଶସ୍ତି ଓ ପ୍ରତିସ୍ପର୍ଦ୍ଧୀମାନଙ୍କର ନିନ୍ଦାଗୁଣ ଆତ୍ମତୃପ୍ତି ପାଇବାପାଇଁ ମୁଁ ରାଜନୀତିରେ ଯେ ବେଲ୍‌ଚା ତନ୍ତ୍ରର ବିରୋଧୀ ସାହିତ୍ୟ ଓ ସଂସ୍କୃତି କ୍ଷେତ୍ରରେ ମଧ୍ୟ ସେହିପରି ଗୋଠ-ତନ୍ତ୍ରର ସମାଲୋଚକ, ମାତ୍ର ଏଥି ସଙ୍ଗେସଙ୍ଗେ ଏକଥା ସ୍ୱୀକାର ନକଲେ, ମୁଁ ନିଶ୍ଚୟ ମିଥ୍ୟାଭାଷୀ ହେବି ଯେ ଏବେ ବୟସର ପଡ଼ନ୍ତି ବେଳାରେ, ଅନ୍ୟମାନଙ୍କଠାରୁ ପ୍ରଶସ୍ତି ଶୁଣିବାପାଇଁ ମୋତେ ଭିତରେ ଭିତରେ ଭଲଲାଗେ। କିନ୍ତୁ ମୁଁ ତାହାକୁ ଉତ୍ସାହିତ କରେ ନାହିଁ। କାରଣ ତାହା କେତେଟା ଆନ୍ତରିକ ଓ ଅଭିନୟ- ମୋର ସେଥିରେ ଘୋର ସନ୍ଦେହ ଥାଏ। ପୁଣି ମୋ ବିଚାରରେ, ପୂର୍ବେ, ରାଜ ଦରବାରମାନଙ୍କରେ ଯେପରି ଚାଟୁକାର ବୋଲି ଏକ ସ୍ୱତନ୍ତ୍ର ଶ୍ରେଣୀ ରହିଥିଲେ, ସେପରି ଏବେ ଗୋଟିଏ ଶ୍ରେଣୀ ସୃଷ୍ଟି କରି ସେମାନଙ୍କଠାରୁ ପ୍ରଶସ୍ତି ଶୁଣିଲେ ଆନ୍ତରିକତା ଓ ଅଭିନୟ ଘେନି କାହାରି ମନରେ ସନ୍ଦେହ ସୃଷ୍ଟି ହୁଅନ୍ତା ନାହିଁ। ସମସ୍ତେ ଜାଣନ୍ତେ ଓ ବୁଝନ୍ତେ, କପେ ଚା', ଗୋଟାଏ ଗ୍ଲାସ୍ ବିଅର, ଅଥବା ଗୋଟିଏ ପେଗ୍ ହୁଇସ୍କିପାଇଁ ପ୍ରଶସ୍ତିଗାନ ଚାଲିଛି। ଯାହାର ପ୍ରଶସ୍ତି ଶୁଣିବା

ପ୍ରୟୋଜନ, ସେ ଏତକ ବ୍ୟୟ ଭାର ବହନ କରିବା ଆବଶ୍ୟକ। କଥା ଛିଡ଼ିଯାଆନ୍ତା। ଯଦ୍ୟପି ଏବେ ସେ ଶ୍ରେଣୀର ସଜ୍ଜନମାନେ ରହିଛନ୍ତି, ତଥାପି ସେମାନଙ୍କୁ ଚାଟୁକାର ବା ଭାଟ ତାଲିକାରେ କେହି ତାଲିକାଭୁକ୍ତ କଲେ, ସେମାନଙ୍କଠାରୁ ଚାଟୁବାକ୍ୟ ପରିବର୍ତ୍ତେ ଦୋ-ଅକ୍ଷରୀ ଭିତରେ କଟୁବାକ୍ୟ ଶୁଣିବାର ଆଶଙ୍କା ସଂପୂର୍ଣ୍ଣ ବିଦ୍ୟମାନ। ଏହିପରି ଅବସ୍ଥାରେ, ମୁଁ କୌଣସି ସଭା ସମିତିରେ, କେହି ମୋହର ପରିଚୟ ଦେବାକୁ ଉଠିଲେ, ମନେ ମନେ ପ୍ରକୃତରେ ଆତଙ୍କିତ ହୋଇ ଉଠିଥାଏ। କାରଣ ଥରେ ଜଣେ ଓଡ଼ିଆ ଆଇ.ଏ.ଏସ୍. ଅଫିସର କଟକ କ୍ଲବ୍‌ରେ ଏକ ରୋଟାରୀ ସଭାରେ ମୋତେ ପରିଚିତ କରାଇ ଦେଇ କହିଥିଲେ, "ଆଜି ସନ୍ଧ୍ୟାର ମୁଖ୍ୟବକ୍ତା ଓଡ଼ିଆ ଭାଷାର ବିଶିଷ୍ଟ ଲେଖକ ପ୍ରସିଦ୍ଧ 'ନୂଳଶୈଳ' ଉପନ୍ୟାସର ସ୍ରଷ୍ଟା ଶ୍ରୀ ସୁରେନ୍ଦ୍ରନାଥ ମହାନ୍ତି।" 'ନୀଳ' କିପରି 'ନୂଳ' ହେଲା, ଅଥବା 'ଅନାଥ' କିପରି 'ନାଥ' ହେଇଗଲେ ମୁଁ ବୁଝି ପାରିଲି ନାହିଁ।

ଏହାର ଅର୍ଥ, ସେ ମୋତେ ଜାଣି ନାହାନ୍ତି କିମ୍ବା ମୋର ଲେଖା ଧାଡ଼ିଏ ସୁଦ୍ଧା ପଢ଼ି ନାହାନ୍ତି। ତଥାପି ମୋତେ ପ୍ରସିଦ୍ଧ କରି ସେ ଆନ୍ତରିକତାହୀନ ପ୍ରଶସ୍ତି କଲେ। ଏହି ଅଭିଜ୍ଞତା ପରଠାରୁ କୌଣସି ସଭାରେ କେହି ମୋତେ ପରିଚିତ କରାଇଦେବାକୁ ଉଠିଲେ, ମୁଁ ତାଙ୍କୁ କହିଥାଏ- ଆପଣଙ୍କର ପ୍ରଶସ୍ତିରେ ମୁଁ ଯଦି ପରିଚିତ ହେଲି ଅର୍ଥାତ୍ ମୋର ଅନ୍ୟ ପରିଚୟ ନାହିଁ, ତା'ହେଲେ ଆପଣ ପରିଚିତ କରାଇବାର କୌଣସି ପ୍ରୟୋଜନ ନାହିଁ।

ଏସବୁ କାରଣ ସତ୍ତ୍ୱେ ସେ ଦିନ ସନ୍ଧ୍ୟାରେ, ଏକ ସାଧାରଣ ସଭାରେ ସଭାର ସଂଯୋଜକ ଯେପରି ଉଚ୍ଛ୍ୱସିତ ଭାବରେ ମୋର ପ୍ରଶସ୍ତି ଗାନ କଲେ, ମୋର ମନେହେଲା, ମୁଁ ଯେପରି ମୃତ୍ୟୁ ପରେ, ମୋ ନିଜର 'ଅବିଚୁଆରୀ' ବା 'ଶୋକାଞ୍ଜଳି' କୌଣସି ପତ୍ରପତ୍ରିକାରୁ ପଢୁଛି।

ସେଦିନ ସେହି ସଭାରେ ମୁଁ ପରାମର୍ଶ ଦେଇଥିଲି ଏପରି ପ୍ରଶସ୍ତି ଭାଷଣ ପରିବର୍ତ୍ତେ, ବରଂ ଲିପିବଦ୍ଧ କରି ରଖାଯାଉ ! ଭବିଷ୍ୟତରେ ତାହା ଶୋକାଞ୍ଜଳି ବା ଅବିଚୁଆରୀ-ସାହିତ୍ୟ ଭାବରେ, ହୁଏତ ଏକ ସ୍ୱତନ୍ତ୍ର ସାହିତ୍ୟିକ ବିଭାଗଟିଏ ସୃଷ୍ଟି କରିବ।

'ଆଇରନୀ' ହେଉଛି ଜୀବନ, ଜୀବନକୁ ଚିହ୍ନିପାରେ ନାହିଁ ! ମୃତ୍ୟୁର କଷଟିରେ ହୁଏ ଜୀବନର ପ୍ରକୃତ ମୂଲ୍ୟାୟନ।

*୦୪/୦୪/୮୫*

# ବୋଗୋଟାରୁ ପ୍ୟାରିସ୍

ପାଶ୍ଚାତ୍ୟ ସାହିତ୍ୟର ଇତିହାସ ପ୍ରତି ଦୃଷ୍ଟିପାତ କଲେ ଦେଖାଯିବ, ସାହିତ୍ୟ ଓ କଳାରେ ବିଭିନ୍ନ ପ୍ରବୃତ୍ତି ଓ ଶୈଳୀ ତଥା ଆଙ୍ଗିକ ଜନ୍ମଲାଭ କରିଛି; ପ୍ୟାରିସ୍, ଲଣ୍ଡନ, ନହେଲେ ନିଉୟର୍କରେ। ଏସବୁ ବଡ଼ବଡ଼ ମେଟ୍ରୋପଲିଟାନ୍ ସହର। ମେଟ୍ରୋପଲିଟାନ୍ ସହରର ନୈର୍ବ୍ୟକ୍ତିକତା, ସହନଶୀଳତା ଓ ଉଦାରତା ମଧ୍ୟରେ, ସାହିତ୍ୟ ଓ କଳାରାଜ୍ୟରେ, ବିଭିନ୍ନ ପରୀକ୍ଷା ନିରୀକ୍ଷା ସମ୍ଭବ ହୋଇପାରିଛି। ଏଥିପାଇଁ ଭିତ୍ତିଭୂମି ମଧ୍ୟ ରହିଛି ପ୍ରଚୁର। ଚିତ୍ରକଳା କଥା ଛାଡ଼ିଦେଲେ ବି, ସାହିତ୍ୟ କ୍ଷେତ୍ରରେ ଦେଖାଯିବ, ଯେଉଁ 'ଷ୍ଟ୍ରୀମ୍ ଅଫ୍ କନ୍‌ସସ୍‌ନେସ୍' ବା ଚେତନା- ପ୍ରବାହ ଶୈଳୀ, ଉପନ୍ୟାସର ଆଙ୍ଗିକ ଓ ଶୈଳୀକୁ ଦିନେ ବଦଳାଇ ଦେଇଥିଲା, ତାହା ଜନ୍ମଲାଭ କରିଥିଲା ପ୍ୟାରିସ୍‌ରେ। ଏହାର ଆଦ୍ୟ ପ୍ରବର୍ତ୍ତକ ଜେମସ୍ ଜଏସ୍ ଆୟାର୍ଲାଣ୍ଡର କ୍ଷୁଦ୍ର ଡବଲିନ୍ ସହରରେ ଜନ୍ମ ଗ୍ରହଣ କରିଥିଲେ ହେଁ, ଡବଲିନ୍‌ର ନିଃଶ୍ୱାସରୁ ଜ୍ଞାନ ରକ୍ଷଣଶୀଳ ସାହିତ୍ୟିକ ପରିବେଶ ମଧ୍ୟରୁ ସେ ପଳାଇ ଆସିଥିଲେ ପ୍ୟାରିସ୍। ପ୍ୟାରିସ୍‌ରେ ହିଁ ଲେଖା ହୋଇଥିଲା ପ୍ରଥମେ ଚେତନା-ପ୍ରବାହଧର୍ମୀ ଶୈଳୀରେ 'ୟୁଲିସେସ୍' ଉପନ୍ୟାସ। ଦିନକର ଘଟଣା ନେଇ ଉପନ୍ୟାସଟି ଲିଖିତ ହୋଇଥିଲେ ହେଁ, ଏଥିରେ ଥିଲା ମହାକାବ୍ୟିକ ବ୍ୟାପ୍ତି। ଏହି ଉପନ୍ୟାସଟି ସମଗ୍ର ପାଶ୍ଚାତ୍ୟ ଉପନ୍ୟାସ-ସାହିତ୍ୟର ଆଙ୍ଗିକକୁ ବଦଳାଇ ଦେଇଥିଲା।

ନାଟକ କ୍ଷେତ୍ରରେ ଦେଖାଯିବ, ସାମୁଏଲ ବେକେଟଙ୍କର ଆବ୍‌ସର୍ଡ଼ ଡ୍ରାମା ବା ଉଦ୍ଭଟ ନାଟକ ସବୁ, ନାଟକର ଆଙ୍ଗିକରେ ମଧ୍ୟ ବହୁ ପରିବର୍ତ୍ତନ ଆଣିଥିଲା। ସାମୁଏଲ୍ ବେକେଟ ଜନ୍ମିଥିଲେ ମଧ୍ୟ ଆୟାର୍ଲାଣ୍ଡରେ। କିନ୍ତୁ ତାଙ୍କର ନାଟ୍ୟକାର ଜୀବନ କଟିଥିଲା ପ୍ୟାରିସ୍‌ରେ। କବିତା କ୍ଷେତ୍ରରେ ଟି.ଏସ୍. ଏଲିୟଟ୍ ଯେଉଁ ବିପ୍ଳବ ଆଣିଥିଲେ, ଏଠାରେ ତାହା ଉଲ୍ଲେଖ କରିବା ନିଷ୍ପ୍ରୟୋଜନ। ସେ କିନ୍ତୁ ଆମେରିକାର ଅଧିବାସୀ ଥିଲେ ହେଁ ଲଣ୍ଡନରେ ତାଙ୍କର ସାହିତ୍ୟିକ ଜୀବନ ଅତିବାହିତ ହୋଇଥିଲା। ଏହି ଶତାବ୍ଦୀରେ, ଆମେରିକାନ୍ ଔପନ୍ୟାସିକ ହେନରୀ ଜେମ୍‌ସଙ୍କର 'ସେଣ୍ଟର ଅଫ୍ କନ୍‌ସସ୍‌ନେସ୍' ବା

ଚେତନାର କେନ୍ଦ୍ରବିନ୍ଦୁ ଶୈଳୀ ତାଙ୍କର ପରବର୍ତ୍ତୀ ଉପନ୍ୟାସର ଫର୍ମ ବା ଆଙ୍ଗିକ ଉପରେ ମଧ୍ୟ ବହୁ ପ୍ରଭାବ ବିସ୍ତାର କରିଥିଲା। ଏହି କେତୋଟି ଉଦାହରଣୁ ସ୍ପଷ୍ଟ ହେବ, ପାଶ୍ଚାତ୍ୟ ସାହିତ୍ୟରେ ଯେଉଁସବୁ ନୂତନ ନୂତନ ପରୀକ୍ଷା ନିରୀକ୍ଷା ହୋଇ, ପ୍ରକାରାନ୍ତରେ, ବିଶ୍ୱସାହିତ୍ୟକୁ ପ୍ରଭାବିତ କରିଛି, ସେସବୁ ଜନ୍ମ ନେଇଥିଲା ବଡ଼ ବଡ଼ ମେଟ୍ରୋପଲିଟାନ୍ ସହରମାନଙ୍କରେ। କିନ୍ତୁ ୧୯୮୨ ମସିହାରେ, ନୋବଲେ୍ ପୁରସ୍କାର-ସମ୍ମାନିତ ଗାବ୍ରିଏଲ୍ ଗର୍ସିଆ ମାର୍କ୍ୟୁଇଜ୍, କଲମ୍ବିଆ ପରି ଏକ କ୍ଷୁଦ୍ର ଦେଶର ରାଜଧାନୀ ବୋଗୋଟା ସହରର ଅଧିବାସୀ ହୋଇଥିଲେ ହେଁ ତାଙ୍କର ଲେଖକ-ଜୀବନ ସେହି କ୍ଷୁଦ୍ର ସହରରେ ଅତିବାହିତ ହୋଇଥିଲେ ହେଁ ଓ ତାଙ୍କର 'ୱାନ୍ ହଣ୍ଡ୍ରେଡ୍ ଇଅର ଅଫ୍ ସଲିଟ୍ୟୁଡ୍' (ନିଃସଙ୍ଗତାର ଗୋଟିଏ ଶତାବ୍ଦୀ) ସମଗ୍ର ପାଶ୍ଚାତ୍ୟ ଉପନ୍ୟାସର ଶୈଳୀ ଓ ଆଙ୍ଗିକକୁ ଗଭୀର ଭାବରେ ପ୍ରଭାବିତ କରିବାକୁ ଆରମ୍ଭ କରିଛି। ଉପନ୍ୟାସଟି ଲେଖକଙ୍କ ମାତୃଭାଷା ସ୍ପାନିଶ୍‌ରେ ଲିଖିତ। ମାତ୍ର ଗ୍ରେଗରି ରାବାସାଙ୍କର ଇଂରାଜୀ ଅନୁବାଦ, ମାର୍କ୍ୟୁଇଜ୍‌ଙ୍କର ମୂଳ ସ୍ପାନିଶ୍ ଅପେକ୍ଷା ଅଧିକ ରସୋତ୍ତୀର୍ଣ୍ଣ ଓ ସୁଖପାଠ୍ୟ ବୋଲି ସମାଲୋଚକମାନେ ମତ ପ୍ରକାଶ କରିଥିବା, କେତେ ସପ୍ତାହ ତଳେ ମୁଁ ଥରେ ଏହି ସ୍ତମ୍ଭରେ ଆଲୋଚନା କରିଥିଲି। ଅନୁବାଦ ଯାନ୍ତ୍ରିକ ନୁହେଁ, ଏହା ମଧ୍ୟ ସୃଷ୍ଟିଧର୍ମୀ ହୋଇପାରେ। ରାବସାଙ୍କର ଇଂରାଜୀ ଅନୁବାଦରେ ତାହା ପ୍ରମାଣିତ ହୋଇଛି।

ଏ ଉପନ୍ୟାସଟିକୁ ଥରେ ପଢ଼ି ସାରିବା ପରେ ମୁଁ ପୁଣି ଆଉ ଥରେ ପଢୁଛି। କାରଣ ପ୍ରଥମ ଥର ପଢ଼ିବା ବେଳେ, ଏହା ଖୁବ୍ ସୁଖପାଠ୍ୟ ଲାଗୁଥିଲେ ହେଁ 'ୟୁନିଟି ଅଫ୍ ଇମ୍ପ୍ରେସନ୍' ଅଭାବରୁ ଏହା ମୋତେ ଅଭିଭୂତ କରିପାରି ନଥିଲା। ବସ୍ତୁତଃ, ମୋ ବିଚାରରେ, ଯାହା ପାଠକକୁ ଅଭିଭୂତ କରେ, ତାହା ହିଁ ଶ୍ରେଷ୍ଠ ଓ ମହାନ୍। ଏହି ଉପନ୍ୟାସଟିର ଗଠନଭଙ୍ଗୀ ଏପରି ଶିଥିଳ, ପୁଣି ଘଟଣାର ବିନ୍ୟାସ ଏପରି ବିକ୍ଷିପ୍ତ ଓ ଖାପଛଡ଼ା, ପୁଣି ଚରିତ୍ର ଚିତ୍ରଣର ଉଦ୍ୟମ ଏପରି ଦୁର୍ବଳ ଯେ ଏହା ପାଠକ ମନରେ ଗଭୀର ରେଖାପାତ କରିପାରେ ନାହିଁ। ପୁଣି ଏଥିରେ କୌଣସି କାଳାତିଶାୟୀ ଧ୍ରୁପଦୀ ଭାବନା ବା 'ଆଇଡିଆ' ଥିବା ପରି ମୋର ମନେ ହେଲା ନାହିଁ। ତଥାପି ଏହା କିପରି ନୋବେଲ୍ ପୁରସ୍କାରରେ ସମ୍ମାନିତ ହେଲା ମୁଁ ବୁଝିପାରିଲି ନାହିଁ। ସେହି ପ୍ରସଙ୍ଗ ସାମ୍ପ୍ରତିକ ଇଂରାଜୀ ସାହିତ୍ୟ ସହିତ ସୁପରିଚିତ ଓ ତାହାର ଖବର ରଖୁଥିବା ଜଣେ ତରୁଣ ବନ୍ଧୁଙ୍କ ସହିତ ଆଲୋଚନାରୁ ଜାଣିଲି, ମାର୍କ୍ୟୁଇଜ୍‌ଙ୍କର ଶୈଳୀ ପ୍ରଥାବଦ୍ଧ ଉପନ୍ୟାସଶୈଳୀ ବିରୁଦ୍ଧରେ ଏକ ବିଦ୍ରୋହ। ତେଣୁ ଘଟଣାବଳୀର ସୁସଂଯତ ବର୍ଣ୍ଣନା ମାଧ୍ୟମରେ କଥାବସ୍ତୁର ବିକାଶ, ଚମକପ୍ରଦ ଘଟଣାର ସନ୍ନିବେଶ ଓ ଚରିତ୍ର ଚିତ୍ରଣର ବଳିଷ୍ଠ ପ୍ରଚେଷ୍ଟା ପ୍ରଭୃତି- ଯାହା ସବୁ ସାର୍ଥକ ଉପନ୍ୟାସର ଲକ୍ଷଣ ତାହା ମାର୍କ୍ୟୁଇଜ୍‌ଙ୍କର ଏହି ଉପନ୍ୟାସରେ ପରିଲକ୍ଷିତ

ହୁଏ ନାହିଁ। ଏହାର ଗଠନ ଶୈଥିଲ୍ୟ ହିଁ ଏହାର ବିଶେଷତ୍ୱ। ଏହାର ଶୈଳୀ ପୁଣି ଆହୁରି ଅଭିନବ। ଅତ୍ୟାଧୁନିକ ଦୁର୍ବୋଧ୍ୟତା ଏଥିରେ ଆଦୌ ନାହିଁ ବରଂ ସ୍ଥାନେସ୍ଥାନେ ଏହା ପାରମ୍ପରିକ ଉପନ୍ୟାସ ପରି ବର୍ଣ୍ଣନାଧର୍ମୀ। ଚରିତ୍ରଚିତ୍ରଣ ଗୋଟିଏ ସାମାନ୍ୟ ବର୍ଣ୍ଣନା ବା ଘଟଣା ମଧ୍ୟରେ ପରିସ୍ଫୁଟ ହୋଇପାରିଛି। ଗୋଟିଏ ସୀମିତ ପୃଷ୍ଠଭୂମି ଉପରେ, ଗୁଏନ୍ଦିଆ ପରିବାରର ଜୀବନ-ଗାଥା, ଉପନ୍ୟାସଟିର ବିଷୟବସ୍ତୁ ହେଲେ ହେଁ ଏଥିରେ ଅଛି, ସମୟ ଓ ସ୍ଥାନର ବିପୁଳ ବ୍ୟାପ୍ତି। ଏଇ ଉପନ୍ୟାସ ପଢ଼ିବାବେଳେ, ସ୍ଥାନେସ୍ଥାନେ କିଛି ଅଂଶ ଗୋଟାଏ ଉପକଥା ପଢ଼ିବା ପରି ସୁଦ୍ଧା ଲାଗେ। କେଉଁଠି ଉପକଥା ଶେଷହୋଇ, ବାସ୍ତବ ଘଟଣା ଆରମ୍ଭ ହୋଇଛି, ତାହା ଜାଣିବା ପୁଣି ଏଥିରେ କଠିନ। ସର୍ବୋପରି, ସାମ୍ପ୍ରତିକ ଉପନ୍ୟାସ-ଶୈଳୀରୁ ହାସ୍ୟରସ ବିଦାୟ ନେଇଥିବା ବେଳେ, ସ୍ନିଗ୍ଧ ଓ ବିଦଗ୍ଧ ହାସ୍ୟରସରେ ଏହାର ବର୍ଣ୍ଣନା ବେଶ୍ ଚଟୁଳ ଓ ଉଜ୍ଜ୍ୱଳ। ଏଇ ହାସ୍ୟରସରେ ଅବଶ୍ୟ କୌଣସି ଅଭିନବତ୍ୱ ନାହିଁ। ଏହାର ସାରକଥା ହେଲା, ଜୀବନର ଦୁର୍ଭାଗ୍ୟତମ ମୁହୂର୍ତ୍ତମାନଙ୍କରେ ହାସ୍ୟରସର ସୃଷ୍ଟି ହୋଇଥାଏ। ହାସ୍ୟରସିକ ସୁପ୍ରସିଦ୍ଧ ଚାର୍ଲି ଚାପ୍‌ଲିନ୍‌ଙ୍କର ମଧ୍ୟ ହାସ୍ୟରସ ସମ୍ପର୍କରେ ଏହା ହିଁ ଥିଲା ସଂଜ୍ଞା। ତାଙ୍କ ଆତ୍ମଚରିତରେ ଚାର୍ଲି ଚାପ୍‌ଲିନ୍ ଲେଖିଛନ୍ତି, "ଜୀବନର ଟ୍ରାଜିକ୍ ମୁହୂର୍ତ୍ତମାନଙ୍କରେ ମନୁଷ୍ୟ ଯଦି ନିଜ ଦୁର୍ଭାଗ୍ୟ ପ୍ରତି ହସି ନପାରନ୍ତା, ତାହାହେଲେ ସେ ଆତ୍ମହତ୍ୟା କରନ୍ତା।" ନାଟ୍ୟକାର ସେକ୍‌ସପିୟର ମଧ୍ୟ ଲେଖିଥିଲେ, "What cannot be preserved when fortune takes patience her injury a mockery makes" ଘନ କଳାମେଘ ଚାରିପଟେ ରଜତ ଆଲୋକର ରେଖା ଥିବା ପରି, ସବୁ ଦୁର୍ଭାଗ୍ୟପୀଡ଼ିତ ମୁହୂର୍ତ୍ତମାନଙ୍କରେ ସୁଦ୍ଧା ଥାଏ, ହାସ୍ୟୋଜ୍ଜ୍ୱଳ ଏକ ଦିଗ। ଏହା ହିଁ ଶୁଦ୍ଧ ହାସ୍ୟରସ। ଏହା କୁତୁକୁତୁ କରି ହସାଇବାର ହେରେଷାମିଠାରୁ ସ୍ୱତନ୍ତ୍ର। ସମାଲୋଚକମାନେ ମାର୍କ୍ୟୁଇଜ୍‌ଙ୍କର ଏଇ ହାସ୍ୟରସକୁ 'ବ୍ଲାକ୍ ହିଉମର୍' ନାମରେ ଚିହ୍ନିତ କରିଛନ୍ତି। ଜର୍ଜ ଲୁଇବର୍ଜେସ୍ ଓ ଜୁଲିଓ କର୍ତ୍ତାଜା; ମାର୍କ୍ୟୁଇଜ୍‌ଙ୍କର ଅନ୍ୟ ଦୁଇଜଣ ସହଧର୍ମୀ ଔପନ୍ୟାସିକ ବୋଲି ଶୁଣିଲି; ଯଦ୍ୟପି ଏମାନଙ୍କର ଉପନ୍ୟାସ ଏ ପର୍ଯ୍ୟନ୍ତ ମୁଁ ପାଇନାହିଁ। ମାର୍କ୍ୟୁଇଜ୍‌ଙ୍କର ଗୋଷ୍ଠୀ ଆମେରିକା ଓ ୟୁରୋପର ସାମ୍ପ୍ରତିକ ଉପନ୍ୟାସଶୈଳୀକୁ ଗଭୀରର ଭାବରେ ପ୍ରଭାବିତ କଲେଣି। କେବଳ ଇଂଲଣ୍ଡ ଓ ପଶ୍ଚିମ ଜର୍ମାନୀର ଔପନ୍ୟାସିକମାନଙ୍କ ଉପରେ ସେମାନେ ତଥାପି ରେଖାପାତ କରିପାରି ନାହାନ୍ତି। ବ୍ରିଟିଶ୍ ଔପନ୍ୟାସିକମାନେ ତଥାପି ରହିଛନ୍ତି ଚିରାୟିତ ଫର୍ମ ଧରି, ଆଉ ଜର୍ମାନ୍ ଔପନ୍ୟାସିକମାନେ ହରମାନ ହେଜ୍‌ଙ୍କ ପରି ପ୍ରାୟଶଃ ମେଟାଫିଜିକାଲ୍।

"ତେବେ ସେ ଯାହାହେଉ, ମାର୍କ୍ୟୁଇଜ୍‌ଙ୍କର ଏଇ ଉପନ୍ୟାସରେ ନୋବେଲ୍ ପୁରସ୍କାର ପାଇଲା ଭଳି କୌଣସି ଉଲ୍ଲେଖଯୋଗ୍ୟ ବୈଶିଷ୍ଟ୍ୟ ମୁଁ ଦେଖିଲି ନାହିଁ?" ମୁଁ

ପଚାରିଲି- ବନ୍ଧୁ ଉତ୍ତର ଦେଲେ- ଏବେ ନୋବେଲ୍ ପୁରସ୍କାର ନିୟାମକ ମଧ୍ୟ ବଦଳିଯାଇଛି, ବ୍ୟକ୍ତିଗତ କୃତିତ୍ୱ ଯୋଗୁଁ ଯେତେ ନୁହେଁ, ସମସାମୟିକ କାଳରେ ଜଣେ ଲେଖକ, ଅନ୍ୟ ଲେଖକମାନଙ୍କୁ କେଉଁ ପରିମାଣରେ ପ୍ରଭାବିତ କରିପାରିଛନ୍ତି ତାହା ହିଁ ହେଲା ଆଜି ନୋବେଲ୍ ପୁରସ୍କାରର ଏକ ପ୍ରଧାନ ନିୟାମକ। ସେହି ଦୃଷ୍ଟିରୁ, ଗାବ୍ରିଏଲ୍ ଗର୍ସିଆ ମାର୍କ୍ୱେଇଜ୍ ସମଗ୍ର ପାଶ୍ଚାତ୍ୟ ଔପନ୍ୟାସିକମାନଙ୍କୁ ଗଭୀର ଭାବରେ ପ୍ରଭାବିତ କରିଛନ୍ତି।"

ମୋର ମନେ ହେଉଛି, ପ୍ରକୃତରେ ଜଣେ ଲେଖକ, ତା'ର ସମସାମୟିକକାଳରେ କେତେ ଲେଖକଙ୍କୁ ପ୍ରଭାବିତ କରିପାରିଛି, ତାହା ହିଁ ତାର ସାହିତ୍ୟିକ ଉତ୍କର୍ଷତାର ନିୟାମକ ରୂପେ ବିବେଚିତ କେବଳ, ବ୍ୟକ୍ତିଗତ ଉତ୍କର୍ଷ ନୁହେଁ।

*୧୮/୦୪/୮୫*

# ଶେଷ ବାଣୀ !

କଞ୍ଚା ବୟସର ଆଶାବାଦୀ ତରୁଣମାନେ କୌଣସି ପ୍ରତିଷ୍ଠିତ ବୃଦ୍ଧଙ୍କ ନିକଟକୁ 'ମେସେଜ୍' ବା 'ବାଣୀ' ପାଇଁ ଯିବା ଦେଖିଲେ, ସେମାନଙ୍କ ପ୍ରତି କରୁଣାରେ ମନ ମୋର ଭରିଉଠେ। ବିଚରାମାନେ ଭାବନ୍ତି ବୃଦ୍ଧଟି ଜୀବନ ଓ ମୃତ୍ୟୁ ବା ବ୍ୟକ୍ତି ଓ ରାଷ୍ଟ୍ର, ଯୁଦ୍ଧ ଓ ଶାନ୍ତିର ସମସ୍ୟା ସବୁ ଅହର୍ନିଶ ଭାବୁଛନ୍ତି ! ନୋହିଲେ ତାଙ୍କ ଜୀବନରେ ଏପରି ସବୁ ମହାର୍ଘ ଅନୁଭୂତି ରହିଛି; ଉତ୍ତରପୁରୁଷମାନେ ଯାହା ନଜାଣିଲେ ସେମାନଙ୍କ ଜୀବନ ଅପୂର୍ଣ୍ଣ ରହିଯିବ ! ନୋହିଲେ ବୃଦ୍ଧ ଜଣଙ୍କର ଏପରି କିଛି ମହାନ ବକ୍ତବ୍ୟ ଅଛି, ଯାହା ଜାଣିଲେ ବା ଶୁଣିଲେ, ଜୀବନର ଗତିପଥ ବଦଳିଯିବ। ଆଶାବାଦୀ ତରୁଣମାନଙ୍କର 'ମେସେଜ୍' ପାଇଁ ବ୍ୟାକୁଳତା ଯେପରିକି କରୁଣ, 'ମେସେଜ୍' ଦେବା ବା 'ବାଣୀ' ଶୁଣାଇବାପାଇଁ ବୃଦ୍ଧମାନଙ୍କର ବ୍ୟଗ୍ରତା ମଧ୍ୟ ତତୋଽଧିକ ଦୟନୀୟ ! ମନରେ ଭରିରହିଥିବ ରାଶିରାଶି ତୁଚ୍ଛା ସଂସାରୀ କଥା। କିନ୍ତୁ ଶୁଣାଇବେ ସେମାନେ 'ଗଭୀର ଉପଲବ୍ଧି'ର ବଡ଼ ବଡ଼ ତତ୍ତ୍ୱ। ମହାତ୍ମାଗାନ୍ଧୀ କିନ୍ତୁ ଏଥିରେ ଗୋଟିଏ ଉଲ୍ଲେଖଯୋଗ୍ୟ ବ୍ୟତିକ୍ରମ ଥିଲେ।

ଥରେ ଦଳେ ଭକ୍ତ ତାଙ୍କୁ ବେଢ଼ିଲେ, ତାଙ୍କଠାରୁ ଗୋଟିଏ ବାଣୀ ସଂଗ୍ରହ ପାଇଁ। ମହାତ୍ମାଗାନ୍ଧୀ କିନ୍ତୁ ଓଠରେ ତାଙ୍କର ସେଇ ଶିଶୁସୁଲଭ ପ୍ରସିଦ୍ଧ ହସଟି ଖେଳାଇ ଉତ୍ତର ଦେଇଥିଲେ 'ମୋର ଜୀବନ ହେଉଛି, ମୋର ବାଣୀ'। ଏହାର ଅର୍ଥ ହେଲା, ମୁଁ ଯାହା ସେଇଆ। ସେଥିରୁ ଯଦି କିଛି ଅର୍ଥ ବା 'ବାଣୀ' ସଂଗ୍ରହ କରିପାରୁଛ, ତା'ହେଲେ ତାହାହିଁ ମୋର ବାଣୀ। ତା' ବାହାରେ ମୋର ଅନ୍ୟ କିଛି ନାହିଁ। ସେଥିପାଇଁ ମହାତ୍ମାଗାନ୍ଧୀ କେବେ କାହାକୁ କୌଣସି ବାଣୀ ଶୁଣାଇଥିବା, ମୋର ମନେ ନାହିଁ। ଚୈତନ୍ୟଦେବ ଠିକ୍ ଏହି ମାର୍ଗର ଚିନ୍ତକ ଥିଲେ। ଅନ୍ୟ ସନ୍ଥମାନଙ୍କ ପରି ସେ କୌଣସି ବାଣୀ ଶୁଣାଇ ନାହାନ୍ତି। ତାଙ୍କର ଜୀବନ ଥିଲା ତାଙ୍କର ବାଣୀ। ସେଥିପାଇଁ ଶ୍ରୀଚୈତନ୍ୟଙ୍କ ଜୀବନୀକାର କୃଷ୍ଣ ଦାସ କବିରାଜ ଗୋସ୍ୱାମୀ 'ଶ୍ରୀଚୈତନ୍ୟ ଚରିତାମୃତ' ଗ୍ରନ୍ଥରେ ଶ୍ରୀଚୈତନ୍ୟଙ୍କ

ସଂପର୍କରେ ଲେଖିଛନ୍ତି- "ଆପନି ଆଚରି ପ୍ରଭୁ, ଅପରେ ଶିଖାଏ।" ଅର୍ଥାତ୍, ଶ୍ରୀଚୈନତ୍ୟଙ୍କ କଥାରେ ଉପଦେଶ ଦେବା ପରିବର୍ତ୍ତେ, ନିଜ ଜୀବନରେ ତାହା ଆଚରଣ କରି ଅନ୍ୟମାନଙ୍କୁ ଶିଖାନ୍ତି। ଏବେ ସବୁ କ୍ଷେତ୍ରରେ ଅନ୍ୟମାନଙ୍କୁ ଉପଦେଶ ଦେବା ବା ବାଣୀ ଶୁଣାଇବାର ଯେଉଁ ପ୍ରବଳ ମୋହ ସୃଷ୍ଟି ହୋଇଛି, ସେଥିରେ ଅନ୍ୟକୁ ବାଣୀ ନ ଶୁଣାଇ ନିଜର ଜୀବନଚର୍ଯ୍ୟାରେ ଯଦି ତାହାକୁ ପ୍ରମୂର୍ତ୍ତ କରାଯାଇପାରନ୍ତା, ତା'ହେଲେ ତାହା ଅଧିକ ପ୍ରଭାବଶାଳୀ ହେହାଇପାରନ୍ତା। ଲେଖକମାନଙ୍କର ଗୋଟିଏ ଦୁର୍ବଳତା ହେଉଛି, ସେମାନେ ଭାବନ୍ତି ସେମାନଙ୍କ ଲେଖାରେ ଗୋଟିଏ ମହାନ୍ ବାଣୀ ପ୍ରଚ୍ଛନ୍ନ ହୋଇ ରହିଛି। କଲେଜ୍‌ର କ୍ଲାସ୍, ରୁମ୍‌ରେ ଅଧ୍ୟାପକମାନେ ସେହିସବୁ ବାଣୀ ଖୋଜିଲୋଡ଼ି ଛାତ୍ରମାନଙ୍କୁ ଶୁଣାନ୍ତି। ପରୀକ୍ଷାରେ ପ୍ରଶ୍ନ ବି ପଡ଼େ। 'ଆଦର୍ଶ' ପ୍ରଶ୍ନୋତ୍ତର ବହିରେ ଉତ୍ତର ମଧ୍ୟ ଛାପାଯାଏ। କିନ୍ତୁ ଅନୁସନ୍ଧାନ କଲେ ଦେଖାଯିବ, ବିଶ୍ୱମାନବିକତା ଓ ମୈତ୍ରୀ ପ୍ରଭୃତି ଯେଉଁ ଲେଖକଙ୍କର ମାନବ ସମାଜ ପ୍ରତି ମହାନ୍ ବାଣୀ, ସିଏ ଗାଁରେ ଜମିବାଡ଼ି ମାମଲାରେ ଭାୟାମାନଙ୍କ ସହିତ କେତେ ନମ୍ବର ମକଦ୍ଦମା ଦାଏର କରିଛନ୍ତି- ଇତ୍ୟାଦି ଇତ୍ୟାଦି।

ତେବେ ଉଭୟ ବାଣୀ-ଲାଳସୀ ଓ ବାଣୀ-ବିଳାସୀମାନଙ୍କପାଇଁ ମୁଁ ପାଶ୍ଚାତ୍ୟ-ଦର୍ଶନର ଆଦିମନିଷୀ ସକ୍ରେଟିସ୍‌ଙ୍କ ମୃତ୍ୟୁ ବେଳର ଶେଷବାଣୀ, ଯାହା ସୁପଣ୍ଡିତ ଉଇଲ୍ ଡୁରାଣ୍ଟ 'ଦି ଷ୍ଟୋରି ଅଫ୍ ଫିଲୋସଫି"ଗ୍ରନ୍ଥରେ ଲିପିବଦ୍ଧ କରିଅଛନ୍ତି- ତାହା ଏଠାରେ ଉଲ୍ଲେଖ କରୁଅଛି। ସକ୍ରେଟିସ୍ ହେମ୍‌ଲକ୍ ବିଷପାନ କରି, ମୁମୂର୍ଷୁ ଅବସ୍ଥାରେ ପଡ଼ିଛନ୍ତି। ପ୍ରିୟ ଶିଷ୍ୟ କ୍ରୀଟୋ ଶଯ୍ୟାପାଖକୁ ଆସି ପଚାରିଲେ; "ଆମପାଇଁ ଆପଣଙ୍କର କିଛି ବାଣୀ ଅଛି ?" ସକ୍ରେଟିସ୍ କ୍ଷୀଣ କଣ୍ଠରେ ଉତ୍ତରଦେଲେ: "ମୋ ପଡ଼ୋଶୀ ପାଖରୁ ଗୋଟାଏ କୁକୁଡ଼ା ଥରେ ଉଧାରରେ ଆଣିଥିଲି ତାକୁ ଫେରାଇ ଦେବ।" ଇଏ ହେଲା ସତ୍ୟସନ୍ଧ ଜଣେ ମହାନ୍ ଦାର୍ଶନିକଙ୍କର ଶେଷବାଣୀ। ଜଣେ ମହାନ୍, ଦାର୍ଶନିକ ଓ ଚିନ୍ତକଙ୍କର କେବଳ ଏଇପରି ଶେଷବାଣୀ ହୋଇପାରେ। କିନ୍ତୁ ଏହା କିପରି ଅ-ନାଟକୀୟ !

୨୫/୦୪/୮୫

# ବୁଦ୍ଧ ପୂର୍ଣ୍ଣିମା

ପରିନିର୍ବାଣ ପୂର୍ବରୁ ସ୍ୱୟଂ ଗୌତମବୁଦ୍ଧ ଶୁଭଦ ନାମରେ, ବୈଶାଳୀର ଜଣେ ଯୁବକଙ୍କୁ ଭିକ୍ଷୁ ଭାବରେ ସଂଘରେ ଗ୍ରହଣ କରିଥିଲେ। ବୌଦ୍ଧ ଗ୍ରନ୍ଥମାନଙ୍କରେ ଉଲ୍ଲେଖ ଅଛି, ବୁଦ୍ଧଙ୍କ ପରିନିର୍ବାଣ ପରେ, ସଂଘର ଅନ୍ତେବାସୀମାନେ ଶୋକରେ ମୁହ୍ୟମାନ ହୋଇପଡ଼ିଥିବା ବେଳେ, ଏହି ଶୁଭଦ ଆନନ୍ଦରେ ନାଚିନାଚି କହୁଥିଲେ, "ଗୌତମ ବୁଦ୍ଧ ଗଲେ ଭଲ ହେଲା। ଆମେ ଏଣିକି ଶାନ୍ତିରେ ନିଃଶ୍ୱାସ ମାରିବୁ। ସିଏ ଆଉ ଥିବେ ନା କହୁଥିବେ- "ଏଇଟା ଭଲ, ସେଇଟା ଖରାପ...ଏଇଟା କର, ସେଇଟା କର ନାହିଁ ଇତ୍ୟାଦି। ସିଏ ଆଉ ଥିବେ ନା ଆମକୁ ଶତ ନିଗ୍ରହ ମଧ୍ୟରେ ବାନ୍ଧି ପକାଇବେ?" ବ୍ୟାପାରଟି ଦୁଃଖାବହ ନିଶ୍ଚୟ। କିନ୍ତୁ ମର୍ମାନ୍ତକ ଭାବରେ ସତ୍ୟ। ନିଗ୍ରହ ଓ କୃଚ୍ଛ୍ର ସାଧନାର ଏ ପ୍ରକାର ପରିଣତି ଓ ପ୍ରତିକ୍ରିୟା ଅତି ସ୍ୱାଭାବିକ। ସେଥିପାଇଁ ଗୀତାରେ କୁହାଯାଇଛି, ପ୍ରକୃତି ତା' ନିଜ ବାଟରେ ମଣିଷକୁ ଟାଣିନେବ। ନିଗ୍ରହ ସେଠାରେ କ'ଣ କରିପାରେ ? ଅର୍ଥାତ୍ ପ୍ରବୃତ୍ତି ତା' ମାର୍ଗରେ ମନୁଷ୍ୟର ଆଚରଣ ନିୟନ୍ତ୍ରିତ କରିଥାଏ; ନିବୃତ୍ତି ସେଠାରେ ଅର୍ଥହୀନ। ବସ୍ତୁତଃ, ଗୌତମବୁଦ୍ଧଙ୍କ ପ୍ରଚାରିତ ଶୀଳସାଧନାଭିତ୍ତିକ ବୌଦ୍ଧଧର୍ମ ନିଗ୍ରହ ବା ନିବୃତ୍ତି ଉପରେ ପର୍ଯ୍ୟବସିତ ଥିଲା। କିନ୍ତୁ, ନିବୃତ୍ତି ମନୁଷ୍ୟର ସ୍ୱଭାବ-ବିରୋଧୀ ହୋଇଥିବାରୁ, ଏହା ବୁଦ୍ଧଙ୍କ ଜୀବଦ୍ଦଶାରେ ସୁଦ୍ଧା, ଯେଉଁ ପ୍ରତିକ୍ରିୟା ସୃଷ୍ଟି କରିଥିଲା, ଭିକ୍ଷୁ ଶୁଭଦ ଥିଲେ ତାହାର ଏକ ଉଦାହରଣ।

ଏହି ପ୍ରବୃତ୍ତି ଓ ନିବୃତ୍ତି ମଧ୍ୟରେ, ସଂଘର୍ଷ ମଧ୍ୟରେ, ଜନ୍ମଲାଭ କରିଥିଲା ବୌଦ୍ଧସଂଘରେ ବିଭାଜନ। ବୁଦ୍ଧଙ୍କ ପରେ ଭିକ୍ଷୁମାନେ ଯେତେବେଳେ ବୁଦ୍ଧଙ୍କର ବିଭିନ୍ନ ଅନୁଶାସନର ଅର୍ଥାନ୍ତର କରି, ପ୍ରବୃତ୍ତିମାର୍ଗରେ ଧୀରେ ଧୀରେ ପାଦ ବଢ଼ାଇଲେ ଓ ବୌଦ୍ଧସଂଘରେ ଗୌତମବୁଦ୍ଧଙ୍କର ପ୍ରଚାରିତ ବାଣୀ ଘେନି ବିଭ୍ରାନ୍ତି ସୃଷ୍ଟି ହେଲା, ସେତେବେଳେ ବୁଦ୍ଧଙ୍କ ଉପଦେଶ ଓ ଅନୁଶାସନକୁ ଲିପିବଦ୍ଧ କରିବାର ପ୍ରୟୋଜନ ପଡ଼ିଲା। ଆହୂତ ହେଲା ପ୍ରଥମ ବୌଦ୍ଧ ଧର୍ମସଭା। ବୁଦ୍ଧଙ୍କ ସମକାଳୀନ ଅଶୀତିପର ବୃଦ୍ଧ

ଭିକ୍ଷୁ ଉପାଳୀ ଆମନ୍ତ୍ରିତ ହୋଇ ଆସିଲେ, ଏହି ଧର୍ମସଭାରେ ପୌରୋହିତ୍ୟ କରିବାପାଇଁ। ତାଙ୍କର କେତେକ ନିଷ୍ପତ୍ତିରେ ଉତ୍ତେଜିତ ହୋଇ ବୈଶାଳୀର ପ୍ରବୃତ୍ତିମାର୍ଗୀ ଭିକ୍ଷୁମାନେ ଏପରି ଲୋଷ୍ଟ୍ରାଘାତ କଲେ ଯେ ଉପାଳୀଙ୍କର ଅବସ୍ଥା ହେଲା "ଯଃ ପଳାୟତି ସ ଜୀବତି ।" ଏହାପରେ ଆସିଲା ବୌଦ୍ଧଧର୍ମରେ ବିଭାଜନ- ମହାଯାନ ଓ ହୀନଯାନ। ମହାଯାନୀମାନେ ପ୍ରବୃତ୍ତି-ମାର୍ଗୀ, ହୀନଯାନୀମାନେ ନିବୃତ୍ତି-ମାର୍ଗୀ।

ଏ ବିଭାଜନର ଇତିହାସ ଲକ୍ଷ୍ୟକଲେ ଦେଖାଯିବ, ଏହାର ପୃଷ୍ଠଭୂମିରେ କୌଣସି ବଡ଼ ତତ୍ତ୍ୱ ନଥିଲା। ଯେଉଁ ଦଶଗୋଟି ବିଷୟ (ବୌଦ୍ଧ ଶାସ୍ତ୍ରୀମାନଙ୍କରେ 'ଦଶବତ୍ଥୁଃ ବା ଦଶବସ୍ତୁ ନାମରେ କଥିତ) ଘେନି ବୌଦ୍ଧଧର୍ମରେ ବିଭାଜନ ଦେଖାଦେଲା, ସେସବୁ ଥିଲା ଅତି ତୁଚ୍ଛ, ଅତି ସାଧାରଣ। ଯଥା- ଦିନରେ ଓଳିଏ ଖାଇବ ନା ଦି'ଓଳି ଖାଇବ, କୌଣସି ଶ୍ରମଣ ଘରକୁ ଭୋଜନ କରିବାପାଇଁ ଆମନ୍ତ୍ରିତ ହେଲେ, ସାଙ୍ଗରେ ଟିକିଏ ଲୁଣ ନେଇ ଯିବ କି ନାହିଁ ଇତ୍ୟାଦି (ଭୋଜନରେ ଲୁଣ ବ୍ୟବହାର କରିବା ବୌଦ୍ଧସଂଘରେ ନିଷିଦ୍ଧ ଥିଲା। ଏହିପରି ନାନା ତୁଚ୍ଛ ବିଷୟରେ ମହାନ୍ ବୌଦ୍ଧ ସମ୍ପ୍ରଦାୟ ବିଭାଜିତ ହୋଇଗଲା। ପ୍ରବୃତ୍ତିମାର୍ଗୀ ମହାଯାନୀମାନେ କ୍ରମେ ତନ୍ତ୍ରଯାନ, ବଜ୍ରଯାନ ଦେଇ ଯେପରି ସହଜଯାନରେ ପହଞ୍ଚିଲେ ଓ ବୌଦ୍ଧଧର୍ମ ଘୋର ଅଧଃପତିତ ହୋଇ ଦଶମ-ଏକାଦଶ ଶତାବ୍ଦୀ ବେଳକୁ ଭାରତ ଭୂମିରୁ ବିତାଡ଼ିତ ହେଲା, ବୌଦ୍ଧ ଇତିହାସର ଛାତ୍ରମାନେ ଉଣାଅଧିକେ ତାହା ଜାଣିଥିବେ।

ପୃଥିବୀରେ ବୌଦ୍ଧଧର୍ମ ହିଁ ଏକମାତ୍ର ଧର୍ମ, ଯାହା ଏକ ସମୟରେ ନିଜ ମାତୃଭୂମିରୁ ନିର୍ବାସିତ ହୋଇ, ଅନ୍ୟ ଦେଶମାନଙ୍କରେ ଆତ୍ମରକ୍ଷା କରିଥିଲା। ସମନ୍ୱୟବାଦୀ ହିନ୍ଦୁମାନେ, ବୁଦ୍ଧଙ୍କୁ ଅବଶ୍ୟ, ବିଷ୍ଣୁଙ୍କର ନବମ ଅବତାର କରି ରଖିଲେ; ମାତ୍ର ବୌଦ୍ଧଧର୍ମକୁ ଭାରତରୁ ନିର୍ବାସିତ କଲେ। ଆଜି, ବହୁ ଶତାବ୍ଦୀର ବ୍ୟବଧାନ ପରେ, ବୁଦ୍ଧଙ୍କର ସେହି ଶୀଳସାଧନାଭିତ୍ତିକ ଆଦ୍ୟ-ବୌଦ୍ଧଧର୍ମକୁ ଆମେ ପୁଣି ଭାରତକୁ ଆମନ୍ତ୍ରଣ କରୁଛୁ। ଭାରତୀୟ ଜନତାର ସାମାଜିକ ଓ ଆଧ୍ୟାତ୍ମିକ ମୁକ୍ତି ଏହି ବୌଦ୍ଧଧର୍ମରେ ହିଁ ରହିଛି ବୋଲି ବହୁଦିନୁ ମୋର ଗୋଟିଏ ବିଶ୍ୱାସ। ଆଜି ବୁଦ୍ଧପୂର୍ଣ୍ଣିମା ଆମକୁ ଗୌତମ ବୁଦ୍ଧଙ୍କର ସେହି ପୁଣ୍ୟସ୍ମୃତି ସ୍ମରଣ କରାଇଦେଉଛି।

ପ୍ରସଙ୍ଗତଃ ମନେପଡୁଛି, ମହାତ୍ମା ଗାନ୍ଧୀଙ୍କ କଥା। ମହାତ୍ମା ମଧ୍ୟ ଗୌତମଙ୍କ ପରି ହତଭାଗ୍ୟ ପୁରୁଷ। ଗୌତମଙ୍କ ଶୀଳସାଧନା ସହଜଯାନୀ ଭ୍ରଷ୍ଟାଚାରରେ ପର୍ଯ୍ୟବସିତ ହୋଇଥିବା ପରି, ଗାନ୍ଧିଜୀଙ୍କ ତ୍ୟାଗ, ତିତିକ୍ଷା ଓ ଅପରିଗ୍ରହଭିତ୍ତିକ ଦେଶସେବା ଆଜି ପରିଣତ ହୋଇଛି 'ମହାପ୍ରସାଦ ସେବା'ରେ। ବୌଦ୍ଧଧର୍ମ ପରି ଗାନ୍ଧୀବାଦ ଆଜି ଭାରତରୁ ନିର୍ବାସିତ। କିନ୍ତୁ ମୁଁ ଜାଣେ, ଏହା ବୁଦ୍ଧପୂର୍ଣ୍ଣିମା ପରି ଭାରତକୁ ଦିନେ ପୁଣି ଫେରିବ,

କେଉଁ ଗାନ୍ଧୀ-ପୂର୍ଣ୍ଣିମାର ନୂତନ ସ୍ୱୀକୃତି ଘେନି ! ଭାରତ-ଇତିହାସରେ ସେଦିନ ହିଁ ଆସିବ ପ୍ରକୃତରେ ମୁକ୍ତି ଓ ସ୍ୱରାଜର ମୁହୂର୍ତ୍ତ।

ଆଜି କିନ୍ତୁ ବୁଦ୍ଧପୂର୍ଣ୍ଣିମା ଆକାଶରେ ଜଳଭାରହୀନ ଖଣ୍ଡଖଣ୍ଡ ମେଘ ଭାସିଚାଲିଛନ୍ତି, ପୂର୍ଣ୍ଣଚନ୍ଦ୍ରର ପୃଷ୍ଠଭୂମିରେ ଯେପରି କେଉଁ ଉତ୍ସବ ପଟୁଆରରେ। ପବନର କନ୍ଦରୋଳ ମଧ୍ୟରେ ମୁଁ ଶୁଣିପାରୁଛି ସେମାନଙ୍କର ଉତ୍ସବମୁଖର ହର୍ଷରୋଳ। ଆକାଶ କିନ୍ତୁ ନିର୍ବେଦ, ଧ୍ୟାନଗମ୍ଭୀର। ଖଣ୍ଡ ଖଣ୍ଡ ଭସାମେଘ ଓ ଜ୍ୟୋତ୍ସ୍ନାର ଚାପଲ୍ୟ ଆକାଶର ଧ୍ୟାନଗମ୍ଭୀର ପ୍ରଶାନ୍ତି ଉପରେ ତିଳେ ହେଲେ ରେଖାପାତ କରୁନାହିଁ। ଆକାଶର ଚେହେରାରେ ମୁଁ ଦେଖିପାରୁଛି, ବୁଦ୍ଧଙ୍କର ଧ୍ୟାନଗମ୍ଭୀର ମୁଖମଣ୍ଡଳ।

କିନ୍ତୁ ଏହି ପୂର୍ଣ୍ଣିମାର ଆକାଶକୁ ଚାହିଁ ଆଜି ମନେହେଉଛି, ପ୍ରବୃତ୍ତିରେ ଉତ୍ତେଜନା ଥାଇପାରେ, ମାତ୍ର ନିବୃତ୍ତିରେ ଅଛି ପ୍ରଶାନ୍ତି।

*୦୯/୦୫/୮୫*

# ଅର୍ଦ୍ଧନାରୀଶ୍ୱର

କୁଳବୃଦ୍ଧ ପିତାମହ ଭୀଷ୍ମ ଶରଶଯ୍ୟାରେ ଶାୟିତ ଉତ୍ତରାୟଣର ଲଗ୍ନକୁ ପ୍ରତୀକ୍ଷା କରିଛନ୍ତି, ଇଚ୍ଛାମୃତ୍ୟୁପାଇଁ। ମୃତ୍ୟୁପାଇଁ ଏଇ ଦୀର୍ଘ, ଶରବିଦ୍ଧ ପ୍ରତୀକ୍ଷାରେ ରହିଛି, ଶତ ବୃଶ୍ଚିକର ଦଂଶନ ପରି ଭୀଷ୍ମଙ୍କର ବିବେକ-ଦଂଶନ। କୁରୁବଂଶର ସେ ପ୍ରାଜ୍ଞ ପିତାମହ। ତଥାପି ଦୁର୍ଯ୍ୟୋଧନଙ୍କୁ ଆତ୍ମନାଶୀ ଭ୍ରାତୃଯୁଦ୍ଧରୁ ନିବର୍ତ୍ତାଇ ପାରିଲେ ନାହିଁ କାହିଁକି ? କାହିଁକି ବା ସେଦିନ କୁରୁସଭା ତଳେ, ଦୁଃଶାସନ କୁଳବଧୂ ଦ୍ରୌପଦୀଙ୍କୁ ବିବସନା କଲାବେଳେ ସେ ବାଧା ଦେଲେ ନାହିଁ ? କାହିଁକି ନିରବ ରହିଲେ ? ସେ କୁଳବୃଦ୍ଧ ହୋଇ, ଆଖି ଆଗରେ କିପରି ଦେଖିପାରିଲେ କୁଳବଧୂର ଲାଞ୍ଛନା ? ଏହାର ପ୍ରତିବାଦ କରିବା କ'ଣ ତାଙ୍କର କର୍ତ୍ତବ୍ୟ ନଥିଲା ? ବସ୍ତୁତଃ, କୁଳବୃଦ୍ଧ ଭୀଷ୍ମଙ୍କଠାରୁ ଆଜି ପର୍ଯ୍ୟନ୍ତ- ଇଣ୍ଟେଲେକ୍‌ଚୁଆଲ୍ ବା ଚିନ୍ତାନାୟକମାନେ, ସମାଜରେ, ମୂଲ୍ୟବୋଧର ସଙ୍କଟ କାଳରେ, ଯେପରି ନିଜର ସଂକୀର୍ଣ୍ଣ ନିରାପତ୍ତାପାଇଁ, ନିରବ ରହି, ଅନ୍ୟାୟ ଓ ଅବିଚାରକୁ ପ୍ରଶ୍ରୟ ଦେଇଥାଆନ୍ତି, କୁଳବୃଦ୍ଧ ଭୀଷ୍ମ ତାହାର ଏକ ସର୍ବକାଳୀନ ପ୍ରତୀକ।

ଶରଶଯ୍ୟାରେ ଭୀଷ୍ମ କିନ୍ତୁ ସମାହିତ। ତତ୍କାଳୀନ ଭାରତର ରାଜା ଓ ରାଜର୍ଷିମାନଙ୍କଠାରୁ ଆରମ୍ଭ କରି, ମହର୍ଷି ଓ ଦେବର୍ଷିମାନଙ୍କ ପର୍ଯ୍ୟନ୍ତ- ସମସ୍ତେ ଶରଶଯ୍ୟା ପାଖକୁ ଆସୁଛନ୍ତି- ଭୀଷ୍ମଙ୍କଠାରୁ ବିଭିନ୍ନ ବିଷୟରେ ସେମାନଙ୍କର ସନ୍ଦେହ ଓ ଜିଜ୍ଞାସାର ନିରସନପାଇଁ। ଦିନେ ଆସିଲେ ଯୁଧିଷ୍ଠିର। ସେ ଭୀଷ୍ମଙ୍କୁ ଏକ ଅସମ୍ଭବ ପ୍ରଶ୍ନ ପଚାରିଲେ, "ପିତାମହ ! ନାରୀ ଓ ପୁରୁଷ ମଧ୍ୟରେ, ସହବାସ କାଳରେ, କାହାର ସୁଖ ଅଧିକ ?" (ସଂସ୍କୃତ ଅନୁଶାସନ ପର୍ବର ଦ୍ୱାଦଶ ଅଧ୍ୟାୟ ଦ୍ରଷ୍ଟବ୍ୟ) ଭୀଷ୍ମଙ୍କର କ୍ଳାନ୍ତ ଆଖିପତା ବିସ୍ମୟରେ ବିସ୍ଫାରିତ ହୋଇଉଠିଲା। ସେ ନିଜେ ଆଜନ୍ମ ବ୍ରହ୍ମଚାରୀ। ନାରୀ ପୁରୁଷର ସଂପର୍କ ରହସ୍ୟ ସେ ଜାଣନ୍ତି ବା କିପରି ? ପୁଣି ପ୍ରଶ୍ନକର୍ତ୍ତା ଯୁଧିଷ୍ଠିର ନାରୀ-ପୁରୁଷ ସମ୍ପର୍କିତ ବ୍ୟାପାରରେ ବିଶେଷ ଆଗ୍ରହୀ ନଥିବା, ସ୍ୱୟଂ ଦ୍ରୌପଦୀ ସୁଦ୍ଧା ସାକ୍ଷ୍ୟ ଦେବେ। ତଥାପି ତାଙ୍କରି ମୁହଁରେ ପୁଣି ଆଜନ୍ମ ବ୍ରହ୍ମଚାରୀ ଭୀଷ୍ମଙ୍କୁ ଏଇପରି ପ୍ରଶ୍ନ !

ପ୍ରଶ୍ନର ଉତ୍ତରରେ, ଭୀଷ୍ମଦେବ ରାଜର୍ଷି ଭଙ୍ଗାସ୍ୱନଙ୍କ କଥା ଯୁଧିଷ୍ଠିରଙ୍କୁ କହିଲେ।, ରାଜର୍ଷି ଭଙ୍ଗାସ୍ୱନ ମହାଯୋଦ୍ଧା ଥିଲେ। ଇନ୍ଦ୍ରଙ୍କୁ ଥରେ ସେ ଯୁଦ୍ଧରେ ପରାସ୍ତ କରିଥିବାରୁ, ଇନ୍ଦ୍ର ମାୟାଜାଲରେ ଭଙ୍ଗାସ୍ୱନଙ୍କୁ ପକାଇ, ତାଙ୍କୁ ନାରୀ କରିଦେଲେ। ନାରୀ ହେବା ପରେ, ଭଙ୍ଗାସ୍ୱନ ଜଣେ ଋଷିଙ୍କୁ ବିବାହ କଲେ ଓ ତାଙ୍କର ଔରସରେ ନାରୀରୂପ ଭଙ୍ଗାସ୍ୱନଙ୍କ ଗର୍ଭରୁ ଶତପୁତ୍ର ଜନ୍ମଲାଭ କଲେ। ବହୁକାଳ ପରେ, ଇନ୍ଦ୍ର ଭଙ୍ଗାସ୍ୱନଙ୍କ ଦୁରବସ୍ଥା କଥା ଜାଣି ଦିନେ ତାଙ୍କ କୁଟୀରରେ ଉପସ୍ଥିତ ହୋଇ, ନାରୀରୂପୀ ଭଙ୍ଗାସ୍ୱନଙ୍କୁ ପୁଣି ପୁରୁଷ କରିଦେବାପାଇଁ ଇଚ୍ଛା ପ୍ରକାଶ କଲେ। ମାତ୍ର ଭଙ୍ଗାସ୍ୱନ କହିଲେ, ସେ ପୁରୁଷ ହେବାକୁ ଆଉ ଚାହାନ୍ତି ନାହିଁ। ନାରୀ ଭାବରେ ପୁରୁଷଠାରୁ ସେ ଅଧିକ ସ୍ପର୍ଶସୁଖ ପାଇଛନ୍ତି। ସେ ଜାୟା ଓ ଜନନୀ ହୋଇ ବରଂ ରହିବେ। ସେଇଥିରେ ତାଙ୍କ ସୁଖ। ଏ ବିଷୟରେ ବିଶ୍ଳେଷଣ କରିବା, ଏଠାରେ ଉଦ୍ଦେଶ୍ୟ ନୁହେଁ। କିନ୍ତୁ ପ୍ରାଚୀନ ଭାରତୀୟ ସମାଜରେ, ପୁରୁଷ ଅପେକ୍ଷା ନାରୀର ସ୍ଥାନ ଯେପରି ଉଚ୍ଚତର ଥିଲା, ଏହି ଉପାଖ୍ୟାନରେ ତାହା ସୂଚିତ ହୋଇଅଛି ଓ ନାରୀମାନେ ଯେପରି ଗୌଣ ମନୋବୃତ୍ତି-ପୀଡ଼ିତା ନଥିଲେ, ଏଥିରେ ତାହା ସୁସ୍ପଷ୍ଟ।

ଏବେ କିନ୍ତୁ ପ୍ରତ୍ୟେକ ନାରୀ ଚାହୁଁଛନ୍ତି ପୁରୁଷ ହେବାପାଇଁ। ବସ୍ତୁତଃ, ପାଶ୍ଚାତ୍ୟ ଦେଶଆଡୁ ଯେଉଁ ନାରୀମୁକ୍ତି ଆନ୍ଦୋଳନ ବା 'ଲିବମୁଭ୍‌ମେଣ୍ଟ' ଆରମ୍ଭ ହୋଇଛି, ତାହାର ମୂଳପ୍ରେରଣା ଏହିଠାରେ। ଗୋଟିଏ ସର୍ବେକ୍ଷଣରୁ ପ୍ରକାଶ, ଦକ୍ଷିଣ କୋରିଆର ସବୁ ବୟସର ନାରୀ ଚାହାନ୍ତି, ପୁରୁଷ ଭାବରେ ଜନ୍ମ ହେବାପାଇଁ। ଭାରତରେ ସେହିପରି ଏକ ସର୍ବେକ୍ଷଣ କରାଗଲେ ଦେଖାଯିବ, ଭାରତୀୟ ନାରୀମାନେ ସେମାନଙ୍କ ଦକ୍ଷିଣକୋରିଆର ଭଗିନୀମାନଙ୍କ ଇଚ୍ଛାଠାରୁ ବିଶେଷ ଦୂରବର୍ତ୍ତୀ ନୁହନ୍ତି। ଆମର ସମାଜ ଏହିପରି ଉଗ୍ରଭାବରେ ପୁରୁଷ ପ୍ରଭାବିତ ଯେ, ନାରୀମାନେ ଏ ସମାଜରେ ଗୌଣ ମନୋବୃତ୍ତିରେ କଛିଟା ପୀଡ଼ିତ ହେବା ସ୍ୱାଭାବିକ। ତଥାପି, ଭାରତ ନାରୀମାନଙ୍କୁ ମର୍ଯ୍ୟାଦା ଦେବା ବିଷୟରେ ପାଶ୍ଚାତ୍ୟ ସମାଜ ଓ ଦେଶ ଅପେକ୍ଷା ଅଧିକ ପ୍ରଗତିଶୀଳ। ଭାରତରେ ଅବଲୀଳାକ୍ରମେ ନାରୀମାନଙ୍କୁ ଭୋଟ ଅଧିକାର ମିଳିଗଲା। କିନ୍ତୁ ବିଲାତ ଓ ଅନ୍ୟ ଦେଶରେ ନାରୀମାନେ କିପରି ଭୋଟ ଅଧିକାର ପାଇବେ, ସେଥିପାଇଁ ସଫ୍ରାଜେଟ୍‌ମାନଙ୍କୁ ବହୁ ଆନ୍ଦୋଳନ ଚଳାଇବାକୁ ପଡ଼ିଛି। ସାର ଉଇନ୍‌ଷ୍ଟନ୍ ଚର୍ଚ୍ଚିଲ୍‌ଙ୍କ ପରି ବିଶିଷ୍ଟ ଜନନେତା ଓ ଚିନ୍ତାନାୟକମାନେ ନାରୀମାନଙ୍କୁ ଭୋଟ ଅଧିକାର ଦେବାର ତୀବ୍ର ବିରୋଧୀ ଥିଲେ। ବର୍ଣ୍ଣାଡ୍ ଶ'ଙ୍କ ପରି ଜଣେ ପ୍ରଗତିଶୀଳ ଚିନ୍ତାନାୟକ ନାରୀମାନଙ୍କର ଭୋଟ ଅଧିକାରର ମଧ୍ୟ ପ୍ରଚ୍ଛନ୍ନ ବିରୋଧୀ ଥିଲାପରି ମନେ ହୁଅନ୍ତି। ତାଙ୍କ ନାଟକର ଗୋଟାଏ ଚରିତ୍ର ଜେନେରାଲ୍ ମିଚିନର ଭାବୁଥିଲେ, ସ୍ତ୍ରୀମାନଙ୍କୁ ଯଦି ଭୋଟ୍ ଅଧିକାର ଦିଆଯିବ, ତା'ହେଲେ ଏ ଅଧିକାର ମାଙ୍କଡ଼ ଓ ଛେଳିମାନଙ୍କୁ ନ

ଦିଆଯିବ ବା କାହିଁକି ? ପୁଣି ସ୍ୱିଜରଲାଣ୍ଡ ପରି ଏକ ଆଦର୍ଶ ଗଣତାନ୍ତ୍ରିକ ଦେଶରେ ନାରୀମାନେ ଭୋଟ ଅଧିକାର ପାଇଲେ, ମାତ୍ର ପନ୍ଦର ବର୍ଷ ତଳେ। କିନ୍ତୁ ଭାରତୀୟ ସମାଜରେ ଏ ବିକୃତି ପ୍ରକାଶ ପାଇନଥିବା, ସୌଭାଗ୍ୟର ବିଷୟ।

ତଥାପି ନାରୀମାନେ ପୁରୁଷ ସହିତ କେବଳ ସମାନ ନୁହନ୍ତି, ତାର ରୁକ୍ଷତା ଓ କର୍କଶତାକୁ ବଳିଯିବାପାଇଁ ସୁଦ୍ଧା ଯେପରି ପ୍ରତିଯୋଗିତା ଆରମ୍ଭ କରିଛନ୍ତି, ଦିଲ୍ଲୀ ଓ ବମ୍ବେ ପରି ମହାନଗରୀମାନଙ୍କରେ ତାହାର ପ୍ରମାଣ ମିଳିବ। ଏହି ମହାନଗରୀମାନଙ୍କରେ ନାରୀମାନେ ପୁରୁଷ ପୋଷାକ ପିନ୍ଧି, ପୁରୁଷ ପରି କର୍କଶ ବ୍ୟବହାର ପ୍ରଦର୍ଶନ କରିବାପାଇଁ କୁଣ୍ଠିତ ହେଉ ନାହାନ୍ତି। ଏହା ମଧ୍ୟ କ୍ରମେ ହେଲାଣି ଏକ ଫ୍ୟାସନ। ନାରୀକୁ ଯେତେବେଳେ ପୁରୁଷ ପରି ସଂଗ୍ରାମ ଓ ପ୍ରତିଯୋଗିତାର ସବୁ କ୍ଷେତ୍ରରେ ଅବତୀର୍ଣ୍ଣ ହେବାକୁ ପଡୁଛି, ସେଥିରେ ନାରୀ ଯଦି ମୃଦୁତା, କୋମଳତା ଓ ବ୍ରୀଡ଼ାକୁ ଜାବୁଡ଼ିଧରେ, ତା'ହେଲେ ସେ କେବଳ ଅନ୍ତଃପୁରବାସିନୀ ହୋଇ ପଡ଼ିରହିବା ବ୍ୟତୀତ, ତାର ଅନ୍ୟ ଭବିତବ୍ୟ ରହିବ ନାହିଁ। ଇଏ ଯେପରି ସତ୍ୟ, ତତୋଽଧିକ ସତ୍ୟ ହେଉଛି, ନାରୀ ମଧ୍ୟ ଜନନୀ, ଜାୟା ଓ ଭଗିନୀ। ସେ ଯଦି ପୁରୁଷ ପରି କଳହ-ପରାୟଣ, ତାର୍କିକ ଓ ରୁକ୍ଷଭାଷୀ ହୁଏ, ତା'ହେଲେ ଏ ସମାଜ ଓ ଜୀବନ ଯେ ଛାୟା ବିହୀନ ଏକ ରୌଦ୍ରଦଗ୍ଧ ମରୁଭୂମିରେ ପରିଣତ ହେବ, ସେଥିରେ ସନ୍ଦେହ ନାହିଁ।

୧୬/୦୪/୮୪

# ଦେଖି ନବକାଳିକା

ଭଞ୍ଜ ଜୟନ୍ତୀର ମଉସୁମ ଆସିଗଲା । ସେପ୍ଟେମ୍ବର, ଏପରିକି ଅକ୍ଟୋବର ପର୍ଯ୍ୟନ୍ତ ଓଡ଼ିଶାର ବିଭିନ୍ନ ପ୍ରାନ୍ତରେ ଚାଲିବ । ଏହା ଇତିମଧ୍ୟରେ ଓଡ଼ିଶାର ଏକ ଜାତୀୟ ଓ ସାଂସ୍କୃତିକ ଉତ୍ସବରେ ପରିଣତ ହୋଇଛି, ସନ୍ଦେହ ନାହିଁ । କାବ୍ୟ, ସଂଗୀତ ଓ ନୃତ୍ୟ ସମାରୋହରେ ଓଡ଼ିଆଭାଷୀ ଜନତା କବିସମ୍ରାଟଙ୍କୁ ଜଣାଇବେ ଶ୍ରଦ୍ଧାଞ୍ଜଳି । ଓଡ଼ିଆ ସାହିତ୍ୟର ଅନ୍ୟ କୌଣସି କବି ବା ଲେଖକଙ୍କ ଭାଗ୍ୟରେ ଏପରି ସୌଭାଗ୍ୟ ମିଳିଛି କ୍ୱଚିତ୍ । ଓଡ଼ିଆ ଜାତିର ଆତ୍ମସତ୍ତା ଓ ଅବଚେତନକୁ ଉପେନ୍ଦ୍ର ଭଞ୍ଜ ଯେପରି ନିବିଡ଼ ଭାବରେ ସ୍ପର୍ଶ କରିପାରିଛନ୍ତି, ଅନ୍ୟ କୌଣସି କବି ବା ଲେଖକଙ୍କ ଭାଗ୍ୟରେ ତାହା ସେପରି ସମ୍ଭବ ହୋଇନାହିଁ । ଉପେନ୍ଦ୍ର ଭଞ୍ଜଙ୍କୁ ବୁଝନ୍ତୁ ବା ନବୁଝନ୍ତୁ, ତାଙ୍କ ନାମ ଉଚ୍ଚାରଣ କଲେ ଯେପରି ଓଡ଼ିଆ ଜାତିର ଆତ୍ମସତ୍ତା ପରିତୃପ୍ତ ହୁଏ ।

ମୋର ଚେତନାରେ କିନ୍ତୁ, ଉପେନ୍ଦ୍ର ଭଞ୍ଜଙ୍କ ସଂପୃକ୍ତି ଆଷାଢ଼ର ନବମେଘ ସହିତ । 'ଦେଖି ନବକାଳିକା, ବକାଳିକା ମାଳିକା'; ମୋତେ ଉପେନ୍ଦ୍ର ଭଞ୍ଜଙ୍କର କାବ୍ୟକୁ ହିଁ ଚେତାଇଦେଇ ଆସିଛି । ମାତ୍ର ଏଇ ନିଦାଘରେ କାହିଁକି ଯେ ଭଞ୍ଜ ଜୟନ୍ତୀ ପାଳନ କରାଯାଏ, ତାହାର ରହସ୍ୟ ଅନେକେ ଜାଣି ନଥିବେ । ଭଞ୍ଜଜୟନ୍ତୀର ପ୍ରବର୍ତ୍ତକ ବିଚ୍ଛନ୍ଦ ଚରଣ ପଟ୍ଟନାୟକ, ସମାରୋହପାଇଁ ଉପଯୁକ୍ତ ସ୍ଥାନ ଅଭାବରୁ ପ୍ରଥମେ କେତେବର୍ଷ ରେଭେନ୍‌ସା କଲିଜିଏଟ୍ ସ୍କୁଲ୍‌ର ପରିସରକୁ ବ୍ୟବହାର କରୁଥିଲେ । ଗ୍ରୀଷ୍ମାବକାଶରେ ରେଭେନ୍‌ସା କଲିଜିଏଟ୍ ସ୍କୁଲ୍ ଓ କଲେଜ ବନ୍ଦ ହେବା ପରେ, ଏହାର ପରିସରକୁ ବ୍ୟବହାର କରିବାପାଇଁ ଅବାଧ ଅନୁମତି ମିଳୁଥିଲା । ସେଥିପାଇଁ ସେଇଦିନୁ ମେ-ଜୁନ୍ ମାସରେ ଭଞ୍ଜଜୟନ୍ତୀ ପାଳିତ ହୋଇଆସୁଛି ।

ଉପେନ୍ଦ୍ର ଭଞ୍ଜ ଏକ ସାନ୍ଦ୍ର ବଟଛାୟା ପରି ସମଗ୍ର ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟକୁ ଆଚ୍ଛନ୍ନ କରିଥିଲେ ହେଁ, ଏହି ପ୍ରତିଭାଧର କବି ଠିକ୍ କେଉଁ ଖ୍ରୀଷ୍ଟାବ୍ଦରେ ଜନ୍ମଗ୍ରହଣ କରି, କେଉଁ ଖ୍ରୀଷ୍ଟାବ୍ଦରେ ପରଲୋକ ଗମନ କରିଥିଲେ, ତାହାର କୌଣସି ନିର୍ଭରଯୋଗ୍ୟ ତଥ୍ୟ

ମିଳେ ନାହିଁ। କେବଳ ଆଭ୍ୟନ୍ତରୀଣ ପ୍ରମାଣରୁ ତାଙ୍କୁ ଘୁମୁସରର ରାଜ୍ୟ ଧନଞ୍ଜୟ ଭଞ୍ଜଙ୍କର ପରବର୍ତ୍ତୀ ବୋଲି ଅନୁମାନ କରି, ତାଙ୍କ ଆବିର୍ଭାବକାଳକୁ ଅଷ୍ଟାଦଶ ଶତାବ୍ଦୀର ପ୍ରଥମ ପାଦରେ ସ୍ଥାପିତ କରାଯାଇଅଛି। ଉପେନ୍ଦ୍ର ଭଞ୍ଜ ପ୍ରକୃତରେ କେବଳ ଓଡ଼ିଆ ସାହିତ୍ୟ ନୁହେଁ, ସମଗ୍ର ଭାରତୀୟ ଭାଷା-ସାହିତ୍ୟରେ ଜଣେ ମହାକବି। ଚଳିତ ଶତାବ୍ଦୀ ଆରମ୍ଭରେ, କବିତା କ୍ଷେତ୍ରରେ ଯେଉଁ ବାଦ-ବିସମ୍ବାଦର ସୂତ୍ରପାତ ଓଡ଼ିଶାରେ ହୋଇଥିଲା, ସେଥିରେ ଉପେନ୍ଦ୍ର ଭଞ୍ଜ 'ଅଶ୍ଳୀଳ' ଓ 'ଦୁର୍ବୋଧ୍ୟ' ଇତ୍ୟାଦି ତାଲିକାରେ ଯାଇଥିଲେ ସତ୍ୟ; ମାତ୍ର ଅଶ୍ଳୀଳତା କଥା ଉଠିଲେ, ସମସାମୟିକ କେତେକ କବିତା- ଏପରିକି ଗଦ୍ୟ-ଲେଖକଙ୍କ ନିକଟରେ ମଧ୍ୟ ଉପେନ୍ଦ୍ର ନିଶ୍ଚୟ ହାର ମାନିଯିବେ। ଆଉ ଉପେନ୍ଦ୍ର ଭଞ୍ଜଙ୍କର ଦୁର୍ବୋଧ୍ୟତା ଯଦି ଥିଲା ଅଳଙ୍କାରର ଓ ଅଭିଧାନର; ତା'ହେଲେ ଆଜିର ଦୁର୍ବୋଧ୍ୟତା ରୂପକଚ୍ଛ, ଭାବ ଓ ବ୍ୟଞ୍ଜନାର। ତେଣୁ ଉପେନ୍ଦ୍ର ଭଞ୍ଜଙ୍କୁ ଅଶ୍ଳୀଳ ଓ ଦୁର୍ବୋଧ୍ୟ ତାଲିକାରେ ରଖି, ତାଙ୍କୁ ତିନି ପାଞ୍ଜିରୁ କାଟିଦେବା, ସୁସ୍ଥ ସମାଲୋଚନା ନୁହେଁ। ପ୍ରତ୍ୟେକ କବିଙ୍କୁ ତାଙ୍କର ଯୁଗ ଓ କାବ୍ୟାଦର୍ଶର ପୃଷ୍ଠଭୂମିରେ ବିଚାର କରାଯାଇଥାଏ। ସେହି ଦୃଷ୍ଟିରୁ, ଉପେନ୍ଦ୍ର ଭଞ୍ଜଙ୍କୁ ତାଙ୍କ ଯୁଗର ମହାକବି କହିବା ଆଦୌ ଅତିରଞ୍ଜନ ହେବ ନାହିଁ।

କିନ୍ତୁ ଭକ୍ତମାନେ ଅନେକ ସମୟରେ ଭାକ୍ତିକ ଅତିରଞ୍ଜନଦ୍ୱାରା ଗୁରୁମାନଙ୍କୁ ଉପହସିତ କରାଇଥାଆନ୍ତି। ଏବେ ରାମାୟଣ ଉପରେ ଜଣେ ଭକ୍ତଙ୍କ ଲେଖା ପଢ଼ିଲି; ରାମଭକ୍ତ ହନୁମାନ କୁଆଡ଼େ ଆଣବିକ ବିଜ୍ଞାନରେ ପାରଦର୍ଶୀ ଥିଲେ ଓ ମାଧ୍ୟାକର୍ଷଣ ଶକ୍ତିକୁ ଅକାମୀ କରିବାର ବୈଜ୍ଞାନିକ ପଦ୍ଧତି ସେ ଅକ୍ତିଆର କରି ପାରିଥିଲେ। ତା' ନହେଲେ, ଗନ୍ଧମାର୍ଦ୍ଦନ ପର୍ବତକୁ ସେ କାନ୍ଧରେ କାନ୍ଧେଇ ତଳକୁ ଆଣିପାରିଥାନ୍ତେ କିପରି ଇତ୍ୟାଦି। କିନ୍ତୁ ଏହା ପାଠ କରି, ହନୁମାନଙ୍କ ଆଣବିକ ବିଜ୍ଞାନ-କୁଶଳତାରେ କେହି ଯଦି ହସ ରୋକି ନପାରନ୍ତି, ତା' ହେଲେ ରାମଭକ୍ତ ହନୁମାନଙ୍କ ପ୍ରତି ତାହା ଅଶ୍ରଦ୍ଧା ବା ଅଭକ୍ତି ରୂପେ ବିବେଚିତ ହେବା ଉଚିତ ନୁହେଁ। ସେହିପରି ଉପେନ୍ଦ୍ର ଭଞ୍ଜଙ୍କ କାବ୍ୟରେ, ଓଡ଼ିଶାର କେନ୍ଦୁପତ୍ର ଜାତୀୟକରଣଠାରୁ ଆରମ୍ଭକରି, ଭାରତୀୟ ରାଜନୀତିର ଚିତ୍ର ପର୍ଯ୍ୟନ୍ତ- ସବୁ ବର୍ଣ୍ଣିତ ଥିବା, ଯେପରି ଭଞ୍ଜ ଜୟନ୍ତୀ ସଭାମାନଙ୍କରେ, କେହିକେହି ଭଞ୍ଜଭକ୍ତ ବ୍ୟାଖ୍ୟାନ କରନ୍ତି, ତାହା ଶୁଣି ପାରୁଥିଲେ, କବିଙ୍କର ଆତ୍ମା ଯେ ସେପୁରରେ ଆର୍ତ୍ତନାଦ କରୁଥିବ, ସନ୍ଦେହ ନାହିଁ। ଏବେ ଦେଖିଲି, ଏକ ପ୍ରବନ୍ଧ ଲେଖାଯାଇଛି... ଉପେନ୍ଦ୍ର ଭଞ୍ଜଙ୍କ କାବ୍ୟରେ ବ୍ରହ୍ମଚେତନା। ଶୃଙ୍ଗାରୀ-ଚେତନାର କବି ଉପେନ୍ଦ୍ର ଭଞ୍ଜ କେଉଁ ଦୁଃଖରେ ବ୍ରହ୍ମ ଚେତନାକୁ ଆସିଲେ, ସେଥିରେ ଅବଶ୍ୟ ତାହାର କୌଣସି ବିଶ୍ଳେଷଣ ମିଳିବ ନାହିଁ; କିନ୍ତୁ ରସୋତ୍ତୀର୍ଣ୍ଣ କବି ହେବାପାଇଁ ଯେ ବ୍ରହ୍ମ ସାଧିବାକୁ ପଡ଼ିବ, ଏପରି ହଳପ୍ କେବେ କୌଣସି କବି କରି ନାହାନ୍ତି। ପଞ୍ଚସଖା ଯୁଗରେ ଯେଉଁମାନେ କରିଥିଲେ ବୋଲି କୁହାଯାଏ, ସେମାନେ

କିନ୍ତୁ ପଦ୍ୟକାର; କେହି ରୂପଦର୍ଶୀ କବି ନୁହନ୍ତି । କବିର କାରବାର ଆବେଗ ଓ ନାନ୍ଦନିକତା ସହିତ । ବ୍ରହ୍ମଦର୍ଶୀ ନହୋଇ, ଏପରିକି ବ୍ରହ୍ମରେ ବିଶ୍ୱାସ ନକରି ସୁଦ୍ଧା ଜଣେ ମହାନ୍ କବି ହୋଇପାରେ । ମୋର ମନେ ହେଉଛି, ଓଡ଼ିଶାର କୋଣେ କୋଣେ ଭଞ୍ଜ ଜୟନ୍ତୀ ସଭାମାନଙ୍କର ଆୟୋଜନ ହେବା ପୂର୍ବରୁ ଓଡ଼ିଶାର କାବ୍ୟାମୋଦୀ ଜନସମାଜ, ଉପେନ୍ଦ୍ରଭଞ୍ଜଙ୍କୁ ବରଂ ବେଶୀ ଭଲ ଚିହ୍ନି ଥିଲେ । ଆଜି ତେଣୁ ପ୍ରୟୋଜନ, ଉପେନ୍ଦ୍ର ଭଞ୍ଜଙ୍କ କାବ୍ୟାତ୍ମାର ନୂତନ ଆବିଷ୍କାର ।

ଶତାବ୍ଦୀ ଆଜି ତୃଷିତ, ପ୍ରାଣକୁ ଓ ଚେତନାକୁ ଗଭୀର ଭାବରେ ସ୍ପର୍ଶ କରିପାରୁଥିବା ଜଣେ କବିପାଇଁ । ବ୍ରହ୍ମଦର୍ଶୀ ଗୁରୁଙ୍କ ସଂଖ୍ୟା ଆଜି ଅସଂଖ୍ୟ । ଉପେନ୍ଦ୍ର ଭଞ୍ଜ ସେମାନଙ୍କ ସଂଖ୍ୟା ବୃଦ୍ଧି ନକଲେ ମଧ୍ୟ ଚଳିବ ।

୨୩/୦୫/୮୫

# ଭୋଳାନାଥର ସଂସାର

ଭୋଳାନାଥ ଶିବଙ୍କ ପରି ମଣିଷ ଯେ କେବେ ବିବାହ ହୋଇ ଘରସଂସାର କରିପାରେ, ତାହା ହିଁ ପ୍ରକୃତରେ ଆଶ୍ଚର୍ଯ୍ୟ। ତଥାପି ହିନ୍ଦୁ ପୁରାଣ ଓ ପରମ୍ପରାରେ ଶିବ ବିବାହ କରିଛନ୍ତି, ଗିରିରାଜକନ୍ୟା ପାର୍ବତୀଙ୍କୁ। ଏହାକୁ ଆଶ୍ରୟ କରି ହିନ୍ଦୁ ସମାଜରେ ଗଢ଼ି ଉଠୁଛି ଏକ ବର୍ଣ୍ଣାଢ଼୍ୟ ପାର୍ବଣ- ଯାହା ଶୀତଳ ଷଷ୍ଠୀ ରୂପେ ଉତ୍ତର ଭାରତଠାରୁ ଆରମ୍ଭ କରି ଦକ୍ଷିଣ ଭାରତ ପର୍ଯ୍ୟନ୍ତ, ସର୍ବତ୍ର ପାଳିତ ହେଉଛି। ଭାରତୀୟ ସଂସ୍କୃତିର ଆଦିକାଳରେ, ପ୍ରାକ୍-ଆର୍ଯ୍ୟ ଶୈବଦ୍ରାବିଡ଼ ସମାଜର ସଂସ୍କୃତି ସହିତ ଆର୍ଯ୍ୟସଂସ୍କୃତିର ଯେଉଁ ମିଳନ ଘଟିଥିଲା, ଶିବ ବିବାହ ମଧ୍ୟରେ ମୁଁ ତାହାର ଏକ ଉତ୍ସବ-ରୂପ ଦେଖିବାକୁ ପାଉଛି। ଯାହା ଦିନେ ଥିଲା ଏକ ଐତିହାସିକ ତଥ୍ୟ, ତାହା ଆଜି ଏକ ଉତ୍ସବ ବା ପାର୍ବଣ ରୂପେ ହିନ୍ଦୁ ସମାଜରେ ପାଳିତ ହେଉଅଛି। ନେପଥ୍ୟରେ କିନ୍ତୁ ରହିଯାଇଛି ଏକ ଐତିହାସିକ ଅଭିଜ୍ଞତା।

ଶିବ ଆର୍ଯ୍ୟେତର ଥିବାରୁ ପୂର୍ବ ଭାରତୀୟ ଆଦି-ମଧ୍ୟଯୁଗୀୟ ଶୈବ ସାହିତ୍ୟରେ ଶିବ, ଗ୍ରାମୀଣ କୃଷକ-ଶିବ ରୂପେ ଚିତ୍ରିତ ହୋଇଅଛନ୍ତି। ବସ୍ତୁତଃ, ମୈଥିଳୀ, ଅସମୀୟା, ବଙ୍ଗଳା ଓ ଓଡ଼ିଆ ଶୈବ-ସାହିତ୍ୟରେ କୃଷକ-ଶିବଙ୍କର ଚିତ୍ର ଯେପରି ମନୋଜ୍ଞ, ସେହିପରି ମଧ୍ୟ ଅନନ୍ୟ। ଏ ଶିବଙ୍କଠାରେ ମହାଦେବତ୍ୱର କୌଣସି ଆଭିଜାତ୍ୟ ନାହିଁ। ଇଏ ପ୍ରାକୃତ ଜନସମାଜର ଜଣେ ପ୍ରତିନିଧି ରୂପେ ବର୍ଣ୍ଣିତ-ଅଳସୁଆ, ଖାଦ୍ୟଲୋଭୀ, ପତ୍ନୀର ତାଡ଼ନାରେ ସଦା ଜର୍ଜରିତ ଓ ନିଶାଖୋର ଇତ୍ୟାଦି। ଏ ଶିବ ପୁଣି ସଂସ୍କୃତ ସାହିତ୍ୟର ମହାଯୋଗୀ ନୁହନ୍ତି, ଇଏ ଘୋର ସଂସାରୀ। ଓଡ଼ିଆ ସାହିତ୍ୟରେ ବଛା ଦାସଙ୍କ ପ୍ରସିଦ୍ଧ କଳସା ଚଉତିଶାରେ ଏ ଶିବ ଦଦରା ବୁଢ଼ା, ମୁହଁରୁ ଲାଳ ବୋହୁଛି, ଦେହରେ ଛିଣ୍ଡା ଲୁଗା, ଆଖିକୁ ଦିଶୁନାହିଁ, କଥା କହିଲା ବେଳକୁ ଅନ୍ତ ଦୁହିଁ ହୋଇଯାଉଛି, ଟାକୁଆ ଗାଲ, ପୁଣି ପାଟିରେ ଦାନ୍ତ ନାହିଁ ଇତ୍ୟାଦି। ଗିରି ରାଜକନ୍ୟା ପାର୍ବତୀ ଏହାଙ୍କୁ ପତି ରୂପରେ ବରଣ କରି ନଥିଲେ ବରଂ ବିବାହ-ବେଦୀ ଉପରେ ଏହି ଦଦରା ବୁଢ଼ା ସହିତ

ପାର୍ବତୀଙ୍କର ହାତଗଣ୍ଠି ପକାଇ ଦିଆଯାଇଥିଲା। ବସ୍ତା ଦାସଙ୍କ 'କଳସା ଚଉତିଶା'ରେ ଗିରିରାଣୀ ମେନକା ବେଦୀ ଉପରେ ଶିବଙ୍କୁ ଦେଖି କାନ୍ଦୁଛନ୍ତି।

"ନାହିଁକି ରାଜ୍ୟର ମଧ୍ୟେ ରାଜାର କୁମର
ନିର୍ଲଜ ବୁଢ଼ାକୁ ସୁନ୍ଦରୀକି କଲ ବର ॥
ନୋହିଲେ ବୁଡ଼ିବୁ ମାଏ ଝିଏ ଦୁହେଁ ହୋଇ
ନୋହିଲେ ମରିବୁ ସ୍ୱହସ୍ତରେ ବିଷ ଖାଇ ॥"

ତଥାପି ଗିରିରାଣୀ ମେନକା ଓ ପାର୍ବତୀଙ୍କର ସଖୀମାନଙ୍କ ପ୍ରତିବାଦ ସତ୍ତ୍ୱେ, ଶିବପାର୍ବତୀଙ୍କ ବିବାହ ଯଥାବିଧି ସମାହିତ ହୋଇଯାଇଛି।

ଦକ୍ଷିଣ ଭାରତରେ ରାମେଶ୍ୱରମ୍ ପାର୍ବତୀ ମନ୍ଦିରରେ, ଏହି ଉପଲକ୍ଷ୍ୟଟି କିନ୍ତୁ ଗଭୀର ଟ୍ରାଜେଡ଼ିଧର୍ମୀ। ଏହି ମନ୍ଦିରରେ ପାର୍ବତୀ ହେଉଛନ୍ତି ବରପୂର୍ବା। ଶିବଙ୍କ ସହିତ ତାଙ୍କର ବିବାହ ହୋଇପାରିଲା ନାହିଁ। ଶିବ ତାଙ୍କ ଭୂତ-ଭୈରବ ବରଯାତିମାନଙ୍କ ଗହଣରେ ପାର୍ବତୀଙ୍କୁ ବିବାହ କରିବାପାଇଁ ଆସୁଥିଲେ। ବରଙ୍କଠାରୁ ଆରମ୍ଭ କରି ବରଜାତିଙ୍କ ପର୍ଯ୍ୟନ୍ତ, ସମସ୍ତେ ଭାଙ୍ଗ ଗଞ୍ଜେଇ ନିଶାରେ ଭୋଳ। କାହା ପାଦ କେଉଁଠି ପଡୁଛି, କିଏ କୁଆଡ଼େ ଚାଲିଛି, ତାହାର ଠିକଣା ନାହି ! ନିଶାରେ ମସଗୁଲ୍ ହୋଇ ବରଜାତି ଦଳ ବାଟରେ କୋଉଠି ଅଟକି ରହିଗଲେ ! ବିବାହ ଲଗ୍ନ ଯେ ଗଡ଼ିଯାଉଛି, ସେଥିପ୍ରତି କାହାର ଧ୍ୟାନ ନାହିଁ। ଏଣେ କିନ୍ତୁ ପାର୍ବତୀ ବରପୂର୍ବା ହୋଇ ଶିବଙ୍କ ପ୍ରତୀକ୍ଷାରେ ଅପେକ୍ଷାକରି ବସି ରହିଛନ୍ତି। ଶିବଙ୍କର ବା ପତ୍ତା କାହିଁ ? ଶିବ ଆସିଲେ ନାହିଁ। ମଙ୍ଗୁଳା କନ୍ୟା ପାର୍ବତୀ ଦେହରୁ ନବବଧୂର ଆଭରଣ କାଢ଼ି ବରପୂର୍ବା ହୋଇ ରହିଲେ। ତାଙ୍କର ଆଉ ବିବାହ ହେବ ନାହିଁ।

ରାମେଶ୍ୱରମ୍ ପାର୍ବତୀ ମନ୍ଦିରରେ ରାତି ଶେଷରେ, ସକାଳ ବେଳକୁ, ପୂଜକ ଓ ଅର୍ଚ୍ଚକମାନେ ସଂସ୍କୃତରେ ସ୍ତୋତ୍ର ବୋଲନ୍ତି, "ମା', ଏବେ ଅଙ୍ଗାଭରଣ ଖୋଲ। ଶିରରେ ଆଉ ଚନ୍ଦ୍ରମୌଳି ପିନ୍ଧି ଲାଭ ବା କ'ଣ ? ଶିବ ଆସିବେ ନାହିଁ। ଗଳାରୁ ଚାପସରୀ ଅଷ୍ଟରତ୍ନମାଳା ଖୋଲି ଫିଙ୍ଗିଦିଅ। ସେଥିରେ ଆଉ ଲାଭ ବା କ'ଣ ? ଶିବ ଆଉ ଆସିବେ ନାହିଁ, ଇତ୍ୟାଦି।" ଏହିପରି ଭାବରେ ମନ୍ତ୍ର ପରେ ମନ୍ତ୍ର ବୋଲି ଶେଷରେ ପୂଜକମାନେ ଦୀପ ନିଭାଇ ଦିଅନ୍ତି। ପ୍ରତି ରାତ୍ରିରେ ପାର୍ବତୀ ବଧୂବେଶ ହୁଅନ୍ତି। ପ୍ରତି ରାତି ପାହାନ୍ତାରେ ପୁଣି ବେଶ ଉଲାରନ୍ତି। ଏ କାହାଣୀ ଉତ୍ତର କିମ୍ବା ପୂର୍ବ ଭାରତୀୟ ଶୈବ-ପରମ୍ପରାରେ ନାହିଁ। ଏପରିକି ଦକ୍ଷିଣ ଭାରତରେ ପ୍ରସିଦ୍ଧ ଶୈବତୀର୍ଥ କାଞ୍ଚିବରମ୍‌ରେ ଶିବ ବିବାହ ଉତ୍ସବ ମହାସମାରୋହରେ ପାଳିତ ହେଲେ ହେଁ ପାର୍ବତୀ ବରପୂର୍ବା ହୋଇ ରହିବା ଓ ତାଙ୍କୁ ଅବଲମ୍ବନ କରି ପୂଜାବିଧି ମୁଁ ସେଠାରେ ଲକ୍ଷ୍ୟ କରିନାହିଁ।

ପୁରାଣ, ପରମ୍ପରା ଓ ସାହିତ୍ୟରେ ସେହି ଶିବ ବିବାହ ଏବେ ସର୍ବତ୍ର ପାଳିତ ହେଉଛି ଏକ ମନୋଜ୍ଞ ଉତ୍ସବ ଆକାରରେ। ମୁଁ ଅବଶ୍ୟ ସନାତନୀ ହିନ୍ଦୁ ନୁହେଁ। ବରଂ ସନାତନୀମାନେ ମୋତେ ଦି' ଆଖିରେ ସହ୍ୟକରି ପାରନ୍ତି ନାହିଁ। ତଥାପି ମୁଁ ଯଦି ହିନ୍ଦୁଧର୍ମ ପ୍ରତି ଆକୃଷ୍ଟ ତା'ହେଲେ ଶିବଙ୍କ ପରି ଏହି ଭାଙ୍ଗଖୋର ସର୍ବହରା ଦେବତା ଓ ହିନ୍ଦୁଧର୍ମର ବର୍ଣ୍ଣାଢ୍ୟ କାବ୍ୟୈଶ୍ୱର୍ଯ୍ୟମୟ ଉତ୍ସବ, ପୂଜା ପାର୍ବଣମାନଙ୍କପାଇଁ।

୩୦/୦୪/୮୪

# ଶ୍ରୀଜଗନ୍ନାଥଙ୍କ ଅଣସର

ଦକ୍ଷିଣପଶ୍ଚିମ ମୌସୁମୀ ବାୟୁ ଏପର୍ଯ୍ୟନ୍ତ ଓଡ଼ିଶାକୁ ଆସିନାହିଁ। ତଥାପି ଗ୍ରୀଷ୍ମକାଳୀନ ଅସରାଏ ବର୍ଷା ସ୍ନାନପୂର୍ଣ୍ଣମୀ ପୂର୍ବରୁ ଧରାସ୍ନାନ କରି ଦେଇଗଲାଣି। ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କର ସ୍ନାନପୂର୍ଣ୍ଣମୀ ବାସି ଯଥାବିଧି ଅଣସର ଆରମ୍ଭ ହୋଇଗଲାଣି। ପଣ୍ଡିତ ନୀଳକଣ୍ଠ ଦାସ 'ଅଣସର' ଶବ୍ଦଟିର ଅର୍ଥକୁ ସଂସ୍କୃତ 'ଅନବସର' ଶବ୍ଦର ଏକ କଥିତ ରୂପ ବୋଲି ଲେଖିଛନ୍ତି। ବସ୍ତୁତଃ, 'ପୂର୍ଣ୍ଣଚନ୍ଦ୍ର ଭାଷାକୋଷ'ରେ ମଧ୍ୟ ଏ ଶବ୍ଦଟି ସଂସ୍କୃତ 'ଅନବସର'ରୁ ଉତ୍ପନ୍ନ ବୋଲି ଉଲ୍ଲେଖ କରାଯାଇଅଛି। ଯୁକ୍ତି ହେଉଛି, ଏହି ସମୟରେ ପ୍ରଚଣ୍ଡ ଗୁଳୁଗୁଳି ହେଉଥିବାରୁ, ତାର ଉତ୍ତାପରେ ଛଟପଟ ହୋଇ ମହାପ୍ରଭୁ ଆଦୌ ଅବସରର ମୁକ୍ତି ପାଆନ୍ତି ନାହିଁ। ମାତ୍ର ଏ ଯୁକ୍ତିଟି ନିର୍ଭରଯୋଗ୍ୟ, ମନେହୁଏ ନାହିଁ। କାରଣ ପ୍ରକୃତପକ୍ଷରେ ଅଣସର ତାଟି ଭିତରେ ସ୍ନାନପୂର୍ଣ୍ଣମୀଠାରୁ ଆରମ୍ଭକରି ନେତ୍ରୋତ୍ସବ ପର୍ଯ୍ୟନ୍ତ ଶ୍ରୀଜଗନ୍ନାଥଙ୍କର ଅଖଣ୍ଡ ଅବସର। ଚାରିଧୂପପାଇଁ ମଇଲମଲାଗିର ଜଞ୍ଜାଳ ନାହିଁ। ସହସ୍ର ସହସ୍ର ଭକ୍ତ ନରନାରୀଙ୍କୁ ଦର୍ଶନ ଦେବାର କ୍ଳାନ୍ତିକର ରୁଟିନ୍ ନାହିଁ ବା ଗୁଡ଼ାଏ ଦୁର୍ବୋଧ୍ୟ ସଂସ୍କୃତ ଶ୍ଳୋକ ଶୁଣିବାର ମଧ୍ୟ ପ୍ରୟୋଜନ ନାହିଁ। ଇଏ ଶ୍ରୀଜଗନ୍ନାଥଙ୍କ ଗ୍ରୀଷ୍ମାବକାଶ ଛୁଟି ! ଅଣସର ତାଟି ଭିତରେ ଏ ପନ୍ଦରଟି ଦିନ ବରଂ ମହାପ୍ରଭୁଙ୍କର ନିର୍ବିଘ୍ନ ଅବସର। ତା'ହେଲେ, ଅନବସରର ପ୍ରସଙ୍ଗ ଉଠୁଛି କିପରି ?

ଅଣସର, ତଦ୍‌ଭବ କି ତତ୍‌ସମ ଶବ୍ଦ ମଧ୍ୟ ନୁହେଁ। ଏହାର ମୂଳ କେଉଁଠି, ତାହା ନିଶ୍ଚୟ ଗବେଷଣାସାପେକ୍ଷ। 'ପୂର୍ଣ୍ଣଚନ୍ଦ୍ର ଭାଷାକୋଷ'ରେ ଅଣସର ଶବ୍ଦଟିର ଆଉ ଏକ ପ୍ରାଚୀନ ପ୍ରାକୃତ ଅର୍ଥ ହେଉଛି- 'ନୀଚ'। କିନ୍ତୁ ଏହାର ପ୍ରାମାଣିକତା ସଂପର୍କରେ ଭାଷାକୋଷ ନିରବ। ମାତ୍ର ଓଡ଼ିଆ ଚଳଣିରେ 'ଅଣସର ଭାଇ' ବୋଲି କଥାଟିଏ ଅଛି। ଏହାର ଅର୍ଥ ହେଲା, ମୃତିକିଆରେ ଯେଉଁମାନେ ଅଶୌଚ ପାଳନ କରନ୍ତି, ସେମାନେ ସମସ୍ତେ 'ଅଣସର ଭାଇ' ବୋଲି କଥିତ ହୁଅନ୍ତି। ବସ୍ତୁତଃ, ଶବର ବିଶ୍ୱାବସୁବଂଶୀୟ ଦଇତା ସେବକମାନେ ହେଉଛନ୍ତି, ଶ୍ରୀଜଗନ୍ନାଥଙ୍କର ଅଣସର ଭାଇ । ନବକଳେବରରେ

ବର(ଇ)ତମ ହୋଇଥିବା ପୁରୁଣା ବିଗ୍ରହକୁ ବିସର୍ଜନ ଦିଆଯିବା ପରେ କେବଳ ଦଇତା ସେବକମାନେ ଅଶୌଚ ପାଳନ କରନ୍ତି। ଅନ୍ୟ ସେବକମାନେ ଏପରି ଅଶୌଚ ପାଳନ କରନ୍ତି ନାହିଁ। ଅଣସର ତାଟି ହେଲା, ଶ୍ରୀଜଗନ୍ନାଥଙ୍କର ଆଦିମ ଶାବର ପରିବେଶ ! ଏହା ଭିତରେ କେବଳ ଦଇତା ସେବକମାନେ ଶ୍ରୀଜଗନ୍ନାଥଙ୍କର ସେବାପୂଜା, ସେମାନଙ୍କର ନିଜସ୍ୱ ପଦ୍ଧତିରେ କରିଥାଆନ୍ତି। ପୂଜାପଣ୍ଡା, ପଶୁପାଳକ ଓ ଅନ୍ୟ ସେବକମାନଙ୍କର ତା' ଭିତରକୁ ପ୍ରବେଶ ନିଷେଧ। ଏହି ଅବକାଶରେ ବ୍ରାହ୍ମଣାୟିତ ହିନ୍ଦୁସଂସ୍କୃତି ସହିତ ଆର୍ଯ୍ୟେତର ଶାବର-ସଂସ୍କୃତିର ଯେଉଁ ମଧୁର ସହାବସ୍ଥାନ ହୋଇଛି, ତାହା ବିଶେଷ ଭାବରେ ଲକ୍ଷ୍ୟଣୀୟ। ଅଣସର ଅବକାଶରେ, ଶ୍ରୀଜଗନ୍ନାଥ ରତ୍ନସିଂହାସନର ସମର୍ବ ଛାଡ଼ି ଫେରିଯାଆନ୍ତି ଅଣସର ତାଟି ପରି ଆଦିମ ଶାବର-କୁଟୀରକୁ ! ଅଣସର ତାଟି ଭିତରେ ଅନ୍ନବ୍ୟଞ୍ଜନ ଭୋଗର ବ୍ୟବସ୍ଥା ନଥାଏ। ବନବାସୀମାନଙ୍କର ଫଳମୂଳ, ଏପରିକି ଆମ୍ବ-ଟାକୁଆରେ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ଚଉଷଠି ପଉଟି ଭୋଗର କୃତ୍ୟ ଟବେ। ସେଠାରେ ତାଙ୍କର ନିଜ ଆତ୍ମୀୟ ଦଇତାସେବକମାନଙ୍କଦ୍ୱାରା ପନ୍ଦର ଦିନ ଧରି ଅର୍ଚ୍ଚିତ ହେବାପରେ ସେ ପୁଣି ଫେରିଆସନ୍ତି ବ୍ରାହ୍ମଣ୍ୟ ପରିବେଶ ଭିତରକୁ ପତିତ-ଉଦ୍ଧାରଣପାଇଁ। ରଥଯାତ୍ରା ତାହାର ଦ୍ୱିତୀୟ ପର୍ଯ୍ୟାୟ। ଗୁଣ୍ଡିଚାଘରେ ନଅ ଦିନ ବିତାଇବା ପରେ, ଶ୍ରୀଜଗନ୍ନାଥ ଶାବର-ଜଗତରୁ ବିଦାୟ ନେଇ, ଫେରିଯାଆନ୍ତି ଶ୍ରୀମନ୍ଦିରକୁ ବ୍ରାହ୍ମଣାୟିତ ଦେବତା ରୂପେ। କିନ୍ତୁ ତା' ପୂର୍ବରୁ ତାଙ୍କୁ ମଧ୍ୟ ଯଥାବିଧି ପ୍ରାୟଶ୍ଚିତ୍ତ ହେବାକୁ ପଡ଼ିଥାଏ। ଇଏ ସଂସ୍କୃତାୟିତ ଗୋଷ୍ଠୀର ଆଉ ଏକ ଫିସାଦ।

ଯାହାହେଉ, ପୁରାଣଯୁଗରେ କିଂବଦନ୍ତିର କେଉଁ ଆର୍ଯ୍ୟରାଜା ଇନ୍ଦ୍ରଦ୍ୟୁମ୍ନ ବିଶ୍ୱାବସୁ-ସେବିତ ଜଗନ୍ନାଥଙ୍କୁ ବ୍ରାହ୍ମଣାୟିତ କରିଥିବାର ଐତିହାସିକ ଓ ସାଂସ୍କୃତିକ ଘଟଣା ଏହି ଅଣସର ମଧ୍ୟରେ ଅଭିନୀତ ହୋଇଥାଏ। ଏହା ତେଣୁ ଶ୍ରୀଜଗନ୍ନାଥଙ୍କ ସେବାପୂଜାରେ କେବଳ ଗୋଟିଏ ଅନୁଷ୍ଠାନ ନୁହେଁ, ଏହା ଏକ ଐତିହାସିକ ସ୍ମୃତିର ଉଦ୍‌ବୋଧନ। ମାତ୍ର ଏହାକୁ ଲୋକଚକ୍ଷୁରୁ ଲୁଚାଇବାପାଇଁ ଠିଆ କରାଯାଇଛି ଏକ ଚମତ୍କାର ଗଳ୍ପ। ସ୍ନାନପୂର୍ଣ୍ଣମୀ ଦିନ ୧୦୮ ଗରା ପାଣିରେ ଗାଧୋଇ ଜଗନ୍ନାଥଙ୍କୁ କୁଆଡ଼େ ଜର ହୋଇଯାଇଛି। ଅଣସର ତାଟି ଭିତରେ ପଡ଼ିଛନ୍ତି ବାଧିକାରେ। କବିରାଜେ ପାଚନ ପିଆଉଛନ୍ତି। ଲେଖକ ବି ଏହାକୁ ବିଶ୍ୱାସ କରନ୍ତି ପ୍ରଗାଢ଼ ପ୍ରତ୍ୟୟରେ। ସବୁ ଧୂର୍ତ୍ତତା ଓ ଶଠତା ସତ୍ତ୍ୱେ ମଣିଷ ସତରେ କେଡ଼େ ସରଳବିଶ୍ୱାସୀ।

*୦୬/୦୬/୮୫*

# ସେରକ ପୂରିଲା, ମାଣକ ପୂରିଲା

କାପ୍ତା ଚଢ଼େଇକୁ ଘେନି, ଶୈଶବରୁ ଯେଉଁସବୁ ଆଇ-ମା' କାହାଣୀ ଶୁଣି ଆସିଛି, ଏ ପରିଣତ ବୟସରେ ସୁଦ୍ଧା, ତାହା ମୋ ପକ୍ଷରେ ଏକ ବାସ୍ତବ ସତ୍ୟ ହୋଇ ରହିଆସିଛି। ସେଥିପାଇଁ ମୋର ଧାରଣା, କିମ୍ବଦନ୍ତୀ ଓ କାହାଣୀ, ବାସ୍ତବତାଠାରୁ ବୃହତ୍ତର ଭାବରେ ସତ୍ୟ। କପୋତୀଟିର ସନ୍ତାନକୁ କୁଆଡ଼େ କୌଣସି ନିଷ୍ଠୁର ବ୍ୟାଧ ମାରିଦେଲା। କପୋତୀଟିର ମାତୃହୃଦୟ କିନ୍ତୁ ତାର ସନ୍ତାନର ମୃତ୍ୟୁକୁ ସ୍ୱୀକାର କରିବାପାଇଁ ପ୍ରସ୍ତୁତ ନ ଥିଲା। ସେରେ ଚାଉଳ ପାହିଲିରେ କୁଆଡ଼େ ପୂରିଗଲେ, ତାର ସନ୍ତାନ ପୁଣି ଚେଇଁ ଉଠିବ। କପୋତୀଟି ଗୋଟିଗୋଟି କରି ଚାଉଳ ଖୁମ୍ପିଆଣି ସେରକ ପୂରାଇଲା। ତଥାପି କପୋତ-ଶାବକର ମହାନିଦ୍ରା ଭାଙ୍ଗିଲା ନାହିଁ। ମାଣକ ପୂରିଲା, ତେବେ ବି ଚେଇଁଲା ନାହିଁ। କପୋତୀ ଘୁମୁରିଲା, "ସେରକ ପୂରିଲା ମାଣକ ପୂରିଲା, ଉଠ୍‌ରେ ପୂତା ଉଠ୍ !" ସେଇଦିନୁ କପୋତୀ ନିର୍ଜନ ଦ୍ୱିପ୍ରହରରେ ଘୁମୁରି ଘୁମୁରି ଚାଲିଛି, ସେରକ ପୂରିଲା, ମାଣକ ପୂରିଲା ! ବୌଦ୍ଧ ଜାତକ ଗଳ୍ପରେ ଏହିପରି ସନ୍ତାନ-ଶୋକାତୁରା କ୍ଷାପାର କାହାଣୀ ଏହି କପୋତୀ ଗଳ୍ପ ଦ୍ୱାରା ଅନୁପ୍ରେରିତ ହୋଇଛି ବୋଲି ମୋର ମନେହୁଏ। କାରଣ ଶୈଶବରେ ମୋର ଆଇମା'ଠାରୁ ଶୁଣା କପୋତୀର କାହାଣୀ ଓ ଜାତକ ଗଳ୍ପର କ୍ଷାପା କାହାଣୀଟିର ଅନ୍ତଃସ୍ୱର ପ୍ରାୟ ସମାନ।

ଯାହାହେଉ, ଶୈଶବରୁ କପୋତୀର ବିଳାପ ପ୍ରତି ମୋର ରହିଛି ଏକ ଦୁର୍ବାର ଆକର୍ଷଣ। କେଉଁ ବିଲଗହୀରରୁ ଅଥବା ତୋଟାପ୍ରାନ୍ତରରୁ କପୋତୀର ବିଳାପ ଶୁଣିଲେ, ଗୋଟାଏ ମଦିର ବିଷାଦରେ ମୋର ମନ ଭରିଉଠେ। ଶୂନ୍ୟ ଆକାଶରୁ ଯେପରି ଝରିପଡ଼େ ମୁଠାମୁଠା କାରୁଣ୍ୟର ମୂର୍ଚ୍ଛନା। କପୋତୀ ତ ନୀରବ ହୋଇଯାଏ, କିନ୍ତୁ ଦିଗନ୍ତର ସେହି ସଙ୍ଗୀତ ଦିନଟାଯାକ ପାଇଁ ମୋର ଅନ୍ତରାତ୍ମାକୁ ମଧୁର-ବିଷାଦରେ ପୁଲକିତ କରିରଖେ।

ଏବେ କିନ୍ତୁ ନିଦାଘର ଦ୍ୱିପ୍ରହରଗୁଡ଼ିକରେ ବୃଥାଟାରେ ମୁଁ କାନପାତି ବିଛଣାରେ ଛଟପଟ ହେଉଛି-କପୋତୀର ସେଇ ଘୁମୁରା ଶୁଣିବା ପାଇଁ- ସେରକ ପୂରିଲା, ମାଣକ ପୂରିଲା ଉଠରେ ପୁତା ଉଠ୍ ! କିନ୍ତୁ କପୋତୀର ବିଳାପ ଆଉ ଶୁଭୁନାହିଁ। ବେଳେବେଳେ

ଭାବେ କପୋତୀର ମୃତଶାବକ ପୁଣି କଣ ଚେଇଁ ଉଠିଲା ? କିନ୍ତୁ ଯେଉଁମାନଙ୍କର ଘୁମୁରାରେ ଦିନେ ନିଦାଘର ଦ୍ୱିପ୍ରହର ସବୁ ମୁଖରିତ ହୋଉଉଠୁଥିଲା, ସେମାନେ ହଠାତ୍ ଉଭାନ୍ ହୋଇଗଲେ କୁଆଡ଼େ ? ଏ ପ୍ରସଙ୍ଗ କୌଣସି ବନ୍ଧୁଙ୍କ ସହିତ ଆଲୋଚନା କରିବାପାଇଁ ସଙ୍କୋଚ ଲାଗେ। ସେମାନେ ଭାବିବେ ବା କ'ଣ ? ମୁଁ ସେମାନଙ୍କୁ କିପରି ବା ବୁଝାଇ ପାରିବି, ସ୍ୱାଭାବିକ ଭାବରେ ମୁଁ ମନୁଷ୍ୟର ସଙ୍ଗ-ବିଦ୍ୱେଷୀ। ମୋର ପରିବେଶ ହେଉଛି, ପକ୍ଷୀର କାକଳୀ... ! ଥରେ ଅନେକ ଭରସି ଜଣେ ବନ୍ଧୁଙ୍କୁ କାପ୍ତା ଚଢ଼େଇର କଥା କହିଥିଲି। ତାର ବହୁଦିନ ପରେ, ଥରେ ବନ୍ଧୁ ନିମନ୍ତ୍ରଣ କଲେ ତାଙ୍କ ଘରେ ନୈଶଭୋଜନ ପାଇଁ। ବନ୍ଧୁପତ୍ନୀ ପ୍ରତିଶ୍ରୁତି ଦେଲେ, ମୁଁ ଯାହା ଏତେ ବ୍ୟାକୁଳ ଭାବରେ ଖୋଜୁଛି, ତାଙ୍କ ଡିନରକୁ ଆସିଲେ, ସେ ମୋତେ ଜୁଟାଇ ଦେଇପାରିବେ। ଭାବିଲି, ବୋଧହୁଏ ଭଦ୍ରଲୋକ କୋଉଠୁ ଗୋଟାଏ 'ଶେରୀ' ବା 'ସାମ୍ପେନ୍' ବା ସେହିପରି କିଛି ଗୋଟାଏ ପାନୀୟ କେଉଁଠୁ ଯୋଗାଡ଼ କରିଛନ୍ତି ପରା। ମନ୍ଦ ନୁହେଁ। ସେହି ଲୋଭରେ ଆସିଲି। ଯଥାବିଧି ଡାଇନିଂ ଟେବୁଲ୍ ଉପରେ ଖାଦ୍ୟସବୁ ପାତ୍ରମାନଙ୍କରେ ରଖାଗଲା। ବନ୍ଧୁପତ୍ନୀ ପ୍ରାଥମିକ ଉପଚାର ପରେ, ଗୋଟାଏ ପାତ୍ର ଉପରୁ ଢାଙ୍କୁଣୀ କାଢ଼ିଦେଇ କହିଲେ, "ତମ ପାଇଁ ବହୁ କଷ୍ଟରେ ଯାକୁ ଯୋଗାଡ଼ କରାଯାଇପାରିଛି। ତମେ ଖୋଜୁଥିଲା ପରା ପ୍ରକୃତରେ ଇଏ ଗୋଟାଏ ଡେଲିକ୍ୟାସୀ।" ମୁଁ ବିସ୍ମିତ ଦୃଷ୍ଟିରେ ଚାହିଁ ଦେଖିଲି, ସେଟା ପୂରା ଚଢ଼େଇର ଗୋଟାଏ ରୋଷ୍ଟ୍। ବନ୍ଧୁ କହିଲେ, "ଇଏ ଗୋଟାଏ କାପ୍ତା ଚଢ଼େଇ। ଅନେକ କଷ୍ଟରେ ତମ ପାଇଁ ଯୋଗାଡ଼ କରିଛି।" ମୋ' ହାତରୁ ଛୁରୀକଣ୍ଟା ଖସିପଡ଼ିଲା। ମୁଁ ଟିକେ ବେଶି ପିଇଦେଇ ଥିବାର ଛଳନାକରି ନିରବରେ ଉଠିଆସିଲି।

ମୁଁ ଆଉ କପୋତୀ ଖୋଜିବି କାହିଁକି ? ମୁଁ ଆଉ ଅରଣ୍ୟ ଖୋଜିବି କାହିଁକି ? ଅରଣ୍ୟ ସବୁ ଗଲାଣି ଠିକାଦାରମାନଙ୍କ ଗର୍ଭରେ। କପୋତ ସବୁ ଗଲେଣି ମନୁଷ୍ୟର କ୍ଷୁଧାରେ ! ସାମାଜିକ ବନୀକରଣ ନାମରେ ବବ୍‌ଡ଼କେଶା ତରୁଣମାନଙ୍କ ପରି ଯେଉଁ ଗଛ ସବୁ ବଢ଼ିଉଠିଛନ୍ତି, ସେସବୁ ଜାଳେଣୀ କାଠ ସିନା ଯୋଗାଇବେ। ଅତି ବେଶିରେ ସେଠି ପିକ୍‌ନିକ୍ ହୋଇପାରିବ। କିନ୍ତୁ ଶାଳ ଅରଣ୍ୟର ଆଦିମତା ସେଠି କାହିଁ ? ଯେଉଁ ଅରଣ୍ୟମାନଙ୍କରେ ଭାରତୀୟ ଦର୍ଶନର ଆରଣ୍ୟକ ଉପନିଷଦ୍ ସବୁ ଲେଖା ହୋଇଥିଲା, ସେସବୁ ଆଜି 'ସ'ମିଲ୍‌ମାନଙ୍କରେ ଚିରା ହେଉଛନ୍ତି, ଚୋରା କାଠ ବେପାରୀମାନଙ୍କର ଲାଭର ପୁଞ୍ଜି ବଢ଼ାଇବାପାଇଁ। ଯେଉଁ କପୋତସବୁ ନିଦାଘର ଦ୍ୱିପ୍ରହରମାନଙ୍କୁ ମୁଖରିତ କରି ରଖିଥିଲେ, ସେମାନେ କେବେଠାରୁ ଗଲେଣି ମନୁଷ୍ୟର କ୍ଷୁଧାରେ ! ଆଉ ଆମେ ଆଜି କମିଟି, କମିଶନ ବସାଇ ତିଆରି କରୁଛୁ ପରିବେଶ ସୁରକ୍ଷାର ଯୋଜନା।

୧୩/୬/୮୫

# ଅନ୍ଧଗଳି

ଊନବିଂଶ ଶତାବ୍ଦୀରେ ୟୁରୋପରେ ଯନ୍ତ୍ରଶିଳ୍ପ ବିକାଶର ଏକ ପରିଣତି ଥିଲା, ସମାଜରେ ବିଦ୍‌ଗ୍ଧ ସୌକୁମାର୍ଯ୍ୟର ବିଲୟ। ଯନ୍ତ୍ରଶିଳ୍ପର ବିକାଶ ଫଳରେ ଏପରି ଏକ ମଧ୍ୟବିତ୍ତଶ୍ରେଣୀ ସୃଷ୍ଟି ହୋଇଥିଲେ, ଯେଉଁମାନଙ୍କଠାରେ ସାହିତ୍ୟର ବିରୋଧୀ ନଥିଲେ, ସାହିତ୍ୟିକ ରୁଚିର ଅଭାବ ରହିଗଲା। ସେମାନେ ଥିଲେ ଶୁଦ୍ଧ-ସାହିତ୍ୟର ପରିପନ୍ଥୀ। ଊନବିଂଶ ଶତାବ୍ଦୀ ଆମେରିକା ଓ ୟୁରୋପରେ ଏଇ ଆଭିମୁଖ୍ୟ ଲକ୍ଷ୍ୟକରି ବିଶିଷ୍ଟ ସମାଲୋଚକ ପ୍ରିଷ୍ଟ୍‌ଲେ ଲେଖିଥିଲେ-

"It is true however the Western Europe and the United States, the age saw the rapid growth both in numbers and influence of a class largly hostil to literature." (Literature and Western Man)

ଯନ୍ତ୍ରଶିଳ୍ପ-ବିପ୍ଳବ ସାହିତ୍ୟ ଉପରେ ଯେଉଁ ଆଘାତ ହାଣିଥିଲା, ତାହାର ପ୍ରତିବାଦର ପ୍ରତିରୋଧରେ ସାହିତ୍ୟ ମୁଖର ହୋଇଉଠିଥିଲା। କିନ୍ତୁ ଏପରି ସାହିତ୍ୟ ସୀମାବଦ୍ଧ ରହିଲା, ସାହିତ୍ୟ ସଚେତନ ଏକ କ୍ଷୁଦ୍ର ଗୋଷ୍ଠୀର ସୀମାବଦ୍ଧରେ। ଯନ୍ତ୍ର-ବିପ୍ଳବ ଯୁଗର ସୌଦାଗର ମିତ୍ରଗୋଷ୍ଠୀ ସେମାନଙ୍କ ସହିତ ସଂଶ୍ଳିଷ୍ଟ। ମଧ୍ୟବିତ୍ତ ଗୋଷ୍ଠୀର ରୁଚି ଓ ମୂଲ୍ୟବୋଧକୁ ସାହିତ୍ୟ ନିଜର ଅନୁସରି କରିଦେଲା। ପ୍ରାକ୍ ଊନବିଂଶ ଶତାବ୍ଦୀରେ ସାହିତ୍ୟ ଯେପରି ସମାଜର କେନ୍ଦ୍ରବିନ୍ଦୁ ହୋଇ ରହିଥିଲା, ତାହା ଆଉ ସେପରି ହୋଇ ରହିପାରିଲା ନାହିଁ। ସମାଜର ମୁଖ୍ୟ ପ୍ରବୃତ୍ତିର ଏହା ଆଉ ପ୍ରତିନିଧିତ୍ୱ କରିପାରିଲା ନାହିଁ। ଏହି ପରିସ୍ଥିତିରେ ସମାଜଠାରୁ ସାହିତ୍ୟର ବିଚ୍ଛେଦ ଘଟିଲା।

କ୍ରମେ ସାହିତ୍ୟର ସ୍ଥାନ ଅଧିକାର କଲେ ସାମ୍ୱାଦିକ ଓ ମନୋରଂଜନଧର୍ମୀ ଲଘୁଲେଖକ ଗୋଷ୍ଠୀ। ବିଦ୍ରୋହୀ ରୋମାଣ୍ଟିକ୍‌ମାନେ ସୌଦାଗରମାନଙ୍କର ଅନ୍ତଃପୁରିକା ଅଥବା ସାହିତ୍ୟକୁ ରୁଚିହୀନ ସାକ୍ଷର ଜନତାର ମନୋରଂଜନପାଇଁ ତେଲ-ଲୁଣ-

ସଂସାରଟଳା 'ପଟ୍-ବୟଲର' ଲେଖିବସିଲେ। ସାହିତ୍ୟ ମଧ୍ୟ ପରିଣତ ହୋଇଉଠିଲା ତେଲ ଓ ଲୁଣ ପରି ପଣ୍ୟରେ।

ଏହାର ପ୍ରତିବାଦ ଶୁଣାଯାଇଥିଲା ୟୁରୋପରେ- 'ଏସ୍‌ଥେଟିକ୍ ମୁଭ୍‌ମେଣ୍ଟ' (Aesthetic Movement) ମଧ୍ୟରେ। ଏହାର ସ୍ଲୋଗାନ୍ ଥିଲା 'Arts for its own sake'। ଓସ୍‌କାର ଓ୍ୱାଇଲ୍ଡ୍ ଥିଲେ ଏହାର ପ୍ରବକ୍ତା। ସମାଜ ବିରୁଦ୍ଧରେ ଏହା ଥିଲା ସାହିତ୍ୟର ଚୂଡ଼ାନ୍ତ ଯୁଦ୍ଧ-ଘୋଷଣା ! ଭାରତରେ ଦ୍ୱିତୀୟ ମହାଯୁଦ୍ଧୋତ୍ତର କାଳର ସାହିତ୍ୟରେ ଏହି ଆଭିମୁଖ୍ୟ ସ୍ପଷ୍ଟତର ହୋଇ, ବିଗତ ଷଷ୍ଠ ଦଶକଠାରୁ ସାହିତ୍ୟକୁ ପକ୍ଷଚ୍ୟୁତ ମାନବର ଏକ ମାନସିକ ବିକୃତିରେ ପରିଣତ କରିଦେଇଅଛି। 'ଆର୍ଟ ଫର୍ ଇଟିସ୍ ଓନ୍ ସେକ୍' ପରିଣତ ହୋଇଛି 'ଆଟ୍ ଫର୍ ଦ ସେକ୍ ଅଫ୍ ଆର୍ଟିଷ୍ଟି'ରେ ! ଅର୍ଥାତ୍ ସାହିତ୍ୟପାଇଁ ଉଦ୍ଦିଷ୍ଟ ଥିବା ପର୍ଯ୍ୟାୟ ଅତିକ୍ରମ କରି ବର୍ତ୍ତମାନ ଆସି ପହଞ୍ଚିଛନ୍ତି, 'ସାହିତ୍ୟିକପାଇଁ ସାହିତ୍ୟ'ର ଅନ୍ଧଗଳି ମଧ୍ୟରେ ! ଏଥିରୁ ପରିତ୍ରାଣପାଇଁ ପୁଣି ଉଠିଲାଣି ସମାଜପ୍ରତି ସାହିତ୍ୟର ଦାୟିତ୍ୱବୋଧ ବା 'କମିଟ୍‌ମେଣ୍ଟ'ର ସ୍ଲୋଗାନ୍। ଏ ସ୍ଲୋଗାନ୍ କିନ୍ତୁ ଯୁଦ୍ଧ-ସାହିତ୍ୟରେ ରୂପାନ୍ତରିତ ନହେଲେ, ଏହାର କୌଣସି ସାହିତ୍ୟିକ ମୂଲ୍ୟ ରହିବ ନାହିଁ। ଏହା ପରିଣତ ହୋଇପଡ଼ିବ ରାଜନୈତିକ ପାମ୍ପଲେଟିୟରିଂ ଅଥବା ସାମ୍ବାଦିକର ରିପୋର୍ଟରେ।

୨୭।୦୬।୮୪

# ଗୋଟିଏ ମନ୍ଦିରଃ ଦୁଇଟି ସଂସ୍କୃତି

ସେଦିନ ନବମୀ। ଗୁଣ୍ଡିଚା ଘରେ ଖେଚେଡ଼ି ଭୋଗ ପରେ, ଶ୍ରୀଜଗନ୍ନାଥଙ୍କର ବାହୁଡ଼ା ପର୍ବ ଆରମ୍ଭ ହୋଇଯିବ। ସକାଳୁ ମୋ' ପଡ଼ାପଡ଼ୋଶୀରେ, ମହିଳାମାନଙ୍କ ମଧ୍ୟରେ ବେଶ୍ ଉତ୍ତେଜନା ଓ ଆଗ୍ରହ। ସମସ୍ତଙ୍କ ମୁହଁରେ ଗୋଟିଏ କଥା ଆଡ଼ପଦର୍ଶନ। 'ଆଡ଼ପ'ର ଅର୍ଥ ବୁଝିପାରିଲି ନାହିଁ। ପୁରୀ ଶ୍ରୀମନ୍ଦିର କର୍ମାଙ୍ଗୀରେ ଏପରି ବହୁ ଶବ୍ଦ ପ୍ରଚଳିତ, ଯାହାର ଧାତୁରୂପ ଖୋଜି ପାଇବା ଦୁଷ୍କର। 'ହଡ଼ପ', 'ମଇଲମ', 'ଆପଟ' ପ୍ରଭୃତି ଶବ୍ଦ ଏହାର ଉଦାହରଣ। 'ଆଡ଼ପ' ସେହିପରି ଏକ ଶବ୍ଦ। ପଚାରି ବୁଝିଲି, ଗୁଣ୍ଡିଚାଘରେ ଆଡ଼ପ ଦର୍ଶନ ମହାପୁଣ୍ୟ ବୋଲି ପରମ୍ପରା ଓ ଚଳଣୀରେ ଗୋଟିଏ ଦୃଢ଼ ବିଶ୍ୱାସ ଆଜି ସୁଦ୍ଧା ରହିଛି। କିନ୍ତୁ ଏହା ପବିତ୍ରତମ କେଉଁଥିପାଇଁ ?

ସେମାନେ ସେଦିନ ବହୁ ବିଳମ୍ବରେ ପୁରୀରୁ ଫେରିଲେ। ମୁଁ ଗୁଣ୍ଡିଚାଘରେ ଦିଅଁମାନଙ୍କୁ ଦର୍ଶନ କରିବାର ସୁଯୋଗ କେବେ ପାଇନାହିଁ। ଭିଡ଼ ଭିତରେ ଆତ୍ମରକ୍ଷା ଯେତେବେଳେ ମୁଖ୍ୟ ହୋଇଉଠେ, ସେତେବେଳେ ଦିଅଁ ଦେଖାରେ ନିଷ୍ଠା ନ ରହିବା ହିଁ ସ୍ୱାଭାବିକ। ସେଥିପାଇଁ ଭିଡ଼ ଓ ଠେଲାଠେଲି ଭିତରେ ଆଡ଼ପ ଦର୍ଶନ ଯୋଗ ମୋ' ପାଇଁ କେବେ ଆସିନାହିଁ। ମୋର କୌତୂହଳ ଚରିତାର୍ଥ କରିବାପାଇଁ ଜଣେ ତୀର୍ଥଯାତ୍ରିଣୀଙ୍କୁ ଏହାର ବିଶେଷତ୍ୱ ସଂପର୍କରେ ପଚାରିଲି। ଭଦ୍ରମହିଳା ଗଦ୍‌ଗଦ୍ କଣ୍ଠରେ ଉତ୍ତର ଦେଲେ, ବଡ଼ ଦେଉଳରେ ଜଗନ୍ନାଥ ଦର୍ଶନ କରିବା ବେଳେ ସେ ବହୁ ଦୂରରେ, ହାତପାଆନ୍ତାରୁ ବହୁ ଊର୍ଦ୍ଧ୍ୱରେ ଥିବା ପରି ମନେହୁଅନ୍ତି। କିନ୍ତୁ ଗୁଣ୍ଡିଚାଘରେ ମନେହୁଏ ସେ ଯେପରି ଅତି ଆପଣାର କେହି ଅନ୍ତରଙ୍ଗ ଆତ୍ମୀୟ ! ଏତେଦିନ ଆମ ଭିତରେ ନଥିଲେ। କେଉଁ ଦୂର ପ୍ରବାସକୁ ଯାଇଥିଲେ। ଆଜି ପୁଣି ଫେରିଆସିଛନ୍ତି ଆମରି ଭିତରକୁ। ଶ୍ରୀମନ୍ଦିରରେ ସେ ଐଶ୍ୱର୍ଯ୍ୟମୟ; ମହାର୍ଘ ବସନଭୂଷଣରେ ଶୋଭିତ। ମାତ୍ର ଗୁଣ୍ଡିଚା ଘରେ ସେ ଅତି ସରଳ ଓ ନିରାଡ଼ମ୍ବର। ବ୍ରାହ୍ମଣ୍ୟାୟିତ ସମାଜର ମହାର୍ଘ ବସନଭୂଷଣ ନାହିଁ, ଦେହରେ ଘୋଡ଼େଇ ହୋଇଛନ୍ତି ଖଣ୍ଡେ ସାଦା ଓଢ଼ଣୀ। ଗଳାରେ

ସାରିଏ ଫୁଲମାଳ। ଶାବର ସମାଜର ମଣିଷ ଯେପରି ସରଳ ଓ ନିରାଭରଣ, ତାର ଦେବତା ମଧ୍ୟ ସେହିପରି।

ଶ୍ରୀଜଗନ୍ନାଥଙ୍କର ଶାବର-ଉତ୍ପତ୍ତି ଗୁଣ୍ଡିଚା ଘରେ ସୁସ୍ପଷ୍ଟ। କାହାରି ଆଖି ଏଡ଼ିଯିବା ଭଳି ନୁହେଁ। ଶ୍ରୀମନ୍ଦିରରେ ଜଗନ୍ନାଥ ପୂଜିତ ହୁଅନ୍ତି, ଯୋଗ, ପ୍ରାଣାୟମ, ଧ୍ୟାନ, ମନ୍ତ୍ର ଓ ତନ୍ତ୍ରରେ। ଏଠାରେ କିନ୍ତୁ ସେ ପୂଜାର୍ଚ୍ଚନାରେ କ୍ଲିଷ୍ଟତା ପରିବର୍ତ୍ତେ, ଅଛି ଅନୌପଚାରିକ ମମତ୍ୱ, ଶ୍ରଦ୍ଧା ଓ ଭକ୍ତି। ଏଠାରେ ମଧ୍ୟ ବ୍ରାହ୍ମଣ୍ୟ ଗୋଷ୍ଠୀର ସେବକମାନଙ୍କର କୌଣସି ଭୂମିକା ନାହିଁ। ଦଇତା ସେବକମାନେ ଏଠାରେ ଦିଅଁମାନଙ୍କର ସେବାପୂଜା କରନ୍ତି। ପୂଜାପଣ୍ଡା ଗୁଣ୍ଡିଚା ଘରେ ଜଗନ୍ନାଥଙ୍କର ବିଜେ ପ୍ରତିମା ମଦନମୋହନଙ୍କୁ କେବଳ ପୂଜା କରିଥାଆନ୍ତି। ତେଣୁ ଗୁଣ୍ଡିଚା ଘରେ ରହଣି କାଳରେ ଶାବର ଆଧ୍ୟାତ୍ମିକ ସଂସ୍କୃତି ଓ ବ୍ରାହ୍ମଣାୟିତ ଆଧ୍ୟାତ୍ମିକ ସଂସ୍କୃତିର ମିଳନ ଘଟିଛି ବୋଲି କୁହାଯାଇପାରେ।

ବ୍ରାହ୍ମଣ୍ୟାୟିତ ସମାଜରେ ଚତୁର୍ବର୍ଣ୍ଣ ପ୍ରଚଳିତ। ସେଥିପାଇଁ ଶ୍ରୀମନ୍ଦିର ଭିତରକୁ ତଥାକଥିତ ଅସବର୍ଣ୍ଣମାନଙ୍କର ପ୍ରବେଶ ନିଷିଦ୍ଧ। ବ୍ରାହ୍ମଣ୍ୟାୟିତ ସମାଜର ନ୍ୟସ୍ତସ୍ୱାର୍ଥ ଓ ରକ୍ଷଣଶୀଳତା ଶ୍ରୀମନ୍ଦିରରେ ଅତି ସୁସ୍ପଷ୍ଟ। ମାତ୍ର ଗୁଣ୍ଡିଚା ଘରେ ସ୍ପୃଶ୍ୟାସ୍ପୃଶ୍ୟ, ଜାତିଭେଦ ଓ ଜାତିବିଚାର ନାହିଁ। ଶ୍ରୀମନ୍ଦିରରେ ରତ୍ନବେଦୀ ଉପରେ ଜଗନ୍ନାଥଙ୍କୁ ସ୍ପର୍ଶ କରିବାର ଅଧିକାର କେବଳ ପୁଷ୍ପାଳକ ବ୍ୟତୀତ, ଆଉ କାହାରି ନଥାଏ। ସେ ହିଁ କେବଳ ଦିଅଁମାନଙ୍କୁ ସ୍ପର୍ଶ କରିପାରନ୍ତି। ମାତ୍ର ଗୁଣ୍ଡିଚା ଘରେ ଜାତିବର୍ଣ୍ଣ ନିର୍ବିଶେଷରେ ସମସ୍ତେ ଜଗନ୍ନାଥଙ୍କୁ ସ୍ପର୍ଶ କରିପାରନ୍ତି। କାରଣ ଶାବର ସମାଜରେ ଜାତିଭେଦ ନଥିବାରୁ ସମସ୍ତେ ତାଙ୍କୁ ପୂଜା କରିପାରୁଥିଲେ। କିନ୍ତୁ ବ୍ରାହ୍ମଣ୍ୟାୟିତ ସମାଜରେ ନଜ ଇଷ୍ଟଦେବତାଙ୍କୁ ନିଜେ ପୂଜା କରିବାର ଅଧିକାର କାହାରି ନଥାଏ। ଦେବତା ଓ ମନୁଷ୍ୟ ମଧ୍ୟରେ ସେଠାରେ ମଧ୍ୟସ୍ଥ ରୂପେ ରହିଛନ୍ତ, ପଣ୍ଡା ଓ ପଢ଼ିଆରୀମାନେ। ସେମାନଙ୍କୁ ନଧରିଲେ ଦିଅଁପୂଜା ହୋଇପାରିବ ନାହିଁ। ବ୍ରାହ୍ମଣ୍ୟାୟିତ ସମାଜରେ ଭକ୍ତି ଅପେକ୍ଷା ଆଚାର ଓ ଉପଚାର ଅଧିକ ପ୍ରଧାନ। କିନ୍ତୁ ଶାବର ସମାଜରେ ହୃଦୟର ଅନାବିଳ ଭକ୍ତି ହିଁ ଦେବତାଙ୍କ ପାଇଁ ଶ୍ରେଷ୍ଠ ପୂଜାଅର୍ଘ୍ୟ।

ବ୍ରାହ୍ମଣ୍ୟାୟିତ ସମାଜର କିଂବଦନ୍ତିରେ ଗୁଣ୍ଡିଚା, ରାଜା ଇନ୍ଦ୍ରଦ୍ୟୁମ୍ନଙ୍କର ମହିଷୀ ରୂପେ ପରିଚିତା। ମାତ୍ର ବିଦଗ୍ଧ, ସଂସ୍କୃତାୟିତ ଇନ୍ଦ୍ରଦ୍ୟୁମ୍ନଙ୍କ ପରି ଜଣେ ରାଜାଙ୍କର ମହିଷୀଙ୍କ ନାମ କାହିଁକି ଗୁଣ୍ଡିଚା ହେବ, ତାହା ବୁଝିହୁଏ ନାହିଁ। କିନ୍ତୁ କେତେକ ତଦ୍‌ବିଦ୍‌ଙ୍କ ମତରେ, 'ଗୁଣ୍ଡିଚା'ର ଅର୍ଥ ହେଲା, ଦାରୁ। ଏଥିରୁ ଅନୁମିତ ହୁଏ, ବିଶ୍ୱାବସୁ ଶବର ଶ୍ରୀଜଗନ୍ନାଥଙ୍କ ଉତ୍ପତ୍ତି କାଳରେ କାଷ୍ଠ ଖଣ୍ଡରୂପୀ ଦାରୁକୁ ପୂଜା କରୁଥିଲେ। ଶ୍ରୀମନ୍ଦିରଠାରୁ ଗୁଣ୍ଡିଚାଘର ତେଣୁ, ପରିକଳ୍ପନା ଓ ଚେତନାରେ ସଂପୂର୍ଣ୍ଣ ସ୍ୱତନ୍ତ୍ର। ଶ୍ରୀମନ୍ଦିରରେ ଜଗନ୍ନାଥ ଗୋଟିଏ

ନିବୁଜ ଗୋଷ୍ଠୀ ଓ ସମାଜର, କିନ୍ତୁ ଗୁଣ୍ଡିଚା ଘରେ ଶ୍ରୀଜଗନ୍ନାଥ ପ୍ରକୃତରେ ନିଖିଳନାଥ, ସେ ସମଗ୍ର ମାନବ ସମାଜର।

ଗୁଣ୍ଡିଚା ଘରେ ଦୁଇ ସଂସ୍କୃତିର ଏ ଅପୂର୍ବ ମିଳନପାଇଁ, ଆଡ଼ପ ଦର୍ଶନ ବୋଧହୁଏ ମହାପୁଣ୍ୟର ଫଳ ବୋଲି ବିବେଚିତ ହୋଇଥାଏ। ଆଜି ମନୁଷ୍ୟ-ମନୁଷ୍ୟ ମଧ୍ୟରେ ଜାତି ଓ ଜାତିଆଣ ସୃଷ୍ଟି କରିଛି ଦୁର୍ଲଂଘ୍ୟ ପ୍ରାଚୀର। ଏହାକୁ ଦୂର କରିବାପାଇଁ ଯେତେ ଯେତେ ଆଇନ ତିଆରି ହେଉଛି, ରକ୍ଷଣଶୀଳତା ସେତିକି ସେତିକି ବଦ୍ଧମୂଳ ହେଉଛି। ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କ ପରି ଜଣେ ଧର୍ମପରାୟଣା ମହିଳା, ଯେପରି ଥରେ ରତ୍ନବେଦୀ ଉପରେ ଜଗନ୍ନାଥଙ୍କୁ ଦର୍ଶନ କରିପାରିଲେ ନାହିଁ, ତାହା ରକ୍ଷଣଶୀଳତାର ପ୍ରମାଣ। ଯେତେ ଯେତେ ଆଇନ ତିଆରି ହେଉଛି, ତାହାକୁ ସେତିକି ସେତିକି ଲଙ୍ଘନ କରାଯାଉଛି। କିନ୍ତୁ ସାମାଜିକ ଚଳଣି ଓ ଆଚାରରେ ଆର୍ଯ୍ୟ ଓ ଆର୍ଯ୍ୟେତର ଗୋଷ୍ଠୀର ଯେଉଁ ମିଳନ ସଂସ୍କୃତି ମାଧ୍ୟମରେ ସଂଘଟିତ ହୋଇଛି, ତାହା ଆଇନ ଓ ସମ୍ବିଧାନଦ୍ୱାରା ସମ୍ଭବ ହୋଇପାରେ ନାହିଁ। ବରଂ ଆଇନ ଓ ସମ୍ବିଧାନ ମଧ୍ୟପ୍ରଦେଶ ଓ ଗୁଜୁରାଟରେ ଗୃହଯୁଦ୍ଧର ସୂତ୍ରପାତ କରିଅଛି।

ମାତ୍ର ପ୍ରଶ୍ନ ଉଠୁଛି, ବିବଦମାନ ଦୁଇ ସଂସ୍କୃତିର ଏହି ସୌହାର୍ଦ୍ଦ୍ୟପୂର୍ଣ୍ଣ ସମନ୍ୱୟର ଅନୁଶୀଳନ ପାଇଁ ଇତିହାସର ବିବର୍ତ୍ତନ ଓଡ଼ିଶାକୁ ପ୍ରକୃଷ୍ଟ କ୍ଷେତ୍ରପାଇଁ ବାଛିଲା କାହିଁକି ? ଏହାର ଉତ୍ତର ମୁଁ ଭାବି ସ୍ଥିର କରିପାରୁ ନାହିଁ। କେହି ପାଠକ ଦୟାକରି ମୋତେ ଜଣାଇବେ କି ?

୧୧/୦୭/୮୪

# ସାହିତ୍ୟରେ ଋତୁପରିବର୍ତ୍ତନ

ଜଣେ ବିଶିଷ୍ଟ ସମାଲୋଚକ ଏମିତି ଫଜେ ଲେଖିଛନ୍ତି, "ସାହିତ୍ୟରେ ସବୁ ନିୟମକୁ ମୁଁ ଅସ୍ୱୀକାର କରେ, କେବଳ ଗୋଟିଏ ନିୟମ ବ୍ୟତୀତ। ତା'ହେଲା, ସାହିତ୍ୟରେ ଗୋଟିଏ ରୀତି ପରେ ଅନ୍ୟ ରୀତି ଆସେ ଅଲଂଘ୍ୟ ଭାବରେ। କାରଣ 'ପରବର୍ତ୍ତୀ ରୀତିଟି, ଆଦ୍ୟ ରୀତିର ସଂପୂର୍ଣ୍ଣ ବିପରୀତ।" ଏହାର ଉଦାହରଣ ଦେଇ ସେ କହିଛନ୍ତି, ସାହିତ୍ୟରେ ଧ୍ରୁପଦୀ କ୍ଲାସିସିଜମ୍ ପରେ ଆସିଛି ରୋମାଣ୍ଟିସିଜମ୍ ପରେ ରିଏଲିଜମ୍ ! ରିଏଲିଜମ୍ ପରେ ସିମ୍ବଲିଜମ୍। ସିମ୍ବଲିଜମ୍ ପରେ କ୍ୟୁବିଜମ୍, ଫ୍ୟୁଚରିଜମ୍, ଡାଡାଇଜମ୍ ପରି ଆଉ ଯେତେ ଉଦ୍ଭଟ ଇଜମ୍। ବସ୍ତୁତଃ, ସାହିତ୍ୟ ଓ ଚିତ୍ରକଳାରେ ଯେତେ ଯେତେ ଇଜମ୍‌ର ନାଆଁ ଶୁଣାଯାଏ, ରାଜନୀତିରେ ସୁଦ୍ଧା ସେତେ ଇଜମ୍ ଖୋଜିଲେ ମିଳିବ ନାହିଁ। କିନ୍ତୁ ଗୋଟିକର ପ୍ରତିକ୍ରିୟା ରୂପେପ ଯେ ଅନ୍ୟଟି ଜନ୍ମଲାଭ କରେ, ତାହା ଆଦୌ ନୁହେଁ। ବସ୍ତୁତଃ, ଏହି ଇଜମ୍ ପରିବର୍ତ୍ତନ ମଧ୍ୟରେ ଯୁଗମାନସ ଓ ଯୁଗରୁଚିର ପରିବର୍ତ୍ତନ ସ୍ପଷ୍ଟ ଲକ୍ଷ୍ୟ କରାଯାଇପାରେ। ସ୍ୱାଭାବିକ ଭାବରେ, ସାହିତ୍ୟର ଆଦି କାଳରେ କ୍ଲାସିସିଜମ୍ ଥିଲା ସାହିତ୍ୟର ପ୍ରବୃତ୍ତି। ଏ ଯୁଗ ଥିଲା, ଦିଗ୍‌ବିଜୟୀ ରାଜା ଓ ସେନାପତିମାନଙ୍କର। କାବ୍ୟକବିତାର ଧ୍ରୁପଦୀ ଶୃଙ୍ଖଳା ବା ଶାସ୍ତ୍ରୀୟ ରୁଚି ସେଥିପାଇଁ ଏ ଯୁଗର ମେଜାଜ୍ ଥିଲା। ଏ ଯୁଗର ସାହିତ୍ୟରେ ଚଟୁଳତା ନାହିଁ। ସ୍ୱପ୍ନାତୁରତା ନାହିଁ, ଛବିଳତା ନାହିଁ। ମାର୍ବଲର ପ୍ରତିମୂର୍ତ୍ତି ପରି ଏସବୁ ଅତି ମପାଚୁପା। କେଉଁଠି ହେଲେ ଅତିଶୟୋକ୍ତି ନାହିଁ ବା ମେଦୁଳତା ନାହିଁ।

ପରବର୍ତ୍ତୀ ସାମନ୍ତବାଦୀ ଯୁଗରେ ଆସିଲା ରୋମାଣ୍ଟିସଜମ୍, ସେ ଯୁଗର ବିଳାସବ୍ୟସନ ଓ ସ୍ୱପ୍ନପ୍ରବଣ ମାନସିକତାକୁ ଘେନି। ରିଏଲିଜମ ଆସିଲା ବୈଜ୍ଞାନିକ ଯୁଗର ଟିକିନିଖି ବିଶ୍ଳେଷଣଧର୍ମୀ ପ୍ରବୃତ୍ତି ନେଇ। ତା'ପରେ ଯେତେବେଳେ ବାସ୍ତବବାଦର ନେପଥ୍ୟରେ ଆଉ ଏକ ଗୂଢ଼ ବାସ୍ତବତା ଅଛି ବୋଲି ଗୋଟିଏ ବୈଜ୍ଞାନିକ ତଥା ଦାର୍ଶନିକ ତତ୍ତ୍ୱ ଜନ୍ମଲାଭ କଲା, ସେତେବେଳେ ତାହା ପ୍ରକାଶ ପାଇଲା ସର୍-ରିଏଲିଜମ୍ ଶୈଳୀରେ।

ତାହାପରେ ଯେତେ ଯେତେ ଇଜମ୍ ଜନ୍ମଲାଭ କରିଛି, ସେସବୁ ଯେତେ ଉଦ୍ଭଟ ମନେହେଲେ ହେଁ, ତାହାର ନେପଥ୍ୟରେ ରହିଛି ସମସାମୟିକ ଯୁଗର ମାନସିକ ପ୍ରବୃତ୍ତି। କିନ୍ତୁ ଏପରି କେତେକ ମହାନ୍ ଲେଖକ ଅଛନ୍ତି, ଯେଉଁମାନଙ୍କ ରଚନାରେ ଏସବୁ ଇଜମ୍‌ର ସମାହାର ଦେଖିବାକୁ ମିଳିଥାଏ। ଏହାର ପ୍ରକୃଷ୍ଟ ଉଦାହରଣ ହେଉଛନ୍ତି, ଊନବିଂଶ ଶତାବ୍ଦୀର ଶ୍ରେଷ୍ଠ ଫରାସୀ ଔପନ୍ୟାସିକ ଫ୍ଲବେୟାର। ତାଙ୍କର ବହୁ ପ୍ରସିଦ୍ଧ ଉପନ୍ୟାସ 'ମାଦାମ୍ ବୋଭାରୀ' (୧୮୫୭) ରିଏଲିଜମ୍ ଶୈଳୀର ଏକ ଉଜ୍ଜ୍ୱଳ ନିଦର୍ଶନ। ମାତ୍ର ଫ୍ଲବେୟାରଙ୍କୁ ରିଏଲିଷ୍ଟ ବୋଲି ଚିହ୍ନିତ କରିବା ନିରାପଦ ହେବନାହିଁ। କାରଣ ସେ ରୋମାଣ୍ଟିକ୍ ଶୈଳୀରେ ମଧ୍ୟ ଉପନ୍ୟାସ ଲେଖିଛନ୍ତି। ବସ୍ତୁତଃ, ସେ କ୍ଲାସିସିଜମ୍ ହେଉ ବା ରୋମାଣ୍ଟିସିଜମ୍ ହେଉ- ଯେଉଁ ଶୈଳୀରେ ଲେଖନ୍ତୁ ନା କାହିଁକି, ତାହାକୁ କ୍ଲାସିକ୍‌ର ସ୍ପର୍ଶ ଦେଇଛନ୍ତି। ତେଣୁ କୌଣସି ସଚ୍ଚା ଲେଖକ ପକ୍ଷରେ ଶୈଳୀ ବା ଇଜମ୍ ବଡ଼କଥା ନୁହେଁ। ବଡ଼କଥା ହେଉଛି ତାର ସୃଷ୍ଟିର ଆତ୍ମା। ସେଠାରେ ଇଜମ୍ ହେଉଛି ଗୌଣ-ମୁଖ୍ୟ ହେଉଛି ତାହାର ସୃଷ୍ଟି ପ୍ରତିଭା।

ପାଶ୍ଚାତ୍ୟ ସାହିତ୍ୟରେ ଏହି ଇଜମ୍ ସବୁ ଅତି ସ୍ୱାଭାବିକ ଭାବରେ ଯୁଗ ପରିବେଶ ମାନସିକତାର ଅଭିବ୍ୟକ୍ତି ରୂପେ ପ୍ରକାଶ ପାଇଥିଲେ ହେଁ ଭାରତରେ ସେସବୁ କେବଳ ମୁଷ୍ଟିମେୟ ଇଂରାଜୀ ଶିକ୍ଷିତ କବି ଓ ଲେଖକଙ୍କର ଅନୁକରଣଧର୍ମିତାରେ ଏ ଦେଶର ସାହିତ୍ୟ ଭିତରକୁ ଆସିଛି। ସେଥିପାଇଁ ମାତ୍ର ଅଳ୍ପ କେତେକ କୃତିକୁ ଛାଡ଼ିଦେଲେ, ଅନ୍ୟସବୁ ଅନୁକରଣଧର୍ମୀ କୃତି ବା ରଚନା ଦେଶର ବୃହତ୍ତର ପାଠକ ସମାଜକୁ ବିଶେଷ ସ୍ପର୍ଶ କରିପାରିନାହିଁ। ଏହିପରି ରଚନାଗୁଡ଼ିକରେ ସାହିତ୍ୟ, ପାଠକମାନଙ୍କପାଇଁ ଉଦ୍ଦିଷ୍ଟ ହେବା ପରିବର୍ତ୍ତେ, ପାଠକମାନେ ଯେପରି ସାହିତ୍ୟପାଇଁ ଉଦ୍ଦିଷ୍ଟ ହୋଇଉଠନ୍ତି ! ତେଣୁ ସାହିତ୍ୟ ଆଜିକାର ସଂପୃକ୍ତି ଯେ ହରାଇଛି, ସେଥିରେ ବିସ୍ମିତ ହେବାଭଳି କିଛି ନାହିଁ।

ପ୍ରଧାନମନ୍ତ୍ରୀ ଶ୍ରୀ ରାଜୀବଗାନ୍ଧୀ ଦେଶକୁ ଏକବିଂଶ ଶତାବ୍ଦୀ ଆଡ଼େ ନେବାର ସଂକଳ୍ପ ଘୋଷଣା କରିଛନ୍ତି। କିନ୍ତୁ ଏଣେ ରାଜଧାନୀ ଭୁବନେଶ୍ୱରଠାରୁ ମାତ୍ର ୭୫ କିଲୋମିଟର ଦୂରରେ, ନିଶୂନ ଅନ୍ଧାର ରାତିରେ; ଠାକୁରାଣୀଙ୍କ ପାଖରେ ଶିଶୁବଳି ଦିଆଯାଇଛି ! ଚିକିତ୍ସା-ବିଜ୍ଞାନର ଅଭୂତପୂର୍ବ ବିକାଶ ଘଟିଛି, ମାତ୍ର ଗୁଣିଗାରେଡ଼ି ଓ ଅଧିଆ ପଡ଼ିବାର ଅନ୍ତ ନାହିଁ। ସୁପରସୋନିକ୍ ଜେଟ୍‌ର ନିତ୍ୟ ନୂତନ ପଦ୍ଧତିରେ ନିର୍ମାଣ ଚାଲିଛି, କିନ୍ତୁ ଶଗଡ଼ଗାଡ଼ିଟି ତଥାପି ନଟବର ଗତିରେ, ଧୀରେ ସୁସ୍ଥେ, ସଡ଼କ ଉପରେ ଦ୍ରୁତଗାମୀ କାରମାନଙ୍କୁ ସୁଦ୍ଧା ଅଟକାଇ ଦେଉଛି। ମାରଣାସ୍ତ୍ରର ନିତ୍ୟ ନୂତନ ବିସ୍ଫୋରଣ ମଧ୍ୟରେ ପ୍ରାଗୈତିହାସିକ ଯୁଗର ଢେଲା, ଲାଠି ଓ ଧନୁଶର ତଥାପି ମାରଣାସ୍ତ୍ର ହୋଇ ରହିଛି !

ଏଥିରୁ ଦେଖାଯିବ, ସର୍ବାଧୁନିକ ସହିତ ସର୍ବପ୍ରାଚୀନ ବା ଆଦିମର ସହାବସ୍ଥାନ ଚାଲିଛି। ଗୋଟିଏ ହୁଏତ ଅନ୍ୟର ପରିପନ୍ଥୀ ହୋଇପାରେ। ମାତ୍ର 'ଏଫେକଟ୍' ବା ପରିଣତ ଦୃଷ୍ଟିରୁ ସମସ୍ତେ ସମାନ।

ମୁଁ ସେଥିପାଇଁ ସବୁବେଳେ ଅନୁଭବ କରିଛି, ସାହିତ୍ୟରେ ଶୈଳୀ ଅପେକ୍ଷା ତାହାର ବକ୍ତବ୍ୟ ହେଉଛି ଅଧିକ ମହତ୍ତ୍ୱପୂର୍ଣ୍ଣ।

*୧୮/୭/୮୫*

# ସେମାନେ ଆଉ ଆମେ

ମୁଁ ପ୍ରତ୍ୟକ୍ଷ ରାଜନୀତି ଛାଡ଼ିଲି। କିନ୍ତୁ ରାଜନୀତି ମୋତେ ଛାଡୁନାହିଁ। ସେଦିନର କର୍ମୀମାନେ ବେଳେବେଳେ ଆସୁଛନ୍ତି, ନାନା ଫରିୟାଦ ଓ ସମସ୍ୟା ଘେନି। ସେମାନଙ୍କ ପାଇଁ ମୁଁ ରଖିଛି ଅଧଘଣ୍ଟେ ସମୟ, କପେ ଚା' ଆଉ ଲେଉଟାଣି ବସ୍‌ଖର୍ଚ୍ଚ। ସେତିକିରେ ସେମାନେ ସନ୍ତୁଷ୍ଟ। ଜଣେ କିନ୍ତୁ ପ୍ରତିମାସରେ ଆସନ୍ତି, ପ୍ରାୟ ଶହେ କିଲୋମିଟର ଦୂରରୁ। ଏବେ ରାଜନୀତିର ଯେଉଁ ଅଧୋଗତି ହୋଇଛି, ସେ ସଂପର୍କରେ ତାଙ୍କ ଅଞ୍ଚଳରୁ ନାନା ଘଟଣା ଓ ଉଦାହରଣର ଗୋଟିଏ ତାଲିକା ଦେବାପରେ ନିଜ ଜୀବନର ଦୁଃଖଦୁର୍ଦ୍ଦଶା ସବୁ ବର୍ଣ୍ଣନା କରିଯାଆନ୍ତି। ସେ ଜାଣନ୍ତି ଓ ମୁଁ ବି ଜାଣେ, ମୁଁ ତାଙ୍କ ସମସ୍ୟାର କୌଣସି ସମାଧାନ କରିପାରିବି ନାହିଁ। ତଥାପି ସେ ଆସନ୍ତି। ବୋଧହୁଏ ମୋ' ପାଖରେ ତାଙ୍କର ସମସ୍ୟା ସଙ୍କଟ ସବୁ ଅଜାଡ଼ି ଦେଇଗଲେ, ତାଙ୍କ ମନ ହାଲୁକା ହୋଇଯିବ। ତା'ପରେ ସେ କପେ ଚା' ଓ ସାମାନ୍ୟ ବିଦାକି। ଯଦି ଏଇ ଯତ୍‌କିଞ୍ଚିତ୍ ବିନିମୟରେ ଜଣକ ମୁଣ୍ଡରୁ ଦୁଷ୍ଚିନ୍ତାର ବୋଝ ସାମୟିକ ଭାବରେ ଓହ୍ଲାଇ ଗଲା, ତା'ହେଲେ ମୁଁ ସେଥିପାଇଁ କାର୍ପଣ୍ୟ କରିବି କାହିଁକି ?

ସେ କିନ୍ତୁ ଆଜିକାଲିର ରାଜନୈତିକ କର୍ମୀଙ୍କ ପରି 'ସଫିଷ୍ଟିକେଟେଡ୍' ନୁହନ୍ତି ଦିନେ ତ ସେ କିପରି ହାର୍ଣ୍ଣିଆରେ ଭୋଗୁଛନ୍ତି ଓ ହାର୍ଣ୍ଣିଆ ଫଳରେ ତାଙ୍କର ଅଣ୍ଡକୋଷ କିପରି ବୃଦ୍ଧିପାଇଛି, ତାହା କେବଳ ବର୍ଣ୍ଣନା କଲେ ନାହିଁ ଚାକ୍ଷୁସ ଭାବରେ ସୁଦ୍ଧା ମୋତେ ଦେଖାଇଦେଲେ। ତାପରେ ସେଇ ମାମୁଲି ଦଶଟଙ୍କା ଦେବାପରେ ବିଦାୟ। କିନ୍ତୁ ଆସିବାବେଳେ, ପାଦର ଗତି ଭାରାକ୍ରାନ୍ତ ଥିଲା, ମାତ୍ର ବିଦାୟ ନେବାବେଳେ ଥିଲା ହାଲୁକା। ସରକାରୀ ହିସାବରେ, ସିଏ ଦାରିଦ୍ର୍ୟର ସୀମାରେଖା ତଳେ ନୁହନ୍ତି। ଅର୍ଥାତ୍, ଗ୍ରାମାଞ୍ଚଳରେ ଦୈନନ୍ଦିନ ଖାଦ୍ୟରେ ଯେତିକି କ୍ୟାଲୋରୀ ରହିବା କଥା, ସେତିକି କ୍ୟାଲୋରୀ ସିଏ ଶାଗମୁଗ ସିଝାଇ ଖାଦ୍ୟରୁ ହୁଏତ ପାଉଛନ୍ତି।

କିନ୍ତୁ ମଣିଷ କ'ଣ ବଞ୍ଚେ କେବଳ ଖାଇବାପାଇଁ ? ପୁଅକୁ ବିଶେଷ ପଢ଼ାଇ ପାରିଲେ ନାହିଁ। ବାତରା ହୋଇ ବୁଲୁଛି। ଝିଅଟି ଭଲ ପଢ଼େ। କିନ୍ତୁ ପଢ଼ାଇ ପାରୁନାହାନ୍ତି। ଟାଇପ୍ ଶିଖିଛି। ଚାକିରି ମିଳୁନାହିଁ। ଏ ଯେଉଁ ଦାରିଦ୍ର୍ୟ, ଏ ଦାରିଦ୍ର୍ୟକୁ ହିସାବକୁ ନେଉଛି କିଏ ? ଏହିପରି ଲକ୍ଷ ଲକ୍ଷ ନିମ୍ନ ମଧ୍ୟବିତ୍ତ ଲୋକ ଗାଁ ଗହଳିରେ ଅଛନ୍ତି, ଯେଉଁମାନଙ୍କୁ ମଧ୍ୟ ଦାରିଦ୍ର୍ୟର ସୀମାରେଖା ତଳେ ଥିବା ମଣିଷଙ୍କ ହିସାବକୁ ନିଆଯାଇପାରେ। ସବୁ ଦିଗରୁ ଏମାନେ ଦରିଦ୍ର ସତ, କିନ୍ତୁ ମନ ଏମାନଙ୍କର ଦରିଦ୍ର ବା ସଙ୍କୁଚିତ ନୁହେଁ। ୟାଙ୍କ ଗାଆଁକୁ ବହୁବାର ଯାଇଛି। ସମ୍ପତ୍ତି ଭିତରେ ତାଙ୍କର ତିନିଟା ନଡ଼ିଆ ଗଛ ଆଉ ମାଣେ ଜମି। ଯେତେଥର ତାଙ୍କ ଘରକୁ ଆସିଛି, ସେତେଥର ମୁଁ ଓ ମୋ ସାଙ୍ଗରେ ଥିବା ଲୋକମାନଙ୍କପାଇଁ ନଡ଼ିଆ ଗଛରୁ କାନ୍ଦିଏ ଦି' କାନ୍ଦି ପଇଡ଼ ସଫା କରିଦେଇଛନ୍ତି। କଟୁରୀରେ ପଇଡ଼ କାଟି ଆଦରରେ ନାଳୀ ଖୁଆଇଛନ୍ତି ଇତ୍ୟାଦି ଇତ୍ୟାଦି।

ସେଦିନ ଖରାବେଳଟାଯାକ ଝିପିଝିପି ବର୍ଷା। ଯଥାବିଧି ସେ ଆସି ତଳେ ଚକାପକେଇ ବସିଲେ। ଗପ ଯୋଡ଼ିଦେଲେ। ମୁଁ ପଚାରିଲି ତାଙ୍କ ଆଡ଼ର ଚିହ୍ନା ଲୋକମାନଙ୍କ କଥା। 'ଅମୁକ କିପରି ଅଛନ୍ତି ?'

'ଭାରି ଭଲରେ ଅଛନ୍ତି।'

'କିପରି ?'

"ସ୍ୱାଧୀନତା ସଂଗ୍ରାମୀ ଭତ୍ତା ପାଉଛନ୍ତି, ମାସକୁ ପାଞ୍ଚଶ- ଏମ୍.ଏଲ୍.ଏ. ପେନ୍‌ସନ୍ ତିନିଶ- ପିଲାମାନେ ପାରିଗଲେଣି। କେହି ଘରେ ନାହାନ୍ତି। ବେଶ୍ ଆରାମରେ ଅଛନ୍ତି। ଘରେ ବସି ବସି ଭାଗବତ ପଢୁଛନ୍ତି।' ଇତ୍ୟାଦି।

ସେଇଠୁ ଆସି ପଡ଼ିଗଲା ତାଙ୍କ ନିଜ କଥା। ମୁଁ ଜାଣେ, ଭାରତଛାଡ଼ ଆନ୍ଦୋଳନ ବେଳେ, ୧୯୪୨ ମସିହାରେ, ତାଙ୍କ ଅଞ୍ଚଳରେ ସେ ଗୋଟାଏ ଥାନା ପୋଡ଼ି ସେ ଅଞ୍ଚଳରେ ସ୍ୱାଧୀନତା ଘୋଷଣା କରିଥିଲେ। ତା'ପରେ ଅନ୍ୟଆଡ଼େ ଥାନା ବା ଡାକଘର କିଛି ଗୋଟାଏ ପୋଡ଼ି ସ୍ୱାଧୀନତା ଘୋଷଣା କରିବାର ଯୋଜନାରେ ଅଣ୍ଡର ଗ୍ରାଉଣ୍ଡକୁ ଚାଲିଯାଇଥିଲେ। ସେହିପରି ଅବସ୍ଥାରେ ତାଙ୍କ ସହିତ ହୋଇଥିଲା ମୋର ଆକସ୍ମିକ ପରିଚୟ। ସରକାରଙ୍କ ହିସାବରେ, ସିଏ ତ ସ୍ୱାଧୀନତା ସଂଗ୍ରାମୀ ଭତ୍ତା ପାଇବାର କଥା; ଯଦି କେବେ କୌଣସି କାଳରେ ଦେଶପାଇଁ ସଂଗ୍ରାମର କୌଣସି ମୂଲ୍ୟ ଭତ୍ତା ଆକାରରେ ଦିଆଯାଇପାରେ। ମାତ୍ର ତାଙ୍କଠାରୁ ଶୁଣିଲି, ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ପେନ୍‌ସନ୍ ଦେବାରେ କୁଆଡ଼େ ଦଳ ଓ ଦଳାଦଳି ଚାଲିଛି। ସିଏ ଅମୁକଙ୍କ ସୁନଜରରେ ନାହାନ୍ତି କିମ୍ବା ସମୁକଙ୍କୁ ବଟି ଦେଇପାରିଲେ ନାହିଁ। ମୁଁ ଯଦି ତାଙ୍କୁ କିଛି ସାହାଯ୍ୟ ଦେଇ ପାରନ୍ତି... ଇତ୍ୟାଦି।

ଅତୀତର ସ୍ୱାଧୀନତା ସଂଗ୍ରାମ ଏବେ ହୋଇଛି ଏକ ର୍ୟାକେଟ୍। ମୁଁ ଏହାକୁ ଦେଖିଥିଲି ସେଇ ଅଣ୍ଡର ଗ୍ରାଉଣ୍ଡ ବେଳେ- ଦାରିଦ୍ର୍ୟରେ ପୀଡ଼ିତ, ଅର୍ଦ୍ଧଭୁକ୍ତ। କିନ୍ତୁ ଚେହେରାରେ ଶତସିଂହର ତେଜ। କଣ୍ଠରେ ସେଇ ଆନ୍ଦୋଳନ ଦିନର ଗୀତ- "କହ କହ କେଉଁ ଜାତି ପାଇଛି ମୁକତି, କରି ହାରିହୁରୀ ଗୁହାରୀ?" ସିଏ ଥିଲା ଆନ୍ଦୋଳନର ଦିନ। ମାଟିର ମଣିଷ ସୁଦ୍ଧା ଲୁହାର ମଣିଷରେ ପରିଣତ ହୋଇଥିଲା। ଆଜି କିନ୍ତୁ ସେମାନେ ବୁଲୁଛନ୍ତି ସ୍ୱାଧୀନତା ସଂଗ୍ରାମୀ ଭତ୍ତାପାଇଁ, ଗୁହାରୀ କରିକରି। ଲୁହାର ମଣିଷ ଆଜି ମାଟିର ମଣିଷରେ ପରିଣତ ହୋଇଛି। ଭାରତର ସ୍ୱାଧୀନତା ପରେ, କି କି ସମୃଦ୍ଧି କେଉଁ କ୍ଷେତ୍ରରେ ହୋଇଛି, ତାହାର ଲମ୍ବା ଫର୍ଦ୍ଦ ତ ଦିଆଯାଉଛି। କିନ୍ତୁ ଜୀବନରେ ଯେଉଁ ଗୁଣାତ୍ମକ ଅବକ୍ଷୟ ଘଟିଛି, ତାହାର ହିସାବ ଦେବ କିଏ ? ରଖୁଛି ବା କିଏ?

୦୧/୦୮/୮୪

# ଅପରାଜିତ

ବୁଢ଼ାବୁଢ଼ୀଏ କହିଲେ, ମାଳିକା ବଚନ କ'ଣ ମିଛ ହେବ ? ଅଚ୍ୟୁତାନନ୍ଦ ମାଳିକାରେ କୁଆଡ଼େ ଲେଖାଥିଲା: ଦଳେଇଘାଇ ଭାଙ୍ଗିବ, ବଉଳା କୁମ୍ଭୀର ଝଙ୍କଡ଼ ସାରଳା ଦର୍ଶନକୁ ଯିବ। ପ୍ରକୃତରେ ୧୯୫୫ ମସିହାରେ ସେୟା ହେଲା। କାଠଯୋଡ଼ି ନଈରେ ତକାତକି ହୋଇ ବରଡ଼ା ଘାଇ, ତା'ପରେ ଦଳେଇ ଘାଇ ଭାଙ୍ଗିଲା। ବରଡ଼ା ଘାଇ ଗାଆଁ ପରଠାରୁ ତେଣିକି ବନ୍ୟାର ପ୍ରଖର ସୁଅ। ଶହେ ବର୍ଷ ତଳର ପୁରୁଣା ବରଗଛ ସୁଦ୍ଧା ମୂଳରୁ ଉପୁଡ଼ି ପଡ଼ିଲେ। ଜଗତସିଂହପୁର ସବ୍‌ଡିଭିଜନ୍ ବନ୍ୟାପାଣିରେ ଉବୁଟୁବୁ। ସାରଳାଙ୍କ ମନ୍ଦିର ବେଢ଼ାରେ ସୁଦ୍ଧା ଅଣ୍ଟାଏ ପାଣି। ଚାରିଆଡ଼େ ହାହାକାର। ଭୋକ ଉପାସରେ ସେଦିନ ମଧ୍ୟ ଅନାହାର ମୃତ୍ୟୁର ସମ୍ବାଦ। ଓଡ଼ିଶାର ସରକାର ଅବସ୍ଥା ସମ୍ଭାଳି ପାରୁନାହାନ୍ତି ବୋଲି ଚାରିଆଡ଼େ ନିନ୍ଦା। ମହତାବବାବୁ ସେତେବେଳେ ବମ୍ବେର ରାଜ୍ୟପାଳ। ସେ ମହାବଳେଶ୍ୱର ରାଜଭବନରୁ ବାଲେଶ୍ୱର ଜିଲ୍ଲା ପର୍ଯ୍ୟନ୍ତ ଆସି ଅବସ୍ଥା ପର୍ଯ୍ୟବେକ୍ଷଣ କରି କହିଲେ, "କଟକ ଜିଲ୍ଲାରେ ଆଉ କିଛି ନାହିଁ। ଜିଲ୍ଲା ସାରା ବାଲି ଚରିଗଲାଣି।" ରାଧାନାଥବାବୁ ସେତେବେଳେ ଅର୍ଥମନ୍ତ୍ରୀ। ସେ କ'ଣ କହିଥିଲେ ମନେନାହିଁ। ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ୍ ନେହରୁ ପ୍ରାୟ ପନ୍ଦର ଦିନ ପରେ ଆସିଲେ। ସେତେବେଳକୁ ବି ବନ୍ୟାପାଣି ପୂରାପୂରି ଛାଡ଼ିନାହିଁ।

ରାଜଭବନ ସେତେବେଳେ କଟକ ସହରରେ, ଐତିହାସିକ ଲାଲବାଗ କୋଠାରେ, ଯେଉଁଠି ଏବେ ଶିଶୁଭବନ ହାସପାତାଳ। ପଣ୍ଡିତ ନେହରୁ ସେଇଠାରେ ରହିଲେ। ତାଙ୍କୁ ସାକ୍ଷାତ କରି ପରିସ୍ଥିତି ସଂପର୍କରେ ଅବଗତ କରାଇବାପାଇଁ ଅନେକେ ତ ଆପଏଣ୍ଟମେଣ୍ଟ ଅନୁସାରେ ଆସିଲେ। ମୁଁ ସେତେବେଳେ ପାର୍ଲାମେଣ୍ଟ ରାଜ୍ୟସଭାର ସଭ୍ୟ। ମୁଁ ଆସିଥିଲି ବନ୍ୟାଦୁର୍ଗତଙ୍କ ପରିତ୍ରାଣ କାର୍ଯ୍ୟରେ। ମୁଁ ପଣ୍ଡିତଜୀଙ୍କ ପାଖକୁ ଯିବା ବେଳକୁ ଅପରାହ୍ଣ ୫ଟା। ତାଙ୍କ ରୁମ୍ ଭିତରଟା ଛାଇଛାଇଆ। ପଣ୍ଡିତଜୀ ସେଇମାତ୍ର ହେଲିକେପ୍ଟରରେ ଦଳେଇ ଘାଇର ବନ୍ୟାପ୍ଲାବିତ ଅଞ୍ଚଳ ପରିଦର୍ଶନ ସାରି ଫେରିଥାଆନ୍ତି। ସନ୍ଧ୍ୟାରେ

ବାରବାଟୀ ପଡ଼ିଆରେ ପୁଣି ଏକ ବିରାଟ ସାଧାରଣ ସଭାର ଆୟୋଜନ ହୋଇଛି। ପଣ୍ଡିତଜୀ ସେଥିରେ ଭାଷଣ ଦେବା କଥା। ମାତ୍ର ସିଏ ବ୍ୟସ୍ତବିବ୍ରତ ଥିବା ପରି ଜଣାପଡୁଥାନ୍ତି। ଟେବୁଲ୍ ଉପରେ କନାଦଉଡ଼ିରେ ବନ୍ଧା ଗୋଟିଏ ନଡ଼ନଡ଼ିଆ ଅଣ୍ଟାଭଙ୍ଗା ଟେବୁଲ୍ ଲ୍ୟାମ୍ପ୍। (ନିତ୍ୟ ବନ୍ୟା ଓ ମରୁଡ଼ିକ୍ଲିଷ୍ଟ ଅଣ୍ଟାଭଙ୍ଗା ଓଡ଼ିଶାର ସଙ୍କେତ ବା ଇମେଜ୍)। ସେ ଅସହିଷ୍ଣୁ ଭାବରେ ଲ୍ୟାମ୍ପର ବଟନଟା ଚିପୁଚିପୁ ଲ୍ୟାମ୍ପ୍‌ଟା ତଳେ ପଡ଼ିଗଲା। ମୁହଁରେ ଗୋଟାଏ ଭ୍ରୂକୁଟୀ ଫୁଟାଇ ସେ ଟେବୁଲ୍ ଲ୍ୟାମ୍ପ୍‌ଟା ତଳୁ ଉଠାଉଛନ୍ତି। ଉର୍ଦ୍ଦିପିନ୍ଧା ଜଣେ ଅର୍ଦ୍ଦଳୀ ସେଠାକୁ ଦଉଡ଼ି ଆସିଲା। ପଣ୍ଡିତଜୀ ବିସ୍ଫୋରଣ କରି ଉଠିଲେ, "ଗେଟ୍ ଆଉଟ୍"। ସେ ବିଚରା ପଛକୁ ପଛକୁ ପାଦ ପକାଇ ସେଠାରୁ ପଳାଇ ଆସିଲା। ତାଙ୍କ ରୁଦ୍ରମୂର୍ତ୍ତି ଦେଖି ମୁଁ କିପରି କ'ଣ କଥା ଆରମ୍ଭ କରିବି ବୁଝିପାରିଲି ନାହିଁ। ପଣ୍ଡିତଜୀ ଇଂରାଜୀରେ କହିଲେ, "ମୁଁ ସବୁ ଦେଖିଆସିଲି। ତୁମମାନଙ୍କର ବ୍ୟସ୍ତ ହେବାର କୌଣସି କାରଣ ନାହିଁ।" ମୁଁ କହିଲି, "ଆଉ କ'ଣ ଅଛି ଯେ ଆପଣ ସମ୍ଭାଳିବେ।" ପଣ୍ଡିତଜୀ ସେହିପରି ବିସ୍ଫୋରଣ କରି କହିଲେ, "ଶିଳ୍ପୀ। ଧରିନିଅ ମୁଁ ପ୍ରଧାନମନ୍ତ୍ରୀ ହିସାବରେ ମହାନଦୀ ସିଷ୍ଟମକୁ ପୂରାପୂରି ବନ୍ଧ ପକାଇ ବନ୍ଦ କରିଦେବି ବା ଡାଇଭର୍ଟ କରିଦେବି। ତମର ଏଇ ଉପକୂଳବର୍ତ୍ତୀ ଓଡ଼ିଶା ରାଜସ୍ଥାନର ଥର୍ ମରୁଭୂମି ପାଲଟିଯିବ। ତମକୁ ଏ ବନ୍ୟା ଆଉ ତାର ପ୍ରକୋପକୁ ସ୍ୱୀକାର କରିବାପାଇଁ ପଡ଼ିବ। ଏହାର ମଧ୍ୟ ଗୋଟିଏ ମଙ୍ଗଳମୟ ଦିଗ ଅଛି।" ମୁଁ ନୀରବ। କୋଉ କଥାରୁ ଯାଇ କୋଉ କଥାରେ ପହଞ୍ଚିଲେଣି ପଣ୍ଡିତଜୀ। ତା'ପରେ ସେ ନିଜର ଚନ୍ଦାମୁଣ୍ଡ ଉପରେ ହାତ ବୁଲାଇ ନେଇ କୋମଳ କଣ୍ଠରେ କହିଲେ, "ଦେଖ, ଆଜିର ସଭ୍ୟତା ଗଢ଼ିଉଠିଛି ପ୍ରକୃତି ଆଉ ମଣିଷ ମଧ୍ୟରେ ବହୁ ସଂଗ୍ରାମ ଦେଇ। ପ୍ରକୃତି ଯେତେବାର ମଣିଷକୁ ଧ୍ୱଂସ କରିବାପାଇଁ ଆକ୍ରମଣ କରିଛି, ମଣିଷ ସେତେବାର ପ୍ରକୃତିକୁ ଜୟକରି ନୂଆନୂଆ ବିଜୟ ପତାକା ଉଡ଼ାଇଛି। ଆଜି ବନ୍ୟାରେ ଯାହା ଭାସିଗଲା, ଯୋଉ ଘରସବୁ ଧୋଇଗଲା, ଯୋଉ ଜମିସବୁ ବାଲିଚର ତଳେ ଲୁଚିଗଲା, କାଲିକି ଦେଖିବ ସେହି ମାଟିଘରସବୁ ଇଟାଘର ହୋଇଯାଇଥିବ, କ୍ଷେତସବୁ ପୁଣି ଶସ୍ୟଶ୍ୟାମଳ ହୋଇଉଠିବ। ହାଭ୍ ଫେଥ୍। ନାଓ ଗୋ। ମୋର ଗୋଟାଏ ପବ୍ଲିକ୍ ମିଟିଂ ଅଛି।"

ସେଦିନ କଟକ ସହରର ବାରବାଟୀ ପଡ଼ିଆରେ ଏକ ବିରାଟ ସାଧାରଣ ସଭାରେ ପଣ୍ଡିତଜୀଙ୍କର ଦୀର୍ଘ ଏକ ଘଣ୍ଟା ବ୍ୟାପୀ ଭାଷଣର ଏହାହିଁ ଥିଲା ସାରାଂଶ। ଆଜି କେହି ଆଗ୍ରହୀ ପାଠକ ସେ ଦିନର ଖବରକାଗଜ ପୃଷ୍ଠା ଲେଉଟାଇଲେ, ପଣ୍ଡିତ ନେହରୁଙ୍କର ସେହି ସ୍ମରଣୀୟ ଭାଷଣଟି ଦେଖିପାରିବେ।

ପ୍ରକୃତରେ ୧୯୬୦ ମସିହା ବେଳକୁ ସେବାଟେ ଯିବାଆସିବା କଲାବେଳେ ମୁଁ ଦେଖିଛି, କ୍ଷେତମାନଙ୍କରୁ ବାଲି ସଫା ହୋଇଛି। ପୁଣି ଫସଲ ଅମଳ ହୋଇଛି।

କ୍ଷେତମାନଙ୍କରେ ଇଟାଭାଟିମାନଙ୍କରୁ ଧୂଆଁକୁଣ୍ଡଳୀ ମୋଡ଼ି ଉଠୁଛି। କ୍ରମେ ଉଜୁଡ଼ା ମାଟିଘରସବୁ ପକ୍କା ହେଉଛି। ସବୁଥର ସେ ରାସ୍ତାରେ ଯିବାବେଳେ, ପଣ୍ଡିତ୍‌ଜୀଙ୍କର ସେଇ କଥା ମୁଁ ଯେପରି **ସ୍ପଷ୍ଟ** ଶୁଣିପାରେ। ଦଳେଇଘାଇ ଭାଙ୍ଗିବା ସେ ଅଞ୍ଚଳରେ ଆଜି ବୁଢ଼ୀମା'ମାନେ ସେମାନଙ୍କ ନାତି ନାତୁଣୀମାନଙ୍କୁ ଶୁଣାଉଥିବେ; ନୋହିଲେ ଅଧିକାଂଶ ଭୁଲିଯିବେଣି। କେବଳ ଦଳେଇ ଘାଇର କ୍ଷତଚିହ୍ନ ରୂପେ ଏବେ ସୁଦ୍ଧା ରହିଛି ଦଳେଇଘାଇ ସାମ୍ନା ରାସ୍ତା କଡ଼ରେ ଗୋଟାଏ ପାଣିସିଆର। ସେଠି ଘୋଡ଼ାଦଳ ଆଉ ବେଣାବୁଦା କେତେଟା।

ପଣ୍ଡିତଜୀଙ୍କ ପାଖରୁ ମୁଁ ଶିଖିଛି, ପ୍ରକୃତର ଶତ ଆକ୍ରମଣ ମଧ୍ୟରେ ମନୁଷ୍ୟର ଅପରାଜେୟତା; ପ୍ରକୃତିର ଆକ୍ରମଣ ସାମ୍ନାରେ ପ୍ରୟୋଜନ ସ୍ଥିର ଅବିଚଳିତ ଗାମ୍ଭୀର୍ଯ୍ୟ। ବଞ୍ଚିବା ପାଇଁ ସଂଗ୍ରାମ। ବ୍ୟାକୁଳ ଆର୍ତ୍ତନାଦ ନୁହେଁ କିମ୍ବା ସେ ଆର୍ତ୍ତନାଦରେ କଣ୍ଠ ମିଳାଇବା ନୁହେଁ।

୨୨/୦୮/୮୪

# ଦିନେ ସକାଳେ

ସେଦିନ ସକାଳେ, ମୁଁ ବାହାର ବାରଣ୍ଡାରେ ବସି ଶୂନ୍ୟ ଇଟାଧରା ଦୃଷ୍ଟିରେ ଅଦୂରର ରାସ୍ତା ଆଡ଼େ ଚାହିଁଛି। ଚାରିଆଡ଼େ ସ୍ତବ୍‌ଧତା। ଆକାଶରେ ମେଘସବୁ ସୁଦ୍ଧା ନିଶ୍ଚଳ ହୋଇ ତଳକୁ ବାଦୁଡ଼ିର କ୍ଳାନ୍ତ ଡେଣା ପରି ଝୁଲି ରହିଛନ୍ତି। ମୋତେ ଚାରିପଟେ ଘେରି, ଗୋଟାଏ କ'ଣ କିଛି ହେବ ହେବ ପରି ବାତାବରଣ। କିନ୍ତୁ କିଛି ହେଉନାହିଁ, କିଛି ଘଟୁନାହିଁ। ଯେଉଁ ସକାଳୁଆ ଚଢ଼େଇମାନେ ସାମନା ଘାସ ପଡ଼ିଆରେ ସବୁଦିନେ ଆହାର ଖୋଜନ୍ତି, ସେମାନେ ସୁଦ୍ଧା ନିପତ୍ତା। କେତେଟା ରଙ୍ଗିନ ପ୍ରଜାପତି କେବଳ ଅନୁଛରେ ଘାସପଡ଼ିଆ ଉପରେ ଉଡ଼ିବୁଲୁଛନ୍ତି। ମୋତେ ହଠାତ୍ ଲାଗିଲା, ମୁଁ ଯେମିତି କ୍ରମେ ଗୋଟାଏ ସାଁବାଲୁଆରେ ପରିଣତ ହୋଇଯାଉଛି। ମୋରେ ପାଦଆଡୁ ସାଁବାଲୁଆ ହୋଇଗଲାଣି। ଗ୍ରୀଲ୍ ଦେହରେ ମାଡ଼ିଥିବା ମଧୁମାଳତୀ ଲତାର କଅଁଳିଆ ଛନଛନିଆ ପତ୍ର ଆଉ ଫୁଲପାଖୁଡ଼ା ସବୁ ମୁଁ ମୋର ବିଷାକ୍ତ ଲୋମଶ ପାଦଗୁଡ଼ିକରେ ଝିଙ୍କିଧରି ଗ୍ରାସ କରିଯାଉଛି। ମୁଁ ଅସ୍ଫୁଟ ଆର୍ତ୍ତନାଦ କଲି। ମଧୁମାଳତୀ ଲତା ଉପରେ ଗୋଟାଏ ବୁଢ଼ା ସାଁବାଲୁଆ ଘୁଷୁରି ଘୁଷୁରି ଯାଉଥିଲା, ସେ କହିଲା, "ବନ୍ଧୁ ! ଦୁଃଖ କରୁଛି କି ? ତୁମେ ବି ଦିନେ ସାଁବାଲୁଆ ଖୋଳପା ଛାଡ଼ି ରଙ୍ଗୀନ ପ୍ରଜାପତି ହୋଇ ଉଡ଼ି ବୁଲିବ। ତା' ପୂର୍ବରୁ ଏଇ ଅସ୍ତିତ୍ୱକୁ ବରଂ ଗ୍ରହଣ କରିନିଅ।" ତାରି କଥାରୁ ଜାଣିଲି, ସାଁବାଲୁଆ ମଲା ପରେ ରଙ୍ଗିନ ପ୍ରଜାପତି ହୁଏ। ସେ ପୁଣି ହୁଏ, ତାର ଇଚ୍ଛା ଓ ଚେଷ୍ଟାରେ। ସେ ତାର ବିଷାକ୍ତ ଲାଳକୁ ତାର ଲୋମଶ ପାଦରେ ଅଙ୍କେଇ ବଙ୍କେଇ ଡେଣା ଇତ୍ୟାଦିରେ ପରିଣତ କରେ। ତାପରେ ତାର 'ଜୀନ୍' ତାକୁ ଦେଇଥାଏ ତାର ଡେଣାର ରଙ୍ଗ। ପ୍ରତ୍ୟେକ ସାଁବାଲୁଆର ଭବିତବ୍ୟ ହେଲା- ରଙ୍ଗିନ ପ୍ରଜାପତି।

କିନ୍ତୁ ମଣିଷ କାହିଁକି ଆରମ୍ଭରେ ପ୍ରଜାପତି ହୋଇ, ଶେଷକୁ ସାଁବାଲୁଆରେ ପରିଣତ ହୁଏ, ତାର ରଙ୍ଗିନ ଡେଣାସବୁ ହଜାଇ, ସାଁବାଲୁଆ ପରି ଘୁଷୁରେ- ତାର ଆଦି ଅନ୍ତ ବୁଝିପାରିଲି ନାହିଁ। ମୁଁ ଭାବୁଛି, ଏହା ହିଁ ହେଉଛି ମଣିଷ ଜୀବନର ସବୁଠୁ ବଡ଼ ଟ୍ରାଜେଡ଼ି

ଆଉ ଅଭିଶାପ... ପ୍ରଜାପତିରୁ ସାଁବାଲୁଆ ! ସାଁବାଲୁଆ ବୟସରେ ଯେତିକି ବଢ଼େ, କ୍ରମେ ସେତିକି ସେତିକି ତରୁଣ, ରଙ୍ଗିନ୍; ତାପରେ ଦିନେ ନୀଳ ଆକାଶରେ ଉଡ଼ିଯାଏ ରଙ୍ଗିନ ଡେଣା ମେଲି। ମାତ୍ର ମଣିଷ କ୍ରମେ ବୟସରେ ଯେତିକି ବଢ଼େ, ଧୀରେଧୀରେ ତାର ରଙ୍ଗିନ ଡେଣା ଆଉ ସ୍ୱପ୍ନସବୁ ହରାଇ ଲୋମଶ ପାଦସବୁ ନିଜ ଦେହରୁ ଲମ୍ବାଏ।

ମଣିଷ ଯେତେବେଳେ ଜ୍ଞାନରେ ପରିପକ୍ୱ, ପ୍ରଜ୍ଞାରେ ଗଭୀର ଉପଲବ୍‌ଧିରେ ସମୃଦ୍ଧିମନ୍ତ- ଠିକ୍ ସେତିକିବେଳେ ଆସେ ବାର୍ଦ୍ଧକ୍ୟ, ମୃତ୍ୟୁର ଚିନ୍ତା, ବିଷାଦ, ଅବସାଦ ଓ ଯେତେସବୁ ତୁଚ୍ଛତା। ଅଥଚ, ସାଁବାଲୁଆ କ୍ଷେତ୍ରରେ ଠିକ୍ ତାର ବିପରୀତ। ସାଁବାଲୁଆ ଯେତିକି ବୁଢ଼ା ହୁଏ, ସେତିକି ତା' ଭିତରେ ଆସେ ନୂତନ ସୃଷ୍ଟି ଶକ୍ତି, ନୂତନ ସ୍ୱପ୍ନ, ନୂତନ ସଙ୍କଳ୍ପ।

ପ୍ରସିଦ୍ଧ ନାଟ୍ୟକାର ଜର୍ଜ ବର୍ଣ୍ଣାଡ଼ଶ'ଙ୍କର 'ବ୍ୟାକ୍ ଟୁ ମେଥୁସେଲ୍ଲା' ନାଟକ କଥା ମନେପଡ଼ିଲା। ସେଥିରେ ସେ ମନୁଷ୍ୟପାଇଁ ସମାଧାନ ଦେଇଛନ୍ତି- ମୃତ୍ୟୁହୀନ ଜୀବନ। ମାତ୍ର ମୃତ୍ୟୁହୀନ ଜୀବନର କଳ୍ପନା ମୋ ପକ୍ଷରେ ବଡ଼ ବୋରିଂ। ଅନନ୍ତ କାଳ ପାଇଁ ଏଇ ଦେହ ଧରି ବଞ୍ଚିବାଠାରୁ ବଳି ଅନ୍ୟ ଶାସ୍ତି ନାହିଁ। ସ୍ୱର୍ଗର ଦେବତାମାନେ ବୋଧହୁଏ ସେଥିପାଇଁ ବଞ୍ଚିବାର ବୋରଡ଼ମ୍ ଭାଙ୍ଗିବାପାଇଁ ନନ୍ଦନକାନନ, ପାରିଜାତ, ମେନକା ଓ ଅନ୍ୟ ବିଦ୍ୟାଧରୀମାନଙ୍କୁ ସୃଷ୍ଟି କରିଅଛନ୍ତି। ତଥାପି ସେମାନେ ସୁଦ୍ଧା ଅନନ୍ତଜୀବନର ଚିଟାରୁ ମୁକ୍ତ ନୁହନ୍ତି। ସେଥିପାଇଁ ସେମାନେ ବେଳେବେଳେ ମର୍ତ୍ତ୍ୟଲୋକରେ ଜନ୍ମ ନିଅନ୍ତି। ତେଣୁ ମୃତ୍ୟୁହୀନ ଜୀବନରେ ମଣିଷ ଜୀବନର ଏଇ ଟ୍ରାଜେଡ଼ିରୁ ମୁକ୍ତି ନାହିଁ।

ଦୀର୍ଘଶ୍ୱାସ ପକାଇ ମୁଁ ପ୍ରଜାପତିମାନଙ୍କ ଆଡ଼େ ଚାହିଁଲି। ହଁ, ମୁଁ ମଧ୍ୟ ଦିନେ ଏଇ ଖୋସା ଛାଡ଼ି, ଏଇ ରଙ୍ଗିନ ପ୍ରଜାପତି ପରି ମହାଶୂନ୍ୟକୁ ଉଡ଼ିଯିବି। କିନ୍ତୁ ଦୁଃଖ ହେଉଛି, ଉଡ଼ିଯିବ ମୋର ବିଦେହୀ ଆତ୍ମା, କିନ୍ତୁ ଏ ଦେହ ନୁହେଁ। ଏଇ ଦେହରେ ମୁଁ ସେ ନବଜୀବନର ଲୀଳା ଆସ୍ୱାଦନ କରିପାରିବି ନାହିଁ।

କର୍କଶ ସ୍ୱରରେ ଟେଲିଫୋନ୍ ବାଜିଲା। ମୋର ଭାବନାର ଖିଅ ଛିଡ଼ିଗଲା।

୨୯/୦୮/୮୫

# ଅଶୋକ, ଅଶୋକା ଓ ସତ୍ୟମେବ ଜୟତେ !

ସ୍ୱାଧୀନତାପ୍ରାପ୍ତି ପୂର୍ବରୁ, ରାଜା ରାମ ଥିଲେ ଆମ ରାଷ୍ଟ୍ରଚେତନାର ଇଷ୍ଟପୁରୁଷ। ସେହି ସୂତ୍ରରେ, ଆମେ ସ୍ଲୋଗାନ୍ ଦେଉଥିଲୁ-ସ୍ୱରାଜ୍ୟ ମାନେ ରାମରାଜ୍ୟ; ଯେଉଁଠି ସତ୍ୟ, ସାଧୁତା ଓ ନ୍ୟାୟର ପ୍ରତିଷ୍ଠା। କିନ୍ତୁ ସ୍ୱାଧୀନତା ପ୍ରାପ୍ତିପରେ, ଆମର ସମ୍ବିଧାନର ପିତୃପୁରୁଷମାନେ ଅଶୋକସ୍ତମ୍ଭକୁ ଆମର ରାଷ୍ଟ୍ରୀୟ ସଂକେତ ରୂପେ ଗ୍ରହଣ କରିବାଦ୍ୱାରା ସମ୍ରାଟ ଅଶୋକ ହୋଇ ଉଠିଲେ ଆମ ରାଷ୍ଟ୍ର ଚେତନାର ଇଷ୍ଟପୁରୁଷ। ଅବଶ୍ୟ, ସେହି ଅଶୋକସ୍ତମ୍ଭ ଉପରେ ପିନ୍ଧାଇଦିଆଗଲା 'ସତ୍ୟମେବ ଜୟତେ'ର ଚିତା-ତିଳକ। (ଯଦ୍ୟପି ସେହି ସମ୍ରାଟ ଅଶୋକଙ୍କର ସ୍ମୃତି ଏବେ ଜୀବନ୍ତ ରଖାଯାଇଛି ନୂଆଦିଲ୍ଲୀର 'ହୋଟେଲ ଅଶୋକା'ରେ ଇଏ 'ଅଶୋକା' ଜଣେ ମହିଳାଙ୍କ ନାମ ମଧ୍ୟ ହୋଇପାରେ।

କିନ୍ତୁ ଆଇ.ଟି.ଡି.ସି. ବାଲାଙ୍କୁ ପଚାରିଲେ, ସେମାନେ କହିବେ, ସମ୍ରାଟ ଅଶୋକଙ୍କ ନାମରେ ହୋଟେଲ୍ ଅଶୋକା ତିଆରି ହୋଇଛି। ସମ୍ରାଟ ଅଶୋକଙ୍କ ନାମରେ ହୋଟେଲ୍ ଅଶୋକା ତିଆରି ହୋଇଛି। ସମ୍ରାଟ ଅଶୋକ କିପରି ହୋଟେଲ୍ ଅଶୋକା ହେଲେ, ତାହାର ଉତ୍ତର କେହି କିନ୍ତୁ ଦିଲ୍ଲୀରେ ଦେଇପାରନ୍ତି ନାହିଁ।) ସମ୍ରାଟ ଅଶୋକଙ୍କୁ ଧର୍ମାଶୋକ ବୋଲି ମୁଣ୍ଡରେ ମୁଣ୍ଡାଇ, ଅନ୍ୟମାନେ ସଂକୀର୍ତ୍ତନ କରିପାରନ୍ତି, କିନ୍ତୁ ମୁଁ ତାଙ୍କୁ ଦେଖିଛି ଭିନ୍ନ ଦୃଷ୍ଟିରେ। ଚଣ୍ଡାଶୋକ, ବହୁ ନରମେଧ ଯଜ୍ଞସମ୍ଭୂତ ନିଜର ଦିଗ୍‌ବିଜୟକୁ ଠୁଳୀଭୂତ କରିବା ଉଦ୍ଦେଶ୍ୟରେ କେବଳ ବୌଦ୍ଧଧର୍ମର ନାମାବଳୀ ଦେହ ଉପରେ ଢାଙ୍କି, ଧର୍ମାଶୋକ ବୋଲାଇଥିଲେ ବୋଲି ମୋର ଧାରଣା। ଧର୍ମର କିମିଆରେ ସେ ଭାରୀତୟମାନଙ୍କୁ ବଶୀଭୂତ କରି ନଥିଲେ, ଏତେ ସହଜରେ, ବିଦ୍ରୋହର ସାମ୍ନା ନକରି ସାମ୍ରାଜ୍ୟ ରକ୍ଷା କରିପାରି ନଥାନ୍ତେ। ଔପନିବେଶିକ ବ୍ରିଟିଶ୍ ସେନାପତିମାନେ ଯେପରି ପ୍ରଥମେ ପାଦ୍ରୀମାନଙ୍କୁ ପଠାଇ, ସାମ୍ରାଜ୍ୟର ରାସ୍ତା ସଫା କରିଥିଲେ, ସମ୍ରାଟ ଅଶୋକଙ୍କର ଧର୍ମ ମହାମାତ୍ରାମାନେ ଠିକ୍ ତାହା ହିଁ କରିଥିଲେ। ଯେଉଁ ଚଣ୍ଡାଶୋକ

ପୈଶାଚିକ ରକ୍ତ ପିପାସାରେ ଲକ୍ଷେ କଳିଙ୍ଗାଧିବାସୀଙ୍କୁ ହତ୍ୟାକରି ଦୟାର ଜଳବେଣୀକୁ ଲାଲ୍ କରିଥିଲେ, ସେ କଦାପି ଧର୍ମାଶୋକ ହୋଇ ନପାରନ୍ତି। କଲରାପତରିଆ ବାଘର ଚିତା କଦାପି ବଦଳେ ନାହିଁ।

ଅଶୋକ ସ୍ତମ୍ଭଟି ସିଂହ ବା ଶ୍ୱାପଦର ଛଅଟା ମିଶାମିଶି ଗୋଡ଼ର ଆଙ୍ଗିକରେ ନିର୍ମିତ। ଏହାର ଅଗ୍ରଭାଗରେ ତିନୋଟି ସିଂହ ମୁଣ୍ଡ। ସ୍ତମ୍ଭ ତଳେ କିନ୍ତୁ ଗୌତମ ବୁଦ୍ଧଙ୍କର ଧର୍ମଚକ୍ର ଅଙ୍କିତ। (ଏହି ଧର୍ମଚକ୍ରକୁ କେହି କେହି ଗାନ୍ଧିଜୀଙ୍କର ଅରଟ ଚକ୍ର ବୋଲି ମଧ୍ୟ ଚିହ୍ନାଉଥାଆନ୍ତି।)ଯାହାହେଉ ଏହି ପରିକଳ୍ପନାର ଅନ୍ତର୍ନିହିତ ଭାବବସ୍ତୁ ସଂପର୍କରେ ମୁଁ ବହୁ ଦିନ ଚିନ୍ତା କରିଛି, ଏହାର ନିହିତାର୍ଥ କ'ଣ ହୋଇପାରେ ? ମୁଁ ଏହି ସଙ୍କେତ ମଧ୍ୟରେ ଦେଖିଛି, ପଶୁଶକ୍ତି ଧର୍ମଶକ୍ତିକୁ ପଦଦଳିତ କରିବାର ବ୍ୟଞ୍ଜନା। ମିଥ୍ୟା, ଅନ୍ୟାୟ, ଭ୍ରଷ୍ଟାଚାର ଓ ପଶୁଶକ୍ତି, ସତ୍ୟ, ନ୍ୟାୟ, ସଦାଚାର ଓ ଦେବଶକ୍ତିକୁ କବଳିତ କରି ବିଜୟ ଘୋଷଣା କରିବାର ଦୀପସ୍ତମ୍ଭ ହେଉଛି, ମୋ ଦୃଷ୍ଟିରେ, ଅଶୋକସ୍ତମ୍ଭ। ଏହି ନିଷ୍ଠୁର ବିରୋଧାଭାସ ଉପରେ ହିଁ ପିନ୍ଧାଇ ଦିଆଯାଇଛି କିନ୍ତୁ 'ସତ୍ୟମେବ ଜୟତେ'ର ଚିତାତିଳକ। 'ସତ୍ୟମେବ ଜୟତେ' ସହିତ ଅଶୋକସ୍ତମ୍ଭ ଯେ ସଂପୂର୍ଣ୍ଣ 'ଗରମିଲ୍'- ସେଥିରେ ସନ୍ଦେହ ନାହିଁ। ସେଥିପାଇଁ ସ୍ୱାଧୀନୋତ୍ତର ଭାରତବର୍ଷରେ, ଆଦର୍ଶ ଘୋଷଣା ପ୍ରକାରେ, ପ୍ରକୃତ କାର୍ଯ୍ୟ ହେଉଛି ଅନ୍ୟ ପ୍ରକାରେ। ଏଥିପାଇଁ ବିଚରାଳୟମାନଙ୍କରେ 'ସତ୍ୟମେବ ଜୟତେ' ସଙ୍କେତ ଆଗରେ ଠିଆହୋଇ, ମିଛସାକ୍ଷୀ ଓ ଟରଣୀଗିରିକୁ ବିଚାରପତିମାନେ କର୍ଣ୍ଣଡେରି, ନ୍ୟାୟ ବିଚାର ଦେଇଥାଆନ୍ତି। ଏହି 'ସତ୍ୟମେବ ଜୟତେ'କୁ ସାକ୍ଷୀ ରଖି ଡାକ୍ତରଖାନାରେ ଅସହାୟ ରୋଗୀମାନେ ଟୋପାଏ ଔଷଧ ଆଉ ଚିକିତ୍ସା ନପାଇ ପ୍ରାଣ ଛାଡ଼ନ୍ତି। ଏହି 'ସତ୍ୟମେବ ଜୟତେ' ଆଢ଼େ ଚାହିଁ ଶିକ୍ଷାୟତନମାନଙ୍କରେ ପରୀକ୍ଷାର୍ଥୀମାନେ ନିର୍ଧୁମ୍ କପି ଚଳାଇ ପାଶ୍ କରନ୍ତି। ଏହି 'ସତ୍ୟମେବ ଜୟତେ'କୁ ସାକ୍ଷୀରଖି ଅପମିଶ୍ରଣକାରୀ ଖାଦ୍ୟରେ ବିଷ ମିଶାଏ। ଆଉ 'ସତ୍ୟମେବ ଜୟତେ' ଠେଙ୍ଗାରେ ମୁଣ୍ଡ ମଧ୍ୟ ଫାଟେ ପ୍ରଚୁର।

ଏସବୁ ବିଡ଼ମ୍ବନାର ମୂଳ କାରଣ ଖୋଜି କେହି ବିସ୍ମିତ ହେବା ଉଚିତ ନୁହେଁ। କାରଣ ଆମର ସମ୍ବିଧାନ ପ୍ରଣେତାମାନେ ପଶୁଶକ୍ତିର ବିଜୟ ସଙ୍କେତ ଅଶୋକସ୍ତମ୍ଭକୁ ଆମର ରାଷ୍ଟ୍ରସଙ୍କେତ ରୂପେ ଗ୍ରହଣ କରିବାଦ୍ୱାରା ହିଁ ସ୍ୱାଧୀନୋତ୍ତର ଭାରତର ଏସବୁ ପରିବର୍ତ୍ତନ ସାଧାରଣ ବ୍ୟାପାର ହେବ ବୋଲି ଯେପରି ଆଗରୁ ସାବଧାନ କରିଦେଇଥିଲେ।

୧୨/୯/୮୪

# ସର୍ବେଷାଂ ନୋ ଜନନୀ ଭାରତ

ଗୀତାରେ ଅର୍ଜୁନ ଶ୍ରୀକୃଷ୍ଣଙ୍କୁ ପ୍ରଶ୍ନ କରିଥିଲେ, ଜ୍ଞାନଯୋଗ ଓ କର୍ମଯୋଗ ମଧ୍ୟରେ କେଉଁଟି ଭଲ। ଶ୍ରୀକୃଷ୍ଣ ତାତ୍ତ୍ୱିକ ଅର୍ଥରେ ଅର୍ଜୁନଙ୍କୁ ଉତ୍ତର ଦେଇଥିଲେ- କେହି ଖରାପ ନୁହନ୍ତି; ଉଭୟ ଭଲ। ଗୀତାରେ ଶ୍ରୀକୃଷ୍ଣଙ୍କର ସବୁ ତତ୍ତ୍ୱ ଓ ଉଚ୍ଚାରଣ ବ୍ରହ୍ମାଭିମୁଖୀ ଥିବା ଦୃଷ୍ଟିରୁ ଏହି ଆପାତ-ବିରୋଧୀ ଦୁଇ ଦୃଷ୍ଟିକୋଣରେ କୌଣସି ବିଭ୍ରାନ୍ତି ନାହିଁ। ଗୀତାର ନିଗୂଢ଼ ରହସ୍ୟ ଭାରତୀୟମାନେ ସମସ୍ତେ ବୁଝିଥାଆନ୍ତୁ କି ନାହିଁ- ଏଇ କଥାରୁ ସବୁ କଥାରେ "ଦୋ' ନମ୍ବରୀ" ହେବା ଭାରତୀୟ ଚରିତ୍ରର ଆଭିମୁଖ୍ୟରେ ପରିଣତ ହୋଇଯାଇଛି। ଦୋ' ନମ୍ବରୀ ଚିନି ଚାଉଳ ଗହମଠାରୁ ଆରମ୍ଭକରି ଦୋ' ନମ୍ବରୀ କାରବାର, ଦୋ' ନମ୍ବରୀ ହିସାବ, ଦୋ'ନମ୍ବରୀ ଧନ୍ଦା ଆମ ଦେଶରେ ବର୍ତ୍ତମାନ ସ୍ୱାଭାବିକ ରୀତିରେ ପରିଣତ ହୋଇଗଲାଣି।

ଆଶ୍ଚର୍ଯ୍ୟର କଥା, ଭାରତର ମଧ୍ୟ ଦୁଇଗୋଟି ଜାତୀୟ ସଂଗୀତ- ବନ୍ଦେମାତରଂ ଓ ଜନଗଣମନ ଅଧିନାୟକ ! ପୃଥିବୀର ଆଉ କେଉଁ ଦେଶରେ ଦୁଇଟି ଜାତୀୟ ସଂଗୀତ ଅଛି, ମୁଁ ଜାଣେ ନାହିଁ। (ଯଦି ଥାଏ, କୌଣସି ପାଠକ ଦୟାକରି ମୋତେ ଜଣାଇଲେ ଅନୁଗୃହୀତ ହେବି। ତଥାପି ଆମର ଶାସନ ବିଧାୟକ ସଭା ଏ ଦୁଇଟିଯାକ ସଙ୍ଗୀତକୁ ଜାତୀୟ ସଂଗୀତର ମର୍ଯ୍ୟାଦା ଦେଇଛନ୍ତି ! ବର୍ତ୍ତମାନ "ଆନ୍ଦୋଳନର ରାଜ୍ୟ" କେରଳରେ ତ୍ରିଚୂର ଜିଲ୍ଲାର ଗୋଟିଏ ସ୍କୁଲ୍‌ର ପ୍ରଧାନଶିକ୍ଷକ ଏମ୍.ଭି. କୃଷ୍ଣଓୟାରିଅର 'ଜନଗଣମନ' ଜାତୀୟ ସଙ୍ଗୀତକୁ ବାତିଲ କରିବାପାଇଁ ଗୋଟିଏ ଆନ୍ଦୋଳନ ଆରମ୍ଭ କରିଦେଇଛନ୍ତି। ତାଙ୍କର ଆପତ୍ତି ହେଉଛି, ଏହି ସଙ୍ଗୀତଟି ଆଦୌ ଦେଶାତ୍ମବୋଧକ ନୁହେଁ। ଅପରପକ୍ଷରେ ଏଥିରେ ଅଛି ପୂର୍ବତନ ବ୍ରିଟିସ୍ ସମ୍ରାଟ ପଞ୍ଚମ ଜର୍ଜଙ୍କର ଜୟଗାନ। ଓୟାରିଅରଙ୍କ ଏ ଆପତ୍ତିଟି ନୂଆ ନୁହେଁ। ବସ୍ତୁତଃ ସ୍ୱୟଂ ରବୀନ୍ଦ୍ରନାଥଙ୍କର ଜୀବଦ୍ଦଶାରେ, ବଙ୍ଗଳାରେ ସୁଦ୍ଧା ଏହି ସଙ୍ଗୀତ ଘେନି ବହୁ ବିତର୍କର ସୂତ୍ରପାତ ହୋଇଥିଲା। ସମ୍ରାଟ ପଞ୍ଚମ ଜର୍ଜଙ୍କର ଭାରତ ଆଗମନ ଅବକାଶରେ ତାଙ୍କରି ଉଦ୍ଦେଶ୍ୟରେ ଏହି ସଙ୍ଗୀତଟି ରଚିତ ହୋଇଥିଲା ବୋଲି ବଙ୍ଗଳାର ବହୁ ବିଶିଷ୍ଟ ସାହିତ୍ୟିକ ମତ ପ୍ରକାଶ କରିଛନ୍ତି। "ଜନଗଣମନ

ଅଧିନାୟକ" ପ୍ରଶସ୍ତିଟି ନିଶ୍ଚିତଭାବରେ ଅମିତ କ୍ଷମତାଶାଳୀ ଜଣେ ସମ୍ରାଟଙ୍କ ଉଦ୍ଦେଶ୍ୟରେ ପ୍ରଯୁଜ୍ୟ ହୋଇପାରେ ସିନା, ଏହା କିନ୍ତୁ କଦାପି ଦେଶବନ୍ଦନା ହୋଇ ନପାରେ। ଆଶ୍ଚର୍ଯ୍ୟର କଥା ଶାସନ ବିଧାୟକ ସଭାରେ ଏହି ସଙ୍ଗୀତଟିକୁ ସ୍ୱାଧୀନ ଭାରତର ଜାତୀୟ ସଙ୍ଗୀତରୂପେ ଗ୍ରହଣ କଲାବେଳେ, ଏଥିପ୍ରତି କାହାର ଦୃଷ୍ଟି ପଡ଼ି ନଥିଲା। ଯଦିବା ଏହାକୁ ଜାତୀୟ ସଙ୍ଗୀତରୂପେ ଗ୍ରହଣ କରାଗଲା, ତା'ହେଲେ ପୁଣି ବନ୍ଦେମାତରଂକୁ ଦୋ' ନମ୍ବରୀ ଜାତୀୟ ସଙ୍ଗୀତରେ ପରିଣତ କରି ବଙ୍କିମ ଚନ୍ଦ୍ରଙ୍କର ଏହି ମହାନ୍ ସଙ୍ଗୀତର ଅମର୍ଯ୍ୟାଦା କରାଗଲା କାହିଁକି ? ମୁଁ ଜାଣେ, ଭାରତରେ, ଅନେକ ପ୍ରଶ୍ନର ଯୁକ୍ତିସମ୍ମତ ଉତ୍ତର ଖୋଜିଲେ ମିଳିବ ନାହିଁ। କାରଣ ଆମ ଦେଶର ଚିନ୍ତା ବିଚାର ସୁଦ୍ଧା ବିମିଶ୍ରିତ।

କିନ୍ତୁ ହୋମଡ଼ାଚୋମଡ଼ାମାନେ ଆସିଲେ କାହିଁକି ଯେ, ଜାତୀୟ ସଙ୍ଗୀତ ବୋଲାଯିବ ଓ ଦେଶାତ୍ମବୋଧରେ ଉତ୍‌ଫୁଲ୍ଲ ହେବା ପରିବର୍ତ୍ତେ, ସମସ୍ତେ କାହିଁକି ଶୋକସଭାରେ ଠିଆହେବା ପରି ଠିଆହେବାକୁ ବାଧ୍ୟ- ଏହାର ଯୁକ୍ତିସମ୍ମତ କାରଣ ମୁଁ ଖୋଜି ପାଇନାହିଁ। ଇଏ ତ ଦେଶ-ବନ୍ଦନା ନୁହେଁ; ବରଂ ଜଣେ କର୍ତ୍ତାପୁରୁଷଙ୍କ ବନ୍ଦନା । ଏସବୁ ଅଷ୍ଟାଦଶଊନବିଂଶ ଶତାବ୍ଦୀରେ 'ନେସନ୍ ଷ୍ଟେଟ୍' ସବୁ ଗଢ଼ିଉଠୁଥିବା ବେଳେ, ରାଜନୈତିକ ପୌତ୍ତଳିକତାର ଉପଚାର ହୋଇଥାଇ ପାରେ, ମାତ୍ର ଆଜିର ଗଣତାନ୍ତ୍ରିକ ମେଜାଜ୍‌ରେ ଜଣେ ରାଜପୁରୁଷଙ୍କପାଇଁ ଦେଶବନ୍ଦନା ଛଳରେ ବ୍ୟକ୍ତିବନ୍ଦନା ମୋତେ କେବେ ଅନୁପ୍ରାଣିତ କରିପାରିନାହିଁ। ମୋ ମତରେ ତେଣୁ ଏ ପ୍ରକାର ଜାତୀୟସଙ୍ଗୀତ ବୋଲାଯିବା ବେଳେ, କେହି ଯଦି ଶୋକ ସଭାରେ ଠିଆହେବା ପରି ଠିଆ ନହୁଅନ୍ତି, ତା'ହେଲେ ତାଙ୍କୁ ସେଥିପାଇଁ ବାଧ୍ୟ କରାଯିବା ଉଚିତ ନୁହେଁ।

ଦେଶବନ୍ଦନାପାଇଁ ଯଦି ଜାତୀୟ ସଙ୍ଗୀତର ପ୍ରୟୋଜନ ଥାଏ, ତା'ହେଲେ କବିବର ରାଧାନାଥଙ୍କର 'ସର୍ବେଷାଂ ନୋ ଜନନୀ ଭାରତ ଧରଣୀ କଲ୍‌ପଲତେୟମ୍' ହେଉଛି ସର୍ବଶ୍ରେଷ୍ଠ ଜାତୀୟସଙ୍ଗୀତ। ବନ୍ଦେ ମାତରଂ'ରେ ବରଂ କେହି ସନ୍ଧାନ କରିପାରନ୍ତି ସାମ୍ପ୍ରଦାୟିକତାର ପ୍ରଲେପ; କିନ୍ତୁ 'ସର୍ବେଷାଂ ନୋ ଜନନୀ ଭାରତ ଧରଣୀ କଳ୍ପଲତେୟମ୍' ସାମ୍ପ୍ରଦାୟିକତାର ବହୁ ଊର୍ଦ୍ଧ୍ୱରେ। ଏହା ନିଶ୍ଚିତ କଥା, ରାଧାନାଥ ବଙ୍ଗଦେଶରେ ଜନ୍ମହୋଇ ଏହି ସଙ୍ଗୀତଟି ଲେଖିଥିଲେ, ତାହା ନିଶ୍ଚିତ ସମ୍ବିଧାନପ୍ରଣେତାମାନଙ୍କର ଦୃଷ୍ଟି ଆକର୍ଷଣ କରିପାରିଥାଆନ୍ତା। ଓଡ଼ିଶାର ସବୁଥାଇ କିଛି ନଥାଏ। ଓଡ଼ିଶାର ଭାଗ୍ୟ ପଥରତଳେ। ତେଣୁ କବିବର ରାଧାନାଥ ଉପେକ୍ଷିତ ହୋଇଥିବାରେ ମୁଁ ବିସ୍ମିତ ନୁହେଁ। କିନ୍ତୁ କେହି ଯଦି ଏହି ସଙ୍ଗୀତଟିକୁ ଜାତୀୟ ସଙ୍ଗୀତରୂପେ ଗୃହୀତ କରାଇବାପାଇଁ ଆନ୍ଦୋଳନ କରନ୍ତି, ତା'ହେଲେ ମୁଁ ସେଥିରେ ସାମିଲ ହେବାପାଇଁ ଅଗ୍ରୀମ ପ୍ରତିଶ୍ରୁତି ଦେଉଛି।

୨୬/୦୯/୮୫

# ମୂଲ୍ୟ ବନାମ ମୂଲ୍ୟବୋଧ

ମହାଭାରତର କୌରବ ପକ୍ଷରୁ ଦୁର୍ଯ୍ୟୋଧନ ଓ କର୍ଣ୍ଣ ମୋ ମନରେ ଯେତେ ବେଶୀ ରେଖାପାତ କରନ୍ତି ପାଣ୍ଡବ ପକ୍ଷରୁ ଧର୍ମପୁତ୍ର ଯୁଧିଷ୍ଠିର ଅଥବା ଅର୍ଜୁନ ସେତେ ବେଶୀ ରେଖାପାତ କରନ୍ତି ନାହିଁ। ମହାମାନ୍ୟ ଦୁର୍ଯ୍ୟୋଧନ ସବୁଠାରୁ ବଡ଼ 'ଆଗ୍ନୋଷ୍ଟିକ୍'। ଶ୍ରୀକୃଷ୍ଣ ମହାଭାରତ ଯୁଦ୍ଧ ପୂର୍ବରୁ ତାଙ୍କୁ ଯୁଦ୍ଧ ଓ ଶାନ୍ତି, ଧର୍ମ ଓ ଅଧର୍ମ, ନ୍ୟାୟ ଓ ଅନ୍ୟାୟ ସଂପର୍କରେ ବହୁ ତତ୍ତ୍ୱ ବୁଝାଇଲେ। ସବୁ ଶୁଣିବା ପରେ ଦୁର୍ଯ୍ୟୋଧନ କହିଲେ, "ହେ ଶ୍ରୀକୃଷ୍ଣ ! ଧର୍ମ କ'ଣ ମୁଁ ବୁଝିଛି। ତୁମେ ବୁଝାଇବାର ପ୍ରୟୋଜନ ନାହିଁ। କିନ୍ତୁ ଧର୍ମରେ ମୋର ପ୍ରବୃତ୍ତି ନାହିଁ। ତୁମେ ଅନ୍ତର ପୁରୁଷ, ମୋର ଅନ୍ତରରେ ରହି, ଯେତେବେଳେ ଯେଉଁଥିରେ ମୋତେ ନିଯୁକ୍ତ କରୁଛ, ମୁଁ କେବଳ ତାହାହିଁ କରିଚାଲିଛି।

"ଜାନାମି ଧର୍ମଂ ନଚମେ ପ୍ରବୃତ୍ତି
ଜାନାମ୍ୟ ଧର୍ମ ନଚମେ ନିବୃତ୍ତି
ତ୍ୱୟା ହୃଷୀକେଶ ହୃଦି ସ୍ଥିତେନ
ଯଥା ନିଯୁକ୍ତୋସ୍ମି ତଥା କରୋମି !"

ଏ ସଂଶୟବାଦ ନୁହେଁ, ବିଶ୍ୱାସ ବି ନୁହେଁ; ଅବିଶ୍ୱାସ ମଧ୍ୟ ନୁହେଁ। ସବୁରି ଊର୍ଦ୍ଧ୍ୱରେ ଇଏ ଏକ ଅକପଟ ମାନବବାଦୀ ଉଚ୍ଚାରଣ। ଏଥିରେ ଯୁଧିଷ୍ଠିରଙ୍କ ବକଧର୍ମିତା ନାହିଁ।

ପୁଣି କର୍ଣ୍ଣ।...

ବଜ୍ରକଠୋର ଶପଥ ନେଲେ, ଆଜି ସୂର୍ଯ୍ୟାସ୍ତ ପୂର୍ବରୁ ଅର୍ଜୁନଙ୍କୁ ସେ ବଧ କରିବେ। କର୍ଣ୍ଣଙ୍କର ପାଞ୍ଚାଳିପ୍ରତି ଥିଲା ଅନୁରାଗ। ସେଥିପାଇଁ ଅର୍ଜୁନଙ୍କ ପ୍ରତି ମଧ୍ୟ ଈର୍ଷା। ଶ୍ରୀକୃଷ୍ଣ ସେଇ ନିଭୃତ ରହସ୍ୟ ଜାଣି କର୍ଣ୍ଣାର୍ଜୁନ ଯୁଦ୍ଧ ପୂର୍ବରୁ, କର୍ଣ୍ଣଙ୍କୁ ଶେଷରେ କହିଲେ, "ତୁମେ କାହିଁକି ଯୁଦ୍ଧ କରିବ ? ରାଜ୍ୟ ତ ସବୁ ପାଇବ।। ତା' ଛଡ଼ା ଷଡ଼ରାତ୍ରିରେ ତୁମେ ପାଞ୍ଚାଳୀକୁ ମଧ୍ୟ ପାଇବ। କାରଣ ତୁମେ ଅଗ୍ରପାଣ୍ଡବ।"

କର୍ଣ୍ଣ ସ୍ମିତ ହସି ଉତ୍ତର ଦେଲେ, "ଶ୍ରୀକୃଷ୍ଣ ! ମୋତେ ଯାହା କହିଲ, କହିଲ। ଭୁଲ୍‌ରେ ସୁଦ୍ଧା ମୁଁ ଅଗ୍ରପାଣ୍ଡବ ବୋଲି ଯୁଧିଷ୍ଠିରକୁ କେବେ କହିବ ନାହିଁଟି ! ସିଏ ମହା ଧର୍ମଭୀରୁ। ତୁମ କଥା ଶୁଣିଲେ ଦ୍ରୌପଦୀ ସମେତ ସବୁ ଆଣି ମୋ ମୁଣ୍ଡରେ ଲଦିଦେବ। ଆଉ, ମୁଁ ସେସବୁ ବା ନେଇ କ'ଣ କରିବି ? ମୁଁ ସେଇ ଦୁର୍ଯ୍ୟୋଧନକୁ ହିଁ ଅର୍ପଣ କରିଦେବି।"

ଶ୍ରୀକୃଷ୍ଣ ଫେରିଗଲେ।

ତା'ପରେ କୁନ୍ତୀ ମଧ୍ୟ କର୍ଣ୍ଣଙ୍କୁ ଅଗ୍ରପାଣ୍ଡବ ବୋଲି ସ୍ୱୀକାର କରି ସମଗ୍ର ରାଜ୍ୟ, ଧନସମ୍ପଦ ଓ ଯଶର ଲୋଭ ଦେଖାଇ ଯୁଦ୍ଧରୁ ନିବୃତ୍ତ ହେବାପାଇଁ ଅନୁରୋଧ କଲେ। କର୍ଣ୍ଣ କିନ୍ତୁ ଉତ୍ତର ଦେେ, "ଜନନୀ ! ଧନଲୋଭ, ରାଜ୍ୟଲୋଭ, ଯଶଲୋଭରେ ମୋତେ ବୀରର ସଦ୍‌ଗତିରୁ ଭ୍ରଷ୍ଟ ହେବାକୁ ଦିଅନାହିଁ। ଯୁଦ୍ଧକ୍ଷେତ୍ରରେ ମୁଁ ଚାହେଁ ବୀରର ସଦ୍‌ଗତି। ଅର୍ଥାତ୍, ମୃତ୍ୟୁ !"

ଏହିପରି ମୂଲ୍ୟବୋଧ ଓ ଚରିତ୍ରବତ୍ତା ଉପରେ ହିଁ ମହାଭାରତର ଇତିହାସ, ଯଶ, କୀର୍ତ୍ତି, ଗର୍ବ, ଗୌରବ ଦିନେ ନିର୍ଜିତ ହୋଇଥିଲା; ସାମାନ୍ୟ ମନୋଭାବରେ ନୁହେଁ। ଆଜି ଭାରତର ନବଜାଗରଣ ବେଳେ, କମ୍ପ୍ୟୁଟର ବା ନିତ୍ୟନୂତନ କାରିଗରୀ-କୌଶଳ ଅପେକ୍ଷା ଯାହା ବେଶୀ ପ୍ରୟୋଜନ, ତାହା ହେଉଛି ଏହିପରି ଚରିତ୍ରବତ୍ତା।

କିନ୍ତୁ ସମ୍ଭବ କି ?

୦୩/୧୦/୮୫

# ସିରାକୁଜ୍ ଓ ନବଦିଲ୍ଲୀ: ପ୍ଲାଟୋ ଓ ଗାନ୍ଧୀ

ପ୍ରତିବର୍ଷ ଗାନ୍ଧୀଜୟନ୍ତୀ ବା ଗାନ୍ଧୀ-ପ୍ରୟାଣ ଦିବସରେ ଆମର କର୍ତ୍ତାମାନେ ଯଥାବିଧି ଷୋଡ଼ଶୋପଚାରରେ ମହାତ୍ମାଗାନ୍ଧୀଙ୍କ ସ୍ମୃତିତର୍ପଣ କରିଥାନ୍ତି। ମହାତ୍ମାଙ୍କ ବିସ୍ମୃତ ଧୂଳିଢଙ୍କା ପ୍ରତିମୂର୍ତ୍ତି ଉପରେ ଗୋଟାଏ ଦୁଇଟା ଫୁଲମାଳ ସେଦିନ ଲମ୍ବାଇ ଦିଆଯାଇଥାଏ। କିଛି ପୋଷାକୀ ଭାଷଣ ମଧ୍ୟ ହୁଏ। ତା' ପରଦିନ ସମ୍ବାଦପତ୍ରମାନଙ୍କରେ ସେଇ ଭାଷଣ ସବୁ ପ୍ରକାଶିତ ହୁଏ, ସୁବିସ୍ତୃତ ଶିରୋନାମା ତଳେ।

ଏ ବର୍ଷ ମଧ୍ୟ ସେଥିରେ ବ୍ୟତିକ୍ରମ ନଥିଲା। ସେଦିନ ଅତି ସକାଳୁ ସକାଳୁ ନିଦ ଭାଙ୍ଗିଗଲା। ପ୍ରଚାର ବିଭାଗ କି ପୋଲିସ ବିଭାଗର ଗୋଟାଏ ଭ୍ୟାନ୍‌ର କର୍କଶ ଶବ୍ଦ ଆଉ ଲାଉଡ୍‌ସ୍ପିକ୍‌ରର ଅଶ୍ରାବ୍ୟ ଚିତ୍କାରରେ। ଭ୍ୟାନଟି କ୍ରମେ ନିକଟବର୍ତ୍ତୀ ହୋଇଆସିବାରୁ ଶୁଣିଲି, ଗୋଟାଏ ଘଷଡ଼ା କ୍ୟାସେଟ୍‌ରେ ଗାନ୍ଧିଜୀଙ୍କ ପ୍ରିୟଭଜନ "ରଘୁପତି ରାଘବ ରାଜାରାମ" ବାଜୁଛି। ଇଏ ହେଲା ଆଜିର ରାମଧୂନ୍ ଓ ପ୍ରଭାତଫେରୀ। ଆଜି ଶସ୍ତା ଫିଲ୍ମ ଓ ଟି.ଭି.ର ବଜାର, ସଂସ୍କୃତି ଯୁଗରେ ସଙ୍ଗୀତର ଲବେଇ ଅହୋରାତ୍ର ଚାଲିଥିବାବେଳେ, ଏହି ଭଜନ ଗାଇବାବାଲାଏ ଆଉ ନାହାନ୍ତି। ତେଣୁ କ୍ୟାସେଟ୍‌ର ବ୍ୟବସ୍ଥା। କିନ୍ତୁ ତା' ବୋଲି କ୍ୟାସେଟ୍‌ଟି କାହିଁକି ଘଷଡ଼ା ହେବ ଓ ସେଥିରୁ ଟଣ୍ଟିଚିପା ଗଅଁଗଅଁ ଗର୍ଜନ ବାହାରିବ-ତା'ର ଅର୍ଥ ବୁଝି ପାରିଲି ନାହିଁ। ମନେ ପଡ଼ିଗଲା, ମହାଯାନୀ ବୌଦ୍ଧମାନଙ୍କର "ଅଷ୍ଟ ସହସ୍ରିକା ପ୍ରଜ୍ଞାପାରମିତା' ସୂତ୍ର କଥା। ଏ ସୂତ୍ରର ଶ୍ଳୋକ ସଂଖ୍ୟା ଥିଲା ଆଠ ହଜାର। ଏହାକୁ ଆୟତ୍ତ କରିପାରିଲେ, ପ୍ରଜ୍ଞାପାରମିତା ସୂତ୍ରସାଧକ ଆତ୍ମସ୍ଥ କରିପାରୁଥିଲେ। ପରେ ଦେଖାଗଲା, ଏତେ କଠିନ ପରିଶ୍ରମ କରି ଲାଭ କ'ଣ ? ତେଣୁ ବାହାରିଲା ସଂକ୍ଷିପ୍ତ 'ଧାରଣୀ' ଆଜିକାଲିକାର ସ୍କୁଲ୍ କଲେଜପିଲାମାନଙ୍କ ବହି ପରି। ଅଷ୍ଟସହସ୍ରିକା ପ୍ରଜ୍ଞାପାରମିତା' ଶେଷକୁ ରହିଲେ ଗୋଟିଏ ଶ୍ଳୋକର ଗୋଟିଏ ପାଦରେ। ଏହାକୁ ମନ୍ତ୍ରପରି ଜପ କରିଗଲେ କୁଆଡ଼େ ଅଷ୍ଟସହସ୍ରିକାରେ ସିଦ୍ଧିଲାଭ। ତା'ପରେ ଦେଖାଗଲା, ଏ ଧାରଣୀର ଆବୃତ୍ତି ସୁଦ୍ଧା କଷ୍ଟସାଧ୍ୟ ହେଉଛି। ତେଣୁ ଖାଲି 'ପ୍ର' 'ପ୍ର' 'ପ୍ର' ବିଳିବିଳି ହେଲେ

ଅଷ୍ଟସହସ୍ରିକା ପ୍ରଜ୍ଞାପାରମିତା ସୂତ୍ରର ସବୁ ସିଦ୍ଧି ମିଳିଯିବ ! ଆଜି ରାମଧୂନ୍ ଓ ପ୍ରଭାତ ଫେରିର ହୋଇଛି ସେହି ଅବସ୍ଥା ! କିନ୍ତୁ ଏସବୁ ବାହ୍ୟ ଓ ଆନ୍ତରିକତାହୀନ ଉପଚାରକୁ ବାଦ୍‌ଦେଲେ, କ'ଣ ମହାତ୍ମା ଗାନ୍ଧୀଙ୍କ ସ୍ମୃତି ପ୍ରତି ଶ୍ରଦ୍ଧା ନିବେଦିତ ହୋଇପାରନ୍ତା ନାହିଁ ? ବରଂ ଏହି ଆନ୍ତରିକତା ବିହୀନ ଉପଚାରସବୁ ମୋତେ ଲାଗିଲା, ମହାତ୍ମାଙ୍କ ସ୍ମୃତି ପ୍ରତିଏକ ଉଦ୍‌ଭଟ ପରିହାସ !

ତା' ପରଦିନ ସକାଳେ ହାତରେ ଅନ୍ୟ କିଛି କାମ ନଥିବାରୁ, ବିଛଣାରେ ପଡ଼ି ପଡ଼ି ଗାନ୍ଧୀଜୟନ୍ତୀ ଦିବସର ଭାଷଣ ସବୁ ଆଦ୍ୟୋପାନ୍ତ ପଢ଼ିଗଲି। କର୍ତ୍ତାପୁରୁଷମାନେ ଉଦ୍‌ବୋଧନ ଦେଇଛନ୍ତି, ଗାନ୍ଧିଜୀଙ୍କ ରାମରାଜ୍ୟ ଓ ଗ୍ରାମସ୍ୱରାଜ୍ୟ ସ୍ଥାପନ କରିବାପାଇଁ ପଡ଼ିବ। ବ୍ୟାଧିର ଆଶ୍ୱସ୍ତି ଭୁଲି, ହୋ ହୋ ହୋଇ ହସି ଉଠିଲି। ମନେପଡ଼ିଗଲା ଖ୍ରୀଷ୍ଟପୂର୍ବ ଚତୁର୍ଥ ଶତାବ୍ଦୀର ଜଣେ ହତଭାଗ୍ୟ ଦାର୍ଶନିକଙ୍କ କଥା- ସିଏ ପ୍ଲାଟୋ। ଗାନ୍ଧିଜୀଙ୍କ ରାମରାଜ୍ୟ ପରି ପ୍ଲାଟୋ କହୁଥିଲେ ୟୁଟୋପିଆର କଥା, ଯାହା ହେବ ଏକ ଆଦର୍ଶ ସ୍ୱର୍ଗରାଜ୍ୟ। ଗାନ୍ଧିଜୀଙ୍କ ଅହିଂସା ପରି, "ଏଥିକ୍‌ସ ହେବ ୟୁଟୋପିଆର ଭିତ୍ତି।" ଲୋକମୁଖରେ ପ୍ଲାଟୋଙ୍କ ୟୁଟୋପିଆପାଇଁ ବହୁ ବାହାବାଃ ମିଳିଲା। ସିସିଲିର ରାଜା ଡାୟୋନିସ୍‌ସଙ୍କ କାନରେ ୟୁଟୋପିଆ କଥାଟି ମଧ୍ୟ ପଡ଼ିଲା। ସିଏ ତାଙ୍କ ରାଜଧାନୀ ସିରାକୁଜ୍‌କୁ ପ୍ଲାଟୋଙ୍କୁ ମହାସମାରୋହରେ ଆମନ୍ତ୍ରଣ କଲେ, ତାଙ୍କ ରାଜ୍ୟରେ ୟୁଟୋପିଆର ପ୍ରତିଷ୍ଠାପାଇଁ। ପ୍ଲାଟୋ ମହାଖୁସି। ତାଙ୍କ ଗୁରୁ ସକ୍ରେଟିସ୍, ଏଥେନ୍‌ସର ଜନତାଙ୍କୁ ଦର୍ଶନତତ୍ତ୍ୱ ବୁଝାଇବାକୁ ଯାଇ ଶେଷରେ ଦିନେ ହାମଲକ୍ ବିଷ ପିଇ ମଲେ ! ତାଙ୍କୁ ବିଷ ପିଆଇ ମାରିଦିଆଗଲା। ସେହି ଅଭିଜ୍ଞତାରୁ ପ୍ଲାଟୋ ବୁଝିଲେ, ହଜାର ହଜାର ଲୋକଙ୍କୁ ବୁଝାଇବା ପରିବର୍ତ୍ତେ ଜଣେ ରାଜାଙ୍କୁ ମଙ୍ଗାଇ ବରଂ ବୁଝାଇପାରିଲେ କାର୍ଯ୍ୟଟି ସୁଗମ ହେବ।

ପ୍ଲାଟୋ ୟୁଟୋପିଆ ସ୍ଥାପନପାଇଁ ସିରାକୁଜ୍ ଆସିଲେ। ରାଜା ଡାୟୋନିସ୍‌ସ ମହା ଆଗ୍ରହରେ ୟୁଟୋପିଆ କଥା ପଚାରିବାରୁ, ପ୍ଲାଟୋ କହିଲେ, "ରାଜା ଡାୟୋନିସସ୍, ତୁମେ ୟୁଟୋପିଆପାଇଁ ଯଦି ଆଗ୍ରହୀ, ତା'ହେଲେ ପ୍ରଥମେ ଏଇ ବିରାଟ ପ୍ରାସାଦ ଓ ବିଳାସବ୍ୟସନ ଛାଡ଼ି ତମକୁ ଗଛମୂଳେ ଯାଇ ବସିବାକୁ ପଡ଼ିବ। ତାହା ହିଁ ହେଉଛି ୟୁଟୋପିଆ। ତାହା ହିଁ ହେଉଛି ଏଥିକ୍‌ସ।"

ଏଥିରେ ଡାୟୋନିସସ୍ ମହା ଖପ୍‌ପା ହୋଇ ପ୍ଲାଟୋଙ୍କୁ କ୍ରୀତଦାସ ବଜାରକୁ ପଠାଇଦେଲେ ବିକ୍ରୀହେବାପାଇଁ। ପ୍ଲାଟୋ ବିଚରା କ୍ରୀତଦାସ ବଜାରରୁ ହୁଏତ ପର୍ସିଆକୁ ଚାଲାଣ ହୋଇଥାଆନ୍ତେ। ମାତ୍ର ଇତିହାସ କହେ, ପ୍ଲାଟୋଙ୍କର ଜଣେ ଶିଷ୍ୟ ଓ ବନ୍ଧୁ ଆନ୍‌ସିସେରସ୍ ମୁକ୍ତିପଣ ଗଣି, ପ୍ଲାଟୋଙ୍କୁ କ୍ରୀତଦାସ ବେପାରୀଙ୍କଠାରୁ ମୁକୁଳାଇ ଦେଲେ। ଇଏ ହେଲା ୟୁଟୋପିଆ ପ୍ରତିଷ୍ଠାର ପରିଣତି !

ମୁଁ ନିଶ୍ଚିତ ଭାବରେ ଜାଣେ, ସ୍ୱାଧୀନତାପ୍ରାପ୍ତି ପରେ, କ୍ଷମତା ପାଗଳ, ତାମସିକତା-ପ୍ରମତ୍ତ ଭାରତରେ ରାମରାଜ୍ୟ ପ୍ରତିଷ୍ଠାପାଇଁ ଗାନ୍ଧିଜୀ ତାଙ୍କ ଭାଙ୍ଗିବସ୍ତିର ଝୁପୁଡ଼ିରୁ ବାହାରି ରାଜଧାନୀ ନବଦିଲ୍ଲୀକୁ ଆସିଥିଲେ, ତାଙ୍କୁ ପ୍ଲାଟୋଙ୍କ ଦଶା ଭୋଗିବାକୁ ପଡ଼ିଥାଆନ୍ତା। ମାତ୍ର ତଫାତ୍ ହେଉଛି, ତାଙ୍କୁ ମୁକୁଳାଇବାପାଇଁ ଜଣେ ହେଲେ ଆନ୍‌ସିସେରସ୍ ସୁଦ୍ଧା ମିଳନ୍ତେ ନାହିଁ । ମୋର ତେଣୁ ବିନମ୍ର ଅନୁରୋଧ ଓ ପ୍ରାର୍ଥନା- ଗାନ୍ଧୀଙ୍କ ସ୍ମୃତିତର୍ପଣ ଅବକାଶରେ, ରାମରାଜ୍ୟ ଓ ଗ୍ରାମସ୍ୱରାଜ୍ୟ ସ୍ଥାପନର ଉଦ୍‌ଘୋଷଣ ଆଉ କରା ନଯାଉ । ଯାହା ଦିଗ୍‌ବଳୟ ରେଖା, ତାକୁ ଛୁଇଁ ପାରିବ ବା କିଏ ?

୧୦/୧୦/୮୪

# ଅସ୍ତ ଓ ଉଦୟ

ସମୀକ୍ଷକ ଓ ସମାଲୋଚକମାନେ ଭୁଲ୍‌ରେ ହେଉ ବା ଠିକ୍‌ରେ ହେଉ, ଧରି ନେଉଥାନ୍ତି ସୃଷ୍ଟିଧର୍ମୀ ଲେଖକମାନଙ୍କର ସବୁ କୃତିରେ ସେଇମାନେ ହିଁ ହର୍ତ୍ତା-କର୍ତ୍ତା-ବିଧାତା। ସେମାନଙ୍କ କଲମ ଗାରରେ ଲେଖକମାନେ ବଞ୍ଚନ୍ତି ନୋହିଲେ ମରନ୍ତି। ବିଭିନ୍ନ ସାହିତ୍ୟର ଇତିହାସ ପର୍ଯ୍ୟାଲୋଚନା କଲେ ଦେଖାଯିବ, ଯେତେବେଳେ ସୃଷ୍ଟିଧର୍ମୀ ସାହିତ୍ୟର ପ୍ରାଚୁର୍ଯ୍ୟରେ ଭଟ୍ଟା ପଡ଼େ- ସେତେବେଳେ ସମାଲୋଚକମାନେ ହିଁ ପ୍ରାଧାନ୍ୟ ଲାଭ କରିଥାନ୍ତି। ଇଂରାଜୀ ସାହିତ୍ୟରେ ଏହି ଭାରସାମ୍ୟହୀନତାକୁ 'କ୍ରିଟିକୋକ୍ରାସୀ' ବୋଲି ଆକ୍ଷେପ କରାଯାଇଅଛି।

ବିଶ୍ୱର ସର୍ବକାଳର କବି ସେକସପିୟରଙ୍କ ସଂପର୍କରେ ଭଲଟାୟର ଦିନେ ଲେଖିଥିଲେ- ସେକ୍‌ସପିୟର ଜଣେ 'ବର୍ବର' ! "ସେ ଗୁଡ଼ିଏ ଭୟଙ୍କର ଫାର୍ସ ଲେଖିଥିଲେ, ଯାହାକୁ ଟ୍ରାଜେଡ଼ି ବୋଲି କୁହାଯାଉଛି !" କବି ଦାନ୍ତେଙ୍କ ସଂପର୍କରେ ସେ ମଧ୍ୟ ଲେଖିଥିଲେ- "ଦାନ୍ତେ ଜଣେ ପାଗଳ !" ତାଙ୍କ ଉପରେ ଏତେ ଟୀକାକାର ଏତେ ଟୀକା ଲେଖିଛନ୍ତି ଯେ ଦାନ୍ତେଙ୍କ କୃତିସବୁକୁ କେହି ପଢ଼ନ୍ତି ନାହିଁ। ସେଥିପାଇଁ ତାଙ୍କ ଲାଗି ଖାତିର ବଢ଼ିବଢ଼ି ଚାଲିଛି।"

ଥରେ, ଜଣେ ଆଲେକ୍‌ଜାଣ୍ଡର-ପୋପ୍‌ଙ୍କୁ ପଚାରିଲେ, "ସେକ୍‌ସପିୟର ଏପରିସବୁ ନାଟକ ଲେଖିଲେ କାହିଁକି ?"

ପୋପ୍ ଉତ୍ତର ଦେଲେ, "ବିଚାରାକୁ ତ ପୁଣି ଖାଇପିଇ ବଞ୍ଚିବାକୁ ପଡ଼ିବ !"

ମୋ ବିଚାରରେ କିନ୍ତୁ, ଲେଖକମାନଙ୍କର ଦୁଇଗୋଟି ଜୀବନ ଥାଏ। ଗୋଟିଏ ଜୀବନ, ସେମାନଙ୍କ ଜୀବନ-କାଳ ମଧ୍ୟରେ ସୀମିତ। ଏହି କାଳ ମଧ୍ୟରେ ସେମାନେ ଯାହା ନିନ୍ଦା-ପ୍ରଶଂସା ଅର୍ଜନ କରିଥାନ୍ତି, ତାହା ସେମାନଙ୍କ ମୃତ୍ୟୁ ସହିତ ପୋଛି ହୋଇଯାଏ। ତା'ପରେ ହୁଏତ ଆସେ ବିସ୍ମୃତି। ସେମାନଙ୍କର- ଅବଶ୍ୟ ସମସ୍ତଙ୍କର ନୁହେ- ନବଜନ୍ମ ଆରମ୍ଭ ହୁଏ, ପୁଣି ବହୁ ବର୍ଷର ବ୍ୟବଧାନ ପରେ, ଏବେ ଯେପରି ନ୍ୟୁଟ୍ ହାମସୁନ୍ ଓ

ହର୍ମାନ୍ ହେଚ୍ଚଙ୍କର ରିଭାଇଭାଲ୍ ଆରମ୍ଭ ହୋଇଥିଲା। ଯେଉଁମାନେ କାଳଜୟୀ, ସେମାନେ ପୁଣି ବିସ୍ମୃତିର ବ୍ୟବଧାନ ପରେ ନୂଆ ଦୀପ୍ତି ଓ ନୂଆ କୀର୍ତ୍ତିରେ ଉଦ୍‌ଭାସିତ ହୁଅନ୍ତି। ଯେମିତି ହେଲା ଫକୀରମୋହନ ସେନାପତିଙ୍କର। ୧୯୧୮ ମସିହାରେ ତାଙ୍କର ମୃତ୍ୟୁ ପରେ, ଏହି ଶତାବ୍ଦୀର ପଞ୍ଚମ ଦଶକ ପର୍ଯ୍ୟନ୍ତ, ସେ ବିସ୍ମୃତ ହୋଇ ରହିଥିଲେ। ଆଧୁନିକ ଯୁଗର ନିର୍ମାତା ରୂପେ ସ୍ୱୀକୃତି ପାଇଥିଲେ ରାଧାନାଥ ଓ ମଧୁସୂଦନ। କିନ୍ତୁ ରାଧାନାଥଙ୍କର ଅମଳିନ କବିତ୍ୱ ସତ୍ତ୍ୱେ 'ଚିଲିକା' କାବ୍ୟଟି ସହିତ କେବଳ ଓଡ଼ିଆ ପାଠକପାଠିକାମାନେ ଆଜି କିଛିଟା ପରିଚିତ; ତାହା ପୁଣି କଲେଜରେ ପାଠ୍ୟପୁସ୍ତକ ରୂପେ ଦୀର୍ଘକାଳ ପ୍ରଚଳିତ ଥିବା ହେତୁ । ମଧୁସୂଦନ ମଧ୍ୟ ମୁଖ୍ୟତଃ ସନେଟ୍‌ର ରୂପେ ସ୍ମରଣୀୟ ଥିଲେ ହେଁ, ସେ ସ୍କୁଲ୍ ବିଭାଗରେ ଜଣେ ଉଚ୍ଚପଦାଧିକାରୀ ଥିବାରୁ ଇସ୍କୁଲ୍ ମାଷ୍ଟରମାନେ ତାଙ୍କୁ 'ଭକ୍ତ କବି' କହି ଯଥେଷ୍ଟ ପ୍ରସିଦ୍ଧ କରାଇଥିଲେ। ରାଧାନାଥ ଜଏଣ୍ଟ ଇନ୍‌ସପେକ୍ଟର ଅଫ୍ ସ୍କୁଲ୍‌ସ ଥିବାରୁ ତାଙ୍କର ସୂକ୍ତିମାଳାସବୁ କ୍ଲାସ୍‌ରୁମ୍ କାନ୍ଥରେ ବଡ଼ ବଡ଼ ଅକ୍ଷରରେ ଲେଖି ସ୍କୁଲ୍‌ମାଷ୍ଟରମାନେ ତାଙ୍କ କବିତ୍ୱର ଯଶଗାନ କରୁଥିଲେ। ଆଜି କିନ୍ତୁ ରାଧାନାଥ ବା ମଧୁସୂଦନଙ୍କର ସେହି କୃତିସବୁ ସମସ୍ତେ ପାସୋର ଗଲେଣି। ବିଚରା ଫକୀରମୋହନଙ୍କର ଏସବୁ କିଛି ନଥିଲା। ନିତାନ୍ତ ଏକୁଟିଆ ବାଆଁରା ପରି ସେ ନିଜ ଶିଙ୍ଗରେ ମାଟି ତାଡ଼ି କିଛି ଗଳ୍ପ ଉପନ୍ୟାସ ଲେଖିଥିଲେ। ତାଙ୍କର କୌଣସି ଆତ୍ମୀୟସ୍ୱଜନ ପୁଣି ତାଙ୍କର ଜୟନ୍ତୀ, ଟୟନ୍ତୀ ପାଳନ କରିପାଇଁ ନଥିଲେ। ନିଜ ଶିଙ୍ଗରେ ସେ ମାଟି ତାଡ଼ି ଓଡ଼ିଆ ସାହିତ୍ୟରେ ନିଜପାଇଁ କିଛିଟା ସ୍ଥାନ ସୃଷ୍ଟି କରିଥିଲେ। ତାଙ୍କ ମୃତ୍ୟୁ ପରେ ମଧ୍ୟ ବିସ୍ମୃତିର ଭସ୍ମଶଯ୍ୟା ତଳୁ, ନିଜର ପ୍ରାଣଶକ୍ତିରେ ସେ ଉଦ୍ଭିଦ ପରି ଉପରକୁ ଉଠି ଆଜି ଓଡ଼ିଆ ସାହିତ୍ୟରେ ଏକ ବଟଦ୍ରୁମରେ ପରିଣତ ହୋଇଛନ୍ତି। ସେଥିପାଇଁ କିଛିବର୍ଷ ତଳେ ଶାନ୍ତି-କାନନଠାରେ, ତାଙ୍କର ଏକ ଶ୍ରାଦ୍ଧସଭାରେ ମୁଁ କହିଥିଲି- "ହେ ଫକୀରମୋହନ । ଆମକୁ ଆଶୀର୍ବାଦ କର, ଆମେ ଯେପରି ତୁମର ଛତ୍ରଛାୟା ତଳୁ ଟିକିଏ ମୁକ୍ତିଲାଭ କରୁ।"

ତରୁଣ ଲେଖକମାନଙ୍କୁ ମୁଁ ତେଣୁ ସବୁବେଳେ କହିଥାଏ- ସମୀକ୍ଷକ ସମାଲୋଚକମାନଙ୍କ ଉପରେ ଆସ୍ଥା ରଖ ନାହିଁ। ଭଲଟାୟାର ଯଦି ଦାନ୍ତେ, ସେକ୍‌ସପିୟରଙ୍କୁ ବୁଝିପାରିଲେ ନାହିଁ, ତମକୁ ବା ବୁଝିବ କିଏ ?

ସନାତନ ଲେଖକ । ମହାକାଳ ହାତରେ ନିଜକୁ ସମର୍ପଣ କରିଦିଅ। ସେଇ ତମର ଯଥାର୍ଥ ମୂଲ୍ୟାଙ୍କନ କରିବ।

୭/୧୧/୮୫

# ଦଗ୍ଧ ପଦ୍ମବନ

ପୁରାଣମାନଙ୍କରେ ଲେଖାଅଛି ବିଷ୍ଣୁଙ୍କର ଦୁଇ ପତ୍ନୀ ଲକ୍ଷ୍ମୀ ଓ ସରସ୍ୱତୀଙ୍କ ମଧ୍ୟରେ କୁଆଡ଼େ ସପତ୍ନୀ-କଳହ ଲାଗି ରହିଅଛି। ସରସ୍ୱତୀ କାଳେ ଲକ୍ଷ୍ମୀଙ୍କୁ ସହ୍ୟ କରିପାରନ୍ତିନି କିମ୍ୱା ଲକ୍ଷ୍ମୀ ଆଡ଼ ଆଖିରେ ସୁଦ୍ଧା ସରସ୍ୱତୀଙ୍କ ଆଡ଼େ ଚାହିଁ ପାରନ୍ତି ନାହିଁ। ସେଥିପାଇଁ ଲକ୍ଷ୍ମୀ ଆଶିଷପ୍ରାପ୍ତମାନେ ସରସ୍ୱତୀଙ୍କ କରୁଣାଲାଭରୁ ଯେପରି ବଞ୍ଚିତ; ସରସ୍ୱତୀ ସେବକମାନେ ସେହିପରି ଲକ୍ଷ୍ମୀଙ୍କ କୃପାଦୃଷ୍ଟିରୁ ମଧ୍ୟ ବଞ୍ଚିତ। ଇଏ ହେଲା କ୍ଷମତା-ରାଜନୀତିର ଗୋଟିଏ ସୂତ୍ରପରି; ମୋ ଶତ୍ରୁର ଶତ୍ରୁ ମୋର ବନ୍ଧୁ। ମୋର ଶତ୍ରୁର ବନ୍ଧୁ ମୋର ଶତ୍ରୁ। ସେହି ନ୍ୟାୟରେ ସରସ୍ୱତୀଙ୍କ ବରପୁତ୍ରମାନେ ଲକ୍ଷ୍ମୀଙ୍କର ଐଶ୍ୱର୍ଯ୍ୟପୁରୀରେ ଯେପରି ଅପାଙ୍‌କ୍ତେୟ, ସରସ୍ୱତୀଙ୍କ କମଳବନରୁ ଲକ୍ଷ୍ମୀଙ୍କ ସେବକମାନେ ସେହିପରି ନିର୍ବାସିତ।

ଫକୀରମୋହନ ସେନାପତି 'ମାମୁଁ' ଉପନ୍ୟାସରୁ କେତେଟା ପରିଛେଦ କାଟିଦେଲେ, ଉତ୍କଳ ସାହିତ୍ୟ ପ୍ରେସ୍‌ର ଛାପା ବିଲ୍ ବଢ଼ିଯିବା ଆଶଙ୍କାରେ ! କିଏ ବିଶ୍ୱାସ କରିବ କବିଗୁରୁ ରବୀନ୍ଦ୍ର ନାଥ ନୋବେଲ ପୁରସ୍କାର ପାଇବା ଆଗରୁ ୧୯୦୬ ମସିହାରେ ତାଙ୍କର ସମସ୍ତ ସାହିତ୍ୟକୃତିର ସର୍ବସ୍ୱତ୍ୱ ଜଣେ ମାମୁଲି ପ୍ରକାଶକକୁ ମାତ୍ର ଛଅ ହଜାର ଟଙ୍କାରେ ବିକ୍ରି କରିଦେବାପାଇଁ ନିଷ୍ପତ୍ତି କରିଥିଲେ। କବି ବା ଲେଖକ ନିଶୀଥ ପ୍ରଦୀପ ଜାଳି ପାଣ୍ଡୁଲିପି ଉପରେ ଘର୍ମାକ୍ତ ହେଉଥିବା ପର୍ଯ୍ୟନ୍ତ, ତାହା ରହିଥାଏ ସରସ୍ୱତୀଙ୍କ ଇଲାକା ମଧ୍ୟରେ। କିନ୍ତୁ ତାହା ପ୍ରକାଶକଙ୍କ 'ଗଦି'ରେ ଦାଖଲ ହୋଇଯିବା ପରେ, ତାହା ହୋଇଯାଏ ଲକ୍ଷ୍ମୀଙ୍କ ସମ୍ପତ୍ତି। ତେଣୁ ଲକ୍ଷ୍ମୀ-ସରସ୍ୱତୀଙ୍କ ମଧ୍ୟରେ ବିବାଦ କାରଣରୁ, ପ୍ରକାଶକମାନଙ୍କ ଦୁଆରକୁ ରୟାଲିଟିପାଇଁ ଦଉଡ଼ି ଦଉଡ଼ି ଲେଖକର ପାଦ ଯଦି ଘୋଳିଯାଏ, ତା' ହେଲେ ତା' ଅତି ସ୍ୱାଭାବିକ।

ଭାରତୀୟ ଅଭିଜ୍ଞତାର ଏହି ପୃଷ୍ଠଭୂମିରେ, ପାଶ୍ଚାତ୍ୟ ଲେଖକମାନଙ୍କ କଥା କିନ୍ତୁ ତୁଳନା କରିବସିଲେ ଆଖି ପାଏ ନାହିଁ। ଆମେରିକାର 'କାର୍ପେଟ୍ ବ୍ୟାଗର' ଔପନ୍ୟାସିକ

ହାରଲଡ୍ ରବିନ୍‌ସ ଗତ କୋଡ଼ିଏ ବର୍ଷ ମଧ୍ୟରେ ୫୮ ନିୟୁତ ପାଉଣ୍ଡ, ଅର୍ଥାତ୍ ଆନୁମାନିକ ପ୍ରାୟ ୮୦ କୋଟି ଟଙ୍କା ଆୟ କରିଛନ୍ତି। ହାରଲଡ୍ ରବିନ୍‌ସ ତାଙ୍କ ଉପନ୍ୟାସଗୁଡ଼ିକରୁ ସର୍ବାଧିକ ଆୟ କରିପାରିଥାନ୍ତି; କିନ୍ତୁ ବାର୍ଷିକ ଆୟ ଦୃଷ୍ଟିରୁ ତାଙ୍କର ସମକକ୍ଷ ହେବାଭଳି ଆଉରି ମଧ୍ୟ ବହୁ ଲେଖକ ରହିଛନ୍ତି। ଏମାନଙ୍କ ବାର୍ଷିକ ଆୟ ଯେକୌଣସି ମଲ୍‌ଟିନ୍ୟାସନାଲ୍‌ର ଚେୟାରମ୍ୟାନଙ୍କ ବାର୍ଷିକ ଆୟ ତୁଳନାରେ ଊଣା ନୁହେଁ।

ତେବେ ଶୁଦ୍ଧ-ସାହିତ୍ୟିକମାନେ ଏଥିରେ ନୈରାଶ୍ୟ-ଜର୍ଜରିତ ହେବାର କୌଣସି କାରଣ ନାହିଁ। ହାରଲଡ୍ ରବିନ୍‌ସ ନିଜ ସାହିତ୍ୟ ତତ୍ତ୍ୱ ସମ୍ପର୍କରେ ଲେଖିଛନ୍ତି; "ମୁଁ ହେଉଛି ଏବର ଶ୍ରେଷ୍ଠ ଲେଖକ। ଅନେକ ଲେଖକଙ୍କ ପକ୍ଷରେ ଅସୁବିଧା ହେଉଛି- ସେମାନେ ପୂରାପୂରି ବଞ୍ଚନ୍ତି ଗୋଟିଏ ସାହିତ୍ୟ ଜଗତରେ। ସେମାନେ ଲେଖନ୍ତି, ଅନ୍ୟ ଲେଖକଙ୍କ ସମାଲୋଚକମାନଙ୍କୁ ଚକିତ କରିଦେବାପାଇଁ। କିନ୍ତୁ ସେକଥା ଠିକ୍ ନୁହେଁ। ଲୋକଙ୍କ ପାଖରେ ପହଞ୍ଚିବା ବଡ଼ କଥା।"

କିନ୍ତୁ ଏ "ଲୋକମାନେ" କିଏ ?

ଏମାନେ ଅଧିକାଂଶ ହେଲେ- ସାହିତ୍ୟ ଅବବୋଧବିବର୍ଜିତ ସାକ୍ଷର ଶ୍ରେଣୀ, ଯେଉଁମାନଙ୍କ ହାତରେ ଟଙ୍କା ଅଛି, ମାତ୍ର ରୁଚି ନାହିଁ। ଏମାନେ ଉପନ୍ୟାସ ପଢ଼ନ୍ତି, ଟ୍ରେନ୍‌ରେ ଗଲାଆଇଲା ବେଳେ- ଉଡ଼ାଜାହାଜରେ- ଏପରିକି ବାଥ୍‌ରୁମ୍‌ରେ ସମୟଟାକୁ ଫାଙ୍କିଦେବାପାଇଁ ! ସ୍ୱାଭାବିକ ଭାବରେ ଏମାନଙ୍କର ସ୍ତିମିତ ସ୍ନାୟୁକେନ୍ଦ୍ରସବୁକୁ ଚିଆଁଇଁ ଦେବାପାଇଁ ପ୍ରୟୋଜନ ପଡ଼େ ସେକ୍‌ସ ଓ ଭାୟୋଲେନ୍‌ସ। ଲୋକଙ୍କ ଦ୍ୱାହିଦେଇ ହାରଲଡ୍ ରବିନ୍‌ସଙ୍କ ପରି 'ପପୁଲାର' ଲେଖକମାନେ ଲେଖନ୍ତି ଏଇ ଧରଣର ଉପନ୍ୟାସ- (ଯଦ୍ୟପି ହାରଲଡ୍ ରବିନ୍‌ସଙ୍କ 'ଷ୍ଟୋନ୍ ଫର ଡ୍ୟାମି କେ' ମୁଁ ଆଦ୍ୟୋପ୍ରାନ୍ତ ପଢ଼ିଛି ଓ ମୋତେ ଏହା ଭଲ ଲାଗିଛି।) ଏଡ୍‌ଗାର ବାଲେସ୍ ସେହିପରି ବର୍ଷକୁ ୧ ଲକ୍ଷ ପାଉଣ୍ଡ ତାଙ୍କ ବହିରୁ ରୋଜଗାର କରୁଥିଲେ; ଯଦ୍ୟପି ମଲାବେଳକୁ ୨ ଲକ୍ଷ ପାଉଣ୍ଡ ଋଣର ବୋଝ ତାଙ୍କ ମୁଣ୍ଡ ଉପରେ ଓହଳି ଥିଲା। ଏମାନଙ୍କ ପରି ଔପନ୍ୟାସିକମାନେ ଲେଖାକୁ ପେଶା କରି ସେଥିରେ ଅସମ୍ଭବ ଭାବରେ ସଫଳ ହୋଇପାରିଛନ୍ତି।

କିନ୍ତୁ ଲୋକେ ଯାହା ଚାହାନ୍ତି ତାହା ଯେ ସତ୍ ସାହିତ୍ୟ-ତାହା ଆଦୌ ନୁହେଁ। ଲୋକେ ଯେପରି କସ୍ମିନ୍‌କାଳେ ଭଲ ସରକାର ଚାହାନ୍ତି ନାହିଁ, ସେହିପରି ସେମାନେ ଭଲ ସାହିତ୍ୟ ମଧ୍ୟ ଚାହାନ୍ତି ନାହିଁ ! ସେମାନଙ୍କର ପ୍ରୟୋଜନ ଚାନାଚୂର୍ ବାରମଜା ସାହିତ୍ୟ ! ଲୋକଙ୍କ ଦ୍ୱାହି ଦେଇ ଅଧାପନ୍ତରିଆମାନଙ୍କର ଗଣତନ୍ତ୍ର ଚାଲିପାରେ, କିନ୍ତୁ ଶୁଦ୍ଧ କଳା ଓ ସାହିତ୍ୟ ଡିକ୍‌ଟେଟରସିପ୍‌କୁ ବାଦ୍ ଦେଇ ତିଷ୍ଠି ପାରିବ ନାହିଁ। କାରଣ ଲୋକତତ୍ତ୍ୱରେ ପରିମାଣ ଥାଇପାରେ, ମାତ୍ର ସେଥିରେ ଗୁଣ ଖୋଜିଲେ ମିଳିବ ନାହିଁ।

ସେଥିପାଇଁ ସାହିତ୍ୟର ଯଶୋଗ୍ରନ୍ଥରେ ହାରଲଡ୍ ରବିନ୍‌ସମାନଙ୍କ ପରି ଲେଖକମାନଙ୍କ ପାଇଁ ଗୋଟାଏ ଗାର ସୁଦ୍ଧା ପଡ଼ିବ ନାହିଁ।

ତଥାପି ଶୁଦ୍ଧ ସାହିତ୍ୟ ପାଇଁ ଦମକାଏ ବାଉଳା ପବନ, ନୋହିଲେ ଆଞ୍ଜୁଳାଏ ନିର୍ମଳ ପାଣିର ତ ଅନ୍ତତଃ ପ୍ରୟୋଜନ ରହିଛି । ମାତ୍ର ସେତକ ସୁଦ୍ଧା ଆଜି ଆମର ପରିବେଶରେ କାହିଁ ? ଆଜି ସରସ୍ୱତୀଙ୍କ ପଦ୍ମବନ ଭୌତିକତାର ପୋଡ଼ା ପେଟ୍ରୋଲର ବିଷବାଷ୍ପରେ ଦଗ୍ଧପ୍ରାୟ। ପାଣି ମଧ୍ୟ କାରଖାନାମାନଙ୍କ ଆବର୍ଜନାରେ ବିସ୍ୱାଦ ଓ ବିଷାକ୍ତ। ଚିମ୍‌ନିର ଧୂଆଁରେ ପବନ ମଧ୍ୟ ଦୂଷିତ। ସାଂପ୍ରତିକ 'ଏନ୍‌ଭିରନ୍‌ମେଣ୍ଟ' ବା ପର୍ଯ୍ୟାବରଣର ବଡ଼ ଶିକାର ହୋଇଛି ଆଜି ଶୁଦ୍ଧ ସାହିତ୍ୟ ଏବଂ ସେଥି ସଙ୍ଗେ ସଙ୍ଗେ ମନୁଷ୍ୟର ଶୁଦ୍ଧ ବିଚାର। ଆଜି ସାହିତ୍ୟର ସଙ୍କଟ ତେଣୁ ଆଧ୍ୟାତ୍ମିକ- ବ୍ୟାବହାରିକ ନୁହେଁ।

*୫/୧୨/୮୫*

# ରାତ୍ରି ନକ୍ଷତ୍ରହୀନ

ସାହିତ୍ୟ ଅକାଦମୀର ଦ୍ୱିମାସିକ ମୁଖପତ୍ର 'ଇଣ୍ଡିଆନ୍ ଲିଟରେଚର୍' ନଭେମ୍ବର ଡିସେମ୍ବର ୧୯୮୫ ସଂଖ୍ୟାରେ, ୧୯୮୪ ମସିହାରେ ଇଂରାଜୀ ସମେତ କୋଡ଼ିଏଗୋଟି ଭାରତୀୟ ସାହିତ୍ୟର ଯେଉଁ ସମାଲୋଚନାମୂଳକ ବିବରଣୀ ପ୍ରକାଶପାଇଅଛି- ସେଥିରେ ଓଡ଼ିଆ ସାହିତ୍ୟର ସ୍ଥାନ ନଥିବା ଅନେକଙ୍କୁ ଯେପରି ବିସ୍ମିତ କରିଥିବ। କିନ୍ତୁ ମୋ ମତରେ, ଏଥିରେ କେହି ବିସ୍ମିତ ବା ବ୍ୟଥିତ ହେବା ଭଳି କିଛି ନାହିଁ। କାରଣ ୧୯୮୪ ମସିହାରେ ଓଡ଼ିଆ ସାହିତ୍ୟର ସ୍ୱାସ୍ଥ୍ୟ ସମ୍ପର୍କରେ ଗୋଟିଏ ଆଲୋଚନାମୂଳକ ବିବରଣୀ ପ୍ରକାଶ ପାଇଥିଲା। ତାହା କେବଳ ଆଉ ଏକ ବିଷଣ୍ଣ ଅଧ୍ୟାୟ ଏଥିରେ ଯୋଗ କରିଥାଆନ୍ତା ମାତ୍ର।

ବସ୍ତୁତଃ, ବିଭିନ୍ନ ଭାରତୀୟ ଭାଷା ସାହିତ୍ୟମାନଙ୍କରେ ଉନ୍ନତ ସୃଷ୍ଟିଧର୍ମୀ ସାହିତ୍ୟ ପଦବାଚ୍ୟ କୃତିର ପରିମାଣ, ଗୁଣାତ୍ମକ ଦୃଷ୍ଟିରୁ ଯେପରି କମି କମି ଆସୁଛି- ତାହା ଭାରତୀୟ ସାହିତ୍ୟର ଏହି ସର୍ବେକ୍ଷଣରୁ ସୁସ୍ପଷ୍ଟ ହେଉଅଛି। ନାଟକ, ଅଭିନୟ ଓ ରଙ୍ଗମଞ୍ଚପାଇଁ ଏକଦା ପ୍ରସିଦ୍ଧ ବଙ୍ଗଳା ସାହିତ୍ୟରେ ଏହି ବର୍ଷ ମାତ୍ର ତିନିଖଣ୍ଡି ନାଟକ ଲେଖାଯାଇ ପାରିଅଛି। ଉପନ୍ୟାସ ଓ କ୍ଷୁଦ୍ରଗଳ୍ପ କ୍ଷେତ୍ରରେ ସାମ୍ପ୍ରତିକ ବଙ୍ଗଳା ସାହିତ୍ୟର ସିଦ୍ଧି ଓ ସଫଳତା କିପରି ଅକିଞ୍ଚିତ୍କର, ତାହା ଏହି ସର୍ବେକ୍ଷଣରୁ ମଧ୍ୟ ସ୍ପଷ୍ଟ ହୋଇଯାଏ। ପୂର୍ବ ପିଢ଼ିର ଔପନ୍ୟାସିକମାନଙ୍କ ତୁଙ୍ଗିମା ସହିତ ଏ ପିଢ଼ିର ଔପନ୍ୟାସିକମାନେ ଆଦୌ ତୁଳନୀୟ ନୁହନ୍ତି। ଗୁଜୁରାଟୀ-ସାହିତ୍ୟର ମଧ୍ୟ ସେହି ଅବସ୍ଥା। ୧୯୮୪ ମସିହାରେ କୌଣସି ଉଲ୍ଲେଖଯୋଗ୍ୟ କୃତି ଗୁଜୁରାଟୀ-ସାହିତ୍ୟରେ ପରିଲକ୍ଷିତ ହେଇନାହିଁ। ଉପନ୍ୟାସ କ୍ଷେତ୍ରରେ କେତେକ ନୂତନ ଉଦ୍ୟମ ପରିସ୍ଫୁଟ ହୋଇଥିଲେ ହେଁ, କ୍ଷୁଦ୍ରଗଳ୍ପ କ୍ଷେତ୍ରରେ ଏହାର ବିକାଶ ଧାରା ଅପେକ୍ଷାକୃତ ସ୍ଥାଣୁ। ଆଧୁନିକ କନ୍ନଡ଼ ସାହିତ୍ୟ ଏକ ସମୃଦ୍ଧ ଭାରତୀୟ ସାହିତ୍ୟ ରୂପେ ବିବେଚିତ ହୋଇଥାଏ। ଏ ପର୍ଯ୍ୟନ୍ତ କନ୍ନଡ଼-ସାହିତ୍ୟ ଚାରିଥର ଜ୍ଞାନପୀଠ ପୁରସ୍କାର ଲାଭର ସୌଭାଗ୍ୟ ପାଇଅଛି। ପୁଣି ୧୯୮୪ ମସିହାରେ,

କନ୍ନଡ଼ ଭାଷାରେ ମୋଟ ପ୍ରାୟ ଦୁଇଶହ ଉପନ୍ୟାସ ପ୍ରକାଶ ପାଇଛି। କିନ୍ତୁ ସେଥିମଧ୍ୟରୁ ମାତ୍ର ୬ ଖଣ୍ଡି ଉଲ୍ଲେଖଯୋଗ୍ୟ ହେଲେ ହେଁ କୌଣସି ଖଣ୍ଡେ ସୁଦ୍ଧା 'ମାଷ୍ଟରପିସ୍' ପଦବାଚ୍ୟ ନୁହେଁ। 'ଇଣ୍ଡିଆନ୍ ଲିଟରେଚର୍'ରେ ଏ ସଂପର୍କରେ କୁହାଯାଇଛି, "ଦ ରେଷ୍ଟ ଇଜ୍ ପପୁଲାର ଫିକ୍ସନ୍ ଗଟ୍ ଅପ୍ ଉଇଥ୍ ଆନ୍ ଆଇ ଅନ୍ ଦି ମାର୍କେଟ୍"। ବସ୍ତୁତଃ ମନେହେଉଛି- ବଜାରକାଟତି, ଶସ୍ତା ଉପନ୍ୟାସ ଆଜି ଯେପରି ଏକଦା ଗଦ୍ୟ-ମହାକାବ୍ୟ ବା 'ପ୍ରୋଜ୍-ଏପିକ୍' ନାମରେ ପରିଚିତ ଉପନ୍ୟାସକୁ କ୍ରମେ ସାହିତ୍ୟ ଜଗତରୁ ନିର୍ବାସିତ କରିବାକୁ ବସିଲାଣି। ହିନ୍ଦୀ ସାହିତ୍ୟପାଇଁ ବିପୁଳ ପୃଷ୍ଠପୋଷକକତା ଓ ପ୍ରସ୍ତୁତି ସତ୍ତ୍ୱେ, ଏହାର ସାମ୍ପ୍ରତିକ ଦୈନ୍ୟ ଅତ୍ୟନ୍ତ ଶୋଚନୀୟ। 'ଇଣ୍ଡିଆନ୍ ଲିଟରେଚର୍'ର ସର୍ବେକ୍ଷଣ ଅନୁସାରେ, ପ୍ରତିଷ୍ଠିତ ପ୍ରକାଶକମାନେ ପୂର୍ବ-ପ୍ରକାଶିତ ପୁସ୍ତକଗୁଡ଼ିକରେ ଶିରୋନାମା ବଦଳାଇ, ସେସବୁ ପ୍ରଚୁର ପରିମାଣରେ ଛାପୁଛନ୍ତି "ଇଣ୍ଡିଆନ୍ ଲିଟରେଚର୍'ର ଭାଷାରେ "But one cannot keep quiet when one finds even the front-rank publishers changing the titles of certaon books published earlier and issuing them as fresh or first publications in 1984, with or without a notice on the imprint page" (ପୃଷ୍ଠା-୩୯)। ହିନ୍ଦୀ ପ୍ରକାଶକମାନେ ଏବେ ଶୁଦ୍ଧ ସାହିତ୍ୟକୃତି ଓ ଗୁଣାତ୍ମକ ଦୃଷ୍ଟିରୁ ଉନ୍ନତ ରଚନା ଖୋଜି ପାଉ ନଥିବାରୁ, ନିଜ ମୁନାଫାପାଇଁ ନିଃସଙ୍କୋଚରେ, ଏହିପରି ଭାବରେ ପୂର୍ବ-ପ୍ରସିଦ୍ଧ କୃତିଗୁଡ଼ିକୁ ଆତ୍ମସାତ୍ କରିବାରେ ଲାଗିଛନ୍ତି। ସାହିତ୍ୟର ମୃତ୍ୟୁଶଯ୍ୟାରେ ଇଏ ହେଲା ଅଗ୍ରଦାନୀମାନଙ୍କ ମୁନାଫାର ବିଜୁଳି ବନ୍ଧା ପରି ! ଅନ୍ୟ ଭାରତୀୟ ଭାଷା ସାହିତ୍ୟର ଅବସ୍ଥା ଏହାଠାରୁ ବିଶେଷ ଦୂରବର୍ତ୍ତୀ ନୁହେଁ।

ଏହି ପୃଷ୍ଠଭୂମିରେ, ୧୯୮୪ ମସିହାର ଓଡ଼ିଆ ସାହିତ୍ୟ ବା କି ଅଧିକ କୃତିତ୍ୱ ଦାବୀ କରନ୍ତା ?

ହୁଏତ ୧୯୮୫ ମସିହାପାଇଁ ସାହିତ୍ୟ କ୍ଷେତ୍ରରେ ଶୁଭବାର୍ତ୍ତା ଆରବର୍ଷକୁ ମିଳିପାରେ। କିନ୍ତୁ ଯାହା ମନେହେଉଛି, କେବଳ ଭାରତୀୟ ସାହିତ୍ୟ କ୍ଷେତ୍ରରେ ନୁହେଁ, ଆମେରିକାନ୍ ଓ ବ୍ରିଟିସ୍ ସାହିତ୍ୟ କ୍ଷେତ୍ରରେ ମଧ୍ୟ ଆଜି ଆସିଛି, ଗୁଣାତ୍ମକ ଦୃଷ୍ଟିରୁ, ଏକ ପ୍ରକାର ସ୍ଥାଣୁତ୍ୱ। 'ପଟ୍‌ବଏଲରସ୍' ବା ବଜାର କାଟ୍‌ତିଧର୍ମୀ ଲଘୁ ଲୋକପ୍ରିୟ ଉପନ୍ୟାସ ପ୍ରଭୃତି ଏବେ ଅବଶ୍ୟ ପ୍ରକାଶ ପାଉଛି ପ୍ରଚୁର। ପ୍ରକାଶକମାନେ ବଜାରକୁ ଆଖି ଆଗରେ ରଖି, ଏହି 'ପଟ୍‌ବଏଲରସ୍'ମାନଙ୍କୁ ପ୍ରୋତ୍ସାହିତ କରୁଛନ୍ତି ବେଶି। କିନ୍ତୁ ପ୍ରକାଶକମାନଙ୍କର ବେପାରୀବୁଦ୍ଧି, ସତ୍‌ସାହିତ୍ୟକୁ କଳାପାଣି ପଠାଉଛି ! ମାତ୍ର ପ୍ରକାଶକମାନେ ଯୁକ୍ତି କରିପାରନ୍ତି- କିଏ ଲେଖିଲେ ସିନା ଆମେ ଛପାନ୍ତୁ ! ଲେଖା କାହିଁ ?

ହୁଏତ ମୌଳିକ ଦୃଷ୍ଟିରୁ, ସେପରି ବିରାଟ ପ୍ରତିଭାଧର ଔପନ୍ୟାସିକମାନେ ଆଜି ସାହିତ୍ୟ କ୍ଷେତ୍ରରେ ଆବିର୍ଭୁତ ହେଉ ନାହାନ୍ତି। ଟିଭି ଓ ଶସ୍ତା ସିନେମାର ବଜାର ସଂସ୍କୃତି, ବା ପାଠକମାନଙ୍କର ଉପେକ୍ଷା ଏଥିପାଇଁ ଯେ ସର୍ବୋତ୍‌ଭାବରେ ଦାୟୀ, ତାହା ମଧ୍ୟ ନୁହେଁ। ଶୁଦ୍ଧ ଓ ସତ୍ ସାହିତ୍ୟର ପାଠକ, ସବୁ ଦେଶରେ ସବୁ କାଳରେ ରହିଛନ୍ତି। କିନ୍ତୁ ମହାନ୍ ଲେଖକ ଓ ଶିଳ୍ପୀମାନେ ସବୁଦିନେ ସବୁବେଳେ ସୁଲଭ ହୋଇପାରନ୍ତି ନାହିଁ। ସେକ୍‌ସପିୟର ମଲିୟର-ଇବ୍‌ସେନ୍ ବା ଟଲଷ୍ଟଏ ଗର୍କୀ-ଦସ୍ତଏଭସ୍କି ବା ବାଲ୍‌ଜାକ୍-ହ୍ୟୁଗ୍-ରୋମାରୋଲାଁଙ୍କୁ ସବୁଦିନେ ସବୁକାଳେ ଆଶା କରିବା ଉଚିତ ନୁହେଁ। ସେମାନେ ବିରଳ ନକ୍ଷତ୍ରପୁଞ୍ଜ ପରି କେବେ କେବେ ନିର୍ଦ୍ଦିଷ୍ଟ ଋତୁ ଓ ବେଳାରେ ଆବିର୍ଭୁତ ହୋଇଥାନ୍ତି, ସବୁ ରାତ୍ରିରେ ସେହି ବିରଳ ନକ୍ଷତ୍ରାଲୋକର ଦୀପ୍ତି ଖୋଜିଲେ ମିଳିବ ନାହିଁ। ସେଥିପାଇଁ ଅପେକ୍ଷା କରିବାକୁ ପଡ଼ିବ-ଧୈର୍ଯ୍ୟ ଓ ଆଶାବାଦର ସହିତ। 'ଷ୍ଟାର' ସବୁ ଆଜି କ୍ରିକେଟ ମଇଦାନରେ, ନୋହିଲେ ସିନେମାରେ। ମାତ୍ର ସାହିତ୍ୟର ରାତ୍ରି ଆଜି ନକ୍ଷତ୍ରହୀନ ! ଆଜି ତେଣୁ ସାହିତ୍ୟ-ତୀର୍ଥରେ କେବଳ ତିମିର-ସନ୍ତରଣର ଲଗ୍ନ !

୧୨/୧୨/୮୫

# ପିଓର ବନାମ ପପ୍

ଶେଷସ୍ତମ୍ଭରେ ସାଂପ୍ରତିକ ସାହିତ୍ୟର ଆଭିମୁଖ୍ୟ ଘେନି, ମୋର କେତେଗୋଟି ଲେଖା ସଂପର୍କରେ କେତେକ ତରୁଣ ସାହିତ୍ୟିକ, ଲୋକପ୍ରିୟ, ମନୋରଞ୍ଜନଧର୍ମୀ ପପୁଲାର-ସାହିତ୍ୟ ବା ପପ୍-ସାହିତ୍ୟ ଓ ଶୁଦ୍ଧ-ସାହିତ୍ୟ ସଂପର୍କରେ ମୋର ନିର୍ଦ୍ଦିଷ୍ଟ ମତାମତ ଜାଣିବାକୁ ଚାହିଁଛନ୍ତି। ପ୍ରକୃତରେ ସମସ୍ତଙ୍କୁ ବ୍ୟକ୍ତିଗତ ଭାବରେ ଉତ୍ତର ଦେବା ସମ୍ଭବ ନଥିବାରୁ ମୁଁ ଏହି ସ୍ତମ୍ଭରେ ତାହାର ଉତ୍ତର ଦେବାକୁ ଚେଷ୍ଟା କରୁଛି।

ପ୍ରସଙ୍ଗକ୍ରମେ ଏଠାରେ ଉଲ୍ଲେଖ କରାଯାଇପାରେ, ଏ ସ୍ତମ୍ଭଟି ସଂପୂର୍ଣ୍ଣ ବ୍ୟକ୍ତିଗତ। ଏହାର ଅପୌରୁଷେୟତା ନାହିଁ। ଏହାକୁ ଚିନ୍ତାଶୀଳ ପାଠକମାନେ ଗ୍ରହଣ କରିପାରନ୍ତି ବା ଉପେକ୍ଷା କରିପାରନ୍ତି। ତେଣୁ ମୁଁ କ'ଣ ଲେଖିଲି ବା କାହିଁକି ଲେଖିଲି- ସେଥିରେ ଏତେଟା ଉଦ୍‌ବିଗ୍ନ ହେବାର କୌଣସି କାରଣ ନାହିଁ। ତଥାପି ସ୍ତମ୍ଭଟି ବ୍ୟକ୍ତିଗତ ହୋଇଥିଲେ ହେଁ ସମଷ୍ଟି ସହିତ ଏହାର ସଂପର୍କ ଦୃଷ୍ଟିରୁ ମୁଁ ଶୁଦ୍ଧ-ସାହିତ୍ୟ ବନାମ-ପପ୍ ସାହିତ୍ୟ ସମ୍ପର୍କରେ ମୋର ନିଜର ମତାମତ ନୈର୍ବ୍ୟକ୍ତିକ ଓ ଅନାସକ୍ତ ଭାବରେ ଏଠାରେ ଉପସ୍ଥାପନ କରୁଅଛି।

ପ୍ରଥମ କଥା ହେଉଛି, ଶୁଦ୍ଧ-ସାହିତ୍ୟ ଯେ ମନୋରଞ୍ଜନଧର୍ମୀ ବା ପପୁଲାର୍ ନୁହେଁ- ସେପରି ଧରିନେବା ଉଚିତ ନୁହେଁ। ଇଂରେଜୀ ଓ ୟୁରୋପୀୟ ଔପନ୍ୟାସିକମାନଙ୍କ କଥା ଛାଡ଼ିଦେଲେ ବି ଫକୀରମୋହନ ସେନାପତି ବା ରାଧାନାଥ ରାୟ ଯେ ପପୁଲାର ନୁହନ୍ତି ବା ନଥିଲେ, ତା' ନୁହେଁ। ଫକୀରମୋହନଙ୍କର 'ଛମାଣ ଆଠଗୁଣ୍ଠ' ଓ 'ମାମୁ' ଉପନ୍ୟାସ ହେଉ ବା କାଳିନ୍ଦୀ ଚରଣ ପାଣିଗ୍ରାହୀଙ୍କର 'ମାଟିର ମଣିଷ' ଉପନ୍ୟାସ ହେଉ- ଏସବୁ ଶୁଦ୍ଧ କୃତିତ୍ୱ ଶ୍ରେଣୀର ହୋଇଥିଲେ ହେଁ, ଏହି ଉପନ୍ୟାସମାନଙ୍କଠାରୁ ବଳି ଅନ୍ୟ ଲୋକପ୍ରିୟ ଉପନ୍ୟାସ ଓଡ଼ିଆରେ କ୍ୱଚିତ୍ ଲେଖାଯାଇପାରିଛି। ସେହିପରି ଭାବରେ ଫକୀରମୋହନଙ୍କ ସମସାମୟିକ ଇଂରେଜୀ ଔପନ୍ୟାସିକ ଚାର୍ଲସ୍ ଡିକେନ୍ସଙ୍କ ଉପନ୍ୟାସସବୁ ଯେତିକି ଶୁଦ୍ଧଶ୍ରେଣୀର, ସେତିକି ମଧ୍ୟ ଲୋକପ୍ରିୟ। ତେଣୁ ଶୁଦ୍ଧ-ସାହିତ୍ୟ ଓ ଲୋକପ୍ରିୟ-ସାହିତ୍ୟ ମଧ୍ୟରେ ସେପରି କୌଣସି

ଧରାବନ୍ଧା ସୀମାରେଖା ନାହିଁ। ଅସଲ କଥା ହେଉଛି, ଯେଉଁ ସାହିତ୍ୟ କେବଳ ରଚନାଧର୍ମୀ, କେବଳ ବର୍ଣ୍ଣମାଳାର ବିନ୍ୟାସ ଓ ଯେଉଁଥିରେ ସାହିତ୍ୟର ଆତ୍ମା ନାହିଁ; ଯାହା କେବଳ ବଜାର କାଟ୍‌ତି ପାଇଁ ଯୁବ ରୁଚିକୁ ଘେନି ରଚିତ ହୋଇଥାଏ। ତାହା ମୋ ଦୃଷ୍ଟିରେ ପ୍ରକାଶନ ଶିଳ୍ପର ବଜାର କାଟ୍‌ତି ମାଲ୍ ହୋଇପାରେ; ଖାଉଟିଦ୍ରବ୍ୟ ହୋଇପାରେ; ମାତ୍ର ସାହିତ୍ୟ ପଦବାଚ୍ୟ ନୁହେଁ। ତା' ବୋଲି ଯେ ସେପରି ବହି ଲେଖାଯିବ ନାହିଁ ବା ଛପାଯିବ ନାହିଁ- ତାହା କହିବା ମୋର ଅଭିପ୍ରାୟ ନୁହେଁ। ଅର୍ଥନୀତି ପରି ସାହିତ୍ୟରେ ମଧ୍ୟ ଚାହିଦା ଓ ଯୋଗାଣ ବା ଡିମାଣ୍ଡ ଆଣ୍ଡ୍ ସପ୍ଲାଇ ନାହିଁ, କାଳେକାଳେ ବଳବତ୍ତର ରହିଛି। ଯେପରି ଲେଖାପାଇଁ ବଜାରରେ ଚାହିଦା ରହିଛି, ସେପରି ଲେଖା ସ୍ୱାଭାବିକ ନିୟମରେ ଲେଖାଯିବ ଓ ଛାପାଯିବ। ଲୋକେ ଯଦି ବଜାରରେ 'ପର୍ଣ୍ଣୋଗ୍ରାଫି' ଖୋଜିବେ, ତା'ହେଲେ ତାହା ମଧ୍ୟ ଛାପାଯାଇ ବିକାହେବ। ମାତ୍ର ସାହିତ୍ୟର ମାନ ଓ ପାଠକଙ୍କ ରୁଚିକୁ ଏହା ଉନ୍ନତ କରି ପାରିବ କି ? ଶୁଦ୍ଧ-ସାହିତ୍ୟ ସହିତ ଏହାର ସଂପର୍କ ନାହିଁ। ଏଇଥିପାଇଁ ମୁଁ ଏହି ସ୍ତମ୍ଭରେ ଲେଖିଥିଲି ବହୁପକ୍ଷ ଲୋକେ ଯେପରି ଭଲ ସହଚର ଚାହାନ୍ତି ନାହିଁ, ସେହିପରି ସେମାନେ ଶୁଦ୍ଧ-ସାହିତ୍ୟ ବା ସତ୍-ସାହିତ୍ୟ ମଧ୍ୟ ଚାହାନ୍ତି ନାହିଁ।

କିନ୍ତୁ ମୋତେ ଯଦି ଶୁଦ୍ଧ-ସାହିତ୍ୟର ସଂଜ୍ଞା ବା ଭାଗମାପ ପଚାରିବେ, ତା'ହେଲେ ମୁଁ ନାଚାର। ଇଏ ନାରୀର ଲାବଣ୍ୟ ପରି। ଏହାକୁ ଅନୁଭବ କରିହୁଏ କିନ୍ତୁ ବର୍ଣ୍ଣନା କରିହୁଏ ନାହିଁ। ଲାବଣ୍ୟ ସୌନ୍ଦର୍ଯ୍ୟ ନୁହେଁ କିମ୍ବା ବିଉଟି କନ୍‌ଟେଷ୍ଟର ବିଚାରକମାନେ ଯେପରି ଅବୟବର ଦୈର୍ଘ୍ୟପ୍ରସ୍ଥ ଓ ବର୍ତ୍ତୁଳତା ମାପି ସୌନ୍ଦର୍ଯ୍ୟ ନିରୂପଣ କରନ୍ତି, ଲାବଣ୍ୟ କ୍ଷେତ୍ରରେ ସେପରି ମାପିବା ଚଳେ ନାହିଁ। ପାଠକର ଉପଲବ୍ଧି ଓ ପ୍ରସିଦ୍ଧି ଏହାର ଶ୍ରେଷ୍ଠ ନିୟାମକ। କବି ଗେଟେ ସର୍ବପ୍ରଥମେ କହିଲେ, ବିଶ୍ୱସାହିତ୍ୟ ବା ୱାଲଡ୍ ଲିଟରେଚରର କଥା। କିନ୍ତୁ ଶେଷପର୍ଯ୍ୟନ୍ତ ସେ ତାହାର ସଂଜ୍ଞା ନିରୂପଣ କରିପାରିଲେ ନାହିଁ। ମୁଁ ତେଣୁ ଶୁଦ୍ଧ-ସାହିତ୍ୟର ସଂଜ୍ଞା ଦେଇପାରିବି କିପରି ?

୧୯/୧୨/୮୫

# ବିଶ୍ୱ ସାହିତ୍ୟ

ଇତି ମଧ୍ୟରେ ବାଙ୍ଗାଲୋର ସହରରେ ବିଶ୍ୱ କନ୍ନଡ଼ ସମ୍ମିଳନୀ ମହାସମାରୋହରେ ପାଳିତ ହୋଇଗଲା। ପୃଥିବୀର ବିଭିନ୍ନ ଦେଶରୁ କନ୍ନଡ଼ ଭାଷା ଲେଖକ, ବିଦ୍ୱାନ ଓ ଗୁଣୀଜନମାନେ ଏହି ଉପଲକ୍ଷରେ ସମବେତ ହୋଇଥିଲେ। ପ୍ରଧାନମନ୍ତ୍ରୀ ଶ୍ରୀ ରାଜୀବ ଗାନ୍ଧୀ ଏହି ସମ୍ମିଳନୀକୁ ଉଦ୍‌ଘାଟନ କରି ବୟୋଜ୍ୟେଷ୍ଠ ଲେଖକ ଏବଂ ଗୁଣୀଜନମାନଙ୍କୁ ଉପାୟନ ବିତରଣ କରିଥିଲେ। ଏହା ପୂର୍ବରୁ ସେହିପରି ବିଶ୍ୱ ତେଲୁଗୁ ସମ୍ମିଳନୀ ଓ ବିଶ୍ୱ ତାମିଲ ସମ୍ମିଳନୀମାନ ଅନୁଷ୍ଠିତ ହୋଇଯାଇଅଛି। ନୂଆଦିଲ୍ଲୀଠାରେ ବିଶ୍ୱ ହିନ୍ଦୀ ସମ୍ମିଳନୀ ମଧ୍ୟ ଅନୁଷ୍ଠିତ ହୋଇଥିଲା। ଏସବୁ ସାହିତ୍ୟର ସାମ୍ପ୍ରତିକ ଅବସ୍ଥା ସମାଲୋଚକର ଦୃଷ୍ଟିରେ ଗୁଣାତ୍ମକ ବିଚାରରୁ ଯାହା ହୋଇଥାଉନା କାହିଁକି, ସମସ୍ତେ ଆଜି ବିଶ୍ୱବ୍ୟାପୀ ହେବାପାଇଁ ବ୍ୟାକୁଳ।

କିନ୍ତୁ ସୁସମୃଦ୍ଧ ଇଂରାଜୀ ବା ଫରାସୀ ସାହିତ୍ୟର ବିଶ୍ୱ ସମ୍ମିଳନୀମାନ ଅନୁଷ୍ଠିତ ହୋଇଥିବା ମୋତେ ଜଣାନାହିଁ। ଏହି ସାହିତ୍ୟିକମାନ ନିଜର ଐଶ୍ୱର୍ଯ୍ୟ ଓ ଉତ୍କର୍ଷରେ ଯଥାର୍ଥରେ ବିଶ୍ୱବ୍ୟାପୀ ହୋଇପାରିଛନ୍ତି ପାଠକର ଚେତନା ଓ ରସୋପଲବ୍‌ଧିରେ। ସେଇଥିପାଇଁ ବିଶ୍ୱ ସମ୍ମିଳନୀ କରାଇ ସେମାନଙ୍କ ସାହିତ୍ୟ ଓ ସଂସ୍କୃତିକୁ ପରିଚିତ କରାଇବା ସଂପୂର୍ଣ୍ଣ ଅବାନ୍ତର ହୋଇ ପଡ଼ିଅଛି। କିନ୍ତୁ ଆମ ପଡ଼ୋଶୀ ତେଲୁଗୁ ସାହିତ୍ୟରେ ବା ତାମିଲ ସାହିତ୍ୟରେ ଆଜି କ'ଣ ଲେଖାହେଉଛି ବା ସେହି ଭାଷାଭାଷୀ ସାହିତ୍ୟିକମାନେ କ'ଣ ଚିନ୍ତା କରୁଛନ୍ତି ତାହା ଆମମାନଙ୍କୁ ଜଣାନାହିଁ। ତାମିଲ୍, ତେଲୁଗୁ ଓ କନ୍ନଡ଼ଭାଷୀମାନେ ବିଶ୍ୱ ବା ମହାବିଶ୍ୱ ସମ୍ମିଳନୀର ଆୟୋଜନ କଲେ ସୁଦ୍ଧା ସେସବୁ ଭାଷାର ସାହିତ୍ୟ କେବଳ ସେହି ଭାଷାଭାଷୀଙ୍କ ମଧ୍ୟରେ ସୀମାବଦ୍ଧ ହୋଇ ରହିଯାଉଛି। ତେଣୁ କନ୍ନଡ଼ ସାହିତ୍ୟ କେବଳ ଗୋଟିଏ ବିଶ୍ୱ ସମ୍ମିଳନୀର ଆୟୋଜନ ମଧ୍ୟରେ ଯେ ବିଶ୍ୱବ୍ୟାପୀ ହୋଇପାରିବ ତାହା କେହି ଭାବିବା ଆଦୌ ଉଚିତ୍ ନୁହେଁ। ଏପରିକି ଏହା ଭାରତବ୍ୟାପୀ ସୁଦ୍ଧା ହୋଇପାରିବ ନାହିଁ। ଯେପରି ସବୁ ରାଷ୍ଟ୍ରୀୟ ପ୍ରୋତ୍ସାହନ ଓ

ପ୍ରଚାର ସତ୍ତ୍ୱେ 'ହିନ୍ଦୀ' ମଧ୍ୟ ହିନ୍ଦୀଭାଷୀ ଅଞ୍ଚଳମାନଙ୍କୁ ଅତିକ୍ରମ କରିପାରିଲା ନାହିଁ। ସାହିତ୍ୟ ତାହାର ଅନ୍ତର୍ନିହିତ ପ୍ରାଣଶକ୍ତିରେ କେବଳ ବିଶ୍ୱବ୍ୟାପୀ ହୋଇଥାଏ। ସେଥିପାଇଁ ବିଶ୍ୱ ସମ୍ମିଳନୀ ଡକାଇ ପ୍ରଧାନମନ୍ତ୍ରୀଙ୍କଦ୍ୱାରା ତାହାର ଉଦ୍‌ଘାଟନର ପ୍ରୟୋଜନ ପଡ଼େ ନାହିଁ। ଉଦାହରଣ ସ୍ୱରୂପ ଦୁର୍ଗମ ଆଇସ୍‌ଲାଣ୍ଡ୍‌ର ସାହିତ୍ୟ। ସାରା ବର୍ଷ ଧରି ଏହି ଦେଶର ଅଧିବାସୀମାନେ ତୁଷାରାଚ୍ଛନ୍ନ ଅବସ୍ଥାରେ ରହିଥାନ୍ତି। ତେଣୁ ଏ ଦେଶରେ ସାହିତ୍ୟର ପ୍ରକୃତି ସହଜରେ ଅନୁମେୟ। ତଥାପି ଏହାର ଜଣେ ଔପନ୍ୟାସିକ ହାଲଡର୍ ଲ୍ୟାକ୍‌ସନେସ୍ ତାଙ୍କର ନୋବେଲ୍ ପୁରସ୍କାର ପ୍ରାପ୍ତ ଦି' ଇଣ୍ଡିପେଣ୍ଡେଣ୍ଟ୍ ପିପୁଲ୍'ଦ୍ୱାରା ଆଇସ୍‌ଲ୍ୟାଣ୍ଡ୍‌ର ସାହିତ୍ୟକୁ ସମଗ୍ର ବିଶ୍ୱରେ ପରିଚିତ କରାଇପାରିଛନ୍ତି। ତାହା କେବଳ ସମ୍ଭବ ହୋଇପାରିଲା ଅନୁବାଦ ମାଧ୍ୟମରେ। ସେହିପରି ଭାବରେ ଡେନ୍‌ମାର୍କ ଓ ଚେକୋସ୍ଲୋଭାକିଆ ପ୍ରଭୃତି ଛୋଟ ଛୋଟ ଦେଶର ସାହିତ୍ୟ ମଧ୍ୟ ବିଶ୍ୱରେ ପରିଚିତ ହୋଇପାରିଛନ୍ତି ନିଜର ସୃଷ୍ଟି ପ୍ରତିଭାରେ। ଯେକୌଣସି ସାହିତ୍ୟକୁ ନିଜର ଭାଷାଭାଷୀ ସଂକୀର୍ଣ୍ଣ ଗଣ୍ଡିର ବାହାରେ ପରିଚିତ କରାଇବାପାଇଁ ବିଶ୍ୱସମ୍ମିଳନୀରେ ପ୍ରୟୋଜନ ଆଦୌ ନାହିଁ। ଏଥିପାଇଁ ସର୍ବାଦୌ ପ୍ରୟୋଜନ ଲେଖକମାନଙ୍କ ସୃଷ୍ଟି, ପ୍ରତିଭା ଓ ତାହାର ଅନୁବାଦ।

ତଥାପି ଏ ପ୍ରକାର ସମାବେଶର ଆୟୋଜନ ମଧ୍ୟରେ ଗୋଟାଏ ଭାଷାଭାଷୀ ଜାତିର ସ୍ୱାଭିମାନ ପରିତୃପ୍ତ ହୋଇଥାଏ। ଏହି ପରିତୃପ୍ତି ମଧ୍ୟରୁ ଯେଉଁ ଆତ୍ମପ୍ରତ୍ୟୟ ଜନ୍ମଲାଭ କରେ ତାହା ସୃଷ୍ଟି ନୈପୁଣ୍ୟକୁ ଋଦ୍ଧିମନ୍ତ କରିଥାଏ। ସେହି ଦୃଷ୍ଟିରୁ ଏ ପ୍ରକାର ଉତ୍ସବର ବହୁ ଆବଶ୍ୟକତା ରହିଛି।

ଏହି ପ୍ରସଙ୍ଗରେ ମନେପଡୁଛି, ତିନିବର୍ଷ ତଳେ ଓଡ଼ିଶା ସାହିତ୍ୟ ଅକାଦେମୀର ରଜତ ଜୟନ୍ତୀ ସମାରୋହ ଉପଲକ୍ଷେ ଭୁବନେଶ୍ୱରଠାରେ ଆୟୋଜିତ ହୋଇଥିଲା ନିଖିଳ ଉତ୍କଳ ସାହିତ୍ୟିକ ସମ୍ମିଳନୀ। ଏଥିରେ ବିଭିନ୍ନ ଜିଲ୍ଲାର ଗ୍ରାମାଞ୍ଚଳରୁ ସୁଦ୍ଧା ସାହିତ୍ୟିକମାନେ ଆସି ଯୋଗ ଦେଇଥିଲେ। ଏଥିପାଇଁ କିନ୍ତୁ ଉଦ୍ୟୋକ୍ତାମାନଙ୍କୁ ଅପବାଦ ଶୁଣିବାକୁ ମିଳିଲା। ଏତେ ଟଙ୍କା ବରବାଦ କରି ସାହିତ୍ୟର ଲାଭ ହେଲା କ'ଣ ? ମୁଁ ଉତ୍ତର ଦେଇଥିଲି, ଉତ୍ସବ ସମାରୋହ ମଧ୍ୟରେ ସାହିତ୍ୟର ସମୃଦ୍ଧି ହୁଏନାହିଁ। ସାହିତ୍ୟ ସୃଷ୍ଟିହୁଏ ଉତ୍ସବ ସମାରୋହଠାରୁ ବହୁ ଦୂରରେ, ନିଷ୍ପ୍ରଦୀପ କୋଣରେ, ଲେଖକର ସୃଷ୍ଟି ଯନ୍ତ୍ରଣା ମଧ୍ୟରେ। ତେଣୁ ସାହିତ୍ୟ ସମାରୋହରେ ସାହିତ୍ୟିକମାନେ ମିଳିବେ ସିନା, କିନ୍ତୁ ସାହିତ୍ୟ ନୁହେଁ। କିନ୍ତୁ ସେପରି ସାହିତ୍ୟ ସୃଷ୍ଟିପାଇଁ ଯେଉଁ ଆତ୍ମପ୍ରତ୍ୟୟ ଓ ଉପଲବ୍‌ଧିର ପ୍ରୟୋଜନ ତାହା କେବଳ ମିଳିପାରିବ ବିରାଟ ସାହିତ୍ୟ-ଉତ୍ସବମାନଙ୍କ ମଧ୍ୟରୁ। ସେହି ଦୃଷ୍ଟିରୁ କେବଳ ବିଶ୍ୱ କନ୍ନଡ଼ ସମ୍ମିଳନୀର ଆୟୋଜନ ନିଶ୍ଚୟ ପ୍ରଶଂସନୀୟ।

କିନ୍ତୁ ବିଶ୍ୱ 'ସାହିତ୍ୟର ସଂଜ୍ଞା' କ'ଣ ? ଏହାର ପ୍ରବର୍ତ୍ତକ ମହାକବି ଗେଟେ ସୁଦ୍ଧା ଏ ପ୍ରଶ୍ନର କୌଣସି ଉତ୍ତର ଦେଇ ପାରି ନାହାନ୍ତି। ଅନେକ ଦୁଃଖ କରନ୍ତି ପୁଣି ଓଡ଼ିଆ ସାହିତ୍ୟ କେବେ ବିଶ୍ୱ ସାହିତ୍ୟ ହୋଇପାରିବ। ମୁଁ ସେମାନଙ୍କୁ ଉତ୍ତର ଦେଇଥାଏ, ଓଡ଼ିଶା କ'ଣ ବିଶ୍ୱରୁ ବାହାର ? ଓଡ଼ିଆ ସାହିତ୍ୟ ମଧ୍ୟ ବିଶ୍ୱ ସାହିତ୍ୟ। ତାକୁ କେବଳ ପ୍ରତିଷ୍ଠିତ କରାଇପାରିଲେ ହେଲା। ଏ ଆହ୍ୱାନର ଉତ୍ତର ଦେବ କିଏ ? କିପରି ?

୦୯/୦୧/୮୬

# ଆମେ ସବୁ ଛିନ୍ନମୂଳ

୮୧ ବର୍ଷ ବୟସରେ ଇଂରାଜୀ କବି କ୍ରିଷ୍ଟୋଫର ଆଇଶରଉଡ୍‌ଙ୍କ ମୃତ୍ୟୁ ସମଗ୍ର ସାହିତ୍ୟ ଜଗତପାଇଁ ଏକ ଦୁଃସମ୍ବାଦ। ତାଙ୍କର ସୃଷ୍ଟି ପ୍ରତିଭା ଏପରି ଅନନ୍ୟସାଧାରଣ ଓ ବହୁମୁଖୀ ଥିଲା ଯେ କିପରି ସଂଜ୍ଞାତ୍ମକ ଭାବରେ ତାଙ୍କର ନିର୍ଦ୍ଦିଷ୍ଟ ପରିଚୟ ଦିଆଯାଇ ପାରିବ, ତାହା ପ୍ରକୃତରେ ମୋ ପକ୍ଷରେ ଏକ ସମସ୍ୟା। ସେ ଏକାଧାରରେ ଥିଲେ ଜଣେ ରହସ୍ୟବାଦୀ କବି, 'ମିଷ୍ଟିକ୍' ଭାରତୀୟ ଅଧ୍ୟାତ୍ମିକ ଦର୍ଶନର ଶ୍ରଦ୍ଧାଶୀଳ ଆଲୋଚକ, ହଲିଉଡ୍‌ରେ ଫିଲ୍ମ-ସ୍କ୍ରିପ୍‌ଟ ଲେଖକ ପୁଣି ଔପନ୍ୟାସିକ ! ଭାରତୀୟ ହିନ୍ଦୁ ଦର୍ଶନ ତାଙ୍କୁ ଏପରି ଗଭୀର ଭାବରେ ପ୍ରଭାବିତ କରିଥିଲା ଯେ 'ଶ୍ରୀମଦ୍ ଭଗବତ୍ ଗୀତା' ଓ ପତଞ୍ଜଳିଙ୍କ 'ଯୋଗସୂତ୍ର' ବ୍ୟତୀତ ସେ ସ୍ୱାମୀ ବିବେକାନନ୍ଦ ଓ ରାମକୃଷ୍ଣ ପରମହଂସଙ୍କ ସଂପର୍କରେ ମୌଳିକ ଗ୍ରନ୍ଥମାନ ରଚନା କରିଥିଲେ। ସାମ୍ପ୍ରତିକ ଅଧିକାଂଶ ଭାରତୀୟ ଲେଖକମାନଙ୍କର ଭାରତୀୟ ସଂସ୍କୃତି ସହିତ ଗଭୀର ପରିଚୟ ନଥିବାରୁ, ସେମାନେ ଛିନ୍ନମୂଳ ହୋଇ ପାଶ୍ଚାତ୍ୟରୁ ଉଧାରକରା ଏକ୍‌ଜିଷ୍ଟିଏନ୍‌ସିଆଲିଜ୍‌ମ ଓ ଆବସର୍ଡ଼ିଜିମ୍ ପ୍ରଭୃତି ବହୁ ତତ୍ତ୍ୱ ନେଇ ପାଗଳ।

କିନ୍ତୁ ଭାରତୀୟ ଆଧ୍ୟାତ୍ମିକ ସଂସ୍କୃତି ଓ ମୂଲ୍ୟବୋଧ ସମ୍ପର୍କରେ ବିନ୍ଦୁବିସର୍ଗର ଉଚ୍ଚାରଣ ସୁଦ୍ଧା ନାହିଁ। ସେଥିପାଇଁ ରୋମାଁ ରେଲାଂଙ୍କ ଲିଖିତ ରାମକୃଷ୍ଣ ପରମହଂସ ପୁସ୍ତକକୁ ଆମେ ଏକ ପ୍ରାମାଣିକ ଗ୍ରନ୍ଥ ରୂପେ ବିବେଚନା କରୁଛୁ। ସେହିପରି ଶ୍ରୀମଦ୍ ଭାଗବତ୍ ଗୀତାର ଅଧ୍ୟାତ୍ମିକ ଓ କାବ୍ୟିକ ସୌନ୍ଦର୍ଯ୍ୟପାଇଁ କ୍ରିଷ୍ଟୋଫର ଆଇଶରଉଡ୍‌ଙ୍କ ଶ୍ରୀମଦ୍ ଭଗବତ୍ ଗୀତାର ଇଂରାଜୀ ଅନୁବାଦ ଖୋଜୁଛୁ। ମୋର ମନେହୁଏ ଅଶ୍ୱଘୋଷଙ୍କ ପରି 'ବୁଦ୍ଧ ଚରିତ' ପରେ କବି ଏଡ୍‌ଉଇନ୍ ଆରନଲ୍‌ଡ଼ଙ୍କ 'ଦି ଲାଇଟ୍ ଅଫ୍ ଏସିଆ' ଗୌତମ ବୁଦ୍ଧଙ୍କ ଜୀବନୀ ସମ୍ପର୍କରେ ଏକମାତ୍ର ରସୋତୀର୍ଣ୍ଣ କାବ୍ୟ। ଅଥଚ କୌଣସି ଭାରତୀୟ କବି ବୁଦ୍ଧଙ୍କ ଜୀବନୀ ସମ୍ପର୍କରେ ଏପରି ଏକ ରସୋତ୍ତୀର୍ଣ୍ଣ କାବ୍ୟ ରଚନା କରିପାରି ନାହାନ୍ତି। ସେହିପରି 'ରୁବାୟତ'ର ନାନ୍ଦନିକ ଓ କାବ୍ୟିକ ସୌନ୍ଦର୍ଯ୍ୟର ପରିଚୟ

ଆମେ ଓମର୍ ଖେୟାମ୍‌ଙ୍କ ମୂଳ ରଚନାରୁ ଯେତେ ପାଇନାହୁଁ। ସେତେ ପାଇଛୁ କବି ଫିଜରାଲଡ୍‌ଙ୍କ ଅନନ୍ୟ ଅନୁବାଦରୁ। କଥିତ ଅଛି ପ୍ରସିଦ୍ଧ ଇଂରାଜୀ ଔପନ୍ୟାସିକ ସୋମରସେଟ୍ ମମ୍‌ଙ୍କ ଉପନ୍ୟାସ 'ଦି ରେଜର୍ସ-ଏଜ୍'ର ନାୟକର ସୃଷ୍ଟି ମୂଳରେ ଥିଲା, ହିନ୍ଦୁ ଦର୍ଶନ ମଧ୍ୟରେ କବି ଆଇଶରଉଡ୍‌ଙ୍କ ବ୍ୟାକୁଳ ଆଧ୍ୟାତ୍ମିକ ଅନ୍ୱେଷାର ପ୍ରେରଣା। ସେହିପରି ନୋବେଲ୍ ପୁରସ୍କାରପ୍ରାପ୍ତ ଆମେରିକାନ୍ ଔପନ୍ୟାସିକ ଅରନେଷ୍ଟ ହେମିଙ୍ଗ୍‌ୱେଙ୍କ 'ଦି ଓଲଡ୍‌ମ୍ୟାନ୍ ଏଣ୍ଡ୍ ସି' ଉପନ୍ୟାସ ହେଉଛି ଶ୍ରୀମଦ୍ ଭଗବତ ଗୀତାର 'କର୍ମଣ୍ୟେ ବାଧିକାରସ୍ତେ ମା ଫଳେଷୁ କଦାଚନ'ର ଏକ ପ୍ରତୀକ। ଏହି ପ୍ରତୀକକୁ ଆଶ୍ରୟ କରି ଉପରୋକ୍ତ ଉପନ୍ୟାସର ବୃଦ୍ଧ ଧୀବର ଚରିତ୍ର ପରିକଳ୍ପିତ ହୋଇଅଛି। ଜର୍ମାନ ଔପନ୍ୟାସିକ ହରମାନ୍ ହେସ୍‌ଙ୍କର କେବଳ 'ସିଦ୍ଧାର୍ଥ' ଉପନ୍ୟାସ କାହିଁକି, ଆଉରି କେତେକ ଉପନ୍ୟାସ ମଧ୍ୟ ଭାରତୀୟ ଆଧ୍ୟାତ୍ମିକତାର ମୂଲ୍ୟବୋଧଦ୍ୱାରା ଅନୁପ୍ରେରିତ। ଅଥଚ କୌଣସି ଭାରତୀୟ ଔପନ୍ୟାସିକ ସେପରି ଖଣ୍ଡେ ଉପନ୍ୟାସ ରଚନା କରିପାରିଲେ ନାହିଁ। ଏ ସମ୍ପର୍କରେ ତାଲିକା ଲମ୍ବାଇଲେ ତାହାର ଆକାର ଗୋଟିଏ ଦୀର୍ଘ ପ୍ରବନ୍ଧ ହୋଇଯିବ।

ପାଶ୍ଚାତ୍ୟ ଓ ଭାରତୀୟ ଲେଖକମାନଙ୍କ ମଧ୍ୟରେ ଗୋଟିଏ ଉଲ୍ଲେଖଯୋଗ୍ୟ ପାର୍ଥକ୍ୟ ହେଉଛି, ପାଶ୍ଚାତ୍ୟ ଲେଖକମାନେ ଉଧାରକରା ଧାରଣା ନେଇ କଦାପି ଲେଖନ୍ତି ନାହିଁ। ଯାହା ସେମାନଙ୍କ ନିବିଡ଼ ବ୍ୟକ୍ତିଗତ ଉପଲବ୍ଧିରେ ନାହିଁ, ତାହାକୁ ସେମାନେ ସ୍ପର୍ଶ କରନ୍ତି ନାହିଁ। ଅଧିକାଂଶ ଭାରତୀୟ ଲେଖକମାନଙ୍କ ପକ୍ଷରେ ଯାହା ଆଙ୍ଗିକ ଓ ଶୈଳୀ, ପାଶ୍ଚାତ୍ୟର ଲେଖକମାନଙ୍କ ପକ୍ଷରେ ତାହା ହେଉଛି ଆତ୍ମା ଓ ଜୀବନଚର୍ଯ୍ୟା। କବି ଆଇଶର୍ ଉଡ୍ ସେଥିପାଇଁ ବ୍ରିଟେନ୍‌ରେ ଜନ୍ମଗ୍ରହଣ କରିଥିଲେ ହେଁ, ଆମେରିକାର କାଲିଫର୍ଣ୍ଣିଆରେ ଗୋଟିଏ ନିର୍ଜନ କୁଟୀର ନିର୍ମାଣ କରି ସେଥିରେ ଭାରତୀୟ ଦର୍ଶନ ସମ୍ପର୍କରେ ମନନ, ଚିନ୍ତନ ଓ ଲେଖାଲେଖି କରୁଥିଲେ। ମୁଁ ନିଶ୍ଚିତ ଭାବରେ କହିପାରେ କୌଣସି ଭାରତୀୟ ଲେଖକଠାରେ ଏ ନିଷ୍ଠା ଖୋଜିଲେ କଦାପି ମିଳିବ ନାହିଁ। ବରଂ କଥାରେ ଆଧ୍ୟାତ୍ମିକତାର ବହୁ ଉଦ୍‌ବୋଧନ ଦେଲେ ହେଁ, କାର୍ଯ୍ୟରେ ସେମାନେ ଏପରି ଆଚରଣକୁ କହିବେ ପାଗଳାମି। ଆ ଚୁଃ ଚୁଃ କରିବେ। ଭାରତୀୟ ଲେଖକମାନେ ଭାରତୀୟ ସଂସ୍କୃତି ସହିତ ଘନିଷ୍ଠ ଭାବରେ ପରିଚିତ ନହେବା ପର୍ଯ୍ୟନ୍ତ ସେମାନଙ୍କର ଛିନ୍ନମୂଳତା ବା 'ରୁଟ୍ ଲେସ୍‌ନେସ୍' କଟିବ ନାହିଁ ବା ସେମାନଙ୍କ ଦୃଷ୍ଟିରେ ଆନ୍ତରିକତା, ପାଠକ ପ୍ରାଣରେ ରେଖାପାତ କରିବା ନାହିଁ।

କ୍ରିଷ୍ଟୋଫର ଆଇଶରଉଡ୍‌ଙ୍କ ଉପନ୍ୟାସ 'ଦି ଓ୍ୱାର୍ଲଡ୍ ଇନ୍ ଦି ଇଭିନିଂ' ଏ ପର୍ଯ୍ୟନ୍ତ ମୁଁ ପଢ଼ି ନାହିଁ। ଏ ଦେଶକୁ ବିଦେଶରୁ ଯନ୍ତ୍ରପାତି ଓ ବୈଦେଶିକ କୌଶଳ, ଏପରିକି ସ୍କଚ୍, ହୁଇସ୍କି, ଲିପଷ୍ଟିକ୍ ଓ ନେଲ୍‌ପଲିସ୍ ସୁଦ୍ଧା ପ୍ରଚୁର ଆମଦାନୀ ଚାଲିଛି। କିନ୍ତୁ ସତ୍-

ସାହିତ୍ୟର ଆମଦାନୀ ଉପରେ ଆକାଶଛୁଆଁ ଇମ୍‌ପୋର୍ଟ ଡ୍ୟୁଟି ଓ କଟକଣା । ଆମର ନୀତିନିୟନ୍ତାମାନଙ୍କୁ ସେକ୍ରେଟେରିଏଟ୍‌ର ଦପ୍ତରମାନଙ୍କରେ ନବସାଇ ଗୋଟିଏ ଚିଡ଼ିଆଖାନାରେ ବସାଇଲେ ବରଂ ସେମାନେ ଜନସାଧାରଣଙ୍କର ଅଧିକ ବେଶି ସେବାରେ ଆସନ୍ତେ । ଅନ୍ତତଃ ସେମାନଙ୍କର ମନୋରଞ୍ଜନ କରନ୍ତେ ନିଶ୍ଚୟ !

୧୬/୧/୮୬

# ଓଡ଼ିଶାରେ ଉର୍ଦ୍ଦୁ-ଅକାଦେମୀ

ମୁଖ୍ୟମନ୍ତ୍ରୀ ଜାନକୀବାବୁ; ଏବେ ନିକଟରେ ଓଡ଼ିଶାରେ ଉର୍ଦ୍ଦୁଭାଷା ଓ ସାହିତ୍ୟର ବିକାଶପାଇଁ, 'ଉର୍ଦ୍ଦୁ ଅକାଦେମୀ'ର ସ୍ଥାପନ ଘୋଷଣା କରି, ସେଥିପାଇଁ ଏକ ଲକ୍ଷ ଟଙ୍କା ଅନୁଦାନ ମଞ୍ଜୁର କରିଛନ୍ତି। ଏ ସମ୍ପର୍କରେ ବଲାଙ୍ଗୀରରୁ ଜଣେ ପାଠକ, ଶ୍ରୀ ଧର୍ମବ୍ରତ ରଥ ଏକ ଦୀର୍ଘ ପତ୍ରରେ ମୋତେ ଲେଖିଛନ୍ତି-

୧. ଉର୍ଦ୍ଦୁ କାହାର ଭାଷା ? ଯଦି କୁହାଯାଏ ଓଡ଼ିଶାରେ ବସବାସ କରି ରହୁଥିବା ମୁସଲମାନମାନଙ୍କର, ତେବେ ବଙ୍ଗଳାର ମୁସଲମାନମାନେ ନିଜକୁ ବଙ୍ଗାଳୀ ଓ ବଙ୍ଗଭାଷୀ କହି ଗର୍ବିତ ହେଉଛନ୍ତି କାହିଁକି ? ସେଠାରେ ଉର୍ଦ୍ଦୁ ଅକାଦେମୀ ଅଛି କି ? ୨. ଭବିଷ୍ୟତରେ ସମ୍ବଲପୁର ଅକାଦେମୀ, ସାନ୍ତାଳୀ ଅକାଦେମୀ, ବଙ୍ଗଳା ଅକାଦେମୀ ତଥା ଖ୍ରୀଷ୍ଟିଆନ୍‌ମାନଙ୍କପାଇଁ ନାଗାଲାଣ୍ଡ ପରି ଇଂଲିଶ୍ ଅକାଦେମୀ ମଧ୍ୟ ଓଡ଼ିଶା ସରକାରଙ୍କୁ ନିଶ୍ଚୟ ବ୍ୟବସ୍ଥା କରିବାକୁ ପଡ଼ିବ। ୩. ତା'ହେଲେ ଆଗାମୀ ଦଶବର୍ଷ ପରେ ଭାଷା ଦୃଷ୍ଟିରୁ ଓଡ଼ିଶାକୁ ଭାଗଭାଗ କରିବାକୁ ପଡ଼ିବ ନାହିଁ କି ? ସେତେବେଳେ ଆପଣଙ୍କୁ ପଚାରିଲେ ମଧ୍ୟ ଆପଣ କହି ପାରିବେ ନାହିଁ ଓଡ଼ିଆ କିଏ ? ଇତ୍ୟାଦି।"

ମୋ ବିଚାରରେ ଉର୍ଦ୍ଦୁ କିନ୍ତୁ ଏକା ମୁସଲମାନଙ୍କର ଭାଷା ନୁହେଁ। ମୁନ୍‌ସୀ ପ୍ରେମ୍‌ଚନ୍ଦ, କଶନ ଚନ୍ଦର, ଜୈନେନ୍ଦ୍ର କୁମାରଙ୍କ ପରି ଔପନ୍ୟାସିକମାନଙ୍କଠାରୁ ଆରମ୍ଭ କରି ବହୁ ହିନ୍ଦୀ କବି ଉର୍ଦ୍ଦୁରେ ନିଜ ନିଜର ରଚନାମାନ କରିଯାଇଛନ୍ତି। ଉର୍ଦ୍ଦୁ ସେଥିପାଇଁ ଏକ ଭାରତୀୟ ଭାଷାରୂପେ ସମ୍ବିଧାନରେ ସ୍ୱୀକୃତି ଲାଭ କରିଛି। ଉର୍ଦ୍ଦୁର ଜନ୍ମଭୂମି ଭାରତ। ଉର୍ଦ୍ଦୁ ହେଉଛି ମୂଳ 'ଓରଦୁ' ଶବ୍ଦର ପାରସିକ ରୂପାନ୍ତର। ଏହା ଆରବୀ ଓ ପାର୍ସୀଦ୍ୱାରା ବହୁ ପରିମାଣରେ ପ୍ରଭାବିତ ହୋଇଥିଲେ ହେଁ ଭାରତୀୟ ପ୍ରବୃତ୍ତିଦ୍ୱାରା ଏହା ବହୁ ଭାବରେ ପ୍ରଭାବିତ। ସେଥିପାଇଁ ଦ୍ୱାଦଶ ଓ ତ୍ରୟୋଦଶ ଶତାବ୍ଦୀରେ ଉର୍ଦ୍ଦୁକୁ 'ଯୁବାନ୍-ଇ-ହୀନ୍ଦ୍‌ବୀ' ବା 'ଯୁବାନ୍-ଇ-ଦେହଲବୀ' ବା 'ଖଡ଼ୀ' ବୋଲି କୁହାଯାଉଥିଲା। ବିହାରରେ ହିନ୍ଦୁମାନେ ସୁଦ୍ଧା ଯେଉଁ ହିନ୍ଦୀ କହୁଥିଲେ, ତାହା ମୁଖ୍ୟତଃ ଥିଲା 'ଖଡ଼ୀ' ବୋଲି। ଭାରତୀୟ

ମଧ୍ୟଯୁଗରେ ଏହି ଭାଷାଟି ନବାବ୍ ଓ ବାଦ୍‌ଶାହମାନଙ୍କ ଦରବାରଠାରୁ ଆରମ୍ଭ କରି ସୁଫି, ସାଧୁ ସନ୍ଥମାନଙ୍କର ଆସ୍ଥାନ ପର୍ଯ୍ୟନ୍ତ ସର୍ବତ୍ର ପ୍ରଚଳିତ ଓ ଆଦୃତ ଥିଲା। ଉର୍ଦ୍ଦୁ ଭାଷାକୁ କେବେ କୌଣସି ଦିନ, ଭାରତରେ ଧର୍ମ ଦୃଷ୍ଟିରୁ କେବଳ ମୁସଲମାନମାନଙ୍କର ଭାଷା ବୋଲି ବିବେଚନା କରାଯାଇଥିବା ମୁଁ ଅନ୍ତତଃ ଜାଣିନାହିଁ। ତେବେ ପରବର୍ତ୍ତୀ କାଳରେ ସାମ୍ପ୍ରଦାୟିକ ରାଜନୀତି ଓ ସାମାଜିକ ଓ ସାଂସ୍କୃତିକ କ୍ଷେତ୍ରରେ ଯେଉଁ ବିଭ୍ରାନ୍ତି ସୃଷ୍ଟି କରିଥିଲା, ତା' ଫଳରେ ଉର୍ଦ୍ଦୁ ଭାଷା ସାଂପ୍ରଦାୟିକ ଭାବନାଦ୍ୱାରା ଅଭିବ୍ୟଞ୍ଜିତ ହୋଇପଡ଼ିଛି। ଏହା ସତ୍ତ୍ୱେ ପଶ୍ଚିମବଙ୍ଗଳାରେ ମୁସଲମାନ୍‌ମାନେ ମାତୃଭାଷା ବଙ୍ଗଳାପାଇଁ ଅତି ଗର୍ବିତ। କବି ନଜରୁଲ୍ ଇସ୍‌ଲାମ୍ ଓ ସୟଦ ମୁସ୍ତବା ଅଲ୍ଲୀଙ୍କ ପରି ବହୁ ମୁସଲମାନ କବି ଓ ଲେଖକ ଆଧୁନିକ ବଙ୍ଗଳା ସାହିତ୍ୟକୁ ବହୁ ଭାବରେ ସମୃଦ୍ଧ କରିଯାଇଛନ୍ତି। ପଶ୍ଚିମ ବଙ୍ଗଳାର ବିଶିଷ୍ଟ ମୁସଲମାନ୍‌ମାନେ ବଙ୍ଗଳାରେ ହିଁ କଥାବାର୍ତ୍ତା କରନ୍ତି। ଏକଦା ପୂର୍ବ ବଙ୍ଗଳା ବା ପୂର୍ବ ପାକିସ୍ଥାନ୍‌ରେ, ବଙ୍ଗାଳୀ ମୁସଲମାନମାନଙ୍କ ଉପରେ ଉର୍ଦ୍ଦୁ ଭାଷା ଚପାଇ ଦିଆଯିବାରୁ, ତା' ବିରୋଧରେ ତୁମୂଳ ଗଣସଂଗ୍ରାମ ଆରମ୍ଭ ହୋଇ, ଅବଶେଷରେ ତାହା କିପରି ଗୃହଯୁଦ୍ଧରେ ପରିଣତ ହେଲା, ତାହା ଏଇ ସେଦିନର କଥା।

ତେବେ ବଙ୍ଗଳାର ପଡ଼ୋଶୀ ଓଡ଼ିଶାରେ ମୁସଲମାନ୍ ଧର୍ମାବଲମ୍ବୀମାନେ ଉର୍ଦ୍ଦୁ ପ୍ରତି ଆକୃଷ୍ଟ ହେବା ସ୍ୱାଭାବିକ ହେଲେ ହେଁ ଓଡ଼ିଆ ଭାଷା ଓ ସାହିତ୍ୟର ମୂଳସ୍ରୋତରୁ କାହିଁକି ବିଚ୍ଛିନ୍ନ ହୋଇପଡ଼ିବେ, ତାହାର କୌଣସି ଭାଷାତାତ୍ତ୍ୱିକ ଓ ସାଂସ୍କୃତିକ କାରଣ ନାହିଁ। ଏହାର କାରଣ ସାମାଜିକ ଓ ଐତିହାସିକ ହୋଇପାରେ। ତେବେ ମୁଁ ଆଶା କରୁଛି ଉର୍ଦ୍ଦୁ ଅକାଦେମୀ ଓଡ଼ିଶାରେ ସ୍ଥାପିତ ହେବା ପରେ, ତାହା ଓଡ଼ିଆ ଭାଷା ଓ ସାହିତ୍ୟକୁ ଉର୍ଦ୍ଦୁ ସାହିତ୍ୟରେ ପ୍ରସାରିତ କରିବା ସଙ୍ଗେ ସଙ୍ଗେ, ଉର୍ଦ୍ଦୁ ସାହିତ୍ୟକୁ ମଧ୍ୟ ଓଡ଼ିଆ ସାହିତ୍ୟରେ ପ୍ରସାରିତ କରିବାରେ ସହାୟକ ହେବ। ମୋଟ କଥା ଦୁଇ ଭାଷା ଓ ସଂସ୍କୃତିକୁ ଏହା ନିକଟତର କରିବାରେ ସହାୟକ ହେବ। ବସ୍ତୁତଃ ସଂସ୍କୃତିର ଏହି ଯୁଗଳବନ୍ଦୀ ଭାରତୀୟ ସଂସ୍କୃତିର ଏକ ବୈଶିଷ୍ଟ୍ୟ। ଓଡ଼ିଶାରେ ଉର୍ଦ୍ଦୁ ଅକାଦେମୀ ସ୍ଥାପିତ ହେଲା ବୋଲି ଯେ ଉର୍ଦ୍ଦୁ ଭାଷୀମାନେ ଭାଷାଭିତ୍ତିରେ, ଗୋଟିଏ ସ୍ୱତନ୍ତ୍ର ସତ୍ତା ଦାବୀ କରିବେ, ଏପରି ଭାବିବା ଅନୁଚିତ।

କିନ୍ତୁ ମୁଁ ଆଜି ସୁଦ୍ଧା ବୁଝି ପାରିଲି ନାହିଁ- ଭାଷା ଯାହା ଥିଲା, ମନୁଷ୍ୟ ମନୁଷ୍ୟ ମଧ୍ୟରେ ଭାବର ଆଦାନ ପ୍ରଦାନପାଇଁ ମାଧ୍ୟମ, ତାହା କାହିଁକି ଧର୍ମ ପରି ମନୁଷ୍ୟ ମନୁଷ୍ୟ ମଧ୍ୟରେ ବିଭେଦ ଓ ଦୂରତ୍ୱର ପ୍ରାଚୀର ଠିଆ କରିବ । ଭାଷାପ୍ରୀତି କାହିଁକି ଧର୍ମାନ୍ଧତା ପରି ଏକ ଉନ୍ମତ୍ତତାରେ ପରିଣତ ହେବ।

*୨୩/୦୧/୮୬*

# ସାହିତ୍ୟ ଓ ରାଜନୀତି

ଗତ ମାସରେ ନ୍ୟୁୟର୍କ ସହରରେ ଆନ୍ତର୍ଜାତିକ PEN (କବି, ପ୍ରାବନ୍ଧିକ ଓ ଔପନ୍ୟାସିକମାନଙ୍କର ସଂସ୍ଥା) କଂଗ୍ରେସର ୪୮ତମ ଅଧିବେଶନ ଅନୁଷ୍ଠିତ ହୋଇଯାଇଛି। ଏଥିରେ ୪୨ଟି ଦେଶର ବିଶିଷ୍ଟ କବି ଓ ଔପନ୍ୟାସିକମାନେ ଯୋଗଦେଇଥିଲେ। ଏହାର ଯେଉଁ ବିବରଣୀ ମୋ ଦୃଷ୍ଟିକୁ ଆସିଛି, ସେଥିରେ ମୁଁ ଖୋଜୁଥିଲି, ସାହିତ୍ୟ ଓ ସାହିତ୍ୟିକମାନଙ୍କର ବୃତ୍ତିଗତ ଓ ଦୃଷ୍ଟିଗତ ସମସ୍ୟା ସଂପର୍କରେ କିଛି ନୂତନ ଚିନ୍ତା ଓ ଦିଗ୍‌ଦର୍ଶନ। ମାତ୍ର ଏହି ଅଧିବେଶନରେ ରାଜନୀତିର ଚର୍ଚ୍ଚା ଯେତେ ପ୍ରାଧାନ୍ୟ ଆହରଣ କରିଥିଲା, ସାହିତ୍ୟ ସେତେଟା ଗୁରୁତ୍ୱ ପାଇଥିବା ପରି ମନେ ହେଲାନାହିଁ। ବସ୍ତୁତଃ, ସାହିତ୍ୟିକମାନେ ଏକାଠି ହେଲେ ଯାହାସବୁ ସାଧାରଣତଃ ଆଲୋଚନା କରନ୍ତି, ସେଥିରେ ସାହିତ୍ୟର ସତ୍ତା କମ୍, ରାଜନୀତି ଓ ଅନ୍ୟ ଆବ୍ରାକାଡ଼ାବ୍ରା ଥାଏ ବେଶି। ମୁଁ ଭାବୁଥିଲି, ଇଏ ଆମ ଓଡ଼ିଶାର ରୀତି। କିନ୍ତୁ ଏବେ ଦେଖୁଛି, ତାହା ଆନ୍ତର୍ଜାତିକ ସାହିତ୍ୟିକମାନଙ୍କର ସୁଦ୍ଧା ଗତି !

ମୁଁ ଭାବୁଥିଲି, କେବଳ ଭାରତରେ, ପୁଣି ବିଶେଷତଃ ଓଡ଼ିଶାରେ କୌଣସି ଜଣେ ରାଜନୈତିକ କ୍ଷମତାଧାରୀଙ୍କୁ ନପାଇଲେ, ସାହିତ୍ୟିକମାନେ ନିଜକୁ ବଡ଼ ଅରକ୍ଷଣୀୟ ମନେ କରନ୍ତି। ସେଥିପାଇଁ ସାହିତ୍ୟ ସଭାମାନଙ୍କରେ ପୌରୋହିତ୍ୟ କରନ୍ତି, ରାଜନୈତିକ କ୍ଷମତାଧାରୀ ପଦସ୍ଥ ବ୍ୟକ୍ତି ଅଥବା ଲକ୍ଷ୍ମୀଙ୍କ କୃପାଲାଭ କରିଥିବା କୁବେରମାନେ। ଭାରତୀୟ ମଧ୍ୟଯୁଗରେ, କେହି ଜଣେ କହିଥିଲେ, ବିନା ଆଶ୍ରୟରେ କବିତା, ବନିତା ଆଉ ଲତା ତିଷ୍ଠି ପାରନ୍ତି ନାହିଁ। ବନିତାମାନେ ଏବେ କିନ୍ତୁ ସ୍ୱନିର୍ଭର। ଲତାସବୁ ମଧ୍ୟ ଆପେଆପେ ମାଡୁଛନ୍ତି। କିନ୍ତୁ ଏବେ ରାଜଧାନୀ ଭୁବନେଶ୍ୱରରେ ରହି ମୁଁ ଦେଖୁଛି, ଆମ ସାହିତ୍ୟ ପରିବେଶରୁ ମଧ୍ୟଯୁଗୀୟ ଲତା ଚରିତ୍ର କଟି ନାହିଁ। ତେବେ ଓଡ଼ିଶାର ସାହିତ୍ୟିକମାନେ ଜାଣି ଆଶ୍ୱସ୍ତ ହେବେ PENର ୪୮ତମ କଂଗ୍ରେସ ଏଥିରୁ ମଧ୍ୟ ମୁକ୍ତ ନଥିଲା ! PENର ସଭାପତି, ନରମାନ୍ ମେଲର ('ଦି ନେକେଡ୍ ଆଣ୍ଡ୍ ଦି ଡେଡ୍'ର ଲେଖକ) ଜଣେ

ପ୍ରସିଦ୍ଧ ଆମେରିକାନ୍ ଔପନ୍ୟାସିକ । ସାମ୍ବାଦିକତାସୁଲଭ ରିପୋଟିଙ୍ଗ୍ ଶୈଳୀ ସେ ଉପନ୍ୟାସ ରଚନାରେ ପ୍ରବର୍ତ୍ତନ କରିଥିଲେ। ଏହା ମଧ୍ୟ ବେଶ୍ ଆଦୃତ ହୋଇଥିଲା। ସେ ପୁଣି ସଚ୍ଚା ଲେଖକ ଓ କବିମାନଙ୍କ ପରି ଜଣେ 'ଡିସେଣ୍ଟର' ଓ ସତ୍ତା ବିରୋଧୀ । ସେ କିନ୍ତୁ ଏହି ଆନ୍ତର୍ଜାତିକ ସାହିତ୍ୟ ସମ୍ମିଳନୀକୁ ଉଦ୍‌ଘାଟନ କରିବାପାଇଁ ଆମନ୍ତ୍ରଣ କରିଥିଲେ କୌଣସି ସର୍ବମାନ୍ୟ ଲେଖକ ବା କବିଙ୍କୁ ନୁହେଁ; ଆମେରିକାର ସ୍ୱରାଷ୍ଟ୍ର ମନ୍ତ୍ରୀ ବା ସେକ୍ରେଟାରୀ ଅଫ୍ ଷ୍ଟେଟସ୍ ଜର୍ଜ ସୁଲଜଙ୍କୁ। ଏଥିପାଇଁ ସଭାପତି ନରମାନ୍ ମେଲ୍‌ରଙ୍କ ଉପରେ PEN ଅଧିବେଶନରେ କମ୍ ଆକ୍ଷେପ ବୃଷ୍ଟି ଓ ଆକ୍ରମଣ ହେଲାନାହିଁ। ବଡ଼ ବଡ଼ ରାଜନୈତିକ ନେତାମାନେ ସାରସ୍ୱତ ଓ ବୌଦ୍ଧିକ କୌଳିନ୍ୟପାଇଁ ଯେପରି ଖଣ୍ଡେ ଦିଖଣ୍ଡ ବହି ଲେଖିଥାଆନ୍ତି, ଜର୍ଜ ସୁଲଜ୍ ମଧ୍ୟ ସେହିପରି ଦୁଇଖଣ୍ଡ ବହିର ପ୍ରଣେତା। ତେଣୁ ଜର୍ଜ ସୁଲଜ୍ ମଧ୍ୟ ଜଣେ ସାହିତ୍ୟିକ ବୋଲି ଯୁକ୍ତି ଦର୍ଶାଇ ମେଲ୍‌ର ସେ ଯାତ୍ରାରୁ ରକ୍ଷା ପାଇଗଲେ।

ତେବେ ଏଥିରେ, ଜର୍ମାନ ଔପନ୍ୟାସିକ, ଗୁଂଥର ଗ୍ରାସ୍ ('ଟିନ୍ ଡ୍ରମ୍'ର ସୁପରିଚିତ ଲେଖକ)ଙ୍କଠାରୁ ଆରମ୍ଭ କରି ଟମ୍ ମରିସନ୍ ଓ ଜ୍ୟର୍ଜି କୋନ୍‌ରାର୍ଡ୍‌ଙ୍କ ପର୍ଯ୍ୟନ୍ତ ଯେତେ ଯେତେ ଲେଖକ, ଭାଷଣ ଦେଇଥିଲେ, ସମସ୍ତଙ୍କ ଭାଷଣରେ, ଆମେରିକା ସରକାରର ତୀବ୍ର ରାଜନୈତିକ ସମାଲୋଚନା ଶୁଣାଯାଇଥିଲା। ଔପନ୍ୟାସିକ ସଲ୍‌ବେଲୋ ତାଙ୍କ ଉପନ୍ୟାସମାନଙ୍କରେ, ଆମେରିକା 'ସବୁ ପାଇଛିର ଦେଶ' ବୋଲି ଯେପରି ଚିତ୍ରଣ କରିଛନ୍ତି- ତାହା ଏକ ଶୂନ୍ୟଗର୍ଭା ପ୍ରଗଲ୍‌ଭତା ବୋଲି, ଆମେରିକାର ଅଧିକାଂଶ ଲେଖକ ମତ ପ୍ରକାଶ କରିଥିଲେ।

ସାହିତ୍ୟିକମାନେ, ନୂତନ ମୂଲ୍ୟବୋଧର ଚିରନ୍ତନ ସନ୍ଧାନୀ ଥିବାରୁ ସେମାନେ କୌଣସି ନିର୍ଦ୍ଦିଷ୍ଟ ସ୍ଥିତି ଓ ସତ୍ତାକୁ ନିର୍ବିବାଦରେ ଗ୍ରହଣ କରିପାରନ୍ତି ନାହିଁ। ଏହା ସ୍ୱାଭାବିକ ଓ ହେବା ମଧ୍ୟ ଉଚିତ। ସାହିତ୍ୟିକମାନେ ସାମ୍ବାଦିକମାନଙ୍କ ପରି ବାଜାଦାର୍ ହେବା ଆଶା କରାଯାଏ ନାହିଁ। ବୃତ୍ତିଗତ କାରଣରୁ, ସାମ୍ବାଦିକମାନେ ବାଜା ବଜାଇବାକୁ ବାଧ୍ୟ। କିନ୍ତୁ ସାହିତ୍ୟିକମାନଙ୍କପାଇଁ ସେପରି କୌଣସି ବାଧ୍ୟବାଧକତା ନାହିଁ । ସେଥିପାଇଁ ସାହିତ୍ୟସଭାମାନଙ୍କରେ, ସାହିତ୍ୟିକମାନେ ପ୍ରାୟଶଃ କିଛିଟା ରାଜନୈତିକ ସମାଲୋଚନା ଆଡ଼େ ମୁହାଁଇ ଥାଆନ୍ତି । PENର ୪୮ତମ କଂଗ୍ରେସ ଅଧିବେଶନରେ, ମଧ୍ୟ ସେଇୟା ହେଲା । କିନ୍ତୁ ଏଥିରେ ଖାଣ୍ଟି କଥା କହିଥିଲେ, ଦକ୍ଷିଣ ଆଫ୍ରିକାର ଔପନ୍ୟାସିକ ନାଦାଇନ୍ ଗୋର୍ଦ୍ଦମର। ସେ କହିଲେ, ରାଷ୍ଟ୍ର ଓ ସରକାର ଉପରେ ଲେଖକମାନଙ୍କର ଯେ କୌଣସି ପ୍ରଭାବ ରହିଛି, ସେଥିରେ ତାଙ୍କର ଘୋର ସନ୍ଦେହ।

'ଗରଜିଲା ମେଘ ବରଷେ ନାହିଁ !' କିନ୍ତୁ ମେଘ ଗର୍ଜନ ଭିତରେ ଆମେ ଅପେକ୍ଷା କରୁ, ଜଟାଜୁଟ ମେଲି ନଟରାଜଙ୍କ ପ୍ରମତ୍ତ ଅବତରଣପାଇଁ ! ଆମେ ଅପେକ୍ଷା କରୁ, ନବବର୍ଷାର ବାରିଧାରାପାଇଁ ! ଲେଖକ ଓ କବିମାନଙ୍କର କାରବାର ମନୁଷ୍ୟର ଚିନ୍ତା, ଚେତନା ଓ ହୃଦୟ ସହିତ। ସେମାନେ ଜନମାନସରେ ଚେତନାର ଯେଉଁ ନବତରଙ୍ଗ ସୃଷ୍ଟି କରନ୍ତି, ତାହା ଦିନେ ସବୁ ଓଲଟପାଲଟ କରିଦିଏ।

ତେଣୁ ସାହିତ୍ୟିକମାନଙ୍କର ସମାରୋହରେ ଜର୍ଜ ସୁଲଜ୍‌ଙ୍କ ପରି ପୁରୋଧାମାନେ ବାସ୍ତବିକ୍ ସଂପୂର୍ଣ୍ଣ ଅବାନ୍ତର।

୦୬/୦୨/୮୬

# ଭାରତ ଆବିଷ୍କାର

ଯେଉଁ ଭାରତ ସହିତ ମୁଁ ଏତେକାଳ ମୋର ଚିନ୍ତା ଓ ଚେତନାରେ ପରିଚିତ ଥିଲି, ତାହା ହଠାତ୍ ହଜିଯାଇଥିଲା; ଭି.ଡ଼ି.ଓ., ହିନ୍ଦୀ ଫିଲ୍ମ ଆଉ ରଙ୍ଗିନ୍ ଟିଭିର ବଜାର-ସଂସ୍କୃତି ମଧ୍ୟରେ। ମୋର ପରିଚିତ ଭାରତର ବ୍ୟାକୁଳ ସନ୍ଧାନ କରୁକରୁ; ଦିନେ ଟେଲିଭିଜନର ପରଦାରେ ଦେଖିଲି, ଭାରତକୁ ପୋପ୍ ଜନପଲ୍ (ଦ୍ୱିତୀୟ)ଙ୍କ ଶୁଭାଗମନର ଦୃଶ୍ୟ। ପୋପ୍ ମୋତେ ଲାଗୁଥିଲେ ତ୍ରିଚିବରଧାରୀ କୌଣସି ବୌଦ୍ଧ ଆଚାର୍ଯ୍ୟଙ୍କ ପରି ! ପ୍ରୋଟୋକଲ୍ ଅନୁସାରେ ତ ତାଙ୍କୁ, ଫୌଜୀ ସଲାମୀ, ତୋପ ସଲାମୀଠାରୁ ଆରମ୍ଭ କରି ସବୁ ପ୍ରକାର ଔପଚାରିକ ସମ୍ବର୍ଦ୍ଧନା ଜ୍ଞାପନ କରାଯାଇଥିଲା; ମାତ୍ର ସେଥିସହିତ; ସେ ଯେପରି ଆଦୌ ଖାପ ଖାଉନଥିଲେ। କ୍ଷମତା ଓ ଦର୍ପର ଅତ୍ୟୁଜ୍ଜ୍ୱଳ ପୃଷ୍ଠଭୂମିରେ, ସେ ନିତାନ୍ତ ଖାପଛଡ଼ା ଓ ନିଃସଙ୍ଗ ଦିଶୁଥିଲେ।

ଭାରତକୁ ଅନ୍ୟ ରାଷ୍ଟ୍ରମୁଖ୍ୟମାନେ ପଦାର୍ପଣ କଲାବେଳେ, ସେମାନଙ୍କ ଚାଲିରେ ମୁଁ ଲକ୍ଷ୍ୟ କରିଛି, ସେମାନେ ଯେପରି ସେମାନଙ୍କ ପାଦରେଣୁରେ ଭାରତ ଭୂମିକୁ ଧନ୍ୟ କରିଛନ୍ତି। ପୋପ୍ କିନ୍ତୁ ଭ୍ୟାଟିକାନ୍‌ର ରାଷ୍ଟ୍ରମୁଖ୍ୟ ହୋଇଥିଲେ ହେଁ, ସେ ଯେପରି ନତଜାନୁ ହୋଇ ଦଣ୍ଡବତ ପରି କପାଳକୁ ଭୂମିରେ ଲଗାଇ, ଦୁଇ ପ୍ରସାରିତ କର ଯୋଡ଼ି ଭାରତ ଭୂମିକୁ ଚୁମ୍ବନ କଲେ, ତାରି ମଧ୍ୟରେ ମୁଁ ପୁଣି ମୋର ହଜିଲା ଭାରତର ଆତ୍ମାକୁ ଆବିଷ୍କାର କରିପାରିଲି। ଟେଲିଭିଜନ ସଂପର୍କରେ ମୋର ଏକ ହଜାର ଏକ ଅଭିଯୋଗ ରହିଥିବା ସତ୍ତ୍ୱେ, ଏହି ମର୍ମସ୍ପର୍ଶୀ ଦୃଶ୍ୟଟି ମୁଁ ଦେଖିପାରିଥିବା ହେତୁ, ପ୍ରକୃତରେ ଟେଲିଭିଜନ ନିକଟରେ ଗଭୀର ଭାବରେ ଋଣୀ।

ପୋପଙ୍କର ଏହି ଭାବବିହ୍ୱଳତା ମଧ୍ୟରେ ଅଭିନୟ ନଥିଲା ବା ଭାରତୀୟମାନଙ୍କ ଆଖି ଝଲସାଇବାପାଇଁ କୂଟନୈତିକ ଉଦ୍ୟମ ନଥିଲା। ଏଥିରେ ମୁଁ ଲକ୍ଷ୍ୟ କରିଥିଲି, ଭାରତ ପ୍ରତି ଗଭୀର ଶ୍ରଦ୍ଧା ଓ ସମ୍ମାନ। ଏ ଭାରତ ଥିଲା ତାଙ୍କ ଦୃଷ୍ଟିରେ ଗୌତମ ବୁଦ୍ଧଙ୍କଠାରୁ ମହାତ୍ମା ଗାନ୍ଧୀଙ୍କ ପର୍ଯ୍ୟନ୍ତ ସବୁ ସନ୍ଥ, ମହାତ୍ମା, ତୀର୍ଥଙ୍କର ଓ ଅବତାରପୁରୁଷଙ୍କ ତୀର୍ଥଭୂମି।

ଏହି ଭାରତରେ ସୁଦ୍ଧା ଯୀଶୁଖ୍ରୀଷ୍ଟ ତାଙ୍କ ଜୀବନର ବାରବର୍ଷ ଅତିବାହିତ କରିଥିବା କଥା, ଆଜି ଆଉ କିମ୍ବଦନ୍ତୀ ସ୍ତରରେ ନାହିଁ। ଏହା ଇତିହାସର ସତ୍ୟରେ ପରିଣତ ହେଲାଣି। ଇତିହାସ ଆରମ୍ଭ କାଳରୁ ଏହି ଭାରତରୁ ଜ୍ଞାନ ଓ ସଂସ୍କୃତିର ଯେଉଁ ଆଲୋକ ବିକୀର୍ଣ୍ଣ ହୋଇଥିଲା, ତାହା ଦିନେ ପଶ୍ଚିମ ଜଗତକୁ ଆଲୋକିତ କରିଥିଲା।

କିନ୍ତୁ ଆଜିର ଭିଡ଼ିଓ, ରଙ୍ଗିନ ଟେଲିଭିଜନ, ବୀଭତ୍ସ ଡିସ୍କୋ ନୃତ୍ୟ, ଅଶ୍ଳୀଳ ଅର୍ଥନୈତିକ ବୈଷମ୍ୟ, ହିଂସା, ଜିଘାଂସା ଓ ଏ ସବୁର ବିଷମୟ ପରିଣତି ଆତଙ୍କବାଦ ଆମେ ପାଶ୍ଚାତ୍ୟରୁ କ୍ଷୁଧିତ ଭିକ୍ଷୁକ ପରି ଆହରଣ କରୁଥିବା ବେଳେ, ପାଶ୍ଚାତ୍ୟର ମନୀଷୀ ଓ ଚିନ୍ତକମାନେ ଭାରତକୁ ଆସୁଛନ୍ତି, ବୁଦ୍ଧ, ଶଙ୍କରାଚାର୍ଯ୍ୟ ଓ ଗାନ୍ଧୀଙ୍କର ପାଦସ୍ପର୍ଶ- ଏହି ଭାରତଭୂମିରେ ଉପଲବ୍ଧି କରିବାପାଇଁ। ଏହି ଉପଲବ୍ଧିରୁ ସେମାନେ ପାଉଛନ୍ତି, ପ୍ରଶାନ୍ତି ଓ ପ୍ରେରଣା।

ଆମେ କିନ୍ତୁ ଆଜି ଶପଥ ନେଇଛୁ, ଏକବିଂଶ ଶତାବ୍ଦୀ ଆଡ଼କୁ ମାଡ଼ିଯିବାପାଇଁ ! ଆମେ ଶପଥ ନେଉ ବା ନନେଉ, ନିଶ୍ଚିତ ଭାବରେ ଆମ ସମସ୍ତଙ୍କୁ କିନ୍ତୁ କାଳ କଢ଼ାଇ ନେଉଛି, ଏକବିଂଶ ଶତାବ୍ଦୀ ଆଡ଼େ। ସେଥିପାଇଁ କେହି ମଶାଲ ଜାଳି ଆମକୁ ବାଟ ଦେଖାଇବାର ପ୍ରୟୋଜନ ନାହିଁ। ଆମେ ଅନ୍ଧାରରେ ସୁଦ୍ଧା ବାଟ ଅଣ୍ଡାଳିଅଣ୍ଡାଳି ଠିକ୍ ଏକବିଂଶ ଶତାବ୍ଦୀରେ ପହଞ୍ଚିଯାଇପାରିବୁ। କିନ୍ତୁ ଭିଡ଼ିଓ, ଟେଲିଭିଜନ, ଶସ୍ତା ହିନ୍ଦୀ ଫିଲ୍ମ ଆଉ କଳାଟଙ୍କା ବଳରେ, ରୁଚିହୀନ ବଡ଼ଲୋକୀର ଅପସଂସ୍କୃତି ମଧ୍ୟରେ ଏକବିଂଶ ଶତାବ୍ଦୀର ଭାରତରେ ଆମେ ଯଦି ସେହି କାଳୋତ୍ତୀର୍ଣ୍ଣ, ସନାତନ ଭାରତକୁ ଚିରକାଳପାଇଁ ହରାଇବସୁ, ତାହା ହୁଏତ ଆମ ଯାତ୍ରାର ମାହାସୁଲ୍ ହୋଇପାରେ। ମାତ୍ର ସେ ପରିସ୍ଥିତିରେ ଏକବିଂଶ ଶତାବ୍ଦୀ ଆଡ଼କୁ ଯେଉଁମାନେ ଯିବାର ଯାଆନ୍ତୁ ପଛକେ ମୁଁ କିନ୍ତୁ ଅଟକି ରହିଯିବାକୁ ଚାହେଁ ମୋର ପରିଚିତ ଏଇ ପୃଥିବୀରେ ! ଏକବିଂଶ ଶତାବ୍ଦୀର ପ୍ରତୀକ ଯଦି ହୁଏ କମ୍ପ୍ୟୁଟର, ବିବେକବିହୀନ ବୁଦ୍ଧି, ତା'ହେଲେ ମୋ ପକ୍ଷରେ ଶ୍ରେୟ ବରଂ କୁଟୀରଶିଳ୍ପ, ବରଣୀୟ ବରଂ ଅସମାପ୍ତ ଏଇ ବିଂଶ ଶତାବ୍ଦୀ।

୧୩/୦୨/୮୬

# କିଶୋର ବାଳକର ମୃତ୍ୟୁ ସଂପର୍କରେ

ଏବେ ବି ମୋର ମନର ମାନଚିତ୍ରରେ ଅନୁଗୁଳ, ଦିଗହଜ କଙ୍କରିଳ ଗୈରିକ ପ୍ରାନ୍ତର ମଝିରେ ଗୋଟିଏ ଛାୟାଘନ ମରୁଦ୍ୱୀପ। ଜ୍ୟାମିତିକ ରେଖାମାନଙ୍କ ପରି ନାଲିମାଟିର ସଡ଼କ ସବୁ ସିଧାସଳଖ । ପରସ୍ପରକୁ କଟାକଟି କରି ଲମ୍ବିଯାଇଛନ୍ତି, ଏଣେ ତେଣେ। ରାସ୍ତାମାନଙ୍କର ଦୁଇ ପାଖରେ ଲେସାଲେସି ହୋଇ ବଡ଼ ବଡ଼ ଆମ୍ବଗଛ ସବୁ। ଆଉ ତା'ର ଛାଇରେ ସରକାରୀ କର୍ମଚାରୀମାନଙ୍କର ଛୋଟ ଛୋଟ କ୍ୱାର୍ଟର୍ସ, କ୍ରିସ୍‌ମାସ୍ ବା ନବବର୍ଷର ଗ୍ରୀଟିଙ୍ଗ୍‌ସ କାର୍ଡ଼ର ଛବି ପରି। କେବେ କେବେ ଖଣ୍ଡେଅଧେ ଯାତ୍ରୀବାହୀ ବସ୍ ନୋହିଲେ କେନ୍ଦୁପତ୍ର ବୋଝେଇ ଟ୍ରକ୍‌ମାନେ ତାହାର ନିଷ୍ପାପ ଆଦିମ ନିରବତାକୁ ଭାଙ୍ଗିଦିଅନ୍ତି ସିନା; ନୋହିଲେ ସେହି ବସ ଆଉ ଟ୍ରକ୍‌ମାନଙ୍କ ନାଲି ଧୂଳିର ଘୂର୍ଣ୍ଣି ସବୁ ପବନରେ ମିଳାଇ ଯିବା ପରେ, ସଡ଼କମାନଙ୍କରୁ ଭାସିଉଠେ, ଶଗଡ଼ ଅଖରୁ କେଁ କଟର ଧ୍ୱନିର ସଙ୍ଗୀତ। ଘଣ୍ଟାଘଣ୍ଟା ଧରି ଶଗଡ଼ ଅଖର ଏଇ ସଙ୍ଗୀତ ମୋତେ ମୁଗ୍‌ଧ ଓ ସମ୍ମୋହିତ କରି ରଖେ। କ୍ଳାନ୍ତି ନଥାଏ । ଅବସାଦ ନଥାଏ । ବଲାଙ୍ଗୀର ବା ସମ୍ବଲପୁରରୁ ଲେଉଟାଣି ଅନୁଗୁଳ ଡାକବଙ୍ଗଳାରେ ପୂରା ଗୋଟିଏ ଦିନ ମୁଁ ଅଟକିଯାଏ, ଶଗଡ଼ମାନଙ୍କର କେଁ କଟର ବିଳାପ ଆଉ ଅନୁଗୁଳରୁ ନିଷ୍ପାପ ଲାବଣ୍ୟକୁ ତିଳେତିଳେ ଉପଲବ୍‌ଧି କରିବାପାଇଁ। ଅନୁଗୁଳ ଛାଡ଼ିବା ବେଳେ, ଅନୁଗୁଳର ଚେହେରା ମତେ ଦେଖାଯାଏ, ଗୋଟିଏ କିଶୋର ବାଳକପରି। ତାର କପାଳ ଉପରେ ଅମାନିଆ ଅଲରା ବାଳସବୁ ଝୁଙ୍କି ପଡ଼ିଛି, ଦୁଇ ଆଖିରେ ବନ୍ୟ ଉତ୍ତେଜନା । ଆନନ୍ଦର ଦୀପ୍ତି ଝଲମଲ କରୁଛି ଦୁଇ ଆଖିରେ । ସେହି କିଶୋର ବାଳକର ଅଲରା ମୁଣ୍ଡ ଉପରେ ହାତରଖି ମୁଁ ପ୍ରାର୍ଥନା କରେ- ହେ ଭଗବାନ ଏ ଶୈଶବକୁ ଦୀର୍ଘଜୀବୀ କର।

ତାର ବହୁ ବର୍ଷ ପରେ ଅନୁଗୁଳ ବାଟେ ଯିବାବେଳେ ମୁଁ ମୋର ସ୍ମୃତିର ଅନୁଗୁଳକୁ ଆଦୌ ଚିହ୍ନିପାରିଲି ନାହିଁ । ସେଇ ଉଦାସ ସଡ଼କମାନଙ୍କ ସ୍ଥାନରେ ଫିଟିପଡ଼ିଛି ରାସ୍ତାସବୁ। କଳା ରିବନ ପରି ନିଷ୍ପ୍ରାଣ ରାସ୍ତା ଯାହାର କୌଣସି ଚରିତ୍ର ନାହିଁ। ବ୍ୟଞ୍ଜନା ନାହିଁ। ସେଇ ରାସ୍ତାମାନଙ୍କ ଉପରେ ଭାରି ଟ୍ରକ୍, ପାସେଞ୍ଜର ଖୁନ୍ଦାଖୁନ୍ଦି ବସ। ଦୁର୍ବିନୀତ ଟ୍ରେକର ଆଉ

କାରମାନଙ୍କର ଭିଡ଼। ରାସ୍ତା ଚଉଡ଼ା କରିବାପାଇଁ ଛାୟାନିବିଡ଼ ଆମ୍ବଗଛ ସବୁ କେବେଠାରୁ କଟା ସରିଲାଣି। ଶଗଡ଼ମାନଙ୍କର କେଁ କଟର ସଙ୍ଗୀତ ଆଉ ଶୁଭୁନାହିଁ । ଅନୁଗୁଳ ବଜାରର ଶାନ୍ତ ନିଦୁଆଳି ଚେହେରା ମଧ୍ୟ ବଦଳିଯାଇଛି। ଏବେ ସେଠି ହୋଟେଲ୍‌, ଫରେନ୍‌ ଲିକର ଆଉ କିସମ କିସମ ଷ୍ଟେସନାରୀ ଦୋକାନମାନଙ୍କର ଜୁଲୁସ୍‌। ଲୋକମାନଙ୍କର ଚେହେରାରେ ଆଉ ସେ କୋମଳତା ନାହିଁ। ସମସ୍ତଙ୍କ ଚେହେରା ଟେନ୍‌ସ। କିଛି ଗୋଟାଏ ଘଟାଇବାପାଇଁ ସେମାନେ ଭିତରେ ଭିତରେ ଯେପରି ଅସ୍ଥିର । ଏବେ ଅନୁଗୁଳରେ ଗୋଟାଏ ଘଣ୍ଟା ଅଟକି ଯିବାର ଚିନ୍ତାସୁଦ୍ଧା ମତେ ବୋରିଙ୍ଗ୍‌ ଲାଗୁଛି । ତାଳଚେର-ଅନୁଗୁଳ-ଢେଙ୍କାନାଳକୁ କେନ୍ଦ୍ରକରି ଗଢ଼ିଉଠୁଛି ବୋଧହୁଏ ପୂର୍ବ ଭାରତର ବୃହତ୍ତମ ଶିଳ୍ପାଞ୍ଚଳ। ଅନୁଗୁଳକୁ ସଭ୍ୟତା ଆସୁଛି, ନବ୍ୟ ବର୍ବରତା ପରି । ମୁଁ ଭାବେ ସଭ୍ୟତାପାଇଁ ଏଇ ମହାସୁଲକୁ ଗଣିବାପାଇଁ ପଡ଼ିଥାଏ। କୋରାପୁଟର ଜଙ୍ଗଲ ସବୁ ମଧ୍ୟ ଆଜି ସଭ୍ୟତା ନାମରେ ପଦା । କଳାହାଣ୍ଡିର ସେଇ ଘଞ୍ଚ ଜଙ୍ଗଲ ସବୁ ଆଉ ନାହିଁ। ସମସ୍ତେ କହିବେ, ଇଏତ ଏକବିଂଶ ଶତାବ୍ଦୀର ପୂର୍ବାଭାଷ । କିନ୍ତୁ ସେ ଏକବିଂଶ ଶତାବ୍ଦୀରେ ଛାୟାହୀନ କର୍କଶତା, ଆଉ ତାର ବିଷାକ୍ତ ପ୍ରଦୂଷଣ ମତେ ବିଷଣ୍ଣ କରିଦିଏ। ଜୀବନର ଶୁଚି ଆଉ ସୌନ୍ଦର୍ଯ୍ୟକୁ ଅନାହତ ରଖି, ଏକବିଂଶ ଶତାବ୍ଦୀ ଆସିବା କ'ଣ ସମ୍ଭବ ନୁହେଁ ? ନାଁ, ନୁହେଁ । ତା'ହେଲେ ଗୁଣାତ୍ମକ ଦୃଷ୍ଟିରୁ ଜୀବନର ଅବମୂଲ୍ୟାୟନ କରି ଏକବିଂଶ ଶତାବ୍ଦୀ ପଛରେ ଧାଇଁବାରେ ଲାଭ କ'ଣ ?

ଏଇ ସେଦିନ ସକାଳେ ଖବରକାଗଜ ପୃଷ୍ଠା ଉପରେ ଆଖି ବୁଲାଇ ନେଉ ନେଉ ଅନୁଗୁଳର ଦୁଇଟି ସମ୍ବାଦ ଉପରେ ମୋର ଆଖି ପଡ଼ିଲା। ଭିଡ଼ିଓରେ 'ବ୍ଲୁ ଫିଲ୍ମ' ବା ଯୌନ ଚିତ୍ର ପ୍ରଦର୍ଶନ ପୋଲିସ ହାତରେ ଧରାପଡ଼ିଛି। ଅନୁଗୁଳରେ ଗୋଟିଏ ନିର୍ମମ ହତ୍ୟାକାଣ୍ଡ ଘଟାଇ ହତ୍ୟାକାରୀ ଫେରାର ହୋଇଛି। ମୋର ମନେହେଲା ଯେଉଁ ଅନୁଗୁଳ ସହିତ ମୁଁ ପରିଚିତ, ସେ ଅନୁଗୁଳରେ ଭିଡ଼ିଓରେ 'ବ୍ଲୁ ଫିଲ୍ମ' ପ୍ରଦର୍ଶନ କିମ୍ବା ନରହତ୍ୟା, କେଉଁଟା ହେଲେ ସତ୍ୟ ନୁହେଁ। ଏହାର ପ୍ରତିବାଦ ଲେଖିବାପାଇଁ କଲମ ଉଠାଉଥିଲି । ମାତ୍ର କଲମ ଆଉ ପ୍ୟାଡ୍‌ ରଖିଦେଲି। ମୋର ମନେପଡ଼ିଗଲା, ଅନୁଗୁଳ ଆଜି ନାଲ୍‌କୋ ଆଉ ତାଳଚେର ଫର୍ଟିଲାଇଜର ପ୍ରାସାଦରେ ସିଧା ଏକବିଂଶ ଶତାବ୍ଦୀର ସିଂହଦ୍ୱାରରେ ପହଞ୍ଚି ସାରିଲାଣି ।

କିନ୍ତୁ ଏକବିଂଶ ଶତାବ୍ଦୀର ସିଂହଦ୍ୱାରରେ ମୁଁ ଦେଖୁଛି ସେଇ କିଶୋର ବାଳକର ମୁର୍ଦ୍ଦାର, ଗେରୁଆ ମାଟି ଉପରେ ପଡ଼ିଛି ଉପେକ୍ଷିତ ପରି।

ପୋଲିସ କହୁଛି: ଏହା ଏକ ଦୁର୍ଘଟଣା।

କିନ୍ତୁ ମୁଁ କହୁଛି: ଏହା ଦୁର୍ଘଟଣା ନୁହେଁ, ହତ୍ୟାକାଣ୍ଡ।

୨୭/୦୨/୮୬

# ମା ଫଳେଷୁ କଦାଚନ !

ବହୁ ବର୍ଷର ବ୍ୟବଧାନ ପରେ ସୁଦ୍ଧା, ମୁଁ ଗୋଟିଏ ଶୀତଦିନ ଆସନ୍ନ ସନ୍ଧ୍ୟା ଭିତରେ, ସେଦିନ ଫୁଲବାଣୀର ଏକ ନିର୍ଜନ ପାର୍ବତ୍ୟ ଉପତ୍ୟକାରେ ଯେଉଁ ଫୁଙ୍ଗୁଳା ଆଦିବାସୀ ବୁଢ଼ାଟିକୁ ଦେଖିଥିଲି, ତାହାର ସ୍ମୃତି ତଥାପି ଭୁଲିପାରି ନାହିଁ। ପ୍ରାୟ କୋଡ଼ିଏ ବର୍ଷ ତଳେ ଫୁଲବାଣୀ ଜିଲ୍ଲାର କୁଟିଆ କନ୍ଧମାନଙ୍କ ସଂପର୍କରେ କିଛି ଲେଖାଲେଖି କରିବାପାଇଁ ମୁଁ ଫୁଲବାଣୀ ଜିଲ୍ଲାରେ ପ୍ରାୟ ୧୫ ଦିନ କାଳ ଜଣେ ହରିଜନ (ପାଣ) ଦୋଭାଷୀକୁ ସଙ୍ଗରେ ଧରି ଗୋଟାଏ ଜିପ୍‌ରେ ବୁଲାବୁଲି କରୁଥିଲି। ଏହି ଦୋଭାଷୀମାନେ କୁଇଭାଷୀ କନ୍ଧ ଓ ଆମ ପରି ସହରୀ ଓଡ଼ିଆଭାଷୀଙ୍କ ମଧ୍ୟରେ ଯୋଗସୂତ୍ର ରକ୍ଷା କରିଥାଆନ୍ତି।

ଦିନେ ପଡ଼ନ୍ତ ଗୋଧୂଳିରେ, ଗୋଟିଏ ନିର୍ଜନ ଉପତ୍ୟକା ଭିତରେ ଆସୁଆସୁ ଦେଖିଲି- ରାସ୍ତାଠାରୁ ଅଦୂରରେ ପାଚିଲା ମକାକିଆରି ଭିତରେ ଗୋଟାଏ ମଞ୍ଚା ବାନ୍ଧି ତା' ଉପରେ ବୁଢ଼ାଟିଏ ବସିଛି। ଚାରିଆଡ଼େ ତାକୁ ଘେରି ରହିଛି ଅଖଣ୍ଡ ନୀରବତା ଓ ନିର୍ଜନତା। ପାଚିଲା ମକାକିଆରିକୁ ଯୋଉ ଚଢ଼େଇମାନେ ଦିନବେଳେ ଝୁରୁଥିଲେ, ସେମାନେ ସୁଦ୍ଧା ସନ୍ଧ୍ୟାର ଆଗମ ଦେଖି ଉଡ଼ିଗଲେଣି। ମକାକ୍ଷେତ ଉପରୁ କୁହୁଡ଼ି ଉଠୁଛି, ଉପରକୁ ଆକାଶକୁ, କୁଣ୍ଡଳୀ ମୋଡ଼ିମୋଡ଼ି। ଉପରର ଆକାଶରୁ ମଧ୍ୟ ଓହ୍ଲାଇ ଆସୁଛି କୁହୁଡ଼ିର ପର୍ଦ୍ଦା। ନେଳୀ କୁହୁଡ଼ି ଭିତରେ କୁଞ୍ଚୁକୁଞ୍ଚିଆ ପାହାଡ଼ସବୁ ଦେଖାଯାଉଛନ୍ତି ଗାଢ଼ ସୁନୀଳ। ମଞ୍ଚା ଉପରେ ବୁଢ଼ାଟିଏ ଏକଲୟରେ ବସିଲା ପରି ବସି, ଚାହିଁରହିଛି କୁହୁଡ଼ି ଆଉ ପାହାଡ଼ ଆଡ଼କୁ। ମୋର କୌତୂହଳ ଜନ୍ମିଲା। ଦୋଭାଷୀକୁ ସେ ବୁଢ଼ା କଥା ପଚାରିବାରୁ ସେ କହିଲା, "ସେ ପାଚିଲା ମକାକ୍ଷେତ ଜଗିଛି। ଧୂନି ଜାଳି, ସେଇଠି ରାତିଟା କଟାଇବ। ଆଉ ଜନ୍ତୁମାନଙ୍କୁ ଘଉଡ଼ାଇବ।"

ଲୋକଟିକୁ ଦେଖିବାପାଇଁ ଆଗ୍ରହ ଜନ୍ମିଲା। ଜିପ୍‌ରୁ ଓହ୍ଲାଇ ଦୋଭାଷୀ ସହିତ ମକା କ୍ଷେତ ଭିତରେ ଚାଲିଚାଲି ମୁଁ ସେଇ ମଞ୍ଚା ପାଖକୁ ଆସିଲି। ଏ ହାଡ଼ଭଙ୍ଗା ଶୀତରେ ବୁଢ଼ାଟିର ଦେହ ଫୁଙ୍ଗୁଳା। ପାହାଡ଼ି ଶୀତଟାର କାମୁଡ଼ାକୁ ସେ ସମ୍ଭାଳୁଛି କିପରି କେଜାଣି !

ମୁଁ ତାକୁ ପଚାରିଲି, "କେତେ ଜମିରେ ମକା ଫସଲ କରିଚ ?"

ଦୋଭାଷୀ ତାକୁ ମୋ ପ୍ରଶ୍ନ ବୁଝାଇ ଦେବାରୁ ସେ ଆଙ୍ଗୁଠିରେ ଅରାଏ ଜମି ନୀରବରେ ଦେଖାଇ ଦେଲା।

ମୁଁ ପଚାରିଲି, "ତମେ କ'ଣ ଏ ମକା କ୍ଷେତକୁ ରାତି ସାରା ଜଗିବ ?"

ସେ ଉତ୍ତର ଦେଲା, "ନ ଜଗିଲେ ଜନ୍ତୁଜନ୍ତା ଉଜାଡ଼ିଦେବେ। ସାଉକାରକୁ ଫସଲ ପଇଠ ଦେଇପାରିବି ନାହିଁ।"

ଏହା ଭିତରକୁ ସାଉକାର କୁଆଡୁ କିପରି ଆସିଲା ବୁଝି ନପାରିବାରୁ ଦୋଭାଷୀକୁ ପଚାରିଲି। ସିଏ ବୁଝାଇଦେଲା- କେବେ ଇଏ ସାଉକାରଠାରୁ ଯୋଉ ଟଙ୍କା ଋଣ କରିଥିଲା, ତାର କଳନ୍ତର ବାବଦକୁ ପ୍ରତିବର୍ଷ ସିଏ ତା' ଜମିର ସବୁ ଫସଲ ମଜୁରା ଦେଉଛି... କାନ୍ଦୁଲ ଆଉ ମକା।

"ମୁଁ ପଚାରିଲି, "ଆଉ ମୂଳ ?"

ଦୋଭାଷୀ ମୁଚୁକି ହସି ଉତ୍ତର ଦେଲା, "ସେ ମୂଳ କ'ଣ ଆଉ କେବେ ଶୁଝି ପାଏ ?" ଅର୍ଥାତ୍ ଜୀବନ ସାରା ଖଟଣି ଖଟି ଏ ବୁଢ଼ା ମୂଳ ତ ଶୁଝି ପାରିବ ନାହିଁ; ତା'ପରେ ପୁରୁଷ ପରେ ପୁରୁଷ ଧରି ତା' ବଂଶର ଅନ୍ୟମାନେ ମଧ୍ୟ ଏଇପରି ଶୀତରାତିରେ ଫନ୍ଦା ଜଗିଜଗି ସାଉକାରକୁ ଫସଲ ପଇଠ ଦେବେ। ଶେଷକୁ ନପାରିଲେ, ସାଉକାର ଘରେ ଗୋତି ହୋଇ ରହିବେ।

ବୁଢ଼ାର ପିଲାଝିଲା ସେଥିପାଇଁ ଦିନବେଳା ମକା ଫସଲ ଜଗନ୍ତି, ଚଢ଼େଇମାନଙ୍କୁ ହୁରୁଡେଇବାପାଇଁ। ଆଉ ରାତିରେ ଜନ୍ତୁଜନ୍ତା ହୁରୁଡେଇବାପାଇଁ ବୁଢ଼ା ବସି ରହେ ମଞ୍ଚା ଉପରେ। ଚଢ଼େଇ ଆଉ ଜନ୍ତୁମାନଙ୍କ ଗ୍ରାସରୁ ଯୋଉ ଫସଲ ବୁଢ଼ା ବଞ୍ଚାଏ, ସିଏ ଯାଏ ସାଉକାର ଖଳାକୁ। ବୁଢ଼ା ଆଉ ତାର ପିଲାମାନେ କେବଳ ଦେଖନ୍ତି ଫସଲର ସମ୍ଭାର। ସେମାନଙ୍କ ହାଡ଼ଭଙ୍ଗା ଖଟଣି, ଲହୁ ଆଉ ଲୁହ କିପରି ପାହାଡ଼ ଉପତ୍ୟକାରେ ଉତୁରାଇଛି ସୁନାର ଫସଲ !

ମୁଁ ବିସ୍ମିତ ହେଲି, ତା'ହେଲେ ଲାଭ ଆଶାରେ ଏଇ ପାହାଡ଼ୀ ଶୀତରାତିରେ, ଏ ନିଃସଙ୍ଗ ଉପତ୍ୟକାରେ ବୁଢ଼ା ରାତିସାରା ଉଜାଗର ରହି ଫସଲ ଜଗୁଛି !

ଦୋଭାଷୀ ମୋର ପ୍ରଶ୍ନ ବୁଢ଼ାକୁ ତା' ଭାଷାରେ ବୁଝାଇଦେଲା। ବୁଢ଼ା କିନ୍ତୁ କୌଣସି ଉତ୍ତର ଦେଲା ନାହିଁ। ଅଣ୍ଟାରୁ ଝିକିମିକି କାଢ଼ି, ସେଥିରେ ପିଙ୍କା ଧରାଇଲା। ପିଙ୍କାର ଧୂଆଁ ମିଶିଗଲା କୁହୁଡ଼ି ସହିତ।

ରାସ୍ତା ଉପରକୁ ଉଠିଆସିବା ପରେ ସୁଦ୍ଧା ସନ୍ଧ୍ୟାର ଅନ୍ଧାର ଭିତରେ ସେ ବୁଢ଼ା ପୂରାପୂରି ଅଦୃଶ୍ୟ ନହେବା ପର୍ଯ୍ୟନ୍ତ, ମୁଁ ତାକୁ ଚାହିଁ ଦେଖୁଥିଲି। ମୋର ମନେ ପଡ଼ିଯାଉଥିଲା

ଗୀତାର ଗୋଟିଏ ପ୍ରସିଦ୍ଧ ଶ୍ଳୋକ- 'କର୍ମଣ୍ୟେବାଧିକାରସ୍ତେ ମା ଫଳେଷୁ କଦାଚନ ।' କିନ୍ତୁ ଗୀତାର ଏହି ମହାବାଣୀର ଏପରି ନିଷ୍ଠୁର ଅନୁଶୀଳନ ସମ୍ଭବ ବୋଲି ମୁଁ କେବେ ଚିନ୍ତା ସୁଦ୍ଧା କରି ପାରୁନଥିଲି ।

୦୬/୦୩/୮୬

# ଉଦ୍ୟାନଖଣ୍ଡରେ ଗୋଟିଏ ସକାଳ

ସେହି କୋଡ଼ିଏ ବର୍ଷ ତଳର କଥା।

ଫୁଲବାଣୀ ଓ କୋରାପୁଟ ଜିଲ୍ଲାରେ କିଛିଦିନ ବୁଲାବୁଲି କରିବା ପରେ, ଆମେ ଗୋଟାଏ ଜିପ୍‌ରେ କଟକ ଫେରୁଥିଲୁ। ସୋମ୍‌ପେଟା ତେଇଁଛୁ, ହଠାତ୍ ଦେଖିଲୁ ଗୋଟାଏ କଜ୍‌ୱେରେ ବନ୍ୟାସ୍ଫୀତ ନଦୀ ପରି, ପ୍ରଚୁର ବୃଷ୍ଟିଜଳ ଭଉଁରୀ କାଟିକାଟି ପ୍ରବଳ ବେଗରେ ବୋହିଯାଉଛି। ଦିନକ ପୂର୍ବେ ଯେଉଁ ପ୍ରବଳ ବର୍ଷା ହୋଇଥିଲା, ଏସବୁ ତାହାର ନିଗିଡ଼ା ପାଣି। ପଚାରି ବୁଝିଲୁ, ଅନ୍ତତଃ ୨୪ ଘଣ୍ଟା ପୂର୍ବରୁ ପାଣି ପୂରା ଖଲାସ ହେବାର ସମ୍ଭାବନା ନାହିଁ। ଦୂରରେ ପୂର୍ବଘାଟ ପର୍ବତମାଳା ବର୍ଷାଧୌତ ଆକାଶର ପୃଷ୍ଠଭୂମିରେ ଦେଖାଯାଉଛନ୍ତି, ନିରୀହ ଭଦ୍ରଲୋକ ପରି। କିନ୍ତୁ ପର୍ବତମାଳାର ଖିଆଲୀ ଉପହାସରେ ବନ୍ୟାସ୍ଥିତ କଜ୍‌ୱେର ଦୁଇପାଖରେ ଅନେକ ଗୁଡ଼ାଏ ଗାଡ଼ିର ଯାତ୍ରୀ ଅଟକିଛନ୍ତି କିଂକର୍ତ୍ତବ୍ୟବିମୂଢ଼ ଭାବରେ, 'ଉପାୟ କ'ଣ, ଉପାୟ କ'ଣ, ବୋଲି ପରସ୍ପରକୁ ପଚରାପଚୁରି ହେଉଛନ୍ତି।' ଚବିଶ ଘଣ୍ଟା କାଳ ରାସ୍ତା ମଝିରେ ଅଟକି ପଡ଼ିବା ତ ସମ୍ଭବ ନୁହେଁ। ସେଥିପାଇଁ ଆଶ୍ରୟ ସନ୍ଧାନରେ ଗାଡ଼ିସବୁ ଗୋଟିଏ ପରେ ଗୋଟିଏ ପଛକୁ ଫେରିଲେ।

ଆମ ଜିପ୍‌ଟା ଅଟକି ଥିଲା, ଟ୍ରାଫିକ୍‌ର ମଝାମଝି। ପଛ ଗାଡ଼ିସବୁ ଖଲାସ ନହେବା ପୂର୍ବରୁ ଆମେ ପଛକୁ ଫେରିବାର ସମ୍ଭାବନା ନଥିଲା। ଅବଶେଷରେ ଆମେ ଯେତେବେଳେ ସେଥିରୁ ମୁକ୍ତିପାଇ ପଛକୁ ଫେରିଲୁ, ସେତେବେଳକୁ ଫିକା ଜହ୍ନ ଆଲୁଅ ଭିତରେ ସନ୍ଧ୍ୟା ହୋଇଯାଇଥିଲା ରାତିଟା ପାଇଁ ଆଶ୍ରୟ ସେତେବେଳେ ଏକମାତ୍ର ଚିନ୍ତା। ଯେଉଁମାନେ ଆଶ୍ରୟହୀନ, ସେମାନଙ୍କପାଇଁ ଖୋଲା ଆକାଶ ତଳେ ଯେଉଁଠି ଇଚ୍ଛା ସେଠି ଆଶ୍ରୟ ମିଳିଯାଏ। କିନ୍ତୁ ଆମପରି ଯେଉଁମାନେ ନୀଡ଼ର ନିରାପତ୍ତା ସହିତ ଅଭ୍ୟସ୍ତ, ସେମାନେ କେବେ କୌଣସି ପରିସ୍ଥିତିରେ ପଡ଼ି ସାମୟିକ ଭାବରେ ଆଶ୍ରୟହୀନ ହୋଇପଡ଼ିଲେ, ନିଜକୁ ନିତାନ୍ତ ଅସହାୟ ଓ ପରିତ୍ୟକ୍ତ ପରି ମନେ କରିଥାନ୍ତି । ଆମେ ସୋମ୍‌ପେଟା ଷ୍ଟେସନକୁ ଆସିଲୁ, ୱେଟିଙ୍ଗ୍ ରୁମ୍‌ର ସନ୍ଧାନରେ। କିନ୍ତୁ ଏଠାରେ ୱେଟିଙ୍ଗ୍ ରୁମ୍‌ଟି, ଗୋଟିଏ

ଛୋଟିଆ ୱେଟିଙ୍ଗ୍ ସେଡ୍। ତିନିପଟେ ତାର କାନ୍ଥ ନାହିଁ। ତା' ଭିତରେ ଶୋଇଛନ୍ତି, ପାଦରୁ ମୁଣ୍ଡ ପର୍ଯ୍ୟନ୍ତ ଢାଙ୍କି ହୋଇ, କେତୋଟି ବୁଲା ଭିକାରୀ ଓ ଆଉ ଗୋଟିଏ କୁକୁର। ସେଠାରେ ଚବିଶ ଘଣ୍ଟା କାହିଁକି ଗୋଟିଏ ଘଣ୍ଟା ସୁଦ୍ଧା କଟାଇବା ମୁସ୍କିଲ୍। ମୋର ହଠାତ୍ ମନେପଡ଼ିଗଲା, ସୋମ୍‌ପେଟା ସହରରେ ମୋର ଜଣେ ସହପାଠୀ ବନ୍ଧୁଙ୍କ କଥା। ତାଙ୍କ ନାଁ ଶରତ ପଟ୍ଟନାୟକ। ବିଚ୍ଛିନ୍ନାଞ୍ଚଳର ଓଡ଼ିଶା ଶିଷ୍ଟ କରଣ। ୧୯୪୧ ମସିହାରେ ରେଭେନ୍‌ସା କଲେଜରେ ମୁଁ ବି.ଏ. ପଢ଼ିବାବେଳେ ସିଏ ଲ' ପଢୁଥିଲେ। ତାଙ୍କ ସହିତ ବନ୍ଧୁତ୍ୱ ନଥିଲେ ବି ଘନିଷ୍ଠ ପରିଚୟ ଥିଲା। ରାତିଟା ପାଇଁ ସୋମପେଟା ସହରରେ ଆଶ୍ରୟ ମିଳିଯିବ ଭାବି, ଆମେ ସେଠାରୁ ପ୍ରାୟ ତିନି ମାଇଲ୍ ରାସ୍ତା ଜିପ୍‌ରେ ସୋମ୍‌ପେଟା ସହରକୁ ଆସିଲୁ। ଛୋଟିଆ ସହର। ତାଙ୍କ ଘର ଖୋଜି ବାହାର କରିବାପାଇଁ ଅସୁବିଧା ହେଲା ନାହିଁ। କିନ୍ତୁ ତାଙ୍କ ଘରେ ତିନିଜଣ ଅତିଥିଙ୍କ ପାଇଁ ସୁବିଧା ହେବନାହିଁ ବୋଲି ସେ ଆମ ସହିତ ସହରର ଚୋଲ୍‌ଟ୍ରିରେ ଆସିଲେ। କିନ୍ତୁ ସେଦିନ ଆମ ପରି ଯେଉଁମାନେ ହଠାତ୍ ଆଶ୍ରୟହୀନ ହୋଇପଡ଼ିଥିଲେ, ସେମାନେ ଇତି ମଧ୍ୟରେ ଚୋଲଟ୍ରିରେ ଭିଡ଼ ବାନ୍ଧି ସାରିଲେଣି। ସେଠାରେ ମଧ୍ୟ ଜାଗା ନଥିଲା। ଶରତବାବୁ ପରାମର୍ଶ ଦେଲେ, ଆପଣ ଆଉ ତିନି କିଲୋମିଟର ଚାଲିଗଲେ ସମୁଦ୍ରକୂଳରେ ଗୋଟାଏ ବଙ୍ଗଳା ପାଇବେ। ସେ ବଙ୍ଗଳା ନିଶ୍ଚୟ ଖାଲି ପଡ଼ିଥିବ। ଜାଗାଟାର ନାଁ ବାରୁଅ। ଚମତ୍କାର ନିଛାଟିଆ ଜାଗା। ଗଭର୍ଣ୍ଣର କେବେ କେବେ ସେଠାକୁ ଆସନ୍ତି। ଇଏତ, 'ଜଙ୍ଗଲ ମେଁ ଜଙ୍ଗଲ' ପରି କଥା ! ଆମେ ବାରୁଅ ଆସିଲୁ।

ସମୁଦ୍ର କୂଳରେ, ଝାଉଁବଣ ଭିତରେ ପୁରୁଣା ଦିନର ଚାଳଛପର ଡାକବଙ୍ଗଳା। ସେଠାରେ କିନ୍ତୁ ଇଲେକ୍‌ଟ୍ରିସିଟି ନଥିଲା। ଅନେକ ଡକାଡକି ପରେ ଚୌକିଦାର କୁଆଡୁ ବାହାରି, ଆମକୁ ଆଶ୍ରୟ ଦେଲା। ଇଣ୍ଟନଟିଏ ବି ଜାଳିଦେଲା। ସୋମ୍‌ପେଟା ବଜାରରୁ ରାତିର ଖାଇବା ମଗାଇନେବୁ। ରାତିଟାପାଇଁ ଆମେ ନିଶ୍ଚିନ୍ତ। ରାସ୍ତାରେ ହଠତ୍ ଅଟକି ପଡ଼ି ନଥିଲେ, ବାରୁଅରେ ଗୋଟାଏ ରାତି କଟାଇବାର ଏ ସୁଯୋଗ ମିଳି ନଥାନ୍ତା। ଆମେ ସମସ୍ତେ ହଠାତ୍, ଉତ୍‌ଫୁଲ୍ଲ ହୋଇଉଠିଲୁ।

ସେଦିନ ରାତିରେ, ଅନେକ ବେଳଯାଏ ମୁଁ ଡାକବଙ୍ଗଳା ତଳେ ସମୁଦ୍ରକୂଳ ବାଲି ଉପରେ ବସିଥିଲି, ପବନରେ ଦେହ ଶୀତେଇ ଉଠିବା ପର୍ଯ୍ୟନ୍ତ। ମେଘୁଆ ଆକାଶରେ ଜହ୍ନର ଲୁଚକାଳି ଖେଳ ଭିତରେ ସମୁଦ୍ରର ଏପରି ଚେହେରା ମୁଁ ଆଉ କେବେ ଦେଖି ନଥିଲି। ପରଦିନ ସକାଳୁ ନିଦ ଭାଙ୍ଗୁ ଭାଙ୍ଗୁ ବେଶ୍ ଡେରି ହୋଇଯାଇଥିଲା। କିନ୍ତୁ ନିଦ ଭାଙ୍ଗିବାପରେ, ମୁଁ ସ୍ୱପ୍ନ ରାଜ୍ୟରେ ନା ଏ ପୃଥିବୀରେ, ସ୍ଥିର କରିପାରୁ ନଥିଲି। ଇଏ କିପରି ସମ୍ଭବ ? ଇଏ ମୋ କାନର ଭୁଲ୍ ନୁହେଁ ତ ? ଝରକା ବାହାରେ, ବାଲିକୁଦ

ଉପରେ ରଙ୍ଗଣୀ ଫୁଲସବୁ ଫୁଟିଥିଲା। ଆଠ ଦଶ ବର୍ଷର କେତେକ ଝିଅ, ହାତରେ ଚାଙ୍ଗୁଡ଼ି ଧରି, ରଙ୍ଗଣୀ ଫୁଲ ତୋଳିଲା ବେଳେ, କୁଆଁରପୁନେଇ ଜହ୍ନ ଲୋ ଫୁଲ ବଉଳବେଣୀ, ଅନୁଚ୍ଚ କଣ୍ଠରେ ଗାଉଥିଲେ ! ଏ ତେଲେଙ୍ଗା ମୂଲକରେ ଓଡ଼ିଆ ଝିଅଙ୍କର ଏ ଗୀତ ଆସିଲା କୁଆଡୁ ? ମୁଁ ବିଛଣାରୁ ଲମ୍ଫଦେଇ ସେମାନଙ୍କ ପାଖକୁ ଧାଇଁ ଆସିଲି। ମୋତେ ଦେଖି ସେମାନେ ଦଉଡ଼ି ପଳାଉଥିଲେ। କିନ୍ତୁ, ପ୍ରାୟ ଦଶ ଏଗାର ବର୍ଷର ଶାଢ଼ି ପିନ୍ଧା ଝିଅଟିଏ, ମୋତେ ଅପେକ୍ଷା କରି ରହିଲା। ମୁଁ ପଚାରିଲି, ତମେ ଏ ଫୁଲସବୁ କ'ଣ କରିବ ? ସେ ସ୍ମିତ ହସି ଓଡ଼ିଆରେ ଉତ୍ତର ଦେଲା, "ଆଜି ପରା କୁମାର ପୂର୍ଣ୍ଣମୀ !" ମୁଁ ନିର୍ବୋଧପରି ପଚାରିଲି, "ଏଠି କ'ଣ ଓଡ଼ିଆମାନେ ଅଛନ୍ତି ? ତମ ଘର କେଉଁଠି ? ଅଦୂରରେ ଗୁଡ଼ାଏ ନଡ଼ିଆ ଗଛଆଡ଼େ ଆଙ୍ଗୁଠି ଦେଖାଇ ଝିଅଟି କହିଲା, "ଆମ ଘର ସେଇଠି, ବାରୁଅ ଶାସନ।"

ପ୍ରାୟ ଘଣ୍ଟାକ ପରେ, ମୁଁ ସେଠାକୁ ଜିପ୍‌ରେ ଆସିଲି। ଇଏ ପ୍ରସିଦ୍ଧ ଉଦ୍ୟାନଖଣ୍ଡ। ନଡ଼ିଆମାନେ ଏଠାରେ ଭରପୂର ହୋଇ ରହିଛନ୍ତି। ଜଣେ ବୃଦ୍ଧ ବ୍ରାହ୍ମଣ ତେଲେଙ୍ଗା ଉଚ୍ଚାରଣରେ ଓଡ଼ିଆରେ ଯାହା କହିଲେ, "ଓଡ଼ିଶାରୁ କେହି ଆମକୁ ତ ପଚାରୁ ନାହାନ୍ତି, କେହି ଖୋଜୁ ନାହାନ୍ତି । ଏତେ ଦିନକେ ତୁମକୁ ଜଣେ କଟକ ଆଡ଼ର ମଣିଷ ଦେଖିଲି। ଆମର ଏଠି ଅନେକ ଅସୁବିଧା, କ'ଣ କରିବୁ ? ଭାଗ୍ୟକୁ ଆଦରି ପଡ଼ିରହିଛୁ।" ମୁଁ ସେମାନଙ୍କୁ ଓଡ଼ିଆ ଭାଷା ଓ ସଂସ୍କୃତି ରକ୍ଷା ସଂପର୍କରେ ଉଦ୍‌ବୋଧନ ଦେଲି। ଆଉ ଜଣେ ବୁଢ଼ା ଓଲଟି ପଚାରିଲେ, "ଆମ ପିଠିରେ ଯେତେବେଳେ ବିଧା ପଡୁଛି, ଆହା କରିବାକୁ ତମେ କଟକରୁ ଆସିବ ନା ?" କଟକ, ଭୁବନେଶ୍ୱରରେ ରହି ଓଡ଼ିଆ ଭାଷା ସଂସ୍କୃତି ନାମରେ ବହୁ ସଂକୀର୍ତ୍ତନ। କିନ୍ତୁ କେବେ ଏମାନଙ୍କ ପାଖକୁ ସଂକୀର୍ତ୍ତନ ବାଲାଏ ଦିନକ ପାଇଁ ଆସୁନାହାନ୍ତି ତ ? ସେଥିପାଇଁ ଉଦ୍ୟାନ ଖଣ୍ଡର ଓଡ଼ିଆମାନେ ମନୋବଳ ହରାଇ ଓଡ଼ିଆ ଖବରକାଗଜ ଖଣ୍ଡେ ସୁଦ୍ଧା କିଣିବାପାଇଁ ଭରସନ୍ତି ନାହିଁ। ବାରୁଅ ବଜାରରେ ସବୁଠି, ତେଲଙ୍ଗା ପୋଷ୍ଟର, ସିନେମାର ବିଜ୍ଞାପନ। ନିର୍ବାଚନ ବେଳେ କାନ୍ଥରେ ବାଡ଼ରେ ଯେଉଁ ସ୍ଲୋଗାନ୍ ସବୁ ଲେଖାଯାଇ ଥିଲା, ସେସବୁ ସୁଦ୍ଧା ତେଲୁଗୁରେ। ବାରୁଅ ବଜାରରେ ଇଡ଼୍‌ଲି ଏବଂ କଫି ଖାଇବାବେଳେ ଓଡ଼ିଆ ମାଲିକଟି ମଧ୍ୟ ସେଇକଥା କହିଲା। ତାହାର ଟେବୁଲ୍ ଉପରେ ତେଲୁଗୁ ଖବରକାଗଜମାନଙ୍କର ଗହଳି।

ଦକ୍ଷିଣ ବିଛିନ୍ନାଞ୍ଚଳରୁ ଓଡ଼ିଆଭାଷା ଓ ଚଳଣି ଆମର ଉପେକ୍ଷା ଓ ଉଦାସୀନତାରୁ କ୍ରମେ ମଉଳି ମଉଳି ଆସୁଛି। କିନ୍ତୁ ଅନ୍ତଃସଲିଳା ଫଲ୍‌ଗୁ ଧାରାପରି ଓଡ଼ିଆ ସଂସ୍କୃତିର ଧାରା ତଥାପି ବଞ୍ଚି ରହିଛି ଉଦ୍ୟାନଖଣ୍ଡର ସେଇ ଝିଅମାନଙ୍କର "କୁଆଁର ପୂନେଇଁ ଜହ୍ନ ଲୋ ଫୁଲ ବଉଳବେଣୀ" ସଙ୍ଗୀତ ଭିତରେ। ଦକ୍ଷିଣ ପଶ୍ଚିମ ମେଦିନୀପୁରରେ ମଧ୍ୟ,

ସୁବର୍ଣ୍ଣରେଖା ବାଲିରେ ପାଖ ଗାଆଁରୁ ମୁଁ ଶୁଣିଛି । ଦିବାଲୋକରେ କନ୍ୟା ବିଦାୟ ବେଳେ ଝିଅର ବାହୁନା ଗୀତ । ଆମ ଜେମାଦେଈ କାନ୍ଦପରି ।

ମୋର ସେହିଦିନ ଧାରଣା ହୋଇଛି, ସଂସ୍କୃତି ମରେ ନାହିଁ; ସଂସ୍କୃତି ଏକ ଚିର ପ୍ରବାହିନୀ ସ୍ରୋତ ଧାରା । ସେଇ ସ୍ରୋତଧାରାକୁ ଆଉ ଟିକିଏ ପରିପୁଷ୍ଟ କରିବାପାଇଁ ଆମ ସାହିତ୍ୟ ଓ ସଂସ୍କୃତି ଚର୍ଚ୍ଚାର ବଡ଼ପଣ୍ଡାମାନେ କଟକ, ଭୁବନେଶ୍ୱର ଡେଇଁ ଥରେ ଉଦ୍ୟାନ ଖଣ୍ଡ ଆଡ଼େ ପାଦ ପକାଇଲେ କିପରି ହୁଅନ୍ତା ?

୨୦/୦୩/୮୬

# ହୋରି: ମୁଁ ଓ ମିଷ୍ଟର କୁରିଆନ୍

ସେଦିନ ହୋରି। ସକାଳୁ ସକାଳୁ ଆମେ ୱେଷ୍ଟର୍ଣ୍ଣ କୋର୍ଟରୁ ବାହାରିପଡ଼ିଥିଲୁ ପୂରା ହୋରି-ମେଜାଜ୍‌ରେ। ଦୁଇଜଣ ବାନ୍ଧବୀଙ୍କୁ ଛାଡ଼ିଦେଲେ ଆମର ପରିଧାନରେ ପାଇଜାମା ଆଉ ଲକ୍ଷ୍ନୌଇ ଚିତନକରା ପଞ୍ଜାବୀ- ପୂରାଦସ୍ତୁର ମାଫିକ୍ ଦିଲ୍ଲୀର ବସ୍ତିବାଲା। ଏଇ ଗୋଟିଏ ଉତ୍ସବ ହୋରି, ଯିଏ ମଣିଷକୁ ଆହ୍ୱାନ ଦେଇଥାଏ ତାର ସଂସ୍କାର ଓ ସାଂଭ୍ରାନ୍ତ୍ୟର ପଞ୍ଜୁରୀରୁ ଫିଟି, ନିଜେ ଯାହା ସେଇୟା ହୋଇ ପଦାକୁ ବାହାରିବାପାଇଁ। ଆମେ ସବୁ ସାଂଭ୍ରାନ୍ତ୍ୟର ଯେତେ ମେକ୍‌ଅପ୍ ବୋଲିହେଲେ ସୁଦ୍ଧା, ଭିତରେ କିନ୍ତୁ ପ୍ରକୃତରେ ବନ୍ୟ ଓ ଆଦିମ । ସମାଜରେ ହୋରି ବ୍ୟବସ୍ଥା ଆମକୁ ଏଇ କଥା ଚେତାଇ ଦେବାପାଇଁ।

ମୋ ହାତରେ ରଙ୍ଗ ପିଚକାରୀ... ରୁମାଲରେ ଗୁଲାଲ୍... ହୋରିର ଉପକରଣ। ବାହାର ଲନ୍‌ରେ ବ୍ରେକ୍‌ଫାଷ୍ଟ୍ ପରେ ବସିଥିଲେ ପ୍ୟାଣ୍ଟ୍ ହାୱାଇନ୍ ପିନ୍ଧି ଜଣେ ଅକାଳ ବୃଦ୍ଧ ମିଷ୍ଟର କୁରିଆନ୍ । ସେକ୍ରେଟେରିଏଟ୍‌ର କୋଉ ଡିପାର୍ଟମେଣ୍ଟର ଜଣେ ଜଏଣ୍ଟ ସେକ୍ରେଟେରୀ। ସେ ମଧ୍ୟ ରହୁଥିଲେ ୱେଷ୍ଟର୍ଣ୍ଣ କୋର୍ଟରେ। ଭଦ୍ରଲୋକଙ୍କର ମୁହଁକୁ ଦେଖିଲେ ମନେହୋଇଥାଏ, କିଏ ଯେପରି ତାଙ୍କର ଶହେଷାଠିଏ ଖାଇଯାଇଛି। ମୁହଁଟି ସବୁବେଳେ ଉଷୁନା ହାଣ୍ଡି ପରି। କିନ୍ତୁ ଏଇ ହୋରି- ସକାଳେ ତାଙ୍କର ବିଷଣ୍ଣ ଚେହେରା ଭାରି ବେଖାପ୍ ଦିଶୁଥିଲା। ମୁଁ ତାଙ୍କ ମନରେ ଓ ପ୍ରାଣରେ ହୋରିର ସ୍ପର୍ଶ ଆଣିବାପାଇଁ, ପିଚ୍‌କାରୀରୁ ଗୋଲାପମିଶା ଅବିର ମାରିଦେଲି। ଅନ୍ୟମାନେ 'ହୋଲି ହେ ହୋଲି ହେ' କହି ତାଙ୍କୁ ଘେରି ଚିତ୍କାର ଆରମ୍ଭ କରିଦେଲେ। ଭଦ୍ରଲୋକ ଏଇ ଆକସ୍ମିକ ଆକ୍ରମଣରେ ଉତ୍‌କ୍ଷିପ୍ତ ପରି ଆମକୁ ଷ୍ଟୁପିଡ୍, ବାର୍ବରିଆନ୍ ଇତ୍ୟାଦି ଗାଳି ଦେଉ ଦେଉ କ୍ରୋଧରେ ତାଙ୍କର ବାକ୍‌ରୁଦ୍ଧ ହୋଇଗଲା। ଅନ୍ୟ ଜଣେ ବନ୍ଧୁ ତାଙ୍କ ଚନ୍ଦାମୁଣ୍ଡରେ ମୁଠାଏ ଅବିର ବୋଳିଦେଲେ, ଭଦ୍ରଲୋକ ଯେପରି ଦେଖାଯାଉଥିଲେ, ସେଥିରେ ହୋ ହୋ ହୋଇ ନହସି ରହି

ହେଉନଥିଲା। ଏଇ ତ ହେଲା ହୋରିର ସ୍ପିରିଟ୍ ! ତାଙ୍କୁ ସେଠାରେ ସେହିପରି ଅବସ୍ଥାରେ ଛାଡ଼ିଦେଇ, ଆମେ ସବୁ ଗୋଟାଏ ଟ୍ୟାକ୍‌ସି ଭର୍ତ୍ତି ହୋଇ ରଙ୍ଗ ଖେଳିବା ପାଇଁ ଚାଲିଆସିଲୁ।

କିନ୍ତୁ ରଙ୍ଗ ଖେଳି ଫେରିବା ପରେ ଓ୍ୱେଷ୍ଟର୍ଣ୍ଣ କୋର୍ଟରେ ଆମପାଇଁ ଅପେକ୍ଷା କରିଥିଲା ମୃଦୁ ଭର୍ତ୍ସନାର ଗୁଞ୍ଜରଣ ! ଓ୍ୱେଷ୍ଟର୍ଣ୍ଣ କୋର୍ଟର ପୁରୁଣା ପୁରୁଣା ଅନ୍ତେବାସୀମାନେ କହିଲେ, "କୁରିଆନ୍‌ଙ୍କ ପ୍ରତି ଆପଣମାନଙ୍କର ଆଚରଣ ଆଦୌ ଠିକ୍ ହେଲା ନାହିଁ, ମିଷ୍ଟର ମହାନ୍ତି। ଆପଣମାନେ ତାଙ୍କୁ ପ୍ରକୃତରେ କ୍ଷମା ମାଗିବା ଉଚିତ।"

ଆମେ ଏକ ବାକ୍ୟରେ ପଚାରିଲୁ: "ଅପରାଧ ?"

ଆମକୁ ବୁଝାଇ ଦିଆଗଲା, ମିଷ୍ଟର କୁରିଆନ୍‌ଙ୍କୁ ହାଇପରଟେନ୍‌ସନ୍, ଡାଇବେଟିସ୍, ଆଞ୍ଜାଇନା ପେପ୍‌ଟୋରିସ୍ ଇତ୍ୟାଦି ଇତ୍ୟାଦି ବ୍ୟାଧିସବୁ ଆଶ୍ରୟ କରିଛନ୍ତି।

ମୁଁ ଅସହିଷ୍ଣୁ ଭାବରେ କହିଲି, "କ'ଣ ହେଲା ସେଇଠୁ ? ଇଏ ଅତିଥିମାନଙ୍କୁ ଥରେ ଆଶ୍ରୟ ଦେଲେ, ସେମାନେ ଭୁଲ୍‌ରେ ଆଉ କେବେ ଛାଡ଼ି ଯାଆନ୍ତି ନାହିଁ। ସେମାନଙ୍କ ପରିଚର୍ଯ୍ୟାରେ ଜୀବନସାରା ବ୍ୟସ୍ତ ବିବ୍ରତ ରହିବାକୁ ପଡ଼ିଥାଏ। ସେଥିପାଇଁ ଏଇ ହୋରି ସକାଳେ ମିଷ୍ଟର କୁରିଆନ୍‌ଙ୍କୁ ସେଥିରୁ ଟିକିଏ ଛୁଟି ଦେବାପାଇଁ ଆମେ ଟିକିଏ ରଙ୍ଗ ବୋଳି ଦେଇଥିଲୁ ସିନା ! ଏଥିରେ କି ଅପରାଧ ହୋଇଗଲା ?

ଜଣେ ବୃଦ୍ଧ ଭଦ୍ରଲୋକ କହିଲେ, "ଆପଣମାନେ ଜାଣି ନାହାନ୍ତି। ତାଙ୍କର ବ୍ଲଡ୍‌ପ୍ରେସର ହଠାତ୍ ବଢ଼ିଯାଇଛି। ସେ ପୁଣି ରଙ୍ଗପାଣି ଆଉ ଗୁଲାଲ୍ ପ୍ରତି ଆଲାର୍ଜିକ୍। ଏହା ଭିତରେ ଡାକ୍ତର ଆସି ତାଙ୍କୁ ଦେଖି ଯାଇସାରିଲେଣି। ଆପଣମାନେ ଭାରି ଭୁଲ୍ କଲେ।"

ସେଇ ହୋରି ପୁଣି ଆସିଥିଲା, ଏଇ ସେଦିନ। ସେଇ ମୁଁ ଆଜି ବି ଅଛି। ରାସ୍ତାରେ ରଙ୍ଗ ବୋଳିହୋଇ ଦଳ ଦଳ ଯୁବକ ଓ କିଶୋର ରଙ୍ଗ ପିଚକାରୀ ଆଉ ଅବିର ଧରି ରାସ୍ତାରେ ବୁଲୁଛନ୍ତି... ଶିକାରର ସନ୍ଧାନରେ। ପଡ଼ାପଡ଼ୋଶୀରୁ କେହି କେହି ଆସୁଛନ୍ତି ରଙ୍ଗ ଦେବାପାଇଁ। ଘରେ ଅନ୍ୟମାନେ ପୂରା ହୋରି ମୁଡ୍‌ରେ। ମୁଁ କିନ୍ତୁ କବାଟ ବନ୍ଦ କରି ଭିତରେ ବସିଛି। ହୋରିର ଉତ୍ପାତରୁ ଆତ୍ମରକ୍ଷାପାଇଁ। ଝର୍କାବାଟେ, ରାସ୍ତାରେ ହୋରି-ଜନତାଆଡ଼େ, ନିର୍ବୋଧ ପରି, ଶୂନ୍ୟ ଦୃଷ୍ଟିରେ ଚାହିଁ ରହିଛି। ଲାଗୁଛି, ଗୋଟିଏ ସିମ୍ପାଞ୍ଜି, ଚିଡ଼ିଆଖାନାର ଲୁହାଗାରଦ ଫାଙ୍କରେ ଯେପରି ବାହାରକୁ ଚାହିଁ ବସିଛି। ହଠାତ୍ ଆଇନାରେ ନିଜକୁ ଦେଖି ଚମକି ଉଠିଲି ପଚିଶି ବର୍ଷ ତଳର ସେ ମିଷ୍ଟର କୁରିଆନ୍ ଆଜି ଏ ରୁମ୍ ଭିତରକୁ କିପରି ଆସିଲେ କେଜାଣି !

ବାହାରେ ଚଟିମିଶା ପାଦଶବ୍ଦ ଶୁଭିଲା।

ଏମାନେ ବୋଧହୁଏ ମୋର ନାତି ନାତୁଣୀ ଆସୁଛନ୍ତି ରଙ୍ଗ ବୋଳିବାପାଇଁ। ମୋ ଦେହରେ ରଙ୍ଗ ନ ବୋଳିବାପାଇଁ ବାହାରେ ସେମାନଙ୍କୁ ଅନେକ ଭାବରେ ବୁଝାଇ ଦିଆଗଲା। ମୋତେ ରଙ୍ଗ ନ ବୋଳିଲେ ଚକୋଲେଟ୍ ମିଳିବାର ପ୍ରତିଶ୍ରୁତି ମଧ୍ୟ ଦିଆଗଲା। କିନ୍ତୁ କିଏ ମାନୁଛି ସେ ନିଷେଧ ? ନାତି ନାତୁଣି ଦୁହେଁ ମିଶି ମୋ ମୁଣ୍ଡ ଓ ମୁହଁରେ ମେଞ୍ଚାମେଞ୍ଚା ରଙ୍ଗ ବୋଳି ଦେଇଗଲେ।

ସେଦିନ ସକାଳେ ମିଷ୍ଟର କୁରିଆନ୍ ହୋରିର ଅତ୍ୟାଚାରରେ ଯେପରି ଚିତ୍କାର କରି ଉଠିଥିଲେ, ମୁଁ ମଧ୍ୟ ସେପରି ଚିତ୍କାର କରିଆସୁଥିଲି; କିନ୍ତୁ ନିଜକୁ ସମ୍ଭରଣ କରିନେଲି।

ଆଜି ସେହି ହୋରି। ସେଇ ରଙ୍ଗ, ସେଇ ଅବିର, ସେଇ ଗୁଲାଲ୍ ଆଉ ସେଇ ମୁଁ... କିନ୍ତୁ ସେଦିନର ସେଇ ମୁଁ ଆଉ ତା'ର ବେହିସାବୀ ଦୁରନ୍ତ ହୋରି-ମିଜାଜ୍ ଆଜି କାହିଁ? କାଳ ଯେପରି ମୋର କଳାହରଣ କରିନେଇଛି ! ହୋରି ଆଜି ମର୍ମେମର୍ମେ ଚେତାଇ ଦେଉଛି, ଯୋଉ ଜୀବନରେ ଉତ୍ତେଜନା ନାହିଁ, ଆନନ୍ଦ ନାହିଁ, ପ୍ରଗଳ୍‌ଭତା ନାହିଁ, ସେ ତ ଜୀବନ ନୁହେଁ- ସିଏ କେବଳ ଶୁଖିଲା କାଠର ବୋଝ !

ଅଇନାରେ ମୋର ଛାୟା ଯେପରି ମିଷ୍ଟର କୁରିଆନ୍ ହୋଇ ମୋତେ ଇ ଆଜି ଖତେଇ ହେଉଛି।

୧୦/୦୪/୮୬

# ଗୋଟିଏ ଶିଶୁକନ୍ୟାର ମୃତ୍ୟୁରେ ଏଲିଜି

ଲିବ୍ୟାର ରାଜଧାନୀ ତ୍ରିପୋଲି ଉପରେ ଆମେରିକାନ୍ ଯୁଦ୍ଧ ଜାହାଜମାନଙ୍କରୁ ରକେଟ୍ ଆକ୍ରମଣରେ ମୁଁ କ୍ଷୁବ୍ଧ। କିନ୍ତୁ, ଏହି ଆକ୍ରମଣ ଫଳରେ ଲିବ୍ୟାର ରାଷ୍ଟ୍ରପତି, କର୍ଣ୍ଣେଲ୍ ଗଦାଫିଙ୍କ ଶିଶୁକନ୍ୟାର ମୃତ୍ୟୁ ସମ୍ବାଦରେ, ମୁଁ ମର୍ମାହତ, ଶୋକାଭିଭୂତ। ଗଦାଫିଙ୍କ ଶିଶୁକନ୍ୟା, ମୋ ଦୃଷ୍ଟିରେ ହୋଇଉଠିଛି, ବିଶ୍ୱବ୍ୟାପୀ କୋଟିକୋଟି ନିରୀହ ଅସହାୟ ନିଷ୍ପାପ ଶିଶୁମାନଙ୍କର ସଙ୍କେତ ! ଏହି ଆକ୍ରମଣ ଓ ପ୍ରତି ଆକ୍ରମଣ ମଧ୍ୟରେ ଉଭୟ ପକ୍ଷର ମୁଣ୍ଡିଆଳମାନେ ପ୍ରାଣ ହରାଇଥିଲେ, ମୁଁ ହୁଏତ ଦୁଃଖିତ ହୋଇଥା'ନ୍ତି ମାତ୍ର ମର୍ମାହତ ହୋଇ ନଥାନ୍ତି ! ସେ ପ୍ରକାର ମୃତ୍ୟୁ ସେମାନଙ୍କ ପକ୍ଷରେ ହୋଇଥାନ୍ତା, ବୀରୋଚିତ ! ସେମାନଙ୍କ ଦେଶର ଇତିହାସ, ସେମାନଙ୍କୁ ସହିଦ ଆଖ୍ୟା ଦେଇ, ଥେଇଥେଇ ହୋଇ ନାଚିଥାଆନ୍ତା। ପୁଣି ଯେଉଁମାନେ ଝଡ଼ର ବିଷମଞ୍ଜି ବୁଣନ୍ତି, ସେମାନେ ଆତ୍ମଧ୍ୱଂସର ଫସଲ ଅମଳ କରିବାପାଇଁ ବାଧ୍ୟ। ଇଏ ହେଉଛି, ପ୍ରାକୃତିକ ନିୟମ।

କିନ୍ତୁ ଆଜିର ଗଦାଫି ଓ ରେଗାନମାନେ ଯୁଦ୍ଧ ସୀମାନ୍ତଠାରୁ ନିରାପଦ ଦୂରତ୍ୱରେ ଆତ୍ମରକ୍ଷା କରି, ରାସାୟନିକ ଅସ୍ତ୍ରଠାରୁ ଆରମ୍ଭ କରି, ଆଣବିକ ଅସ୍ତ୍ରଶସ୍ତ୍ର ପର୍ଯ୍ୟନ୍ତ ବହୁ ପ୍ରକାର ମାରାତ୍ମକ ମାରଣାସ୍ତ୍ର ପରସ୍ପର ବିରୋଧରେ ପ୍ରୟୋଗକରି ନିରୀହ, ଶାନ୍ତିପ୍ରିୟ ନରନାରୀ, ବୃଦ୍ଧ ଓ ଶିଶୁମାନଙ୍କର ଜୀବନକୁ ପ୍ରତି ମୁହୂର୍ତ୍ତରେ ବିପନ୍ନ କରୁଅଛନ୍ତି। ଦେଶ, ରାଷ୍ଟ୍ର ଓ ଜାତି ନାମରେ ଏ ବାତୁଳତା ପ୍ରଥମ ମହାଯୁଦ୍ଧଠାରୁ ଦ୍ୱିତୀୟ ମହାଯୁଦ୍ଧ ଓ ତାହା ପରଠାରୁ, ସେହିଦିନୁ ବହୁ ଅଘୋଷିତ ଯୁଦ୍ଧ ମଧ୍ୟରେ, ବାରମ୍ବାର ପ୍ରକାଶପାଇ ଆସୁଅଛି। ପ୍ରଥମ ମହାଯୁଦ୍ଧ ପରେ ବିଶ୍ୱରେ ଶାନ୍ତିପ୍ରତିଷ୍ଠାପାଇଁ, 'ଲିଗ୍ ଅଫ୍ ନେସନ୍‌ସ'ର ପ୍ରତିଷ୍ଠା ହୋଇଥିଲା। କିନ୍ତୁ 'ଲିଗ୍ ଅଫ୍ ନେସନ୍‌ସ' ମଧ୍ୟରୁ ଜନ୍ମ ଲାଭ କଲା ହିଟ୍‌ଲର ଓ ଦ୍ୱିତୀୟ ବିଶ୍ୱଯୁଦ୍ଧ ! ଦ୍ୱିତୀୟ ବିଶ୍ୱଯୁଦ୍ଧ ମଧ୍ୟରୁ ବିଶ୍ୱରେ ଶାନ୍ତିପ୍ରତିଷ୍ଠାପାଇଁ ଜନ୍ମଲାଭ କଲା, ମିଳିତ ଜାତିସଂଘ ଓ ନିରାପତ୍ତା ପରିଷଦ ! ମାତ୍ର ନିରାପତ୍ତା ପରିଷଦ ଆଜି ହୋଇଉଠିଛି, ଦୁଇ ବୃହତ୍ ଶକ୍ତି ମଧ୍ୟରେ, ଶକୁନିର ପଶାପାଲି। ମିଳିତ ଜାତିସଂଘ ଓ ନିରାପତ୍ତା ପରିଷଦ

ସତ୍ତ୍ୱେ ଭିଏତ୍‌ନାମରେ ଚାଲିଲା, ଦୀର୍ଘ କୋଡ଼ିଏ ବର୍ଷବ୍ୟାପୀ ରକ୍ତକ୍ଷୟୀ ଯୁଦ୍ଧ ! ଆଜି ସୁଦ୍ଧା ଇରାକ୍ ଓ ଇରାନ୍ ମଧ୍ୟରେ ଯେଉଁ ଭୟଙ୍କର ଯୁଦ୍ଧ ଗତ ପାଞ୍ଚ ବର୍ଷ ଧରି ଲାଗି ରହିଛି, ତାହାର ବିଭୀଷିକା କୌଣସି ମହାଯୁଦ୍ଧର ବିଭୀଷିକାଠାରୁ କୌଣସି ଗୁଣରେ କମ୍ ନୁହେଁ। ଏବେ ଲିବ୍ୟାର ଉତ୍ତରରେ ଗଲଫ୍ ଅଫ୍ ସିଡ୍ରାରେ ଦୁଇ ବୃହତ୍ ଶକ୍ତି- ଆମେରିକା ଓ ସୋଭିଏତ୍ ରୁଷିଆ ଯେପରି ପରସ୍ପରର ସାମନାସାମନି ହୋଇଛନ୍ତି, ସେଥିରେ ଯେକୌଣସି ପକ୍ଷରୁ ମୁହୂର୍ତ୍ତକର ବାତୁଳତା ଯେ ଏକ ପ୍ରଳୟର ସୂତ୍ରପାତ ନ କରିବ, ସେ କଥା କିଏ କହିବ !

ଆମେ ପାଗଳାମାନଙ୍କୁ, ପାଗଳା ଗାରଦ ଭିତରେ, ସମାଜର ନିରାପତ୍ତାପାଇଁ ଅଟକ ରଖିଥାଉ ! କିନ୍ତୁ ରାଜନୀତି କ୍ଷେତ୍ରରେ ହିତାହିତ ଜ୍ଞାନଶୂନ୍ୟ ବଦ୍ଧପାଗଳମାନଙ୍କୁ ରାଷ୍ଟ୍ରପତି ଓ ରାଷ୍ଟ୍ରନାୟକର ସିଂହାସନରେ ଅଭିଷିକ୍ତ କରିବାରେ ଆମର କୁଣ୍ଠା ନଥାଏ। ଇଏ ଏକ ନିଷ୍ଠୁର ବିରୋଧାଭାସ।

କିନ୍ତୁ, ମୁଁ ଭାବୁଛି, ପ୍ରକୃତରେ ପାଗଳ କିଏ: ସେମାନ ନା ଆମେ ? ଆମେ ସବୁ ଯଦି ମୂକ, ନିର୍ବୋଧ, ପାଗଳ ହୋଇ ନଥାନ୍ତୁ, ଧର୍ମ ଜାତି ଓ ଦେଶ ନାମରେ ଯଦି ଅନ୍ଧ ହୋଇ ନଥାନ୍ତୁ ତାହାହେଲେ ଏଇ ବଦ୍ଧପାଗଳମାନେ ଧୃତରାଷ୍ଟ୍ର ହୋଇପାରୁଥାଆନ୍ତେ ବା କିପରି ? ଯେହେତୁ ଆମେ ସବୁ ପାଗଳ; ବଦ୍ଧ ପାଗଳମାନେ ହୋଇପାରୁଛନ୍ତି, ଆମର ଭାଗ୍ୟନିୟନ୍ତା।

ଗଦାଫିଙ୍କର ହେ ଶିଶୁ କନ୍ୟା ! ତୁମର ନାଁ ମୁଁ ଜାଣେ ନାହିଁ। ଚେହେରା ବି ଦେଖି ନାହିଁ। କିନ୍ତୁ ସ୍ପଷ୍ଟ ଦେଖିପାରୁଛି, ଆମେରିକାର ରକେଟ୍ ଆକ୍ରମଣରେ ତୁମର ରକ୍ତାକ୍ତ ମୃତପିଣ୍ଡ, ଆଉ ତା'ପାଖରେ, ଖେଳନା କଣ୍ଢେଇଟିଏ।

୨୪/୦୪/୮୬

# କୁମ୍ଭ-ବାହୁଡ଼ା

କୁମ୍ଭମେଳାରୁ ନେତଅପା ଯେଉଁଦିନ ଫେରିଲା, ସେଦିନ ଏ ଛୋଟ ସହରଟିର ସେଇ ଅଖ୍ୟାତ ଗଳିରେ, ଘରେ ଘରେ ସମ୍ବାଦଟି ଅଗ୍ନି ବେଗରେ ବ୍ୟାପିଗଲା। ବୟସ ତାକୁ ପଞ୍ଚାଅଶୀ। ଏ ବୟସରେ ଗାଆଁରେ ଭଲ ଭାବରେ ଚଳିବାପାଇଁ, ନେତ ଅପାର ସଂଗତିର ଅଭାବ ନଥିଲା। ତଥାପି ସିଏ ତା'ର ପଞ୍ଚାଅଶୀ ବର୍ଷ ବୟସ ଓ ରୋଗୀଣା ସ୍ୱାସ୍ଥ୍ୟ ସତ୍ତ୍ୱେ ଦିନସାରା କାଠିକୁଟା ଗୋଟାଏ, ଘଷି ପାରେ। ବର୍ଷାଦିନରେ ଲୋକେ ଯେତେବେଳେ ଶୁଖିଲା ଘଷି, କାଠକୁଟା ଜାଳିବାକୁ ପାଆନ୍ତି ନାହିଁ, ନେତଅପା ସେହିସବୁ କାଠିକୁଟାର ଜଞ୍ଜାଳ ବିକ୍ରି କରି କିଛି ପାଣ୍ଠି ଜମାଏ। ଗାଁ ଲୋକେ କହନ୍ତି 'ରଙ୍କୁଣୀଟାଏ ! ଏତେ ଧନ ସତେ ଯେମିତି ମୁଣ୍ଡେଇ ସେ ପୁରକୁ ଯିବ।"

ପୁଅମାନେ ଏଠିସେଠି ବିଦେଶରେ ! ନେତଅପା ହାତୀଶାଳ ପରି ଖାଁଖାଁ କରୁଥିବା ଗାଁ ଘରେ ତାର କାଠିକୁଟା ଆଉ ଘଷିଫଡ଼ାର ସଂସାର ଧରି ପଡ଼ିଥାଏ। ବଡ଼ପୁଅ ଏଇ ସହରରେ ଗୋଟିଏ ଛୋଟିଆ ମୋଟିଆ ଚାକିରି କରେ। ତାର ଆତ୍ମସମ୍ମାନରେ ନେତଅପାର ଏସବୁ ଧନ୍ଦା ବାଧା ଦେଉଥିବାରୁ ସେ ତାକୁ ଏବେ ଏଇ ଛୋଟ ସହରକୁ ଏକ ପ୍ରକାର ଜବରଦସ୍ତ ଭିଡ଼ି ଆଣିଥିଲା। ସହଜେ ନେତ ଅପାର ଦେହ ଏବେ ପୁଣି ବାତଜ୍ୱରରେ ଆଉ ଭଲ ରହୁନଥିଲା। ତାର ସ୍ୱାସ୍ଥ୍ୟଭଙ୍ଗ ଘଟିଥିଲା। କିନ୍ତୁ ସେ କ'ଣ ଜାଣିଥିଲା, ନେତଅପା ହଠାତ୍ ହରଦ୍ୱାରରେ କୁମ୍ଭମେଳା ଯୋଗରେ ବୁଡ଼ ପକାଇବାକୁ ଯିବାପାଇଁ, ଜିଦ୍ ଧରି ବସିବ। ପୁଅ ମନା କରୁଥିଲା, ବୁଢ଼ୀର ଯିବାଆସିବା ଆଉ ମେଳାଖର୍ଚ୍ଚପାଇଁ ଜିପିଏଫ୍‌ରୁ ଟଙ୍କା ଡ୍ର କରିବାର ସମ୍ଭାବନାକୁ ଏଡ଼ାଇବା ଉଦ୍ଦେଶ୍ୟରେ ବୋହୂ ମନା କରୁଥିଲା, ସେହି ଟଙ୍କାରେ ବରଂ ଗୋଟାଏ ବ୍ଲାକ୍ ଆଣ୍ଡ୍ ହ୍ୱାଇଟ୍ ଟିଭି ସେଟ୍ କିଣିବାପାଇଁ ! କିନ୍ତୁ ନେତଅପାର ଏକା ଜିଦ୍ ସିଏ ଯିବ କୁମ୍ଭମେଳା ଯୋଗରେ ହରଦ୍ୱାର। ଚଇତ ଅମେଇସିଆ ଦିନ ଗଙ୍ଗାରେ ବୁଡ଼ ପକାଇଲେ କୁଆଡ଼େ, ସିଏ ଏକାଥରେ ମୋଛ (ମୋକ୍ଷ) ପାଇଯିବ। ପୁଅବୋହୂ ଟଙ୍କା ଚିନ୍ତା କରିବା ଦରକାର ନାହିଁ। ସିଏ ତା ପାଣ୍ଠି ଆଗରୁ ରଖିଛି।

ବୋହୂ ପାଣ୍ଠି କଥା ଶୁଣି, ବୁଢ଼ୀର ସେବାଯତ୍ନ ଟିକିଏ ବଢ଼େଇ ଦେଇ କଦରରେ ବୁଢ଼ୀର ଗଚ୍ଛିତ ପାଣ୍ଠିର ପରିମାଣଟା ମଧ୍ୟ ବୁଝିନେଲା। ସିଏ ପ୍ରାୟ ଅଢ଼େଇ ହଜାର ଟଙ୍କା। ସେଥିରୁ ଅଧେ ଟଙ୍କା ରଖିଯିବାପାଇଁ, ବୋହୂ ବୁଢ଼ୀକୁ ବୁଝେଇଲା, ଚୋର, ତସ୍କର ଝାମ୍ପିନେବେ ଇତ୍ୟାଦି। କିନ୍ତୁ ନେତଅପା କପର୍ଦ୍ଦକଟିଏ ନଛାଡ଼ି ସଙ୍ଗରେ ସବୁ ଧରି ହରଦ୍ୱାର ବାହାରି ଗଲା। ସାଙ୍ଗରେ ଗଲା, ଗାଆଁର ପୁତୁରା ଲେଖା ପୀତବାସ। ଗଞ୍ଜେଇ ଲୋଭରେ, ପୀତବାସ ହାଫ୍ ବାବାଜୀ ! ତାକୁ ମଧ୍ୟ ଏଇ ଅବକାଶରେ ହରଦ୍ୱାର କୁମ୍ଭମେଳାରେ ସାଧୁସଙ୍ଗ କରିବାପାଇଁ ଗୋଟେ ମଉକା ମିଳିଗଲା। ପଞ୍ଚାଅଶୀ ବର୍ଷ ବୟସରେ, ରୋଗରୁ ସଳଖି ନ ଉଠୁଣୁ, ନେତଅପା ଯେଉଁଦିନ ହରଦ୍ୱାର ବାହାରିଗଲା, ସେଦିନ ତାହା ଏଇ ଗଳିରେ ଘରେଘରେ ଚର୍ଚ୍ଚାର ବିଷୟ ହୋଇଥିଲା। ସିଏ ଅକ୍ଷତ ଦେହରେ ଫେରିଆସିଥିବା ଖବରଟା ମଧ୍ୟ ସେହିପରି ଚର୍ଚ୍ଚାର ବିଷୟ ହୋଇଗଲା। ସାହିର ବୁଢ଼ୀ ଦରବୁଢ଼ୀମାନେ ଗୋଟିଏ ଗୋଟିଏ ଶିଶି ବୋତଲ ଧରି, ନେତଅପା ପାଖକୁ ଧାଡ଼ିବାନ୍ଧିଲେ ଗଙ୍ଗାଜଳପାଇଁ। ନେତଅପା ହରଦ୍ୱାରରୁ ଗୋଟିଏ ନୂଆ ବଡ଼ ପତଳା ଗରାରେ ଆଣିଛି, ଗରାଏ ଗଙ୍ଗାଜଳ। ଏ ଖବରଟା ସୁଦ୍ଧା ସାହିରେ କିପରି ବ୍ୟାପିଯାଇଥିଲା କେଜାଣି !

ନେତଅପା ଅକ୍ଷତ ଦେହରେ ହରଦ୍ୱାରରୁ ଫେରିଥିବା ସମ୍ବାଦ ଶୁଣି ତାକୁ ଦେଖିବାପାଇଁ ମୁଁ ଦିନେ ସକାଳେ ତାଙ୍କ ଘରକୁ ଆସିଲି। କୁମ୍ଭମେଳାରେ ଦଳାଚକଟାରେ ଯାତ୍ରୀମାନେ ମରିବା ଖବର ପଢ଼ିବାଦିନୁ ନେତଅପାର ନିରାପତ୍ତା ସଂପର୍କରେ ମୁଁ ମନେ ମନେ ଭାରି ଉଦ୍‌ବିଗ୍ନ ଥିଲି। ନେତଅପା ସାଙ୍ଗରେ ଥଟ୍ଟା ପରିହାସ କରିବାକୁ ମୋତେ ଭାରି ଭଲ ଲାଗେ। ନେତଅପା ତାଙ୍କ ଭିତରେ ଅଗଣା ପିଣ୍ଡାରେ କାନ୍ଥକୁ ଆଉଜି ବସିଥିଲା। ବୁଢ଼ୀ ଫେରିବା ଦିନ ପୁଅ ବୋହୂ ଏପିରିକି ନାତି ନାତୁଣୀ ସୁଦ୍ଧା ତା' ଉପରେ ଫଣଫଣ ହେଉଛନ୍ତି। ପୁଅ ମୋତେ ପାଛୋଟି ଆଣୁଆଣୁ ଦାଣ୍ଡଘରେ କହିଲା, କାଇଁରେ ଭାଇ, ବୋଉ ଏ ମହରଗ କାଳରେ ଅଢ଼େଇ ହଜାର ଟଙ୍କା ପାଣିରେ ପକେଇ ଦେଇ ଆସିଲା କି ପୀତବାସିଆ ମାରିନେଲା। ପିଲାଙ୍କପାଇଁ ଭଲଟାଏ କି ମନ୍ଦଟାଏ ଆଣିଲା ନାହିଁ। ଆଣିଛି କ'ଣ ନା ଗଙ୍ଗାଜଳ !

ପିଣ୍ଡାରେ ନେତଅପାକୁ ଦେଖି ମୁଁ ବଡ଼ ପାଟିରେ କହିଲି, "ଇଲୋ ନେତଅପା, ସବୁ ପାପତାପ ଗଙ୍ଗାରେ ଧୋଇ ନିର୍ମଳ ହୋଇ ଫେରିଲୁ ତ !" ନେତଅପା ପାଟିରେ ଦାନ୍ତ ନାହିଁ। ସେ ହସିହସି ଉତ୍ତର ଦେଲା, "ମୋକ୍ଷ ପାଇଗଲିରେ ପୁଅ !" ମୁଁ କହିଲି, "ଇଲୋ, ତୋ ପାପତାପ ସବୁ ଗଙ୍ଗାମାତା ସୁଦ୍ଧା ଧୋଇପାରିଲେ ନାହିଁ ! ତୁ ସେଇ ଦଳାଚକଟାରେ ମୋକ୍ଷ ପାଇଥିଲେ, କେଜାଣି ମୋକ୍ଷ ପାଇଥାଆନ୍ତୁ। ପୁଣି ତ ସଂସାରକୁ

ଫେରିଆସିଲୁ, ଆଉ ମୋକ୍ଷ ପାଇଲୁ କ'ଣ ?" ନେତଅପା ମୋ କଥା ବୁଝିଲା କି ନାହିଁ, ସେମିତି ହସିଲା।

ମୁଁ ପଚାରିଲି, "ନେତଅପା ମେଳାରୁ ମୋ ପାଇଁ କ'ଣ ଆଣିଛୁ ?" ନେତଅପା ସେମିତି ପାକୋଇ ପାଟିରେ ହସି ହସି ଉତ୍ତର ଦେଲା, "ଗଙ୍ଗାଜଳ ଆଣିଛି, ନେ ଟିକିଏ !" ନେତଅପାର ବୋହୂ ରନ୍ଧାଘର ଭିତରୁ ଗରଗର ହୋଇ କହୁଥିବା ଶୁଭିଲା, "ଅଢ଼େଇ ହଜାର ଟଙ୍କା ପାଣିରେ ଫୋପାଡ଼ି ଆଣିଛନ୍ତି କ'ଣ ନା ଗଙ୍ଗାଜଳ ! ହେଃ! ମୁଁ ପଚାରିଲି, "ନେତଅପା ଏତେ ଗୁଡ଼ାଏ ଟଙ୍କା କ'ଣ କଲୁ ?" ତୋର ତ ଖାଇବାପିଇବା ଖର୍ଚ୍ଚ ନାହିଁ। ରହୁଥିଲୁ ତ କୋଉ ରାଉଟୀରେ ! କ'ଣ ଖର୍ଚ୍ଚ କଲୁ ଏତେ ?" ନେତଅପା ଅମ୍ଳାନ କଣ୍ଠରେ ଉତ୍ତର ଦେଲା, "ତେରଟା ଦେଉଳରେ ଭୋଗ କରିଛି, ଦକ୍ଷିଣା ଦେଇଛି। ନାଗା ସାଧୁଙ୍କଠୁ ଯେତେ ଯେତେ ସାଧୁ ମହାରାଜ ଥିଲେ, ସମସ୍ତଙ୍କୁ ଦର୍ଶନୀ ଦେଇଛି ! ଗୋଟା ନୂଆ ଗରା କିଣିଛି, ଗଙ୍ଗାଜଳ ଆଣିବାପାଇଁ। ଏମିତି ଅଢ଼େଇ ହଜାର ଟଙ୍କା ଉଡ଼ିଗଲା। ସେଥିରେ ଫେଣେ ପୀତବାସିଆ ଖର୍ଚ୍ଚ ଥିଲା।"

କେତେ ବର୍ଷର ଗୋବର ସାଉଁଟା, ଘଷିପକା, କାଠିକୁଟା ସାଉଁଟା ପଇସାରୁ ସଞ୍ଚିତ, ବୁଢ଼ୀର ଅଢ଼େଇ ହଜାର ଟଙ୍କା ଏହିପରି ଚାଲିଗଲା, ସେଥିରେ ତାର ଗ୍ଲାନି ନାହିଁ !

ପୀତବାସିଆ ହୋଇପାରେ, ହାଫ୍ ସାଧୁ ! ଯୋଉ ବାବାଜୀ ମହାରାଜଙ୍କ ପାଖରେ ନେତଅପା ଦର୍ଶନୀ ଲଗାଇଲା, ସେମାନେ ହୋଇପାରିଥାଆନ୍ତି ଭଣ୍ଡସାଧୁ। ଯେଉଁ ଦେଉଳମାନଙ୍କରେ ନେତଅପା ଭୋଗ ଲଗେଇଲା, ସେସବୁ ହୋଇପାରିଥାଆନ୍ତି ଧର୍ମ ନାମରେ ଗୋଟିଏ ଗୋଟିଏ ବେପାରର ପେଣ୍ଡ ! ସେ ଗଙ୍ଗାଜଳ ପୁଣି ପବିତ୍ର କି ନାହିଁ, କିଏ କହିବ ? ଭିତରେ ପାପ ଭର୍ତ୍ତିକରି ବାହାରେ ଗଙ୍ଗାବୁଡ଼ ପକାଇଲେ, କ'ଣ ପାପ ଧୋଇଯିବ ? ସବୁ ମିଛ ହୋଇପାରେ ! ସବୁ ମଧ୍ୟ ମିଛ। କିନ୍ତୁ ନେତ ଅପାର ବିଶ୍ୱାସ ଆଉ ପ୍ରତ୍ୟୟ ତ ନୁହେଁ ! ହିନ୍ଦୁଧର୍ମ ଓ ସଂସ୍କୃତିକୁ ଆଜି ଯଦି କେହି ହତ୍ୟା କରିଥାଆନ୍ତି, ତାହାହେଲେ ସେମାନେ ହେଉଛନ୍ତି, ଶ୍ରୀଶ୍ରୀଶ୍ରୀ ୧୦୦୮ ମହାରାଜ ଆଉ ଗୁରୁମାନଙ୍କର ଦଳ। ବିଧର୍ମୀମାନେ ନୁହନ୍ତି ! କିନ୍ତୁ ସେହି ସନାତନ ଧର୍ମର ଆଧ୍ୟାତ୍ମିକ ସଂସ୍କୃତିକୁ ଯଦି କେହି ବଞ୍ଚାଇ ରଖିଛନ୍ତି, ତାହାହେଲେ ସେମାନେ ହେଉଛନ୍ତି, ଏଇ ନେତଅପାମାନେ।

ସକାଳ ଗଡ଼ିଯାଇଥିଲା। ନେତଅପାଠାରୁ ବିଦାୟ ନେଇ ଆସିବା ବେଳେ ମୁଁ କହିଲି "ନେତଅପା ତୋର ବିଶ୍ୱାସ ଆଉ ପ୍ରତ୍ୟୟରୁ ମୋତେ ଦେଇ ପାରିବୁ ଟିକିଏ ?"

ନେତଅପାର କାନକୁ ଭଲ ଶୁଭେ ନାହିଁ, ସିଏ ମୋ ଆଡ଼େ କୁଲୁକୁଲୁ ଚାହିଁ ତାର ପାକୋଇ ପାଟିରେ ହସୁଥିଲା, ସେମିତି ହସୁଥିଲା।

*୦୧/୦୫/୮୬*

# କାଉ-କୋଇଲି

କାଉ-କୋଇଲି ବର୍ଣ୍ଣରେ ସମାନ ହେଲେ ହେଁ ପ୍ରକୃତରେ ଦୁହେଁ ପରସ୍ପର ବିରୋଧୀ। ପକ୍ଷୀକୂଳରେ କାଉ ହେଉଛି ଖଟିଖିଆ, ସର୍ବହରା। ସେ ବିଚରା ବଡ଼ିଭୋରରୁ ଉଠି, ମୁହଁସଞ୍ଜ ପର୍ଯ୍ୟନ୍ତ ଖାଦ୍ୟ ସଂଗ୍ରହ କରି କରି ଉଡ଼ି ବୁଲୁଥାଏ। ତାର କ୍ଷୁଧାର ଶେଷ ନାହିଁ। ସିଏ ମେହନତୀ। ସେଇଥିପାଇଁ ସ୍ୱାଭାବିକ ଭାବରେ ତା'ଠାରେ ରହିଛି କାଠିନ୍ୟ ଓ କର୍କଶତା। ସିଏ ପୁଣି ଗୋଷ୍ଠୀରେ ବିଶ୍ୱାସୀ। 'କା' ବା 'ରା' କରିଦେଲେ ସଙ୍ଗେ ସଙ୍ଗେ ତାର ଦଳେ ଜାତିଭାଇ ଦଳବାନ୍ଧି କୁଆଡୁ ଆସି ପହଞ୍ଚିଯାଆନ୍ତି। କିନ୍ତୁ କୋଇଲି ହେଉଛି ଗୋଟିଏ ବୁର୍ଜୁୟା ! ସିଏ ପୁଣି ନିଃସଙ୍ଗ କବିଟିଏ। କୋଉ ଡାଳରୁ କେତେବେଳେ ପଦେ 'କୁହୁ' ବୋଲିଦେଇ ସିଏ ଅନ୍ୟ କେଉଁ ଡାଳକୁ ଉଡ଼ିଯାଏ। କିନ୍ତୁ କୋଇଲିମାନେ କ'ଣ ଖାଇ ବଞ୍ଚନ୍ତି ? ସେ ଗବେଷଣା ଶୈଶବ ଦିନରୁ ଏବେଯାଏ ଚାଲିଥିଲେ ସୁଦ୍ଧା ମୁଁ ତାର ହଦିଶ୍ ତଥାପି ପାଇପାରିଲି ନାହିଁ। ଶୁଣିଛି ମାଇ କୋଇଲି ତାର କବିତ୍ୱ ଓ ପ୍ରେମରେ ମାତି କୁଆଡ଼େ ନିଜ ଶାବକକୁ ଲାଳନ ପାଳନ କରିପାରେ ନାହିଁ। ସେଥିପାଇଁ ସର୍ବହରା, ମେହନତୀ, ଖଟିଖିଆ କାଉ ବସାରେ ନିଜ ଡିମ୍ବଟି ଛାଡ଼ିଦେଇ ସେ ଉଡ଼ିଯାଏ। କାଉ ବିଚରା ରଙ୍ଗ ମୋହରେ ପଡ଼ି, କୋଇଲି ଛୁଆଟିକୁ ନିଜ ଶାବକ ଭାବି ପାଳନ କରେ, ଖାଦ୍ୟ ସଂଗ୍ରହ କରି ଆଣିଦିଏ, ଖଣ୍ଡି ଉଡ଼ା ବି ଶିଖାଏ ! କିନ୍ତୁ ଉଡ଼ା ଶିଖିଯିବା ପରେ, ଶ୍ରେଣୀ-ଶତ୍ରୁ କୋଇଲି କାଉକୁ ଧୋକ୍କା ଦେଇ କୋଉ ଆମ୍ବଗଛ ଡାଳକୁ ଦିନେ ଉଡ଼ିଯାଏ ତା'ର ମଧୁର ସଂଗୀତ ଗାଇବାପାଇଁ। କୋଇଲି ଯୁକ୍ତି କରିପାରେ ମୁଁ ଯଦି କାଉମାନଙ୍କ ମେଳରେ ବିଶ୍ୱସ୍ତ ହୋଇ ରହନ୍ତି, ତା'ହେଲେ ତମେ ଆଉ ଗୋଟାଏ କର୍କଶ୍ୱାସ୍ୱର ଶୁଣନ୍ତ ସିନା, ବିରଳ କୋଇଲି କଣ୍ଠଟି ଶୁଣନ୍ତ କୁଆଡୁ ? ଫାଲ୍‌ଗୁନଠାରୁ ଆଷାଢ଼ ପର୍ଯ୍ୟନ୍ତ ତମର ସକାଳ ସଞ୍ଜସବୁ 'କୁହୁ' ସ୍ୱନ ନଶୁଣି କେତେ ଦରିଦ୍ର ହୋଇ ନପଡ଼ନ୍ତା ସତେ ! ହଁ ଇଏ ବି ଗୋଟାଏ ଯୁକ୍ତି !

କିନ୍ତୁ ଏ ଧୋକ୍‌କାବାଜିକୁ କାଉ ଯେ କେବେ କ୍ଷମା ଦିଏ ନାହିଁ, ସେଦିନ ମୋ ବଗିଚାରେ ବସି ଏହାର ଗୋଟିଏ ଚାକ୍ଷୁସ ପ୍ରମାଣ ପାଇଲି। ସେଦିନ ଆଉ ଟିକକୁ ମୁହଁସଞ୍ଜ ହୋଇଯିବ। ମୁଁ ବଗିଚାରେ ଗୋଟାଏ ଗଛମୂଳେ ବସିଛି କୋଇଲିଟିଏ ଗଛ ଡାଳରେ ବସି ତଥାପି ତାର ପ୍ରେମିକ ବା ପ୍ରେମିକାକୁ କୁହୂସ୍ୱନରେ ଡାକୁଛି। କିଛି ଦୂରରେ କାଉଟାଏ ତଥାପି ଆହାର ଖୋଜିବୁଲୁଛି। ଏଇ ସମୟରେ କୋଇଲି ଛୁଆଟିଏ ହଠାତ୍ ଗଛଡାଳରୁ ତଳେ ଖସି ପଡ଼ିଗଲା। ସଙ୍ଗେସଙ୍ଗେ ତା' ପାଖକୁ କାଉଟାଏ ଉଡ଼ିଆସି ଚିହ୍ନିନେଲା, ଇଏ ହେଉଛି ସେଇ ଧୋକ୍‌କାବାଜ। ଆମକୁ ଫାଙ୍କିଦେଇ ଏଠି ଗୀତବୋଲି ଶିଖୁଛି। ସଙ୍ଗେସଙ୍ଗେ ସିଏ ଗୋଟିଏ 'କା'ଧ୍ୱନି ଦେଇ କୋଇଲି ଛୁଆଟିକୁ ଥଣ୍ଟରେ ଟାଣିଲା। ଚାହୁଁଚାହୁଁ ଦଳେ କାଉ କୁଆଡୁ ଉଡ଼ିଆସି କୋଇଲି ଛୁଆଟିକୁ ଘେରିଗଲେ। ସେମାନେ ଯେପରି ମେଳ ବାନ୍ଧିଥିଲେ ସମ୍ଭାବନାପୂର୍ଣ୍ଣ ଗୋଟିଏ କବିର ପ୍ରାଣନାଶ ଆଶଙ୍କା କରି ମୁଁ ଟେକାଟିଏ ଉଠାଇ ପକାଇଦେଲି କାଉମାନେ ଉଡ଼ିଗଲେ ରାସ୍ତାକଡ଼ର ଇଲେକ୍‌ଟ୍ରି ତାର ଉପରକୁ। କୋଇଲି ଛୁଆ ଖଣ୍ଡିଉଡ଼ା ଦେଇ ଉଡ଼ିଗଲା ଗଛଡାଳକୁ। କିନ୍ତୁ କାଉମାନେ ଇଲେକ୍‌ଟ୍ରିକ୍ ତାର ଉପରେ ଧାଡ଼ିବାନ୍ଧି ବସି ବହୁ ସମୟ ପର୍ଯ୍ୟନ୍ତ 'କା' 'କା' କରି କୋଇଲିର ଏ ଧୋକ୍‌କାବାଜି ବିରୁଦ୍ଧରେ ପ୍ରତିବାଦ ଜଣାଇ ଚାଲିଲେ।

ମୋର ହଠାତ୍ ମନେହେଲା, ସବୁ କଳା ଓ ସାହିତ୍ୟର ଜନ୍ମ ସରପ୍ଲସ୍ ଭାଲ୍ୟୁ ଭିତରୁ କାଉ ପରି ଯଦି ସାରା ଜୀବନ ଆହାର ଖୋଜିଖୋଜି ବିତିଯାଏ, ତାହାହେଲେ ସେ ଜୀବନରେ କଳା ବା ସାହିତ୍ୟ ପରି ସୌକୁମାର୍ଯ୍ୟ ଆସିବ କୁଆଡୁ ? କିନ୍ତୁ ତା' ବୋଲି କୋଇଲି କାହିଁକି ତା'ର ନିଜର କର୍ତ୍ତବ୍ୟ ଓ ଦାୟିତ୍ୱ ନସମ୍ଭାଳି ବିଚରା କାଉକୁ ଧୋକ୍‌କା ଦେବ, ତାର କୌଣସି ସଦୁତ୍ତର ମୁଁ ମଧ୍ୟ ଖୋଜି ପାଉନଥିଲି।

ସେଦିନ ରାତିରେ ଅନେକ ସମୟ ଯାଏ ମୁଁ ବିଛଣାରେ ପଡ଼ିପଡ଼ି ଚିନ୍ତା କରୁଥିଲି, ଆଜି ସନ୍ଧ୍ୟାରେ ମୁଁ କାହାର ପକ୍ଷତା କଲି- ସର୍ବହରା ଖଟିଖିଆର ନା ଲୁଟିଖିଆର ? ପ୍ରବଞ୍ଚିତର ନା ପ୍ରବଞ୍ଚକର ? ଶୋଷକର ନା ଶୋଷିତର ?

୧୫/୦୫/୮୬

# ସ୍ୱପ୍ନ ଯେଉଁଦିନ ସତ୍ୟ ହୁଏ

କାଠୁଆ ଡଙ୍ଗାଟାରେ, ହାଡୁଆ ନଈର ଜଟାଧାରୀ ମୁହାଣ ପାରିହୋଇ, ଆମେ ଷଣ୍ଢକୁଦର ବାଲିବନ୍ତ ଉପରକୁ ଉଠିବାବେଳକୁ ଭାଦ୍ରବ ଗୋଧୂଳିର ଆକାଶ କ୍ରମେ ବିବର୍ଣ୍ଣ ହୋଇଆସୁଥିଲା। ସକାଳେ ଏରସମାର ତଳହଟି ବାଲିତୁଠ ଗାଁରେ ଜଳଖିଆପାଇଁ ଆଉ ମିଳନ୍ତା ବା କ'ଣ ? ଅଣ୍ଡିଏ ଅଣ୍ଡିଏ ମୁଢ଼ି ଧରି ଆମେ ଏଇ କାଠୁଆ ଡଙ୍ଗାରେ ବସିଥିଲୁ। ହାଡୁଆ ନଈଏ ନଈଏ କାଠୁଆ ଡଙ୍ଗାଟି ଚାଲିଥିଲା ଷଣ୍ଢକୁଦ ଅଭିମୁଖରେ- ଡଙ୍ଗାରେ ଆମେ ଦୁଇଜଣ ପଝାରୀ ଓ ଆଉ ଜଣେ ନାଉରୀ। ଭଟ୍ଟା ପଡ଼ିଗଲେ ନଈରେ ଡଙ୍ଗାଟି କୋଉଠି ଲାଖିଯିବ। ସେଇଥିପାଇଁ ମୁଠାଏ ମୁଠାଏ ମୁଢ଼ି ଚୋବାଇଚୋବାଇ ଆମେ ନାଉରୀର ତାଡ଼ନାରେ ଡଙ୍ଗାକୁ ଉଠିଥିଲୁ। ଇଏ ୧୯୪୮ ମସିହା ସେପ୍ଟେମ୍ବର ମାସର କଥା।

ଦିନେ ଖିଆଲ ଉଠିଲା, ଚାଲ ଷଣ୍ଢକୁଦ। ସେତେବେଳକୁ ପାରାଦ୍ୱୀପ ବନ୍ଦର ତିଆରି ହୋଇନାହିଁ। ଆଜିର ପାରାଦ୍ୱୀପ ସେଦିନ ଏକ ଜଙ୍ଗଲ। ପାରାଦୀପ ବନ୍ଦରଠାରୁ ଦୁଇ ମାଇଲ୍ ଉପରକୁ ହାଡୁଆ ନଈର ଜଟାଧାରୀ ମୁହାଣ ଉପରେ, କୁଜଙ୍ଗ ଏଷ୍ଟେଟର ଜମିଦାର ବର୍ଦ୍ଧମାନ ମହାରାଜାଙ୍କର ଥିଲା ଗୋଟିଏ ସୁରମ୍ୟ ବଙ୍ଗଳା। ଅନେକେ ତାରିଫ୍ କରନ୍ତି ଷଣ୍ଢକୁଦର ଏଇ ବର୍ଦ୍ଧମାନ କୋଠିର। ସେହି ଷଣ୍ଢକୁଦରେ ଗୋଟିଏ ରାତି ବିତାଇବା ମୋର ଥିଲା ଅନେକ ଦିନର ସ୍ୱପ୍ନ। ବାଲିବନ୍ତରେ ଆମେ କୋଠି ଆଡ଼କୁ ଝୁପୁଝୁପିଆ 'ମାନ୍‌ଗ୍ରୋଭ୍' ଜଙ୍ଗଲ ଭିତର ଦେଇ ଯିବାବେଳକୁ ପଡ଼ନ୍ତଗୋଧୁଳିର ସବୁ ବିଷଣ୍ଣତା, ସବୁ ବିବର୍ଣ୍ଣତା ଯେପରି ଦୁଇ ପାଖର ସୁନ୍ଦରୀ, କାଜୁବାଦାମ ଆଉ ଅନ୍ୟ ଗଛମାନଙ୍କ ଉପରେ ଧୀରେଧୀରେ ଖଣ୍ଡେ ଓଜନିଆ ପଥର ପରି ଓହଳି ଆସୁଥିଲା। ମୁଁ ମୋର ବନ୍ଧୁମାନଙ୍କର ମନୋବଳ ବଞ୍ଚାଇ ରଖିବାପାଇଁ, ତାଙ୍କୁ କହିକହି ଚାଲିଥିଲି, ଏଇ ରାଜାକୋଠିରେ ନିଶ୍ଚୟ ଥିବ ଜଣେ ଓସ୍ତାଦ୍ ଖାନ୍‌ସମା ! ଇଏତ ଇଲିସି ଆଉ ଭେକ୍‌ଟି ମାଛର ରାଜ୍ୟ। ସେ ରାତିରେ ନିଶ୍ଚୟ ତିଆରି କରିଦେଇପାରିବ, ଭେକ୍‌ଟୀ ମାଛର ଫ୍ରାଏ,

ଆଉ ଇଲିସି ମାଛର ଝୋଲ୍। ବଣକୁକୁଡ଼ା ଭାରି ଟେଷ୍ଟଫୁଲ୍। ସେଥିରୁ ମଧ୍ୟ ଗୋଟାଏ ଯୋଗାଡ଼ ହୋଇପାରିବା ଅସମ୍ଭବ ନୁହେଁ।

ଅଳ୍ପ ଉଠାଣି ଉପରକୁ, ଶିଉଳିବସା, ଲୁଣିଧରା, ଭଙ୍ଗା ଷଣ୍ଢକୁଦ ବଙ୍ଗଳା ଦେଖାଯାଉଥିଲା- ଗୋଟିଏ ଭୂତକୋଠି ପରି। ସମୁଦ୍ର ପବନରେ ଏହାର କବାଟ ଝରକା ସବୁ, ସେଇ ନିର୍ଜନତା ଭିତରେ ଯେପରି ବାଡ଼େଇପିଟି ହେଉଥିଲା, ତାହା ଏକ ଭୌତିକ ପରିବେଶ ସୃଷ୍ଟି କରିଥିଲା। ଆମର ଭ୍ରମ ହୋଇ ନାହିଁ ତ !

ନାଉରି କିନ୍ତୁ କହିଥିଲା, ଏ ନିର୍ଜନ ଷଣ୍ଢକୁଦରେ, ସମୁଦ୍ରକୂଳରେ ରାଜାକୋଠି ବ୍ୟତୀତ ଅନ୍ୟ ଘର ନାହିଁ। ଦଳଦଳ ବାଦୁଡ଼ି କୋଠି ଭିତରୁ ଭଙ୍ଗାଝରକା ଆଉ କବାଟମାନଙ୍କ ଭିତର ଦେଇ କ୍ରମେ ନଇଁ ଆସୁଥିବା ମୁହଁସଞ୍ଜ ଭିତରକୁ ଡେଣାପିଟି ଉଡ଼ିଯାଉଥିଲେ। ସବୁ ସ୍ୱପ୍ନ, ସ୍ୱପ୍ନ ହୋଇଥିବାଯାଏ ମଧୁର ରୋମାଞ୍ଚକର ହୋଇ ରହିଥାଏ। ମଣିଷ ସେଇ ସ୍ୱପ୍ନର ମୋହରେ ମତୁଆଲା ହୁଏ। କିନ୍ତୁ ସେହି ସ୍ୱପ୍ନ ଯେଉଁଦିନ ହାତପାଆନ୍ତାକୁ ଆସିଯାଏ, ସ୍ୱପ୍ନ ଯେଉଁ ଦିନ ବାସ୍ତବତାରେ ପରିଣତ ହୁଏ, ସେଦିନ ଏହାର ବିଭତ୍ସ ଚେହେରା ଦେଖି ମଣିଷ ଚମକି ଉଠେ। ଷଣ୍ଢକୁଦ ରାଜାକୋଠିର ପ୍ରଶସ୍ତ ବାରଣ୍ଡା ଉପରକୁ ଉଠିବାବେଳେ, ମୋର ସେଇଆ ମନେ ହେଉଥିଲା ! ଆଉ ଏତେ ପଥଶ୍ରମ କରି, କାହିଁକି ଏ ଅପନ୍ତରାକୁ ଆସିଲି ବୋଲି, ମନରେ ଅବସୋସ ଆସୁଥିଲା।

ଅନେକ ଖୋଜାଖୋଜି ଆଉ ଚିତ୍କାର ପରେ ଛିଣ୍ଡା ଲୁଙ୍ଗି ଆଉ ମଇଳା ଫତେଇ ପିନ୍ଧିଥିବା, ବୃଦ୍ଧ ଚୌକିଦାରର ପତ୍ତା ମିଳିଲା। ସିଏ ଆମକୁ ଦେଖି, ପୁରୁଣା ଦିନର କାୟଦାରେ କୁର୍ଣ୍ଣିସ୍ ଜଣାଇ, ଭିତରକୁ ଆମନ୍ତ୍ରଣ କଲା ଓ ତାର ବିଳମ୍ବର ଗୋସ୍ତାକି ମାଫ୍ କରିବାପାଇଁ, ସେହି ପୁରୁଣା ଦିନର କାୟଦାରେ କହିଲା ! କିନ୍ତୁ, ଭିତରେ ଯେ ଅନ୍ଧାର ! "ମୁଁ ଲାଇଟ୍ ଆଣି ଦେଉଛି" କହି ସିଏ ଯେଉଁ କେନିକିଆ ହୋଇ, ଧୂଆଁରେ କଳାପଡ଼ି ଜଳୁଥିବା ଲଣ୍ଠନଟାଏ ଆଣିଲା, ସେଥିରେ ଭିତରର ଅନ୍ଧାରଟା ଯେପରି ଆହୁରି ଭୌତିକ ହୋଇଉଠିଲା। ଗୋଟାଏ ଭଙ୍ଗା ମେଜ୍ ଉପରେ ସେ ଲଣ୍ଠନଟା ସମୁଦ୍ର ହାଓ୍ୱାରେ କେତେବେଳେ ଯେ ଲିଭିଯିବ, ତାର ସ୍ଥିରତା ନଥିଲା।

ମୁଁ କହିଲି, "ଯାହା ହେବାର ହୋଇଗଲା। ଖାନ୍‌ସମାଜୀ ତୁମେ ବର୍ତ୍ତମାନ ଚଟପଟ୍ ଖାନା ବନାଇ ଦିଅ। ବିଶେଷ କଷ୍ଟ କରିବାର ଦରକାର ନାହିଁ। ଭେକ୍‌ଟୀ ମାଛର ଫ୍ରାଏ, ଇଲିସୀ ମାଛର ଝୋଳ ବା ଝୋଲ୍ ଯାହା ସୁବିଧା ହେବ, ଆଉ ଭାତ ଚଳିଯିବ !" ସିଏ ଆକାଶରୁ ପଡ଼ିବା ପରି କଣ୍ଠରେ କହିଲା, "ହଜୁର ! ଦିନବେଳା କେଜାଣି କୋସିସ୍ କଲେ, ମାଛ ମିଳନ୍ତା। ଏବେ ରାତିରେ ମାଛ ମିଳିବ କୋଉଠୁ ? ଚାଉଳ ବା କାହିଁ ? ଆପଣମାନେ ସାଙ୍ଗରେ ଧରି ଆସିଥିଲେ ସିନା ମୁଁ ରୋଷେଇ କରିଦେଇଥାଆନ୍ତି।" ସିଏ

ତା'ର ଡ୍ୟୁଟି ଶେଷ ହୋଇଗଲା ଭାବି, ଆଉ ବୃଥା ବାକ୍ୟବ୍ୟୟ ନକରି, ସେଠାରୁ ଚାଲିଗଲା। ସେଦିନ ରାତିସାରା ଉଜାଗର ରହି, ମୁଁ ଶୁଣିଛି କେବଳ ସମୁଦ୍ରର ଗର୍ଜନ, ଆଉ ବାଦୁଡ଼ିମାନଙ୍କର ଡେଣାର ଛଟପଟ୍ ଆୱାଜ୍। ଆଉ ଦୂରରେ କେଉଁଠୁ 'ହୋଇ', 'ହୁଇ'ର ଗୋଟିଏ ବିଚିତ୍ର ଆୱାଜ୍ ! ଆଉ ଅନୁଭବ କରିଛି, ଭୋକ କିପରି ଗୋଟିଏ ଙ୍କାନୁଆର ପରି ତୀକ୍ଷ୍ଣ ଦାନ୍ତରେ ମୋର ପେଟ ଭିତରଟା କୋରି ଚାଲିଛି ! ମୁଁ ରାତିସାରା ଭାବିଛି, ବାଲିସବୁ ଯଦି ହୋଇପାରନ୍ତା ଭେକ୍‌ଟୀ ମାଛର ଫ୍ରାୟ ! ଆଉ ଏଇ ବାଦୁଡ଼ି, ଚେମେଣିଆ ସବୁ ହୋଇଯାଆନ୍ତେ ଇଲିସି ମାଛ ବା ବଣକୁକୁଡ଼ା ରୋଷ୍ଟ୍ !

ସ୍ୱପ୍ନଭଙ୍ଗ ଭିତରେ ବି ମୁଁ ରାତିସାରା ଦେଖିଛି, ଭେକ୍‌ଟୀ ମାଛର ଫ୍ରାୟ ଆଉ ଇଲିସି ମାଛର ଝୋଲ୍‌ର ସ୍ୱପ୍ନ ! ସ୍ୱପ୍ନ ଦେଖିବା, ମଣିଷର ଯେପରି ଦ୍ୱିତୀୟ ପ୍ରକୃତି ! ସ୍ୱପ୍ନଭଙ୍ଗ ଭିତରେ ବି ସେ ଦେଖି ଚାଲିଥାଏ ସ୍ୱପ୍ନ !

୨୨/୦୪/୮୬

# ଷଣ୍ଢକୁଦର ମଇଁଷିଆଳ

ସବୁ ରାତି ପାହେ। ନିର୍ଜନ ଷଣ୍ଢକୁଦର ସେହି ଅପନ୍ତରା ଭଙ୍ଗା ବଙ୍ଗଳାରେ ଭୋକ ଉପାସରେ, ରାତିଟା ଠିକ୍ ପାହିଲା। ଦିନଟା ଭଲରେ କଟିବ ପରା ! ସକାଳୁ ସକାଳୁ ଖାନ୍‌ସାମା- ତଥା ଚଉକିଦାରର ସୌଜନ୍ୟରୁ କପେ ଚା' ସୁଦ୍ଧା ମିଳିଗଲା। ଚା'ରେ ଅବଶ୍ୟ କ୍ଷୀର ବା ଚିନିର ସଂପର୍କ ନଥିଲା। ନାଲି ଗରମ ଚା' ପାଣି ଆଉ ଲୁଣ। ତଥାପି ସେଇଥିରେ ଦେହ ଓ ମନ କିଛିଟା ତାଜା ହୋଇ ଉଠିଲା। ଆମେ ବଙ୍ଗଳା ବାହାରକୁ ଆସି ସମୁଦ୍ରର ପନ୍ତା ବାଲିରେ କିଛିବାଟ ଦକ୍ଷିଣାମୁହାଁ ହୋଇ ଚାଲିଲୁ। ସକାଳେ ସୁଦ୍ଧା ପାଖ ଝୁପଝୁପିଆ ଜଙ୍ଗଲ ଭିତରୁ ରହି ରହି ଶୁଭୁଥିଲା, ସେଇ 'ହୁଇ' 'ହୁଇ' ଶବ୍ଦ। ମଣିଷର କଣ୍ଠ ଠିକ୍ ବାରି ହେଉଥିଲା, କିନ୍ତୁ ସେଇ କଣ୍ଠସ୍ୱର କିପରି ଅସ୍ୱାଭାବିକ କଣ୍ଠସ୍ୱର ବାରି ବାରି ଆମେ ଜଙ୍ଗଲ ଭିତରକୁ ପଶିଲୁ।

ଜଙ୍ଗଲ ଭିତରେ ଅରାଏ ଛାଇଢଙ୍କା ସ୍ଥାନରେ କେତେଜଣ ମଇଁଷିଆଳ ବସା କରିଛନ୍ତି ପରା ! ଗୋଟାଏ ପ୍ରକାଣ୍ଡ ତାଳଛତା ତଳେ, ଜଣେ ଡେଙ୍ଗା ଲୋକ ଠିଆ ହୋଇ ବେଳେବେଳେ 'ହୁଇ', 'ହୁଇ' ଶବ୍ଦ କରୁଥିଲା ନିଦା, ଚଉଖୁଣ୍ଟିଆ, କଳା କିଟିକିଟି ଚେହେରା। ଅଣ୍ଟା ତଳେ ବେଢ଼େଇ ଥିଲା ଖଣ୍ଡେ ମଇଳା ଗାମୁଛା। ଦୁଇ ପାଦରେ ହଳେ ଉଚ୍ଚା ଉଚ୍ଚା କଠୋଉ। ମୁଣ୍ଡଯାକ ଅଲରାବାଳ। ସେଇ ଅଲରାବାଳ ଭିତରୁ ସେ ଆମ ଆଡ଼େ ଚାହିଁଥିଲା, କଟ୍‌ମଟ୍ ଆଖିରେ। ପାଖରେ ଗୋଟାଏ ଗଛରେ ଗୋଟାଏ ଦୁଧିଆଳି ମଇଁଷି ବନ୍ଧା ହୋଇ ପାକୁଳି କରୁଥିଲା। ତାଳ ଛତାର ବାଉଁଶ କାଠିମାନଙ୍କରୁ ଶିକାରେ ହାଣ୍ଡି, ଠେକି ଓ ମଇଳା ଲୁଗା ପୁଟୁଳି ପ୍ରଭୃତି ଝୁଲୁଥିଲା, ତା' ଭିତରେ ଝାଙ୍କ ଝାଙ୍କ ଡାଆଁସ। ହାଣ୍ଡି ଭିତରେ ପଖାଳ ଥିବ ଭାବି, ମୁଁ ଭାରି ଆଶାନ୍ୱିତ ହୋଇ କହିଲି- "ଆମକୁ ଭାରି ଭୋକ କରୁଛି। କାଲି ରାତିରୁ ଉପାସ।" ସେ ଲୋକଟି ଓଡ଼ିଆରେ ଅବଶ୍ୟ କହୁଥିଲା, ମାତ୍ର ତା'ର ଉଚ୍ଚାରଣରୁ ତା' କଥା କିଛି ବୁଝା ପଡୁନଥିଲା।

ମୁଁ ଆଉ ଥରେ କହିଲି- 'କାଲି ରାତିରୁ ଖାଡ଼ା ଉପାସ।" ସେ ହାତ ହଲାଇ ଠାରରେ କହିଲା- "କିଛି ନାହିଁ"।

ଆମେ ଫେରିଆସୁଥିଲୁ। ସେ ପଛରୁ ଡାକିଲା, "ହୁଇ !" ସେ ବୋଧହୁଏ ଜଙ୍ଗଲରେ ମଇଁଷିମାନଙ୍କୁ ଏହିପରି ଡାକିଥାଏ। ଆମେ ତା' ଆଡ଼େ ଫେରି ଚାହିଁବାରୁ ସେ ଆମକୁ ହାତଠାରି ଡାକିଲା। ଆମେ ପୁଣି ସେଇ ଛତା ତଳକୁ ଆସିଲୁ। ତା' କଥାରୁ ଆମେ ଯାହା ବୁଝିଲୁ, ସେ ଆମକୁ କହୁଛି ଅପେକ୍ଷା କଲେ ସେ କିଛି ଖାଇବାକୁ ଦେଇପାରିବ। ସଙ୍ଗେସଙ୍ଗେ ଗୋଟାଏ ଠେକିରେ ମଇଁଷି ପହ୍ନାରୁ ସେ ଚଁ ଚାଁ କରି କ୍ଷୀର ଦୁହିଁବା ଆରମ୍ଭ କରିଦେଲା। ଠେକି ଭିତରେ କ୍ଷୀର ଦୁହିଁବାର ଶବ୍ଦ, ମୋ କାନକୁ ସଙ୍ଗୀତ ପରି ଲାଗୁଥିଲା। ଗଅଣ୍ଡ ଠେକିଏ କ୍ଷୀର ଦୁହିଁସାରି, ସେ ଗୋଟାଏ ଗଣ୍ଠିଲି ଭିତରୁ ମୁଠାଏ ସୁଆଁଚାଉଳ କାଢ଼ି ଠେକି ଭିତରେ ପକାଇ, ତା'ର ମୁହଁକୁ ପରସ୍ତ ପରସ୍ତ କରି ଚଉଡ଼ା ପତ୍ରରେ ବାନ୍ଧିଦେଲା। ତା'ପରେ ଦୁଇ ହାତରେ ବାଲି ଆଡ଼େଇ ପ୍ରାୟ ହାତେ ଗହୀର ଗୋଟାଏ ଗାତ ଖୋଳି ତା' ଭିତରେ ସେ ସେଇ ଠେକିଟିକୁ ରଖିଦେଇ ତା ଉପରେ ପୁଣି ବାଲି ଚଲାଇ ଦେଲା। ସେ ଆମକୁ କହିଲା, ଘଡ଼ିଏ ଛାଡ଼ି ଆସିବାପାଇଁ। ଏଥିରୁ କି ବସ୍ତୁ ବାହାରିବ, ଆମେ ଅନୁମାନ କରିପାରୁ ନଥିଲୁ।

ପ୍ରାୟ ଘଣ୍ଟାକ ପରେ ଆମେ ପୁଣି ସେଇ ସ୍ଥାନକୁ ଫେରିଲୁ। ମଇଁଷିଆଳ ବାଲି ଆଡ଼େଇ, ଠେକିଟା ବାହାରକୁ କାଢ଼ିଆଣି, ତା' ଭାଷାରେ ଆମକୁ କହିଲା, ଖାଇସାରି ଠେକିଟା ତାକୁ ଫେରାଇ ଦେଇଯିବାପାଇଁ। ଯାହା ହେଉ, ଅବଶେଷରେ କିଛି ଖାଦ୍ୟ ମିଳିଲା। ଖାଦ୍ୟ ତ ଆଉ ଅଖାଦ୍ୟ ହୋଇନଥିବ ! ଆମେ ଠେକିଟିକୁ ଧରି ନଈକୂଳ ବାଟେ ବୁଲି, ବଙ୍ଗଳା ଆଡ଼େ ମୁହାଁଇଲୁ। ନଈ କୂଳରେ ଗୋଟାଏ କେଉଟ ଡଙ୍ଗାରେ ବସି ମାଛ ଆଡ଼େ ଧରୁଥିଲା। ଦଶ ପଇସାରେ ପ୍ରାୟ ବିଶାଏ ଓଜନର ଗୋଟାଏ ଖଅଙ୍ଗା ମାଛ ସେ ଆମ ଆଡ଼େ ଫିଙ୍ଗିଦେଲା। ଆମେ ଠେକି ଆଉ ମାଛ ଧରି ବଙ୍ଗଳାରେ ପହଞ୍ଚିଲୁ। ଖାନ୍‌ସାମା ବା ଚୌକିଦାର ମାଛଟାକୁ ଦେଖି ଖୁବ୍ ଖୁସି ହୋଇ କହିଲା, "ହଜୁର, ତେଲ ତ ନାହିଁ, ହେଲେ ମାଛଟାକୁ ପୋଡ଼ିଦେବି। ଫାଷ୍ଟକିଲାସ୍ ଲାଗିବ।" ଆମ ସାମନାରେ ମାଛ ପେଟରୁ ଲାଞ୍ଜଆଡୁ ଧରି ସିଏ କିଛି ସମୟ ପୋଡ଼ିଲା। ନିଆଁ ଧୀରେଧୀରେ ଲିଭିଗଲା। ତା'ର ମାଛପୋଡ଼ା ସରିଗଲା। ଖାଇବାକୁ ବସିବାପାଇଁ, ଆଉ ତର ସହୁ ନଥିଲା। ଭଙ୍ଗା ଡାଇନିଂ ଟେବୁଲ୍ ପାଖରେ ଆମେ ଦୁଇଜଣ କ୍ଷୁଧାର୍ତ୍ତ ଆଖିରେ ସେଇ ଠେକି ଆଉ ମାଛପୋଡ଼ା ଆଡ଼େ ଚାହିଁ ବସିପଡ଼ିଲୁ। ଆମ ସାମନାରେ ସେ ପୋଡ଼ା ମାଛଯାକୁ ଗୋଟାଏ ମାଣସାରୁ ପତ୍ର ଉପରେ ହାତରେ ଝାଡ଼ିଦେବାରୁ, ମାଛର କଣ୍ଟା ଆଉ ମୁଣ୍ଡଟା ବାହାରିଗଲା। ସାରୁ ପତ୍ର ଉପରେ ପୋଡ଼ା ମାଛ ଖଣ୍ଡ ଖଣ୍ଡ ହେଇ ଖସିପଡ଼ିଲା। ତା' ସହିତ ସେ ଦେଲା

କିଛି ଲୁଣ ଆଉ କଞ୍ଚାଲଙ୍କାମରିଚ ! କିନ୍ତୁ ଠେକି ମୁହଁରୁ ପତ୍ର କାଢ଼ି, ଯେତେବେଳେ ଠେକିଟାକୁ ସେ ଆଉ ଗୋଟାଏ ମାଣସାରୁ ପତ୍ର ଉପରେ ଓଜାଡ଼ି ଦେଲା, ସେତେବେଳେ ତାହାର ବାସନା ଆଘ୍ରାଣ କରି, ମୋର ଜିଭ ଲାଳେଇ ଉଠିଲା। ସେଦିନର ସୁଆଁକ୍ଷୀରି ଆଉ ମାଛ ପୋଡ଼ାପରି ସୁଖାଦ୍ୟ ଯା ଭିତରେ ମୁଁ ଆଉ ଖାଇବାକୁ ପାଇଲି ନାହିଁ।

କିନ୍ତୁ, ଏବେ ସେ ମଇଁଷିଆଳମାନେ କାହାନ୍ତି ? ସେହିଦିନୁ ମୁଁ ଖୋଜିଛି ସେମାନଙ୍କୁ, ନାନା ସ୍ଥାନରେ। ସେଦିନର ଜଙ୍ଗଲ ନାହିଁ। ମଇଁଷିଆଳମାନେ ମଇଁଷି ପଲଧରି ଆଜି ବଡ଼ ବଡ଼ ସହରମାନଙ୍କର ଖାଟାଲ୍‌ମାନଙ୍କରେ। ଆଜିର ସହର ସବୁ ତ ଅରଣ୍ୟ। ଇତିମଧ୍ୟରେ, ବାହାରକୁ ସେମାନେ ଅନେକ ସଭ୍ୟ ହୋଇଗଲେଣି। କିନ୍ତୁ ସେମାନେ ଭୋକିଲା ଲୋକଙ୍କୁ ଆଉ ସେପରି ଅପନ୍ତରାରେ ସୁଆଁକ୍ଷୀରି ଖୁଆଉ ନାହାନ୍ତି। ବରଂ କ୍ଷୀରରେ ପ୍ରଚୁର ପାଣି ମିଶାଇ, କିପରି ପଇସା ଲୁଟ୍ କରାଯାଇପାରେ, ସେଇ କୌଶଳରେ ସେମାନେ ଅଧିକ ଧୁରନ୍ଧର ହୋଇ ଉଠିଛନ୍ତି। ଅଣ୍ଟାତଳେ ଲେଙ୍ଗୁଟା ଜାଗାରେ ଆସିଛି-ଟ୍ରାଉଜର, ହାତରେ ଘଣ୍ଟା, ପାଦରେ କଠଉ ଜାଗାରେ ବାଟା ଚଟୀ ଆଉ ସାଇକଲ୍ ! କିନ୍ତୁ ମନୁଷ୍ୟତ୍ୱ କେଉଁ ଦିନ ଅଲକ୍ଷିତରେ ବିଦାୟ ନେଇଛି ! ଇତି ମଧ୍ୟରେ ସେଇ ମଇଁଷିଆଳମାନେ ସହରମାନଙ୍କର ଖାଟାଲ୍‌ମାନଙ୍କରେ କେଉଁଠି ହଜିଗଲେଣି। କିନ୍ତୁ ସଭ୍ୟତା, ମନୁଷ୍ୟତ୍ୱର ପରିପନ୍ଥୀ କାହିଁକି ?

୦୪/୦୬/୮୬

# ଟେଲିଫୋନ୍ ଇଜ୍ ଡେଡ୍

ରଙ୍ଗମଞ୍ଚମାନଙ୍କରୁ ତଥାକଥିତ ଉଦ୍ଭଟ ନାଟକ କେବେଠାରୁ ବିଦାୟ ନେଲାଣି ! କିନ୍ତୁ ତାହା କ୍ରମେ ଅଭିନୀତ ହେଲାଣି, ଆମ୍ଭମାନଙ୍କର ଦୈନନ୍ଦିନ ଜୀବନରେ। ଉଦାହରଣ ସ୍ୱରୂପ ଆପଣ ହଠାତ୍ ଗୋଟାଏ ଆବେଗର ତାଡ଼ନାରେ, କ୍ରୋଧରେ ବା ଆନନ୍ଦରେ, ଟେଲିଫୋନ୍ ଉଠାଇଲେ କୌଣସି ଜଣେ ବନ୍ଧୁଙ୍କ ପାଖକୁ। ସେହି ଆବେଗପୂର୍ଣ୍ଣ ମୁହୂର୍ତ୍ତରେ ଆରପଟରୁ କିନ୍ତୁ ଶୁଣିଲେ, ପୋଲିସ୍ ଷ୍ଟେସନର କେହି ଜମାଦାର ଘାଗଡ଼ା ଗଳାରେ ଘୋଷଣା କରୁଛନ୍ତି, "ହାଁ ହଲ୍ଲୋ ପୋଲିସ୍ ଷ୍ଟେସନ୍।' ଅଥବା ନିଦମିଶା, ଝିମେଇ ପଡ଼ିଥିବା କଣ୍ଠରେ, 'ଆମ୍ବୁଲାନ୍ସ !' ଓଲଟି ଆପଣ ଏ ଭୁଲ୍‌ପାଇଁ କ୍ଷମା ମାଗିଲେ, "ସରି... ରଙ୍ଗ୍ ନମ୍ବର !" ଇଂରାଜୀରେ ଏହି 'ସରି' ଶବ୍ଦଟା ନଥିଲେ, ଆମ୍ଭମାନଙ୍କର ଅଶ୍ୱସ୍ତି କେତେ ନବଡ଼ନ୍ତା ସତେ ! ଅବଶେଷରେ ବହୁ ଚେଷ୍ଟାପରେ ଆପଣ ଆପଣଙ୍କର ବନ୍ଧୁଙ୍କୁ ଟେଲିଫୋନ୍‌ରେ ପାଇବା ବେଳକୁ, ପୂର୍ବର ସେ ଆବେଗ କୁଆଡ଼େ ଗଲାଣି। ଅଥବା ଆପଣ କୌଣସି ଜରୁରୀ କଥାରେ ଟେଲିଫୋନ୍ ଉଠାଇବା ବେଳକୁ, 'ଡାଏଲ୍ ଟୋନ୍' ନାହିଁ ଦୀର୍ଘ ସମୟ ଧରି ! ଆପଣ ବୋକାଙ୍କ ପରି ଗୋଟାଏ ମୃତ ଟେଲିଫୋନ୍‌କୁ କାନ ପାଖରେ ଧରି ହାତରେ ଝୁଲାଇ ରଖିଲେ, ଗୋଟାଏ ସରରିଆଲିଷ୍ଟ ଭଙ୍ଗୀରେ ! ଏ ସବୁ ଉଦ୍ଭଟ ନାଟକର ଗୋଟିଏ ଗୋଟିଏ ଦୃଶ୍ୟ ନୁହେଁ ତ ଆଉ କ'ଣ ? ସାଂପ୍ରତିକ କାଳ ଉଦ୍ଭଟ ନାଟକର ମଞ୍ଚଭୂମି ! ଏଇ ହେଉଛି, ଆଜିର ମାନବିକ ସ୍ଥିତି। ଆମେ ସବୁ ଏଇ ଉଦ୍ଭଟ ନାଟକର ପାତ୍ରପାତ୍ରୀ।

ସେଦିନ ଟେଲିଫୋନ୍ ବିଭାଗର କର୍ମଚାରୀମାନଙ୍କର ଏକ ସାଂସ୍କୃତିକ ଉତ୍ସବରେ ମୁଁ ଯୋଗ ଦେଇଥିଲି। ମୋତେ ସେଠାରେ କିଛି ଭାଷଣ ଦେବାପାଇଁ, ଅନୁରୋଧ କରାଯିବାରୁ, ମୁଁ ଭାଷଣ ପ୍ରସଙ୍ଗରେ କହିଲି, ଏହି କ୍ରସ୍‌ବାର-ଟେଲିଫୋନ୍ ଏକ୍‌ସଚେଞ୍ଜ୍ ଆମ୍ଭମାନଙ୍କ ଦୈନନ୍ଦିନ ଜୀବନକୁ କିପରି ଉଦ୍ଭଟ ନାଟକର ଗୋଟିଏ ଗୋଟିଏ ଦୃଶ୍ୟରେ ପରିଣତ କଲାଣି। ଟେଲିଫୋନ୍‌ର ଏହି ପ୍ରାତ୍ୟହିକ ମନୋରଞ୍ଜନ କାର୍ଯ୍ୟକ୍ରମ ପରେ,

ଆଉ ଅନ୍ୟ ମନୋରଞ୍ଜନ କାର୍ଯ୍ୟକ୍ରମର ପ୍ରୟୋଜନ ନଥିବା, ମୋ ଭାଷଣ ପ୍ରସଙ୍ଗରେ କହିଥିଲି। ସେଠାରେ ଟେଲିଫୋନ୍ ବିଭାଗର ଜଣେ ବଡ଼ କର୍ତ୍ତା ଉପସ୍ଥିତ ଥିଲେ। ସେ ତାଙ୍କ ଭାଷଣ ପ୍ରସଙ୍ଗରେ କ୍ରସବାର ଏକ୍‌ସଚେଞ୍ଜର ସପକ୍ଷତା କରି କହିଲେ, ଏ ସିଷ୍ଟମ୍‌ରେ ବହୁ ତ୍ରୁଟି ସତ୍ତ୍ୱେ ଅନେକ ଭଲ କଥା ବି ରହିଛି। କିନ୍ତୁ, ଅସୁବିଧା ହେଉଛି, ଏ ସିଷ୍ଟମ ଆମ ଲୋକଙ୍କ ପାଇଁ ଆଦୌ ଉଦ୍ଦିଷ୍ଟ ନୁହେଁ। ମୁଁ ବିସ୍ମିତ କଣ୍ଠରେ ପଚାରିଲି, କାହିଁକି ? କିପରି ? ସେ କହିଲେ, "ଏ ସିଷ୍ଟମରେ ବ୍ୟାବସାୟିକ ରୀତିରେ ଯେତେ କମ୍ କଥାବାର୍ତ୍ତା କରାଯାଏ, ସେତେ ଭଲ। ଉଦାହରଣ ସ୍ୱରୂପ ଆମର ଶହେଟା ଲାଇନ୍‌କୁ ସାତ ହଜାର କନେକ୍‌ସନ୍। ଗୋଟାଏ ଲାଇନ୍‌କୁ ଦୀର୍ଘ ସମୟ ଧରି ଏନ୍‌ଗେଜ୍‌ଡ଼ ରଖିଲେ, ଡାଏଲ୍‌ଟୋନ୍ ମିଳିବ କେଉଁଠୁ ? ମୁଁ ଯୁକ୍ତି କଲି ଅଫିସ୍ ଟାଇମ୍‌ରେ ଡାଏଲ୍‌ଟୋନ୍ ତ ଆଦୌ ମିଳେନାହିଁ। କିନ୍ତୁ ସକାଳବେଳା ଡାଏଲ୍‌ଟୋନ୍ ସଙ୍ଗେ ସଙ୍ଗେ ମିଳିଯାଏ କିପରି ? ସେ ଉତ୍ତରରେ କହିଲେ, 'ହାକିମ ଆଉ ବାବୁମାନେ ଅଫିସ୍‌କୁ ଚାଲିଯିବା ପରେ, ଗୃହିଣୀମାନେ ଟେଲିଫୋନ୍‌ରେ ରୋଷେଇ ଘରକଥା ଶାଢ଼ି ଏକ୍‌ଜିବିସନ୍‌ଠାରୁ ଆରମ୍ଭକରି, ସିନେମା ପର୍ଯ୍ୟନ୍ତ ନାନା ଗପ ଲଗାନ୍ତି। ଆଉ ଘରେ ସ୍କୁଲ୍ କଲେଜ ପଢ଼ୁଆ ଝିଅ ପୁଅ ଥିଲେ ତ କଥା ସରିଲା। କ୍ଲାସ୍‌ରେ ରୁଟିନ୍ କ'ଣ ଅଛି, ସାର୍ କ'ଣ ପଢ଼ାଇଲେ- ଠାରୁ ଆରମ୍ଭ କରି, ନିଜ ବନ୍ଧୁ ବାନ୍ଧବୀଙ୍କ ସଂପର୍କରେ ସେମାନଙ୍କର ଅଛିଣ୍ଡା କଥାବାର୍ତ୍ତା ସରେ ନାହିଁ। ଆଉ ଅବସରପ୍ରାପ୍ତ ସରକାରୀ କର୍ମଚାରୀ ଟେଲିଫୋନ୍ କରୁଥିଲେ ତ ସେ ଭାବନ୍ତି, ଯେପରି ରାସ୍ତାରେ ଯାଉଁଯାଉଁ ବନ୍ଧୁଙ୍କ ସହିତ ଅକସ୍ମାତ୍ ଦେଖାହୋଇଯିବାରୁ, ସେ ମନଖୋଲି କଥାବାର୍ତ୍ତା ହେଉଛନ୍ତି। ସେକେଣ୍ଡ ସନ୍‌ଟା ପାଇଁ ସେ କିପରି ଚିନ୍ତିତ ! ଝିଅ ପାଇଁ କୌଣସି ଯୋଗ୍ୟ ବରପାତ୍ର ନଜରରେ ଅଛନ୍ତି କି ନାହିଁଠାରୁ ଆରମ୍ଭ କରି ନାନାକଥା ପଚାରି ବୁଝନ୍ତି। କିନ୍ତୁ ଇଏ କ୍ରସବାର ସିଷ୍ଟମରେ ସଂକ୍ଷେପରେ ପଦେ ପଦେ କଥାରୁ, ଆଉ ବେଶି ଚଳେ ନାହିଁ। "ସେଥିପାଇଁ ଆମେ ଟେଲିଫୋନ୍ ଡିରେକ୍ଟରିର ପୃଷ୍ଠାମାନଙ୍କରେ ଶୀର୍ଷରେ ଛପାଇ ଦେଇଛୁ, 'ବି ବ୍ରିଫ୍' ଅର୍ଥାତ୍ ସଂକ୍ଷେପରେ !"

କିନ୍ତୁ ଆମ ପାଣି ପବନରେ ଏଇ 'ସଂକ୍ଷେପ'ରେ କଥାଟି ଆଦୌ ଚଳେ ନାହିଁ। ଆମ ଲେଖାପରି କଥା ବି ବିରିହାଫେଣ ? ବୋଧହୁଏ ଯେଉଁମାନେ ପାନ ଖାଆନ୍ତି, ସେମାନେ ଯେପରି ଧୀରେ ସୁସ୍ଥେ, ଦୀର୍ଘ ସମୟ ପାନ ଚୋବେଇ ଆରାମ ପାଆନ୍ତି, ସେହିପରି ପାନ ଚୋବେଇ ଚୋବେଇ ଦୀର୍ଘ ସମୟ କଥା କହିବାରେ ମଧ୍ୟ ସେମାନେ ଆନନ୍ଦ ପାଇଥାଆନ୍ତି। ଟେଲିଫୋନ୍ ଯନ୍ତଟି ମନୁଷ୍ୟ ମନୁଷ୍ୟ ମଧ୍ୟରେ ପ୍ରତ୍ୟକ୍ଷ ସଂପର୍କକୁ ବ୍ୟାବସାୟିକ ସ୍ୱଳ୍ପୋକ୍ତି ମଧ୍ୟରେ ହଜାଇ ଦେଇପାରିଥାଏ। କିନ୍ତୁ ଆମେ ତାହାର ପରିସୀମା ମାନିବାପାଇଁ ପ୍ରସ୍ତୁତ ନୋହୁଁ। ଟେଲିଫୋନ୍ ଲାଇନ୍, ଆମ ଦୃଷ୍ଟିରେ ରାସ୍ତା ବା ଫୁଟ୍‌ପାଥ୍,

ଯେଉଁଠାରେ ଅକସ୍ମାତ୍ ଦେଖାହୋଇଯାଇଛି, ବନ୍ଧୁଙ୍କ ସହିତ ! କଥାବାର୍ତ୍ତା ଲମ୍ବି ଲମ୍ବି ଚାଲିଛି। ଏଣେ, ଅନ୍ୟର ଟେଲିଫୋନ୍‌ରେ ଡାଏଲ୍‌ଟୋନ୍ ନାହିଁ। ଆମ ଟେଲିଫୋନ୍ ଡେଡ୍। ସେଥିପାଇଁ ଆଜିର ସ୍ଲୋଗାନ୍ ହେବା ଉଚିତ।

"ଟେଲିଫୋନ୍ ଇଜ୍ ଡେଡ୍... ଲଙ୍ଗ୍ ଲିଭ୍ ଟେଲିଫୋନ୍।"

୧୨/୦୬/୮୬

# ବର୍ଷାମଙ୍ଗଳ

ଭାରତୀୟ କାବ୍ୟସାହିତ୍ୟରେ ବସନ୍ତ ପରେ ଯେଉଁ ଋତୁଟି ବେଶି ପ୍ରକୀର୍ତ୍ତିତ, ତାହା ହେଉଛି ବର୍ଷା। ଏ ଦୁଇଟିଯାକ ଋତୁର ସଂପର୍କ ରହିଛି ଆଦିମ ପ୍ରଜନନ-ତତ୍ତ୍ୱ (ଫର୍ଟିଲିଟି କଲ୍‌ଟ) ସହିତ। ବସନ୍ତଋତୁ କାମୋଦ୍ଦୀପକ ବୋଲି କାବ୍ୟମାନଙ୍କରେ ବର୍ଣ୍ଣନା କରାଯାଇଛି। ସେହିପରି ବର୍ଷାଋତୁ ମଧ୍ୟ ପ୍ରଜନନର ଋତୁ। ଏହି ଋତୁରେ ବସୁନ୍ଧରା ଶସ୍ୟଗର୍ଭା ହୁଏ। ମୋର ବିଚାରରେ, ମନୁଷ୍ୟର ସବୁ ସୂକ୍ଷ୍ମ କଳା ଓ କାବ୍ୟ ଏପରିକି ଧର୍ମାଚାରର ନେପଥ୍ୟରେ ଏହି ପ୍ରଜନନ ପ୍ରବୃତ୍ତି ରହିଥିବାରୁ ଭାରତୀୟ କାବ୍ୟ-ସାହିତ୍ୟରେ ସ୍ୱାଭାବିକ ଭାବରେ ବର୍ଷାଋତୁ ବହୁକୀର୍ତ୍ତିତ।

ବର୍ଷା ଆଜି କିନ୍ତୁ ମେଘଢଙ୍କା ବିଷଣ୍ଣ ଆକାଶରୁ ଝରୁଛି, କେଉଁ ଦୁଃଖିନୀର ଆଖିରୁ ଅସରା ଲୁହଧାର ପରି। ବର୍ଷାର ବାରିଧାରାରେ ଆଜି ବିଷାଦ ଓ କାରୁଣ୍ୟ। କିନ୍ତୁ ନିଦାଘ ଶେଷରେ ମୁଁ ଦେଖିଛି, ଏହି ଋତୁର ଆରମ୍ଭରେ ବର୍ଷାର ପ୍ରଥମ ତାଣ୍ଡବ-ବର୍ଷା ସେଦିନ କ୍ରୁଦ୍ଧ ନଟରାଜ ପରି ପିଙ୍ଗଳ ଜଟାଜୁଟ ଲମ୍ବାଇ, ମେଘର ଗୁରୁଗୁରୁ ଗର୍ଜନରେ ଡମ୍ବରୁ ବଜାଇ ଓହ୍ଲାଇ ଆସିଥିଲା ଆମର ଏହି ସହର ଉପରକୁ। ସିଏ ଯେପରି ଥିଲା ସୃଷ୍ଟିର ତାଳଲୟହୀନ ଆଦିମ ନୃତ୍ୟ। ଓଦାମାଟିର ବାସନାରେ ପୁଲକିତ ହୋଇଉଠିଥିଲା ଆମର ବର୍ଷା ତୃଷିତ ଅନ୍ତଃସ୍ଥଳ। ଜଳକଣାଭିଜା ଦମକା ଦମକା ଉଉରା ପବନର ଆଘାତରେ ଛିଡ଼ି ପଡ଼ିଥିଲା ଆମର ସବୁ ଛୋଟ ଛୋଟ ସଂକୀର୍ଣ୍ଣ ଝରକାର ଅନ୍ଧପୁଟୁଳି ପରି ପର୍ଦ୍ଦାସବୁ। ବର୍ଷା ଯେପରି କହୁଥିଲା, ତୁମର ଅନ୍ତରର ସଂକୀର୍ଣ୍ଣ ବାତାୟନ ଥରକପାଇଁ ଖୋଲିଦେଖ, ଆକାଶରେ ମୋର ନଟରାଜ ନୃତ୍ୟ। ଭୁଲିଯାଅ ତୁମର ସୀମିତ ସଂକୀର୍ଣ୍ଣ ଜୀବନର ଦିନ, ବାର ଓ ତାରିଖ। ତୁମର ବହିସବୁ ବର୍ଷା ଛାଟରେ ଭିଜିଯାଉ, କ୍ଷତି ନାହିଁ। ସେସବୁ ସୀମିତ ଚିନ୍ତାର ବାହାରେ, ମୁଁ ଅସୀମ, ମୁଁ ଅନନ୍ତ, ମୁଁ ଅତୃପ୍ତ ! ବର୍ଷାଋତୁର ଏହି ପ୍ରଥମ ବର୍ଷଣର ତାଣ୍ଡବ ଦେଖିବାପାଇଁ ମୁଁ ବହୁବର୍ଷ ଅପେକ୍ଷା କରି ରହିଥାଏ। ଏ ବର୍ଷ ମୋର ଅତି ପ୍ରିୟ,

ଅତି ଆପଣାର, ଯଦ୍ୟପି ଏହା ସହିତ କେଉଁଠି ରହିଛି, ମୋର ଅନ୍ତରର ଗୋପନ ଯୋଗସୂତ୍ର, ମୁଁ ଏ ପର୍ଯ୍ୟନ୍ତ ତାହାର ରହସ୍ୟ ଖୋଜିପାଇଲି ନାହିଁ।

ଆଶ୍ଚର୍ଯ୍ୟ ! ଯେଉଁ କୋକିଳମାନଙ୍କର କାମବିହ୍ୱଳ ସଙ୍ଗୀତରେ ଆମର ନିଦାଘର ଦିନସବୁ ଆଉରି ଉତ୍ତପ୍ତ ହୋଇ ଉଠିଥିଲା, ସେମାନେ ହଠାତ୍ ନିରବ ହୋଇଗଲେଣି ! ମୁଁ ଏଥର ଗୋଟିଏ ଅଶାନ୍ତ କୋକିଳର ଶେଷ କୁହୁ ଶୁଣିଛି, ଗୋଟିଏ ବର୍ଷଣମୁଖର ଗୋଧୂଳିରେ କେଉଁ ଦୂର ବୃକ୍ଷ ଶାଖାରେ ! କୋକିଳମାନେ ଏବେ ନିରବ ! ଏଣିକି ବଳାକାମାନଙ୍କର ପାଳି ! କଳାଘୁମର ମେଘଢଙ୍କା ଆକାଶରେ, ମିଥୁନବଦ୍ଧ ହୋଇ ସେମାନେ ଉଡ଼ିଯିବେ, ନୀଡ଼ର ସନ୍ଧାନରେ। କାବ୍ୟମାନଙ୍କରେ ତ ଲେଖାଅଛି, କଦମ୍ବ ଶିହରିତ ହେବ। ବର୍ଷାଭିଜା ପବନ କଦମ୍ବର ସୁଗନ୍ଧିରେ ଶିହରିତ ହୋଇ ଉଠିବ। କିନ୍ତୁ କଦମ୍ବ ଗଛସବୁ କେବେଠାରୁ ଚୁଲିରେ ଜାଳ ହୋଇ ସାରିଲେଣି ! ବର୍ଷା ସହିତ ସଂପର୍କ କେକା ଓ କେକିମାନଙ୍କର ! କିନ୍ତୁ ସେମାନେ ମଧ୍ୟ ଗଲେଣି, ମନୁଷ୍ୟର କ୍ଷୁଧାରେ ! ଭେକମାନେ ସୁଦ୍ଧା ଆଜି ନୀରବ ! ହୁଏତ ସେମାନେ ବିଦେଶକୁ ରପ୍ତାନି ହୋଇଗଲେଣି, ଆମର ବୈଦେଶିକ ବିନିମୟ ମୁଦ୍ରାପାଣ୍ଠି ବଢ଼ାଇବାପାଇଁ।

ଆଜି କେବଳ ମୁଁ ଆଉ ନିଃସଙ୍ଗ ବିରାମହୀନ ବର୍ଷା ! ମୁଁ ତଥାପି ଉତ୍କର୍ଣ୍ଣ ହୋଇ ଅପେକ୍ଷା କରିଛି, ଉଜ୍ଜୟିନୀର ଅନ୍ଧକାର ପଥରେ ଶୁଣିବାପାଇଁ ଅଭିସାରିକାର ନୂପୁର !

*୦୭/୦୮/୮୬*

# ବସ୍ସା-ବାସ

ବ୍ରାହ୍ମଣ୍ୟାୟିତ ସଂସ୍କୃତ-ସଂସ୍କୃତିରେ, ବର୍ଷା ଯଦି ଶୃଙ୍ଗାରର ଋତୁ, ପାଲୀ ବୌଦ୍ଧ ସଂସ୍କୃତିରେ ଏହା ସନ୍ନ୍ୟାସ ଓ ପ୍ରବଜ୍ୟାର ଋତୁ ରୂପେ ବିଦିତ। ସଂସ୍କୃତ-ସଂସ୍କୃତିରେ ବର୍ଷା ସହିତ ଚେତନା ପ୍ରବାହରେ ଆସନ୍ତି- ଯକ୍ଷବଧୂ, ଶିହରିତ କଦମ୍ବ, କେକା, କେକୀ, ବଳାକା, ମେଘ-ମେଦୁର ଆକାଶ ତଳେ ଅଭିସାରିକାର ମୂର୍ଚ୍ଛିତ ନୂପୂର ଇତ୍ୟାଦି। କିନ୍ତୁ ପାଲି- ସଂସ୍କୃତିରେ ବର୍ଷା ସହିତ ଯୋଗାଯୋଗ। ଯାଯାବର ଶ୍ରମଣ, ଚୀବର, ଭିକ୍ଷାପାତ୍ର ଓ ପଲାଶ ଯଷ୍ଟି ପ୍ରଭୃତିର !

ବ୍ରାହ୍ମଣ୍ୟାୟିତ ସଂସ୍କୃତ-ସଂସ୍କୃତିରେ ଥିଲା, ଜୀବନ ପ୍ରମତ୍ତତା। ଅନ୍ନ, ଶତ୍ରୁଜୟ, ରାଜ୍ୟ ବିସ୍ତାର ଓ ଗୋଧନବୃଦ୍ଧିପାଇଁ ବେଦୋକ୍ତ ଦେବତାମାନଙ୍କ ଉଦ୍ଦେଶ୍ୟରେ ଯଜ୍ଞ ଓ ପ୍ରାର୍ଥନା। ଏହାକୁ ଆଶ୍ରୟ କରି ଗଢ଼ି ଉଠିଥିଲା, ଯଜ୍ଞ ପ୍ରଭୃତି ବୈଦିକ କର୍ମକାଣ୍ଡ। ଗୀତରେ ଏହି ବେଦବାଦୀମାନଙ୍କୁ ସେଥିପାଇଁ 'ଭୋଗୈଶ୍ୱର୍ଯ୍ୟପ୍ରସକ୍ତାନାଂ' ବୋଲି କୁହାଯାଇଛି। ଏମାନେ ଭୋଗ, ଐଶ୍ୱର୍ଯ୍ୟ ଓ ସ୍ୱର୍ଗ ପ୍ରଭୃତି କାମନା ବ୍ୟତୀତ ଅନ୍ୟ କିଛି ବୁଝନ୍ତି ନାହିଁ। ଏହି ସ୍ଥୂଳ ଭୌତିକତା ମଧ୍ୟରେ କିନ୍ତୁ ଆଧ୍ୟାତ୍ମିକ ସୂକ୍ଷ୍ମତା ନଥିଲା। ସେଥିପାଇଁ ଏହାର ପ୍ରତିକ୍ରିୟା ରୂପେ ଖ୍ରୀଷ୍ଟପୂର୍ବ ଷଷ୍ଠ ଶତାବ୍ଦୀ ବେଳକୁ ଆଜୀବକ, ଲୋକାୟିତ, ଜୈନ ନିର୍ଗ୍ରନ୍ଥ ଓ ବୌଦ୍ଧ ପ୍ରଭୃତି ବହୁ ଗୋଷ୍ଠୀ ଓ ସଂପ୍ରଦାୟ ଦେଖା ଦେଇଥିଲେ। ଗୌତମବୁଦ୍ଧଙ୍କ ବୌଦ୍ଧ ଶ୍ରମଣମାନେ ଥିଲେ, ଏହାର ଶେଷ ପର୍ଯ୍ୟାୟ। କାମନା, ବାସନା, ପରିହାର କରି, ସଂଯମଶୀଳ ଆଚରଣ ମଧ୍ୟରେ ଜୀବନ୍ମୁକ୍ତିପାଇଁ ଥିଲା, ଏମାନଙ୍କର ସାଧନା। ଏମାନେ ଥିଲେ ଯାଯାବର ! ଲୋକାଳୟରୁ ଲୋକାଳୟ, ଅରଣ୍ୟରୁ ଅରଣ୍ୟ, ମୁକ୍ତ ବନ୍ଧନହୀନ ଭାବରେ ବୁଲି ବୁଲି ଏମାନେ ସତ୍ୟର ଅନ୍ୱେଷଣ କରୁଥିଲେ ! ସେମାନେ ଖୋଜୁଥିଲେ ଜୀବନର ଏକ ନୂତନ ମୂଲ୍ୟବୋଧ। ସେଥିପାଇଁ ବୌଦ୍ଧ ଆଚାରରେ ଦୀକ୍ଷା ଗ୍ରହଣର ଅପର ନାମ ଥିଲା ପ୍ରବଜ୍ୟା ବା ପର୍ଯ୍ୟଟନ।

ଆଷାଢ଼ଠାରୁ କାର୍ତ୍ତିକ ପର୍ଯ୍ୟନ୍ତ, କୌଣସି ଶ୍ରାବକର କୁଟୀରରେ ତାହାର ଆତିଥ୍ୟରେ ରହି, ଏମାନେ ପ୍ରବଚନ ଦେଉଥିଲେ କିମ୍ବା ତ୍ରିପିଟକ ସୂତ୍ର ଓ ବିନୟ ପ୍ରଭୃତି ପାରାୟଣ କରୁଥିଲେ। ବୌଦ୍ଧ ଧର୍ମାଚାରରେ, ଏହାକୁ କୁହାଯାଇଛି "ବସ୍‌ସା-ବାସ"। ସଂସ୍କୃତରେ 'ବର୍ଷା-ବାସ'। ଏହି ବସ୍‌ସା-ବାସ ଭିତରୁ କ୍ରମେ ଜନ୍ମ ନେଇଥିଲା ବୌଦ୍ଧ ବିହାର। ପରବର୍ତ୍ତୀ କାଳରେ ଏହି ବୌଦ୍ଧାଚାର ହିନ୍ଦୁ ଧର୍ମାଚାର ଭିତରକୁ ଆସିଛି, 'ଚାତୁର୍ମାସ୍ୟା'ରୂପେ। ଚାତୁର୍ମାସ୍ୟାରେ 'ପୁରାଣ ବସିବା' ଏଇ ସେଦିନ ପର୍ଯ୍ୟନ୍ତ ଓଡ଼ିଶାର ଗ୍ରାମାଞ୍ଚଳରେ ଏକ ଉପଚାର ଥିଲା ! ଏହାର ମୂଳ କିନ୍ତୁ ରହିଛି, ବୌଦ୍ଧ 'ବସ୍‌ସା-ବାସ' ମଧ୍ୟରେ।

ଗୌତମ ବୁଦ୍ଧ ତାଙ୍କ ଜୀବଦ୍ଦଶାରେ ଚାଳିଶଗୋଟି 'ବସ୍‌ସା-ବାସ' ପାଳନ କରିଥିବା, 'ଅଙ୍ଗୁତ୍ତର ନିକାୟ'ରେ ବର୍ଣ୍ଣିତ ହୋଇଛି। ଏହି 'ବସ୍‌ସା-ବାସ'ମାନଙ୍କ ମଧ୍ୟରୁ, ଶ୍ରୀବସ୍ତୀର ଜେତବନ ବିହାର, ବୈଶାଳୀର ମହାବନ ବିହାର ଓ ରାଜଗୃହର ଗୃଧ୍ରକୂଟ ବିହାର ପ୍ରଭୃତି ବୌଦ୍ଧ ଇତିହାସରେ ବହୁ ପ୍ରସିଦ୍ଧ। ଜେତବନ ବିହାରରେ ଗୌତମବୁଦ୍ଧ 'ବସ୍‌ସା-ବାସ' ପାଳନ କରୁ ଥିବାବେଳେ ଶିଷ୍ୟମଣ୍ଡଳୀଙ୍କୁ ତାଙ୍କ ନିଜ ଜୀବନ ଓ ଧର୍ମ ସଂପର୍କରେ, ବହୁ ମହତ୍ତ୍ୱପୂର୍ଣ୍ଣ ପ୍ରବଚନ ଦେଇଥିଲେ ! ବୈଶାଳୀର ମହାବନ-ବିହାରରେ ବୁଦ୍ଧ, ପରିନିର୍ବାଣ ପୂର୍ବରୁ ଦେଇଥିଲେ, ତାଙ୍କର ଶେଷ ପ୍ରବଚନ।

ଆଜି କିନ୍ତୁ ପାଲି ସଂସ୍କୃତିର 'ବସ୍‌ସା-ବାସ' ଓ ଲୋକ ସଂସ୍କୃତିର ଚାତୁର୍ମାସ୍ୟା ଆମର ଆଧ୍ୟାତ୍ମିକ ଜୀବନରୁ ବିଦାୟ ନେଇଛି ! ଆଜି ଆଉ ସେଦିନର ପ୍ରବଜ୍ୟା ନାହିଁ। ସବୁ ପ୍ରବଜ୍ୟାର ଶେଷ ହୋଇଛି, ଗୋଟିଏ ଗୋଟିଏ ମଠ ବାନ୍ଧି।

ମୁଁ ମଧ୍ୟ ଗୋଟିଏ ମଠ ବାନ୍ଧିଛି ଏଠି।

ଶ୍ରାବଣର ଆକାଶରେ ଆଜି ଘନମେଘ ନାହିଁ। ଆଜି ନୀଳ, ନିର୍ମେଘ ଆକାଶରେ ଦଳ ଦଳ ଛିଣ୍ଡା ମେଘ ଭାସି ଚାଲୁଛନ୍ତି, ସେହି ପାଲି ଯୁଗର ବୌଦ୍ଧଶ୍ରମଣମାନଙ୍କ ପରି। ଖୋଲା ଝର୍କାବାଟେ, ମୁଁ ସେମାନଙ୍କ ଆଡ଼େ ଚାହିଁ ରହିଛି, ଶୂନ୍ୟ ଦୃଷ୍ଟିରେ। ଆଉ ଡାକୁଛି, "ଆସ ଶ୍ରମଣ, ଏଠି ବସ୍‌ସା-ବାସ ପାଳନ କର... ମୁଁ ତୁମକୁ ଅପେକ୍ଷା କରି ରହିଛି...। କଙ୍କରିଳ ମାଟି ଏଠି ତୁମର ସ୍ପର୍ଶପାଇଁ ଭାରି ତୃଷିତ।

୧୪/୦୮/୮୬

# ବିନାଶ୍ରୟେ ନ ବର୍ତ୍ତନ୍ତେ: ଏକ ଅର୍ଦ୍ଧସତ୍ୟ

ଇଂଲଣ୍ଡରେ ସେଇ ମଧ୍ୟଯୁଗରୁ ରାଜକବି ବା 'ପୋଏଟ୍ ଲରେଟ୍' ନିଯୁକ୍ତିର ବ୍ୟବସ୍ଥା ଥିଲେ ହେଁ, ଆମେରିକାରେ ଏ ପର୍ଯ୍ୟନ୍ତ କିନ୍ତୁ କୌଣସି ପୋଏଟ୍ ଲରେଟ୍ ନଥିଲେ। ଆମେରିକାନ୍ କଂଗ୍ରେସ୍ ଲାଇବ୍ରେରୀର କବିତା ପରାମର୍ଶଦାତା କେତେକାଂଶରେ ରାଷ୍ଟ୍ରକବି କାମ ଚଳାଉଥିଲେ। କିନ୍ତୁ ରାଷ୍ଟ୍ରପତି ରେଗାନ୍‌ଙ୍କୁ ଜଣେ ରାଷ୍ଟ୍ରକବି ନଥିବାରୁ, କିପରି ଲଙ୍ଗଳା ଲଙ୍ଗଳା ଲାଗିଲା। ସେଥିପାଇଁ ସେ ଏବେ ଆମେରିକାରେ ରାଷ୍ଟ୍ରକବି ନିଯୁକ୍ତିପାଇଁ ହୁକୁମ୍‌ନାମା ଜାରି କରିଛନ୍ତି। ଆମେରିକାର ରାଷ୍ଟ୍ରକବି ଏଣିକି ଇଂଲଣ୍ଡର ପୋଏଟ୍-ଲରେଟ୍‌ଙ୍କ ପରି ରାଷ୍ଟ୍ରପତିଙ୍କ ଅଭିଷେକ, ସ୍ୱାଧୀନତା ଦିବସ, ରାଷ୍ଟ୍ରପତିଙ୍କଦ୍ୱାରା ସ୍ଥାପିତ କୌଣସି କୀର୍ତ୍ତିର ଶିଳାନ୍ୟାସ ବା ସେହିପରି ଅନ୍ୟ 'କାବ୍ୟିକ' ଉପଲକ୍ଷ୍ୟମାନଙ୍କରେ ସ୍ୱରଚିତ ବରାଦୀ କବିତାମାନ ଆବୃତ୍ତି କରିବେ। ଏପରି କବିତାମାନଙ୍କ ଆବୃତ୍ତି ଶୁଣି କବରରେ ଅନ୍ତିମ ବିଶ୍ରାମ ନେଇଥିବା ୱାଲଟ୍ ହୁଇଟ୍‌ମ୍ୟାନ୍ ବା ରବଟ୍ ଫ୍ରଷ୍ଟଙ୍କ ପରି ପ୍ରସିଦ୍ଧ ଆମେରିକାନ୍ କବିମାନଙ୍କର ନିଶ୍ଚୟ ଶାନ୍ତିଭଙ୍ଗ ହେବ। ମାତ୍ର ଆମେରିକାନ୍ ରାଷ୍ଟ୍ରପତିମାନଙ୍କ ପକ୍ଷରେ ତାହା ଯେ ଚତୁର୍ବର୍ଗଦାୟକ ହେବ, ସେଥିରେ ସନ୍ଦେହ ନାହିଁ।

ବହୁ ଅନୁସନ୍ଧାନ ପରେ ଜାଣିଲି, ଟେଡ୍ ହ୍ୟୁସ୍ ହେଉଛନ୍ତି ଏବେ ଇଂଲଣ୍ଡର ପୋଏଟ୍ ଲରେଟ୍। ଏ ମହାକବିଙ୍କର କବିତାର ଗୋଟିଏ ନମୁନା ଏବେ ମୋ ଦୃଷ୍ଟିକୁ ଆସିଛି। କାବ୍ୟ ରସିକ ପାଠକମାନଙ୍କର ଅବଗତିପାଇଁ ଏଠାରେ ସେହି ଅପୂର୍ବ ପୋଏଟ୍-ଲରେଟୀ କବିତାର ଗୋଟିଏ ପଙ୍‌କ୍ତି ଉଦ୍ଧାର କରିବାର ଲୋଭ ମୁଁ ସମ୍ବରଣ କରିପାରୁନାହିଁ।

"Nothing can stop
From one end the moo
From other the flop
flop
flop
Flippety-flop"

(ଏହାର ଟୀକା ବା ଭାଷ୍ୟପାଇଁ ମୁଁ ଆମର ପ୍ରବୀଣ ଇଂରାଜୀ ଅଧ୍ୟାପକମାନଙ୍କୁ ଅନୁରୋଧ କରୁଛି।)

ତେବେ ଇଂଲଣ୍ଡର ଏହିପରି ମହାକବି, ପୋଏଟ୍‌-ଲରେଟ୍‌ମାନଙ୍କପାଇଁ ଆର୍ଥିକ ବ୍ୟବସ୍ଥା ଅତି ସାମାନ୍ୟ। ବର୍ଷକୁ ମାତ୍ର ସତୁରୀ ପାଉଣ୍ଡ ବେତନ ଓ ତା' ଉପରେ ସତେଇଶ ପାଉଣ୍ଡ୍‌, ନିଶାପାଣି ଖର୍ଚ୍ଚପାଇଁ। ଏତିକିରେ 'ଫ୍ଲିପେଟୀ-ଫ୍ଲପ୍‌' କବିତା ଛଡ଼ା, ଇଂଲଣ୍ଡର ରାଣୀ ବା ରାଜା ଆଉ କ'ର ଆଶା କରିପାରନ୍ତି ? ଆଶା କରିବା ସର୍ବାଦୌ ଅନ୍ୟାୟ ହେବ।

ଏହା ତୁଳନାରେ କିନ୍ତୁ ଆମେରିକାନ୍‌ ପୋଏଟ୍‌-ଲରେଟ୍‌ଙ୍କପାଇଁ, ରାଷ୍ଟ୍ରପତି ରେଗାନ୍‌ ଖଞ୍ଜି ଦେଇଛନ୍ତି, ଇଲାହୀ ବ୍ୟବସ୍ଥା... ବର୍ଷକୁ ଭାଡିଆ ୧୦ ହଜାର ଡଲାର ଆଉ ସରକାରୀ କବିତା ପରାମର୍ଶଦାତା ରୂପେ ଆଉରି ୩୫ ହଜାର ଡଲାର ! ମନ୍ଦ ନୁହେଁ।

କିନ୍ତୁ, ଦିଗ୍‌ବିଜୟୀ ସମ୍ରାଟ, ରାଜା ଓ ରାଷ୍ଟ୍ରପତିମାନଙ୍କର ବିଚରା କବିପାଇଁ ଏପରି ଅନ୍ଧମୋହର କାରଣ ମୁଁ ତଥାପି ବୁଝିପାରି ନାହିଁ। ଦିଗ୍‌ବିଜୟୀ ସମ୍ରାଟ କନିଷ୍କ, ମଗଧକୁ ଯୁଦ୍ଧରେ ପରାସ୍ତ କରିବା ପରେ ମଗଧ ରାଜାଙ୍କଠାରୁ ଅସମ୍ଭବ ପରିମାଣରେ କ୍ଷତି ପୂରଣ ଦାବି କରିଥିଲେ। ମାତ୍ର ମଗଧ ରାଜାଙ୍କ ପକ୍ଷରେ, ସେତେ ପରିମାଣରେ କ୍ଷତିପୂରଣ ଦେଇପାରିବା ସମ୍ଭବ ହେଲାନାହିଁ। କନିଷ୍କ ତାହା ପରିବର୍ତ୍ତରେ ମଗଧ ରାଜାଙ୍କଠାରୁ ଚାହିଁଥିଲେ, ତାଙ୍କର ସଭାକବି ଅଶ୍ୱଘୋଷ ଓ ମଗଧରେ ସଂରକ୍ଷିତ ଥିବା ଗୌତମ ବୁଦ୍ଧଙ୍କ ଭିକ୍ଷାପାତ୍ର। ଦିଗ୍‌ବିଜୟୀ କନିଷ୍କ ହୁଏତ ଚାହିଁଥିଲେ, କବି ଅଶ୍ୱଘୋଷଙ୍କ ଅକ୍ଷରମାଳିନୀ କାବ୍ୟକୀର୍ତ୍ତିରେ ଅମର ହୋଇ ରହିବେ। ମାତ୍ର କବି ଅଶ୍ୱଘୋଷ ପ୍ରସିଦ୍ଧ 'ବୁଦ୍ଧଚରିତ' କାବ୍ୟ ଲେଖିଥିଲେ ସିନା, କିନ୍ତୁ କନିଷ୍କଙ୍କ ପ୍ରଶସ୍ତି ନୁହେଁ। ତଥାପି କବି ଅଶ୍ୱଘୋଷଙ୍କ ଯୋଗୁଁ ଦିଗ୍‌ବିଜୟୀ କନିଷ୍କ ଆଜି ସୁଦ୍ଧା ଲୋକସ୍ମୃତିରେ ଜୀବିତ। ସେହିପରି ଦିଗ୍‌ବିଜୟୀ ଆଲେକ୍‌ଜାଣ୍ଡାର ଦିଗ୍‌ବିଜୟ ପଥରେ ଗ୍ରୀକ୍‌ ସିଟିଷ୍ଟେଟ୍‌ ଏଥେନ୍‌ସକୁ ଧ୍ୱଂସସ୍ତୂପରେ ପରିଣତ କରିଦେଲେ ସିନା, ଏଥେନ୍‌ସ ସହରର କବି ପିଣ୍ଡାରଙ୍କର ଘରଟିକୁ କିନ୍ତୁ ଅକ୍ଷତ ଛାଡ଼ି ଦେଇଥିଲେ। ଇଏ କ'ଣ କବି ପିଣ୍ଡାରଙ୍କପାଇଁ ସମ୍ରାଟ ଆଲେକ୍‌ଜାଣ୍ଡାରଙ୍କ ଶ୍ରଦ୍ଧା ଓ ସମ୍ମାନବୋଧ ନା ଅନନ୍ତକାଳରେ କବି ପିଣ୍ଡାରଙ୍କ ଲେଖନୀରେ ବଞ୍ଚିରହିବାର ଆଶା ? ଇତିହାସରୁ ଏହିପରି ବହୁ ଉଦାହରଣ ଖୋଜିଲେ ମିଳିବ।

ସମ୍ରାଟ ଓ ଦିଗ୍‌ବିଜୟୀମାନଙ୍କଠାରୁ ପ୍ରେସିଡେଣ୍ଟମାନଙ୍କ ପର୍ଯ୍ୟନ୍ତ ଭାବିକାଳରେ ପ୍ରତ୍ୟେକ ନିଜ ନିଜର ଅମରତ୍ୱ ସଂପର୍କରେ ଭାରି ସନ୍ଦିହାନ। ସେଥିପାଇଁ କବିମାନଙ୍କୁ ଖୋଜନ୍ତି, ନିଜର ଅକ୍ଷରମାଳିନୀ କୀର୍ତ୍ତିସ୍ତମ୍ଭପାଇଁ। ଅପରପକ୍ଷରେ, କବିମାନେ ଉପସ୍ଥିତ ବର୍ତ୍ତମାନ କାଳରେ ବଞ୍ଚିରହିବାପାଇଁ ଏପରି ଅସହାୟ ମନେ କରନ୍ତି ଯେ ସେମାନେ

ରାଜା ବା ପ୍ରେସିଡେଣ୍ଟମାନଙ୍କର ଅନୁଗ୍ରହପାଇଁ, କ୍ୟୁ ଲଗାନ୍ତି କେବଳ ବଞ୍ଚି ରହିବାର ତାଗିଦାରେ। ଜଣକର ପ୍ରୟୋଜନ ଭାବିକାଳରେ ବଞ୍ଚିବା, ଅନ୍ୟର ପ୍ରୟୋଜନ ଏଇ ବର୍ତ୍ତମାନ କାଳରେ ଆତ୍ମରକ୍ଷା କରିବା।

'ବିନାଶ୍ରୟେ ନ ବର୍ତ୍ତନ୍ତେ କବିତା, ବନିତା, ଲତା' ବୋଲି ଯାହା କୁହାଯାଇ ଆସୁଅଛି ତାହା ତେଣୁ ଅର୍ଦ୍ଧସତ୍ୟ ! ରାଜା ଓ ପ୍ରେସିଡେଣ୍ଟମାନେ ମଧ୍ୟ କବିମାନଙ୍କର ଲେଖନୀ ବିନା, ବଞ୍ଚିପାରିବେ ନାହିଁ।

ଏ ସଂପର୍କ ତେଣୁ ପାରସ୍ପରିକ।

୨୧/୦୮/୮୬

# ଯତ୍ର ଯୋଗେଶ୍ୱରଃ କୃଷ୍ଣୋ

ଭାରତୀୟ ସାହିତ୍ୟରେ, ଶ୍ରୀକୃଷ୍ଣଙ୍କ ଚରିତ୍ର ଯେପରି କାବ୍ୟୈଶ୍ୱର୍ଯ୍ୟମୟ ଓ ବର୍ଣ୍ଣାଢ଼୍ୟ, ଆଧ୍ୟାତ୍ମିକ ଦର୍ଶନରେ ସେହିପରି ରହସ୍ୟମୟ ଓ ଅଚିନ୍ତ୍ୟନୀୟ। ସେ ସଗୁଣ ପୁଣି ନିର୍ଗୁଣ, "ସର୍ବେନ୍ଦ୍ରିୟ ଗୁଣାଭାସଂ ସର୍ବେନ୍ଦ୍ରିୟ ବିବର୍ଜ୍ଜିତଂ !"

ସେ ଗୋପାଳକ ଗୋପକୃଷ୍ଣ, ପୁଣି କଂସାରି ମଧୁସୂଦନ। ସେ ଇନ୍ଦ୍ରଦ୍ରୋହୀ, ବେଦ-ବିରୋଧୀ କୃଷ୍ଣ, ପୁଣି ସନାତନ ଧର୍ମର ପ୍ରବକ୍ତା ! ସେ ବଂଶୀଧାରୀ, ପୁଣି ଚକ୍ରଧାରୀ ! ସେ ଅହିଂସାର ପ୍ରବର୍ତ୍ତକ, ପୁଣି କୁରୁଯୁଦ୍ଧର ସୂତ୍ରଧର, ପାଞ୍ଚସାରଥି ! ସେ ଇନ୍ଦ୍ରିୟାନୁଗ ପ୍ରେମମୂର୍ତ୍ତି। ପୁଣି ଇନ୍ଦ୍ରିୟ ସଂଯମର ଜ୍ଞାନଯୋଗୀ।

ଶ୍ରୀକୃଷ୍ଣ ଏକ ସମନ୍ୱିତ ବ୍ୟକ୍ତିତ୍ୱ। ଭଗ୍ନାଂଶରେ ତାଙ୍କର ପରିଚୟ ଖଣ୍ଡିତ। ମାତ୍ର ପୂର୍ଣ୍ଣୋପଲବ୍‌ଧିରେ ସେ ଅଚିନ୍ତ୍ୟନୀୟ, ପୁରୁଷୋତ୍ତମ !

ଗୀତା ତାଙ୍କର ଶ୍ରେଷ୍ଠ ମାନବବାଦୀ ଉଚ୍ଚାରଣ। କୃଷ୍ଣବତାରଙ୍କ ମାନବ ସମାଜକୁ ଏହାହିଁ ମହାନ ବାର୍ତ୍ତା ! ଜ୍ଞାନ ଓ କର୍ମ, ଯୁଦ୍ଧ ଓ ଶାନ୍ତି, ବୈରାଗ୍ୟ ଓ କର୍ମଲିପ୍‌ସାର ଏପରି ସଂଶ୍ଳେଷଣ ବିଶ୍ୱର ଆଧ୍ୟାତ୍ମିକ ସାହିତ୍ୟ ଓ ଦର୍ଶନରେ ଅନନ୍ୟ। ମୋର ବିଶ୍ୱାସ, ଭାରତରେ ଜାତୀୟ ଜୀବନରେ ଆଜି ଯେଉଁପରି ଚରତ୍ର-ସଂକଟ ଓ ଗ୍ଲାନି ପ୍ରକାଶ ପାଉଛି ସେଥିରୁ ଉଜ୍ଜୀବନ, ଗୀତାର ମନନ, ଚିନ୍ତନ ଓ ଜୀବନଚର୍ଯ୍ୟାରେ ଆଚରଣ ମଧ୍ୟରେ କେବଳ ସମ୍ଭବ ହୋଇପାରେ।

ଭାରତରେ ସାମ୍ୟବାଦୀ ଚିନ୍ତାଧାରାର ଶ୍ରୀକୃଷ୍ଣ ହିଁ ପ୍ରଥମ ପ୍ରବକ୍ତା। ଗୀତାରେ ଶ୍ରୀକୃଷ୍ଣ କହିଚନ୍ତି, ପୃଥିବୀରେ ବା ସମାଜରେ ସବୁ ଉତ୍ପାଦନ ପ୍ରକ୍ରିୟା ମୂଳରେ ରହିଛି ଯଜ୍ଞ (ପ୍ରତୀକାର୍ଥରେ) ଅର୍ଥାତ୍ ସମାଜର ସାମୂହିକ କର୍ମ ପ୍ରଚେଷ୍ଟା। ମାତ୍ର ଯେଉଁମାନେ, ତାହାର ଉତ୍ପନ୍ନିକୁ ସମବଣ୍ଟନ ନକରି ସେହି ଯଜ୍ଞଲବ୍‌ଧ ଚରୁକୁ ସବୁ ଏକା ଭୋଗ କରନ୍ତି, ସେ ହେଉଛନ୍ତି, 'ସ୍ତେନ' ବା ଚୋର। ମୋର ମନେହୁଏ, ଶୋଷକକୁଳଙ୍କ ପ୍ରତି, ଏପରି କଠୋର କଥା, କୌଣସି ରାଜନୈତିକ ଦଳର ଇସ୍ତାହାରରେ ସୁଦ୍ଧା କୁହାଯାଇ ନାହିଁ।

ଆଜି 'ସେକୁଲାରିଜିମ୍' ବା ଧର୍ମନିରପେକ୍ଷତା ଏକ ଶୂନ୍ୟଗର୍ଭ ସ୍ଲୋଗାନ୍‌ରେ ପରିଣତ ହୋଇଛି। ମାତ୍ର, ଗୀତାରେ ହୋଇଛି ଏହାର ସର୍ବପ୍ରଥମ ବଳିଷ୍ଠ ଉଚ୍ଚାରଣ- "ଯେ ଯଥା ମାଂ ପ୍ରପଦ୍ୟନ୍ତେ, ତା' ସ୍ତଥୈବ ଭଜାମ୍ୟହଂ"। ଯିଏ ମୋତେ ଯେପରି ଭାବରେ ଆରାଧନା କରନ୍ତି, ମୁଁ ତାଙ୍କୁ ସେହିପରି ଭଜନା କରେ। ତେଣୁ ଗୀତାତତ୍ତ୍ୱ ଅନୁସାରେ ଶ୍ରୀରାମଜନ୍ମଭୂମି ଓ ବାବ୍‌ରୀ ମସ୍‌ଜିଦ୍ ମଧ୍ୟରେ କୌଣସି ବିଭେଦ ନାହିଁ ! ଦୁର୍ଭାଗ୍ୟବଶତଃ ଆମେ ଗୀତାପାଠକୁ ଏକ ଅର୍ଥହୀନ ଧର୍ମାଚାରରେ ପରିଣତ କରିଛୁ। ମାତ୍ର ଏହାର ଅର୍ଥ ଏ ପର୍ଯ୍ୟନ୍ତ ବୁଝିନାହୁଁ। ସେଥିପାଇଁ ମୁଁ କହିଛି, ଭାରତର ଉଜ୍ଜୀବନ କେବଳ ଗୀତା ମଧ୍ୟରେ ହିଁ ସମ୍ଭବ।

ଆଜି ଭୌତିକତାବାଦର ପ୍ରଚଣ୍ଡ ମଧ୍ୟାହ୍ନରେ ଆମେ ଆମର ନିତ୍ୟନୂତନ ମାରଣାସ୍ତ୍ର ଭଣ୍ଡାର, କାରିଗରୀ କୌଶଳ ଓ ମାଂସପେଶୀ ଉପରେ ପୂରାପୂରି ନିର୍ଭରଶୀଳ ! ବୁଦ୍ଧିର ଅର୍ଥ ଆଜି ଦୁର୍ବୁଦ୍ଧି। କିନ୍ତୁ ଏତିକି କେବଳ ଯଥେଷ୍ଟ ନୁହେଁ। ଗୀତାର ସର୍ବଶେଷ ଶ୍ଳୋକରେ ସଞ୍ଜୟ କହିଛନ୍ତି-

"ଯତ୍ର ଯୋଗେଶ୍ୱରଃ କୃଷ୍ଣୋ ଯତ୍ର ପାର୍ଥୋଃ ଧନୁର୍ଧରଃ
ତତ୍ର ଶ୍ରୀର୍ବିଜୟେ ଭୂତି ର୍ଧ୍ରୁବା ନୀତିର୍ମତି ର୍ମମ।"

"ଯେଉଁ ପକ୍ଷରେ ଯୋଗେଶ୍ୱର ଶ୍ରୀକୃଷ୍ଣ ଏବଂ ଗାଣ୍ଡୀବଧାରୀ ଅର୍ଜୁନ ରହିଛନ୍ତି, ସେହି ପକ୍ଷରେ ରାଜ୍ୟଶ୍ରୀ, ବିଜୟ, ଅଭ୍ୟୁଦୟ ଓ ଅବ୍ୟଭିଚାରିଣୀ ନୀତି ବିରାଜମାନ କରିଥାଏ। ଏହା ହେଉଛି ମୋର ଦୃଢ଼ ମତ।"

ବସ୍ତୁତଃ କେବଳ ମାଂସପେଶୀ ନୁହେଁ, ତା' ସହିତ ମସ୍ତିଷ୍କ ଓ ହୃଦୟର ମଧ୍ୟ ସମ୍ମିଶ୍ରଣ ରହିବା ଆବଶ୍ୟକ। କେବଳ କୌଶଳ ନୁହେଁ, ତା' ସହିତ ପ୍ରଜ୍ଞାର ମଧ୍ୟ ପ୍ରୟୋଜନ। କେବଳ ମହାନ୍ ଲକ୍ଷ୍ୟ ନୁହେଁ ! ତା ସହିତ ମହାନ୍ ପନ୍ଥା ମଧ୍ୟ ଆବଶ୍ୟକ।

ଆଜି କିନ୍ତୁ ସବୁଆଡ଼େ ଧନୁର୍ଦ୍ଧାରୀ ଅର୍ଜୁନ ! ମୁଁ ତାରି ଭିତରେ ପ୍ରତୀକ୍ଷା କରିଛି, ଯୋଗେଶ୍ୱର ଶ୍ରୀକୃଷ୍ଣଙ୍କ ପାଇଁ।

*୨୮/୦୮/୮୬*

# କବି-ଲଢ଼େଇ

ସାହିତ୍ୟ ଜଗତରେ ଦୁଇଜଣ କବି ବା ଲେଖକ କ୍ୱଚିତ୍ ଅନ୍ୟର ପ୍ରତିଭାକୁ ସ୍ୱୀକାର କରିଥାଆନ୍ତି। ସେମାନଙ୍କ ପକ୍ଷରେ ଏହା ଅହଂର ପ୍ରଶ୍ନ। ଏବେ କବି ଓ ଲେଖକମାନେ ମର୍ଯ୍ୟାଦା-ଭୀରୁ ହୋଇ ଉଠୁଥିବାରୁ, ଅନ୍ୟ କବି ଓ ଲେଖକମାନଙ୍କ ସଂପର୍କରେ ନିଜ ନିଜର ମନୋଭାବ ସର୍ବସାଧାରଣରେ ଠିକ୍ ପ୍ରକାଶ କରୁନାହାନ୍ତି। ନୋହିଲେ ନିଜ ନିଜର ଦରବାରରେ ସେମାନେ ପ୍ରତିସ୍ପର୍ଦ୍ଧୀ କବି ବା ଲେଖକଙ୍କ ପ୍ରତି କିଛିଟା ବିଦ୍ରୂପ ବା କିଛିଟା ତାଚ୍ଛଲ୍ୟ ନ ଫିଙ୍ଗିଲେ, ସେମାନଙ୍କର ଦରବାର ଜମେନାହିଁ। ମାତ୍ର ବିଗତ ଶତାବ୍ଦୀରେ କବି, ଲେଖକମାନେ ଆଜିର କବି, ଲେଖକମାନଙ୍କ ତୁଳନାରେ ବରଂ ବେଶି ସଚ୍ଚୋଟ ଥିଲେ। ପରସ୍ପର ପ୍ରତି ଗାଳିଗୁଲଜ ଚାଲୁଥିଲା, ସାହିତ୍ୟ ମାଧ୍ୟମରେ କବି ଟେନିସନ୍ ବ୍ରିଟେନ୍‌ର ପୋଏଟ୍-ଲରେଟ୍ ହେବା ପରେ କବି ବ୍ରାଉନିଙ୍ଗ୍ 'ଦି ଲଷ୍ଟ୍ ଲିଡ଼ର' ଶୀର୍ଷକ କବିତାରେ ଟେନିସନ୍‌ଙ୍କ ପ୍ରତି ବେଶ୍ କିଛି ବିଦ୍ରୂପ ଓ ତାଚ୍ଛଲ୍ୟ ହାଣିଥିଲେ। ସେହିପରି କାର୍ଲାଇଲ୍, ଚାର୍ଲସ ଲାମ୍ବଙ୍କ ପ୍ରତି ଗାଳିଗୁଲଜ କରି ଲେଖିଥିଲେ, "ଚାର୍ଲସ ଲାମ୍ବଟା ଗୋଟାଏ ବଦ୍ଧ ପାଗଳ। ନିର୍ବୋଧଟାଏ। ଗୋଟିଏ ନିର୍ଲଜ୍ଜ ମଦୁଆ। ସେ ଅଜଣା ଅଶୁଣା ଲୋକଙ୍କ ଘରେ ସୁଦ୍ଧା ବୁଲିବୁଲି ପହଞ୍ଚି ଜିନ୍ (ମଦ) ମାଗି ପିଏ ହାଏ ଲାମ୍ବ ! ହାଏ ଇଂଲଣ୍ଡ... ଯେଉଁଠି ଏ ପ୍ରକାର ନଷ୍ଟ ଭ୍ରୂଣ ଜିନିୟସ୍ ନାମରେ ପରିଚିତ ହୋଇପାରିଛି। "ଟୁ କଲ୍‌ଚରସ୍'ର ପ୍ରସିଦ୍ଧ ଲେଖକ ଲର୍ଡ଼ସ୍ ସ୍ନୋଙ୍କ ପ୍ରତି ଅଧ୍ୟାପକ ଏଫ୍.ଆର୍.ଲେଭିସ୍ କମ୍ ତାଚ୍ଛଲ୍ୟ ଫିଙ୍ଗି ନଥିଲେ ଏହା ସୁଦ୍ଧା ପୁସ୍ତକରେ ଲିପିବଦ୍ଧ ହୋଇଅଛି। ଜଣେ ସାଂପ୍ରତିକ ଆମେରିକାନ୍ ଔପନ୍ୟାସିକ ଗୋର୍ ଭିତରେ ଏହାକୁ 'ସାହିତ୍ୟିକ ଗୁଣ୍ଡାମୀ' ବୋଲି ଆଖ୍ୟା ଦେଇଛନ୍ତି।

ମୁଁ କିନ୍ତୁ ତାଙ୍କ ସହିତ ଏକମତ ହୋଇପାରୁ ନାହିଁ। ସାହିତ୍ୟରେ ଗାଳିଗୁଲଜ, ଊନବିଂଶ ଶତାବ୍ଦୀର ଶେଷପାଦରେ ଓଡ଼ିଆ ସାହିତ୍ୟରେ, ଏକ ସ୍ଥାୟୀଭାବ ବା ରସରେ ପରିଣତ ହୋଇଥିଲା ରାଧାନାଥ ଗୋଷ୍ଠୀ ଓ ଉପେନ୍ଦ୍ର ଭଞ୍ଜ ଗୋଷ୍ଠୀ ମଧ୍ୟରେ ଯେଉଁ ତୀବ୍ର

ବିବାଦ ଦେଖା ଦେଇଥିଲା, ଆଜିର ନିର୍ବାଚନ, ପ୍ରତିଦ୍ୱନ୍ଦ୍ୱିତା ବେଳେ; ପକ୍ଷପ୍ରତିପକ୍ଷଙ୍କ ମଧ୍ୟରେ ସୁଦ୍ଧା ବିବାଦଟା ସେତେଟା ତୀବ୍ର ମନେହୁଏ ନାହିଁ। ପରସ୍ପର ପ୍ରତି ଗାଳିଗୁଲଜ୍ଜ ବିରୂପ ସମାଲୋଚନାପାଇଁ 'ବିଜୁଳି' ଓ 'ଇନ୍ଦ୍ରଧନୁ' ପରି ଦୁଇ ଦୁଇଟା ପତ୍ରିକା ସୁଦ୍ଧା ପ୍ରକାଶ ପାଇଥିଲା। 'ଧୂର୍ତ୍ତ', ଫକୀରମୋହନ ସୁଦ୍ଧା ଏ ବିବାଦରେ ଜଡ଼ିତ ନଥିଲେ ହେଁ 'ଛଅ ମାଣ ଆଠଗୁଣ୍ଠ' ଉପନ୍ୟାସରେ ଗୋଟାଏ ଜାଗାରେ ଧରାପଡ଼ିଯାଇଛନ୍ତି- ଚମ୍ପାର ରୂପ ବର୍ଣ୍ଣନା ପ୍ରସଙ୍ଗରେ। କବିବର ରାଧାନାଥ ବେନାମୀରେ ଉପେନ୍ଦ୍ର ଭଞ୍ଜୀୟ ଗୋଷ୍ଠୀଙ୍କୁ ଯୁଦ୍ଧଂ ଦେହୀ ଆହ୍ୱାନ ଦେଇ, 'ସମ୍ବଲପୁର ହିତୈଷିଣୀ' ପତ୍ରିକାର, ୨/୮/୧୮୯୩ ତାରିଖ ସଂଖ୍ୟାରେ ଲେଖିଥିଲେ-

"ସାବଧାନ ସାବଧାନ ହେ କବିଭୂଷଣ
ଦିଅ ନାହିଁ ପଛଘୁଞ୍ଚା ଲାଙ୍ଗୁଳ ଲୁଚାଇ
ପଳାଏ ପ୍ରାଣ ବିକଳେ ଯେହ୍ନେ ଶ୍ୱାନ ଶିଶୁ
ମହାବଳୀ ମହାବଳ ଦେଖି ସମ୍ମୁଖରେ।
ବ୍ୟାଘ୍ରଚର୍ମାବୃତ ଛାର ଛଦ୍ମା ଦାସରକ
କି କରି ପାରେହେ କାହାପାଇଁ ଏଡ଼େ ଡର
ବାହ୍ୟ ଚାକଚକ୍ୟ ଦେଖି, ଲାଗୁ ବାଗ୍‌ଯୁଦ୍ଧ
ଯେହ୍ନେ ରାସ ଦଶାନନ, କୃଷ୍ଣ କଂସାସୁର"

କବିବର ରାଧାନାଥ ଏହି ପଦ୍ୟଟିକୁ ଅମିତ୍ରାକ୍ଷର ଛନ୍ଦରେ ଲେଖି କିନ୍ତୁ ହାତେହାତେ ଧରା ପଡ଼ିଗଲେ, କାରଣ ସେତେବେଳକୁ ତାଙ୍କ ଛଡ଼ା ପ୍ରାୟ ଅନ୍ୟ କେହି ଅମିତ୍ରାକ୍ଷର ଛନ୍ଦରେ ଲେଖିପାରୁ ନଥିଲେ।

ତେବେ ଉପେନ୍ଦ୍ର ଭଞ୍ଜ ଗୋଷ୍ଠୀ କବିବରଙ୍କର ଏ ଆସ୍ପର୍ଦ୍ଧାକୁ ଯେ ନୀରବରେ ହଜମ କରି ଯାଇଥିଲେ, ତାହା ନୁହେଁ। ଭଞ୍ଜ ଗୋଷ୍ଠୀର ସମର୍ଥକ 'ଉତ୍କଳ ଦୀପିକା'ର ୨୬/୮/୧୮୯୩ ତାରିଖ ସଂଖ୍ୟାରେ ଜଣେ କବି, ରାଧାନାଥ ଗୋଷ୍ଠୀର କବିମାନଙ୍କ ପ୍ରତି ବିଦ୍ରୂପ କରି ଲେଖିଥିଲେ।

"ଏ କାଳେ ଆଉ ନୋହେ ସମ୍ଭାଳି
ତ୍ରାହିକର ପ୍ରଭୁ ଶ୍ରୀ ବନମାଳୀ (ଘୋଷା)
ଯୋଗି ଚାଉଳିଆ ମହାକବି ହେଲେ
ଉପଇନ୍ଦ୍ର ଭଞ୍ଜ ଖାଇଲେ ଗାଳି
ଶ୍ରୀକରଣଠାରୁ ତନ୍ତୀ ତୁଳାଭିଣା
ପର୍ଯ୍ୟନ୍ତ ଧଇଲେ କଲମକାଳି ॥ ୧ ॥

ପଲ୍ଲବଗ୍ରାହୀଏ ପ୍ରବନ୍ଧ ଲେଖିଲେ
ସାରା ରାତିଦିନ ପାଡ଼ି ବୋବାଳି
ବିଗୁନ ଭୋଇର ହଳଗୀତ ଯେହ୍ନେ
ମୁଖେ ଧରୁଥିଲେ ଧୂଆଁ କାହାଳୀ ॥ ୨ ॥

ଏ ପଦ୍ୟଟି ମଧ୍ୟ ବେନାମୀରେ ପ୍ରକାଶ ପାଇଥିଲା। ମୋର ମନେହୁଏ, ବାଙ୍କୀର ପଣ୍ଡିତ ଗୋବିନ୍ଦ ରଥ ଏହି ପଦ୍ୟଟିର ପ୍ରଣେତା; କାରଣ ତାଙ୍କର ଶୈଳୀ ଓ ଅନ୍ତଃସ୍ୱର ଏଥିରେ ସୁସ୍ପଷ୍ଟ।

ଏ କଳହ-ପଦ୍ୟ କେବଳ ପରସ୍ପର ପ୍ରତି ଦାୟିକା ମାତ୍ରରେ ଶେଷ ହୋଇ ନଥିଲା। ଭକ୍ତକବି ମଧୁସୂଦନ ରାଓ ଉପେନ୍ଦ୍ର ଭଞ୍ଜ-ଗୋଷ୍ଠୀଙ୍କ ପ୍ରତି ବିଦ୍ରୂପ କରି 'ସାବାସ୍ ସାହିତ୍ୟ ଚର୍ଚ୍ଚା ସାବାସ ସାବାସ' ଶୀର୍ଷକ ଗୋଟିଏ ପଦ୍ୟ ଲେଖିଲେ। ଉପେନ୍ଦ୍ର ଭଞ୍ଜ-ଗୋଷ୍ଠୀ ତାହାର ଉତ୍ତରରେ କାଳିଗଳିରେ ଥିବା ଭକ୍ତକବିଙ୍କ ଚାଳଘରେ ନିଆଁ ଲଗେଇଦେଲେ। ଘରେ ନିଆଁ ଲଗେଇବାଟା ଅବଶ୍ୟ ଅତି ଅନୁଚିତ କଥା। କବି-ଲଢ଼େଇ ଏତେଦୂର ଯିବା ଉଚିତ ନୁହେଁ। କିନ୍ତୁ ମୋର ମନେହୁଏ ଆଜି ଓଡ଼ିଆ ସାହିତ୍ୟଜଗତ ଯେପରି ନିରୁତ୍ତପ୍ତ ଓ ନିସ୍ତରଙ୍ଗ, ସେଥିରେ କବି ଓ ଲେଖକମାନେ ପରସ୍ପର ପ୍ରତି ଗାଳି ଦିଆଦେଇ ହେଇ ନିଜ ନିଜ ଦରବାର ମଧ୍ୟରେ ସୀମିତ ନରଖି, ସୃଷ୍ଟି କର୍ମ ମାଧ୍ୟମରେ ତାହାକୁ ପତ୍ରପତ୍ରିକାରେ ପ୍ରକାଶ କଲେ, ଆମ ସାହିତ୍ୟିକ ପରିବେଶ ଟିକିଏ ଜମନ୍ତା !

୦୪/୦୯/୮୬

# ଜୟଦେବ ଗବେଷଣା ପୁନଶ୍ଚ

ଏବେ ବଙ୍ଗୀୟ ତଦ୍‌ବିଦ୍‌ମାନେ କ୍ରମେ 'ଗୀତଗୋବିନ୍ଦ' ପ୍ରଣେତା କବି ଜୟଦେବ, ଓଡ଼ିଶାର ଅଧିବାସୀ ଥିଲେ ବୋଲି ଅସ୍ୱୀକାର କରୁ ନଥିବା ବେଳେ, ଓଡ଼ିଶାର କୌଣସି କୌଣସି ଆଲୋଚକ କବି ଜୟଦେବ, ବଙ୍ଗଳା ବୀରଭୂମିର ଅଧିବାସୀ ଥିଲେ ବୋଲି ବାରମ୍ବାର ମତଦେବା କେବଳ ବିକୃତ ଗବେଷଣା ନୁହେଁ, ଏହା ବୋଧହୁଏ ମାନସିକ ବିକୃତି । ବସ୍ତୁତଃ ଓଡ଼ିଶାର ଇତିହାସ, ପରମ୍ପରା, ସାହିତ୍ୟ, ନୃତ୍ୟ, ସଙ୍ଗୀତ ଓ ଆଧ୍ୟାତ୍ମିକ ଜୀବନରେ 'ଗୀତ ଗୋବିନ୍ଦ' ଓ ସେହି ସୂତ୍ରରେ କବି ଜୟଦେବ ଯେପରି ସୁପ୍ରତିଷ୍ଠିତ, ବଙ୍ଗଳା ବା ମିଥିଳାରେ ଆଦୌ ସେପରି ନୁହନ୍ତି । ସୁଦୂର ଦ୍ୱାଦଶ ଶତାବ୍ଦୀ କାଳରେ, ଗଙ୍ଗରାଜା କବି ନରସିଂହ ଦେବ, ପୁରୀ ଶ୍ରୀମନ୍ଦିରରେ ପ୍ରତ୍ୟହ ଶ୍ରୀଜଗନ୍ନାଥଙ୍କ ବଡ଼ସିଂହାର ବେଶ ବେଳେ, ଭିତର ଗାୟଣୀମାନେ 'ଗୀତ ଗୋବିନ୍ଦ' ଗାନ କରିବାର ଯେଉଁ ବିଧି ପ୍ରବର୍ତ୍ତନ କରିଥିଲେ, ଆଜି ସୁଦ୍ଧା ଇତିହାସର ବହୁ ବିବର୍ତ୍ତନ ଓ ପରିବର୍ତ୍ତନ ମଧ୍ୟରେ ସୁଦ୍ଧା, ତାହା ସେହିପରି ଅନାହତ ଭାବରେ ଚଳି ଆସୁଅଛି । ଭାରତର ଅନ୍ୟ କୌଣସି ବିଷ୍ଣୁ ବା କୃଷ୍ଣ ମନ୍ଦିରରେ 'ଗୀତ ଗୋବିନ୍ଦ'ର ତେଣୁ ଯେ ଓଡ଼ିଆ ସାଧକ-କବିଙ୍କ ରଚନା, ଏହା ପ୍ରଥା ଓ ପରମ୍ପରା କ'ଣ ତାହାର ସବୁଠାରୁ ବଳି ଅକାଟ୍ୟ ପ୍ରମାଣ ନୁହେଁ ? ଓଡ଼ିଶାର ବୟନଶିଳ୍ପରେ ସୁଦ୍ଧା ରହିଛି, 'ଗୀତଗୋବିନ୍ଦ'ର ପ୍ରଭାବ । ଶ୍ରୀଜଗନ୍ନାଥଙ୍କର ପ୍ରିୟ ଦଶାବତାର ଖଣ୍ଡୁଆ, ଭାରତରେ ଅନ୍ୟ କେଉଁଠି କେହି ବୁଝିପାରନ୍ତି ନାହିଁ । କବି ଜୟଦେବ ଅତି ନିବିଡ଼ ଭାବରେ ଓଡ଼ିଶାର- ଏହାକୁ ଅସ୍ୱୀକାର କରିବା ବିତଣ୍ଡା ମାତ୍ର ।

ରୟଲ୍ ଏସିଆଟିକ୍ ସୋସାଇଟିର ପ୍ରତିଷ୍ଠାତା, ସାର୍ ଉଇଲିୟମ୍ ଜୋନ୍‌ସ ସର୍ବପ୍ରଥମେ 'ଗୀତ ଗୋବିନ୍ଦ'ର ଇଂରାଜୀ ଅନୁବାଦ ବିଗତ ଶତାବ୍ଦୀ ଆରମ୍ଭରେ ପ୍ରକାଶ କଲାବେଳେ, ଓଡ଼ିଶା ତଥାପି ଇଷ୍ଟଇଣ୍ଡିଆ କମ୍ପାନୀ କବଳକୁ ଆସି ନଥିଲା ! ସାର ଉଇଲିୟମ୍ କଲିକତାରେ ରହି ଓଡ଼ିଶାର ଇତିହାସ ଜାଣିବା ତ ଦୂରର କଥା, ଓଡ଼ିଶା ମାଟିର ଚେହେରା ସୁଦ୍ଧା ସେ ପର୍ଯ୍ୟନ୍ତ ଦେଖି ନଥିଲେ । ତଥାପି ସେ ଅନ୍ୟତ୍ର ବହୁ ଅନୁସନ୍ଧାନ ପରେ, କବି

ଜୟଦେବ 'କଳିଙ୍ଗର ଅଧିବାସୀ ହୋଇ ପାରନ୍ତି' ବୋଲି ମତବ୍ୟକ୍ତ କରିଥିଲେ। ତାଙ୍କ ପରେ ଏଡ୍‌ଉଇନ୍ ଆରନଲଡ୍ ପ୍ରମୁଖ, ପାଶ୍ଚାତ୍ୟର ଯେଉଁ ମନୀଷୀମାନେ 'ଗୀତ ଗୋବିନ୍ଦ'ର ଅନୁବାଦ କରିଛନ୍ତି, ଅଥବା ତାହାର ଚର୍ଚ୍ଚା କରିଛନ୍ତି, ସେମାନେ ଅବିଚାରିତ ଭାବରେ ନବୁଝି ନସୁଝି, ଜୟଦେବ ବଙ୍ଗଳାର ଅଧିବାସୀ ହୋଇ ପାରନ୍ତି ବୋଲି ଗୋଟାଏ ଅପରିଣତ ସିଦ୍ଧାନ୍ତ ଲଦି ଦେଇଛନ୍ତି ! ବଙ୍ଗୀୟ ଗବେଷକମାନେ, ପ୍ରଥମେ ପ୍ରଥମେ ସେହିମାନଙ୍କର ମତାମତ ଉପରେ ନିର୍ଭର କରି, ଜୟଦେବ ବଙ୍ଗଳାର ଲୋକ ବୋଲି ଦାବି କରୁଥିଲେ। ମିଥିଳାର ବିଦ୍ୱାନମାନେ ମଧ୍ୟ କବି ଜୟଦେବ ମିଥିଳାର ଅଧିବାସୀ ବୋଲି ଦାବି କରୁଥିଲେ। ସ୍ୱର୍ଗତ ଅଧ୍ୟାପକ ସୁନୀତି ଚାଟାର୍ଜୀ ସେହି ପୁରୁଣା ଅଭ୍ୟାସରେ, କବି ଜୟଦେବ ବଙ୍ଗଳାର ଲୋକ ବୋଲି କହିଥାଇପାରନ୍ତି। କିନ୍ତୁ ସୁନୀତିବାବୁ ଶିକ୍ଷାରେ, ଦୀକ୍ଷାରେ ଓ ବୃତ୍ତିରେ ଜଣେ ବିଶିଷ୍ଟ ଭାଷାତତ୍ତ୍ୱବିତ୍। ତାଙ୍କ ପକ୍ଷରେ 'ଗୀତ ଗୋବିନ୍ଦ' ସଂପର୍କରେ ଏପରି ସିଦ୍ଧାନ୍ତ ପ୍ରକାଶ କରିବା ତେଣୁ କଦାପି ପ୍ରମାଣସିଦ୍ଧ ହୋଇ ନପାରେ। ତଥାପି ବଙ୍ଗଳା ସାହିତ୍ୟ ଓ ସଂସ୍କୃତିର ଐତିହାସିକ ଡକ୍ଟର ସୁକୁମାର ସେନ୍ ଏ ସଂପର୍କରେ ସୁନୀତିବାବୁଙ୍କଠାରୁ ଭିନ୍ନ ମତ ପୋଷଣ କରନ୍ତି।

ଯଦି କବି ଜୟଦେବ ବଙ୍ଗଳାର ହୋଇଥା'ନ୍ତେ ତା'ହେଲେ ରାଗାନୁଗା ଭକ୍ତିଧର୍ମର ପ୍ରବର୍ତ୍ତକ, ଶ୍ରୀଚୈତନ୍ୟ ଓଡ଼ିଶାକୁ ଆସି ସର୍ବପ୍ରଥମେ ରାୟ ରାମାନନ୍ଦଙ୍କ କଣ୍ଠରେ 'ଗୀତ ଗୋବିନ୍ଦ'ର ଗାୟନ ଶୁଣି କଦାପି ମୁଗ୍ଧ ଅଭିଭୂତ ହୋଇ ଉଠି ନଥାଆନ୍ତେ। 'ଚୈତନ୍ୟ ଚରିତାମୃତ'ର ଲେଖକ, ରୂପ ଗୋସ୍ୱାମୀ ଲେଖିଛନ୍ତି ଯେ ବଙ୍ଗଳାରେ 'ଗୀତ ଗୋବିନ୍ଦ'ର ଗାୟନ କାହାକୁ ସେତେବେଳେ ଜଣା ନଥିଲା। ଶ୍ରୀଚୈତନ୍ୟଙ୍କ ଗୌଡ଼ୀୟ ପାର୍ଶଦ, ସ୍ୱରୂପ ଦାମୋଦର, ଓଡ଼ିଶାରେ ରାୟ ରାମାନନ୍ଦଙ୍କ ସଂପର୍କରେ ଆସି 'ଗୀତ ଗୋବିନ୍ଦ' ଗାନ କରିବା ଶିଖିଥିଲେ। ଯଦି 'ଗୀତ ଗୋବିନ୍ଦ', ରାଢ଼-ବଙ୍ଗଳାର କବି ଜୟଦେବଙ୍କଦ୍ୱାରା ରଚିତ ହୋଇଥିଲା, ତାହାହେଲେ ସହଜିଆ ବୈଷ୍ଣବ ଧର୍ମର ଏହି ଆଦିଶାସ୍ତ୍ରକୁ ଶ୍ରୀ ଚୈତନ୍ୟ ଓଡ଼ିଶାରେ ରାୟ ରାମାନନ୍ଦଙ୍କ କଣ୍ଠରେ ସର୍ବପ୍ରଥମେ ଆବିଷ୍କାର କରିଥାନ୍ତେ କିପରି ? କାହିଁକି ?

ଏସବୁ ସତ୍ତ୍ୱେ ଜୟଦେବ- ଗବେଷଣା କିପରି ଉଦ୍ଭଟ ଭାବରେ ଚାଲିଥିଲା, ଏଠାରେ ତାହାର ଗୋଟିଏ ଉଦାହରଣ ଦେଉଛି- ଭୁବନେଶ୍ୱର ଶ୍ରୀଲିଙ୍ଗରାଜଙ୍କ ମନ୍ଦିରରେ ଗୋଟିଏ ଶିଳାଲେଖ କିଛି କାଳ ତଳେ ଆବିଷ୍କୃତ ହୋଇଥିଲା। ସେଥିରେ ଲିପିବଦ୍ଧ ଅଛି, ଶ୍ରୀକୂର୍ମ-କ୍ଷେତ୍ରର ମେଡ଼ମଦେବୀନାମ୍ନୀ ଜଣେ ଭଦ୍ରମହିଳା, କୃତ୍ତିବାସ ଶିବ (ଲିଙ୍ଗରାଜ)ଙ୍କ ଉଦ୍ଦେଶ୍ୟରେ ଅଖଣ୍ଡ ଦୀପ ଦାନ କରିବାପାଇଁ, ଖଣ୍ଡେ ଜମି ଦାସପୁର ଗ୍ରାମର ଶ୍ରେଷ୍ଠୀଠାରୁ କ୍ରୟ କରିଥିଲେ। ସେତେବେଳେ ସେଠାରେ "ସାଧୁ ପ୍ରଧାନ ଜୟଦେବ ଉପସ୍ଥିତ ଥିଲେ"

ବୋଲି ଶିଳାଲେଖରେ ଉତ୍‌କୀର୍ଣ୍ଣ ରହିଛି। ଓଡ଼ିଶାର ଗବେଷକମାନେ କହିଲେ, "ଏ ସାଧୁ ପ୍ରଧାନ ଜୟଦେବ ହେଉଛନ୍ତି, ଆମ କବି ଜୟଦେବ।" ବଙ୍ଗୀୟ ଗବେଷକ, ଦୀନେଶ ଚନ୍ଦ୍ର ସରକାର 'ଏପିଗ୍ରାଫିକା ଇଣ୍ଡିକା'ରେ ପ୍ରବନ୍ଧ ଛପାଇଲେ, "ନାଁ ହେ, ଏ ସାଧୁ ପ୍ରଧାନ ଜୟଦେବ ହେଉଛନ୍ତି, କୌଣସି ଏକ ବଡ଼ ସାହୁକାର ବା ମହାଜନ !" ଜୟଦେବ ଶେଷକୁ ଥିଲେ ସାହୁକାର।

ଇଏ ହେଲା ଚଳତି ଗବେଷଣାର ରୀତି। ସେଥିପାଇଁ ଅନେକ ସମୟରେ ଏପରି ଗବେଷଣା ଗୋରୁ ଖୋଜିବାପରି ଏକ ବ୍ୟାପାର ବୋଲି ମୁଁ କହି ଆସୁଛି। ସତ୍ୟର ସନ୍ଧାନ ମିଳିଥାଏ, ଇଚ୍ଛାନୁସାରୀ ଚିନ୍ତାରେ ନୁହେଁ, ଅନାସକ୍ତ ଅନ୍ୱେଷଣ ଓ ବିଶ୍ଳେଷଣ ମଧ୍ୟରେ।

୧୧/୦୯/୮୬

# ଉପନ୍ୟାସ-ଏକବିଂଶ ଶତାବ୍ଦୀରେ !

ଔପନ୍ୟାସିକ ସିର୍‌ଭାଣ୍ଟିସ୍ ବା ସାର୍‌ଲଟ୍ ବ୍ରୋଣ୍ଟ୍ ହୁଅନ୍ତୁ ବା ହ୍ୟାରିଏଟ୍ ବୀଚର୍ ଷ୍ଟୋ ହୁଅନ୍ତୁ- ଇଂରାଜୀ ଉପନ୍ୟାସର ଇତିହାସରେ ଏମାନେ ମାତ୍ର ଖଣ୍ଡେ ଖଣ୍ଡେ ଉପନ୍ୟାସ ଲେଖି ଅକ୍ଷୟ ଯଶର ଅଧିକାରୀ ହୋଇପାରିଛନ୍ତି। ଆମ ଓଡ଼ିଆ ସାହିତ୍ୟରେ ମଧ୍ୟ ବୈଷ୍ଣବ ଚରଣ ଦାସ ମାତ୍ର ଖଣ୍ଡେ ଉପନ୍ୟାସ 'ମନେ ମନେ' ବା ଉପେନ୍ଦ୍ର କିଶୋର ଦାସ ଖଣ୍ଡେ ଉପନ୍ୟାସ 'ମଲାଜହ୍ନ' ଲେଖି ଓଡ଼ିଆ ଉପନ୍ୟାସର ଇତିହାସରେ ସୁପ୍ରତିଷ୍ଠିତ ହୋଇପାରିଛନ୍ତି। ଉପନ୍ୟାସ ସେଦିନ ଅବଶ୍ୟ ଥିଲା, କଳାତ୍ମକ, ତେଣୁ ଗୁଣାତ୍ମକ। ମାତ୍ର ଉପନ୍ୟାସ ଆଜି ସୌଦାଗରୀ ସଭ୍ୟତା ଓ ସଂସ୍କୃତିରେ ଏକ ପଣ୍ୟ ବା ଖାଉଟି ଦ୍ରବ୍ୟରେ ପରିଣତ ହେଲାଣି- ବିସ୍କୁଟ୍ ଅଥବା ଟୁଥ୍‌ପେଷ୍ଟ ପରି। ସେଥିପାଇଁ ପ୍ରକାଶକମାନେ ବ୍ୟାକୁଳ, କେତେ ଶୀଘ୍ର ସେମାନେ ନୂଆ ନୂଆ ଉପନ୍ୟାସ-ମାଲ୍ ବଜାରକୁ ଛାଡ଼ିପାରିବେ। ଆଉ ଔପନ୍ୟାସିକମାନେ ମଧ୍ୟ ବ୍ୟାକୁଳ, କେତେ ଶୀଘ୍ର ସେମାନେ ବଜାରକୁ ଏସବୁ ମାଲ୍ ତିଆରି କରି ଯୋଗାଇପାରିବେ। ଇଏ ସେଇ ସନାତନ 'ଡିମାଣ୍ଡ ଏଣ୍ଡ୍ ସପ୍ଲାଇ'ର କଥା।

ତେବେ କାନାଡ଼ାର ଲେଖକମାନେ ଏ କଥାଟାକୁ ଟିକିଏ ଅତିରଞ୍ଜିତ କରିଦେଇଛନ୍ତି। ୧୯୭୭ ମସିହାରେ କାନାଡ଼ାର ଆଠଜଣ ଔପନ୍ୟାସିକ ଥରେ ଗୋଟାଏ ପବ୍ ବା ମଦଖଟିରେ ଏକାଠି ହୋଇଥିଲେ। ସେହିପରି ମାଦକ ପରିବେଶରେ ଅନୁପ୍ରେରଣା ବୃଦ୍ଧିପାଇବା ସ୍ୱାଭାବିକ କଥା। ସେହି ଆଠଜଣ ଲେଖକଙ୍କର ମଧ୍ୟ ତାହାହିଁ ହୋଇଥିଲା। ଉପନ୍ୟାସ ସଂପର୍କରେ ପ୍ରତ୍ୟେକ ଅନ୍ୟକୁ ନିଜର ମତବାଦ ଶୁଣାଇ କୋଳାହଳ କରୁଥିବାବେଳେ, ସେଠାରେ ଦୈବାତ୍ ଜଣେ ପ୍ରକାଶକ ଉପସ୍ଥିତ ଥିଲେ। ସେ ଗୋଟାଏ ବାଜି ଲଗାଇଲେ- "ଆଚ୍ଛା ବାବୁମାନେ ଏତେ ତ ପ୍ରୌଢ଼ି କରୁଛ, ଭଲଟାୟାର୍ 'କ୍ୟାନ୍‌ଡିଡ୍' ଉପନ୍ୟାସ ପରି ଖଣ୍ଡେ ଉପନ୍ୟାସ ୭୨ ଘଣ୍ଟା ଭିତରେ ଲେଖି ଶେଷ କଲ ଦେଖି ! ଉଲ୍ଲେଖ କରିବା ନିଷ୍ପ୍ରୟୋଜନ, ମଦ ପିଇଗଲେ, ଉତ୍ତେଜନା ଆସେ ଠିକ୍। କିନ୍ତୁ ଲେଖିବାପାଇଁ ଯାହା ଆବଶ୍ୟକ, ତାହା ହେଲା ପ୍ରେରଣା, କେବଳ

ଉତ୍ତେଜନା ନୁହେଁ। ସେଇ ଆଠଜଣ ଲେଖକଙ୍କର ସାରା ୭୨ ଘଣ୍ଟା ମଦ ପିଇପିଇ କଟିଲା ସିନା, କେହି କିନ୍ତୁ ଭଲ୍‌ଟାୟାରଙ୍କ 'କ୍ୟାନ୍‌ଡିଡ୍'ତ ଦୂରର କଥା, ସାଦା ଉପନ୍ୟାସଟିଏ ସୁଦ୍ଧା ଲେଖି ଶେଷ କରିପାରିଲେ ନାହିଁ। ମାତ୍ର ଏଇ ବିଫଳତା ମଧ୍ୟରୁ ଜନ୍ମନେଲା ଏକ ହୁଜୁରା। ଗୋଟିଏ ପ୍ରକାଶକ ସଂସ୍ଥା, "ପଲ୍‌ପ ପ୍ରେସ୍ ଇଣ୍ଟରନ୍ୟାସ୍‌ନାଲ୍", ୭୨ ଘଣ୍ଟା ମଧ୍ୟରେ ଖଣ୍ଡେ ଇଂରାଜୀ ଉପନ୍ୟାସ ଲେଖି ଶେଷ କରିବାର ପ୍ରତିଯୋଗିତା, ତା' ପରଠାରୁ ଆୟୋଜନ କରୁଛନ୍ତି। ଚଳିତବର୍ଷ ଅଗଷ୍ଟ ୨୯ ତାରିଖଠାରୁ ୩୧ ତାରିଖ ପର୍ଯ୍ୟନ୍ତ, ଭ୍ୟାଙ୍କୋଭରଠାରେ ଅନୁଷ୍ଠିତ 'ଏକ୍‌ସପୋ' ୮୬। ଏକ୍‌ଜିବିସନ୍‌ର କାନାଡ଼ିଆନ୍ ମଣ୍ଡପରେ ଏହି ପ୍ରତିଯୋଗିତା ଚାଲିଥିଲା। ଏଥିରେ ପ୍ରାୟ ଏକ ହଜାର ଔପନ୍ୟାସିକ ଅଂଶଗ୍ରହଣ କରିଥିଲେ ବୋଲି, ସମ୍ବାଦପତ୍ରରେ ପ୍ରକାଶ ପାଇଛି। ସିଓଲ୍ ଏସିଆଡ୍‌ରେ ଯଦି ହଜାରେ ସଂଖ୍ୟାରେ ଖେଳାଳୀ ଏକାଠି ହୋଇ ନାଚିକୁଦି ପାରୁଛନ୍ତି, ତାହାହେଲେ ଭ୍ୟାଙ୍କୋଭରଠାରେ ଉପନ୍ୟାସ,ଲେଖା ଦୌଡ଼ ପ୍ରତିଯୋଗିତାରେ ହଜାରେ ଜଣ ଔପନ୍ୟାସିକ ଅଂଶଗ୍ରହଣ କରିପାରିବେ ନାହିଁ କାହିଁକି ? ଏ ଉପନ୍ୟାସ ଲେଖା-ଦୌଡ଼ର ଫଳାଫଳ ଏ ପର୍ଯ୍ୟନ୍ତ ଅବଶ୍ୟ ଜଣାପଡ଼ି ନାହିଁ। କିନ୍ତୁ ଏହା ଫଳରେ "ପଲ୍‌ପ୍ ପ୍ରେସ୍ ଇଣ୍ଟରନ୍ୟାସନାଲ୍" ବହୁ ତାଜା ଉପନ୍ୟାସ-ମାଲ୍ ବଜାରକୁ ଯେ ଯୋଗାଇ ପାରିବେ, ସେଥିରେ ସନ୍ଦେହ ନାହିଁ।

ପରିମାଣାତ୍ମକ ଦୃଷ୍ଟିରୁ ଏହା ଉପନ୍ୟାସର ଅଭିବୃଦ୍ଧି ନିଶ୍ଚୟ; ମାତ୍ର ଗୁଣାତ୍ମକ ବିଚାରରୁ ଏହା ଯେ ଉପନ୍ୟାସ କଳାର ଅବକ୍ଷୟ ଓ କ୍ରମବିଲୟ, ସେଥିରେ କାହାରି ସନ୍ଦେହ ରହିବା ଉଚିତ ନୁହେଁ। ଆଜି ୭୨ ଘଣ୍ଟା ମଧ୍ୟରେ ଖଣ୍ଡେ ଉପନ୍ୟାସ ଲେଖାହୋଇପାରୁଛି। ଏ ପରିସ୍ଥିତିରେ କିଏ ତେଣୁ ବିଶ୍ୱାସ କରିବ ଯେ, ନୋବେଲ୍ ପୁରସ୍କାର ପ୍ରାପ୍ତ ଔପନ୍ୟାସିକ ହେମିଙ୍ଗ୍‌ୱେ ତାଙ୍କ ପ୍ରସିଦ୍ଧ ଉପନ୍ୟାସ "ଫେଆର୍‌ୱେଲ୍ ଟୁ ଆର୍ମସ"ର ଶେଷ ପରିଚ୍ଛେଦକୁ ୩୮ ଥର ଲେଖି ବଦଳାଇଥିଲେ। ଆଜି କିନ୍ତୁ ସାହିତ୍ୟ, ସଙ୍ଗୀତ ଓ ନୃତ୍ୟ ପ୍ରଭୃତି ମନୁଷ୍ୟର ସବୁ କଳାତ୍ମକ ଅଭିବ୍ୟକ୍ତି, ବ୍ୟବସାୟଧର୍ମୀ ହୋଇପଡ଼ିଛି। ସାହିତ୍ୟ ଆଜି ଏକ ଉଦ୍ୟୋଗ, ସଙ୍ଗୀତ ଏକ 'ଇଣ୍ଡଷ୍ଟ୍ରୀ' ଆଉ ନୃତ୍ୟ ଷ୍ଟାର ହୋଟେଲ୍‌ମାନଙ୍କରେ କ୍ୟାବ୍ରେମାନଙ୍କର ଏକ ପ୍ରୋଗ୍ରାମ୍ ଆଉ ଅଭିନୟ, ସିନେମା ପ୍ରଡ୍ୟୁସର ଆଉ ଭିଡ଼ିଓ ବ୍ୟବସାୟୀମାନଙ୍କର ଏକ ପଣ୍ୟ। ସାହିତ୍ୟ-ସଂସ୍କୃତି ନାମରେ ଆମେ ଆଜି ତେଣୁ ଯେତେ ସଂକୀର୍ତ୍ତନ କରୁ ପଛେ, କାର୍ଯ୍ୟରେ ସେସବୁ, ସୌଦାଗରୀ ସଭ୍ୟତାର ଆକ୍ରମଣରେ, ସାହିତ୍ୟ ଓ ସଂସ୍କୃତିର ମରଣ-ନୃତ୍ୟରେ ପରିଣତ ହେଉଅଛି। ଆଜି ତେଣୁ 'ୱାର୍ ଏଣ୍ଡ୍ ପିସ୍' ବା 'ଜାଁ କ୍ରିଷ୍ଟୋଫ୍' ବା 'କ୍ୱାଏଟ୍ ଫ୍ଲୋଜ୍ ଦି ଡନ୍' ପରି ଉପନ୍ୟାସ ନ ହେଉ ପଛେ, 'ଗନ୍ ଉଇଥ୍ ଦି ଉଇଣ୍ଡ' ପରି ଖଣ୍ଡେ ଉପନ୍ୟାସ ସୁଦ୍ଧା ଆଉ ଲେଖା ହୋଇପାରୁନାହିଁ। ବା ଆଉ ଲେଖା ହୋଇପାରିବ

ନାହିଁ। ଆଜି ଟିଭି ସିରିଏଲ୍ ପାଇଁ ଖଣ୍ଡେ ଖଣ୍ଡେ ବାଆସ୍ତରୀ ଘଣ୍ଟିଆ ନଭେଲ୍ ହେଲେ ଆମପାଇଁ ଯଥେଷ୍ଟ। ଏକବିଂଶ ଶତାବ୍ଦୀ ବେଳକୁ ତେଣୁ ଆଉ ସାହିତ୍ୟ ଲାଇବ୍ରେରୀ ବା ପାଠାଗାର ନଥିବ। ଥିବ ଭିଡ଼ିଓ କ୍ୟାସେଟ୍ ଲାଇବ୍ରେରୀ ଆଉ ଯୌନଚିତ୍ରର ଆଲବମ୍।

ମୁଁ ଏକବିଂଶ ଶତାବ୍ଦୀର, ସେହି ଆଦିମ ପ୍ରସ୍ତର ଯୁଗର ସଂସ୍କୃତି କଳନା କରି ପ୍ରକୃତରେ ଆର୍ତ୍ତନାଦ କରିଉଠୁଛି।

*୨୫/୦୯/୮୬*

# ଜାତୀୟ-ସଙ୍ଗୀତ ବିସମ୍ବାଦ

ସୁଧୀ ପାଠକପାଠିକାମାନେ ସ୍ମରଣ କରିପାରନ୍ତି, ଏହି ପୃଷ୍ଠାର 'ଶେଷସ୍ତମ୍ଭ'ରେ ମୁଁ ପ୍ରଥମେ ଆମର ଜାତୀୟ ସଙ୍ଗୀତ ରୂପେ ଗାନ କରାଯାଉଥିବା 'ଜନଗଣମନ ଅଧିନାୟକ ଜୟହେ' ସଙ୍ଗୀତର ବିରୋଧ କରି ଏହା ପରିବର୍ତ୍ତେ କବିବର ରାଧାନାଥଙ୍କ 'ସର୍ବେଷାଂ ନୋ ଜନନୀ ଭାରତ ଧରଣୀ କଲ୍ପଲତେୟଂ' ସଙ୍ଗୀତକୁ ଗ୍ରହଣ କରିବାପାଇଁ ସୂଚନା ଦେଇଥିଲି। କବିଗୁରୁ ରବୀନ୍ଦ୍ରନାଥଙ୍କ କାବ୍ୟକୀର୍ତ୍ତି ପ୍ରତି, ମୋର କୌଣସି ଅଶ୍ରଦ୍ଧା ନାହିଁ। ବସ୍ତୁତଃ ରବୀନ୍ଦ୍ରନାଥଙ୍କ କାବ୍ୟ କବିତାର ଆଜି ସୁଦ୍ଧା କେହି ଯଦି ଅତନ୍ଦ୍ର, ଶ୍ରଦ୍ଧାଶୀଳ ପାଠକ ଥାଆନ୍ତି, ତାହାହେଲେ ସେମାନଙ୍କ ମଧ୍ୟରେ ମୁଁ ଜଣେ ବୋଲି ନିଶ୍ଚୟ ଦାବି କରିବି। 'ଜନଗଣମନ' କବିତାଟି ମଧ୍ୟ ଅତି ଉଚ୍ଚକୋଟୀର କିନ୍ତୁ ଜାତୀୟ ସଙ୍ଗୀତ ରୂପେ ଗାନ କରିବାପାଇଁ ଏହା ଆଦୌ ଉପଯୁକ୍ତ ନୁହେଁ ବୋଲି ମୋର ଧାରଣା। ଏହା ପ୍ରଭାତ ସୂର୍ଯ୍ୟଙ୍କ ଉଦ୍ଦେଶ୍ୟରେ ରଚିତ ହୋଇଥିଲା ବୋଲି ରବୀନ୍ଦ୍ରନାଥ ଏହା ସୂଚନା ଦେଇଥିଲେ ହେଁ ଏହା ବ୍ରିଟିସ୍ ସମ୍ରାଟଙ୍କ ଭାରତ ଆଗମନ ଉପଲକ୍ଷରେ ରଚିତ ହୋଇଥିଲା।

ସ୍ୱୟଂ କବିଗୁରୁ ଜୀବିତ ଥିବାବେଳେ ସୁଦ୍ଧା, ବଙ୍ଗଳାରେ କେହି କେହି ଏହି ପ୍ରକାର ସମାଲୋଚନା କରିଥିଲେ। ଏହି କବିତାରେ ଯେଉଁ ସୂର୍ଯ୍ୟଙ୍କ ଉଦ୍ଦେଶ୍ୟରେ ବନ୍ଦନା କରାଯାଇଛି ବୋଲି କୁହାଯାଇଛି, ସେ ସୂର୍ଯ୍ୟ ପୂର୍ବ ଓ ପଶ୍ଚିମ ଗୋଲାର୍ଦ୍ଧରେ କେତେବେଳେ ସୁଦ୍ଧା ଅସ୍ତମିତ ହୁଅନ୍ତି ନାହିଁ। ବ୍ରିଟିସ୍ ସାମ୍ରାଜ୍ୟରେ ମଧ୍ୟ ସୂର୍ଯ୍ୟ କେବେ ଅସ୍ତ ଯାଉ ନଥିଲେ ବୋଲି ଇଂରେଜ ସାମ୍ରାଜ୍ୟବାଦୀମାନେ ଖୁବ୍ ପ୍ରୌଢ଼ି କରିଥାଆନ୍ତି। ପୁଣି ପ୍ରଭାତ ସୂର୍ଯ୍ୟଙ୍କ ଉଦ୍ଦେଶ୍ୟରେ ବନ୍ଦନାରେ ଉଚ୍ଚକୋଟିର କବିତ୍ୱ ଅଛି ସିନା, ଦେଶାତ୍ମବୋଧ ଜାଗ୍ରତ କରିବାପାଇଁ, ଏଥିରେ ଭାବବସ୍ତୁ କାହିଁ ?

ଦ୍ୱିତୀୟତଃ ଏ ସଙ୍ଗୀତରେ ଜାତୀୟ ଐକ୍ୟର ଭାବନା ବିରଳ। କାରଣ ଏହି ସଙ୍ଗୀତରେ ଆସାମ, କର୍ଣ୍ଣାଟକ ଓ କାଶ୍ମୀର ପ୍ରଭୃତିର ନାମ ଉଲ୍ଲେଖ ନାହିଁ। ଅଥଚ ସିନ୍ଧୁ ପ୍ରଦେଶର ନାମ ରହିଛି, ଯାହା ଆଜି ଭାରତରେ ନାହିଁ। ତୃତୀୟତଃ "ଭାରତ ଭାଗ୍ୟ

ବିଧାତା" ବୋଲି ଯାହାଙ୍କୁ ବନ୍ଦନା କରାଯାଇଛି, ସେ କିଏ ? ଈଶ୍ୱର ହୋଇଥିଲେ ସେ ତ ବିଶ୍ୱ ଭାଗ୍ୟବିଧାତା ହୋଇଥାନ୍ତେ ! ଏ "ଭାରତ ଭାଗ୍ୟ ବିଧାତା" ତେଣୁ ସେ ଦିନର ବ୍ରିଟିସ୍ ସମ୍ରାଟଙ୍କ ପକ୍ଷରେ ହିଁ ପ୍ରଯୁଜ୍ୟ।

କିନ୍ତୁ କେରଳର ତିରୁଚି ଜିଲ୍ଲାର ଗୋଟିଏ ଖ୍ରୀଷ୍ଟିଆନ୍ ବିଦ୍ୟାଳୟର କର୍ତ୍ତୃପକ୍ଷ, ଶ୍ରେଣୀ ଗୃହରେ ଠିଆହୋଇ, ଏହି ସଙ୍ଗୀତ ଗାନ କରିବାପାଇଁ ଛାତ୍ରଛାତ୍ରୀମାନଙ୍କ ଉପରେ ନିଷେଧାଦେଶ ଜାରି କରିବେ ବୋଲି ମୁଁ କଦାପି ଆଶା କରିନଥିଲି। ସଂଖ୍ୟାଲଘୁ ସଂସ୍ଥାର ଦ୍ୱାହିଦେଇ, ଏପରି ନିଷେଧାଦେଶ ଜାରି କରିବା ଯେ ଅତିରଞ୍ଜିତ ପ୍ରତିକ୍ରିୟା ସେଥିରେ ସନ୍ଦେହ ନାହିଁ। ଏ ବିଷୟଟି ସୁପ୍ରିମ୍‌କୋର୍ଟ ପର୍ଯ୍ୟନ୍ତ ଯାଇଥିଲା। କାହାର ଧର୍ମୀୟ ଭାବପ୍ରବଣତା ଉପରେ, ଆଞ୍ଚ ଆସୁଥିଲେ, ସେ ବା ସେମାନେ ଠିଆହୋଇ ଏହି ସଙ୍ଗୀତକୁ ଗାନ କରିବା ବାଧ୍ୟତାମୂଳକ ନୁହେଁ ବୋଲି ସୁପ୍ରିମ୍‌କୋର୍ଟ ଏକ ଚାଞ୍ଚଲ୍ୟକର ରାୟ ଦେଇଥିଲେ। ଭାରତ ସରକାରଙ୍କ ପକ୍ଷରୁ ଏହି ରାୟ ବିରୋଧରେ ରିଭିଜନ ଦରଖାସ୍ତ ବର୍ତ୍ତମାନ ସୁପ୍ରିମ୍‌କୋର୍ଟର ବିଚରାଧୀନ ରହିଅଛି। ପ୍ରଥମେ ସୁପ୍ରିମ୍‌କୋର୍ଟର ରାୟ ପ୍ରକାଶ ପାଇବା ପରେ, ମାନବସମ୍ବଳ ମନ୍ତ୍ରୀ ଶ୍ରୀ ପି.ଭି. ନରସିଂହ ରାଓ 'ଜନଗଣମନ' ପରିବର୍ତ୍ତେ ଅନ୍ୟ କୌଣସି ଜାତୀୟ ସଙ୍ଗୀତ ରୂପେ ନିର୍ବାଚିତ ହେବା ଉଚିତ ବୋଲି ମତ ପ୍ରକାଶ କରିଥିଲେ। କିନ୍ତୁ ପ୍ରଧାନମନ୍ତ୍ରୀ ଇତିମଧ୍ୟରେ କଲିକତାଠାରେ, ଏ ସଙ୍ଗୀତକୁ ପରିବର୍ତ୍ତନ କରାଯିବ ନାହିଁ ବୋଲି ସ୍ପଷ୍ଟ ଭାବରେ ମତ ପ୍ରକାଶ କରିଛନ୍ତି। ସେ ଯାହାହେଉ, ଯେଉଁ କାରଣରୁ, 'ଜନଗଣମନ' ଗାନ କରିବା ବାଧ୍ୟତାମୂଳକ ହେବା ଉଚିତ ନୁହେଁ ବୋଲି ସୁପ୍ରିମ୍‌କୋର୍ଟ ରାୟ ଦେଇଛନ୍ତି, ସେଥି ସହିତ ମଧ୍ୟ ମୁଁ ଏକମତ ନୁହେଁ। ପ୍ରଥମ କଥା ଏହି ସଙ୍ଗୀତ ଗାନକଲାବେଳେ ମନରେ କୌଣସି ଧାର୍ମିକ ସ୍ପନ୍ଦନ ଆସେ ନାହିଁ। ବରଂ ବଙ୍କିମଚନ୍ଦ୍ରଙ୍କର 'ସୁଜଳାଂ ସୁଫଳାଂ ମଳୟଜ ଶୀତଲାମ୍' ସଙ୍ଗୀତରେ ସେ ପ୍ରକାର ଭାବାବେଗ ଆସିଥାଏ। ଦ୍ୱିତୀୟ କଥା, ଭାରତର ଜାତୀୟତା, ସବୁ ସଂକୀର୍ଣ୍ଣ ଧାର୍ମିକ ଚେତନାର ଊର୍ଦ୍ଧ୍ୱରେ। ତେଣୁ ସୁପ୍ରିମ୍‌କୋର୍ଟଙ୍କର ସିଦ୍ଧାନ୍ତ ସହିତ ମୁଁ ଏକମତ ହୋଇପାରିନାହିଁ।

କିନ୍ତୁ, ଜାତୀୟ ପତାକା, ଜାତୀୟ ସଙ୍କେତ ଓ ଜାତୀୟ ସଙ୍ଗଠନ ପ୍ରଭୃତି ପ୍ରତୀକ ଧରି ବୁଲିଲେ, କେହି ଯେ ଦେଶପ୍ରେମୀ ହୋଇଯିବ, ଏପରି ଭାବିବା ଆଦୌ ଉଚିତ ନୁହେଁ। ମୌଳିକ ଦୃଷ୍ଟିରୁ ଧର୍ମଦ୍ରୋହୀମାନେ ସୁଦ୍ଧା ଯେପରି ଧାର୍ମିକତାର ଭେକ ଆଉ ବାନାବେିରଖ ଉଡ଼ାଇ ବୁଲନ୍ତି, ଦେଶଦ୍ରୋହୀମାନେ ସୁଦ୍ଧା ଜାତୀୟ ପତାକା ଓ ଜାତୀୟ ସଙ୍କେତ ବ୍ୟବହାର କରୁଥିବା ଉଦାହରଣର ଅଭାବ ନାହିଁ। ବିଦେଶୀ ଗୁପ୍ତଚରରୂପେ କାର୍ଯ୍ୟ କରୁଥିବା ଭାରତୀୟ ନାଗରିକମାନଙ୍କର ଦୃଷ୍ଟାନ୍ତ, ଏଠାରେ ଦିଆଯାଇ ପାରେ।

ମୋ ବିଚାରରେ ଏସବୁ ରାଷ୍ଟ୍ର ନାମରେ ଆଉ ଏକ ପୌତ୍ତଳିକତା। ତଥାପି ଭାରତୀୟ ମହାଜାତି, ଅପରାଜେୟତା ଓ ଶତସଂଗ୍ରାମ ସଂଘର୍ଷ ମଧ୍ୟରେ ଆଗକୁ ମାଡ଼ିଯିବାପାଇଁ, ଦୁର୍ବାର ପ୍ରେରଣାର ଉଦ୍‌ବୋଧନପାଇଁ ଜାତୀୟ ସଙ୍ଗୀତର ଯଦି ନିତାନ୍ତ ପ୍ରୟୋଜନ ଥାଏ, ତେବେ "ଜନଗଣମନ" ସେଥିପାଇଁ ଆଦୌ ପ୍ରଶସ୍ତ ନୁହେଁ। ପୁଣି ଦେଶ କହିଲେ, ମୁଁ ମାନଚିତ୍ରରେ ଚିହ୍ନିତ କେବଳ ଗୋଟାଏ ଭୌଗୋଳିକ ଭୂଖଣ୍ଡକୁ ବୁଝେନାହିଁ । ମୁଁ ତା' ଭିତରେ ଖୋଜେ କୋଟିକୋଟି ଦୁଃଖୀ, ଦରିଦ୍ର, ନିରନ୍ନଙ୍କ ଚେହେରା। ସେଇମାନଙ୍କ ମୁହଁର ଚେହେରା ମୋ ଆଖିରେ ଭାରତମାତାର ପ୍ରକୃତ ଚିତ୍ର। ସେଇମାନଙ୍କ ମୁହଁର ଚିତ୍ର ମୋ ଦେଶର ମାନଚିତ୍ର।

କିନ୍ତୁ କେଉଁ କବି ବା ସେମାନଙ୍କ ବନ୍ଦନା ଗାନ କରିଚି ?

୦୨/୧୦/୮୬

# କାଶତଣ୍ଡୀର କାବ୍ୟ

ନଦୀପଠାରେ କାଶତଣ୍ଡୀର ତରଙ୍ଗ ଆଉ ଗଙ୍ଗଶିଉଳି ମୂଳେ ରାଶିରାଶି ଝରା ଶେଫାଳୀ ! ଆଶ୍ୱିନର ବାର୍ତ୍ତାବହ ଏମାନେ। ଏମାନଙ୍କ ସୃଷ୍ଟି କର୍ମରେ ଦୈନ୍ୟ ନାହିଁ, କାର୍ପଣ୍ୟ ନାହିଁ। ଅସୁମାରି ଫୁଟନ୍ତି ଆଉ ଝରନ୍ତି। ରାଶିରାଶି ଶେଫାଳୀ ନିଃଶବ୍ଦରେ, ରାତିର ଶିଶିର ବିନ୍ଦୁ ପରି ଝରିପଡ଼େ ଘାସ ଉପରେ। ଲାସ୍ୟମୟୀ ନର୍ତ୍ତକୀର ଇଏ ଯେପରି ଭୂମିପୂଜା। ନଦୀପଠାର କାଶତଣ୍ଡୀ, ଶରତର ନିର୍ମେଘ ଆକାଶ ଆଉ ନୀଳ ଜଳବେଣୀ ଉଦ୍ଦେଶ୍ୟରେ ଚାମର ଦୋଳାଇ କ୍ଳାନ୍ତ ନିଃଶେଷିତ ହେବା ପରେ, ନିରବରେ ଦିନେ ଶୁଖି ଝରିଥାଏ। କେହି ଏମାନଙ୍କ ପାଇଁ କେବେ ଆଞ୍ଜୁଳାଏ ପାଣି ଇଡ଼ିନାହିଁ। ମୁହୂର୍ତ୍ତକପାଇଁ ଛାୟା ଦେଇନାହିଁ। ଝରା ଶେଫାଳୀ କିମ୍ବା କାଶତଣ୍ଡୀରେ କେହି କେବେ କୌଣସି ଦେବୀ ମଣ୍ଡପ ସଜାଇ ନାହିଁ; କିମ୍ବା କୌଣସି ଦେବତା ଉଦ୍ଦେଶ୍ୟରେ ଏହା କେବେ ନିବେଦିତ ହୋଇନାହିଁ। ଲୋକଲୋଚନ ନେପଥ୍ୟରେ ରାଶିରାଶି ଫୁଟିବା ଆଉ ଝରିବା, ଏମାନଙ୍କର ସ୍ୱଧର୍ମ ! ସେଇଥିରେ ଏମାନଙ୍କର ପରିପୂର୍ଣ୍ଣତା।

ଏମାନେ ନଥିଲେ, ଶସ୍ୟଗର୍ଭା ଶାକମ୍ଭରୀ ଆଶ୍ୱିନ, ବିଧବାର ହାତ ପରି, କେତେ ରିକ୍ତ ମନେ ନହୁଅନ୍ତା ସତେ !

ଏମାନେ ମୋର ଗୁରୁ।

ଏମାନଙ୍କଠାରୁ ମୁଁ ଶୁଣିଛି, ନିନ୍ଦା ପ୍ରଶଂସାର ଉର୍ଦ୍ଧ୍ୱରେ ସୃଷ୍ଟି କେଡ଼େ ଉଦାର, କେଡ଼େ ଅକୃପଣ, କେଡ଼େ ଆତ୍ମନିମଜ୍ଜିତ। ଗଣି ହିସାବ କରି, କାହାର ଦୃଷ୍ଟିକୁ କିପରି ଲାଗିଲା, ଏସବୁ ତୁଚ୍ଛ ଗଣିତ କଷି, ଏମାନେ କେବେ ଫୁଟନ୍ତି ନାହିଁ। ଅକୃତ୍ରିମ, ଅକପଟ ଭାବରେ ନିଜକୁ ପ୍ରକାଶ କରିବାର ପ୍ରେରଣାରେ କେବଳ, ଏମାନେ ଫୁଟନ୍ତି ଆଉ ଝରନ୍ତି ! ଏମାନଙ୍କର ବାଣୀ ହେଉଛନ୍ତି, ଏମାନେ ନିଜେ ! ଏମାନଙ୍କର ଜୀବନ !

ପ୍ରକୃତି ବେହିସାବୀ, ଉଦାର; କିନ୍ତୁ ମନୁଷ୍ୟ ବଡ଼ କୃପଣ ! ଭାରୀ ହିସାବୀ।

ନିର୍ମେଘ ଆକାଶରେ, ଜଳଭାରହୀନ ଖଣ୍ଡେଖଣ୍ଡେ ଭସାମେଘ, ଉଦାସୀ ଶ୍ରମଣମାନଙ୍କ ପରି, ତଥାପି ଆରମ୍ଭ କରି ନାହାନ୍ତି, ଚାତୁର୍ମାସ୍ୟା। ବଷ୍‌ସା-ବାସ ପରେ ସେମାନଙ୍କର ଲକ୍ଷ୍ୟହୀନ ନିରୁଦ୍ଦିଷ୍ଟ ପ୍ରବଜ୍ୟା। କିନ୍ତୁ ଆଶ୍ୱିନର ଏ କି ବିରୋଧାଭାସ ? ଶସ୍ୟମୟୀ ମୃତ୍ତିକାର ସଂସାରାସକ୍ତି ଆଉ ଆକାଶରେ ଛିନ୍ନ ଭସାମେଘର ସନ୍ନ୍ୟାସ। ଆଭ୍ୟନ୍ତରୀଣ ବିରୋଧାଭାସ ନ ଥିଲେ, ସୃଷ୍ଟିରେ କୌଣସି ସତ୍ତା ପ୍ରକୃତରେ ସଂପୂର୍ଣ୍ଣ ନୁହେଁ।

ଆଶ୍ୱିନର ଇଷ୍ଟଦେବୀ ମହାଲକ୍ଷ୍ମୀ, ମହିଷାସୁରମର୍ଦ୍ଦିନୀ ଦୁର୍ଗା ଶସ୍ୟଗର୍ଭା, ଶାକମ୍ଭରୀଙ୍କର ପ୍ରତୀକ। ମୃଣ୍ମୟୀ ରୂପରେ ସେ ଦେବୀମଣ୍ଡପମାନଙ୍କରେ ଏବେ ପୂଜିତା। କିନ୍ତୁ ଜଳପୂର୍ଣ୍ଣ ଘଟ ହିଁ ତାଙ୍କର ପ୍ରତିରୂପ ନବ୍ୟତ୍ରିକା ପୂଜାରେ, ଆଶ୍ୱିନର ଶସ୍ୟଲକ୍ଷ୍ମୀଙ୍କର ଆଦ୍ୟ ଆବାହନ। ଅନାବୃଷ୍ଟି, ଅତିବୃଷ୍ଟି, ବନ୍ୟାପ୍ଲାବନ ଆଉ ଘୂର୍ଣ୍ଣିଝଞ୍ଜା ରୂପୀ ମହିଷାସୁରର ଶତ ଆକ୍ରମଣ ଏ ଯେଉଁ ଶସ୍ୟଲକ୍ଷ୍ମୀ, ଅଭୟମୁଦ୍ରାରେ ଉଦ୍‌ଭାସିତା ହୁଅନ୍ତି, ସେ ହିଁ ଶାରଦୀୟା ମହାଦୁର୍ଗା ! ଆଶ୍ୱିନର ଇଷ୍ଟଦେବୀ।

ମୁଁ ବୃଥାରେ ଅପେକ୍ଷା କରିଥିଲି, ଦୁର୍ଗାମଣ୍ଡପରେ, ଢୋଲ, ମହୁରୀ ଆଉ ଯୋଡ଼ିନାଗରାର ରାଗିଣୀ ଶୁଣିବାପାଇଁ। ସାର୍ବଜନୀନ ଦୁର୍ଗାମଣ୍ଡପର ଉତ୍ସବ ଆୟୋଜନ ମଧ୍ୟରେ ଆଜି ଦୁର୍ଗା ଆଉ ଶସ୍ୟଲକ୍ଷ୍ମୀ ନାହାନ୍ତି ! ସେଠାରେ ସୌଦାଗରୀ ସଂସ୍କୃତିର ଉଦ୍ଭଟ କୋଳାହଳ। ଗୋଟିଏ କାଳର ସଂସ୍କୃତି ଦିନେ ବିଦାୟ ନେଇଯିବା ପରେ ତାର ପ୍ରତୀକର ଜୀର୍ଣ୍ଣ କଙ୍କାଳକୁ ଯେତେ ଆଡ଼ମ୍ବରରେ ସଜାଇଲେ ସୁଦ୍ଧା, ସେଥିରେ ତାର ପ୍ରାଣର ସ୍ପର୍ଶ କିନ୍ତୁ ଆଉ ମିଳେ ନାହିଁ। ମିଳେ କେବଳ ତାହାର ବିକୃତି।

ଶାରଦୀୟା ଉତ୍ସବ, ଆଜି ତେଣୁ ଚାନ୍ଦା ପାଇଁ ଜୁଲମ୍, ବିସର୍ଜନ ପଟୁଆର ବେଳେ, ଗୋଷ୍ଠୀ ଗୋଷ୍ଠୀ ମଧ୍ୟରେ ବଡ଼ପଣର କରାମତି ଦେଖାଇବାପାଇଁ ଲାଠି ସଜଡ଼ା, ସୌଦାଗରୀ ସଂସ୍କୃତିର ଉଲ୍ଲଙ୍ଗ ପ୍ରଦର୍ଶନୀ ଆଉ ଶସ୍ତା ହିନ୍ଦୀ ଫିଲ୍ମ ଗାନାର କାନଫଟା ଆର୍ତ୍ତ ଚିତ୍କାର। ସତେ ଯେପରି ସଙ୍ଗୀତ କେଉଁ ଜହ୍ଲାଦର କବଳରେ ପଡ଼ି ଆର୍ତ୍ତନାଦ କରୁଛି।

ମୁଁ ଏକ ନିର୍ବୋଧ ପରି ତଥାପି ଅପେକ୍ଷା କରି ବସିଥିଲି। ପଲ୍ଲୀ ଗ୍ରାମର କେଉଁ ଗୃହସ୍ଥର ଅଙ୍ଗନରେ ଦେଖିବାପାଇଁ ଭଙ୍ଗାଭଙ୍ଗା କଇଁନାଡ଼ର ଜଂଜିର, ଜଳପୂର୍ଣ୍ଣ ଘଟ ଉପରେ ନବ୍ୟତ୍ରିକାର ପଲ୍ଲବ। ଆଉ ଶୁଣିବାପାଇଁ ଯୋଡ଼ିନାଗରାର ମହୁରୀରେ ସେଇସବୁ ପୁରୁଣା ଦିନର ରାଗିଣୀ।

ମୋପାଇଁ ସେସବୁ କିନ୍ତୁ ବହୁଦୂର ଆଜି। ଆଜି କେବଳ ଉତ୍ସବ ନାମରେ ଉନ୍ମତ୍ତତା।

*୧୬/୧୦/୮୬*

# ଖଳନାୟକ

ଶୁଣିଲି ହିମାଳୟର ତୁଷାରାବୃତ୍ତ ଅଞ୍ଚଳରୁ ପକ୍ଷୀମାନେ ଚିଲିକା ଉଠାଜଳରେ ସନ୍ତରଣପାଇଁ ଆସିବା ଆରମ୍ଭ କଲେଣି। ଚିତ୍ରିତ ପେଚା ଆଉ ଲାଲଡେଣାର କୋଇଲି ଆସିଗଲେଣି। ବଗିଚା ନାମରେ କଥିତ ମୋର ଏଇ କଙ୍କରିଳ ଗୁଳ୍ମାକୀର୍ଣ୍ଣ ପ୍ରାନ୍ତରରେ ଆଶ୍ୱିନର ପକ୍ଷୀକୁଳଙ୍କର ଦେଖାନାହିଁ। ସେମାନେ ଗଲେ କୁଆଡ଼େ? ବଣିମାନେ ପ୍ରତି ସକାଳେ, ଦଳ ଦଳ ଆସନ୍ତି, ଖାଦ୍ୟ ସନ୍ଧାନରେ। ସେମାନେ ସୁଦ୍ଧା ନିଖୋଜ। କଳଜପାତିମାନେ ଇଲେକ୍‌ଟ୍ରିକ୍ ତାର ଉପରେ ବସି ସକାଳ ସଞ୍ଜରେ ଆଉ ଗୀତ ଗାଉ ନାହାନ୍ତି ! ନୀଳପକ୍ଷୀ ଦିନେ ଅକସ୍ମାତ୍ ଆସେ କୌଣସି ମହାରାଣୀ ପରି, ମୁହୂର୍ତ୍ତକପାଇଁ ଦର୍ଶନ ଦେଇ, ମୋତେ ଯେପରି କୃତାର୍ଥ, ଧନ୍ୟ କରିବାପାଇଁ। ହଳଦୀବସନ୍ତର ଗୀତ ଶୁଣୁଛି ଦୂରରୁ; ମାତ୍ର ଏ ଆଡ଼େ ସେ କେଜାଣି କାହିଁକି ଆସୁନାହିଁ।

ପକ୍ଷୀକୁଳଙ୍କର ଏଇ ବିଚିତ୍ର ଆଚରଣ କଥା ଭାବୁଛି, ଅଦିନର ଅତିଥିପରି, ହଠାତ୍ ଦୁଇଟି କ୍ରୌଞ୍ଚ ଆଉ କ୍ରୌଞ୍ଚୀ ଉଡ଼ାଜାହାଜ ଓହ୍ଲାଇ ଆସିବା ପରି ସୋଁ କରି ଉଡ଼ି ଆସିଲେ, ଫୁଲଭାରରେ ନଇଁ ପଡ଼ିଥିବା ଟଗର ଗଛ ମୂଳକୁ। ସବୁଜ ଘାସ, ଧଳା ବଗ ଆଉ ଧଳା ଟଗରର ଚମତ୍କାର ହାର୍ମୋନୀ। ମୋର ମନେହେଲା, ସବୁ କଳା ହେଉଛି ହାର୍ମୋନୀ। କଳାର ଅନ୍ତଃସ୍ୱର ହାର୍ମୋନୀ।

ସେଇଦିନୁ ସେମାନେ ହୋଇଛନ୍ତି ପ୍ରତି ସକାଳେ ମୋର ଅତିଥି। ସେମାନେ ଆସିଲେ ମୋର ରୁକ୍ଷ କଙ୍କରିଳ ପରିବେଶଟା ହଠାତ୍ ଯେପରି ହସିଉଠେ। ବଗମାନଙ୍କର ଚାଲିରେ ଯେ ଗୋଟାଏ ଛନ୍ଦ ଅଛି, ତାହା ଏତେଦିନେ ଲକ୍ଷ୍ୟ କରିପାରିଲି। ସେମାନଙ୍କର ଚାଲିରେ ଅଛି ପହିଜର ଠାଣି। କିନ୍ତୁ ଭାରୀ ସନ୍ତର୍ପିତ। ଆଗକୁ ହାତେ ମାପି ଚାଖଣ୍ଡେ ଚାଲିବାର ସଂସାରୀ ଧୂର୍ତ୍ତତା, ସେମାନଙ୍କ ଚାଲିରେ। ବେକ ଉପରକୁ ଉଠାଇ, ଆଖି ଅର୍ଦ୍ଧ ନିମୀଳିତ କରି, ସେମାନେ ଦିଶନ୍ତି, ଧ୍ୟାନୀ ବାବା ବା ଗୁରୁମାନଙ୍କ ପରି। କିନ୍ତୁ ଦୃଷ୍ଟିଟି ଠିକ୍ ରହିଥାଏ, କୌଣସି ହତଭାଗ୍ୟ ଝିଣ୍ଟିକା, କୀଟ ଅଥବା ପତଙ୍ଗ ଉପରେ। ଦୂରରୁ ଥାଇଁ, ଲମ୍ୱାବେକ

ଆଉ ଥଣ୍ଟ ଲମ୍ବାଇ, ଟକ୍‌କରି ସେମାନେ ଉଦରସ୍ଥ କରି ଦିଅନ୍ତି ହତଭାଗ୍ୟ କୀଟ ବା ପତଙ୍ଗକୁ। ତା'ପରେ ନିର୍ଲିପ୍ତ ଭାବରେ ପୁଣି ଆଖି ବୁଜି ନିଅନ୍ତି ଧ୍ୟାନୀ ତପସ୍ୱୀ ପରି। ଧର୍ମବକ କଥାଟା, ନିତାନ୍ତ ମିଛ ନୁହେଁ ତାହେଲେ। ପୁଣି ବଗର ଥଣ୍ଟ ଲମ୍ବିଲେ, ମୀନକୁଳଙ୍କର ବିପତ୍ତି ଯେ ବଢ଼େ ତାହାର ଚାକ୍ଷୁସ ପ୍ରମାଣ ମଧ୍ୟ ପାଇଗଲି।

ଦିନେ ଅକସ୍ମାତ୍ ଆଉ ଗୋଟାଏ ମୋଟା ସୋଟା ବଗ ଉଡ଼ିଆସିଲା ସେମାନଙ୍କ ପାଖକୁ। ଏ ବଗଟା ନିଃସଙ୍ଗ। ବଗୁଲୀ ନାହିଁ। ପ୍ରାୟ ତ ବୁଢ଼ା ହେବାକୁ ବସିଲାଣି। ଏ ହତଭାଗ୍ୟଟା ଆଶ୍ୱିନର ନୀଳ ଆକାଶରେ ଡେଣା ମେଲି ଉଡ଼ିବାପାଇଁ ତଥାପି ଏ ପର୍ଯ୍ୟନ୍ତ ଗୋଟାଏ ସାଥୀ ଯୋଗାଡ଼ କରିପାରିଲା ନାହିଁ ବୋଲି ବିଚରା ପ୍ରତି ମୋ ମନରେ କରୁଣା ଆସିଲା। ହୋଇପାରେ ତାହାର କ୍ରୌଞ୍ଚୀ କେଉଁଦିନ କେଉଁ ବ୍ୟାଧର ଶରାଘାତରେ ବିଦାୟ ନେଇଛି। କୌଣସି ବାଲ୍ମୀକି କିନ୍ତୁ ବିଚ୍ଛେଦର ସେ ଦୃଶ୍ୟ ଦେଖିପାରି ନାହାନ୍ତି କିମ୍ବା କ୍ରୌଞ୍ଚର ବିଳାପ ଶୁଣିପାରି ନାହାନ୍ତି ! ତାହା ହୋଇଥିଲେ; ଆଉ ଏକ ଆଦିକାବ୍ୟର ଉଚ୍ଚାରଣ ଆମେ ଶୁଣି ସାରନ୍ତୁଣି !

କିନ୍ତୁ କ୍ରମେ ଦେଖାଗଲା, ଏ ବଗଟି କୀଟ ପତଙ୍ଗମାନଙ୍କ ପ୍ରତି ଯେତେ ବେଶି ଆକୃଷ୍ଟ ନୁହେଁ, ସେତେବେଶି ଆକୃଷ୍ଟ ବଗୁଲୀଟି ପ୍ରତି। ବଗୁଲୀ ତାର ବଗଠାରୁ ସାମାନ୍ୟ ଦୂରଛଡ଼ା ହୋଇ ନିମଗଛ ମୂଳକୁ ଚାଲି ଯାଇଥିଲା। ପତଙ୍ଗ ସନ୍ଧାନ ବାହାନାରେ ଏଇ ଆଗନ୍ତୁକ ବଗଟା ତା' ପାଖକୁ ଉଡ଼ିଯାଇ, ତା' ଚାରିପଟେ ରସିକତା କରି ବୁଲିଲା। 'ଇଭିଟିଜିଙ୍ଗ୍' କଥାଟା ତା' ହେଲେ ପକ୍ଷୀସମାଜରେ ମଧ୍ୟ ଚଳୁଛି। ବଗୁଲୀର କିନ୍ତୁ ସେଥିରେ ଆପତ୍ତି ନାହିଁ। ମନେ ପଡ଼ିଗଲା, ମହାଭାରତର ଅନୁଶାସନ ପର୍ବରେ, ଶରଶଯ୍ୟାଶାୟିତ, ଆଜନ୍ମ ବ୍ରହ୍ମଚାରୀ କୁଳବୃଦ୍ଧ ଭୀଷ୍ମଙ୍କୁ ଯୁଧିଷ୍ଠିରଙ୍କର ସେହି ବିଚିତ୍ର ପ୍ରଶ୍ନ: ନାରୀ ପୁରୁଷଙ୍କ ସହବାସରେ କାହାର ସୁଖ ଅଧିକ ? କୁଳବୃଦ୍ଧ ପିତାମହ ଭୀଷ୍ମ, ରାଜା ଭଙ୍ଗାସ୍ୱନଙ୍କ ଉପାଖ୍ୟାନ ବର୍ଣ୍ଣନା କରି, ସହବାସରେ ନାରୀର ସୁଖ ଅଧିକ ବୋଲି, ଉତ୍ତର ଦେଇଥିଲେ। ବଗୁଲୀର ଗତିବିଧି ଲକ୍ଷ୍ୟକରି, ମୋର ମନେହେଲା; ପିତାମହ ଭୀଷ୍ମଙ୍କର ଉତ୍ତର ନିତାନ୍ତ ମିଥ୍ୟା ନଥିଲା। ବଗୁଲୀ ନିମ ଗଛମୂଳେ, ଲଜ୍ଜାଶୀଳା ବଧୂଟି ପରି ନିଶ୍ଚଳ ଭାବରେ ଠିଆ ହୋଇଛି। ଏଇ ନିଃସଙ୍ଗ ବଗଟିର ପ୍ରେମ ନିବେଦନ ସେ ଯେପରି ବେଶ୍ ଉପଭୋଗ କରୁଛି। ବଗଟା,ଏଥିରେ ଆଉରି ଉତ୍ସାହିତ ହୋଇ ବଗୁଲୀ ପାଖକୁ କ୍ରମେ ଲାଗିଲାଗି ଆସୁଛି। ଏଇ ସମୟରେ ଅନ୍ୟ ବଗଟା ସୋଁ କରି ଉଡ଼ିଆସି, ସେଇ ମୋଟା ବଗଟାକୁ ଥଣ୍ଟରେ ଯେପରି ଖୁମ୍ପାଖୁମ୍ପି ଆରମ୍ଭ କରିଦେଲା, ସେଥିରେ ସେ ରସିକତା ଛାଡ଼ି 'ଯଃ ପଳାୟତି ସଃ ଜୀବତି' ପରି ଉଡ଼ି ପଳାଇଗଲା। ବଗ ଦେଖିଲା, ସ୍ଥାନଟା ନିରାପଦ ନୁହେଁ। ସେ ଉଡ଼ି ପଳାଇଲା। ତା' ପଛେ ପଛେ ତାର ବଗୁଲୀଟି।

ତା' ପରଦିନ ସକାଳେ ପୁଣି ସେଇ ଦୃଶ୍ୟର ପୁନରାବୃତ୍ତି।

କିନ୍ତୁ, ତା' ପରଠାରୁ ସେ ବଗବଗୁଲୀ ଆଉ ଆସୁ ନାହାନ୍ତି। କିନ୍ତୁ ସେହି ନିଃସଙ୍ଗ ବଗଟା ପ୍ରତି ସକାଳେ, ନିୟମିତ ଆସୁଛି, ବୋଧହୁଏ ବଗୁଲୀ ସନ୍ଧାନରେ, ଟିକିଏ ରସିକତାପାଇଁ। ବଗୁଲୀକୁ ନପାଇ ସେ କିଛି କୀଟପତଙ୍ଗରେ ପ୍ରାତଃଭୋଜନ ବଢ଼ାଇ ଉଡ଼ିଯାଇ ବସୁଛି, ନିମଗଛ ଉପରେ।

ଆଜି ସକାଳେ, ସେ ବସିଥିଲା ନିମ ଗଛ ଚୂଡ଼ାରେ। ଉପେନ୍ଦ୍ର ଭଞ୍ଜଙ୍କର ଗୋଟିଏ ଧାଡ଼ି ମନେ ପଡ଼ିଗଲା- "ବକେ ବସିଥିଲେ ଧ୍ରୁବ ଉପରେ।" ସେଇଦିନୁ ସେଇ ବଗଟା ନିମଗଛ ଚୂଡ଼ା ଉପରେ ବସୁଛି, ବଗୁଲୀପାଇଁ। ଅପେକ୍ଷା କରିକରି ଚିଟା ଲାଗିଲେ, ପୁଣି ଡେଣା ମେଲି ଦେଉଛି, ଆଶ୍ୱିନର ନୀଳ ଆକାଶରେ।।

୨୩/୧୦/୮୬

# ନୋବେଲ୍ ପୁରସ୍କାର ଓ ତୃତୀୟ ବିଶ୍ୱ

ଚଳିତ ବର୍ଷ ନାଇଜେରିଆର ୫୨ ବର୍ଷ ବୟସ୍କ ନାଟ୍ୟକାର ଓ୍ୱେଲ୍ ସୋୟାଙ୍କା ସ୍ୱିଡ଼ିସ୍ ଅକାଦେମୀଦ୍ୱାରା ସାହିତ୍ୟପାଇଁ ନୋବେଲ୍ ପୁରସ୍କାରରେ ସମ୍ମାନିତ ହୋଇଛନ୍ତି। ଇତିପୂର୍ବରୁ ଆଫ୍ରିକାର ଅନ୍ୟ କୌଣସି ଲେଖକ ସାହିତ୍ୟକୃତିପାଇଁ ନୋବେଲ ପୁରସ୍କାର ପାଇନଥିଲେ। ନୋବେଲ୍ ପୁରସ୍କାରପାଇଁ ଚୂଡ଼ାନ୍ତ ମନୋନୟନରେ ସ୍ୱିଡ଼ିସ୍ ଅକାଦେମୀ ୟୁରୋପୀୟ ଓ ପାଶ୍ଚାତ୍ୟ ସାହିତ୍ୟ ପ୍ରତି ଯେତେ ଦୃଷ୍ଟି ଦେଇଥାଆନ୍ତି, ତୃତୀୟ ବିଶ୍ୱର ସାହିତ୍ୟିକମାନଙ୍କ ପ୍ରତି ସେତେଟା ଦୃଷ୍ଟି ଆଦୌ ଦେଇନଥାନ୍ତି। ସେଥିପାଇଁ ତୃତୀୟ ବିଶ୍ୱର ମହାନ୍ ସାହିତ୍ୟ-କୃତିସବୁ ପ୍ରାୟ ଉପେକ୍ଷିତ ହୋଇ ଆସିଅଛି।

ବସ୍ତୁତଃ ୧୯୦୧ ମସିହାରେ ନୋବେଲ୍ ପୁରସ୍କାର ସ୍ଥାପିତ ହେବା ଦିନୁ ତୃତୀୟ ବିଶ୍ୱର ମାତ୍ର ପାଞ୍ଚ ଜଣ ଲେଖକ ନୋବେଲ୍ ପୁରସ୍କାରରେ ସମ୍ମାନିତ ହୋଇପାରିଛନ୍ତି। ୧୯୧୩ ମସିହାରେ କବି ରବୀନ୍ଦ୍ରନାଥ ଟାଗୋର ନୋବେଲ୍ ପୁରସ୍କାର ପାଇବା ପରେ ୧୯୪୫ ମସିହାରେ ଚିଲିର ଲେଖକ ଗାବ୍ରିଏଲା, ୧୯୬୭ ମସିହାରେ ଗୁଆଟାମେଲାର ନିଗୁଏଲ୍ ଆଷ୍ଟୁରିଅସ୍, ୧୯୭୧ ମସିହାରେ ଚିଲିର କବି ପାବୁଲୋ ନେରୁଦା ଓ ୧୯୮୨ ମସିହାରେ କଲମ୍ବିଆର ଔପନ୍ୟାସିକ ଗାବ୍ରିଏଲା ଗାର୍ସିଆ ମାର୍କୁଇଜ୍ ନୋବେଲ୍ ପୁରସ୍କାର ପାଇଥିଲେ। ଏମାନଙ୍କ ମଧ୍ୟରେ କେବଳ ଟାଗୋରଙ୍କ ବ୍ୟତୀତ ଅନ୍ୟମାନେ ପାଶ୍ଚାତ୍ୟ ସାହିତ୍ୟର ପ୍ରବାହଠାରୁ ବିଚ୍ଛିନ୍ନ ନଥିଲେ। ବସ୍ତୁତଃ ସୋୟିଙ୍କାଙ୍କ ସବୁ କୃତି ଇଂରାଜୀ ଭାଷାରେ ହିଁ ଲିଖିତ। ଏମାନଙ୍କ ସାହିତ୍ୟ କୃତିରେ ପାଶ୍ଚାତ୍ୟ ସାହିତ୍ୟର ମୂଲ୍ୟବୋଧ ଓ ନାନ୍ଦନିକତା ବେଶ୍ ଲକ୍ଷଣୀୟ ଭାବରେ ସୁସ୍ପଷ୍ଟ। ସେହି ଦୃଷ୍ଟିରୁ ଏବର୍ଷ ନାଇଜେରିଆର ନାଟ୍ୟକାର ସୋୟିଙ୍କାଙ୍କର ନୋବେଲ୍ ପୁରସ୍କାର ପ୍ରାପ୍ତି ଏକ ଉଲ୍ଲେଖଯୋଗ୍ୟ ଘଟଣା।

କିନ୍ତୁ ତୃତୀୟ ବିଶ୍ୱର ଆତ୍ମାକୁ କବଳିତ କରିବାପାଇଁ ଏବେ ଦୁଇ ବୃହତ୍ ଶକ୍ତିଗୋଷ୍ଠୀଙ୍କ ମଧ୍ୟରେ ଅନୁଚ୍ଚାରିତ ସଂଘର୍ଷ ଚାଲିଥିବାବେଳେ, ଏଥିରେ ସାହିତ୍ୟକୃତିର ଅନାସକ୍ତ

ମୂଲ୍ୟାଙ୍କନ ଅପେକ୍ଷା ଆନ୍ତର୍ଜାତିକ କୂଟନୀତିର ପ୍ରଭାବ କେଉଁ ପରିମାଣରେ ରହିଛି ତାହା କହିବା ଅବଶ୍ୟ କଠିନ। ତଥାପି ସୋୟିଙ୍କାଙ୍କ ନୋବେଲ୍ ପୁରସ୍କାରପ୍ରାପ୍ତି ଏ ପର୍ଯ୍ୟନ୍ତ କୌଣସି ବାଦ ବିସମ୍ବାଦ ସୃଷ୍ଟି କରିନାହିଁ।

ବସ୍ତୁତଃ ୧୯୦୧ ମସିହାରେ ନୋବେଲ୍ ପୁରସ୍କାର ସ୍ଥାପିତ ହେବା ଦିନୁ ସାହିତ୍ୟପାଇଁ ସବୁ ପୁରସ୍କାର ନିଷ୍ପକ୍ଷ ଭାବରେ ସାହିତ୍ୟକୃତିର ଯଥାର୍ଥ ମୂଲ୍ୟାଙ୍କନ ପରେ ଯେ ଦିଆଯାଉଛି, ତାହା କଦାପି କହିହେବ ନାହିଁ। ସେପରି ହୋଇଥିଲେ ଟଲଷ୍ଟୟ, ଗର୍କୀ ଓ ଇବ୍‌ସେନ୍ ପ୍ରମୁଖ ବହୁ ପ୍ରଥିତଯଶା ଲେଖକ ନୋବେଲ୍ ପୁରସ୍କାର ପ୍ରାପ୍ତିରୁ କଦାପି ବଞ୍ଚିତ ହୋଇନଥାନ୍ତେ। ଅପରପକ୍ଷରେ ଚଳିତ ଶତାବ୍ଦୀର ପଞ୍ଚମ ଦଶକରେ ବୋରିସ୍ ପାଷ୍ଟରନାକ୍ ଓ ୧୯୮୩ ମସିହାରେ ଉଇଲିୟମ୍ ଗୋଲ୍‌ଡିଙ୍ଗ୍‌ଙ୍କର ନୋବେଲ୍ ପୁରସ୍କାର ପ୍ରାପ୍ତି ଘେନି ଏତେ ବିତର୍କ ବିସମ୍ବାଦ ସୃଷ୍ଟି ହୋଇନଥାନ୍ତା। ପାଷ୍ଟରନାକ୍‌ଙ୍କର ଉପନ୍ୟାସ 'ଡକ୍ଟର ଜିଭାଗୋ' ଏକ ଉଲ୍ଲେଖଯୋଗ୍ୟ ସୃଷ୍ଟି ନିଶ୍ଚୟ। ମାତ୍ର ସେ ସୋଭିଏତ୍ ରାଷ୍ଟ୍ରର ଜଣେ ଭିନ୍ନ ମତବାଦୀ ଲେଖକ ହୋଇନଥିଲେ, ଏହି ଉପନ୍ୟାସଟିପାଇଁ ତାଙ୍କୁ ନୋବେଲ୍ ପୁରସ୍କାର ମିଳିଥାଆନ୍ତା କି ନାହିଁ ସନ୍ଦେହ। ଆଉ ଗୋଲ୍‌ଡିଙ୍ଗ୍ ଯେଉଁ ଉପନ୍ୟାସଟି ପାଇଁ ନୋବେଲ୍ ପୁରସ୍କାର ପାଇଲେ, ତାହା ଅନ୍ୟ ଏକ ଉପନ୍ୟାସର ବିଶୁଦ୍ଧ ଅନୁକରଣ ବୋଲି ସାହିତ୍ୟିକ ମହଲରେ ସେତେବେଳେ ଯେପରି ସମାଲୋଚିତ ହୋଇଥିଲା, ସେ କଥା ଏ ସଂପର୍କରେ ସ୍ମରଣ କରାଯାଇପାରେ। ସେହିପରି ସୋଭିଏତ୍ ଔପନ୍ୟାସିକ ସୋଲ୍‌ଝୀନ୍‌ସ୍କିନ୍‌ଙ୍କର ନୋବେଲ୍ ପୁରସ୍କାର ପ୍ରାପ୍ତି ମଧ୍ୟ ରାଜନୈତିକ ଉଦ୍ଦେଶ୍ୟଦ୍ୱାରା ଅନୁପ୍ରେରିତ ଥିଲା। ସବୁ ମର୍ଯ୍ୟାଦାବନ୍ତ ପୁରସ୍କାରର ନେପଥ୍ୟରେ ଦାତାମାନଙ୍କର ସ୍ୱାର୍ଥ, ବୁଦ୍ଧି ଓ ବିଚାର ଯେ କାର୍ଯ୍ୟ କରିନଥାଏ, ତାହା କଦାପି ଅସ୍ୱୀକାର କରିହେବ ନାହିଁ। ଏହା କେବଳ ନୋବେଲ୍ ପୁରସ୍କାର କାହିଁକି, ସବୁ ସାହିତ୍ୟିକ ପୁରସ୍କାର ସଂପର୍କରେ ପ୍ରଯୁଜ୍ୟ। ଯଦ୍ୟପି ଏଥିରେ ବ୍ୟତିକ୍ରମ ମଧ୍ୟ ରହିଛି। ଭାରତରେ ଜ୍ଞାନପୀଠ ପୁରସ୍କାର ଏ ନିୟମରୁ ଯେ ବହିର୍ଭୂତ ତାହା ଜ୍ଞାନପୀଠର ପ୍ରତିଷ୍ଠାତାମାନେ କଦାପି ହଲପ କରି କହିପାରିବେ ନାହିଁ। ଏହି ପୃଷ୍ଠଭୂମିରେ ତେଣୁ ନାଇଜେରିଆର ନାଟ୍ୟକାର ସୋୟିଙ୍କାଙ୍କର ନୋବେଲ୍ ପୁରସ୍କାର ପ୍ରାପ୍ତି ନିଶ୍ଚୟ ଏକ ଉଲ୍ଲେଖଯୋଗ୍ୟ ଘଟଣା।

ନାଇଜେରିଆର ପଶ୍ଚିମାଞ୍ଚଳରେ ୟୋରୁବା ଜାତିଗୋଷ୍ଠୀ ବା ଏଥିନିକ୍ ଗ୍ରୁପ୍‌ରେ ସୋୟିଙ୍କା ୧୯୩୪ ମସିହାରେ ଜନ୍ମଗ୍ରହଣ କରିଥିଲେ। ସେ କେତେଖଣ୍ଡ ଉପନ୍ୟାସର ପ୍ରଣେତା ଥିଲେ ହେଁ ମୁଖ୍ୟତଃ ନାଟ୍ୟକାର ଭାବରେ ହିଁ ପରିଚିତ। ସ୍ୱିଡ଼ିସ୍ ଅକାଦେମୀରେ ପ୍ରଶସ୍ତିପତ୍ରରେ ତାଙ୍କୁ ଇଂରାଜୀ ସାହିତ୍ୟରେ 'ଶ୍ରେଷ୍ଠ କାବ୍ୟଧର୍ମୀ ନାଟକର ଅନ୍ୟତମ ଲେଖକ' ରୂପେ ଅଭିହିତ କରାଯାଇଅଛି।

ଭାରତୀୟ ସାହିତ୍ୟରେ ବା ଭାରତର ବିଭିନ୍ନ ପ୍ରାନ୍ତୀୟ ସାହିତ୍ୟରେ ନାଇଜେରିଆର ସୋୟିଙ୍କାଙ୍କ ତୁଲ୍ୟ କୌଣସି କବି ନାଟ୍ୟକାର ବା ଔପନ୍ୟାସିକ ଯେ କିଛି ଲେଖୁନାହାନ୍ତି ବା ଲେଖିପାରୁ ନାହାନ୍ତି, ତାହା ଆଦୌ ନୁହେଁ। କିନ୍ତୁ ସେସବୁ ଅନୁବାଦ ମାଧ୍ୟମରେ ପାଶ୍ଚାତ୍ୟ ସାହିତ୍ୟର ମୂଳସ୍ରୋତ ସହିତ ମିଶିପାରୁନାହିଁ। ସେଥିପାଇଁ ପ୍ରେମ୍‌ଚନ୍ଦ ଓ ଶରତଚନ୍ଦ୍ରଙ୍କ ପରି ଔପନ୍ୟାସିକମାନେ ନୋବେଲ୍ ପୁରସ୍କାର ପ୍ରାପ୍ତିରୁ ବଞ୍ଚିତ ରହିଛନ୍ତି। ପାଶ୍ଚାତ୍ୟ ସାହିତ୍ୟର ମୂଳସ୍ରୋତରେ ଥାଇ ସୁଦ୍ଧା, ଏଥରକ ଭାରତୀୟ ଔପନ୍ୟାସିକ ଆର୍.କେ.ନାରାୟଣ ନୋବେଲ୍ ପୁରସ୍କାର ପାଇପାରିଲେ ନାହିଁ। ନାରାୟଣଙ୍କ ଉପନ୍ୟାସସବୁ ଲଘୁଧର୍ମୀ ହୋଇପାରେ ମାତ୍ର ସେସବୁ ଇଂରାଜୀଭାଷୀ ଜଗତରେ ଯେ ଖୁବ୍ ଆଦୃତ ସେଥିରେ ସନ୍ଦେହ ନାହିଁ। ତାଙ୍କର ନାମ ଏଥର ନୋବେଲ୍ ପୁରସ୍କାରର ସାମ୍ଭାବ୍ୟ ତାଲିକାରେ ରହିଥିଲା। ମାତ୍ର ଆଫ୍ରିକା ପ୍ରତି ସ୍ୱିଡ଼ିସ୍ ଅକାଦେମୀର ଶୁଭଦୃଷ୍ଟି ପଡ଼ିବାରୁ ଶେଷମୁହୂର୍ତ୍ତରେ ସେ ବୋଧହୁଏ ନୋବେଲ୍ ପୁରସ୍କାର ପ୍ରାପ୍ତିରୁ ବଞ୍ଚିତ ରହିଗଲେ।

ଏହି ପୃଷ୍ଠଭୂମିରେ ଶ୍ରେଷ୍ଠ ସାହିତ୍ୟକୃତି ସହିତ ନୋବେଲ୍ ପୁରସ୍କାରର କୌଣସି ସଂପର୍କ ନାହିଁ। ନୋବେଲ୍ ଶାନ୍ତି ପୁରସ୍କାର ଏହାର ଶ୍ରେଷ୍ଠ ଉଦାହରଣ। ଅହିଂସା ଓ ଶାନ୍ତିର ପ୍ରତୀକ ମହାତ୍ମାଗାନ୍ଧୀ ବା ବିଶ୍ୱମୈତ୍ରୀର ବଳିଷ୍ଠ ପ୍ରବକ୍ତା ପଣ୍ଡିତ ଜବାହରଲାଲ୍ ନେହରୁ ନୋବେଲ୍ ଶାନ୍ତି ପୁରସ୍କାର ପାଇପାରିଲେ ନାହିଁ। କିନ୍ତୁ ଏହା ସୁଲଭ ହେଲା ଆମେରିକାର କୂଟନୀତିଜ୍ଞ କିସିଞ୍ଜରଙ୍କପାଇଁ।

ପୁରସ୍କାର ମଧ୍ୟରେ ସାହିତ୍ୟକୃତିର ଯଥାର୍ଥ ମୂଲ୍ୟାଙ୍କନ ଆଦୌ ନାହିଁ। ପୁରସ୍କାରପ୍ରାପ୍ତି ଏକ ଆକସ୍ମିକ ବ୍ୟାପାର। ପାଠକମାନଙ୍କର ସ୍ୱତଃସ୍ଫୂର୍ତ୍ତ ଶ୍ରଦ୍ଧା ହେଉଛି ଲେଖକର ଶ୍ରେଷ୍ଠ ଜୟମାଲ୍ୟ।

୩୦/୧୦/୮୬

# ଦୀପାବଳିର ଅନ୍ଧକାର

ଏ ବର୍ଷ ଶୀତରତୁ କାର୍ତ୍ତିକ ଆରମ୍ଭରେ ଦିନେ ସକାଳେ ଅକସ୍ମାତ୍ ଆସିଲା, ଛଳନାମୟୀ ରୂପେ, କୁହୁଡ଼ିର ଅବଗୁଣ୍ଠନ ଟାଣି। ଦକ୍ଷିଣାର ଦାକ୍ଷିଣ୍ୟ ଆଉ ନାହିଁ। ଏ ସକାଳ ପବନରେ ହଠାତ୍ ହୈମନ୍ତିକାର ତୁଷାରସ୍ପର୍ଶ। ଆମେସବୁ ଗତବର୍ଷର ସ୍ୱେଟର, ସ୍କାର୍ଫ ଖୋଜି ବସିଲୁ ! ଶୀତଦିନିଆ ପରିବା, ମାର୍କେଟ୍‌ରୁ ଆଣିବାପାଇଁ ବରାଦ ଦେଲୁ କିନ୍ତୁ ଛୋଟ ଫୁଟକୋବିର ଦାମ୍ ଆପଲ୍ ବା ଗୋଲାପଠାରୁ ସୁଦ୍ଧା ବେଶି। ଫୁଲକୋବିସବୁ ଏତେ ଛୋଟ ଯେ ଫୁଲଦାନିରେ ରଖି ସେଥିରେ ଚମତ୍କାର ଘର ସଜାଇ ହେବ। ମନକୁ ମନ ସାନ୍ତ୍ୱନାଦେଲୁ, ଇଏ ଏକବିଂଶ ଶତାବ୍ଦୀ ଆଡ଼କୁ ଯିବାର ମାସୁଲ୍ !

କିନ୍ତୁ ସ୍ୱେଟର, ସ୍କାର୍ଫ ଖରାରେ ଶୁଖି ପୁଣି ବାକ୍‌ସରେ ରହିଲା। ସେସବୁର ପ୍ରୟୋଜନ ଆଉ ପଡ଼ିଲା ନାହିଁ। ହଠାତ୍ କୁହୁଡ଼ିର ଅବଗୁଣ୍ଠନ ଗଲା କୁଆଡ଼େ ! ଗଛଗୁଡ଼ିକର ଚୂଡ଼ାରେ ସକାଳଖରା ଆଉଟାସୁନା ପରି ଆଉ ବିଛି ହୋଇ ପଡୁନାହିଁ। ଶାଣଦିଆ ଛୁରୀ ପରି ଚିକ୍‌ଚିକ୍ କରୁଛି, ଆଶ୍ୱିନର ସେଇ ଆର୍ଦ୍ର ଉତ୍ତାପ ! ମଲା ବାଦୁଡ଼ି ଡେଣା ପରି ନିଶ୍ଚଳ ହୋଇ ଛାତରୁ ଝୁଲୁଥିବା ପଙ୍ଖାସବୁ ପୁଣି ଚେଇଁ ଉଠିଲେ !

ଦୁଇ ତିନି ଦିନ ପରେ, ଆକାଶର ଚେହେରା ବଦଳିଗଲା। ନୀଳ ଆକାଶରେ ହଠାତ୍ ଭେଳା ଭେଳା ପାଉଁଶିଆ ମେଘ। ହୈମନ୍ତିକାର ଇଏ କି ବିଚିତ୍ର ଛଳନା। କୁହୁଡ଼ିର ଓଢ଼ଣା ଫିଙ୍ଗି ଆକାଶ, ଧାରା ଶ୍ରାବଣର ଲୁହରେ ଆଖି ଛଳଛଳ କଲାଣି।

କାଗଜରେ ପଢ଼ିଲୁ ଆଣ୍ଡାମାନ ଆଉ ତାମିଲନାଡୁର ନଡ଼ିଆମାଳ ଆଉ ଆନ୍ଧ୍ର ଉପକୂଳର ତାଳବଣ ଉପରେ ଝଡ଼ର ଦାମ୍‌ସା ବଜାଇ, ଆସୁଛି ଉତ୍ତରପୂର୍ବ ମୌସୁମୀ ! ଏଠି ପବନର ପତ୍ର ମର୍ମରରେ, ଆମେ ମଧ୍ୟ ଶୁଣିଲୁ ମୌସୁମୀର ସୁସୁରୀ।

ତାରି ଭିତରେ ଲାଗିଗଲାଣି, ଦୀପାବଳିପାଇଁ ପ୍ରସ୍ତୁତି। ଘରର କାନ୍ଥ ସବୁ ରଙ୍ଗ ହେଉଛି। ଏଇ ରଙ୍ଗବୋଳାରେ ଠିକାଦାର କିନ୍ତୁ କାନ୍ଥରେ ଯେତେ ରଙ୍ଗ ବୋଳିଲା ନାହିଁ,

ସେତେ ବେଶି ନିଜ ପକେଟ୍‌କୁ କଳା ରଙ୍ଗିନ୍। ଠିକାଦାର୍ ଆଡ଼େ ଚାହିଁ, ଭାବିଲି ଏ ପର୍‌ସେଣ୍ଟେଜ୍ ଯୁଗରେ, କାନ୍ଥ ସବୁ ଆଉ କେତେ ବା ରଙ୍ଗିନ ହୋଇପାରନ୍ତା ?

ମହାଉତ୍ସାହରେ ଦୀପାବଳୀ ବାଣ କିଣା ଚାଲିଲା। ରାସ୍ତାରେ ମୁଣ୍ଡବୋଝିଆ ଲୋକଟିଏ, 'ନବ ଦୀପାଳି' ବିଚିତ୍ର ରାଗିଣୀରେ ଡାକିଡାକି, ଦୀପାବଳି ବିକ୍ରିକରି ବାହାରିଲା, ଆମେ କିନ୍ତୁ ବଜାରରେ ମୁଦ୍ରାସ୍ଫୀତି ନ ବଢ଼ାଇବା ପାଇଁ, ଗତବର୍ଷର ଦୀପସବୁ ଖୋଜିଲୋଡ଼ି, ସଜାଇ ରଖିଲୁ।

ଦୀପାବଳି ସନ୍ଧ୍ୟାପାଇଁ କେବଳ ଅପେକ୍ଷା। ମେଘୁଆ ଆକାଶ ତଳେ, ଦିନ କେତେବେଳେ ବୁଡ଼ିଲା ଆଉ ସନ୍ଧ୍ୟା ଆସିଲା ଜଣାପଡ଼ିଲା ନାହିଁ। ବର୍ଷାଧାର, ଲତାପତ୍ରମାନଙ୍କ ଉପରେ ଝରିପଡୁଛି, ଶ୍ରାବଣର ବୃଷ୍ଟିଧାରା ପରି। ତଥାପି, ଦୂରରୁ ଶୁଭିଲାଣି, ଦୀପାବଳି ବାଣର ଆବାଜ୍।

ଆମେ ଦୀପସବୁ ଜଳାଇଲୁ। କିନ୍ତୁ ମୌସୁମୀ ଝଡ଼ର ଆଘାତରେ ଦୀପଶିଖା ସବୁ ଥରିଥରି ଜଳିବା ମାତ୍ରେ ଗୋଟି ଗୋଟି ହୋଇ ଲିଭିଗଲା। ଆମେ ବୁଝିପାରିଲୁ ନାହିଁ, ପବନକୁ କେହି ଅଟକାଇ ପାରିନାହିଁ, ଆମେ ମଧ୍ୟ ପାରିବୁ ନାହିଁ। ବହୁ ଚେଷ୍ଟା ପରେ ଦୀପାବଳି ଲଗାଇବା ବୃଥା ଚେଷ୍ଟା ଭାବି, ଛାଡ଼ିଦେଲୁ।

ନିଷ୍ପ୍ରଭ ଦୀପାବଳି।

ଇଲେକ୍‌ଟ୍ରିକ୍ ଆଲୁଅସବୁ ଅବଶ୍ୟ ଜଳୁଛି। କିନ୍ତୁ ମୋର ମନେହେଲା, ସେ ଆଲୁଅସବୁ ଦୀପାବଳି ସନ୍ଧ୍ୟାର ଅନ୍ଧକାର ତ ଦୂରକଲା ନାହିଁ। ବରଂ ଚେତାଇଦେଲା ଦୀପାବଳି ସନ୍ଧ୍ୟାର ଅନ୍ଧକାର ପ୍ରକୃତରେ କେତେ ଗଭୀର, କେତେ ନିବିଡ଼, କେତେ ନିରୁତ୍ସବ।

ମୋର ମନେହେଲା ଡିକ୍ଟେଟର, ରାଷ୍ଟ୍ରପତି, ପ୍ରଧାନମନ୍ତ୍ରୀ, ଜେନେରାଲ୍‌ମାନେ ଆମ ଆଖିକୁ ମୁହୂର୍ତ୍ତକପାଇଁ ଝଲାସାଇ ଦେଇଥାନ୍ତି ସିନା, ନୋହିଲେ, ଜୀବନକୁ ଉଜ୍ଜ୍ୱଳ କରିଥାଆନ୍ତି ସାନ ସାନ ମଣିଷମାନଙ୍କର ନିର୍ମଳ ହୃଦୟ।

୦୬/୧୧/୮୬

# ରଙ୍ଗ୍ ନମ୍ବର

ଆଜକୁ ଅଢ଼େଇ ବର୍ଷ ତଳେ, ଯେଉଁଦିନ ଏକ ମେଘମଳିନ ଅପରାହ୍ଣରେ ମୁଁ ଏଠାରେ ଏଇ ଘରେ ରହିବାପାଇଁ ଆସିଲି; ସେଦିନ ସେଇ କଙ୍କରିଳ ଗୁଳ୍ମାକୀର୍ଣ୍ଣ ପରିବେଶରେ ଯାହା ସହିତ ମୋର ପ୍ରଥମ ସାକ୍ଷାତ୍ ହେଲା, ସିଏ ଏକ ପାଗଳୀ। ମଧ୍ୟବୟସ୍କା ସ୍ତ୍ରୀ ଲୋକଟିଏ। ପିନ୍ଧିଥିଲା ଖଣ୍ଡେ ଛିଣ୍ଡା, ମଇଳା ଶାଢ଼ି। ତଥାପି ପିନ୍ଧିବାର କାୟଦାରେ ଥଲା ଏକ ପରିଚ୍ଛନ୍ନତା। ଚେହେରାରେ ଦାରିଦ୍ର୍ୟ ଓ କ୍ଷୁଧାର ଛାପ। ମାଳୀ ପାଟିକଲା, "ପଳା, ପଳା, ପାଗଳୀଟାଏ।"

ସେ କିନ୍ତୁ ଗଲା ନାହିଁ। ବାରଣ୍ଡା ତଳକୁ ଆସି କପାଳରେ ଦୁଇ ଶିରାଳ ହାତପାପୁଲି ଯୋଡ଼ି, ଆକାଶକୁ ଚାହିଁ, ଢେର୍ ବେଳଯାଏ ମନକୁ ମନ କଣ ବିଡ଼୍‌ବିଡ଼୍ ହେଲା। ମୁଁ ତାଆଡ଼େ ଖଣ୍ଡେ ଟଙ୍କିକିଆ ନୋଟ୍ ବଢ଼େଇ ଦେଇ କହିଲି, "ଯା, ପଳା, ଏଥର !"

ସେ କିନ୍ତୁ ଟଙ୍କା ନେଲା ନାହିଁ। କହିଲା, "ମୋ ପୁଅ ରାଉରକେଲାରେ ବାଙ୍କ୍ ଅଫିସର। ବାଙ୍କ୍‌ବାଲା ତାକୁ ମୋ ପାଖକୁ ଛାଡୁନାହାନ୍ତି। ଅଟକାଇ ରଖିଛନ୍ତି। ତମେ ବାଙ୍କ୍‌ବାଲାକୁ କୁହ। ସିଏ ତାକୁ ଛାଡ଼ିଦେବ। ମୋର ଖାଇବାକୁ ପଇସା ନାହିଁ। ରହିବାକୁ ଜାଗା ନାହିଁ।" ପ୍ରକୃତରେ ପାଗଳୀଟାଏ। ପାଗଳମାନଙ୍କର ମୋ ପ୍ରତି ଅହେତୁକ ଆକର୍ଷଣର କାରଣ ଏ ପର୍ଯ୍ୟନ୍ତ ବୁଝି ପାରିଲି ନାହିଁ। "ଏଠି ଏତେ ଏମ୍.ଏଲ୍.ଏ. ଏତେ ହାକିମ, ମନ୍ତ୍ରୀ ଅଛନ୍ତି। ସେମାନଙ୍କୁ ଯାଇଁ କହ। ମୋ କଥା କିଏ ଶୁଣିବ ?" ମୁଁ ତାକୁ ପରାମର୍ଶ ଦେଲି; ସିଏ ଯେପରି ଜଣେ ପ୍ରକୃତିସ୍ଥ ମଣିଷ ! ପାଗଳୀ କହିଲା, "ସମସ୍ତଙ୍କୁ କହିଲିଣି କେହି ମୋ କଥା ଶୁଣୁନାହାନ୍ତି।" ମୁଁ କହିଲି, "ମୁଖ୍ୟମନ୍ତ୍ରୀଙ୍କ ଦରବାରକୁ ଯାଉନୁ।" "ପୁଲିସ୍ ଛାଡୁନାହିଁ। ହେଇ ସେଦିନ ଯାଇଥିଲି ଯେ, ପୁଲିସ୍ ତଡ଼ିଦେଲା।" ପାଗଳୀ କେତେଜଣ ଜଣାଶୁଣା ଏମ୍.ଏଲ୍.ଏ. ହାକିମ ଆଉ ମନ୍ତ୍ରୀଙ୍କ ନାଁ ବି କହିଲା। ଆଶ୍ଚର୍ଯ୍ୟ ହେଲି, ପାଗଳୀ ସମସ୍ତଙ୍କୁ ଜାଣିଛି।

ଆଉଦିନେ ସକାଳେ ପାଗଳୀ ଆସିଲା। ବାରନ୍ଦାରେ ମୁଁ ବସିଥିବା ଦେଖି ମୋ ପାଖକୁ ଆସି କହିଲା, "ବାଙ୍କ୍‌ବାଲା ସମସ୍ତଙ୍କୁ ଟଙ୍କା ଲାଞ୍ଚ ଦେଇ ଅକ୍ତିଆର କରିନେଲାଣି। ତୁମେ ବିଶ୍ୱମ୍ଭର ପାଣ୍ଡେ, ରାଜ୍ୟପାଳଙ୍କୁ କୁହ। ତା' କଥା ବାଙ୍କ୍‌ବାଲା ଶୁଣିବ।" ମୁଁ ଭଲ ମୁଡ୍‌ରେ ନଥିଲି। କହିଲି, "ତୁ ପଳା ଏଠୁ ! ମୁଁ ରାଜ୍ୟପାଳଙ୍କଠାରେ କହିବି।" ମୋର କଣ୍ଠସ୍ୱରରୁ ତୀକ୍ଷ୍ଣତାରୁ ସେ ମୋ ମୁଡ୍ ବୁଝିପାରି, ସେଠୁ ଚାଲିଗଲା। କିନ୍ତୁ ତା'ପରଠାରୁ ସେ ପ୍ରାୟ ପ୍ରତିଦିନ ମୋ ପାଖକୁ ଆସିବା ଆରମ୍ଭ କରିଦେଲା ସେଇ ଏକ ଅନୁଯୋଗ ଘେନି- "ମୋ ପୁଅକୁ ରାଉରକେଲାର ବାଙ୍କ୍‌ବାଲା ଛାଡୁନାହିଁ। ଅଟକାଇ ରଖିଛି। ମତେ ସେମାନେ ଆଉ ରଖିବାପାଇଁ ଜାଗା ଦଉ ନାହାନ୍ତି। ମାରି ଗୋଡ଼ାଉଛନ୍ତି !" କାହା ପିଣ୍ଡା ପାଗଳୀର ଆଶ୍ରୟସ୍ଥଳ ପରା। ଆଚ୍ଛା ପାଗଳୀ ହାବୁଡ଼ରେ ପଡ଼ିଲି।

ଦିନେ ବାରନ୍ଦାରେ ଏକୁଟିଆ ବସିଛି। ପାଗଳୀ ସିଧା ମୋ ପାଖକୁ ଆସି କହିଲା, "ତୁମେ, ରାଜୀବ ଗାନ୍ଧୀଙ୍କୁ କୁହ। ସିଏ ପଦେ କହିଲେ, ବାଙ୍କବାଲା ମୋ ପୁଅକୁ ମଟରରେ ବସାଇ ମୋ ପାଖରେ ଆଣି ଛାଡ଼ିଦେବେ।" ଆଶ୍ଚର୍ଯ୍ୟ ! ପାଗଳୀ ପ୍ରଧାନମନ୍ତ୍ରୀ ରାଜୀବ ଗାନ୍ଧୀଙ୍କ ନାଆଁ ସୁଦ୍ଧା ଜାଣିଛି। ପାଗଳୀ କହିଲା, "ସିଏ ଗରିବଗୁରୁବାଙ୍କ କଥା ବୁଝନ୍ତି।" ମୁଁ କହିଲି, "ତୁ ଯା ! ମୁଁ ପରେ କହିବି !"

ପାଗଳୀ ମୋ ଆଡ଼େ ଆଶାପୂର୍ଣ୍ଣ ଦୃଷ୍ଟିରେ ଅନାଇଁ ସେମିତି ଠିଆହୋଇ ରହିଲା। ମୋର ମନେହେଲା, ଆମେ ସମସ୍ତେ ଏଇପରି ପାଗଳ- କିଏ କ୍ଷମତାପାଇଁ, କିଏ ବା ଧନ ପାଇଁ, କିଏ ବା ମାନପାଇଁ। ଆମେ ଜାଣିଛୁ, ଯେଉଁଥିପାଇଁ ବାରଦ୍ୱାର ବୁଲୁଛୁ, ସେ ସବୁ ହାତ ପାଆନ୍ତାର ବାହାରେ। ରାଉରକେଲା ବାଙ୍କ୍‌ରେ ପୁଅ ପାଗଳୀର ଏକ ମାନସିକ ବିକୃତି। ତଥାପି ଗଭୀର ପ୍ରତ୍ୟୟରେ ସେ ସେଇ କଥାକୁ ବିଶ୍ୱାସ କରି, ଏଇ କଙ୍କରିଳ ନିର୍ଦ୍ଦୟ ସହରରେ ପୁଅର ଫେରିବାକୁ ପ୍ରତୀକ୍ଷା କରି ପଡ଼ିଛି। ବୋଧହୁଏ ବଞ୍ଚିବାଟା ହେଉଛି ଏହିପରି ଏକ ପାଗଳାମୀ। ବଞ୍ଚିବାକୁ ହେଲେ ଏଇପରି ହାତପାଆନ୍ତାରୁ ବହୁ ଦୂରରେ, ଗୋଟିଏ କଥାରେ ବିଶ୍ୱାସ କରି, ସେଇ ଆଶାରେ ବଞ୍ଚି ରହିବାପାଇଁ ପଡ଼ିବ। ପାଗଳୀକୁ କହିଲି, "ତୁ ବର୍ତ୍ତମାନ ପଳା। ମୋର ଗୋଟିଏ ଟେଲିଫୋନ୍ କରିବାର ଅଛି।" ଗୋଟିଏ ନମ୍ବର ଡାଏଲ୍ କଲି। ପାଗଳୀ ଭାବିଲା, ମୁଁ ରାଜୀବଗାନ୍ଧୀଙ୍କୁ ଟେଲିଫୋନ୍ କରୁଛି। ସେ ପାଖରୁ ବଡ଼ପାଟିରେ ଶୁଭିଲା "ରଙ୍ଗ୍ ନମ୍ବର"। କଣ୍ଠସ୍ୱରରେ ପ୍ରବଳ ବିରକ୍ତି। ଟେଲିଫୋନ୍ ଯନ୍ତ୍ରଟି ଏବେ ଅନେକଙ୍କୁ ପ୍ରକୃତରେ ଏଇପରି ଚିଡ଼ିଚିଡ଼ା କରିଦେଲାଣି।

ପାଗଳୀ ପଚାରିଲା, "ରାଜୀବ ଗାନ୍ଧୀ କ'ଣ କହିଲେ ?"

ମୁଁ ଚିଡ଼ିଉଠି ଉତ୍ତରଦେଲି- "ରଙ୍ଗ୍ ନମ୍ବର !"

ପାଗଳୀ କ'ଣ ବୁଝିଲା କେଜାଣି, ସେଠାରୁ ନିରବରେ ଚାଲିଗଲା। କିନ୍ତୁ ସିଏ ଏବେ ସୁଦ୍ଧା ଅଧିକାଂଶ ଦିନ ସକାଳେ ମୋ ପାଖକୁ ଆସୁଛି। ସେଇ ଏକା ଅନୁଯୋଗ ଘେନି... "ମୋ ପୁଅକୁ ବାଙ୍କ୍‌ବାଲା ଅଟକ ରଖିଛି। ଛାଡ଼ୁ ନାହିଁ।" ଆଜି ମଧ୍ୟ ସେ ଆସିଛି। ଏଇ ଠିଆହୋଇଛି, କାଠଚମ୍ପା ଗଛମୂଳରେ ! ଗୋଟାଏ ମଳିନ ଛାୟାମୂର୍ତ୍ତି ପରି। ଆଜି ମୁଁ ତାକୁ କ'ଣ କହିବି ?

୧୩/୧୧/୮୬

# କାର୍ତ୍ତିକ ମାହାତ୍ମ୍ୟ

ପିଲାଦିନେ କାର୍ତ୍ତିକ ମାସ କେବେ ପୁଣି ଆସିବ ସେଥିପାଇଁ ମୁଁ ବର୍ଷସାରା ବଡ଼ ଆଗ୍ରହରେ ଅପେକ୍ଷା କରୁଥିଲି ଦୁଇଟି କାରଣରୁ- ସକାଳେ ଘାସ ଉପରେ ଶିଶିର ବିନ୍ଦୁ, ଆଉ ଖଞ୍ଜାରେ ଜେଜୀମା ବୁଢ଼ୀମାନଙ୍କର ହବିଷାନ୍ନରୁ ଭାଗ ଲୋଭରେ। ସେହିଦିନୁ ମୋର ଚେତନାରେ କାର୍ତ୍ତିକ ମାସ ସହିତ, ଏ ଦୁଇଟି ବସ୍ତୁ ଅତି ଘନିଷ୍ଠ ଭାବରେ ଜଡ଼ିତ।

ଖଞ୍ଜାରେ ଦୁଇ ତିନୋଟି ବିଧବା ବୁଢ଼ୀ ଥିଲେ- କିଏ ବୁଢ଼ୀ ମା, କିଏ ଜେଜୀ ମା, ଏହିପରି ବର୍ଷସାରା ସେମାନେ ନିସ୍ତେଜ ଭାବରେ, ମାଳୀ ଗଡ଼େଇ ପଡ଼ିଥାଆନ୍ତି। କିନ୍ତୁ କାର୍ତ୍ତିକ ଆସୁ ଦେଖିବ, ସେମାନେ କିପରି ସିଂହ ବିକ୍ରମରେ ମାତି ଉଠିବେ। କୋଉ ସାତ ସକାଳୁ ବାଡ଼ି ପୋଖରୀରେ କାର୍ତ୍ତିକସ୍ନାନ ବଢ଼ାଇ, କପାଳରେ ଚନ୍ଦନଟିପା ଆଙ୍କି, କୌଣସି ଅଳସେଇ ବୋହୂର ପହଡ଼ ଭାଙ୍ଗି ନଥିଲେ, ତା' ଉପରେ କଟର କଟର ହେଇ, ତାର ପିତୃକୁଳ କିପରି ଅସଣ୍ଢଣାରେ ବଢ଼ାଇଛନ୍ତି ବୋଲି କାନ୍ଥକୁ ବାଡ଼କୁ ପଚାରି, ସେମାନେ ଖଞ୍ଜା କମ୍ପାଇ ଦିଅନ୍ତି। ଦିନ ସାରା ନିର୍ଜଳା ଓପାସ। ଖରାବେଳଟା ଗଡ଼ିପଡ଼ିଲେ, ଲାଗିଥାଏ ହବିଷ ରନ୍ଧାର ପ୍ରସ୍ତୁତି। ଖଞ୍ଜାରେ ସମସ୍ତେ ଚୁପ୍‌ଚାପ୍। ପିଲାଏ ସୁଦ୍ଧା ପାଟିଗୋଳ କରିବାକୁ ଲୁ ନାହିଁ। ହବିଷ ମାରା ହୋଇଯିବ।

ଗୋରୁବାହୁଡ଼ା ବେଳେ, ବୁଢ଼ୀମାନେ ଗୋଟିଏ ଗମ୍ଭିରୀ ଘରେ, ଭିତରୁ କବାଟ ବନ୍ଦ କରି, ବସିଥାଆନ୍ତି ହବିଷ ସେବାରେ। ସାରା ଦିନରେ ଏଇ ଗୋଟିଏ ବକ୍ତ ସେମାନଙ୍କର ଆହାର। ହବିଷରେ ବସିଥିବା ବେଳେ ଦାଣ୍ଡରେ ସୁଦ୍ଧା କେହି ପାଟିଗୋଳ କଲେ, ସେମାନେ ହବିଷ ଛାଡ଼ି ଉଠିଯାଆନ୍ତି। କାର୍ତ୍ତିକମାସରେ ମୋର କାର୍ଯ୍ୟ ଥିଲା, ବୁଢ଼ୀମାନେ ହବିଷରେ ବସିଥିବା ବେଳେ, ଦାଣ୍ଡରେ ପିଲାମାନେ ଯେପରି ପାଟିଗୋଳ, ହଇହାଲ୍ଲା ନ କରନ୍ତି, ତାର ତଦାରଖ କରିବା। କାରଣ ଖଞ୍ଜାରେ ପିଲାମାନଙ୍କ ମଧ୍ୟରେ ମୁଁ ଥିଲି ହୁରୁମା ଆଉ ମାରହାତିଆ। ଦାଣ୍ଡରେ ଦୁଇଟା ପିଲା ଧୂଳି ଖେଳୁଥିଲେ। ଖେଳରୁ କଜିଆ ଆରମ୍ଭ

ହୋଇଆସୁଛି। ସେତିକିବେଳେ ମୁଁ ଅନହୁତି ସେମାନଙ୍କ ଉପରେ ଲମ୍ଫଦେଇ, ପାଦରେ ଧୂଳିଘର ଭାଙ୍ଗି ସେମାନଙ୍କ ପିଠିରେ ଦୁଇଟା ଦୁମ୍‌ଦାମ୍ କଷିଦିଏ। ବିଚରାମାନଙ୍କର ପାଟିକରି କାନ୍ଦିବାର ଢୁ ନଥାଏ। ମୁଁ ପାଟିକରେ "ଚୁପ୍, ଜେଜିମାର ହବିଷ।" ବୁଢ଼ୀମାନେ ହବିଷରୁ ଉଠିଲେ ମୋତେ ଆଗ ଡାକ ପଡ଼େ। କଦଳୀପତ୍ରରେ ନାଲି ବଗଡ଼ା ଅରୁଆ ଭାତ, ପୂରା ପଳାଏ ଗୁଆଘିଅ, କମଳାଲେମ୍ବୁ ପାଖୁଡ଼ା, ଓଉଡାଲି, ଆଉ ଶାଗ ଖରଡ଼ା। ଜେଜୀମା ଘିଅ ଢାଳିଲା ବେଳେ, ତା ହାତଟାକୁ ଟିକିଏ ହଲାଇଦେଲେ, ଦିନେ ଦିନେ ଦୁଇ ପଳା ଘିଅ ସୁଦ୍ଧା ଭାତରେ ପଡ଼ିଥାଏ।

ତା'ପରେ ଆସେ ବଡ଼ଓଷା। ବୁଢ଼ୀମାନେ ସାରା ଖଞ୍ଜାଟାକୁ ନିଜ ହାତରେ, ଗୋବରରେ ଲିପନ୍ତି। ହେଁସ, ଗୋଦସୀ, ବିଛଣା, ସିନ୍ଦୁକ ବାକ୍‌ସ ଏପରିକି କୁଲା, ବାଉଁଶିଆ, ନିଜ ହାତରେ ଧୋଇ ଅଥବା ପାଣି ଛିଞ୍ଚି ପବିତ୍ର କରନ୍ତି। ଇଏ ସହଜ ଓଷା ନୁହେଁ। ଭାରୀ କଷ୍ଟ ଦରକାର। ଇଏ ଧବଳେଶ୍ୱରଙ୍କ ବଡ଼ଓଷା। ତା' ପୂର୍ବଦିନ ସନ୍ଧ୍ୟାରେ ହବିଷ ଉପରେ ଚାଲେ ଗଜମଣ୍ଡା ତିଆରିପାଇଁ ପ୍ରସ୍ତୁତି। ଝିଅବୋହୂମାନଙ୍କର ତା' ଭିତରକୁ ପ୍ରବେଶ ନିଷେଧ। ସେମାନଙ୍କପାଇଁ ସିଏ ଏକ ନିଷିଦ୍ଧାଞ୍ଚଳ। ସବୁ ଚୁପ୍‌ଚାପ୍। ଚାଳରେ ମୂଷାଟିଏ ଚାଲିଗଲେ ସୁଦ୍ଧା, ଶୁଣି ହେବ। ସେତେବେଳେ, ମୋ ଉପରେ ଦାୟିତ୍ୱ ଦିଆଯାଏ, ଖଞ୍ଜା ଦୁଆର ଜଗିବା। ରାଉତ ସାଇର ସେ ବୁଢ଼ୀ ଯେପରି ଖଞ୍ଜା ଭିତରକୁ ନଆସେ। ଡାଆଣୀଟାଏ। ତା' ନଜରରେ ପଡ଼ିଲେ ଅଥାରରେ ପିଠା କୁଆଡ଼େ ସିଝେ ନାହିଁ। ସତକୁ ସତ ସଞ୍ଜ ଗଡ଼ିଗଲେ, ଦାଣ୍ଡ ଦୁଆରକୁ ଡାଆଣୀ ବୁଢ଼ୀ ଠିକ୍ ଆସିଥାଏ। ଜହ୍ନ ଆଲୁଅରେ ଦେଖାଯାଏ, ଗୋଟିଏ ଛାୟାମୂର୍ତ୍ତି ପରି। ମୁଁ ତାକୁ ପାହାଚ ଉପରୁ ତଡ଼ିଦିଏ- ପଳା, ପଳା। ଡାଆଣୀ ବୁଢ଼ୀ ଯେପରି ଅସହାୟ ଭାବରେ ଫେରିଯାଏ, ସେଥିରେ ମୋର ମନ ଦୁଃଖ ହୁଏ। ଆଃ ବିଚାରୀ।

ସକାଳେ ଖଞ୍ଜାର ସମସ୍ତେ ଦେଉଳକୁ ଯାଇଥିବା ବେଳେ, ମୁଁ ଅଣ୍ଟିରେ ଗଣ୍ଡାଏ ଛଅଟା ମଣ୍ଡା ପିଠା ପୂରାଇ, ଡାଆଣୀ ବୁଢ଼ୀ ଘରକୁ ଦଉଡ଼ିଯାଏ। "ବୁଢ଼ୀ ପିଣ୍ଡାରେ ବସି ଖରା ପୁଉଁଥାଏ। ବିଚାରୀର କେହି ନାହାନ୍ତି। "କିରେ ଟୋକା, କୁଆଡ଼େ ଆସିଚୁ ?" "ନେ, ପିଠା ଆଣିଛି।" କହି ତା ଲୁଗା କାନିରେ ପିଠା ସବୁ ଓଜାଡ଼ି ଦିଏ। ବୁଢ଼ୀର ଶେତା ଆଖିଦୁଇଟା ପିଠା ଦେଖି ଉଜ୍ଜ୍ୱଳ ହୋଇଉଠେ। ଗୋଟିଏ ପିଠା ସେ ମାଢ଼ିରେ ଚାକୁଳୋଉ ଚାକୁଳୋଉ କହେ, "ତମ ପିଠା ଭଲ ସିଝିଲା ନାହିଁରେ ପୁଅ। ଜନ୍ତୁଣୀ ହେଲା ନାହିଁ।" "ତୁ କ'ଣ ମନ୍ତୁରି ଦେଇଥିବୁ। ତୁ କୁଆଡ଼େ ଡାଆଣୀ।" ମୁଁ ଉତ୍ତରଦିଏ। ବୁଢ଼ୀ ପାକୁଆ ପାଟିରେ ପିଠା ଖାଉଖାଉ କହେ, "ନାଇଁରେ ପୁଅ ମୁଁ ଡାଆଣୀ ନୁହେଁ। କି ମନ୍ତୁରା ଜାଣେ ନାହିଁ।" "ତାହେଲେ ?" ମୁଁ ପଚାରେ। ବୁଢ଼ୀ ଉତ୍ତର ଦିଏ, "ଦୁଃଖୀ, ରଙ୍କୀ, ଭୋକିଲା

ମଣିଷଙ୍କ ନଜର ସେଇଆରେ ପୁଅ। ସେମାନଙ୍କ ଆଖି ପଡ଼ିଲେ; ସବୁ କଇଁଚା ହୋଇଯାଏ। ସବୁ ପୋଡ଼ିଯାଏ। ରାବଣର ଲଙ୍କାପୁରୀକୁ କ'ଣ ହନୁମାନ ପୋଡ଼ିଲା ? ତାକୁ ପୋଡ଼ିଲା ସୀତୟା ଠାକୁରାଣୀଙ୍କ ତତଲା ନିଃଶ୍ୱାସ ?"

ସେଇଦିନୁ ଡାଆଣୀ ବୁଢ଼ୀର ଏଇ କଥାପଦକ ମୋ ପାଇଁ ହୋଇଛି କାର୍ତ୍ତିକ ମାହାତ୍ମ୍ୟ।

୨୦/୧୧/୮୬

# ଜଗନ୍ନାଥଦେଶର ଲୋକ

ସୁଧୀ ପାଠକପାଠିକାମାନେ, ବିଶ୍ୱାସ କରନ୍ତୁ ବା ନକରନ୍ତୁ, ୧୯୫୨ ମସିହାରେ ମୁଁ ଯେତେବେଳେ ପ୍ରଥମେ ନୂଆଦିଲ୍ଲୀକୁ ଆସିଲି, ସେତେବେଳେ ଅନ୍ୟ ସାଧାରଣ ଲୋକେ କାହିଁକି, ଉତ୍ତର ଭାରତର ଅନେକ ଜାଣିବା ଶୁଣିବା ଏମ୍.ପି. ସୁଦ୍ଧା, ଓଡ଼ିଶାର ଭୌଗୋଳିକ ଅବସ୍ଥିତି କେଉଁଠି, ଠିକ୍ ଜାଣିନଥିଲେ ! ମୋର ପ୍ରତିବେଶୀ, ରାଜସ୍ଥାନ ଉଦୟପୁରର ଜଣେ ପ୍ରୌଢ଼ ଏମ୍.ପି. ମୋତେ ଦିନେ ପଚାରିଲେ, "ଓଡ଼ିଶା କେଉଁଠି ?" ମୁଁ ଉତ୍ତର ଦେଲି, "ଅନୁମାନ କରନ୍ତୁ।"

"ବିହାରରେ ?"

"ହେଲା ନାହିଁ।" ମୁଁ ମୁଣ୍ଡ ହଲାଇ ଉତ୍ତର ଦେଲି। "ଆପଣଙ୍କ ଉତ୍ତର ଷୋଳବର୍ଷ ତଳେ ଠିକ୍ ହୋଇଥାଆନ୍ତା !"

"ତା'ହେଲେ ବେଙ୍ଗଲ୍‌ରେ।"

"ବିହାରଠାରୁ ଆପଣ ଆଉରି ୨୪ ବର୍ଷ ପଛେଇଗଲେ।"

"ତା'ହେଲେ, ମଧ୍ୟପ୍ରଦେଶରେ ନିଶ୍ଚୟ।"

ଦେଖିଲି ଭଦ୍ରଲୋକ ଭାରତ ପରିକ୍ରମା କରିବେ, ଓଡ଼ିଶାର ସନ୍ଧାନପାଇଁ ! କିନ୍ତୁ ବିନା ମାନଚିତ୍ରରେ, ଭଦ୍ରଲୋକଙ୍କୁ ଓଡ଼ିଶାର ଅବସ୍ଥିତି ଠିକ୍ ବୁଝାଇପାରିବି କିପରି ?"

ଅବଶେଷରେ କହିଲି, "ଆପଣ ନିଶ୍ଚୟ ପୁରୁଷୋତ୍ତମ ଜଗନ୍ନାଥଙ୍କ ନାମ ଶୁଣିଥିବେ ?" ଭଦ୍ରଲୋକ କୁଟାଗଦାରେ ଛୁଞ୍ଚିଟିକୁ ଅବଶେଷରେ ଖୋଜି ପାଇପାରିଥିବା ସ୍ୱସ୍ତିରେ କହିଲେ "ଓ ! ଆପଣ ତା'ହେଲେ ଜଗନ୍ନାଥ ପୁରୀର ଲୋକ ? ସେଇ କଥା କହୁନାହାନ୍ତି କାହିଁକି ?" ପ୍ରକୃତରେ ସେତେବେଳେ ଦିଲ୍ଲୀରେ ସାଧାରଣ ଲୋକେ ଜଗନ୍ନାଥ ପୁରୀ କହିଲେ ବୁଝୁଥିଲେ ସିନା, ନୋହିଲେ ଓଡ଼ିଶା ସମ୍ପର୍କରେ ସେମାନଙ୍କର କୌଣସି ସ୍ପଷ୍ଟ ଧାରଣା ନଥିଲା। ଓଡ଼ିଶାର ଭାବମୂର୍ତ୍ତି ସେମାନଙ୍କ ଦୃଷ୍ଟିରେ ସେଦିନ ଥିଲା, ଶ୍ରୀଜଗନ୍ନାଥ ଓ ଦାରିଦ୍ର୍ୟ।

ଭଦ୍ରଲୋକ ସହାନୁଭୂତିପୂର୍ଣ୍ଣ କଣ୍ଠରେ ପଚାରିଲେ... "ଓଡ଼ିଶାର ଲୋକେ ଭାରି ଗରିବ୍ ନା ?"

ମୁଁ ଉତ୍ତର ଦେଲି, "ଆପଣଙ୍କ ରାଜସ୍ଥାନ ମରୁଭୂମିର ଲୋକମାନଙ୍କ ତୁଳନାରେ, ସେମାନେ ଟିକିଏ ଅଧିକ ସ୍ୱଚ୍ଛଳ ! ଅନ୍ତତଃ ଜଳକଷ୍ଟ ନାହିଁ !"

ସେହିଦିନୁ ଭଦ୍ରଲୋକଙ୍କ ନଜରରେ ମୁଁ ଟିକିଏ ସମ୍ମାନିତ ଓ ଅର୍ହ ହୋଇଉଠିଲି। ଦିନେ ମୋର ପ୍ରତିବେଶୀ ସେହି ଭଦ୍ରଲୋକଙ୍କ ଘରକୁ ଆଡ଼୍ଡା ଜମାଇବାପାଇଁ ଆସିଛି, ଭଦ୍ରଲୋକ ତାଙ୍କ ସ୍ତ୍ରୀଙ୍କୁ ରାଜସ୍ଥାନୀ ବୋଲିରେ ଡାକ ପକାଇଲେ। କିଛି କ୍ଷଣପରେ, ଅବଗୁଣ୍ଠନବତୀ ତାଙ୍କର ସ୍ତ୍ରୀ, ସଙ୍କୋଚ ଓ ସନ୍ତର୍ପଣରେ ସେଠାକୁ ଆସିଲେ। ଭଦ୍ରଲୋକ ତାଙ୍କୁ କହିଲେ, "ଇଏ ମୋର ବନ୍ଧୁ, ଜଗନ୍ନାଥପୁରୀରୁ ଆସିଛନ୍ତି। ଜଗନ୍ନାଥ ଦେଶର ଲୋକ ଇଏ ! ଭଦ୍ରମହିଳା, ମୁଁ ଜଗନ୍ନାଥପୁରୀର ଲୋକ ଶୁଣିବା ମାତ୍ରେ, ଚଟ୍‌କରି ମୋ ପାଦତଳେ ଭୂମିରେ କପାଳ ଛୁଇଁ ଦଣ୍ଡବତ କଲେ ! ମୁଁ ଆର୍ତ୍ତନାଦ କରି ଉଠିଲି, "ଇଏ କରୁଛନ୍ତି କ'ଣ ?" "ଜଗନ୍ନାଥ ଦେଶର ଲୋକଙ୍କ ପାଦଛୁଇଁ ପ୍ରଣାମ ହେଲେ, ପୁଣ୍ୟ ଅଛି। ଆମ ଆଡ଼େ ସେଇପରି ବିଶ୍ୱାସ।" ତା'ପରେ ମୋ ପାଇଁ ଲଡ୍ଡୁ ଆଣିବାପାଇଁ, ବରାଦ କଲେ।

ସେହିଦିନୁ ମୋପାଇଁ ଆରମ୍ଭ ହୋଇଗଲା ବିପଦ ! ସେଦିନ ମୋର ଆଚରଣ ଓ ଚାଲିଚଳନ ଥିଲା ଅବାରିତ ଓ ସଂସ୍କାରମୁକ୍ତ ! କିନ୍ତୁ ଇଏ ତ ଜଗନ୍ନାଥ ଦେଶର ଲୋକଙ୍କ ଆଚରଣ ହୋଇନପାରେ। ମୁଁ ହୁଏତ ମିଥ୍ୟା ଓ ଏକ ପ୍ରବଞ୍ଚନା ହୋଇପାରେ ! କିନ୍ତୁ ସେହି ଜଗନ୍ନାଥ-ବିଶ୍ୱାସୀ ଭଦ୍ରମହିଳାଙ୍କର ବିଶ୍ୱାସ ତ ଆଉ, ମିଥ୍ୟା ନୁହେଁ ! ସେପରି ନିବିଡ଼, ଛାୟାଘନ ବିଶ୍ୱାସକୁ ଭାଙ୍ଗିଦେଇ, ଲାଭ କ'ଣ ? ସେଥିପାଇଁ ଅନେକଟା ସଂଯତ ହେବାପାଇଁ ପଡ଼ିଲା। ମୁଁ ଚେନ୍-ସ୍ମୋକର। କିନ୍ତୁ ଅନେକ ସମୟରେ ଭଦ୍ରମହିଳାଙ୍କ ଆଖିରେ ନ ପଡ଼ିବାପାଇଁ, ସିଗ୍ରେଟ୍ ଟାଣିବା ସୁଦ୍ଧା ବନ୍ଦ କରିଦେଲି। ଗଞ୍ଜେଇ ଚିଲମ ଧର୍ମ ସହିତ କିଛିଟା ହୁଏତ ଖାପ ଖାଇପାରେ ! କିନ୍ତୁ, ସିଗ୍ରେଟ୍ ନୈବଚ, ନୈବଚ। ଆଉ ଅନ୍ୟ ସବୁ କଥା ଉଠିପାରିବ ବା କିପରି ?

ଶେଷକୁ ଦେଖିଲି, ଭଦ୍ରମହିଳାଙ୍କ ଦୃଷ୍ଟିରେ, ଜଗନ୍ନାଥ ଦେଶର ଲୋକହୋଇ ରହିବାପାଇଁ ହେଲେ, ମୋତେ କନ୍‌ଷ୍ଟିଚ୍ୟୁସନ୍ ହାଉସ୍ ଛାଡ଼ି ଅନ୍ୟତ୍ର ଚାଲି ଯିବାପାଇଁ ପଡ଼ିବ ! ମୁଁ ଦିନେ କନ୍‌ଷ୍ଟିଚ୍ୟୁସନ୍ ହାଉସ୍ ଛାଡ଼ି, ନର୍ଥ- ଆଭିନ୍ୟୁ ଉଠି ଆସିଲି !

୦୪/୧୨/୮୬

# ଘାସ ଲନ୍, ଗୁଣ୍ଡୁଚିମୂଷା ଓ କ୍ୟାପ୍‌ଟେନ୍ ଡେଭିଡ୍

ମୋ ଘର ଆଗରେ ବହୁ ଯତ୍ନରେ ପ୍ରସ୍ତୁତ ଘାସଲନ୍‌ଟିରେ ସ୍ଥାନେସ୍ଥାନେ ଉଇ ଚରି ସେ ଅଂଶଗୁଡ଼ିକୁ ଚନ୍ଦା କରିଦେଲେଣି। ଲନ୍‌ଟି କ୍ରମେ ଦିଶିଲାଣି ଚନ୍ଦାମୁଣ୍ଡ ପରି। କବି ଯଦୁମଣି ମହାପାତ୍ରଙ୍କ ଉକ୍ତି ନିତାନ୍ତ ମିଛ ନୁହେଁ.... 'ଏଦେଶ ଏମନ୍ତ ଭୂଇଁ, ଚାକୁଣ୍ଡା ବୁଣିଲେ ଉଠଇ ନାହିଁ।' ଗୁଣ୍ଡୁଚି ମୂଷାଟିଏ କେବେ ସେଇ ଲନ୍‌କୁ ତା'ର କ୍ରୀଡ଼ାଭୂମିରେ ପରିଣତ କରିଛି। ପଛ ଦୁଇଗୋଡ଼ ଉପରେ ବସି ସାମ୍ନା ଦୁଇଗୋଡ଼କୁ ଦୁଇହାତ ଯୋଡ଼ି ନମସ୍କାର କରିବା ପରି ସେ ମୋତେ ପ୍ରତ୍ୟହ ନମସ୍କାର ଜଣାଉଛି। କୁଆଡୁ ବିଲେଇଟାଏ ଆସି ସେଇ ଲନ୍ ଉପରେ ବେଳେବେଳେ ଚିତ୍ ହୋଇ ଶୀତଦିନିଆ ଖରାରେ ଗଡ଼ାଗଡ଼ି କରୁଛି।

ଦୁଇବର୍ଷ ତଳେ ମୁଁ ଏଇ ଘରକୁ ଆସିବାବେଳେ, ଘରଟା ଗୋଟାଏ ଭୂତକୋଠି ପରି ପଡ଼ିଥିଲା। ମୁଁ ଆସିବା ପୂର୍ବର ଏ ଘରଟା ଗୋଟାଏ ରାଜନୈତିକ ଦଳର ଅଫିସ ଥିଲା। ରାଜନୀତି ସହିତ ସୁରୁଚିର ସମ୍ପର୍କ ଏବେ ତୁଟିଯାଇଛି। ରାଜନୀତିକ ଲୋକମାନଙ୍କ ଆଚରଣରେ ନବ୍ୟ ବର୍ବରତା! ସେଥିପାଇଁ ଏବେ ଯେଉଁଠି ଲନ୍‌ଟି ବହୁ ସାଧ୍ୟସାଧନା ପରେ ତିଆରି କରାଯାଇଛି, ମୁଁ ଆସିବାବେଳେ ସେଠାରେ ଅଁକରାନ୍ତି, ଅମରି ପ୍ରଭୃତି ଚାରାଗଛମାନ ଗହଳ ହୋଇ ବଢ଼ିଥିଲେ। କିଛିଦିନ ପରେ ମୁଁ ସେଠାରେ ଲନ୍‌ଟିଏ ତିଆରି କରିବା ପାଇଁ ପ୍ରବଳ ଉତ୍ସାହରେ ଲାଗିପଡ଼ିଲି। ସେଇ ଲନ୍‌ଟିର ଏବେ ଏପରି ଅବସ୍ଥା! ଲନ୍‌ର ସବୁଜ ମସୃଣ କାର୍ପେଟ ଗଲା କୁଆଡେ; ଏବେ ସେଠାରେ ଉଇକଟା ରୋଗିଣା ଘାସ ଆଉ ଚନ୍ଦାମୁଣ୍ଡଟି!

ଲନ୍‌ଟିକୁ ଚାହିଁଲେ ଇ ମୋର ମନେ ପଡ଼ିଯାଏ ଦିଲ୍ଲୀରେ କ୍ୟାପ୍‌ଟେନ୍ ଡେଭିଡ୍ ଜର୍ଜଙ୍କ କଥା। ତାଙ୍କ ବୃଷାଳ ଚେହେରା ଆଖି ଆଗରେ ସ୍ପଷ୍ଟ ଭାସିଉଠେ। ସାହେବ ଲୋକ। ଆର୍ମିରୁ ଅବସର ନେଇ କେଉଁଥିପାଇଁ କେଜାଣି ଦିଲ୍ଲୀରେ ଦୁଇ ତିନି ବର୍ଷ ରହି ଯାଇଥିଲେ, ବୋଧହୁଏ ତାଙ୍କ ପେନ୍‌ସନ୍ କାଗଜ ଆଦି ଠିକଣା କରିବା ପାଇଁ। କନ୍‌ଷ୍ଟିଚ୍ୟୁସନ୍

ହାଉସ୍‌ରେ ସେ ଥିଲେ ମୋର ଅନ୍ୟତମ ପ୍ରତିବେଶୀ। କ୍ୟାପ୍‌ଟେନ୍ ଜର୍ଜ ତାଙ୍କ ରୁମ୍ ଭିତରୁ କେବଳ ଡାଇନିଂହଲ୍ ବ୍ୟତୀତ ଆଉ ଅନ୍ୟ କୁଆଡ଼େ ପଦାକୁ ବାହାରିବା ମୁଁ ଦେଖିନାହିଁ। କେବଳ ରୁମ୍ ବିଅରର୍ ବ୍ୟତୀତ ତା' ଭିତରକୁ ଆଉ କାହାର ପ୍ରବେଶ ନିଷିଦ୍ଧ। ଭଦ୍ରଲୋକ ରୁମ୍ ଭିତରେ ଅଧିକାଂଶ ସମୟ ସୋଫା ଉପରେ ବସି ସପ୍ତାହକ ତଳର କୌଣସି ବିଲାତି ଦୈନିକ ଖବରକାଗଜ ପଢୁଥାନ୍ତି। ସେଇ ରୁମ୍ ବାଟଦେଇ, ବାରଣ୍ଡାରେ ଯିବାବେଳେ, ଭିତରୁ ଭାସିଆସେ, ପାଇପ୍‌ରୁ ଟବାକୋ ଧୂଆଁର ମିଠା ଖୁସବୁ। ଏବେ କିନ୍ତୁ ଟବାକୋର ସେପରି ଖୁସବୁ ଆଉ ନାହିଁ। ଶୁଣିଥିଲି, ଇଂରେଜ ସାହେବମାନେ ପ୍ରାଇଭାସି ସମ୍ପର୍କରେ ବଡ଼ ବେଶୀ ସ୍ପର୍ଶକାତର। ନିଜ ଘରକୁ ସେମାନେ ଭାବନ୍ତି ଗୋଟାଏ 'କାସ୍‌ଲ୍' ବା ଦୁର୍ଗ ପରି। ଇଏ ସେହିପରି ଜଣେ କଟ୍‌ର ଇଂରେଜ।

କିନ୍ତୁ ପ୍ରତି ରବିବାର ସକାଳେ,- ବ୍ରେକ୍‌ଫାଷ୍ଟ ପରେ, ସେ ଦେହରେ ଗୋଟାଏ ଲମ୍ବା ଆପ୍ରନ୍ ଗଳାଇ, ପାଦରେ ଗମ୍‌ବୁଟ୍ ମାଡ଼ି, ତାଙ୍କ ରୁମ୍ ସାମ୍ନା ଉପରକୁ ଲମ୍ଫ ଦଅନ୍ତି। ଓଠରେ ପାଇପ୍। ଗୋଟାଏ ଲନ୍-ମୋଓ୍ୱର (lawn mower)ଉପରେ ଅଣ୍ଟା ବଙ୍କାଇ ପ୍ରାୟ ଅଧଘଣ୍ଟା, ଚାଳିଶ ମିନିଟ କାଳ ଲନ୍‌ରେ ମୋଓ୍ୱର ଚଳାନ୍ତି। ଲନ୍-ମୋଓ୍ୱରର ଯାନ୍ତ୍ରିକ ଖଟ୍‌ର୍‌ଖଟର୍ ଶବ୍ଦରେ ରବିବାରର ଶାନ୍ତ ସକାଳଟା ଆର୍ତ୍ତନାଦ କରିଉଠେ। ତାପରେ ସେ ବାହାରିଯାନ୍ତି ଗୀର୍ଜାକୁ। ମୁଁ ସ୍ୱସ୍ତିରେ ଦୀର୍ଘଶ୍ୱାସ ପକାଏ। ପ୍ରତି ରବିବାର ଦିନ ସକାଳେ ତାଙ୍କର କିନ୍ତୁ ସେଇ ଏକା ରୁଟିନ୍! ଏକା ଡ୍ରିଲ୍! ଲନ୍-ମୋଓ୍ୱର୍‌ର ସେଇ ବିକଟ ଘର୍ଘର ଶବ୍ଦ!

ଦୈବାତ୍ ଦିନେ କ୍ୟାପ୍‌ଟେନ ଜର୍ଜଙ୍କ ସହିତ ରିସେପ୍‌ସନ୍ କାଉଣ୍ଟରରେ ସାମାନ୍ୟ ପରିଚୟ ହୋଇଥିଲା। ସେ ଟେଲିଫୋନ୍ କରିବେ ବୋଲି ଅପେକ୍ଷାକରି ସେଠାରେ ଠିଆ ହୋଇଥିଲେ। ମୁଁ ମୋ ରୁମ୍‌ଚାବି ଆଉ ଚିଠିପତ୍ର ସଂଗ୍ରହ କରିବାକୁ ଅପେକ୍ଷା କରିଥିଲି। ସେ ସ୍ମିତ ହସି କହିଲେ 'ହାଲୋ'। ମୁଁ ଉତ୍ତର ଦେଲି 'ମର୍ଣ୍ଣିଂ'। ସେ ଦିନର ସେହି ସଂକ୍ଷିପ୍ତ ସୌଜନ୍ୟ ବିନିମୟକୁ ଭିତ୍ତିକରି, ଆଉଦିନେ ମୁଁ ବାହାର କରିଡ଼ର୍‌ରେ କ୍ୟାପ୍‌ଟେନ୍ ଜର୍ଜଙ୍କୁ ଦେଖି ପଚାରିଲି- "ପ୍ରତି ରବିବାର ସକାଳେ ଆପଣ ଲନ୍‌ରେ ଯେପରି ବ୍ୟାୟାମ କରୁଛନ୍ତି, ତାହା ନିଶ୍ଚୟ ଭାରି ସ୍ୱାସ୍ଥ୍ୟପ୍ରଦ। କିନ୍ତ ଘାସଗୁଡ଼ା ଲନ୍‌ରେ ବଢୁଚି। ତାକୁ ପ୍ରତି ରବିବାର ସକାଳେ ବ୍ରେକ୍‌ଫାଷ୍ଟ ପରେ କାଟୁଛନ୍ତି, ପୁଣି ବଢୁଛି। ପୁଣି କାଟୁଛନ୍ତି। ଏ କି ବ୍ୟାପାର ବୁଝିପାରୁ ନାହିଁ ତ!"

ସେ ମୋ ଆଡ଼େ ଦୁଇଟା ପିଙ୍ଗଳ ଆଖି ନିବଦ୍ଧ କରି ଇଂରାଜୀରେ ଯାହା କହିଲେ, ତାହାର ଓଡ଼ିଆ ଅନୁବାଦ ଏହିପରି ହେବ... 'ତୁମେ ରାତାରାତି ଧନୀଲୋକ ବନିଯାଇ ପାର। କିନ୍ତୁ ରାତାରାତି ଗୋଟାଏ ଲନ୍ ବନାଇ ପାରିବ ନାହିଁ। ତୁମେ ରାତାରାତି ଗୋଟାଏ

ମହଲ ତିଆରି କରାଇ ଦେଇପାର। କିନ୍ତୁ ଗୋଟାଏ ଲନ୍ ନୁହେଁ। ଘାସ ବଢ଼ାଅ ଆଉ କାଟ... ବଢ଼ାଅ ପୁଣି କାଟ, (you grow and you mow, grow and mow)'' ଏହିପରି ଭାବାରେ ଗୋଟାଏ ଲନ୍ ତିଆରି ହୁଏ ସିନା!''

ଲନ୍ ପ୍ରକୃତରେ ଗୋଟାଏ କୌଳିନ୍ୟ! କୌଳିନ୍ୟ ରାତାରାତି ଆସେନାହିଁ। ବହୁ ଜନ୍ମର ସାଧ୍ୟସାଧନା ପରେ ଆସିଥାଏ ଏ ଆଭିଜାତ୍ୟ- ଯାହାର ଅନ୍ୟନାମ ସଂସ୍କୃତି! ରାତାରାତି ଜଣେ ଧନୀଲୋକ ବନିଯାଇପାରେ! ମାତ୍ର ସେ ଯେ କୁଳୀନ, ଅଭିଜାତ ହୋଇଯିବ, ତାହା ଆଦୌ ନୁହେଁ।

ମୋ ଚନ୍ଦା ଲନ୍ ଉପରେ ଗୁଣ୍ଡୁଚି ମୂଷା ପ୍ରତିଦିନ ମୋ ଆଡ଼େ ଚାହିଁ, ତାର ବିଚିତ୍ର ମୁଦ୍ରାରେ ସାମ୍ନା ଦୁଇଗୋଡ଼ ଝାଡ଼ି, ଯେପରି ପରିହାସ କରେ, ଏବେ ତାହାର ଅର୍ଥ ବେଶ୍ ସ୍ପଷ୍ଟ ମୁଁ ବୁଝିପାରୁଛି।

୧୪। ୧୨। ୮୬

# ଫୁଟପାଥ୍‌ର ଆହ୍ୱାନ

ପଶ୍ଚିମ ଜର୍ମାନୀର ପ୍ରସିଦ୍ଧ ଔପନ୍ୟାସିକ ('ଟିନ୍ ଡ୍ରମ୍'ର ଲେଖକ) ଗୁଣ୍ଟର ଗ୍ରାସ୍ ଏଇ ଶତାବ୍ଦୀର ଜଣେ ପ୍ରମୁଖ ଔପନ୍ୟାସିକ ରୂପେ ମାନ୍ୟତାପ୍ରାପ୍ତ। ସେ ମଧ୍ୟ ନୋବେଲ ପୁରସ୍କାରରେ ଭୂଷିତ ହୋଇଅଛନ୍ତି। ଇଦାନୀଂ କଲିକତା ମହାନଗରୀର କ୍ଷୟିଷ୍ଣୁ ଜୀବନ ଓ ଏହାର ଅବକ୍ଷୟ ଅଧ୍ୟୟନ କରିବା ଅଭିପ୍ରାୟରେ ସେ ସସ୍ତ୍ରୀକ କଲିକତାରେ ଆସି ରହିଛନ୍ତି। ଭାରତୀୟ ଔପନ୍ୟାସିକମାନଙ୍କର ଏଥିପାଇଁ ଉଭୟ ସମ୍ଭଳ ଓ ସମୟର ଅଭାବ। ଯେଉଁମାନଙ୍କ ପାଇଁ ଉଭୟ ସମ୍ଭବ ସେମାନେ ଏପରି ଉଦ୍ଦେଶ୍ୟରେ ଯଦି ବା କୌଣସି ମହାନଗରୀକୁ ଆସନ୍ତି, ତା'ହେଲେ ସେମାନେ ପ୍ରଥମେ ଖୋଜିବେ, ତାରକା-ହୋଟେଲର ସ୍ୱାଚ୍ଛନ୍ଦ୍ୟ!

କିନ୍ତୁ ଏହି ଜର୍ମାନୀ ଔପନ୍ୟାସିକ ଇତି ମଧ୍ୟରେ ପ୍ରାୟ ଦୁଇମାସ କଲିକତାରେ କଟାଇ ସାରିଲେଣି, ଶ୍ରେଣୀହୀନ ବିଭିନ୍ନ ଲୋକାଲ ଟ୍ରେନ୍‌ର ଖୁନ୍ଦାଖୁନ୍ଦି ଭିଡ଼, ଚିନାବାଦାମ ଚୋପା, ଚନାଚୁର ବିକ୍ରୀବାଲା ଆଉ ଭିକାରୀଙ୍କ ମେଳରେ ସସ୍ତ୍ରୀକ ଭ୍ରମଣ କରି ଭାରତୀୟ ଭିଡ଼ ଓ ଠେଲାପେଲାର ଚେହେରା ଦେଖିବା ପାଇଁ। ଶୀତତାପ ନିୟନ୍ତ୍ରିତ କୋଚ୍‌ର ସ୍ୱାଚ୍ଛନ୍ଦ୍ୟ ଭିତରେ ଏହା କିନ୍ତୁ ମିଳିବ ନାହିଁ। ସେଥିପାଇଁ ଶ୍ରେଣୀ ବିହୀନ ଲୋକାଲଟ୍ରେନ! କଲିକତାର ଅବକ୍ଷୟ, ଷ୍ଟାର-ହୋଟେଲମାନଙ୍କର ବହଳ ପର୍ଦ୍ଦାଢଙ୍କା କାଚଅଣ୍ଟା ଝରକାମାନଙ୍କ ବାଟେ କଦାପି ଲକ୍ଷ୍ୟ କରିହେବ ନାହିଁ। ସେଥିପାଇଁ ଫୁଟ୍‌ପାଥ୍‌ର ଭିଡ଼, ଠେଲାପେଲା, ଝାଳଗନ୍ଧ, କଚଡ଼ା ସ୍ତୂପ ଭିତରକୁ ଆସିବାପାଇଁ ପଡ଼ିବ। ପଟ୍‌ହୋଲ୍‌ମାନଙ୍କରେ ଝୁଣ୍ଟି ଆଣ୍ଠୁଗଣ୍ଠି ଛିଣ୍ଡାଇବାକୁ ମଧ୍ୟ ପଡ଼ିବ। ପୁଣି ମେଟ୍ରୋ ରେଳ ଲାଇନ୍ ତିଆରି ପାଇଁ ଯେଉଁ ଖଣିସବୁ ରାସ୍ତାରେ ଖୋଳାଯାଇଛି, ତା' ଭିତରେ ପଡ଼ି ଭୂତଳଗାମୀ ହେବାର ଆଶଙ୍କା ଯେ ନାହିଁ, ନୁହେଁ। କିନ୍ତୁ ଏଇପରି ଅନୁଭୂତି, ଅଭିଜ୍ଞତା ନଥିଲେ କେହି କଦାପି ଜୀବନ ପ୍ରତି ପ୍ରତିବଦ୍ଧ ଜଣେ ଲେଖକ ହୋଇପାରିବ ନାହିଁ। ସାହିତ୍ୟ ନାମରେ, ଗଦ୍ୟ ବା ପଦ୍ୟରେ କିଛି ରଚନା ଲେଖି, ସୁଲଭ ସମାଲୋଚକ ବା ଆଲୋଚକମାନଙ୍କ ଜରିଆରେ ପ୍ରଶସ୍ତି ଲେଖାଇ କିଛିଟା ଆତ୍ମପ୍ରସାଦ ଅବଶ୍ୟ ମିଳିପାରେ। କିଛି ଉପାୟନ ବା ପୁରସ୍କାର ମଧ୍ୟ ମିଳିପାରେ। ମାତ୍ର

ସେସବୁ କାହାରି ଚେତନାରେ କଦାପି କୌଣସି ରେଖାପାତ କରିପାରିବ ନାହିଁ। ସେଥିପାଇଁ ଜଣେ ପାଠକ ରୂପେ ମୁଁ ବରାବର କହିଆସିଛି, ସାମ୍ପ୍ରତିକ ଭାରତୀୟ ଲେଖକର ସମସ୍ୟା ହେଉଛି ସେ ନିଜେ ଓ ତାହାର ମିଥ୍ୟା ସମ୍ଭ୍ରାନ୍ତ୍ୟବୋଧ। ଜୀବନଠାରୁ ପଳାୟନ କରି କେହି କେବେ ଜୀବନର ଟୀକାକାର ହୋଇନପାରେ। ପୁଣି ସୁରୁଚି ଓ ସମ୍ଭ୍ରାନ୍ତ୍ୟ ଥାଏ ମନୁଷ୍ୟର ଆତ୍ମାରେ, ବହିରଙ୍ଗର ଔଜ୍ଜଲ୍ୟରେ ନୁହେଁ। ତିନ୍‌ମୂର୍ତ୍ତିରେ ପ୍ରଧାନମନ୍ତ୍ରୀ ପ୍ରାସାଦର ପଣ୍ଡିତ ଜବାହରଲାଲ ନେହରୁଙ୍କ ପ୍ରସିଦ୍ଧ ଲାଲଗୋଲାପ ଥିଲା, ତାଙ୍କ 'ବଟନ ହୋଲ୍'ରେ। ମାତ୍ର ଦିଲ୍ଲୀରେ ଭଙ୍ଗୀବସ୍ତିର କୁଟୀରବାସୀ ମହାତ୍ମାଗାନ୍ଧୀଙ୍କ ଆତ୍ମାରେ ଯେଉଁ ଲାଲଗୋଲାପ ଫୁଟିଥିଲା ତାହାଥିଲା ଅଧିକ ସତେଜ ଓ ଅଧିକ ବର୍ଣ୍ଣାଢ୍ୟ।

ଭାରତୀୟ ଲେଖକ ମାନଙ୍କଠାରେ, ଏହିପରି ପ୍ରତିବଦ୍ଧତା ଅଭାବରୁ ସାମ୍ପ୍ରତିକ ଭାରତୀୟ ସାହିତ୍ୟ ଜୀବନଧର୍ମୀ ହୋଇପାରିନାହିଁ। ପ୍ରକାରାନ୍ତରେ ଏହା ଉଲ୍ଲେଖକରି ଔପନ୍ୟାସିକ ଗୁଣ୍ଟର ଗ୍ରାସ୍ 'ସଣ୍ଡେ' ପତ୍ରିକାର ପ୍ରତିନିଧିଙ୍କୁ କହିଛନ୍ତି ଯେ, କଲିକତା ମହାନଗରୀରେ ଆୟାର୍ଲାଣ୍ଡ ଡବଲିନ୍ ସହର ଓ ଆମେରିକାର ମାନ୍‌ହାଟାନ୍ ସହରର ପରିବେଶ ପରିସ୍ଥିତି ରହିଥିଲେ ହେଁ ଏଠାରେ ଜଣେ ଜେମ୍‌ସ ଜୟସ ବା ଡମ୍ ପାସୋସଙ୍କ ପରି ଔପନ୍ୟାସିକ ସମ୍ଭବ ହୋଇପାରୁନାହାନ୍ତି। କିନ୍ତୁ ସେଥିପାଇଁ ଜେମ୍‌ସ ଜୟସ ବା ଡମ୍ ପାସୋସଙ୍କ ଅନୁକରଣ କରିବା ଉଚିତ ନୁହେଁ। ଭାରତୀୟ ସାହିତ୍ୟ ଓ ସଂସ୍କୃତିର ପରମ୍ପରା ପୁଣି ପରିସ୍ଥିତି ସହିତ ସାମଞ୍ଜସ୍ୟ ରଖି ସେଇ ଧାରାରେ ଆମ ମାଟିରୁ ଜୟସ ଓ ପାସୋସ୍‌ମାନଙ୍କର ଆବିର୍ଭାବ, ମୁଁ ସର୍ବାନ୍ତଃକରଣରେ କାମନା କରୁଛି। କିନ୍ତୁ ଭାରତୀୟ ଔପନ୍ୟାସିକମାନେ ଗୁଣ୍ଟରଙ୍କ ଏହି ଆହ୍ୱାନର ଉତ୍ତର ଦେବାକୁ ପ୍ରସ୍ତୁତ କି ?

୨୧।୧୨।୮୬

# ରୁଟି ଓ ଚନ୍ଦ୍ର

ପ୍ରସିଦ୍ଧ ରୁଷୀୟ ଔପନ୍ୟାସିକ ଦସ୍ତୋଭେସ୍କି, 'ଦି ବ୍ରଦର୍ସ କାର୍ମାଜୋଭ୍' ଉପନ୍ୟାସରେ ଲେଖିଥିଲେ... ''ମନୁଷ୍ୟ ମୁକ୍ତ ସ୍ୱାଧୀନ ଥିବା ପର୍ଯ୍ୟନ୍ତ କୌଣସି ବିଜ୍ଞାନ କେବେ ପେଟଭରା ରୁଟି ଦେଇ ପାରିବ ନାହିଁ! ମନୁଷ୍ୟ ନିଜ ଅନୁଭୂତିରୁ ଦିନେ ଶେଷରେ ବୁଝିବ, ସମସ୍ତଙ୍କ ପାଇଁ ପେଟଭରି ରୁଟି ଆଉ ବ୍ୟକ୍ତି ସ୍ୱାଧୀନତା, ଏ ଦୁଇଟିକୁ କେବେ ଏକାଠି ଚିନ୍ତା କରାଯାଇପାରେ ନାହିଁ। (No science will give men bread as long as they remain free. Man will understand at last that freedom and enough bread for all are inconceivable together.) ରୁଷିଆରେ ସୋଭିଏତ ରାଷ୍ଟ୍ର ପ୍ରତିଷ୍ଠା ପୂର୍ବରୁ ଏ ଲେଖା। ଏହା ପଢ଼ିବା ପରେ ପଞ୍ଚମ ଦଶକରେ ମୁଁ ଲେଖିଥିଲି, ଏକ କ୍ଷୁଦ୍ରଗଳ୍ପ- 'ରୁଟି ଓ ଚନ୍ଦ୍ର'। ଏହାର ବକ୍ତବ୍ୟ ହେଉଛି, ଜୀବନ କେବଳ ରୋଟୀକା ସୱାଲ ନୁହେଁ। ଜୀବନରେ ଚନ୍ଦ୍ରର ମଧ୍ୟ ପ୍ରୟୋଜନ ରହିଛି। ବସ୍ତୁତଃ କମ୍ୟୁନିଜିମ୍ ସହିତ ବ୍ୟକ୍ତି ସ୍ୱାଧୀନତା କେବେ ଯଦି ସମନ୍ୱିତ ହୋଇ ପାରନ୍ତା, ତାହେଲେ ତାହା ମନୁଷ୍ୟର ଶ୍ରେଷ୍ଠ ରାଜେନୈତିକ ଆଦର୍ଶ ହୋଇପାରନ୍ତା ବୋଲି ମୁଁ ବରାବର ବିଶ୍ୱାସ କରିଆସିଛି।

କିନ୍ତୁ ରୁଷିଆ ବା ଚୀନ୍‌ରେ ତାହା ଏପର୍ଯ୍ୟନ୍ତ ଆଦୌ ସମ୍ଭବ ହୋଇପାରିନଥିଲା। ସେ ଦେଶର ଜନସାଧାରଣ ରୁଟି ପାଇଁ ଆକାଶରୁ ଚନ୍ଦ୍ରଙ୍କୁ ପୂରାପୂରି ପୋଛି ଦେଇଥିଲେ। ଏହି ପୃଷ୍ଠଭୂମିରେ ଗର୍କୀ ଜେଲ୍‌ରେ ସାତବର୍ଷ ବ୍ୟାପୀ କାରାବାସରୁ ନୋବେଲ ପୁରସ୍କାରପ୍ରାପ୍ତ ବୈଜ୍ଞାନିକ ଶାକାରୋଭ୍‌ଙ୍କ ମୁକ୍ତି ଯଥାର୍ଥରେ ଏ ବର୍ଷର ଶ୍ରେଷ୍ଠ ସୁସମ୍ବାଦ। ସୋଭିଏତ୍ ରୁଷିଆରେ ଶାକାରୋଭ ଥିଲେ ଶକ୍ତିଶାଳୀ ହାଇଡ୍ରୋଜେନ୍ ବୋମାର ନିର୍ମାତା। କିନ୍ତୁ ଏହାର ମାରାତ୍ମକ ପରିଣାମ ଉପଲବ୍ଧି କରି ସେ ନିଉକ୍ଲିଆର୍ ବୋମା ନିର୍ମାଣ ପାଇଁ, ସୋଭିଏତ୍ କର୍ତ୍ତୃପକ୍ଷଙ୍କୁ ନାସ୍ତି କରିଦେଇଥିଲେ। ସୋଭିଏତ୍ ରୁଷିଆ ବିଶ୍ୱଶାନ୍ତି ଓ ନିରସ୍ତ୍ରୀକରଣ ପାଇଁ ଉଦ୍‌ବୋଧନ ଦେଉଥିବାବେଳେ, ନିଜେ ନିଉକ୍ଲିୟାର ବୋମା ନିର୍ମାଣ କରିବା, ବିଶ୍ୱଶାନ୍ତି ଓ ନିରସ୍ତ୍ରୀକରଣ ପକ୍ଷରେ 'ଏକ' ପ୍ରଧାନ ଅନ୍ତରାୟ ବୋଲି ଶାକାରୋଭ୍ ସ୍ପଷ୍ଟ

ଉପଲବ୍ଧି କରିଥିଲେ। ପୁଣି ସୋଭିଏତ୍ ରୁଷିଆ ଯେପରି ଆଫଗାନିସ୍ତାନକୁ କବଳିତ କଲା-ଶାକାରୋଭ୍ ପ୍ରକାଶ୍ୟରେ ତାହାର ତୀବ୍ର ସମାଲୋଚନା କରିଥିଲେ। ୧୯୭୫ ମସିହାରେ ଶାକାରୋଭ୍ ନୋବେଲ ପୁରସ୍କାରରେ ସମ୍ମାନିତ ହେବା ପରେ ସୋଭିଏତ୍ କର୍ତ୍ତୃପକ୍ଷ ସେଥିପାଇଁ ତାଙ୍କୁ ସସ୍ତ୍ରୀକ ଗର୍କୀକୁ ନିର୍ବାସିତ କରିଥିଲେ। ସାରା ବିଶ୍ୱର ବୈଜ୍ଞାନିକ ଓ ବୁଦ୍ଧିଜୀବୀ ସମାଜ ଏହା ବିରୁଦ୍ଧରେ ପ୍ରତିବାଦର ସ୍ୱର ଉତ୍ତୋଳନ କରିଥିଲେ ହେଁ, ସୋଭିଏତ୍ କର୍ତ୍ତୃପକ୍ଷଙ୍କ ଉପରେ ତାହା ଏ ପର୍ଯ୍ୟନ୍ତ କୌଣସି ରେଖାପାତ କରିନଥିଲା। ଶାକାରୋଭ୍‌ଙ୍କ ମୁକ୍ତି ଗୋର୍ବାଚୋଭ୍‌ଙ୍କ ନେତୃତ୍ୱରେ ସୋଭିଏତ୍ ରୁଷିଆରେ ଯେଉଁ ନୂତନ ଆଭିମୁଖ୍ୟ ଆରମ୍ଭ ହୋଇଛି, ତାହାର ସମ୍ଭବତଃ ଆଦ୍ୟସୂଚନା। ମୁଁ ସର୍ବାନ୍ତଃକରଣରେ ଏହାକୁ ଅଭିନନ୍ଦନ ଜଣାଉ ଅଛି। ଦୂରଦର୍ଶନରେ ଦେଖିବା ପାଇଁ ମିଳିଲା, ଶାକାରୋଭ ଗର୍କୀ ଜେଲରୁ ମୁକ୍ତି ପାଇ, ମସ୍କୋରେ ପହଞ୍ଚିବା ମାତ୍ରେ, ବହୁ ପ୍ରଶଂସକ ଓ ସମର୍ଥକ ତାଙ୍କୁ ଅଭିନନ୍ଦନ ଜଣାଇଥିଲେ। ସୋଭିଏତ୍ ରୁଷିଆରେ ଭିନ୍ନ ମତବାଦ ଓ ମତାନ୍ତର ଘୋଷଣାରେ ସ୍ୱାଧୀନତା କ୍ରମେ ଯେପରି ସ୍ୱୀକୃତି ଲାଭ କରୁଛି ଏହା ତାହାର ଏକ ଉଲ୍ଲେଖଯୋଗ୍ୟ ଦୃଷ୍ଟାନ୍ତ।

ଏହା ଲେଖିବାବେଳକୁ, କମ୍ୟୁନିଷ୍ଟ ଚୀନ୍‌ର ସାଂଘାଇ ଓ ବେଜିଙ୍ଗ୍ ମହାନଗର, ଗଣତାନ୍ତ୍ରିକ ଅଧିକାର ପାଇଁ ହଜାର ହଜାର ଛାତ୍ରଙ୍କ ଆନ୍ଦୋଳନ ଓ ପଟୁଆର ଧ୍ୱନିରେ ମୁଖରିତ ହୋଇଉଠୁଛି। ମାଓ-ସେ-ତୁଙ୍ଗଙ୍କ ଚୀନ୍‌ରେ ଏହା କଳ୍ପନାତୀତ ଥିଲା। ଚୀନ୍‌ରେ ଏହି ଆନ୍ଦୋଳନ ପଛରେ କର୍ତ୍ତୃପକ୍ଷଙ୍କ ପ୍ରଚ୍ଛନ୍ନ ସମର୍ଥନ ରହିଛି କି ନାହିଁ ଜଣାନାହିଁ। ହୋଇପାରେ ମାଓ-ସେ-ତୁଙ୍ଗ୍‌ଙ୍କ ସମର୍ଥନରେ ପଞ୍ଚମ ଦଶକର ଶେଷାର୍ଦ୍ଧରେ 'ଶତ ପୁଷ୍ପ ପ୍ରସ୍ଫୁଟିତ ହେଉ' (Let hundred flowers bloom) ଆନ୍ଦୋଳନ ପରି, ଏହା କୌଣସି ଏକ ଧୂର୍ତ୍ତ ପ୍ରବଞ୍ଚନା। ଏହି 'ଶତ ପୁଷ୍ପ'ର ଉଦାରପନ୍ଥୀ ଆନ୍ଦୋଳନ ମଧ୍ୟରୁ, ଚୀନ୍‌ରେ ସୂତ୍ରପାତ ହୋଇଥିଲା, ମାଓଙ୍କ ତଥାକଥିତ ସାଂସ୍କୃତିକ ବିପ୍ଳବ- ଯାହାର ରକ୍ତ ପ୍ଳାବନ ମଧ୍ୟରେ ଚୀନ୍‌ରୁ ବ୍ୟକ୍ତି ସ୍ୱାଧୀନତା ପୂରାପୂରି ଲୋପ ପାଇଥିଲା। ଆଜି ସାଂଘାଇ ଓ ବେଜିଙ୍ଗ୍ ମହାନଗରମାନଙ୍କରେ ଛାତ୍ର ବିକ୍ଷୋଭ ପାଇଁ କର୍ତ୍ତୃପକ୍ଷଙ୍କ ପ୍ରଚ୍ଛନ୍ନ ସମର୍ଥନ କ'ଣ ସେଇ ବିଡ଼ମ୍ବିତ ଅଧ୍ୟାୟର ପୁନରାବୃତ୍ତିର ଆଉ ଏକ ସୂଚନା ?

ହୋଇପାରେ ମସ୍କୋ ଓ ବେଜିଙ୍ଗ୍ ଆକାଶରେ ଏଇ କ୍ଷୀଣ ଚନ୍ଦ୍ରୋଦୟ, ଭେଳାଭେଳା ମେଘ ଆଢୁଆଳରେ ପୁଣି ନିଶ୍ଚିହ୍ନ ହୋଇଯାଇପାରେ। ତଥାପି ମୁଁ ତାହାକୁ ଅଭିନନ୍ଦନ ଜଣାଉଛି !

*୦୪/୦୧/୮୬*

# ଚେହେରା: ଭଦ୍ର ଓ ଅଭଦ୍ର

ଶକ୍ତଗଡ଼... ଏକ ମଧ୍ୟଯୁଗୀୟ, ରୋମାଣ୍ଟିକ ନାମ। କିନ୍ତୁ ଏହା ଇତିହାସ ବା କିଂବଦନ୍ତିର କୌଣସି ଦୁର୍ଗ ନୁହେଁ। ହାଓଡ଼ା ଦିଲ୍ଲୀ ମେନଲାଇନ୍‌ରେ ଦିଗହଜା ପ୍ରାନ୍ତର ମଧ୍ୟରେ ଏକ ଛୋଟିଆ, ପାସେଞ୍ଜର ହଲଟ। ଲୋକାଲ ଟ୍ରେନମାନଙ୍କ ବ୍ୟତୀତ ଅନ୍ୟ କୌଣସି ଟ୍ରେନ କେବେ ଅଟକେ ନାହିଁ ଏଠି। ଷ୍ଟେସନ କହିଲେ ଦୁଇ ବଖୁରୀ ଛୋଟ ଛୋଟ ଘର। ସାମନାରେ ଗୋଟାଏ ବଡ଼ ଶେଡ୍ ପାସେଞ୍ଜରମାନେ ଅପେକ୍ଷା କରିବା ପାଇଁ। ଚାରିଆଡ଼େ ଧୂ'ଧୂ ଦିଗହଜା କଙ୍କରିଳ ପ୍ରାନ୍ତର। ପାଖରେ କେଉଁଠି ଜନବସତି ଆଖିରେ ପଡ଼େନାହିଁ। ବର୍ଦ୍ଧମାନ ଡେଇଁଲେ ହାଉଡ଼ା ଆଡ଼କୁ ପଡ଼େ ଏଇ ପ୍ରଥମ ଷ୍ଟେସନ।

ସେଥର ଦିଲ୍ଲୀ-ହାଓଡ଼ା ଏୟାରକଣ୍ଡିସନ ଡିଲକ୍ସ ଏକ୍ସପ୍ରେସ ରାଇଟ ଟାଇମ୍ ଆଗରୁ ସୁଦ୍ଧା ଚାଲିଥିଲା। ମୁଁ ଭାବୁଥିଲି ଏହି ସ୍ପୀଡ୍ ରହିଲେ, ଅକ୍ଳେଶରେ ପୁରୀ ଏକ୍ସପ୍ରେସ ମିଳିଯାଇ ପାରିବ। ବର୍ଦ୍ଧମାନ ଛାଡ଼ିବା ପରେ କୂପେ ଭିତରେ ଆଖିରେ ନିଦ ଲାଗି ଆସିଲା। ହଠାତ୍ ଅନୁଭବ କଲି ଟ୍ରେନ୍‌ଟା କନ୍ଦି କନ୍ଦି ଦୋହଲିବା ପାଇଁ ଆରମ୍ଭ କରିଛି। ତା' ସହିତ କଡ଼ କଡ଼ ଯାନ୍ତ୍ରିକ ଶବ୍ଦ। ଟ୍ରେନଟା ସ୍ପୀଡ୍‌ରେ ଥିବାରୁ ଏପରି ଶବ୍ଦ ହେଉଛି ଭାବି ପୁଣି ଆଖି ବୁଜି ନେଉଛି, ଏହି ସମୟରେ ଅନ୍ୟ କମ୍ପାର୍ଟମେଣ୍ଟମାନଙ୍କରୁ କୋଳାହଳ ଶୁଭିଲା 'ଡିରେଲ, ଡିରେଲ!' ତା' ସହିତ ଆର୍ତ୍ତ ଚିତ୍କାର। ଗାଡ଼ିରୁ ବାହାରକୁ କୁଦି ପଡ଼ିବା ପାଇଁ ପାସେଞ୍ଜରମାନେ କରିଡରେ ଦୌଡ଼ାଦୌଡ଼ି ଆରମ୍ଭ କରି ଦେଇଛନ୍ତି। ମୁଁ କିନ୍ତୁ ମୋର ଚଟି ଖୋଜି ପାଉନାହିଁ। ଲକ୍ଷ୍ନୌର ନବାବ ଓ୍ୱାଜିଦ ଅଲ୍ଲୀ ଖାଁଙ୍କ କଥା ମନେ ପଡ଼ିଲା। କ୍ଲାଇବ ଆସି ନବାବଙ୍କ ପ୍ରାସାଦ ଦ୍ୱାରରେ ଆଘାତ କଲାଣି। ପ୍ରାସାଦରୁ ଭୃତ୍ୟପରିକର ଯିଏ ଯୁଆଡ଼େ ଗାଏବ। ନବାବ ଓ୍ୱାଜିଦ ଅଲ୍ଲୀ କିନ୍ତୁ ପଳାଇବା ପାଇଁ ଜୋତା ଖୋଜି ପାଉନାହାନ୍ତି। ମୋ ପ୍ୟାଣ୍ଟ, ସାର୍ଟ ରାକେଟରୁ ଖସି କୋଉଠି ତଳେ ପଡ଼ିଲାଣି। ବାହାରେ ଅନେକ କଣ୍ଠରେ ଚିତ୍କାର... ଜଲଦି ଓହ୍ଲାଅ, ଜଲ୍‌ଦି ଓହ୍ଲାଅ ଏ ଲାଇନ୍‌ରେ ଟ୍ରେନ ଆସୁଥିଲେ, ଆକ୍‌ସିଡେଣ୍ଟ ହେବ। କିନ୍ତୁ କମ୍ପାର୍ଟମେଣ୍ଟରୁ ପ୍ରାୟ ପୁରୁଷେ ତଳେ ମାଟି। ଡେଇଁପଡ଼ିବା ସମ୍ଭବ ନୁହେଁ।

ଓହଳି ଓହଳି ଓହ୍ଲାଇବା ମଧ୍ୟ ମୋ ପକ୍ଷରେ ଅସମ୍ଭବ। କେତେଜଣ ରେଳ କର୍ମଚାରୀ ମୋତେ ଓହ୍ଲାଇବାରେ ସାହାଯ୍ୟ କଲେ। କୌଣସି ଭି.ଆଇ.ପି. ଉଡ଼ାଜାହାଜରୁ ଓହ୍ଲାଇଲାବେଳେ ହୋମଡ଼ା ଚୋମଡ଼ାମାନେ ତାଙ୍କୁ ସ୍ୱାଗତ ଜଣାଇବା ପାଇଁ ଅର୍ଦ୍ଧବୃତ୍ତାକାରରେ ଯେପରି ଠିଆ ହୋଇଥାନ୍ତି, ମୋତେ ସଙ୍ଖୋଳିବା ପାଇଁ ସେହିପରି ଟ୍ରେନ୍‌ର ଗାର୍ଡ଼, ଟି.ଟି.ଆଇ., ଫାୟାରମ୍ୟାନ ଓ କେତେ ଜଣ ପାସେଞ୍ଜର ବଡ଼ ଉତ୍କଣ୍ଠିତ ଭାବରେ ସେଠାରେ ଠିଆ ହୋଇଥିଲେ। ମୁଁ ନିରାପଦରେ ତଳକୁ ଆସି ପାରିଥିବାରୁ ସେମାନେ ଯେପରି ଆଶ୍ୱସ୍ତ ହୋଇଉଠିଲେ। ଗାର୍ଡ଼ ସାହେବଙ୍କ ଗୋଟାଏ ପ୍ରକାଣ୍ଡ ଟିଣ ଟ୍ରଙ୍କ ଉପରେ କେତେଜଣ ଯାତ୍ରୀ ବସିଥିଲେ, ମୋତେ ବସିବା ପାଇଁ ସେମାନେ ଟ୍ରଙ୍କ ଛାଡ଼ି ଉଠିଗଲେ। ମୋତେ କୁଆଡୁ ଗୋଟାଏ ଲିମ୍‌କା କୋଲଡ୍ରିଙ୍କ ସୁଦ୍ଧା ମିଳିଗଲା।

ପ୍ରାୟ ମାଇଲିଏ ଦୂରରେ ଶକ୍ତିଗଡ଼ ପାସେଞ୍ଜର ହଲ୍‌ଟ ଆସନ୍ନ ସୂର୍ଯ୍ୟାସ୍ତର ପୃଷ୍ଠଭୂମିରେ ଷ୍ଟେସନର ପାସେଞ୍ଜର ଶେଡ୍‌ଟା ଦେଖାଯାଉଛି ସିଲୁଟ ଛବି ପରି। ପାସେଞ୍ଜରମାନେ ଜିନିଷପତ୍ର ଧରି ଲାଇନ୍ ଉପରେ ଡେଇଁ ଡେଇଁ ଚାଲିଛନ୍ତି ଷ୍ଟେସନ ଆଡ଼େ। ପୃଥୁଳ ଚମଡ଼ା ସୁଟକେଶଟିକୁ ସମ୍ଭାଳିବା ମୋ ପକ୍ଷରେ ଏକେ ତ ମୁସ୍କିଲ। ତା' ଉପରେ ଲାଇନ ଉପରେ ଡେଇଁ ଡେଇଁ ମାଇଲିଏ ବାଟ ଯିବା ମୋ ପକ୍ଷରେ ଆଦୌ ସହଜ ନୁହେଁ। କ'ଣ କରିବି ଭାବୁଛି, ଏହି ସମୟରେ ଦୁଇଜଣ ଜି.ଆର.ପି. କନେଷ୍ଟବଲ ମୋତେ ହିନ୍ଦୀରେ କହିଲେ ସନ୍ଧ୍ୟା ଆଗରୁ ଏଠାରୁ ଷ୍ଟେସନକୁ ପଳାନ୍ତୁ। ଜାଗାଟା ଚାଉଳ ସ୍ମଗଲର ଆଉ ଚୋରମାନଙ୍କର ଆଡ୍‌ଡା। କିନ୍ତୁ ଏ ସୁଟକେସଟାକୁ ବୋହି ଷ୍ଟେସନ ପର୍ଯ୍ୟନ୍ତ ଲାଇନ ଉପରେ କାଠ ସ୍ଲିପର ଡେଇଁ ଡେଇଁ ଯିବା ମୋ ପକ୍ଷରେ ଏଭେରେଷ୍ଟ ଆରୋହଣ କରିବା ପରି ବ୍ୟାପାର। ସ୍ଥାନଟା ଇତି ମଧ୍ୟରେ ନିଶୂନ ହୋଇଗଲାଣି। ସାମନାରେ ଲମ୍ବା ଟ୍ରେନ୍‌ଟା କଡ଼େଇ ହୋଇ ତଳେ ପଡୁପଡୁ, ବୋଲଡର ଗଦାମାନଙ୍କରେ ଅଟକି ସୂତା ଖିଅକରେ ଯେପରି ଲାଖି ରହିଛି। ଦିଶୁଛି, ଗୋଟାଏ ମୃତ, ପ୍ରାକ୍ ଐତିହାସିକ ସରୀସୃପ ପରି। ମୁଁ ଅନନ୍ୟୋପାୟ ହୋଇ, ସେଠାରେ ମୋ ସୁଟକେଶ ଉପରେ ବସି ରହିଛି, ଏହି ସମୟରେ ଗୋଟାଏ ଡେଙ୍ଗାଲୋକ କୁଆଡୁ ଆସି ପହଞ୍ଚିଲା। ମୋତେ କହିଲା ''ବର୍ଦ୍ଧମାନରୁ ରିଲିଫ ଟ୍ରେନ ଆସିବ ନାହିଁ। ଷ୍ଟେସନକୁ ପଳାଅ। ଏ ଜାଗାଟା ଠିକ ନୁହେଁ। ସୁଟକେଶଟା ମୁଁ ନେଇଯିବି।"

କିନ୍ତୁ ଲୋକଟାର ଚେହେରା ନିର୍ଭରଯୋଗ୍ୟ ମନେ ହେଲାନାହିଁ। ପିନ୍ଧିଛି ଖଣ୍ଡେ ଲୁଙ୍ଗି। ହେଦରେ ଗୋଟାଏ ମଇଳା ଗେଞ୍ଜି। ହାଡୁଆ ମୁହଁରେ ଅନେକ ଦିନର ଅରମା ଦାଢ଼ି। ଆଖି ଦୁଇଟାରେ ଧୂର୍ତ୍ତ ଚାହାଣି। ଏ ଲୋକଟା ଗୋଟାଏ ଚାଉଳ ସ୍ମଗଲର, ଚୋର ହୋଇଥିବା ମଧ୍ୟ ଅସମ୍ଭବ ନୁହେଁ। ତଥାପି ଏଠାରେ ଆଉ ଅକାରଣରେ ବସି ରହିବା ମଧ୍ୟ ନିରାପଦ ନୁହେଁ। ଷ୍ଟେସନ ଆଡ଼େ ଯିବା ପାଇଁ ମୁଁ ଉଠିଲି। ସିଏ ମୋ ସୁଟକେଶଟାକୁ

ମୁଣ୍ଡରେ ରଖି ଲମ୍ବା ଲମ୍ବା ପାଦ ପକାଇ ସ୍ଲିପର ଉପରେ ଡେଇଁ ଡେଇଁ, ଚାହୁଁ ଚାହୁଁ ଅଦୃଶ୍ୟ ହୋଇଗଲା। ପଛରୁ ଡାକିଲେ ମଧ୍ୟ ଶୁଣିଲା ନାହିଁ। ମୁଁ ଭାବିଲି ଆଖି ଆଗରୁ ମୋ ସୁଟକେଶଟା ଏମିତି ଚାଲିଗଲା। ତା' ଭିତରେ ଥିଲା ପନ୍ଦର ଶହ ଭଳି ଟଙ୍କା, ମୋର ଜାମାପଟା ଓ କିଛି ବହି। ସେସବୁ ଚାଲିଗଲେ ଦୁଃଖ ନାହିଁ। କିନ୍ତୁ ତା' ଭିତରେ ମଧ୍ୟ ମୋର ଘଣ୍ଟେ ଉପନ୍ୟାସର ପାଣ୍ଡୁଲିପି। ସେଇଟା ଚାଲିଗଲେ, ଗୋଟାଏ ଅପୂରଣୀୟ କ୍ଷତି ହୋଇଯିବ। ଆଉ ଲେଖିପାରିବି ନାହିଁ। କିନ୍ତୁ ନିରୁପାୟ। ମାଇଲିଏ ବାଟ, ଗେଣ୍ଟୁଟି ଆଉ କାଠ ସ୍ଲିପର ଉପରେ ଡେଇଁ ଡେଇଁ ଯିବା ପାଇଁ ମୋତେ ପ୍ରାୟ ଅଧଘଣ୍ଟାରୁ ବେଶି ସମୟ ଲାଗିଲା। ପାସେଞ୍ଜର ଶେଡ୍ ଭିତରେ ଲୋକାରଣ୍ୟ। ଅପ୍ ଡାଉନ୍ ଯିବା ଆସିବା କରୁଥିବା ଲୋକାଲ ଟ୍ରେନମାନଙ୍କରୁ ପାସେଞ୍ଜର ମାନଙ୍କର ଗହଳି ଭିଡ଼କୁ ଆହୁରି ବଢ଼ାଇ ଦେଇଛି। ସେଠାରେ ସେ ଲୋକ କିମ୍ବା ସୁଟକେଶର ପତ୍ତା ନାହିଁ। ଚରମ କ୍ଷତି ପାଇଁ ମନେ ମନେ ମୁଁ ପ୍ରସ୍ତୁତ ହୋଇଗଲିଣି।

ମୁଁ ଗୋଟାଏ ସିମେଣ୍ଟ ବେଞ୍ଚ ଧାରରେ ନିଜ ପାଇଁ ଟିକିଏ ଜାଗା କରି, ଅବସନ୍ନ ଭାବରେ ବସିପଡ଼ିଲି। ତା' ପରେପରେ ଲୋଡ୍‌ସେଡ଼ିଙ୍ଗ୍ ଯୋଗୁ ସବୁଆଡ଼େ ହଠାତ ଅନ୍ଧାର ହୋଇଗଲା। ଯାତ୍ରୀ ଗହଳି ଆଉ ଅନ୍ଧକାର ଭିତରୁ ଭିତରୁ ବହୁ କଣ୍ଠରେ ଆର୍ତ୍ତନାଦ ପରି ଶୁଭିଲା। 'ଏଇ ଗଲା... ଏଇ ଗଲା !' ପ୍ରାୟ ଅଧଘଣ୍ଟା ପରେ ପୁଣି ଆଲୁଅ ସବୁ ଜଳିଲା। ମାତ୍ର ମୋ ପାଇଁ ବର୍ତ୍ତମାନ ଆଲୁଅ ଅନ୍ଧାରର କୌଣସି ଅର୍ଥ ନାହିଁ। ମୋର ଉପନ୍ୟାସର ପାଣ୍ଡୁଲିପି ଗଲା। ବର୍ତ୍ତମାନ ହାଉଡ଼ା ଆଡ଼କୁ ଯାଉଥିବା କୌଣସି ଗୋଟାଏ ଲୋକାଲ ସେଇ ଭିଡ଼ ଭିତରେ ଧରିପାରିଲେ ରକ୍ଷା। ଏଇ ସମୟରେ ସେଇ ଲୋକଟା, ମୋର ସୁଟକେଶ ମୁଣ୍ଡେଇ ସେଠାକୁ ଆସି କିଛିଟା ଭର୍ତ୍ସନାମିଶା କଣ୍ଠରେ ଅନୁଯୋଗ କଲା... "ତମକୁ ଖୋଜିଖୋଜି ଏଠି ମୋର ଦୁଇଘଣ୍ଟା ମାରା ହେଲାଣି ଦାଦା ! ଚାଲ ତମକୁ ଗୋଟାଏ ଲୋକାଲରେ ଉଠାଇ ଦେବି।" ସମ୍ମୋହିତ ପରି, ତା' ପଛେ ପଛେ ଉଠିଲି। ଆଉ ମନେ ମନେ ବିସ୍ମିତ ହେଲି। ଏ ଲୋକଟା ଅକ୍ଲେଶରେ ତ ମୋର ସୁଟକେଶ ଧରି ପଳାଇ ପାରିଥାନ୍ତା। ମୋତେ ଖୋଜୁଥିଲା କାହିଁକି ?

ସେଇଦିନୁ ମଣୀଷର ଚେହେରା ଦେଖି ମୁଁ ଆଉ କାହାକୁ ବିଶ୍ୱାସ, ଅବିଶ୍ୱାସ କରୁନାହିଁ। ପ୍ଲାଟଫର୍ମରେ ମହଳ ଆଲୁଅ ତା'ର ହାଡୁଆ ମୁହଁର ରୁଢ଼ ଆଉ ଧୂର୍ତ୍ତ ଆଖି ଉପରେ ପଡ଼ି ତା' ଚେହେରାକୁ ଆଉରି ନିରୁତ୍ସାହଜନକ କରି ଦେଇଛି। ଜୀବନରେ କିନ୍ତୁ ଅନେକ ଭଦ୍ର ମାର୍ଜିତ ଚେହେରାର ମଣିଷଙ୍କଠାରୁ ମୁଁ ଅନେକ ଠୋକ୍‌କର ଖାଇଲି । ଇଏ କିନ୍ତୁ ଭିଡ଼ ଆଡ଼େଇ ଗୋଟାଏ ଲୋକାଲ ଟ୍ରେନରେ ମୋତେ ବସାଇଦେଲା। ସୁଟକେଶଟାକୁ ବେଞ୍ଚତଳେ ରଖି, ଦୃଷ୍ଟି ରଖିବା ପାଇଁ ସତର୍କ କରିଦେଲା। ମୁଁ ତାକୁ ପାଞ୍ଚଟଙ୍କିଆ ନୋଟ

ଖଣ୍ଡେ ଦେଲି, କିନ୍ତୁ ତା'ର ପରିଶ୍ରମ ଆଉ ଦୁଇଘଣ୍ଟାରୁ ଊର୍ଦ୍ଧ୍ୱ ସମୟ ନଷ୍ଟ କରିଥିବା ପାଇଁ ପାଞ୍ଚଟଙ୍କା ଆଦୌ ହେଲା ନାହିଁ ବୋଲି, ସେ ଆପତ୍ତି କରିବ ବୋଲି, ମୁଁ ମନେମନେ ଭାବୁଥିଲି। କିନ୍ତୁ ଚେନାଏ ହସରେ ତାର ଗୁଡ଼ିଆ ମୁହଁଟା ଉଜ୍ଜ୍ୱଳ ହୋଇ ଉଠିଲା। 'ସଲାମ' କହି ସେ କମ୍ପାର୍ଟମେଣ୍ଟ ଭିତରୁ ଓହ୍ଲାଇ ପ୍ଲାଟଫର୍ମର ଯାତ୍ରୀଗହଳ ଭିତରେ ହଜିଗଲା।

ମୁହଁର ଚେହେରା, ମଣିଷର ପ୍ରକୃତ ପରିଚୟ ଆଦୌ ନୁହେଁ, ସେଇ ଦିନ ଶକ୍ତିଗଡ଼ ଷ୍ଟେସନରେ ଅକଥ୍ୟ ଦୁର୍ଯୋଗ ଭିତରେ ମୁଁ ଏଇ ସତ୍ୟ ଆବିଷ୍କାର କରିଥିଲି।

୧୮ । ୦୧ । ୮୭

# ସେରଲକ୍ ହୋମ୍ସ ଶତବାର୍ଷିକୀ

ବିଶ୍ୱସାହିତ୍ୟର ଇତିହାସରେ ସେକ୍ସପିଅର୍ ବା କାଳିଦାସଙ୍କ ପରି କେତେକ ମୃତ୍ୟୁହୀନ ସାହିତ୍ୟ ସ୍ରଷ୍ଟାଙ୍କର ଶତବାର୍ଷିକୀ ମହାସମାରୋହରେ ପାଳିତ ହୋଇଥାଏ। ମାତ୍ର ସ୍ରଷ୍ଟା ପରିବର୍ତ୍ତେ ତାଙ୍କ ଦ୍ୱାରା ସୃଷ୍ଟ, ସଂପୂର୍ଣ୍ଣ ଭାବରେ ଏକ କାଳ୍ପନିକ ଚରିତ୍ରର ଶତବାର୍ଷିକୀ ପାଳିତ ହେବା ବିଶ୍ୱ-ସାହିତ୍ୟରେ ସମ୍ପୂର୍ଣ୍ଣ ଭାବରେ ଏକ ବିରଳ ଘଟଣା। ଏହା ଯେପରି ଅଭାବନୀୟ ସେହିପରି ମଧ୍ୟ ଅଭୂତପୂର୍ବ।

ଏହି ପୃଷ୍ଠଭୂମିରେ ପ୍ରସିଦ୍ଧ ଡିଟେକ୍‌ଟିଭ୍ ଔପନ୍ୟାସିକ ସାର୍ ଆର୍ଥର କୋନାନ୍ ଡୟେଲଙ୍କ ଦ୍ୱାରା ସୃଷ୍ଟ ସେର୍‌ଲକ୍ ହୋମ୍‌ସର ଶତବାର୍ଷିକୀ ମହାସମାରୋହରେ ଲଣ୍ଡନ ଓ ପୃଥିବୀରେ ଅନ୍ୟତ୍ର ପାଳିତ ହେଉଥିବା, ଏକ ଉଲ୍ଲେଖଯୋଗ୍ୟ ଘଟଣା। ସାର୍ ଅର୍ଥର୍ ବୃତ୍ତିରେ ଜଣେ ଡାକ୍ତର ଥିଲେ, ମାତ୍ର ପ୍ରବୃତ୍ତିରେ ସେ ଥିଲେ ଲେଖକ। ଆଜକୁ ଶହେବର୍ଷ ତଳେ ସେ ସେର୍‌ଲକ୍ ହୋମ୍ସ ଚରିତ୍ର ସୃଷ୍ଟି କରିଥିଲେ। ସେହିଦିନୁ ଇତିମଧ୍ୟରେ ଏହି ଚରିତ୍ରଟି ବିଶ୍ୱବ୍ୟାପୀ ପାଠକ ସମାଜକୁ କିପରି ଗଭୀର ଭାବରେ ସ୍ପର୍ଶ ଓ ପ୍ରଭାବିତ କରିଛି, ଏଥିରୁ ତାହା ସ୍ପଷ୍ଟ ହେବ। ଆଜି ସେକ୍ସପିଅର ସ୍ମରିତ ଓ ବରିତ ହୋଇପାରି ଥାଆନ୍ତି ସତ୍ୟ; ମାତ୍ର 'ଓଥଲୋ' ନୁହେଁ, 'ହାମଲେଟ୍' ବି ନୁହେଁ, 'କିଙ୍ଗ ଲିଇର' ବି ନୁହେଁ। ସେହିପରି କାଳିଦାସଙ୍କ ମୃତ୍ୟୁହୀନ ନାୟିକା, 'ଶକୁନ୍ତଳା'ର ଶତବାର୍ଷିକୀ ପାଳନ କରୁଛି ବା କିଏ ?

ସେର୍‌ଲକ୍ ହୋମସ୍‌ର ଶତବାର୍ଷିକୀ ବେଶ୍ ତୋଡ଼ିଯୋଡ଼ରେ ଲଣ୍ଡନରେ ଆରମ୍ଭ ହୋଇଛି। ଏଇ ମାସ ପ୍ରଥମ ସପ୍ତାହରେ, ଏହି ଉପଲକ୍ଷରେ ଲଣ୍ଡନ୍‌ର ଓ୍ୱେଷ୍ଟ ମିନିଷ୍ଟର ପ୍ରାସାଦରେ ଏକ ଦିଲଦାର ରାତ୍ରିଭୋଜନର ବ୍ୟବସ୍ଥା ହୋଇଥିଲା। ଏଥିରେ ସେର୍‌ଲକ୍ ହୋମସ୍‌ର ମୁଗ୍ଧ ପାଠକମଣ୍ଡଳୀ ଯୋଗଦେଇ, ପ୍ରଚୁର ପାନ ଭୋଜନରେ ସେର୍‌ଲକ୍ ହୋମସ୍ ଉଦ୍ଦେଶ୍ୟରେ ଶ୍ରଦ୍ଧା ନିବେଦନ କରିଥିଲେ । (ଆମ ଦେଶରେ ଜୟନ୍ତୀ ବା ଶତବାର୍ଷିକୀ ଉତ୍ସବକୁ ଯେଉଁମାନେ ଶୁଖିଲା ଭାଷଣରେ କେବଳ ବଢ଼ାନ୍ତି, ମୋ ମତରେ ସେମାନଙ୍କର ନିଶ୍ଚୟ ଏଥିରୁ କିଛି, ଶିକ୍ଷା କରିବାର ରହିଛି। 'ସଲିଳ ନ ଛିଞ୍ଚି ଶୁଷ୍କ ଦଣ୍ଡବତ'

ଶତବାର୍ଷିକୀ ନୁହେଁ, ଜୟନ୍ତୀ ବି ନୁହେଁ।) ଏ ଭୋଜିସଭାରେ ସେଦିନ ପୁଣି, ବିଲାତର ପ୍ରାକ୍ତନ୍ ହୋମ୍ ସେକ୍ରେଟାରୀ ବା ସ୍ୱରାଷ୍ଟ୍ର ମନ୍ତ୍ରୀ ମେରଲୀନ ରୀଜ୍ ଉପସ୍ଥିତ ରହିଥିଲେ। ଏଥିରେ ଯୋଗ ଦେଇଥିଲେ ସେରଲକ୍ ହୋମସ୍ ସୋସାଇଟିର ୧୮୦ ଜଣ ସଦସ୍ୟ। ଏମାନଙ୍କ ମଧ୍ୟରେ ମଧ୍ୟ ଥିଲେ, ସେରଲକ୍ ହୋମସ୍‌ର ସ୍ରଷ୍ଟା ସାର୍ ଆର୍ଥରଙ୍କର ଏକମାତ୍ର ଜୀବିତା କନ୍ୟା, ୭୩ ବର୍ଷ ବୟସ୍କା ଡେମ୍‌ସ୍ ଜାଁ କେନାନ୍ ଡୟେଲ। ନ୍ୟୁୟର୍କରେ ସେହିପରି ସେରଲକ୍ ହୋମସ୍‌ଙ୍କର ମୁଗ୍‌ଧ ରସିକ ମଣ୍ଡଳୀ ଶତବାର୍ଷିକୀ ପାଳନର ଅୟମାରମ୍ଭ କରୁଛନ୍ତି, ଭୋଜିସଭାରେ। ଏଇ ଉପଲକ୍ଷରେ ଆମେରିକାରେ, ସାର୍ ଆର୍ଥଙ୍କର ଗୋଟିଏ କାଳ୍ପନିକ ଘୋଡ଼ା, ସିଲ୍‌ଭର ବ୍ଲେଜ୍‌ରିର ଖାତିରରେ ଏକା ଘୋଡ଼ାଦୌଡ଼ର ମଧ୍ୟ ଆୟୋଜନ କରାଯାଉଛି। ଏ ଘୋଡ଼ାଟି ସାର୍ ଆର୍ଥରଙ୍କର ଏକ ଉପନ୍ୟାସରେ ଅଛି।

ସୁଇଜରଲ୍ୟାଣ୍ଡ୍‌ରେ ସେରଲକ୍ ହୋମ୍‌ସ ଶତବାର୍ଷିକୀ ଉପଲକ୍ଷରେ ରୋକେନ୍‌ବାକ୍‌ଫଲସ୍ ପର୍ବତର ପାଦଦେଶରେ ସେରଲକ୍ ହୋମସ୍ ଉଦ୍ଦେଶ୍ୟରେ ଗୋଟିଏ ମ୍ୟୁଜିୟମ୍‌ର ଶିଳାନ୍ୟାସ ହେଉଅଛି। କୌଣସି ସହରରେ ମ୍ୟୁଜିୟମଟିକୁ ସ୍ଥାପିତ ନ କରି ଏହି ପର୍ବତର ପାଦଦେଶରେ ତାହାକୁ ସ୍ଥାପନ କରିବାର ଉଦ୍ଦେଶ୍ୟ ହେଉଛି, କେନାନ୍ ଡୟେଲଙ୍କର 'ଦି ଫାଇନାଲ ପ୍ରବ୍‌ଲେମ୍' ଉପନ୍ୟାସରେ ଏହି ପର୍ବତର ପାଦଦେଶରେ ଡିଟେକ୍‌ଟିଭ୍ ସେରଲକ୍ ହୋମ୍‌ସ ଓ ତାଙ୍କର ପ୍ରବଳ ଶତ୍ରୁ ପ୍ରଫେସର୍ ମୋରିଆତାରିଙ୍କ ମଧ୍ୟରେ ମରଣାନ୍ତକ ଖଣ୍ଡାଯୁଦ୍ଧ ବା ଡୁଏଲ୍ ହୋଇଥିଲା, ଯେଉଁଥିରେ ସେରଲକ୍ ହୋମ୍‌ସ ମୃତ୍ୟୁବରଣ କରିଥିଲେ। ମାତ୍ର ଇତିମଧ୍ୟରେ ଏହି କାଳ୍ପନିକ ଚରିତ୍ରଟି ପ୍ରତି ପାଠକମାନଙ୍କର ଶ୍ରଦ୍ଧା ଓ ସହାନୁଭୂତି ଏପରି ନିବିଡ଼ ହୋଇ ଉଠିଥିଲା ଯେ, ସାର୍ ଆର୍ଥର୍ ସେରଲକ୍ ହୋମସ୍‌ଙ୍କୁ ହଠାତ୍ ମୃତ୍ୟୁମୁଖରେ ପକାଇ ଦେଇଥିବାରୁ ପାଠକ ସମାଜ ଏହା ବିରୁଦ୍ଧରେ ତୁମୁଳ ପ୍ରତିବାଦ କରିଥିଲେ। ଏହି ଚାପରେ ସାର୍ ଆର୍ଥରଙ୍କୁ ସେରଲକ୍ ହୋମସ୍ ଚରିତ୍ରକୁ ପୁଣି ୧୯୦୩ ସାଲରେ ପୁର୍ନଜୀବିତ କରିବାକୁ ପଡ଼ିଥିଲା। ଗୋଟିଏ କାଳ୍ପନିକ ଚରିତ୍ର, ରକ୍ତମାଂସର ଜୀବିତ ଐତିହାସିକ ଚରିତ୍ରଠାରୁ କିପରି ଆଉରି ବୃହତ୍ତର ସତ୍ୟ ଓ ଜୀବନ୍ତ ହୋଇପାରେ, ଏହା ତାହାର ପ୍ରକୃଷ୍ଟ ଉଦାହରଣ। ସେରଲକ୍ ହୋମ୍‌ସ ଶତବାର୍ଷିକୀ ଜାପାନ ଓ ଅଷ୍ଟ୍ରେଲିଆ ପରି ଦେଶମାନଙ୍କରେ ମଧ୍ୟ ମହାସମାରୋହରେ ପାଳିତ ହେଉଅଛି।

ଡିଟେକ୍‌ଟିଭ୍ ଉପନ୍ୟାସ ପ୍ରତି ଯେତେ ନାସିକା କୁଞ୍ଚନ କରାଗଲେ ସୁଦ୍ଧା, ଇଂରାଜୀ ସାହିତ୍ୟରେ ଅନ୍ତତଃ ଏହା ଇତିମଧ୍ୟରେ ଆଭିଜାତ୍ୟ ଅର୍ଜନ କରିସାରିଲାଣି। କିନ୍ତୁ କାହିଁକି ? ଓ କିପରି ? ଏ ପ୍ରଶ୍ନଟି କିନ୍ତୁ ଆଦୌ ସାହିତ୍ୟିକ ନୁହେଁ। ଏହା ସାମାଜତାତ୍ତ୍ୱିକ ଓ ମନସ୍ତାତ୍ତ୍ୱିକ। ସାମ୍ପ୍ରତିକ ସମାଜରେ, ନରହନ୍ତା, ଦସ୍ୟୁ, ଡକାୟତମାନେ ଆଇନ୍ ଓ ଶୃଙ୍ଖଳାରକ୍ଷା ବ୍ୟବସ୍ଥା ପ୍ରତି ବୃଦ୍ଧାଙ୍ଗୁଷ୍ଠ ଦେଖାଇ ଅକ୍ଲେଶରେ ଖସି ଯାଇପାରୁଛନ୍ତି। ସେମାନଙ୍କୁ ଧରି ସମୁଚିତ

ଶାସ୍ତି ଦେବା ସମ୍ଭବ ହେଉନାହିଁ। ଆଜିର ଶାସନ ଓ ନ୍ୟାୟବିଚାରର ବ୍ୟବସ୍ଥା ସେହିପରି ହୋଇଛି। ଅପରାଧୀ ପରିବର୍ତ୍ତେ ସାଧୁ ଓ ନିରୀହ ଲୋକମାନେ ବରଂ ଶାସ୍ତି ଭୋଗୁଛନ୍ତି। ଗୀତାରେ ଭଗବାନ ଶ୍ରୀକୃଷ୍ଣ କହିଥିଲେ, "ପରିତ୍ରାଣାୟ ସାଧୁନାଂ ବିନାଶୟ ଚ ଦୁଷ୍କୃତାଂ !"... କେବଳ ଡଟେକ୍‌ଟିଭ୍ ଉପନ୍ୟାସମାନଙ୍କରେ ଉତ୍ପୀଡ଼ିତ ମନୁଷ୍ୟର ଚରମ ଆକାଂକ୍ଷା ଚରିତାର୍ଥ ହୋଇପାରୁଛି। ଡିଟେକ୍‌ଟିଭ୍ ଉପନ୍ୟାସମାନଙ୍କରେ କେବଳ, ପାଠକମାନେ ସେମାନଙ୍କର ଆକାଂକ୍ଷାର ବିକଳ୍ପ ପରିତୃପ୍ତି ପାଇପାରୁଛନ୍ତି। ଡିଟକ୍‌ଟିଭ୍ ସେର୍‌ଲକ୍ ହୋମ୍‌ସ ଏହାର ପ୍ରତୀକ।

ସେଇପାଇଁ ସେର୍‌ଲକ୍ ହୋମ୍‌ସ ଶତବାର୍ଷିକୀ ପାଳନର ଏ ମହୋତ୍ସବ !

୨୪ । ୦୧ । ୮୭

# ଅପର୍ଣ୍ଣାର ତପସ୍ୟା

ପ୍ରତିବର୍ଷ ଶୀତ ଶେଷରେ ମୁଁ ଦେଖେ ପ୍ରକୃତିର ଅପର୍ଣ୍ଣା ଚେହେରା ! ଗଛସବୁ ଶାଖାମାନଙ୍କରୁ ବିବର୍ଣ୍ଣ ଜୀର୍ଣ୍ଣପତ୍ରସବୁ ଝାଡ଼ିଝୁଡ଼ି ଦେଇ, ଥୁଣ୍ଟା ଡାଳମେଲି, ଠିଆ ହୋଇ ରହନ୍ତି, ମୌନ ତପସ୍ୟାରେ ମୋର ମନେ ପଡ଼େ ଅପର୍ଣ୍ଣାର କଠୋର ତପସ୍ୟା ! ପାର୍ବତୀ ଶିବଙ୍କୁ ପାଇବା ପାଇଁ ପୌରାଣିକ କାଳରେ କୁଆଡ଼େ ଏଇପରି ତପସ୍ୟାରେ ପଳେ ପଳେ ତନୁକ୍ଷୟ କରିଥିଲେ। ପାର୍ବତୀ ସେଇଦିନୁ ହୋଇଛନ୍ତି ଅପର୍ଣ୍ଣା ! କାଳର ମାନସଦୃଷ୍ଟିରେ, ଗିରିରାଜ ହିମାଳୟର ସାନୁଦେଶରେ ପତ୍ରହୀନ ବୃକ୍ଷରାଜିର ଇଏ ଏକ ପ୍ରତୀକ ଚିତ୍ର ! ସେଇ ଅପର୍ଣ୍ଣା ମୂର୍ତ୍ତି, ମୁଁ ଏବେ ଦେଖୁଛି ମୋର ଚାରିପଟେ ! ଦକ୍ଷିଣାର ଧୀର ସ୍ପର୍ଶରେ, ଜୀର୍ଣ୍ଣପତ୍ରସବୁ ମୃଦୁ ମର୍ମର ତୋଳି, ତଳେ ଝରି ପଡୁଛନ୍ତି। ସେଥିରେ ଆର୍ତ୍ତନାଦ ନାହିଁ, ବିଳାପ ନାହିଁ ! ଝରାପତ୍ର ମର୍ମରରେ ମୁଁ ଶୁଣିପାରେ, ମୃତ୍ୟୁ ଉଦ୍ଦେଶ୍ୟରେ, ପରିପୂର୍ଣ୍ଣ ଜୀବନର ଶ୍ରଦ୍ଧା ନିବେଦନ !

ଶ୍ରଦ୍ଧାରେ ବଗିଚା ବୋଲି କୁହାଯାଉଥିବା ଅନ୍ଧ ପୁତ୍ରର ନାମ ପଦ୍ମଲୋଚନ ପରି ଏଇ ଗୁଳ୍ମାକୀର୍ଣ୍ଣ କଙ୍କରିଳ ପ୍ରାନ୍ତରରେ କାଠଚମ୍ପା ଗଛମାନଙ୍କରୁ କେବେଠାରୁ ଜୀର୍ଣ୍ଣ ପତ୍ରସବୁ ଝରି ପଡ଼ିଲେଣି ! ଶୁଷ୍କ ଅସ୍ଥିଖଣ୍ଡ ପରି, ବିବର୍ଣ୍ଣ ଡାଳସବୁ ଆକାଶ ଆଡ଼େ ଚାହିଁ, ପ୍ରାର୍ଥନା କରୁଛନ୍ତି, ଅତ୍ୟାଚାରିତ ଆତ୍ମାପରି ପରିତ୍ରାଣ ପାଇଁ ! ଭାରୀ ବିଷର୍ଣ୍ଣ ଏଇ ପରିବେଶ ! ଗତ ବର୍ଷ ତ ମୋର ମନେ ହୋଇଥିଲା, କାଠଚମ୍ପା ଗଛସବୁ ମରିଗଲେ ପରା। ମାଳୀକୁ ଦିନେ କହିଥିଲି, ମଲା ଥୁଣ୍ଟାଗଛଗୁଡ଼ାଙ୍କୁ ହାଣି ଦେବା ପାଇଁ ! ସେମାନେ ପୃଥିବୀ ଉପରେ ଗୋଟାଏ ଦୁର୍ବାର ଜଞ୍ଜାଳ ! ଯେଉଁ ପକ୍ଷୀମାନେ, ସେଇ ଗଛମାନଙ୍କର ଶାଖାରେ ଶାଖାରେ ପତ୍ରଛାୟାରେ ଜମାଉଥିଲେ ଦିନେ କାକଳୀର ମୁସାୟରା, ଏବେ ସେମାନେ ସେ ପତ୍ରହୀନ ଗଛମାନଙ୍କୁ ଯେପରି ଚିହ୍ନିପାରୁ ନାହାନ୍ତି। ମାଳୀ କୁରାଢ଼ୀ ଧରି, ଗଛ ମୂଳକୁ ଗଲା ସିନା, କିନ୍ତୁ ଫେରି ଆସିଲା, ହଠାତ୍ ଗଛମୂଳେ ଭୂତ ଦେଖିଥିବା ପରି ! କହିଲା, "ଡାଳମାନଙ୍କରେ ନୂଆପତ୍ର କଅଁଳି ଆସୁଛି ! ହାଣିବି କିପରି ?" ମୁଁ ଗଛମୂଳକୁ ଯାଇ ଚମକି ଉଠିଲି ! ପ୍ରକୃତରେ

ଗଛମାନଙ୍କର ଶୁଷ୍କ କଙ୍କାଳ ଉପରେ ନବପଲ୍ଲବ ସବୁ କଅଁଳି ଉଠୁଛି। ସେଇଦିନ ସେଇଠାରେ ମୁଁ ବୁଝିଥିଲି- ଜୀବନ, ମୃତ୍ୟୁ ଓ ପୁନର୍ଜନ୍ମର ରହସ୍ୟ! ଏ ବର୍ଷ ପୁଣି ସେଇ ଦୃଶ୍ୟର ପୁନରାବୃତ୍ତି... ସେଇ ପତ୍ରହୀନ ଥୁଣ୍ଟା ଗଛ। ଚଢ଼େଇମାନେ ଠିକ୍ ମତ୍‌ଲବୀ ସମୟସେବୀ ମଣିଷମାନଙ୍କ ପରି। ଯୋଉଦିନ ଏମାନଙ୍କର ସ୍ୱାର୍ଥସିଦ୍ଧି ହୋଇଯାଏ, ଆଉକିଛି ନୂଆ ସ୍ୱାର୍ଥସାଧନର ସମ୍ଭାବନା ନଥାଏ, ସେମାନେ ସେଦିନର ମଣିଷକୁ ଆଉ ଚିହ୍ନିପାରନ୍ତି ନାହିଁ। ଗୁଣ୍ଡୁଚିମୂଷା ସବୁ ସୁଦ୍ଧା, ଚଢ଼େଇମାନଙ୍କ ପରି ଏଇ ସମୟସେବୀମାନଙ୍କ ଦଳରେ। ସେମାନେ ମଧ୍ୟ ଆଉ ପତ୍ରହୀନ କାଠଚମ୍ପା ଗଛଗୁଡ଼ାକଙ୍କର ଡାଳରେ ଡାଳରେ ଡାଳମାଙ୍କୁଡି ଖେଳୁ ନାହାନ୍ତି। ମୁଁ ଆଉ ମଣିଷମାନଙ୍କୁ ଖାଲି ସମୟସେବୀ ବୋଲି ଦୋଷ ଦେବି କାହିଁକି ? ସମସ୍ତେ ସମାନ! କାଠଚମ୍ପା ଗଛସବୁ ଦିଶିଲେଣି କ୍ରମେ, ନିର୍ବାଚନରେ ପରାଜିତ ନେତାମାନଙ୍କ ପରି! ସେମାନଙ୍କ ଦୂଆରେ ଉମେଦ୍‌ୱାର୍‌ମାନଙ୍କର ଭିଡ଼ ଆଉ ଜମୁନାହିଁ। ନିଭୃତ କୋଳାହଳହୀନ ପରିତ୍ୟକ୍ତ ବୈଠକଖାନାରେ ବସି ବସି, ସେମାନେ ବହୁବାର ପଢ଼ା ଖବରକାଗଜ ଉପରେ ମୁଣ୍ଡ ନୁଆଇଁ ବସିଥିବା ପରି, ଏ ଗଛମାନଙ୍କର ଅସହାୟ ପରିତ୍ୟକ୍ତ ଚେହେରା!

କିନ୍ତୁ ସନାତନ ବରଗଛଟି ଏ ବିବର୍ତ୍ତନ, ପରିବର୍ତ୍ତନ ଭିତରେ ଅଚଞ୍ଚଳ ମୌନତାରେ ଠିଆ ହୋଇଛି! ତା'ର ଘଞ୍ଚଶାଖାମାନଙ୍କରେ ପତ୍ରସବୁ କେବେଠାରୁ ହଳଦିଆ ପଡ଼ି ଆସିଲାଣି। ଶୀତ ରାତିରେ କୋହଲା ପବନ, ସେଇ ବିବର୍ଣ୍ଣ ପତ୍ରମାନଙ୍କ ଉପରେ ଜମେଇ ଜମେଇ ଦେଇଯାଇଛି ଅନେକ ଦିନର ଧୂଳି! ନବପଲ୍ଲବ ଅଙ୍କୁରିବା ପାଇଁ, ଶାଖାମାନଙ୍କରେ ଆଉ ସ୍ଥାନ ନାହିଁ! ଗଛ ଶାଖାମାନଙ୍କରେ ଚାପି ବସିଛନ୍ତି, ଏଇ ଗତାୟୁ ପତ୍ରମାନେ! ଏ ସନାତନ ବରଗଛଟା ଯେପରି 'ଏଷ୍ଟାବ୍ଲିଶ୍‌ମେଣ୍ଟ'ର ପ୍ରତୀକ! ଦକ୍ଷିଣାର ହିଲ୍ଲୋଳ ତାକୁ ଆଦୌ ସ୍ପର୍ଶ କରିପାରୁନାହିଁ। ସିଏ ଯେପରି ଅପେକ୍ଷା କରୁଛି ବିପ୍ଲବର ଅନ୍ଧଘୂର୍ଣ୍ଣି ପରି ଉନ୍ମତ୍ତ ଚୈତାଳୀ! ଆସ ଚୈତାଳୀ, ଭାଙ୍ଗୀ ଉଡ଼ାଇନିଅ ଏ ବିବର୍ଣ୍ଣ, ଧୂସର ନିର୍ବେଦତା। ଏ ପୃଥିବୀ ପୁଣିଥରେ ସବୁଜ ହେଉ! ନବପଲ୍ଲବ ପାଇଁ ଅପର୍ଣ୍ଣାର ଦୀର୍ଘ ମୌନ ତପସ୍ୟା ଫଳବତୀ ହେଉ।

୦୮।୦୨।୮୭

# ମସ୍ତାନ୍ ବଗର ଟେକ୍‌ନିକାଲ୍ ନୋ-ହାଓ

ଧୀ ପାଠକ, ପାଠିକାମାନେ ସ୍ମରଣ କରିପାରନ୍ତି, ଏହି ସ୍ତମ୍ଭରେ କିଛିଦିନ ତଳେ ମୁଁ ମୋ ବଗିଚାରେ ଗୋଟିଏ ମସ୍ତାନ୍ ବଗ କଥା ଲେଖିଥିଲି। ସେଥର ସିଏ ଗୋଟାଏ ଟଗର ଗଛମୂଳେ ଅନ୍ୟ ବଗର ବଗୁଲୀ ସହିତ ଟିକିଏ ରସିକତା ଆରମ୍ଭ କରୁଥିବା ବେଳେ, ଅନ୍ୟ ବଗଟି କ୍ଷୁବ୍ଧ ଈର୍ଷାନ୍ୱିତ ହୋଇ, ତା'ଉପରେ ଯେପରି ଥଣ୍ଟାଘାତ କରିଥିଲା, ସେଥିରେ ସେ ବିଚାରା ନିତାନ୍ତ ଅପଦସ୍ତ ହୋଇ, ନିମଗଛ ଚୂଡ଼ା ଉପରକୁ ଉଡ଼ି ଯାଇଥିଲା। ତା' ପରଠାରୁ ତା'ର ଆଉ ଦେଖା ନ ଥିଲା।

କିଛିଦିନ ପରେ ଦେଖେ, ସେଇ ଏକୁଟିଆ ବାଆଁରା ମସ୍ତାନ୍ ବଗଟି ମୋ ଘର ସାମ୍ନା ପିଚୁରାସ୍ତା ଉପରେ ସାହି ମସ୍ତାନ୍ ଟୋକାଙ୍କ ପରି କାନ୍ଧ ଫୁଲାଇ ବୁଲୁଛି, ଆଉ ବେଫିକର ତାର ଖାଦ୍ୟ ଅନ୍ୱେଷଣ କରୁଛି। ଏହା ପୂର୍ବରୁ କୌଣସି ଗାଁ ଦାଣ୍ଡରେ ସୁଦ୍ଧା, କୌଣସି ବଗ ଏପରି ନିର୍ଭୟରେ ବୁଲୁଥିବା ମୁଁ କେବେ ଲକ୍ଷ୍ୟ କରିନଥିଲି। ଇଏ ପ୍ରକୃତରେ ଅଭୂତପୂର୍ବ, ଅଦୃଷ୍ଟପୂର୍ବ ମଧ୍ୟ। ମସ୍ତାନ୍ ବଗଟା, ରାସ୍ତାରେ ଯିବା ଆସିବା କରୁଥିବା ମଟର ସ୍କୁଟର ପ୍ରତି ଭ୍ରୂକ୍ଷେପ କରୁନାହିଁ। ଏ ରାସ୍ତାଟି ଯେପରି ତାର ନିଜସ୍ୱ ଇଲକା। କଟକ ସହର ରାସ୍ତାରେ ଅବଶ୍ୟ ବୁଲା ଗାଈଗୋରୁଙ୍କର ଏ ସ୍ୱାଧିକାର ମାନ୍ୟତାପ୍ରାପ୍ତ ହୋଇସାରିଛି। ଏବେ କିନ୍ତୁ ରାଜଧାନୀ ଭୁବନେଶ୍ୱରରେ ଏଇ ମସ୍ତାନ ବଗଟି କ୍ରମେ ସେଇ ସ୍ୱାଧିକାର ଦାବି କଲାଣି।

ହଁ, ଇଏତ ରାଜଧାନୀ ଭୁବନେଶ୍ୱର। ଏଠି ସବୁ ସମ୍ଭବ। ପଙ୍ଗୁ ଏଠାରେ ଯେପରି ଗିରି ଲଙ୍ଘନ କରିପାରେ, ଗିରିଲଙ୍ଘନକାରୀ ମଧ୍ୟ ସେହିପରି ପଙ୍ଗୁ ହୋଇପାରେ। ମୂକ ଏଠାରେ ବାଚାଳ ହୁଏ, ବାଚାଳ ମଧ୍ୟ ମୂକ ହୋଇଯାଏ। ତେବେ ସବୁ ହେଲା ଉପରବାଲାଙ୍କର ଆଶୀର୍ବାଦର କଥା। ସହରର ସାହି ମସ୍ତାନମାନଙ୍କ ପରି, ଏଇ ମସ୍ତାନ ବଗଟି କାହାର ଆଶୀର୍ବାଦ ପାଇଛି କେଜାଣି ?

ଯାହାହେଉ, କିଛିଦିନ ଏହିପରି ଭାବରେ ସେ ବିଚ୍ ରାସ୍ତା ଉପରେ ହଲି, ଦୋଳି ତାର ନିଃସଙ୍ଗ ମହିମାରେ ବିଚରଣ କରିବା ପରେ ପୁଣି ହଠାତ୍ ଦିନେ ନିପତ୍ତା ହୋଇଗଲା। ଏବେ ତାକୁ ଦେଖିଲି, ମୋ ପଡ଼ିଶାଙ୍କ ବଗିଚାରେ। ଗୋଟାଏ କଳା ଛଉକା, ଜର୍ସୀ ଗାଈ ସାଙ୍ଗରେ ସିଏ ଟହଲ ମାରୁଛି। ଗାଈ ଉତ୍ତରକୁ ଗଲେ ଲମ୍ବା ଲମ୍ବା ପାଦ କାଢ଼ି ସିଏ ଯାଉଛି ଉତ୍ତରକୁ, ପୂର୍ବକୁ ଗଲେ ପୂର୍ବକୁ, ପଶ୍ଚିମକୁ ଗଲେ ପଶ୍ଚିମକୁ, ଦକ୍ଷିଣକୁ ମୋଡ଼ିଲେ ଦକ୍ଷିଣକୁ; ଏହିପରି। ସିଏ ଚାଲିଛି ଗାଈର ଥୋମଣିଠାରୁ ନିକଟ ଦୂରତ୍ୱରେ, ଠିକ୍ ମନ୍ତ୍ରୀମାନଙ୍କ ସାଙ୍ଗରେ ଯେପରି ଅନୁସରଣୀୟା ପାଖଲୋକମାନେ ଚାଲନ୍ତି। ଫୁସ୍‌ଫୁସ୍ କରି କାନରେ କିଛି କହିଲେ, ମନ୍ତ୍ରୀ ଶୁଣିପାରିବା ଭଳି ଦୂରତ୍ୱରେ।

କ୍ରମାଗତ ଭାବରେ ଦୁଇତିନି ଦିନ ସେଇ ଏକାଦୃଶ୍ୟ ଦେଖିବା ପରେ, ମୁଁ ଏ ବଗ ସମ୍ପର୍କରେ ଭାରି କୌତୂହଳୀ ହୋଇଉଠିଲି। ରହସ୍ୟଟା ଜାଣିବା ପାଇଁ ମୁଁ କଷ୍ଟେମଷ୍ଟେ ପଡୋଶୀ ଭଦ୍ରଲୋକଙ୍କ ବାଡ଼ ପର୍ଯ୍ୟନ୍ତ ଗଲି। ଦେଖିଲି ଗାଈ ଘାସ ଚରିବା ବେଳେ, ଝିଣ୍ଟିକା ପୋକ ଜୋକ ପ୍ରଭୃତି ଖପ୍ ଖାପ୍ ଉପରକୁ ଡେଇଁ ପଡୁଛନ୍ତି। ଆଉ ବଗଟି ଟକ୍‌ଟାକ୍ ସେମାନଙ୍କୁ ଉଦରସ୍ଥ କରିଯାଉଛି। ମସ୍ତାନ ବଗର ଇଏ ଗୋଟିଏ ଚମତ୍କାର କୌଶଳ। ଧର୍ମବକ ପରି, ଆଖିବୁଜି ବସି ରହି, କେତେବେଳେ ପୋକଟାଏ ବା ଝିଣ୍ଟିକାଟାଏ ହାବୁଡ଼ରେ ପଡ଼ିଗଲେ ଟକ୍‌କରି ଲମ୍ବା ଥଣ୍ଟରେ ତାକୁ ଉଠାଇ ନେଇ ଗିଳିବାର ଯନ୍ତ୍ରଣା ଏଠାରେ ନାହିଁ। ଗାଈ ଘାସ ଚରିବା ବେଳେ, ପୋକ ଜୋକ ଝିଣ୍ଟିକାମାନେ ଝାଙ୍କ ଝାଙ୍କ ହୋଇ ଉପରକୁ କୁଦା ମାରୁଛନ୍ତି। ବଗ ଥଣ୍ଟର ଆଉ ବିଶ୍ରାମ ନାହିଁ। ମସ୍ତାନ ବଗର ଇଏ ନୂଆ ଟେକ୍‌ନିକାଲ୍ ନୋ ହାଓ।

ସେଇଦିନ ସେଠାରେ ମୁଁ ନିତ୍ୟନୂତନ ଟେକ୍‌ନିକାଲ ନୋହାଓ ମାନଙ୍କର ସ୍ୱରୂପ ଦେଖିଲି ଓ ବୁଝିଲି। ଗରିବ ଦେଶମାନଙ୍କରେ ଆଜି ନୂଆ ନୂଆ ଟେକ୍‌ନିକାଲ ନୋହାଓ ପାଇଁ ପ୍ରବଳ ଆଗ୍ରହ। ଏଇ ବସ୍ତୁଟି ହେଲା, ଦଳେ ପରିଶ୍ରମକାତର ବୁଦ୍ଧିଆ ଲୋକ କମ୍ ପରିଶ୍ରମ କରି ମେସିନ୍ ଦ୍ୱାରା ଶହେ ପୁଞ୍ଜି ଖଟାଇ ସେଥିରୁ ହଜାରେ ମୁନାଫା ଉଠାଇବା ପାଇଁ ଚାହାନ୍ତି। ଏହା ଫଳରେ କୁଆଡ଼େ ଜାତୀୟ ଆୟ ବଢ଼ିବା ସଙ୍ଗେ ସଙ୍ଗେ ଲୋକଙ୍କ ପ୍ରାଚୁର୍ଯ୍ୟ ମଧ୍ୟ ବଢ଼ିବ। କିନ୍ତୁ ନୂଆ ମେସିନ୍ ଲଗାଇ ହଜାରେ ମୁନାଫା ଉଠାଇବା ବେଳକୁ, ଲକ୍ଷ ଲକ୍ଷ ଲୋକ ଯେ, ବେକାର, ଓପାସୀ ହୋଇଯିବେ ସେକଥା ବୁଝୁଛି କିଏ? ପଶ୍ଚିମର ଔଦ୍ୟୋଗିକ ଦେଶମାନଙ୍କ ପାଇଁ ଏହି ସବୁ ନିତ୍ୟନୂତନ ଟେକ୍‌ନିକାଲ ନୋ ହାଓ ପ୍ରଶସ୍ତ ହୋଇପାରେ। ମାତ୍ର ଅବିକଶିତ ବା ବିକାଶମୁଖୀ ଦେଶମାନଙ୍କ ପାଇଁ ନିତ୍ୟନୂତନ ଟେକ୍‌ନିକାଲ ନୋ ହାଓ ପାଇଁ ବ୍ୟାକୁଳତା ଅତି ମାରାତ୍ମକ।

ବଗ ଦେଖାଦେଖି ପୋକଜୋକ ଖାଇବା ଆଶାରେ, ଦୁଇଟା ବଣି ଚଢ଼େଇ ମଧ୍ୟ ଖଣ୍ଡିଉଡ଼ା ଦେଇ ସେଠାକୁ ଆସୁଛନ୍ତି। ମାତ୍ର ମସ୍ତାନ ବଗ ଲମ୍ବା ଲମ୍ବା ପାହୁଲ ପକାଇ, ସେମାନଙ୍କୁ ଆକ୍ରମଣ କରିବା ପାଇଁ ବାହାରିବା ଦେଖି, ସେମାନଙ୍କ 'ଯଃ ପଳାୟତି ସଃ ଜୀବତି' ପରି ସେଠାରୁ ଖଣ୍ଡିଛଡ଼ା ଦେଇ ପୁଣି ପଳାଉଛନ୍ତି।

ଖୁଣ୍ଟରୁ ପଘା ଫିଟାଇ ଗାଈକୁ ଜଗୁଆଳ ଫିଟାଇ ନେଉଛି। ମସ୍ତାନ ବଗ ପରମ ତୃପ୍ତିରେ ଡେଣା ଝାଡ଼ି ଆସନ୍ନ ଗୋଧୂଳିର ନାଲିଚା ଆକାଶକୁ ଡେଣା ମେଲିଦେଉଛି।

*୨୨/୦୨/୮୭*

# ମହାଦୀପ

ଜାଗର ଅମାବାସ୍ୟା... ଗୋଟିଏ ପ୍ରସିଦ୍ଧ ଶିବ ମନ୍ଦିରଚୂଡ଼ାକୁ ମହାଦୀପ ଉଠିବା ବେଳକୁ, ରାତିଅଧ ହୋଇଥିବ। ସମର୍ଥା ହେଉଛନ୍ତି ମନ୍ଦିରର ମହାଦୀପ ସେବକ। ପୁରୁଷାନୁକ୍ରମିକ ଭାବରେ ସେଥିପାଇଁ ଜାଗିରୀ ଜମି ଭୋଗ କରୁଛନ୍ତି ... ସମର୍ଥା ଜାଗିରୀ। ଏପର ସମର୍ଥାଙ୍କୁ ବୟସ ପ୍ରାୟ ପଞ୍ଚଷଠି ହେବଣି। ବୃଦ୍ଧ, ପୁଣି ରାତି ହେଲେ ଆଖିକୁ ଆଉ ଦିଶୁନାହିଁ। ତଥାପି ଏଇ ଦେହ ଓ ବୟସରେ ସେ ପ୍ରାୟ ୧୨୦ ଫୁଟ ଉଚ୍ଚ ମନ୍ଦିର ଚୂଡ଼ାକୁ ମହାଦୀପ ଧରି ଉଠି ଆସୁଛନ୍ତି। ଏଥର ମଧ୍ୟ ସିଏ ମହାଦୀପ ଧରି ଉଠିବେ।

ସକାଳୁ କାଷ୍ଠା ଓପାସ। ମହାଦୀପ ଉଠିବା ପରେ ପ୍ରସାଦ ମୁଠାଏ ମିଳିଲେ ଖାଇବେ। ତା'ପୂର୍ବରୁ ପାଣି ଟୋପାଏ ସୁଦ୍ଧା ଛୁଇଁବେ ନାହିଁ ସମର୍ଥା। କାଷ୍ଠାଓପାସର ଏଇଆ ହେଉଛି ବିଧି। ଗମରା ଭିତରେ ଲିଙ୍ଗଙ୍କ ପାଖରେ ସମର୍ଥା ନିଶ୍ଚଳ ମୂର୍ତ୍ତିପରି ସକାଳୁ ବସି ରହିଛନ୍ତି। ଯାତ୍ରୀ, ଭକ୍ତ ଓ ସେବକମାନଙ୍କର ଗହଳି, କୋଳାହଳ ତାଙ୍କୁ ଯେପରି ସ୍ପର୍ଶ କରୁନାହିଁ! ଏହିପରି ସେ ବସି ରହିବେ, ମନ୍ଦିର ଚୂଡ଼ାକୁ ମହାଦୀପ ନେବାପାଇଁ, ସେବକମାନେ ନିଆଁ ବରିଆ ଆଣିବା ପର୍ଯ୍ୟନ୍ତ।

ରାତି ପ୍ରାୟ ବାରଟା ବେଳକୁ, ହରିବୋଲ, ହୁଳହୁଳି ଧ୍ୱନିରେ ମନ୍ଦିର ବେଢ଼ା ଉଚ୍ଚକିତ। ବେଢ଼ା ଭିତରେ, ବାହାରେ ଅସୁମାରି ଯାତ୍ରୀଭିଡ଼ ସମସ୍ତଙ୍କ ଆଖି ମନ୍ଦିରଚୂଡ଼ା ଅଢ଼େ। ନକ୍ଷତ୍ରର ଆଲୋକରେ ଦିଶୁଛି ମନ୍ଦିର ଚୂଡ଼ାର ଛାୟାଚିତ୍ର। ସେବକମାନେ ସେହି ଯାତ୍ରୀ ଭିଡ଼ ଭିତରେ ନିଆଁ ବରିଆ ଧରି ଗମରା ଭିତରକୁ ଆସିଲେ। ତା'ପରେ ତିନିଥର ପ୍ରଦକ୍ଷିଣ କରି, ମହାଦୀପ ବରିଆ ବଢ଼ାଇଦେଲେ, ବୃଦ୍ଧ ସମର୍ଥାଙ୍କ ହାତକୁ। ବିଦ୍ୟୁତ୍ ସ୍ପୃଷ୍ଟ ପରି ବୃଦ୍ଧ ସମର୍ଥା ହାତରେ ମହାଦୀପ ବରିଆ ଧରି ଏକଲୟରେ ଚାଲିଆସିଲେ ବାହାରକୁ। ହରିବୋଲ... ହୁଳହୁଳି ଧ୍ୱନିରେ ବେଢ଼ା ଭିତର ବାହାର ଉଚ୍ଛୁଳୁଛି! ଏଇ ବରିଆ ମହାଦୀପ ହାତରେ ଧରି ସେ ଏକୁଟିଆ ଉଠିବେ, ମନ୍ଦିର ଚୂଡ଼ାକୁ। ତା'ପରେ ମନ୍ଦିରର ଅଁଳାବେଢ଼ି ଉପରେ ଶିଖରରେ ମହାଦୀପ ରଖି ସେ ପୁଣି ଏକା ଏକା ଓହ୍ଲାଇ ଆସିବେ। ବୟସର

ଭାରାରେ ପାଦ ନିଶ୍ଚୟ ଦୁର୍ବଳ। ସହଜେ ଆଖିକୁ ଦିଶୁନାହିଁ। ମନ୍ଦିର ଚୂଡ଼ାକୁ ଉଠିବାର ଦୃଶ୍ୟ ଆଖିରେ ନ ଦେଖିଲେ, କଳନା କରି ହେବନାହିଁ। ଯାତ୍ରୀମାନଙ୍କ ଆଡ଼କୁ ମୁହଁକରି, ଦୁଇ ହାତରେ ରେଖ ମନ୍ଦିର ବେଢ଼ ଓ ବାଡ଼ ଉପରେ ଆଶ୍ରୟ କରି ସେ ପାଦ ଦୁଇଟା ବେଢ଼ମାନଙ୍କର ଦାଢ଼ରେ ରଖି ଉପରକୁ ଉଠିବେ। ଉଠିବା ବେଳେ ଉପରେ ଯେଉଁଠି ମହାଦୀପ ବରିଆକୁ ଖୋସି ଦେଇଥିବେ, ସେଠାରୁ ତାହାକୁ ପୁଣି ହାତରେ ଉଠାଇ ଧରି ପୁଣି ଆଉରି ଉପରକୁ ରଖିଦେବେ। ତା'ପରେ ହାତ ଉପରେ ଭାରା ରଖି ଆଉରି ଉପରକୁ ଉଠିବେ। ମଝିରେ ଟିକିଏ ଚଉଡ଼ା ଜାଗା ପାଇଲେ ହରିବୋଲ ହୁଳହୁଳି ଧ୍ୱନି ମଧ୍ୟରେ ସେଠାରେ ଚାରିପଟେ ବୁଲି ପରିକ୍ରମା କରିବେ। ଏହିପରି ଭାବରେ ପ୍ରାୟ ପନ୍ଦର ମିନିଟ୍ ମଧ୍ୟରେ ସେ ଅଁଳାବେକି ପାଖରେ ପହଞ୍ଚିଯିବେ। ତା'ପରେ ସେଠାରେ ଯେଉଁ ଲୁହାଶିକୁଳି ଝୁଲୁଥାଏ, ସେଇ ଲୁହାଶିକୁଳିର ଗୋଟାଏ ଗୋଟାଏ କଡ଼ାରେ ଦୁଇପାଦର ବୁଢ଼ା ଆଙ୍ଗୁଠିରଖି ସେ ଶିଖର ଚୂଡ଼ାରେ ମହାଦୀପ ରଖିଦେବେ। ଏଇ ମୁହୂର୍ତ୍ତଟି ପାଇଁ ଲକ୍ଷାଧିକ ଯାତ୍ରୀ ଓ ଭକ୍ତଙ୍କ ଉତ୍କଣ୍ଠିତ ଦୀର୍ଘ ପ୍ରତୀକ୍ଷା। ତା'ପରେ ସେ ଯେପରି ଭାବରେ ଚଢ଼ିଥିଲେ, ସେହିପରି ଭାବରେ ଓହ୍ଲାଇ ଆସିବେ।

ଜଣେ ପ୍ରତ୍ୟକ୍ଷଦର୍ଶୀ ବନ୍ଧୁଙ୍କଠାରୁ ଏ ବିବରଣୀ ଶୁଣି, ମୁଁ ପ୍ରଥମେ ଏହାକୁ ଆଦୌ ବିଶ୍ୱାସ କରିନଥିଲି। ଜଣେ ଦୃଷ୍ଟିଶକ୍ତିହୀନ ବୃଦ୍ଧଙ୍କ ପକ୍ଷରେ ଏହା ନିଶ୍ଚୟ ଏକ ଅସମ୍ଭବ ବ୍ୟାପାର! କିନ୍ତୁ ଆଉ କେତେଜଣ ସେଇ କଥାର ସମର୍ଥନ କଲେ। ମୁଁ ଭାବୁଛି, ଏପରି ଅଲୌକିକ ଶକ୍ତି ସମର୍ଥାଙ୍କ ପାଖରେ ଆସିଲା କିପରି! କୁଆଡୁ? ଭକ୍ତମାନେ କହିବେ, ଇଏ ଠାକୁରଙ୍କ ମହିମା! ଠାକୁରଙ୍କ ମହିମା ନିଶ୍ଚୟ ତ ରହିଛି। ତାକୁ କେବଳ ଆମର ଜଡ଼ବାଦୀ ଚେତନାରେ ଉପଲବ୍ଧି କରିପାରିଲେ ହେଲା! କିନ୍ତୁ ସେ ମହିମା କ'ଣ? ମୁଁ ଭାବୁଛି, ସେ ମହିମା ହେଉଛି ମଣିଷ ଭିତରର ପ୍ରଚ୍ଛନ ଆତ୍ମଶକ୍ତି! ଅବିଚଳିତ ନିଷ୍ଠା ଓ ସଙ୍କଳ୍ପ ମଧ୍ୟରେ କେବଳ ସେଇ ସୁସୁପ୍ତ ଆତ୍ମଶକ୍ତି, କୂଳ କୁଣ୍ଡଳିନୀ ଠାରୁ ଜାଗ୍ରତ ହୋଇଥାଏ। ସେହି ଆତ୍ମଶକ୍ତି ଥରେ ଜାଗ୍ରତ ହୋଇ ପାରିଲେ, ତାହା ଆସାଧ୍ୟ ସାଧନ କରିପାରେ। କେବଳ ନିଜର ଇଷ୍ଟଦେବତା କାହିଁକି, ଗୋଟିଏ ଗଛ ବା ଖଣ୍ଡେ ପଥର ପ୍ରତି ସୁଦ୍ଧା ସେଇ ଅନନ୍ୟା ନିଷ୍ଠା ରଖି ପାରିଲେ, ତାହାର ପ୍ରେରଣାରେ ମନୁଷ୍ୟ ଭିତରର ସୁପ୍ତ ଆତ୍ମଶକ୍ତି ଜାଗ୍ରତ ହୋଇପାରିବ।

ଦିନେ ମହାତ୍ମା ଗାନ୍ଧୀ ତାଙ୍କ ବ୍ୟକ୍ତିତ୍ୱର ଐନ୍ଦ୍ରଜାଲିକ ପ୍ରଭାବରେ ଭାରତର କୋଟି କୋଟି ନରନାରୀଙ୍କ ପ୍ରାଣରେ ସେହିପରି ନିଷ୍ଠା ଓ ସଙ୍କଳ୍ପ ଜାଗ୍ରତ କରି ପାରିଥିଲେ। ସେ ଦିନ ମଫସଲ ଗାଁର ଅନ୍ଧାର କୋଣରେ ପଡ଼ିଥିବା ବୋହୂ ଭୂଆଷୁଣୀଙ୍କଠାରୁ ଆରମ୍ଭକରି, ଚାଷୀ, ଶ୍ରମିକ, ଶିକ୍ଷିତ, ଅଶିକ୍ଷିତ ସମସ୍ତେ ଆତ୍ମବଳରେ ବଳୀୟାନ୍ ହୋଇ ପାରିଥିଲେ।

ଗୋଟାଏ ଅଶସ୍ତ୍ର ନିରନ୍ନ ଭୀରୁ ଜାତିକୁ ସେ ଜଣେ ଜଣେ ମହା-ସମର୍ଥାରେ ପରିଣତ କରି ସେମାନଙ୍କ ହାତରେ ଅଚଳାୟତନର ଶିଖର ଚୂଡ଼ାରେ ସ୍ୱାଧୀନତାର ମହାଦୀପ ଜଳାଇ ପାରିଥିଲେ। ସେ ସ୍ୱାଧୀନତାର ମୂଲ୍ୟାଙ୍କନ ଆଜି ଯିଏ ଯେପରି ଭାବରେ କରନ୍ତୁ ନା କାହିଁକି, ଏଇ ଐତିହାସିକ ଅଭିଜ୍ଞତାଟି କିନ୍ତୁ ଅବିସମ୍ବାଦିତ !

ଆଜି ସେ ମହାଦୀପ ସ୍ଥାନରେ ଜଳିଲାଣି ନିୟନ୍ ଲାଇଟ୍ ! ଇଏ ହେଲା ପ୍ରଗତିର ନିଶାନ ! ଆଜି ମହାଦୀପ ଉଠାଇବା ପାଇଁ ଆଉ ସମର୍ଥାମାନଙ୍କର ପ୍ରୟୋଜନ ପଡ଼ିବ ନାହିଁ। କମ୍ପ୍ୟୁଟରଚାଳିତ କ୍ରେନ୍ ସାହାଯ୍ୟରେ ତାହାକୁ ଅକ୍ଳେଶରେ ନିମିଷକେ ଉଠାଯାଇ ପାରିବ। ଭକ୍ତ ଓ ଯାତ୍ରୀମାନେ ଏତେ କଷ୍ଟ କରି ମନ୍ଦିର ଚାରିପଟେ ରାତିଅଧ ପର୍ଯ୍ୟନ୍ତ ଆଉ ଜାଗର ଭିଡ଼ ଜମାଇବାର ପ୍ରୟୋଜନ ନାହିଁ। ଟି.ଭି. ପର୍ଦ୍ଦାରେ ଘରେ ବସି ଅକ୍ଳେଶରେ ମହାଦୀପ ଉଠିବା ଦେଖିପାରିବା ଭକ୍ତମାନଙ୍କ ପକ୍ଷରେ ସମ୍ଭବ। ଆଜି ହୃଦୟ ନାହିଁ, ଉଚ୍ଛ୍ୱାସ ନାହିଁ, ଅଛି କମ୍ପ୍ୟୁଟର୍। ଆଉଟ୍‌ଡାଫିଡିଂ। ଆଜି ଆବେଗ ନାହିଁ, ଅଛି ଯନ୍ତ୍ର। ସ୍ୱାଭାବିକ ଭାବରେ ତେଣୁ ଆଜି ଆତ୍ମଶକ୍ତି ନାହିଁ। ଆମେ ପ୍ରତ୍ୟେକେ ଆଜି ଆତ୍ମପ୍ରତ୍ୟୟହୀନ ଜଣେ ଜଣେ ଭିକ୍ଷୁକ। ଆଜି କିନ୍ତୁ ଚାରିଆଡ଼େ ଘେରି ଅମାବାସ୍ୟାର ନିରନ୍ଧ୍ର ଅନ୍ଧକାର ! ସମର୍ଥାଙ୍କର ମହାଦୀପ କେବଳ ସେଇ ତମିସ୍ରାକୁ ଉଦ୍‌ଭାସିତ କରିପାରିବ।

*୦୧/୦୩/୮୭*

# ଡିକ୍‌ଟେଟର୍

ଆଜି ଡିକ୍ଟେଟରର ମଧ୍ୟ ଦେଖାନାହିଁ ! ଡିକ୍ଟେଟର କହିଲେ- ରାସ୍ତାର ଗୋଟିଏ ବୁଲା କୁକୁର ! ତାହାର ଆକାର ପ୍ରକାର ଓ ଚେହେରା ଯୋଗୁଁ ମୁଁ ତା'ପାଇଁ ଏହି ନାମଟି ଶ୍ରଦ୍ଧାରେ ବାଛିଛି ! ମୋ ଘର ସାମ୍‌ନା ରାସ୍ତାରେ ଗୋଟିଏ ଛକରୁ ଅନ୍ୟ ଗୋଟିଏ ଛକ ପର୍ଯ୍ୟନ୍ତ ଅଞ୍ଚଳ ହେଉଛି ତାହାର ଇଲାକା; ତାହାର ସାମ୍ରାଜ୍ୟ । ପ୍ରତିଦିନ ସକାଳେ ସେ ଛକ ଉପରେ ଗୋଟିଏ ଇଲେକ୍ଟ୍ରିକ୍ ଖୁଣ୍ଟକୁ ପଛଗୋଡ଼ ଟେକି ତା'ର ପରିସ୍ରାବାରିରେ ଅଭିଷିକ୍ତ କରିଦିଏ । ତା'ପରେ କିଛିସମୟ ସେ ତାହାକୁ ଆଘ୍ରାଣ କରେ । ସେ ଦେଖେ ତାର ସାମ୍ରାଜ୍ୟର ସୀମାନ୍ତ ସୁରକ୍ଷିତ ଅଛି କି ନାହିଁ। ଆଉ କେହି ତାର ଇଲାକା ଭିତରକୁ ଅନୁପ୍ରବେଶ କରିଥିଲା କି ନାହିଁ। ତାପରେ ସେ ମୋ ହତା ଭିତରକୁ ଧାଇଁଆସି କିଛି ବିସ୍କୁଟ ଟୁକୁରା, ନୋହିଲେ ପାଉଁରୁଟି ଖାଇଦେଇ ଧାଇଁଯାଏ, ଅନ୍ୟ ସୀମାନ୍ତକୁ। ତା'ର ରାଜ୍ୟର ତଦାରଖ ପାଇଁ! ଏଇ ଇଲାକା ଭିତରେ ଯେତେ କୁକ୍‌କୁରୀ ସମସ୍ତେ ତାହାର ହାରେମର ଜେନନା ! ସେମାନଙ୍କ ଉପରେ ଅନ୍ୟ କୌଣସି ଦୁର୍ବୃତ୍ତ କୁକୁର ବଦ୍‌ନଜର ପକାଇଲେ ବା କିଛି ରସିକତା ଆରମ୍ଭ କଲେ, ଡିକ୍ଟେଟରର ଆକ୍ରମଣରେ ସେମାନଙ୍କୁ କ୍ଷତବିକ୍ଷତ ହେବାକୁ ପଡ଼ିଥାଏ। ଏହି ଇଲାକା ଭିତରେ କାହାର କୌଣସି ଭୋଜିଭାତ ହେଲେ ଡଷ୍ଟବିନ୍‌ରେ ଯେତେସବୁ ଅଇଁଠାପତର ଓ ମାଟିସରା ପଡ଼ିଥାଏ ତା' ଉପରେ ଏକମାତ୍ର ଅଧିକାର 'ଡିକ୍ଟେଟର'ର ଓ ସେଥିରୁ କିଛି ବଳିଲେ ତା'ର ଜେନାନାମାନଙ୍କର । ସେଥିରେ ପାଖଗଳିର କୁକୁର ଭାଗ ବସାଇବାକୁ ଆସି ଡିକ୍ଟେଟରଠାରୁ କ୍ଷତବିକ୍ଷତ ହୋଇ ଫେରିଛନ୍ତି । ମୋ ହତା ଭିତରକୁ ସେମାନେ ପ୍ରାଣରକ୍ଷା ପାଇଁ ଆସିଲେ ସୁଦ୍ଧା ରକ୍ଷା ନଥାଏ ।

ସେହି ଡିକ୍ଟେଟର ଦୁଇ ଦିନ ହେବ, ଆଉ ଦେଖାନାହିଁ।

ସେଦିନ ସକାଳେ ମଧ୍ୟ ମୁଁ ଜମେଇ ବସିଛି, ମୋର ପ୍ରାତ୍ୟହିକ ଆସରରେ । ଗୋଟିଏ ଡାମରାକାଉ, ଦୁଇଟା ବଣି ଆଉ ଗୋଟିଏ ଗୁଣ୍ଡୁଚିମୂଷା, ଟୁକୁରା ଟୁକୁରା ବିସ୍କୁଟ ଆଉ ପାଉଁରୁଟି, ପ୍ରାତଃଭୋଜନ କରୁଛନ୍ତି । ଦୁଇଟା ପାରା ମଧ୍ୟ ଆସି ସେଠାରେ ଯୁଟିଥିଲେ ।

ମାତ୍ର ଖାଦ୍ୟ ଅପେକ୍ଷା ସେମାନେ ପ୍ରେମକୂଜନରେ ଥିଲେ ଅଧିକ ଆଗ୍ରହୀ ! ଏହି ସମୟରେ ହଠାତ୍ କୁଆଡୁ ତାରବାଡ଼ ଡେଇଁ ହଠାତ ଲମ୍ଫ ଦେଇ ଆସିଲା ଡିକ୍ଟେଟର ! କାଉଟି କେବଳ ଟୁକୁରାଏ ପାଉଁରୁଟି ଥଣ୍ଟରେ ଧରି ଉଡ଼ି ପଳାଇ ପାରିଲା । ମାତ୍ର ଗୁଣ୍ଡୁଚିମୂଷା ଓ ବଣି ଚଢ଼େଇ ସେମାନଙ୍କ ଆହର ଛାଡ଼ିଦେଇ ପ୍ରାଣ ଭୟରେ ଯିଏ ଯୁଆଡ଼େ ପଳାଇଗଲେ । ଡିକ୍ଟେଟର ଏକା ଲହମାରେ ସେତକ ଶେଷ କରିଦେଇ, ମୋ ଆଡ଼େ ତାହାର ଭୟଙ୍କର ଆଖିରେ କିଛି ସମୟ ଭାରୀ କରୁଣ ଭାବରେ ଚାହିଁଲା । ତା'ପରେ ମୁଁ ଟିକିଏ ଅନ୍ୟମନସ୍କ ଥିବାବେଳେ, ପ୍ଲେଟ ଉପରୁ ଖଣ୍ଡେ ବିସ୍କୁଟ ଉଠାଇ ନେଇ ଚମ୍ପଟ୍ ! ବୋଧହୁଏ ତା' ରାଜ୍ୟ ତଦାରଖ ପାଇଁ ! ତା'ପରଠାରୁ ଡିକ୍ଟେଟର ହଠାତ୍ ପୁଣି ନିଖୋଜ !

ଆଉ ଦିନେ ଭାରି ଦୟନୀୟ ଭାବରେ ଘୁଷୁରି ଘୁଷୁରି ମୋ ପାଖକୁ ଆସିଲା ଡିକ୍ଟେଟର ! କିଏ ତାର ପଛଗୋଡ଼ ଦୁଇଟାକୁ ଠେଙ୍ଗା ବା କାଠ ଫାଳିଆରେ ଭାରୀ ଜୋର୍‌ରେ ବାଡ଼େଇ ବିଲ୍‌କୁଲ ଛୋଟା କରିଦେଇଛି ! ବୋଧହୁଏ ଡିକ୍ଟେଟର ଅନ୍ୟ ଇଲାକା ଭିତରେ ଅନଧିକାର ଅନୁପ୍ରବେଶ କରିଥିଲା ! ସେଠାରେ ସେ ଇଲାକାର ଶ୍ୱାନ-ନେତା ଦଳବଳ ଧରି ତାକୁ ଯେପରି ଆକ୍ରମଣ କରିଥିଲା, ସେଥିରେ ତା'ର ବାଁ ଆଖି ପ୍ରାୟ ଫୁଟିଯାଇଛି କହିଲେ ଚଳେ । ରକ୍ତ ଝରି ଶୁଖିଯାଇଛି । ଦେହଯାକ କ୍ଷତବିକ୍ଷତ ! ଡିକ୍ଟେଟରର ଏ ଦୟନୀୟ ଅବସ୍ଥା ଦେଖି ମୁଁ ସତରେ ବିଚଳିତ ହୋଇଉଠିଲି । ଦୁଇଖଣ୍ଡ ବିସ୍କୁଟ ଧରିବାକୁ ଯାଇଛି କି ନାହିଁ, ସେଇ ଡାମରା କାଉଟା ସେଇ ସମୟରେ ଦୁଇ ଖଣ୍ଡଯାକ ବିସ୍କୁଟ ଥଣ୍ଟରେ ଧରି ପାଖ ବରଗଛ ଡାଳକୁ ଉଡ଼ିଗଲା । ମୁଁ ପାଗଳ ପରି କାଉଆଡ଼େ ଗୋଟାଏ ସାନ ଇଟା ଫିଙ୍ଗି ଚିତ୍କାର କଲି, "ଡିକ୍ଟେଟର ଆଜି ହାରିଯାଇ ପାରିଥାଏ, କିନ୍ତୁ ସେ ତଥାପି ଡିକ୍ଟେଟର ! ତାକୁ ଏପରି ଅପମାନିତ କରିବା ପାଇଁ ତୁମର କୌଣସି ଅଧିକାର ନାହିଁ, ଛାର ନୀଚ ବାୟସ !"

ବିସ୍କୁଟ ତ ଆଉ ନଥିଲା, ଖଣ୍ଡେ ପାଉଁରୁଟି ସାବଧାନତାର ସହିତ ଡିକ୍ଟେଟରର ମୁହଁ ପାଖରେ ରଖିଦେଲି ।

ଏହା ହିଁ ବୋଧହୁଏ ସବୁ ଡିକ୍ଟେଟରମାନଙ୍କର ଶେଷ ପରିଣତି ।

୧୫/୦୩/୮୭

# ନଷ୍ଟନୀଡ଼

ନୀଡ଼ ବାନ୍ଧିବାର ଦାୟିତ୍ୱ କାହାର ?...

ପକ୍ଷୀର ନା ପକ୍ଷିଣୀର ?

ପୁରୁଷର ନା ନାରୀର ?

ଗତ କିଛିଦିନ ଧରି ଏଇ ପ୍ରଶ୍ନଟିର ପ୍ରକୃତରେ ମୁ କୌଣସି ସଦୁତ୍ତର ଖୋଜି ପାଉନାହିଁ। ଏହି ସ୍ତମ୍ଭର ପାଠକ ପାଠିକାମାନେ କେହି ମୋତେ ପତ୍ରଯୋଗେ ଏ ସମ୍ପର୍କରେ କିଛି ଲେଖିଲେ ମୁଁ ପ୍ରକୃତରେ ବାଧିତ ହୁଅନ୍ତି।

କଥାଟିର ଆରମ୍ଭ ଏଇପରି। ଦିନେ ସକାଳେ, ମୁଁ ମୋ ଝର୍କା ପାଖରେ ବସି ଶୂନ୍ୟ ଦୃଷ୍ଟିରେ ଶେଷ ଫଗୁଣର ସକାଳ ଆଡ଼େ ଚାହିଁ ଚା' ପିଉଚି ଆଉ ବିସ୍କୁଟ ଖାଉଚି। ଗୋଟିଏ ପାରାବତ ଦମ୍ପତି ହଠାତ୍ କୁଆଡୁ ଉଡ଼ିଆସି ସେଇ ଫଗୁଣ ସକାଳର ପ୍ରଥମ ଅତିଥି ପରି ଝର୍କା ତାରଜାଲି ସେପାଖରେ ବସିଗଲେ। ମୋ ବାଥ୍‌ରୁମ୍‌ର ବାହାର ଝରକାଟି ଏବର୍ଷ ବନ୍ଦ ରହୁଛି, କେବଳ ଏଇମାନଙ୍କ ଭୟରେ। ଗତବର୍ଷ ଅନ୍ୟମାନଙ୍କର ନିଷେଧ ନମାନି ମୁଁ, ଏମାନଙ୍କ ପାଇଁ ମୋର ନିଜସ୍ୱ ବାଥରୁମ୍‌ଟିର ଝର୍କା ଖୋଲା ରଖିଥିଲି। ବିଚରାମାନେ ଏଇଠି ନୀଡ଼ ବାନ୍ଧନ୍ତୁ। ମୋତେ ପାରାମାନଙ୍କର ବକ୍‌ବକମ୍ ଶୁଣିବାକୁ ପ୍ରକୃତରେ ଭାରି ଭଲଲାଗେ। ଇଏ ମୋର ଶୈଶବର ସଂଗୀତ...! କିନ୍ତୁ ଦେଖାଗଲା, ପ୍ରାୟ ତିନି ଗୋଟି ପାରାବତ ଦମ୍ପତି ଆସି କ୍ରମେ ସେଠାରେ ନୀଡ଼ ବାନ୍ଧିଲେ... ଯିଏ ଯେଉଁଠି ପାରିଲା। ପ୍ରତିଦିନ ସକାଳେ ବାଥ୍‌ରୁମ୍ ଯିବାବେଳେ, ସେମାନେ ତଳେ ପକାଉଥିବା କାଠିକୁଟା ଇତ୍ୟାଦିରେ ବାଥ୍‌ରୁମ୍‌ଟି ଆଉ ବ୍ୟବହାରଯୋଗ୍ୟ ହୋଇ ରହିପାରିଲା ନାହିଁ।

ବାଥ୍‌ରୁମ୍ ସଫେଇବାଲା ସପ୍ତାହରେ ମାତ୍ର ଦୁଇଥର ଆସେ। ସେ ଦିନେ ସ୍ପଷ୍ଟ ମନା କରିଦେଲା, ଏସବୁ ଜଞ୍ଜାଳ ସଫା କରିବା ତାର କାମ ନୁହେଁ। ମୋ ଭୃତ୍ୟର ମଧ୍ୟ ଘୋର ଆପତ୍ତି ବାଥ୍‌ରୁମ୍ ସଫା କରିବା ପାଇଁ। କିଛିଦିନ ପରେ ଦେଖାଗଲା, ଦମ୍ପତିମାନେ ଚମ୍ପଟ। ପରିତ୍ୟକ୍ତ ନୀଡ଼ମାନଙ୍କରେ, କେବଳ ଖଣ୍ଡିଉଡ଼ା ଶିଖିନଥିବା ଶାବକମାନଙ୍କର କରୁଣ

ଅସହାୟ ଚାହାଣୀ... ଲୁଲୁ ଲୁଲୁ ହୋଇ ଚାହିଁଛନ୍ତି । ତା'ପରେ ସମସ୍ୟା ହେଲା, ଏମାନଙ୍କୁ କିପରି ଗୋଟିଏ କ୍ଷୁଧିତ ବିରାଡ଼ିର ଗ୍ରାସରୁ ରକ୍ଷା କରିବି ? ସେ ବିରାଡ଼ିଟି ଦିନ ଭିତରେ ଅନେକଥର ସନ୍ତର୍ପଣରେ ବାଥ୍‌ରୁମ୍ ଭିତରକୁ ପଶିଆସି କ୍ଷୁଧିତ ହିଂସ୍ର ଦୃଷ୍ଟିରେ ସେଇ ପାରାବତ ଶାବକମାନଙ୍କ ଆଡ଼େ ଯେପରି ଚାହିଁରହେ, ସେଥିରେ ବିରାଡ଼ିକୁ ନ ଜଗିଲେ, ଏଇ ଅସହାୟ ଶାବକମାନଙ୍କର ବିଲୟ ଏଇ ମାର୍ଜାର ଗ୍ରାସରେ ଅବଧାରିତ । ସେଥିପାଇଁ ମୋର ପ୍ରାୟ ଗୋଟିଏ ମାସ କଟିଲା, ବାଥ୍‌ରୁମ୍ ଆଡ଼େ ଚାହିଁ ବିରାଡ଼ି ଜଗିବାରେ ! ସେତେବେଳେ ମୋତେ ନିଜକୁ ମନେ ହେଉଥିଲା, 'ବୁଢ଼ୀ-ଆୟା' ନୋହିଲେ 'ବେବି-ସିଟ୍‌ର' ପରି ! ତା'ପରଠାରୁ ମୁଁ ନିଷ୍ଠୁର ହୋଇ ବାଥ୍‌ରୁମ୍ ଝରକା ସେମାନଙ୍କ ପାଇଁ ବନ୍ଦ କରିଦେଇଛି ।

ସେଦିନ ସକାଳେ, ସେଇ ପାରାବତ ଦମ୍ପତି ତାରଜାଲି ଭେଦି ମୋ ବେଡ଼୍‌ରୁମ୍ ଭିତରକୁ ପଶି ନ ପାରି, ମୋର ସହାନୁଭୂତି ଭିକ୍ଷା କରିବା ପାଇଁ ଯେପରି ତାରଜାଲି ଉପରେ ଡେଣା ପିଟୁଥିଲେ, ଥଣ୍ଟ ଘଷୁଥିଲେ । ସେମାନଙ୍କ ଆଖିକୁ ମୁଁ ଚାହିଁ ଦେଖିଲି, ଭାରି କରୁଣ ! ମୁଁ କିନ୍ତୁ ନିଷ୍କରୁଣ ! ଥରେ ଭୋଗିଛି, ଆଉ ଦ୍ୱିତୀୟ ଥର ନୁହେଁ, ଆଇ ଆମ୍ ସରୀ ! ଖଣ୍ଡେ ଖଣ୍ଡେ ବିସ୍କୁଟ ଟୁକୁରା କେବଳ ସେମାନଙ୍କ ପାଇଁ ରଖିଦେଲି । କିନ୍ତୁ ସେମାନେ ଖୋଜୁଛନ୍ତି ନୀଡ଼ ଏ ବିସ୍କୁଟ ଟୁକୁରାରେ ସେମାନଙ୍କର ପ୍ରୟୋଜନ ନାହିଁ । କ୍ରମାଗତ ଭାବରେ, ଚାରିପାଞ୍ଚ ଦିନ ଧରି ପ୍ରତ୍ୟହ ସକାଳେ ସେଇ ଏକା ଦୃଶ୍ୟ... ସେଇ ଏକା ସ୍ଥାନରେ... ଏକା ଆବେଦନ ଧରି । ମୁଁ କହିଲି, "ଆଚ୍ଛା, ତୁମେ ତ ଉଡ଼ା ଚଢ଼େଇ, ମୁଁ କିନ୍ତୁ ସଂସାରୀ ମଣିଷ ! ଏଠିତ ଏତେ ନୀଳ ଆକାଶ, ଏତେ ସାବ୍‌ଜା ଗଛ । ଫଗୁଣର ସ୍ପର୍ଶରେ ସେସବୁ ମଧ୍ୟ ଆଉରି ତାଜା ଦିଶୁଛନ୍ତି । ଆକାଶରେ ଉଡୁନ କାହିଁକି ? ଅନ୍ୟ ପକ୍ଷୀମାନଙ୍କ ପରି ଗଛମାନଙ୍କର ନୀଡ଼ ବାନ୍ଧୁନ କାହିଁକି ? ଏଇ ଆମ୍ବ ଗଛ, ପଣସ ଗଛମାନଙ୍କରେ ? ନୋହିଲେ ଏଇ ନିମ ଗଛ ଡାଳରେ ? ତୁମେ ମୋର ବାଥ୍‌ରୁମ୍ ବା ବେଡ଼୍‌ରୁମ୍ ପାଇଁ କାହିଁକି ଏତେ ଆଗ୍ରହୀ ?" ସେମାନେ କିଛି ସମୟ ନିର୍ବାକ୍ ଦୃଷ୍ଟିରେ ମୋ ଆଡ଼େ ଚାହିଁ ମୋର ମନୋଭାବ ଭଲ ନୁହେଁ ବୁଝି ସେଠାରୁ ଉଡ଼ି ପଳାଇଲେ । ସେମାନେ ଉଡ଼ି ପଳାଇବା ପରେ, ମୁଁ ସତରେ ଟିକିଏ ଦୁଃଖିତ ହେଲି । ଆଃ... ଆଜି ଆମ ସମାଜରେ କେତେ ଦୁଷ୍ଟ, କେତେ ଦୁର୍ଜନ, କେତେ ଡାକୁ କେତେ ଡକେଇତ, କେତେ ବିଷଧର ସର୍ପକୁ ଲୋକେ ଡାକିଆଣି ଆଦରରେ ସ୍ଥାନ ଦେଉନାହାନ୍ତି ସତେ ? କେତେ ଗୁରୁବାବାଙ୍କ ପାଇଁ ମଖମଲି କାର୍ପେଟ ବିଛାହେଉ ନାହିଁ ସତେ ! ଇଏ ତ ଆଜିର ସମାଜ । ଏଠି ଯିଏ ଯେତେ ଦୁର୍ଜନ, ଯେତେ ଭଣ୍ଡ- ତା'ପାଇଁ ସେତେବେଶୀ ରେଡ଼୍ କାର୍ପେଟ ସ୍ୱାଗତମ୍ । ଆଉ ଏଇ ବିଚରା ଗୋଟିଏ ନୀଡ଼ହୀନ ପାରାବତ ଦମ୍ପତିକୁ ଦିନ କେତେଟା ପାଇଁ ସ୍ଥାନ ଦେଇଥିଲେ କ'ଣ ମୋର

ଏମିତି କ୍ଷତି ହେଉଥିଲା... ତା' ପରଦିନ ଏକୁଟିଆ ଆସିଲା ପାରାବତିକାଟି। ମୁଁ ପିଲାଦିନେ ଯେଉଁ ବିଦ୍ୟାଟି ପ୍ରଥମେ ଆୟତ୍ତ କରିଥିଲି, ତା' ହେଉଛି ପାରାଉଡ଼ା। ସେହିଦିନୁ କେଉଁ ପାରାଟି ନର ଆଉ କେଉଁଟି ବା ମାଧୀ, ଚେହେରା ଦେଖି ମୁଁ ଜାଣିପାରେ। ମାଧୀ-ପାରାର ଗଳା ନର-ପାରା ପରି ମୋଟ ନୁହେଁ। ଇଏ ତେଣୁ ପାରାବତିକା। କିନ୍ତୁ ତାର ସାଥୀଟି ଗଲା କୁଆଡ଼େ ? ସିଏ ବିଚାରୀ ହୁଏତ କବୁଲ କରିଥିଲା ସିଏ ନୀଡ଼ ବାନ୍ଧିବ। ସିଏ ଚାହୁଁଥିଲା ପାରାବତଟି ତା' ସହିତ ମଧ୍ୟ ନୀଡ଼ ରଚନା କରିବ। ଏଇ ବୋଧହୁଏ ସେମାନଙ୍କ ସମାଜର ଚଳଣି। ପ୍ରକୃତରେ ମଣିଷ ସମାଜରେ କ'ଣ ସେଇ ଚଳଣି ନାହିଁ ? ପୁରୁଷ ତ କେବେ ଘର ବାନ୍ଧେନା। ଘର ପ୍ରକୃତରେ ବାନ୍ଧେ ନାରୀ। କାରଣ କେବଳ ସନ୍ତାନ ଜନ୍ମ ନୁହେଁ, ସନ୍ତାନ ରକ୍ଷା ଓ ଲାଳନ ମଧ୍ୟ ନାରୀର ଦାୟିତ୍ୱ। ପୁରୁଷ କିନ୍ତୁ ମନରେ ଓ ପ୍ରାଣରେ ଅବଧୂତ... "ଆହାରେ ଭଲ ମନ୍ଦ ନାହିଁ। ଯେ ସ୍ଥାନେ ଯେମନ୍ତ ମିଳଇ।" ଅନ୍ତତଃ ପାରାବତିକାଟି ତେଣୁ ତା'ର ସଙ୍ଗୀ ପାରାବତଟିକୁ ନୀଡ଼ ସନ୍ଧାନରେ ପ୍ରଲୋଭନ ଦେଖାଇ ସେଦିନ ଫଗୁଣ ସକାଳେ ମୋ ପାଖକୁ ଆସିଥିଲା। ମୁଁ କିନ୍ତୁ ଫେରାଇଦେଲି। ସେମାନେ ତ ନିରାଶ ହୋଇ ଚାଲିଗଲେ। କିନ୍ତୁ ମୋ ପାଇଁ ରଖିଦେଇଗଲେ ଏକ ଅସମାହିତ ପ୍ରଶ୍ନ...।

ନୀଡ଼ ବାନ୍ଧିବାର ଦାୟିତ୍ୱ ପ୍ରକୃତରେ କା'ର- ପକ୍ଷୀର ନା ପକ୍ଷିଣୀର ? ପୁରୁଷର ନା ନାରୀର ? ଇଏ ନୀଡ଼ ପ୍ରକୃତରେ ବିଚିତ୍ର !

୨୨।୦୩।୮୭

# ଅନ୍ୟ ଭାରତ

ସନ୍ଧ୍ୟାବେଳେ ଟି.ଭି. ଦେଖୁଛି... ଦୂରଦର୍ଶନ ଆମ ଘରକୁ ଆସିବା ପୂର୍ବରୁ ମୁଁ ଭାବୁଥିଲି, ପ୍ରେମ ଦୁଇଟି ହୃଦୟର ଏକ ନିଭୃତ କଥା, ଯାହାକୁ ହୃଦୟରେ କେବଳ ଅନୁଭବ କରିହୁଏ। କିନ୍ତୁ ପ୍ରକାଶ କରିହୁଏ ନାହିଁ। ମାତ୍ର ଦୂରଦର୍ଶନରେ 'ଚିତ୍ରହାର' ପ୍ରୋଗ୍ରାମ ଦେଖି ଦେଖି ମୁଁ ସେ ପୁରୁଣା ମଧ୍ୟଯୁଗୀୟ ଧାରଣା କେବେଠାରୁ ବଦଳାଇ ସାରିଲିଣି। ଦୂରଦର୍ଶନରେ ତରୁଣ ତରୁଣୀଙ୍କ ପ୍ରେମ ବର୍ତ୍ତମାନ ହୃଦୟର ବ୍ୟାପାର ହୋଇ ଆଉ ରହିନାହିଁ। ଏହା ବର୍ତ୍ତମାନ ପୂରାପୂରି ବ୍ୟାୟାମ ଚର୍ଚ୍ଚା। ନାଚି କୁଦି ଗୀତ ଗାଇ ପ୍ରେମ କରିବା ପାଇଁ ଜଙ୍ଘ, ମଜବୁତ ଅଣ୍ଟା ଆଉ ଜୋର୍‌ଦାର୍ ସୁରେଲୀ ଗଳା ଦରକାର! ମଧ୍ୟଯୁଗୀୟ ପ୍ରେମ ପରି, ଏହା ଆଉ ଚଇତ ସନ୍ଧ୍ୟାର ପ୍ରଥମ ମଲ୍ଲୀକଢ଼ ନୁହେଁ। ବହଳ ଜହ୍ନ ଆଲୁଅରେ ମଲ୍ଲୀ କଢ଼ ପରି ପ୍ରେମ ଆଉ ଭୀରୁ ସୁବାସ ବିତରଣ କରେନାହିଁ। ଇଏ ବର୍ତ୍ତମାନ ଉଦଣ୍ଡ ନାଚ୍‌କୁଦ ଆଉ ସଙ୍ଗୀତ ନାମରେ ଚିତ୍କାରର ବ୍ୟାପାର! ସେଥିପାଇଁ ହୃଦୟ ଅପେକ୍ଷା ଜଙ୍ଘ, ଅଣ୍ଟା, ପାଦଭଣ୍ଡା ସବୁ ଖୁବ୍ ମଜବୁତ ହୋଇଥିବା ଦରକାର। ସେଇମାତ୍ର ଟି.ଭି.ରେ ଆରମ୍ଭ ହୋଇଛି, 'ନିର୍‌ମା' ଡିଟରଜେଣ୍ଟ ବିଜ୍ଞାପନ ଉପରେ ଲିରିକ୍! ଟି.ଭି. ପରଦା ଉପରେ ସାଇକେଲ, ସୁଟିଂକନାଠାରୁ ଆରମ୍ଭ କରି ସାବୁନ, ନଡ଼ିଆ ତେଲ, ଡାଲଡା ଘିଅ ଉପରେ ସୁଦ୍ଧା ଇଚ୍ଛାକଲେ ଚମତ୍କାର ଲିରିକ୍ ସବୁ ଶୁଣିପାରିବେ... ଏକବିଂଶ ଶତାବ୍ଦୀର ଏସବୁ ଚମତ୍କାର କବିତା!... ଏକବିଂଶ ଶତାବ୍ଦୀର 'ଚିତ୍ରହାର' ମାର୍କା ପ୍ରେମପରି!

ମୋର ଭୃତ୍ୟ ୫୫ ବର୍ଷ ବୟସ୍କ ଗୋପୀନାଥ ଚଟାଣ ଉପରେ ଠୁଙ୍କା ହୋଇ ବସି, ଭାରି ତନ୍ମୟ ଭାବରେ ଟି.ଭି. ଦେଖୁଥିଲା! ଅନେକ ଖୋଜାଲୋଡ଼ା ପରେ, ଜଣେ ବନ୍ଧୁ ଏଇ ଗୋପୀନାଥକୁ ଗୋଟାଏ ଦୂର ଜଙ୍ଗଲତଳି ଗାଁରୁ ମୋ ପାଇଁ ଯୋଗାଡ଼ କରିଥିଲେ, ପ୍ରତିଦିନ ରାତିରେ ଓ ସକାଳେ ମୋ ଦେହରେ ଘଣ୍ଟାଏ ଘଣ୍ଟାଏ ଗୋଟାଏ କବିରାଜି ତୈଳ ମାଲିସ କରିବା ପାଇଁ! ପ୍ରଥମେ କେତେଦିନ ତାକୁ ରାତିରେ ଏଠାରେ ଭାରି ଭୟ ଲାଗିଲା। ସନ୍ଧ୍ୟା ହେବା ମାତ୍ରେ ସେ ଭଣ୍ଡାର ଘରର ଗୋଟାଏ କୋଣରେ ବସିରହିଲା।

ପଚରା ଉଚରା କରିବାରୁ କହିଲା, ଇଏ ବିଜୁଳି ଆଲୁଅରେ ସିଏ ଜଳକା ହୋଇଯାଉଛି। ପଙ୍ଖା ପବନରେ ତାକୁ ଜର ଜର ଲାଗୁଛି ! ତାର ଖରା ଦରକାର ! ଆମ ଘରକୁ ଯେଉଁ ବାବୁ ଭାୟାମାନେ ଆସୁଛନ୍ତି, ତାଙ୍କୁ ଦେଖିଲେ, ସିଏ ଭାରୀ ଡରୁଛି ! ଗରମ ଭାତ, ରୁଟି ତା' ଦେହରେ ଯାଉନାହିଁ। ମା' ବାସି ପଖାଳ ଦଉନାହାନ୍ତି... ଇତ୍ୟାଦି ଇତ୍ୟାଦି। ମୁଁ ତାକୁ ସେଥିପାଇଁ ସବୁବେଳେ ମୋ ପାଖେ ପାଖେ ବସାଏ ! ଟି.ଭି. ପର୍ଦ୍ଦା ଭିତରୁ ଶୂନ୍ୟରୁ ଯେମିତି ମଣିଷମାନଙ୍କର ଛବିସବୁ ବାହାରି ପଡ଼େ, ପ୍ରଥମେ ପ୍ରଥମେ ସେଥିପାଇଁ ଗୋପୀନାଥ ଟି.ଭି. ଦେଖିବାକୁ ଡରୁଥିଲା। ଏମାନେ ସବୁ ଭୂତ ପ୍ରେତ ନୁହଁନ୍ତି ତ ! ମାତ୍ର ଏବେ ଟି.ଭି. ପ୍ରତି ସେ ବେଶ୍ ଆକୃଷ୍ଟ ହେଲାଣି ! ଦିନେ ରାତିରେ ସେ ମୋ ପାଦରେ ତେଲ ମାଲିସ କରୁଛି ଆଉ ମୁଁ ତା ସାଙ୍ଗରେ ଗପୁଚି। ନ ଗପିଲେ ସେ ତେଲ ମାଲିସ୍ କରୁକରୁ, ଢୁଳେଇ ଢୁଳେଇ ମୋ ଉପରେ କଚାଡ଼ି ପଡ଼େ।

ସେଦିନ ସେ ମାଲିସ କରୁକରୁ ପଚାରିଲା, "ବାବୁ ଏ ଟେଭିକୁ ଆମ କଂଗ୍ରସ ସରକାର କରିଛି ନେଇଁ ?" ମୁଁ ଉତ୍ତର ଦେଲି, "ହଁ !" ଗୋପୀନାଥ ତାରିଫ କରିବା ପରି କହିଲା, "ନଇଲେ କଂଗ୍ରସ ସରକାର !" ଗୋପୀନାଥ ଗାଁ ପାଖରୁ ନିକଟବର୍ତ୍ତୀ ରେଳ ଷ୍ଟେସନ୍ ହେଉଛି, କୋଡ଼ିଏ ମାଇଲ ବାଟ ! ଆଉ ବସ୍ ଧରିବା ପାଇଁ ତିନିକୋଶ ବାଟ ଯିବାକୁ ପଡ଼େ ! ତାକୁ ଦିନେ ପଚାରିଲି, "ଗୋପୀନାଥ ! ରେଳ ଦେଖିଛୁ ?" ପାଦ ମୋଡୁ ମୋଡୁ ସେ ଉତ୍ତର ଦେଲା, "ଜାଇଁଲ ବାବୁ, ଦିନେ ଗାଁରୁ ଆମେ ତିନିଜଣ ରେଳ ଦେଖିବାକୁ ବାହାରିଥେଲୁ ଯେ, ବେଳବୁଡୁକୁ ଚାଲି ଚାଲି ଟେସନ୍‌ରେ ପହଞ୍ଚିଲୁ ! ହ୍ୟାପଃ ରେଲୁଟା ଖରାବେଳୁ କୁଆଡ଼େ ପଳେଇଥିଲା। ପଚାରା ଉଚରା କରି ବୁଝିଲୁ ରେଳ ପୁଣି ରାତି ଅଧକୁ ଆସିବ ! ଆମେ ଫେରି ଆସିଲୁ ! ବାଟରେ ଅନୁଗୁଳ ଟାଉନ୍‌ରେ ସିନେମା ଦେଖିଲୁ।"

ମୁଁ ପଚାରିଲି, "ସିନେମା କ'ଣ ବୁଝିଲୁ ? କ'ଣ ଦେଖିଲୁ ?" "ନାଇଁମ ବାବୁ, ସେ ଚିଜରୁ ଆମେ କ'ଣ ବୁଝିବୁ ?..." "ସେଇଠୁଁ ?" ମୁଁ ପଚାରିଲି ! ଗୋପୀନାଥ ଉତ୍ତର ଦେଲା, "ସେଇଠି ସିନେମା ଘରେ ବସି, ଆମ ଭିତରେ ଦୁଃଖ ସୁଖ ହେଲୁ। ହେଲେ ସେ ବାବୁଗୁଡ଼ାକ ଆମକୁ ଗାଳି ଫଜିତ କଲେ। ଆମେ ପଳେଇ ଆଇଲୁ। ଚୂଡ଼ାମୁଢ଼ି ଗାଁରୁ ଆଣିଥିଲୁ। ତାକୁ ଖାଇ ଗୋଟିଏ ଦୋକାନ ପିଣ୍ଡାରେ ଶୋଇପଡ଼ିଲୁ।" ଗୋପୀନାଥକୁ ଢୁଳ ଲାଗିଲାଣି। ମୁଁ ପଚାରିଲି, "ଗୋପୀନାଥ ଆଉ କ'ଣ ଦେଖିଛୁ ?" ସେ କହିଲା, ସିଏ ଉଡ଼ାଜାହାଜ ଦେଖିଛି। ମୁଁ ବିସ୍ମୟରେ ପଚାରିଲି, 'କୋଉଠି ?' ସିଏ ଉତ୍ତର ଦେଲା, ଆମ ଗାଁ ଉପରେ ଦିନେ ଦିନେ ଉଡ଼ାଜାହାଜ ଉଡ଼ିଯାଏ। ମୁଁ ଏକା ନୁଏଁ, ଆମ ଗାଁର ସମସ୍ତେ ଦେଖିଚିନି ! ବାବୁ ଆକୁ ଆମ କଂଗ୍ରସ ସରକାର ସର୍ଜିଚି, ନୁଏ ?" ମୁଁ ଯଥାବିଧି ଉତ୍ତର

ଦେଲି 'ହଁ' ! ଗୋପୀନାଥର ପରବର୍ତ୍ତୀ ପ୍ରଶ୍ନ- "ରଜା ରାମଚନ୍ଦ୍ର ଏଇମିତି ପୁଷ୍ପକ ବିମାନରେ ଉଡୁଥିଲେ ବୋଲି ଆମ ଗାଁର ରାବାଣ ବୋଲାହେଲାବେଳେ ମୁଁ ଶୁଣିଥିଲି ଯାଁ !" ମୋର ସଂକ୍ଷିପ୍ତ ଉତ୍ତର "ଠିକ୍ ଶୁଣିଥିଲୁ !" "ଆଚ୍ଛା ବାବୁ ଆମ ଦେଶ ରଜା ରାଜୀବ ଗାନ୍ଧୀ, କୁଆଡ଼େ ଉଡ଼ାଜାହାଜ ଚଳାନ୍ତି ?" ମୁଁ ଉତ୍ତର ଦେଲି, "କେବେ ଚଳଉ ଥିଲେ ! ଏବେ ଦେଶ ଚଳଉଛନ୍ତି ! ତାଙ୍କୁ ମୁଁ ତତେ ସେଇ ଟି.ଭି.ରେ ଦେଖେଇ ଦେବି ।" ଭାରୀ ଖୁସି ହୋଇ ଗୋପୀନାଥ ମୋତେ ସେଦିନ ଖୁବ ପରସ୍ତେ ମୋଡ଼ିଲା । ଢୁଳେଇ ଢୁଳେଇ ମୋ ଉପରେ ଝାଙ୍କି ହେଲା ନାହିଁ ।

ସେଦିନ ସନ୍ଧ୍ୟାରେ ଟି.ଭି.ର ବିଜ୍ଞାପନ ପ୍ରସାରଣରେ ଗୋଟାଏ ଟମାଟୋ କେଚପ୍ ଉପରେ ଗୋଟିଏ ଚମତ୍କାର ଲିରିକ୍ କେଇପଦ ବୋଲାଯିବା ପରେ, କେତୋଟି ପିଲା ଗରମ୍ ଗରମ୍ ପୁରୀ ଆଉ ମଟର ପନିର କରୀ ଖାଉଥିବା ଦୃଶ୍ୟର ପୃଷ୍ଠଭୂମିରେ, ଡାଲଡାର ପ୍ରଚାର ଜୋର୍‌ଦାର୍ ଚାଲିଛି । ଗୋପୀନାଥ ଏଇ ଖାଇବା ଦୃଶ୍ୟସବୁ ବେଶ୍ ବୁଝିପାରେ ଆଉ ଉପଭୋଗ କରେ । ତା'ପରେ 'ମାଗି' 'ମାଗି' ଗୀତ ବୋଲା ଆରମ୍ଭ ହୋଇଛି- ମାଗିର ବିଜ୍ଞାପନ । ତିନୋଟି ପିଲା ସ୍କୁଲରୁ ଫେରିବା ମାତ୍ରେ, ମା'କୁ ଖାଇବାକୁ ମାଗୁଛନ୍ତି । ମା' ସାଙ୍ଗେ ସାଙ୍ଗେ ଗ୍ୟାସ୍ ଚୁଲୀ ଉପରେ ପ୍ୟାନ୍ ବସାଇ, ଦୁଇ ମିନିଟ୍‌ରେ ବାମ୍ଫଉଠା ମାଗି ତିଆରି କରି, ତା' ଉପରେ କେଚ୍‌ଅପ୍ ଢାଳି, ପିଲାମାନଙ୍କୁ ପ୍ଲେଟରେ ପରଷୁଛି ଆଉ ସେମାନେ ଆଖି କାନ ଖୋସି ବେଶ୍ ଆନନ୍ଦରେ ଖାଉଛନ୍ତି । ଗୋପୀନାଥ ହଠାତ୍ ସେଠାରୁ ବାହାରକୁ ଉଠି ଯାଉଥିଲା । ମୁଁ କହିଲି, 'ଆରେ ଗୋପୀନାଥ ବସ୍ ବସ୍ ! ତୁ ଯୋଉ ରଜା ରାଜୀବ ଗାନ୍ଧୀଙ୍କ କଥା ପଚାରୁଥିଲୁ, ଅବିକା ସେଇ ରାଜୀବ ଗାନ୍ଧୀଙ୍କୁ ତତେ ଦେଖେଇ ଦେବି । ଯାପରେ ନ୍ୟୁଜ ଟାଇମ ?' ଗୋପୀନାଥ କିନ୍ତୁ ସେଠାରୁ ଉଠି ପଳାଇଲା । ସେଦିନ ରାତିରେ ସେ ଖୁବ୍ କମ୍ କଥାବାର୍ତ୍ତା କଲା, ମାତ୍ର ଢୁଳାଇଲା ନାହିଁ । ତାର କ'ଣ ହୋଇଛି ବୋଲି ଅନେକ ପଚାରା ଉଚରା କରିବା ପରେ ସେ ଏକ ପ୍ରକାର ଭିଜା କଣ୍ଠରେ କହିଲା, "ଘରେ ମୋ ନାତି, ନାତୁଣୀମାନେ ମୁଢ଼ି ଚୂଡ଼ା ମୁଠାଏ ବି ପାଉନାହାନ୍ତି । ଏଇ ଟେଭିରେ... !" ତାର କଥା ଅସମାପ୍ତ ରହିଗଲା । ଗୋପୀନାଥ କହିଲା, "ମୁଁ ତ ଖାଇପିଇ ଏଠି ବେଶ୍ ଅଛି । ସେମାନେ ଘରେ କ'ଣ କରୁଥିବେ ଟି... !" ମୁଁ ସେଥିପ୍ରତି କୌଣସି ଧ୍ୟାନ ଦେଇନଥିଲି ।

କିନ୍ତୁ ତା' ପରଦିନ ସକାଳକୁ ଗୋପୀନାଥ ଆଉ ନଥିଲା । ଠିକା ଚାକରାଣୀ କହିଲା, "ଗୋପୀଆ ସକାଳୁ କବାଟ ଫିଟାଇ ଏକ ମୁହଁ ବାହାରିଗଲା ! କହିଲା, ବାବୁ ବାବୁଆଣୀ ପଚାରିଲେ, କହିବୁ ଗୋପୀଆ ଗାଁକୁ ପଳେଇଲା !"

*୦୫/୦୪/୮୭*

# ଅନ୍ୟ ଭାରତ (୨)

ଗୋପୀନାଥ ଅକସ୍ମାତ ଦିନେ ସକାଳେ ମୋ ଘରୁ ନକହି ନପୋଛି ଏଇ ଗିଲ୍‌ଟୀ ରଙ୍ଗବୋଳା ଆମ ଭାରତ ଛାଡ଼ି, ତା'ର ସେଇ ଅଭାବ ଅନାଟନର ନିତିଦିନିଆ ଭାରତକୁ ଫେରିଯିବା ପୂର୍ବର କଥା ଇଏ।

ଦିନେ ସକାଳେ, ମୋର ଖୋଲା ଝରକା ପାଖରେ ବସି ଭାରି ତନ୍ମୟ ଭାବରେ କିଛି ଲେଖାଲେଖି କରୁଛି। ଲେଖୁ ଲେଖୁ ହଠାତ୍ ଗୋଟିଏ ସ୍ଥାନରେ ଅଟକି ପଡ଼ିଛି। ମୋ ମନକୁ ପାଇବା ଭଳି ଗୋଟାଏ ବାକ୍ୟାଂଶ ଖୋଜି ପାଉନାହିଁ। ଅନେକ କଟାକଟି ସରିଲାଣି। ଖୋଲା ଝରକା ବାଟେ ବାହାରଟା ଦିଶୁଛି, ପରୀକ୍ଷା ହଲ୍‌ରେ ଗୋଟାଏ ନିର୍ବୋଧ ପିଲାର ପରୀକ୍ଷାଖାତାର ଶୂନ୍ୟ ପୃଷ୍ଠା ପରି! ବ୍ୟଞ୍ଜନା ନାହିଁ, ଭାଷା ନାହିଁ, ଅର୍ଥ ବି ନାହିଁ। ଗୁଡ଼ାଏ ଖାଲି ଚା' ଗ୍ଲାସ୍ ଟେବୁଲ ଉପରେ ଜମିଗଲାଣି। ଅଧାଜଳା ବିଡ଼ିରେ ଆସ୍‌ଟ୍ରେ ଭର୍ତ୍ତି ହୋଇଗଲାଣି, ସକାଳ ଆଠଟା ଗଡ଼ିଗଲାଣି। ମୋର ତନ୍ମୟତା ହଠାତ ଭାଙ୍ଗିଗଲା। ଚାହିଁ ଦେଖେ ଗୋପୀନାଥ ମୋ ଆଗରେ ଚଟାଣ ଉପରେ ମୋତେ ସାଷ୍ଟାଙ୍ଗ ପ୍ରଣିପାତ କରି ମହଁ ପାତି ଶୋଇଛି। ମଇଁଷିପିଠି ପରି ତା'ର ଚଉଡ଼ା କଳାପିଠିକୁ ଚାହିଁ, ମୋର ମିଜାଜ୍ ଏକାଥରେ ବିଗିଡ଼ିଗଲା। ମୁଁ ରୁକ୍ଷ କଣ୍ଠରେ ଚିତ୍କାର କଲି, "କ'ଣ ହେଲାବେ ତୋର? ଉଠ।" ଗୋପୀନାଥ ତଳୁ ଉଠି ଦୁଇହାତ ଯୋଡ଼ି ଯେପରି ଠିଆ ହେଲା, ସେଥିରେ ମୋର ମିଜାଜ୍ ଆଉରି ବିଗିଡ଼ି ଗଲା! ଗୋପୀନାଥ କିନ୍ତୁ ମୃଦୁ ହସୁଛି ବୁଝିଲି! ଦୁଇ ଦିନ ତଳେ ତାକୁ କହିଥିଲି, "ମାଙ୍କ ପାଖରୁ ଟଙ୍କା ନେଇ ସେଲୁନ୍‌ରେ ତାର ଅଲରାବାଳ ଆଉ ମୃତକିଆ ଦାଢ଼ିପରି ବଢ଼ିଥିବା ଦାଢ଼ିଗୁଡ଼ାକୁ କାଟି ସଫା ହେବାପାଇଁ।" ଗୋପୀନାଥ ଆଜି ସକାଳୁ ସକାଳୁ ରାସ୍ତା କଡ଼ରେ କେଉଁ ଅନାଡ଼ି ଭଣ୍ଡାରୀ ହାତରେ ବାଳ କଟେଇ ଦାଢ଼ି ସଫା କରି ଆସିଛି। ତା'ପରେ ଗାଧୋଇ, ସଫା ଲୁଗା ଖଣ୍ଡେ ଛୋଟେଇ ପିନ୍ଧି ମୋତେ ବୋଧହୁଏ ପ୍ରଣାମ କରିବାପାଇଁ ଆସିଛି। ମୁଁ ଟିକିଏ ସ୍ମିତ ହସି ପଚାରିଲି, "ହଇବେ! ତତେ ଆଉ ଗୋଟେ ଭଲ ଭଣ୍ଡାରୀ ଏ ସହରରେ ମିଳିଲା ନାହିଁ।" ଗୋପୀନାଥ ଓଠରେ

ସେ ନିର୍ବାକ ସ୍ମିତ ହସ। ଗୋପୀନାଥକୁ ଏକ ଅକ୍ଷରୀ, ଦୋ ଅକ୍ଷରୀ ଭାଷାରେ ଗାଳିଦେଲେ ସେ ଖୁସିହୁଏ। ମାଳୀକୁ ଯାଇ କୁହେ, "ବାବୁ ନିର୍ଘନ ଲୋକ ମତେ ଶରଧା କରନ୍ତି ବୋଲି, ଗାଳି ଦିଅନ୍ତି ନା। ତମକୁ କ'ଣ ସେମିତି ଗାଳି ଦିଅନ୍ତି ?" ଯାଃ। ସକାଳଟା ମାଟି ହେଲା ଏବେ...।

ଗୋପୀନାଥ କହିଲା, 'ହଜୁର!' ....ହଠାତ ହଜୁର ଶୁଣି ମୁଁ ଆଉରି ଚିଡ଼ିଗଲି। ତାକୁ କ'ଣ କହିବି, ସ୍ଥିର କରି ପାରିଲି ନାହିଁ। ପଚାରିଲି, "ହଜୁର କ'ଣ ବେ ?" ସିଏ ଅମ୍ଲାନ କଣ୍ଠରେ କହିଲା, "ମାଳୀ କଇଲା ହଜୁର, ଏଠି ନେଖାଳି ଅଫିସର ବଡ଼ ସାହବ ହଜୁର! ଏକଥା ମୁଁ ଜାଣି ନଥେଲି ବୋଲି ହଜୁରଙ୍କୁ ବାବୁ ଡାକୁଥେଲି ନା।" ବିଚିତ୍ର। ଗୋପୀନାଥ କହି ଚାଲିଲା, "ହଜୁର ବଡ଼ ନେଖାଳି ବୋଲି, ମୁଁ ଜାଣିଥେଲି କି ?" ମାଳୀ ବୋଧହୁଏ ଯାକୁ କହିଛି, ମୁ ସାହିତ୍ୟ ଅକାଦମୀର ପ୍ରେସିଡେଣ୍ଟ, ମାନେ ବଡ଼ ସାହେବ। ରାଜଧାନୀରେ ବଡ଼ ମଣିଷମାନେ ପରିଚିତ ସାହେବ ରୂପେ। ତେଣୁ ହଜୁର।

ମୁଁ ଖଣ୍ଡେ ବିଡ଼ିରେ ନିଆଁ ଲଗାଇ ପଚାରିଲି, ''କଣ ହେଲା ସେଠୁ ?'' ଗୋପୀନାଥ ସେମିତି ହାତଯୋଡ଼ି ଆଶା ଓ ଆନନ୍ଦରେ ଉଜ୍ଜ୍ୱଳ ଦିଶୁଥିବା, ତା'ର ନିର୍ବୋଧ ଆଖିରେ ମୋ ଆଡ଼େ ଚାହିଁ କହିଲା, "ମୁଁ କହୁଥେଲି କି, ମୋ ସାନ ପୁଅଟା ଦଶମରେ ତିନିବର୍ଷ ହେଲା ଘୁଷୁଡ଼ି ଘୁଷୁଡ଼ି ଏବେ ଘରେ ବଇଛି। ତା' ପେଇଁ ହଜୁର ନେଖାଳି ଅଫିସ୍‌ରେ କିଛି ଗୋଟା କରି ଦିଅନ୍ତେ ନେଇଁ। ମୁଁ ବଞ୍ଚିଥିବା ତକ ହଜୁରଙ୍କ ପାଖରେ ଏଇଠି ପଡ଼ି ସେବା କରନ୍ତି। ମାଳୀ କଇଲା, ହଜୁର ବଡ଼ ନେଖାଳି। ହଜୁରଙ୍କ ସେବା କରିବା, ମୋର ତ ଭାଗ୍ୟର କଥା।" ଏବେ ବୁଝିଗଲି ଗୋପୀନାଥର ସାଷ୍ଟାଙ୍ଗ ପ୍ରଣାମର ମତଲବ୍! ବଳଦ ଆଖି ପରି ଡବ ଡବ ଆଖିର ନେପଥ୍ୟରେ ସେଇ ଗ୍ରାମ୍ୟ ଧୂର୍ତତା ଆଖି ମିଞ୍ଜି ମିଞ୍ଜି କରୁଛି। ...ମୁଁ ପଚାରିଲି ''ତୋ ପୁଅ କ'ଣ କିଛି ଲେଖାଲେଖି କରେ ?''

ଗୋପୀନାଥ ଉତ୍ତର ଦେଲା, "ହଁ ହଜୁର ସିଏ ବି ନେଖାଳି। ହେଲେ ହଜୁର ବଡ଼ ନେଖାଳି" ...କେଜାଣି ଟୋକାଟା ହୁଏତ କିଛି ଗୀତ କି ଗଦ୍ୟ ଏମିତି କିଛି କେବେ ଲେଖିଥିବ। ଦେଖାଯାଉ। ମୁଁ ପଚାରିଲି, "ମୁଁ ଜାଣିବି କେମିତି, ତୋ ପୁଅ ଲେଖାଲେଖି କରେ ବୋଲି ?'' ...ଗୋପୀନାଥ ଚଟ କରି ଉତ୍ତର ଦେଲା, "ହଜୁର ତା' ନେଖା ଏଇଠି ମୋ ପାଖରେ ଅଛି। ମୁଁ ଆଣୁଛି।''

ଗୋପୀନାଥ ଲମ୍ଫଲମ୍ଫ ପାହୁଲ ପକାଇ ଭଣ୍ଡାର ଘରକୁ ଯାଇ, ତା ପ୍ଲାଷ୍ଟିକ ଥଳୀରୁ ଏକ୍‌ସରସାଇଜ୍ ଖାତାର ଖଣ୍ଡେ ଭୁଲପକା ଲେଖା କାଗଜ ଧରି ଭାରି ଆନନ୍ଦରେ ମୋ ପାଖକୁ ଆସି, କାଗଜ ଖଣ୍ଡକ ମୋ ଆଡ଼େ ବଢ଼ାଇ ଦେଲା। ଦେଖିଲି, ଏଇଟା ଗୀତ ବା ପଦ୍ୟ ନୁହେଁ। ଗୋପୀନାଥକୁ ତା' ପୁଅ ଗାଁରୁ ଚିଠି ପଠେଇଛି। ବଙ୍କା ତେଢ଼ା ଅକ୍ଷରରେ

ଲେଖା ଅଛି। 'ପୁଜନିଅ ବୋପା, ଆମେ ସବୁ ଏଠୀ କୁସଲରେ ଅଚୁ, ତେମେ ସେଠୀ କୁସଲରେ ଥେବ।'' ...ଅକ୍ଷର ଆଉ ବନାନ୍ ଦେଖି ମୋ ମୁଣ୍ଡ ଭିତରଟା ଦପ୍ କରି ଜଳି ଉଠିଲା। ଚିତ୍କାର, ବିସ୍ଫୋରଣ କରିବା ପାଇଁ ମୋର କଣ୍ଠ ଅଟକି ଗଲା। ଗୋପୀନାଥ ସେମିତି ନିର୍ବିକାର ଭାବରେ କହି ଚାଲିଥିଲା, ''ଗାଁରେ, ଆମ ସାଇରେ, ସମତଙ୍କ ପାଇଁ ସେ ଟୋକା ଚିଠି ନେକେ। ସିଏ ବି ହଜୁର ନେଖାଳି। ତା' ପେଇଁ ଯଦି ହଜୁର ନେଖାଳି ଅଫିସରେ କିଛି ଗୋଟା ବ୍ୟବସ୍ଥା କରନ୍ତେ।''

ପ୍ରିୟ ପାଠକ-ପାଠିକାମାନେ, ଯିଏ କଲମ ଧରି ଲେଖେ, ସିଏ ଯଦି ଲେଖାଳି ବା ଲେଖକ ହେଲା, ତା'ହେଲେ ଗୋପୀନାଥର ଏଇ ଚିଠି ଲେଖାଳି ପୁଅଟି ମଧ୍ୟ ଲେଖକ ନହେବ କାହିଁକି ? ଗୋପୀନାଥ ମିଛ ବା କ'ଣ କହିଲା ? ...ଛାତକୁ ଚାହିଁ ବିଡ଼ିରୁ ଯେତେ ଧୂଆଁ ଛାଡ଼ିଲେ ବି ଗୋପୀନାଥର ଏଇ ମୌଳିକ କଥାର କୌଣସି ଉତ୍ତର ଖୋଜି ପାଇଲି ନାହିଁ।

ମୁଁ ଶାନ୍ତ କଣ୍ଠରେ ଗୋପୀନାଥକୁ କହିଲି, 'ଯା ଗୋପୀ, ପିଲାଙ୍କୁ କାହାକୁ କହ ମୋର ଖିଅର ଜିନିଷ ଆଉ ଗିଲାସେ ଚା' ଆଣିବେ। ଡେରି ହୋଇ ଗଲାଣି। ...ଗୋପୀନାଥ ଗୋଟାଏ ଗଡ଼ ଜିତିଥିବା ପରି ଆନନ୍ଦରେ ଲମ୍ବା ଲମ୍ବା ପାହୁଲ ପକାଇ ବାହାରିଗଲା। ନେଖାଳି ଅଫିସ୍‌ର ବଡ଼ ସାହାବ ବୋଧହୁଏ ତା'ର ପ୍ରାର୍ଥନା ମଞ୍ଜୁର କରିଛନ୍ତି। ଭିତରେ ଗୋପୀନାଥର ପାଟି ଶୁଭୁଥିଲା। ''ସାହାବ ବ୍ୟସ୍ତ ହେଲେଣି। ଜଲଦି ଜଲ୍‌ଦି ଖିଅର ସାମନ ଆଉ ଚା' ନେଇ ଯାଅ। ସାହାବ ବିଗିଡ଼ିଲେଣି।''

ପିଲାଏ ଟିଭିରେ କ୍ରିକେଟ ମ୍ୟାଚ୍ ଦେଖୁଥିଲେ। ଜଣେ ବିରକ୍ତ ହୋଇ ଚିତ୍କାର କଲା, ''କୋଉ ସାହାବ ବେ ?'' ମୁଁ ଆଜି ସକାଳୁ ସକାଳୁ ବାବୁର ଯେ ସାହାବ ହୋଇଯାଇଛି, ସେ ଜାଣନ୍ତା ବା କୁଆଡୁ ? ''କୋଉ ସାହାବ କ'ଣ ମ ? ଆମ ସାହାବ ପରା! ଏ ଘରେ ଆଉ କେଇଟା ସାହାବ କି ?''

ମୁଁ ଯେପରି ଠୋ ଠୋ ହୋଇ ହସିଉଠିଲି, ସେ ଶବ୍ଦରେ ବାଥ୍‌ରୁମ୍‌ରୁ ଗୋଟାଏ ବଣୁଆ ପାରା ବାହାରକୁ ଉଡ଼ି ପଳାଇଲା। ସେତେବେଳେ ହସିବା ଛଡ଼ା ମୋର ଆଉ କି ଚାରା ଥିଲା କୁହନ୍ତୁ...।

୧୯/୦୪/୮୭

# ପାଚିରି, ପାଗଳ ଆଉ ସେମାନେ

ସେମାନେ ପିଣ୍ଡା ଉପରେ, ନିରାପଦ ଦୂରତ୍ୱରେ ବସି, ପାନ ଚାକୁଳୋଉଥିଲେ। ଆଉ ସେମାନଙ୍କ ସାମ୍ନାରେ ଠିଆ ହୋଇଥିବା ମେଘନାଦ ପାଚିରୀ ପରି ଗୋଟାଏ ପଥର ପାଚିରୀ ପ୍ରତି ଅଭିସମ୍ପାତ ବର୍ଷଣ କରୁଥିଲେ। ଏ ପାଚିରି ସେମାନଙ୍କଠାରୁ ଲୁଚାଇ ରଖିଛି ସୂର୍ଯ୍ୟ। ଦକ୍ଷିଣା ପବନ ପାଚିରୀ ଡେଇଁ ସେମାନଙ୍କୁ କେବେ ସ୍ପର୍ଶ କରିପାରିଲା ନାହିଁ। ଏହାର ନିଷ୍ପ୍ରାଣ ଶୀତଳ ଛାୟା ସେମାନଙ୍କୁ ନିତ୍ୟ ଆଶଙ୍କିତ; ଉତ୍ପୀଡ଼ିତ କରି ରଖିଛି। ଏ ପାଚିରୀ ସେମାନଙ୍କ ପ୍ରତି ଗୋଟାଏ ଅଭିଶାପ। ପ୍ରତିଦିନ ପିଣ୍ଡା ଉପରେ ବସି ପାନ ଚାକୁଳେଇ ଚାକୁଳେଇ ସେମାନେ ପାଚିରି ଉପରେ ଏହିପରି ଅଭିସମ୍ପାତ ବର୍ଷଣ କରନ୍ତି। ସେମାନେ ଆମ ସହରର ଇଣ୍ଟେଲେକ୍‌ଚୁଆଲ୍‌ସ।

ପାଗଳ ପରି ଦିଶୁଥିବା ଗୋଟାଏ ଲୋକ ସେଇବାଟେ ଦିନେ ଯାଉଁ ଯାଉଁ ସେମାନଙ୍କ ପାଖରେ ଅଟକି ଗଲା।

ସେମାନେ ପଚାରିଲେ, 'କ'ଣ କହୁଚ! ଏଇ ପାଚିରୀକୁ ଦେଖୁଛ ତ! ଏ ଆମପ୍ରତି ଗୋଟାଏ ଅଭିଶାପ।'

ପାଗଳ ପରି ଦିଶୁଥିବା ସେଇ ଲୋକଟି ଉତ୍ତର ଦେଲା, 'ଏ ପାଚିରିକୁ ମୁଁ ଭାଙ୍ଗିବି। ଏଠୁ ହଟାଇବି।'

ବୁଦ୍ଧିଜୀବୀମାନେ ପାନ ଚାକୁଳେଇବା ଛାଡ଼ି ତାର ଖୁବ୍ ତାରିଫ୍ କଲେ। ତା ନାଁରେ ଜିନ୍ଦାବାଦ୍ ବି ଦେଲେ। ଗୋଟାଏ ଫୁଲମାଳ ବି ତା' ବେକରେ ପିନ୍ଧାଇ ଦେଲେ।

ଦିନେ ସକାଳେ ସେ ପାଗଳ ପ୍ରଭାତ ସୂର୍ଯ୍ୟକୁ ନମସ୍କାର କରି, ଦୁଇହାତରେ ପାଚିରି ଠେଲିବା ଆରମ୍ଭ କଲା। ସେମାନେ ପିଣ୍ଡାରୁ ତଳକୁ ଓହ୍ଲାଇ ତା' ପଛରେ ଠିଆହୋଇ, ତାକୁ ପଛରୁ ଠେଲିଲେ । ମଦତ୍ ଦେଲେ। ତା' ନାଁରେ ଜୟଧ୍ୱନି ବି ଦେଲେ। ପାଚିରି କିନ୍ତୁ ଟିପେ ହେଲେ ଟଳିଲା ନାହିଁ।

ଏହିପରି କିଛିଦିନ ପରେ ପଛରୁ ତାକୁ ଠେଲୁଥିବା ବୁଦ୍ଧିଜୀବୀମାନଙ୍କ ଆଖିରେ ଭ୍ରମ ଥିଲା କି କ'ଣ, ସେମାନେ ପ୍ରକୃତରେ ଲକ୍ଷ୍ୟ କଲେ, ମେଘନାଦ ପାଚିରିର ପଥୁରିଆ ମୁହଁରେ ଫୁଟିଉଠିଛି ଭ୍ରୂକୁଟୀ। ସେମାନେ ତ୍ରାହି ତ୍ରାହି ଡାକି, ଜଣ ଜଣ ହୋଇ ପୁଣି ସେଇ ପିଣ୍ଡାର ନିରାପତ୍ତା ଭିତରକୁ ଫେରିଆସିଲେ, ଆଉ ପାନ ଚାକୁଳେଇ ଆପଣା ଆପଣା ଭିତରେ କଥାବାର୍ତ୍ତା ହେଲେ... "ବୁଝିଲ, ଆମେ ହେଲୁ ଦର୍ଶକର ଜାତି। ଷେଣ୍ଢ ଲଢ଼େଇଠାରୁ ନେତା ଲଢେଇ, ଫୁଟବଲ ମ୍ୟାଚ୍‌ଠାରୁ କ୍ରିକେଟ ମ୍ୟାଚ୍, ଫିଲ୍ମଷ୍ଟାରଠାରୁ କ୍ରିକେଟ ଷ୍ଟାର-ସମସ୍ତଙ୍କୁ ଆମେ ଭିଡ଼ ବାନ୍ଧି ଠେଲାପେଲା ହୋଇ ଦେଖୁ। ତା'ଉପରେ ପାଣ୍ଡିତ୍ୟପୂର୍ଣ୍ଣ ଟୀକା ଟିପ୍‌ପଣୀ କରୁ। ଆମେସବୁ ଦର୍ଶକର ଜାତି। ସେଥିପାଇଁ ବୋଧହୁଏ ଆମ ଦେଶକୁ ଦାର୍ଶନିକର ଦେଶ ବୋଲି ପଛିମା ପଣ୍ଡିତମାନେ କହିଛନ୍ତି, କିତାପ ବି ଲେଖିଛନ୍ତି। ଆମର ଏ ପାଗଳର ପାଗଳାମୀରେ କ'ଣ ଅଛି ? ଆସ, ଆମେ ଏଇଠି ବସି ଏ ପାଗଳର କାଣ୍ଡ ଦେଖିବା। ଆଉ ଟୀକା ଟିପ୍‌ପଣୀ ଲେଖିବା।"

ପଥର ପାଚିରି ସହିତ ଲଢ଼େଇରେ ସେ ପାଗଳର କିନ୍ତୁ ବିରାମ ନାହିଁ। ମଝିରେ ମଝିରେ ତାକୁ ପ୍ରେରଣା ଦେବାପାଇଁ ବୁଦ୍ଧିଜୀବୀମାନେ ବେଳେ ବେଳେ ତା'ପାଇଁ ଜିନ୍ଦାବାଦ୍ ଧ୍ୱନି ସୁଦ୍ଧା ଦିଅନ୍ତି। ହାତତାଳି ପିଟନ୍ତି।

ଲଢ଼ି ଲଢ଼ି କ୍ରମେ ସେ ପାଗଳଟାର ଦୁଇବାହୁ ଅବଶ ହୋଇଗଲା। ଠିଆ ହେବା ପାଇଁ ଗୋଡ଼ର ମାଂସପେଶୀ ସବୁ ଆଉ ଶକ୍ତି ପାଇଲା ନାହିଁ। ତଥାପି ସେ ମାଟି ଉପରେ ବସିପଡ଼ି, ପାଚିରି ଉପରେ ମୁଣ୍ଡ ପିଟିଲା! ପାଗଳର ଏ ବୀରତ୍ୱ ଦେଖ, ପିଣ୍ଡା ଉପରର ଲୋକମାନେ ହାତତାଳି ଦେଲେ। ପ୍ରକୃତରେ ଇଏ ଶହୀଦସୁଲଭ ବୀରତ୍ୱ!

ପାଗଳ ପାଚିରୀ ଦେହରେ, ମୁଣ୍ଡ ପିଟିପିଟି ଲହୁଲୁହାଣ ହୋଇଗଲା। ବୁଦ୍ଧିଜୀବୀମାନେ ଆଉରି ଜୋର୍‌ରେ ହାତତାଳି ଦେଲେ। ଗୋଟାଏ ଦୁଇଟା ଜିନ୍ଦାବାଦ ବି। ସବୁ ରକ୍ତ ଦେହରୁ ନିଃଶେଷିତ ହୋଇଯିବା ପରେ ପାଗଳର ହୃତପିଣ୍ଡ ମାଟି ଉପରେ ଲୋଟିପଡ଼ିଲା।

ପିଣ୍ଡା ଉପରର ବୁଦ୍ଧିଜୀବୀମାନେ କହିଲେ... "ଉଠ ହେ! ଏ ମେଘନାଦ ପାଚିରି। ଇଏ ଲେଭିଆଥାନ। ଏ ପାଗଳଟା କୁଆଡ଼େ ତାକୁ ହଟାଇବ ? ମୁଁ ତମକୁ ଆରମ୍ଭରୁ କହୁନଥିଲି ଲୋକଟା ଗୋଟାଏ ମୂର୍ଖ।"

ଆଉ ଜଣେ କହିଲା, "ମୁଁ ଜାଣିଥିଲି ପରା, ଏ ପାଗଳର ଶେଷକୁ ଏଇ ଗତି ହେବ! ଉଠ, ଉଠ!'

"ଖେଳ ସରିଲା। ସେମାନେ ଉଠିଗଲେ। ସହରକୁ ଆସିଛନ୍ତି ହାକିମସ୍ତାନ, ବଚ୍ଚନ ଆଉ ଖାନ୍ନାମାନେ। ସେମାନଙ୍କୁ ଦେଖିବା ଆଉ ସେମାନଙ୍କ ଉଦ୍‌ବୋଧନ ଶୁଣିବା।' ସେମାନେ ଚାଲିଗଲେ।

ମୁଁ ଅବଶ୍ୟ ସେମାନଙ୍କ ମେଳରେ ନଥିଲି। ଅଳ୍ପଛଡ଼ାରେ ଠିଆହୋଇ ମୁଁ ପାଗଳ ଆଉ ମେଘନାଦ ପାଚିରି ଭିତରେ ଲଢ଼େଇ ଦେଖୁଥିଲି। ପାଗଳ ପ୍ରତି ମୋର ଶ୍ରଦ୍ଧା ଆଉ ସମ୍ମାନ କ୍ରମେ ବଢୁଥିଲା। ତା'ର ମୃତ୍ୟୁରେ ମୁଁ ଆଃ...ଆଃ...ଚୁଃ...ଚୁଃ... ହେଲି। ଜଣେ ଶହୀଦ୍ ଆତ୍ମବଳି ଦେଲା ବୋଲି ଆକାଶ ଆଡ଼େ ଚାହିଁ ବଡ଼ ପାଟିରେ ଚିତ୍କାର କଲି। ଆଞ୍ଜୁଳାଏ ଘାସଫୁଲ ତୋଳିଲି, ପାଗଳର ଶବ ଉପରେ ଦେବାପାଇଁ।

ମୋର କିନ୍ତୁ ହଠାତ୍ ମନେ ପଡ଼ିଗଲା, ଗ୍ରୀକ ଦାର୍ଶନିକ ସକ୍ରେଟିସ୍‌ଙ୍କ କଥା। ଏଥେନ୍‌ସର ଲୋକେ ସକ୍ରେଟିସ୍‌ଙ୍କୁ ଏକ ବିପଜ୍ଜନକ ପାଗଳ ବୋଲି ଧରିନେଇ ତାଙ୍କୁ ହେମ୍‌ଲକ୍ ବିଷ ପିଆଇ ଦେଲେ। ମୃତ୍ୟୁ ଅବଧାରିତ। ସକ୍ରେଟିସଙ୍କ ପ୍ରାଣବାୟୁ ଯେତେବେଳେ ଉଡ଼ିଯିବା ଉପରେ, ପ୍ରିୟ ଶିଷ୍ୟ କ୍ରିଟୋ ତାଙ୍କ ଶଯ୍ୟା ପାଖକୁ ଆସି ପଚାରିଲା, "ଗୁରୁଦେବ! ଆପଣଙ୍କ ମୃତ ଦେହକୁ ଆମେ କିପରି ସତ୍କାର କରିବୁ?" ସକ୍ରେଟିସ କ୍ଷୀଣ, ମୁମୂର୍ଷୁ କଣ୍ଠରେ ଉତ୍ତର ଦେଲେ, "ମୋର ଆତ୍ମା କୁଆଡ଼େ ଗଲା, ତାକୁ ଯଦି ଅଟକାଇ ନ ପାରିବ, ଜାଣି ନପାରିବ, ତା'ହେଲେ ମୋର ମୃତ ଦେହଟାକୁ ଯେପରି ଇଚ୍ଛା ସେପରି ସତ୍କାର କରିବାରେ ମୋର କିଛି ଯାଏଆସେ ନାହିଁ।"

ଏଇ ତଥାକଥିତ ପାଗଳର ମୃତଦେହକୁ ମ୍ୟୁନିସିପାଲିଟି ମେହେନ୍ତର ତା'ର ଠେଲାଗାଡ଼ିରେ ଉଠାଇ ନେଲେ ବି କ୍ଷତି କ'ଣ? ତା'ପାଇଁ ବେଦମନ୍ତ୍ର ପାଠ, ଚନ୍ଦନକାଠର ଚିତା, ନହେଲେ ମଧ୍ୟ ଚଳିବ। ମୁଁ ସେ ଆଞ୍ଜୁଳାକ ଘାସଫୁଲ ତଳକୁ ଫିଙ୍ଗିଦେଲି। ବରଂ ଏହା ତା'ପ୍ରତି ଅସମ୍ମାନ ହେବ।

ସହରକୁ ଆସିଛନ୍ତି... ହାଜୀମସ୍ତାନ, ବଚ୍ଚନ ଆଉ ଖାନ୍ନାମାନେ ଦେଶଭକ୍ତି ସମ୍ପର୍କରେ ଉଦ୍‌ବୋଧନ ଦେବେ। ଆମ ବୁଦ୍ଧିଜୀବୀମାନେ ଚାଲିଛନ୍ତି ସେମାନଙ୍କ ଉଦ୍‌ବୋଧନ ଶୁଣିବା ପାଇଁ... ବଙ୍କୁଲିବାଡ଼ି ଉପରେ ଅଳ୍ପ ନଇଁନଇଁ। ଚିନ୍ତା ଆଉ ଭାବନାର ସେମାନେ ଝୁଙ୍କି ପଡ଼ିଛନ୍ତି; କିନ୍ତୁ ପ୍ରକୃତରେ ପିଣ୍ଡା ଉପରେ ବସିବସି ସେମାନଙ୍କ ମେରୁଦଣ୍ଡ ଦୁର୍ବଳ ହୋଇଯାଇଛି।

ପାଗଳ ମୃତ ଶରୀରଠାରୁ ମୁଁ ଅଳ୍ପ ଛଡ଼ାରେ, ଘାସ ଉପରେ ଚିତ୍ ହୋଇ ଶୋଇପଡ଼ିଲି... ଆଉ ଅନ୍ୟ ପାଗଳ କାଲେ କିଏ ଆସିବ ବୋଲି ଅପେକ୍ଷା କଲି।

*୦୩/ ୦୫/ ୮୭*

# ଧୂଳିକଣାର ଗଦ୍‌ଦାରୀ

ଧୂଳିକଣାମାନେ ହଠାତ୍ ବିଦ୍ରୋହ ଆରମ୍ଭ କରିଥିବାର ସୂଚନା ମୁଁ ମୋର ଖୋଲା ଝରକା ପାଖରେ ବସି ଦୁଇ ତିନି ଦିନ ତଳେ ପାଇ ସାରିଥିଲି । ଫଗୁଣର ଉତ୍ତଳା ପବନ, ଏଇ ପଦଦଳିତ ନିଷ୍ପେଷିତ ଧୂଳିକଣାମାନଙ୍କୁ ଗ୍ଲାନି ଓ ଅବସାଦର ଧୂଳିଶଯ୍ୟାରୁ ଉଠାଇ, ସେମାନଙ୍କୁ ବିଦ୍ରୋହ କରିବା ପାଇଁ ମତାଇଥିଲା। ଧୂଳିକଣାମାନେ ମୋର ଲେଖା ଟେବୁଲ, ପାଣ୍ଡୁଲିପି, ବହି ଉପରେ ଆରମ୍ଭ କରିଦେଇଥିଲେ, ଅନ୍ଧ ଆକ୍ରମଣ ! ଫୁଲଦାନୀରେ ସଜ ଫୁଲପାଖୁଡ଼ା ସବୁ ସେମାନଙ୍କ ଆଘାତରେ ଭାରୀ ମ୍ରିୟମାଣ, ମଳିନ ଦିଶୁଥିଲେ... ମୁଁ କିନ୍ତୁ ସେମାନଙ୍କର ଏ ବିଦ୍ରୋହକୁ ଏକ ସାମୟିକ 'ନୁଇସାନ୍‌ସ' ବୋଲି ଧରିନେଇ, ତାଚ୍ଛଲ୍ୟରେ ସମ୍ପୂର୍ଣ୍ଣ ଉପେକ୍ଷା କରୁଥିଲି। ହଃ... ତୁଚ୍ଛ ଧୂଳିକଣା ସବୁ ପୁଣି ମଣିଷ ଉପରକୁ ହାତ ଉଠାଇବେ !

କିନ୍ତୁ ହଠାତ୍ ଦିନେ ମଧ୍ୟାହ୍ନରେ, ଆକାଶପଥରେ ନୈଋତ କୋଣରୁ ଗୋଟାଏ ପାଗଳା ଦର୍‌ବେଶ କୁଆଡୁ ଅଚାନକ ମାଡ଼ି ଆସିଲା। ତାର ଦାମାମା ଆଉ ତୁରୀ ଭେରୀ ଶୁଣି, ଆମେ ସବୁ ପ୍ରକୃତରେ ଆତଙ୍କିତ ହୋଇପଡ଼ିଲୁ। ଦର୍‌ବେଶ୍ ଦାନ୍ତ କଡ଼ମଡ଼ କରି ଚିତ୍କାର କରୁଥିଲା, ଫଗୁଣ ପବନ ବଇଁଶୀ ବଜାଇ କ'ଣ ଏଇ ଧୂଳିକଣାମାନଙ୍କୁ ମତାଇ ପାରିବ ? ମୁଁ ଆସିଛି, ରୁଦ୍ର ପିଙ୍ଗଳ ଜଟାଜୁଟ ମେଲି, ବିଦ୍ରୋହର ଶିଙ୍ଗା ଫୁଙ୍କି, ଦାମାମା ବଜାଇ। ଉଠ, ଜାଗ, ଚିରଦଳିତ ଧୂଳିକଣାସବୁ ! ଆକ୍ରମଣ କର, ଖତମ୍ କର, ଛିଣ୍ଡାଇ ଦିଅ ସେମାନଙ୍କର ସୌଖିନ ପର୍ଦ୍ଦାସବୁ, ଉଡ଼ାଇନିଅ କାନ୍ଥମାନଙ୍କରୁ କାଲେଣ୍ଡର ! ଦର୍‌ବେଶର ଚିଣ୍ଡା କଳା ଆଲଖାଲ୍ଲା ପବନରେ ଉଡୁଥିଲା ତା'ର ବୈଜୟନ୍ତୀ ପରି। ....ମୋର ଲେଖା ଟେବୁଲ ଉପରୁ ପାଣ୍ଡୁଲିପି ସବୁ ଉଡ଼ିଗଲା, ଟୁକୁରା ଟୁକୁରା ଛିଣ୍ଡା କାଗଜ ପରି। ଫୁଲଦାନୀଟା ତଳେ ପଡ଼ି ଝନ୍‌ଝନ୍ ଆୱାଜ୍ କଲା ! ....ପାଗଳା ଦରବେଶ୍‌ର ଶିଙ୍ଗା ନାଦ କ୍ରମେ ଆଉରି ବଢୁଛି। ଧୂଳିକଣାମାନେ ଆକାଶକୁ ସୁଦ୍ଧା ଆକ୍ରମଣ କଲେଣି। ରାସ୍ତାରେ ପଥଚାରୀମାନେ ଆଖି, କାନ, ନାକରେ ରୁମାଲ ବାନ୍ଧି ଏଣେତେଣେ ଧାଇଁଛନ୍ତି ଆତ୍ମରକ୍ଷା ପାଇଁ ବ୍ୟାଧଭୀତ ପଶୁମାନଙ୍କ ପରି ! ପାଗଳ ଦର୍‌ବେଶ ଠୋ ଠୋ ଅଟ୍ଟହାସ କରି ଉଡୁଛି ! ଯେଉଁ ଧୂଳିକଣାସବୁ

ମୌନ କ୍ରୀତଦାସମାନଙ୍କ ପରି ଚୁପ୍‌ଚାପ ବିନା ପ୍ରତିବାଦରେ ମଣିଷମାନଙ୍କର ସବୁ ପଦାଘାତ ମୁହଁବୁଜି ସହି ଆସୁଥିଲେ, ସେମାନେ ଯେ ହଠାତ୍ ମଣିଷମାନଙ୍କ ମୁଣ୍ଡ ଉପରକୁ ଚଢ଼ି ଏପରି ଉତ୍ପାତ କରିପାରନ୍ତି ଏହା ମୁଁ ଭାବି ସୁଦ୍ଧା ପାରୁ ନ ଥିଲି। ଗୋଟାଏ ପାଗଳା ଦର୍‌ବେଶ୍ ଦିନେ ଯେ ଏପରି କାଣ୍ଡ କରି ବସିବ ଆଉ ଏଇ ନିରୀହ ଗୋବିଚାରୀ ଧୂଳିକଣାମାନେ ମଣିଷ ବିରୁଦ୍ଧରେ ଗଦ୍‌ଦାରୀ କରି, ଏପରି ଅନ୍ଧ ଆକ୍ରମଣ କରିବେ, ଏହା ପ୍ରକୃତରେ ମୋର କଳ୍ପନାତୀତ ଥିଲା ! ଆମେ ସବୁ ଘରକୋଣରେ ବସି ବିଷ୍ଣୁ ସହସ୍ରନାମ ଜପକଲୁ। ସବୁଆଡ଼େ ତ୍ରାହି ତ୍ରାହି ଡାକ।

ଦେବରାଜ ଇନ୍ଦ୍ରଙ୍କର ସିଂହାସନ ଟଳିଲା ! ଇନ୍ଦ୍ର ନାଟକୀୟ ଛଟାରେ ହୁଙ୍କାର ଦେଲେ... "ମୁଁ ବୃତ୍ରାରି ଇନ୍ଦ୍ର। ଏଇ ମୋର ବଜ୍ର। ଏ ପାଗଳ ଦରବେଶ କି ଛାର ! ଛାର ଧୂଳିକଣାମାନେ ପୁଣି ମୋ ଉପରକୁ ହାତ ବଢ଼ାଉଛନ୍ତି !" କଳାହାଣ୍ଡିଆ ମେଘ ପ୍ରତି ବିପ୍ଳବର ଫଉଜ ପରି ମାଡ଼ିଆସିଲା !

କ୍ରୁଦ୍ଧ ଐରାବତର ଫୁତ୍କାରରେ ଗଗନ ପବନ ଥରି ଉଠିଲା। ଅପରାହ୍ନର ସୂର୍ଯ୍ୟ ମେଘ ଉଢ଼ାଳରେ ଏକଚକ୍ଷୁ କାପାଳିକର ରକ୍ତଚକ୍ଷୁ ପରି ଦିଶିଲେ ! ଚାହୁଁ ଚାହୁଁ ଐରାବତ ଶୁଣ୍ଢରୁ ମୂଷଳ ଧାରାରେ ବର୍ଷା ଝରିଲା ! ଧୂଳିକଣାମାନଙ୍କର ଗଦ୍‌ଦାରୀ ନିମିଷକ ମଧ୍ୟରେ ଖତମ ହୋଇଗଲା। ଧୂଳିକଣା ସବୁ ମାଟି ଉପରେ ପୁଣି ଚୁପ୍‌ଚାପ୍ ମୁହଁମାଡ଼ି ଆତ୍ମରକ୍ଷା କଲେ। ପାଗଳା ଦରବେଶ ଛତ୍ରଭଙ୍ଗ ଦେଇ, ଛାଟିପିଟି ହୋଇ କୁଆଡ଼େ ପଳାଇଲା।

ସେମାନେ ନିଜ ନିଜ ଭିତରେ କାହା କାନରେ ପଡ଼ି ନ ପାରିବା ଭଳି କଣ୍ଠରେ କଥାବାର୍ତ୍ତା ହେଲେ.... 'ଠିକ୍ ଅଛି। ଏମାନେ ସବୁବେଳେ ଆମରି ମେଳକୁ ବି ଆସିବେ ! ସେଦିନ ହେବ ହିସାବ ନିକାଶ। ମଣିଷର ସବୁ ସାମ୍ରାଜ୍ୟ, ସବୁ ସିଂହାସନ, ସବୁ ଶିଶ୍‌ମହଲ ଦିନେ ଆମରି ସହିତ ଏକାକାର ହୋଇଯିବେ। ଆମେ ଇତିହାସର ଅଲଙ୍ଘ୍ୟ ନିୟତି।''

ଆଦ୍ୟ ମୌସୁମୀର ଅଭିନୟ ମିନିଟ୍ କେତେଟା ମଧ୍ୟରେ ଶେଷ ହୋଇଗଲା। ମୋର କଙ୍କରିଳ ପରିବେଶରେ ହଠାତ୍ ଗୋଟିଏ କପୋତ ଘୁମୁରି ଉଠିଲା। ବହୁ ବହୁ ଦିନ ଧରି ମୁଁ କପୋତର ଘୁମୁରା ଶୁଣି ନଥିଲି। ଇଏ ଯେପରି ଧୂଳିମାନଙ୍କର ବିଦ୍ରୋହର ଶେଷ ବିୟୋଗାନ୍ତକ ପାଦଟୀକା !

ପାଗଳ ଦର୍‌ବେଶରେ ନାଚ ଆଉ ଧୂଳିକଣାମାନଙ୍କର ଗଦ୍‌ଦାରୀ ଭିତରେ ମୁଁ କିନ୍ତୁ ହରାଇ ବସିଥିଲି ମୋର ବହୁ ପ୍ରତୀକ୍ଷିତ ପଳାଶ-ପାଟଳୀ ଶୋଭିତ 'ପରିଣାମ ରମଣୀୟ' ବୈଶାଖର ରୌଦ୍ରଦଗ୍ଧ ମଧ୍ୟାହ୍ନ !

୧୦/୦୪/୮୭

# ସକାଳ, ସଁବାଳୁଆ ଓ ମୁଁ

ସକାଳର ପ୍ରଥମ ଚା' ଗ୍ଲାସଟା ହଠାତ୍ ବିସ୍ୱାଦ ହୋଇଗଲା... ଝରକା ବାହାରେ, ବିଶି ଆଙ୍ଗୁଠି ମୋଟ ଓ ପ୍ରାୟ ସେଇ ଲମ୍ବର ଗୋଟାଏ ବୁଢ଼ା ସଁବାଳୁଆ, ଝରକାର ତାରଜାଲି ଉପରେ ଲୋମଶ ପାଦରେ ଘୁଷୁରି ଘୁଷୁରି ବୋଧହୁଏ ମୋ ଲେଖା ଟେବୁଲ ଉପରକୁ ଆସିବା ପାଇଁ ଚେଷ୍ଟା କରୁଥିଲା ! ସକାଳୁ ସକାଳୁ, ଏଇ ଲୋମଶ ବୀଭତ୍ସତା ! ମୋର ଦେହ ଘୃଣାରେ ଶୀତେଇ ଉଠିଲା ! ମୁଁ ଟେବୁଲ ଉପରୁ ଚିଠି ଖୋଳ କାଟିବା ପାଇଁ ପଡ଼ିଥିବା, ଗୋଟାଏ କତୁରୀ, ସଁବାଳୁଆ ଆଡ଼କୁ ଦେଖାଇ ଚିତ୍କାର କଲି ''ଷ୍ଟପ୍ ! ଆଉ ଟିକେ ଆଗକୁ ଘୁଷୁରିଛୁ ତ, ଏଇଥିରେ, ତେତେ କାଟି ସିଧା ଦି'ଗଡ଼ କରିଦେବି !''

ସଁବାଳୁଆ କଣ ବୁଝିଲା କେଜାଣି, ତାର-ବାଡ଼ ଉପରେ ଲଟକି ମୋ ଆଡ଼େ ଡବ ଡବ ଆଖିରେ ଚାହିଁ ରହିଲା ! ଦୁଇ ଆଖିରେ ତାର ଦୁନିଆର ଯେତେସବୁ ଈର୍ଷା ଆଉ କ୍ରୋଧ ! ପ୍ରକୃତରେ ଈର୍ଷାତୁର ମଣିଷମାନଙ୍କର ଆଖିସବୁ ଏଇପରି ଦିଶେ !

ମୁଁ କହିଲି; ତୋ ଚେହେରାରୁ ମନେ ହେଉଛି: ସଁବାଳୁଆ କୂଳର ବହୁ ପ୍ରଜନ୍ମର ତୁ ପ୍ରପିତାମହ। ଏତେ ଦିନ କିନ୍ତୁ ତୋର ଅଲଂଘନୀୟ ନିୟତି 'ମେଟାମର୍ଫୋସିସ୍'କୁ ଫାଙ୍କି ତୁ ଏଠି କଣ କରୁଛୁ ?

ସଁବାଳୁଆ ମେଟାମର୍ଫୋସିସ୍ କଥାଟା ବୋଧହୁଏ ବୁଝିପାରିଲା ନାହିଁ। ସେ ସେହିପରି କ୍ଷୁଧିତ ଦୃଷ୍ଟିରେ ମୋ ଆଡ଼େ ଅନାଇ ରହିଲା। ମୁଁ ତାକୁ କଥାଟା ବୁଝାଇ ଦେବା ପାଇଁ କହିଲି ''ତୁ ତ ଅନେକ ପୂର୍ବରୁ ତୋର ଏଇ ବିଭତ୍ସ, ଲୋମଶ ଖୋଳପା ଛାଡ଼ି ରଙ୍ଗୀନ ପ୍ରଜାପତି ହୋଇ ଉଡ଼ିବୁଲିବା କଥା ! ତୁ ମନେ ମନେ ଯେପରି ଯେଉଁ ରଙ୍ଗର ପ୍ରଜାପତି ହେବା ପାଇଁ ଇଚ୍ଛା କରିଥିବୁ, ଠିକ୍ ସେଇ ରଙ୍ଗର ପ୍ରଜାପତି ହୋଇ ତୋର ଖୋଳପା ଭିତରୁ ବାହାରିଯିବୁ। ଇଏ ସବୁ ସଁବାଳୁଆଙ୍କ

ଭବିତବ୍ୟ। ଡେଷ୍ଟିନୀ। ତୁ କିନ୍ତୁ ଏତେ ମୋଟା ହୋଇ ଏଠି ତଥାପି ସେଇ ଦେହରେ ପଡ଼ିରହିଛୁ କିପରି ?''

ସଁବାଲୁଆ ଉତ୍ତର ଦେଲା... ''ମୁଁ ପ୍ରଜାପତି ହେବା ପାଇଁ କେବେ ଇଚ୍ଛା କରି ନଥିଲି। ସେଥିପାଇଁ ସେଇ ଦେହରେ ତଥାପି ବଞ୍ଚିରହିଛି। କିନ୍ତୁ କ୍ଷତି ହେଲା କ'ଣ ?''

ମୁଁ ବିସ୍ମୟରେ ପଚାରିଲି ''ରଙ୍ଗୀନ ପ୍ରଜାପତି ହୋଇ, ଫୁଲରୁ ଫୁଲ ଉଡ଼ିବୁଲିବା ପାଇଁ ତୋର କଣ ଇଚ୍ଛା ନାହିଁ ? ଘାସ ଉପରେ ବସି, ଶିଶିରବିନ୍ଦୁ ପିଇବା ପାଇଁ ତୋର କଣ ଇଚ୍ଛା ହେଉନାହିଁ ? ଆଶ୍ଚର୍ଯ୍ୟ।''

ସଁବାଲୁଆ କହିଲା ''ତୁମେ ଜାଣିନା, ପ୍ରଜାପତି ହୋଇ ଉଡ଼ି ବୁଲିବାରେ କି କି ବିପଦସବୁ ଅଛି ? ସ୍ୱପ୍ନଭୋଳା ମଣିଷ ତୁମେ। ବାସ୍ତବତା କ'ଣ ବୁଝିପାରିବ କୁଆଡୁ ? ମୁଁ ଫୁଲ ଉପରେ ପ୍ରଜାପତି ହୋଇ ବସିଥିବି, ସକାଳ ଖରାରେ ମୋର ରଙ୍ଗୀନ ଡେଣା ଝାଡୁଥିବି। ସିଆଡୁ ତୁମର କେହି ଦୁଇ ଗୋଡ଼ିଆ ପିଲାଟାଏ ଦଉଡ଼ି ଆସି, ମୋତେ ହଠାତ୍ ଧରିପକାଇବ। ତା'ପରେ ତାର ଉତ୍କଟ ଶ୍ରଦ୍ଧାରେ, ମୋର ଡେଣା ଦୁଇଟାକୁ ଫାଡ଼ି ମୋତେ ତଳେ ଫିଙ୍ଗିଦେବ। ମୁଁ ସାବ୍‌ଜା ଘାସ ଉପରେ ଉଡ଼ି ଉଡ଼ି ବସୁଥିବି, ପୁଣି ଉଡୁଥିବି। କାଉଟିଏ କି ବଣିଟାଏ ମୋତେ ହଠାତ୍ ଟକ୍‌କରି ଥଣ୍ଟରେ ଉଠାଇନେଇ, ଚଲୁ କରିଦେବ।''

ପ୍ରକୃତରେ ସଁବାଲୁଆର ଏ ଆଶଙ୍କାସବୁ ମିଛ ନୁହେଁ। ପିଲାଦିନେ ମୁଁ ନିଜେ ତ ଏମିତି ଅନେକ କଙ୍କି ପ୍ରଜାପତିଙ୍କୁ ଧରି ସେମାନଙ୍କୁ ହତ୍ୟା କରିଛି। ସେଥିପାଇଁ କେବେକେବେ ବୈଷ୍ଣବପ୍ରାଣ ଗୁରୁଜନମାନଙ୍କ ହାତରେ ଧରାପଡ଼ି ଗାଳି ଶୁଣିଛି, ମାଡ଼ ମଧ୍ୟ ଖାଇଛି।

ସଁବାଲୁଆ କହିଲା, ''ମୁଁ ମୁକ୍ତି ଚାହେଁନା। ମୋର ଏଇ ଲୋମଶ ସ୍ଥିତାବସ୍ଥା ତାଠାରୁ ଅନେକ ଭଲ। ଏଠି ତମର ଛନଛନିଆ ଶାଗପଟାଳି, ବାଇଗଣ କିଆରୀରେ କଷି ବାଇଗଣ ଫଳିଛି। ସେସବୁ ବେଶ୍ ଖାଉଛି। ବେଶ୍ ଅଛି। ପ୍ରଜାପତି ହେବାପାଇଁ ଯିବି କୋଉ ଦୁଃଖରେ ?''

ଇଏ ମଧ୍ୟ ସତ କଥା। ଆମେ ମଣିଷମାନେ କଣ ଏଇ ସଁବାଲୁଆ ପରି ଆମର ଲୋମଶ ସ୍ଥିତାବସ୍ଥାକୁ ମୁଣ୍ଡେଇ, ଘୁଷୁରି ଘୁଷୁରି, ଆରାମରେ ବିପଦକୁ ଏଡ଼ି; ବଞ୍ଚିବା ପାଇଁ ଭଲପାଉ ନାହୁଁ ? ଆମେ କଣ ମୁକ୍ତି, ସ୍ୱାଧୀନତାକୁ ଭୟ କରୁନାହୁଁ ? ମୋର ମନେ ପଡ଼ିଗଲା, ଦ୍ୱିତୀୟ ମହାଯୁଦ୍ଧ ପରେ ପ୍ରକାଶିତ ଏରିକ୍ ଫ୍ରୋମ୍‌ଙ୍କ ''ଫିଅର୍ ଅଫ୍ ଫ୍ରିଡମ୍'' ବହି କଥା। ସେତେବେଳେ ଏ ବହିଟି ବେଶ୍ ଗୋଟାଏ ଚାଞ୍ଚଲ୍ୟ ସୃଷ୍ଟି କରିଥିଲା। ବହିଟି ପ୍ରଥମ ଥର ପଢ଼ି, ସବୁକଥା ସେଥିରୁ ବୁଝିପାରି ନଥିଲି। ଦ୍ୱିତୀୟ ଥର ପଢ଼ିବା ପରେ

ବୁଝିଥିଲି, ଏରିକ୍ ଫ୍ରୋମ୍‌ଙ୍କ ବକ୍ତବ୍ୟ- ମନୁଷ୍ୟ ପ୍ରକୃତରେ ମୁକ୍ତି, ସ୍ୱାଧୀନତାକୁ ଭୟ କରେ ! ସେ ଭଲପାଏ ସ୍ଥିତାବସ୍ଥା ! କାରଣ ସ୍ଥିତାବସ୍ଥା ମାନି ଚଳିଲେ ବିପଦ ନାହିଁ। ପୋଷା ଚଢ଼େଇ ଲୁହା ପଞ୍ଜୁରୀରେ ସୁଲଭ ବରଫଳ, ବୁଟଛତୁ ଛାଡ଼ି କଣ ଆକାଶରେ ଡେଣା ମେଲିବା ପାଇଁ କେବେ ଇଚ୍ଛା କରେ ? ମୁକ୍ତ ଆକାଶକୁ ସେ କଣ ପ୍ରାଣରେ ଭୟ କରେ ନାହିଁ ? ସେଠି ଅଛି, ଛଞ୍ଚାଣ ! ସେଠି ଉଡୁଛି ଇଗଲ୍ ! କେତେବେଳେ କିଏ କାଳଛଞ୍ଚାଣ ପରି ମାଡ଼ି ଆସି ଝାମ୍ପିନେବ, ତାର କୋଉ ସ୍ଥିରତା ଅଛି ? ତା' ଅପେକ୍ଷା ଏଇ ଲୁହାପଞ୍ଜୁରୀର ବନ୍ଧନ, ଏଇ ସ୍ଥିତାବସ୍ଥା, ଏଇ ବରଫଳ ଆଉ ବୁଟଛତୁ ଅନେକ ଭଲ ! ...କଥାଟା ମୋର ମନକୁ ପାଇଥିଲା। ଏଥିପାଇଁ ମୁଁ ଓଡ଼ିଆରେ ଗୋଟାଏ ବାକ୍ୟାଂଶ ମଧ୍ୟ ତିଆରି କରିଥିଲି- ''ସ୍ୱାଧୀନତାର ସନ୍ତ୍ରାସ !''

ସଁବାଳୁଆ ଏବେ ସେଇ କଥାଟା କହୁଛି ! ତା' କଥାର ତ ପ୍ରକୃତରେ କୌଣସି ଜବାବ ନାହିଁ ! ମୁଁ କହିଲି, ''ହଉ ବାବୁ, ତୁ ଯାହା ଇଚ୍ଛା କର। ତୁ କିନ୍ତୁ ଏଠୁ ମୋ ଆଗରୁ ପଳା ! ତୋ ପାଇଁ ମୋ ସକାଳଟା ଆଜି ନଷ୍ଟ ହୋଇଗଲାଣି। ମୁଁ କିନ୍ତୁ ତୋତେ କହିରଖୁଛି ମେଟାମର୍ଫୋସିସ୍‌କୁ ତୁ କଦାପି ଏଡ଼ି ପାରିବୁ ନାହିଁ। ତୁ ନିଶ୍ଚୟ ଦିନେ ପ୍ରଜାପତି ହେବୁ। ମୁଁ ବି, ତୋ'ପରି ମୋର ଏହି ଦେହ, ଏଇ ସ୍ଥିତାବସ୍ଥାକୁ ଯେତେ ଆବୋରି ବସିଲେ ସୁଦ୍ଧା, ଦିନେ ଏଇ ଦେହର ଖୋଳପା ଫିଙ୍ଗି ପ୍ରଜାପତି ପରି ଉଡ଼ିଯିବି। ଆମେ ତାକୁ କହୁ ପୁନର୍ଜନ୍ମ।''

ସଁବାଳୁଆ ଝରକା ଉପରୁ ଘୁଷୁରୁ ଘୁଷୁରି ଓହ୍ଲାଇ ପଳାଇଲା। ସେ କ'ଣ ବୁଝିଲା କେଜାଣି ?

ତା' ପରଦିନ ସକାଳେ, ବାରନ୍ଦାରେ ବସି, ଅଳସ ଭାବରେ ଖଣ୍ଡେ ସିଗ୍ରେଟ ଟାଣୁଛି ! ବାରନ୍ଧା ତଳେ, ଗୋଟାଏ ମଉସୁମୀ ଫୁଲ ପଟାଳିରେ ବାଇଗଣି, ଲାଲ୍, ଧଳା, ହଳଦିଆ ରଙ୍ଗର ଛୋଟ ଛୋଟ ମଇସୁମୀ ଫୁଲ ସବୁ ଧୀର ପବନରେ ମୁଣ୍ଡ ହଲାଉଛନ୍ତି ! ଚାହିଁଦେଖେ, ସେଇ ବୁଢ଼ା ସଁବାଳୁଆଟା ଫୁଲ ପଟାଳି ଭିତରକୁ ଘୁଷୁରି ଘୁଷୁରି ଆସୁଛି, ମଉସୁମୀ ଫୁଲସବୁ ଗ୍ରାସ କରିବା ପାଇଁ। ହଠାତ୍ କିନ୍ତୁ ତା'ର କ'ଣ ହୋଇଗଲା କେଜାଣି ? ସେ କୁଣ୍ଡଳୀ ମୋଡ଼ି ରହିଗଲା। ଆଉ ଆଗକୁ ଘୁଷୁରି ପାରିଲା ନାହିଁ। ତାପରେ ତାର ଦେହଟା ହଠାତ୍ ଫାଟିଗଲା। ଆଉ ତା' ଭିତରୁ ବାହାରକୁ ଉଡ଼ିଆସିଲା ହଳଦିଆ ରଙ୍ଗର ଗୋଟାଏ ଶିଶୁ ପ୍ରଜାପତି !

ବାହାରକୁ ଆସି ଶିଶୁ ପ୍ରଜାପତିଟି ପାଗଳ ପରି, କିଛି ସମୟ, ମଉସୁମୀ ଫୁଲପଟାଳୀ ଉପରେ ଏଠୁସେଠୁ, ସେଠୁଏଠୁ, ଖଣ୍ଡିଉଡ଼ା ଦେଲା ! ବାହାରେ ଏତେ ଆଲୁଅ ! ଏତେ ପବନ ! ଏତେ ମୁକ୍ତି ! ସେ କିନ୍ତୁ ଗୋଟାଏ ଅନ୍ଧକୂପ ଭିତରେ ପଡ଼ିରହି ଏତେ କାଳ ତ ଆଦୌ ଜାଣିନଥିଲା କି ବୁଝିନଥିଲା, ମୁକ୍ତିର ଏଇ ଆନନ୍ଦ ! ଏହି ଉତ୍ତେଜନା !

ବିଚାରାର ଏ ଆନନ୍ଦ କିନ୍ତୁ ବେଶୀକ୍ଷଣ ସ୍ଥାୟୀ ହୋଇପାରିଲା ନାହିଁ। ଶିଶୁ ପ୍ରଜାପତିଟି ସାବ୍‌ଜା ଘାସ ଉପରେ ଖଣ୍ଡିଉଡ଼ା ଦେଇ ବୁଲୁଥିଲା। କାଉଟାଏ କୁଆଡୁ ଆସି, ତାକୁ ଥଣ୍ଟରେ ଧରି, ଉଡ଼ି ପଳାଇଗଲା।

ମନେ ମନେ ମୁଁ ଆର୍ତ୍ତନାଦ କଲି। ଅଧାଜଳା ସିଗ୍ରେଟଟା ଫିଙ୍ଗିଦେଇ, ମୁଁ ଭିତରକୁ ଉଠି ଆସିଲି। ସଁବାଳୁଆ ତାର ସ୍ଥିତାବସ୍ଥାକୁ ମାନିନେଇ ବେଶ୍ ଆରାମରେ ବଞ୍ଚୁଥିଲା, ମୁଁ କାହିଁକି ତା ମୁଣ୍ଡରେ ରଙ୍ଗୀନ ପ୍ରଜାପତି ହେବାର ସ୍ୱପ୍ନ ପୂରାଇଲି ବୋଲି ମନେ ମନେ ଅନୁତାପ କରୁଥିଲି।

ଆମେ ସମସ୍ତେ ତ ଏଇ ବୁଢ଼ା ସଁବାଳୁଆ ପରି ! ଆମେ ସବୁ ସ୍ଥିତାବସ୍ଥାକୁ ଆବୋରି, ଛନଛନିଆ ଶାଗପଟାଳି ଆଉ କଷି ବାଇଗଣରେ ସନ୍ତୁଷ୍ଟ ! ଆମେ କ'ଣ ଚାହିଁବୁ କେବେ, ପ୍ରଜାପତିର ମୁକ୍ତି ? ମୋ ବୁଦ୍ଧିରେ ପଡ଼ି ମୋର ଜଣେ ବିରାଦରର ଅପମୃତ୍ୟୁ ହେଲା ସିନା !

୧୬/୦୪/୮୭

# ଅଞ୍ଜନଗଡ଼ର ଉପକଥା

ଅଞ୍ଜନଗଡ଼ର ବୃଦ୍ଧ ମହାରାଜାଙ୍କ ତିରୋଧାନ ପରେ ଯୁବରାଜ ରିପୁଦମନ ପିତାଙ୍କ ସିଂହାସନରେ ଅଧିଷ୍ଠିତ ହେଲେ। ପ୍ରଜାକୁଳଙ୍କ ଜୟନାଦରେ ଅଞ୍ଜନଗଡ଼ର ଗଗନ ପବନ ମୁଖରିତ! କିନ୍ତୁ ମହାରାଜା ରିପୁଦମନ ଏସବୁ ପ୍ରଶସ୍ତି ଜୟନାଦରେ ଆଦୌ ତୁଷ୍ଟ ନ ଥିଲେ। ତାଙ୍କର ଏକମାତ୍ର ଚିନ୍ତା, ପିତା, ପିତାମହ, ପ୍ରପିତାମହଙ୍କ କାଳର ଅଞ୍ଜନଗଡ଼କୁ କିପରି ସେ କେତେ ଶୀଘ୍ର ଧନ, ମାନ, ମର୍ଯ୍ୟାଦା, ଶକ୍ତି, ସମୃଦ୍ଧିରେ ଅତୁଳନୀୟ କରି, ଦୁନିଆ ଆଗରେ ଏକ ସର୍ବାଧୁନିକ ପ୍ରଗତିଶୀଳ ରାଜ୍ୟ ଭାବରେ ଠିଆ କରାଇବେ। ଏହି ସମସ୍ୟା ଘେନି, ତରୁଣ ମହାରାଜା, ତାଙ୍କ ସମବୟସୀ ତରୁଣ ବୟସ୍ୟମାନଙ୍କ ସହିତ ଆଲୋଚନା ବିଚାର ବିମର୍ଶରେ ଏବେ ନିତ୍ୟ ବ୍ୟସ୍ତ ରହିଲେ। ବୃଦ୍ଧ, ବୟସ୍କମାନଙ୍କ ଉପରେ ତାଙ୍କର ଆଦୌ ପତିଆରା ନ ଥିଲା। ତାଙ୍କ ବିଚାରରେ, ଏମାନଙ୍କ ମଥାରେ ସେହି ଧୂସର ବସ୍ତୁ, ମସ୍ତିଷ୍କଟି କେବେ ନଥିଲା, ଆଜି ମଧ୍ୟ ନାହିଁ। ସେମାନେ ସବୁ, କେବେଠାରୁ ବଇତମ ହୋଇ ତମାଦୀ ପାଇଲେଣି। ତରୁଣ ମହାରାଜାଙ୍କ ଚାରିପଟେ ଏବେ ତେଣୁ ଅର୍ଦ୍ଧଶିକ୍ଷିତ ତରୁଣ ଧନୀର ଦୁଲାଳମାନେ ବର୍ତ୍ତମାନ ମହାରାଜା ରିପୁଦମନଙ୍କ ସଖା, ସଚିବ ଓ ପରାମର୍ଶଦାତା। ଅଞ୍ଜନଗଡ଼ବାସୀ ଏସବୁ କାଣ୍ଡ ଦେଖି ସ୍ତବ୍ଧ। ସେମାନେ ଭାବିଲେ, ପ୍ରକୃତରେ କିଛି ଗୋଟାଏ ହବ ପରା! ଏଇ ବୃଦ୍ଧମାନେ ପ୍ରକୃତରେ ଅଞ୍ଜନଗଡ଼ର ଅଭ୍ୟୁଦୟରେ ପ୍ରତ୍ୟବାୟ ଥିଲେ।

କିନ୍ତୁ କିପରି, କେଉଁ ମାର୍ଗରେ ଅଞ୍ଜନଗଡ଼ର ଅଭ୍ୟୁଦୟ ହେବ? ଜଣେ ତରୁଣ ଭୂଇଁଫୋଡ଼୍ ବୈଜ୍ଞାନିକ ପରାମର୍ଶ ଦେଲେ.... "ମହାରାଜ! ଆପଣଙ୍କ ମାତୁଳଙ୍କ ଦେଶ, ତୁଷାର ସମୁଦ୍ର ତଟବର୍ତ୍ତୀ ଉତ୍ତରାଖଣ୍ଡରେ, ଏକ ଅଭିନବ ଯନ୍ତ୍ର ଏବେ ଉଦ୍ଭାବିତ ହୋଇଛି। ସେହି ଯନ୍ତ୍ରଟିକୁ ଆପଣଙ୍କ ବୃଦ୍ଧ ଅମାତ୍ୟ ଓ ପାତ୍ରମାନଙ୍କ ମଥାରେ ଖଞ୍ଜିଦେଲେ ପ୍ରଗତିଶୀଳ ଚିନ୍ତା ଓ ଯୋଜନା ସବୁ ସେଥିରୁ ତତ୍‌କ୍ଷଣାତ ବାହାରି ଆସିବ। ସେ ଦେଶରୁ ଜଣେ ବିଶେଷଜ୍ଞଙ୍କୁ ଅଣାନ୍ତୁ। ସେହି କେବଳ ପରାମର୍ଶ ଦେଇ ପାରିବେ।" ବୟସ୍ୟମାନେ ଏ

ପ୍ରସ୍ତାବକୁ ସୋତ୍ସାହ ସମର୍ଥନ ଜଣାଇଲେ। ....ଯଥା ସମୟରେ ତୁଷାର ସମୁଦ୍ର ତଟବର୍ତ୍ତୀ ଉତ୍ତରାଖଣ୍ଡରୁ ଆସିଲେ ଜଣେ ବିଶେଷଜ୍ଞ। ମହାରାଜା ରିପୁଦମନଙ୍କ ସମସ୍ୟା ଶୁଣି ସେ ଗମ୍ଭୀର ଭାବରେ କହିଲେ, "ମହାରାଜ ଆପଣଙ୍କ ବୃଦ୍ଧ ଅମାତ୍ୟ ପାରିଷଦ, ସଚିବମାନଙ୍କ ମଥାରେ ମସ୍ତିଷ୍କ ନାହିଁ ବୋଲି, ଆପଣ ଯେଉଁ ସିଦ୍ଧାନ୍ତ ପୋଷଣ କରୁଛନ୍ତି, ତାହା ଆଦୌ ସତ୍ୟ ନୁହେଁ। ପରନ୍ତୁ ତାହା ଅତି ପ୍ରଖର ଓ ଉନ୍ନତ। କିନ୍ତୁ ପ୍ରଗତିଶୀଳ, ରାଷ୍ଟ୍ର ପକ୍ଷରେ ସବୁ ବିପତ୍ତି ମୂଳରେ ରହିଛି, ଏଇ ପ୍ରଖର ମସ୍ତିଷ୍କ। ଆପଣଙ୍କ ରାଜ୍ୟରେ ସମସ୍ତଙ୍କ ମଥାରୁ ସେଇ ବସ୍ତୁଟିକୁ ସମୂଳେ ଉଚ୍ଛେଦ କରିଦେଇ ପାରିଲେ, ଆପଣଙ୍କ ରାଜ୍ୟର ଶକ୍ତି, ଶ୍ରୀ, ସମୃଦ୍ଧି ବୃଦ୍ଧି ପାଇ ପାରିବ। ଆପଣ ମଧ୍ୟ ନିଷ୍କଣ୍ଟକ ହେବେ।"

ବିଶେଷଜ୍ଞ ଗଭୀର ଚିନ୍ତାନ୍ୱିତ କଣ୍ଠରେ ଉତ୍ତର ଦେଲେ, "ଜନ ସାଧାରଣଙ୍କ ମଥାରେ ଅସ୍ତ୍ରୋପଚାର କରି ମସ୍ତିଷ୍କକୁ ଉଚ୍ଛେଦ କରିବା ସମ୍ଭବ ହେଲେ ବି, ସହଜ ନୁହେଁ। ସେମାନଙ୍କ ପାଇଁ ଦୁଇଟି ବସ୍ତୁ ବ୍ୟବସ୍ଥା କରାଯାଇପାରିଲେ ସେମାନଙ୍କ ମଥାରୁ ସେଇ ବିପଜ୍ଜନକ ବସ୍ତୁଟିକୁ ବିନା ଅସ୍ତ୍ରୋପଚାରରେ ଲୋପ କରାଯାଇ ପାରିବ। ଗୋଟିଏ ଥିଲା, ସୁଲଭ ନିଶା ଦ୍ରବ୍ୟ, ଯେପରି ରାଜ୍ୟର କୋଣେ କୋଣେ ତାହା ମିଳିପାରିବ। ଏପରିକି କିଶୋର ବୟସ୍କ ବାଳକ ବାଳିକାମାନେ ବିଦ୍ୟାଳୟମାନଙ୍କରେ ସୁଦ୍ଧା ତାହା ସହଜରେ ସେବନ କରିପାରିବେ। ଏହାଛଡ଼ା ଜନତାଙ୍କ ପାଇଁ ପ୍ରତ୍ୟହ ସକାଳୁ ରାତି ଅଧ ପର୍ଯ୍ୟନ୍ତ ବିଭିନ୍ନ ମନୋରଂଜନ କାର୍ଯ୍ୟକ୍ରମମାନ ବିଭିନ୍ନ ଯାନ୍ତ୍ରିକ ପଦ୍ଧତିରେ ବ୍ୟବସ୍ଥା କରିବାପାଇଁ ପଡ଼ିବ। ଯେପରି ବାସ୍ତବ ଜୀବନର ଉତ୍କଟ ସମସ୍ୟାବଳିଠାରୁ ସେମାନେ ପଳାୟନ କରି, ସବୁ ସଂଗ୍ରାମୀ, ସଂଘର୍ଷ ଚେତନା ହରାଇ ବସିବେ। ଆପଣ ତା'ହେଲେ ନିଷ୍କଣ୍ଟକ ହୋଇ ପାରିବେ। ଏଥିପାଇଁ ଦେଖୁଛି ଆପଣଙ୍କ ପାତ୍ର ପାରିଷଦମାନଙ୍କ ମଧ୍ୟରେ ଚିତ୍ରରଥ ଗନ୍ଧର୍ବ ଓ ମେନକା, ଉର୍ବଶୀମାନଙ୍କର ଅଭାବ ନାହିଁ।" ଆଉ ଅନ୍ୟମାନଙ୍କ ପାଇଁ? ମହାରାଜା ରିପୁଦମନ ଉତ୍କଣ୍ଠିତ କଣ୍ଠରେ ପଚାରିଲେ।

ବିଶେଷଜ୍ଞ ଉତ୍ତର ଦେଲେ... "ରାଷ୍ଟ୍ରଶକ୍ତି ପକ୍ଷରେ ପ୍ରଧାନ ବିପଦ ହେଉଛି ମୁକ୍ତ ଚିନ୍ତା, ବିତର୍କ ଓ ବିଚାର। ଅତୀତରେ ସେଇ ସବୁ, ଅଞ୍ଜନଗଡ଼ର ଅନଗ୍ରସରତାର କାରଣ ହୋଇ ରହି ଆସିଅଛନ୍ତି। କାରଣ ଅତୀତରେ, ସେମାନେ କୌଣସି ନିର୍ଦ୍ଦେଶ ବିନା ବିଚାରରେ ମାନି ନ ନେଇ ସବୁବେଳେ ତର୍କସମ୍ମତ ସିଦ୍ଧାନ୍ତ ପାଇଁ ହଜାରେ ବିତର୍କ ଆରମ୍ଭ କରିଛନ୍ତି। ଏସବୁ ସମୟର ଅପଚୟ ସିନା। ସେଥିପାଇଁ ଆପଣଙ୍କ ଅମାତ୍ୟ, ପାତ୍ର, ପାରିଷଦ ଓ ସଚିବମାନଙ୍କ ମଥାରେ ଅସ୍ତ୍ରୋପଚାର କରି, ମସ୍ତିଷ୍କ ସ୍ଥାନରେ ଗୋଟିଏ ଯନ୍ତ୍ର ଖଞ୍ଜି ଦେବାକୁ ପଡ଼ିବ। ଆମ ଦେଶରେ ଏହା ବେଶ କାର୍ଯ୍ୟ କରୁଛି..." ଏହି ଅଭିନବ ପ୍ରସ୍ତାବରେ ମହାରାଜା ରିପୁଦମନ ଆଗ୍ରହାନ୍ୱିତ ହୋଇ ଏ ସମ୍ପର୍କରେ ବିଶଦ ତଥ୍ୟ ଜାଣିବାକୁ ଚାହିଁବାରୁ

ବିଶେଷଜ୍ଞ କହିଲେ... ''ଆମ ଦେଶରୁ ଏଥିପାଇଁ ଅଭିଜ୍ଞ ଶଲ୍ୟ ଚିକିତ୍ସକ ଓ ବୈଜ୍ଞାନିକମାନେ ଆସିବେ। ସେମାନେ ଅସ୍ତ୍ରୋପଚାର କରି, ମସ୍ତିଷ୍କ କାଢ଼ି ସେହି ଯନ୍ତ୍ର ସବୁ ଖଞ୍ଜି ଦେବାପରେ, ଆପଣଙ୍କ ମଥାରେ ଖଞ୍ଜିଦେବେ ଆଉ ଏକ ଯନ୍ତ୍ର। ରାଷ୍ଟ୍ରର ଯେ କୌଣସି ସମସ୍ୟାର ସାମାଧାନ ସମ୍ପର୍କରେ ଆପଣ ସେହି ଯନ୍ତ୍ରର ଗୋଟିଏ ବୋତାମ ଟିପିଦେବା ମାତ୍ରେ, ଅମାତ୍ୟ ପାତ୍ର, ପାରିଷଦ ଓ ସଚିବମାନଙ୍କୁ ମଥାରେ ଖଞ୍ଜା ଯାଇଥିବା ଯନ୍ତ୍ରସବୁ, ଆପଣଙ୍କ ଯନ୍ତ୍ରର ନିର୍ଦ୍ଦେଶ ଅନୁସାରେ କାର୍ଯ୍ୟ କରିବ ଓ ସେମାନେ ବିଚାର ବିତର୍କରେ ନମାତି, ଆପଣଙ୍କ ଇଚ୍ଛାନୁସାରୀ ହେବେ।''

ତରୁଣ ବୟସ୍ୟମାନେ ଚିତ୍କାର କରି ଉଠିଲେ... ''ସାଧୁ ! ସାଧୁ! ଏ ଯନ୍ତ୍ରସବୁ ହେବ ଏ ଯୁଗର ହନୁମାନ ପ୍ରଶ୍ନ। ଏ ହନୁମାନ ପ୍ରଶ୍ନର ପ୍ରଶ୍ନଚକ୍ରରେ ଆଙ୍ଗୁଠି ଛୁଇଁଦେବା ମାତ୍ରେ ଫଟ୍ କରି ତତ୍‌କ୍ଷଣାତ୍ ଉତ୍ତର ବାହାରି ପଡ଼ିବା ପରି, ସେହି ଯନ୍ତ୍ରରୁ ସବୁ ଉତ୍ତର ସଙ୍ଗେ ସଙ୍ଗେ ବାହାରି ପଡ଼ିବ। ଆଉ ବିଚାର ବିମର୍ଶର କାରଣ ରହିବ ନାହିଁ।''

ଯଥା ସମୟରେ ମାତୁଳଙ୍କ ଦେଶରୁ ଆସିଲେ, ଅଭିଜ୍ଞ ଶଲ୍ୟ ଚକିତ୍ସକ ଓ ବୈଜ୍ଞାନିକମାନେ। ଅସ୍ତ୍ରୋପଚାର ପାଇଁ ଅମାତ୍ୟ, ପାତ୍ର, ପାରିଷଦ ଓ ସଚିବମାନଙ୍କ ମଧ୍ୟରେ ରୀତିମତ ପ୍ରତିଯୋଗିତା, ଠେଲାପେଲା, ଧସ୍ତାଧସ୍ତି ଆରମ୍ଭ ହୋଇଗଲା। ସମସ୍ତେ କିପରି ପ୍ରଥମେ ନିଜ ମଥାରୁ ମସ୍ତିଷ୍କଟି କାଢ଼ି, ସେଥିରେ ଯନ୍ତ୍ର ଖଞ୍ଜିବେ, ସେଥିପାଇଁ ବ୍ୟାକୁଳ। ପ୍ରଥମେ ଜଣେ ବୃଦ୍ଧ ଅମାତ୍ୟଙ୍କ ମଥାରେ ଅସ୍ତ୍ରୋପଚାର କରାଯାଇ ସେଥିରୁ ମସ୍ତିଷ୍କ କାଢ଼ି ସେହି ଯନ୍ତ୍ରଟି ଖଞ୍ଜି ଦିଆଗଲା। ସକାଳେ ଏକ ପ୍ରସିଦ୍ଧ ନର୍ସିଂ ହୋମରେ ବୃଦ୍ଧ ଅମାତ୍ୟଙ୍କ ମସ୍ତିଷ୍କରେ ଅସ୍ତ୍ରୋପଚାର ହେଲା। କିନ୍ତୁ ସେଦିନ ସନ୍ଧ୍ୟାବେଳେ ଦେଖାଗଲା, ବୃଦ୍ଧ ଅମାତ୍ୟ ମୁଣ୍ଡରେ ଏକ ରଙ୍ଗୀନ ଠେକା ବାନ୍ଧି ଟାଙ୍ଗାରେ ଚଢ଼ି ବୁଲୁଛନ୍ତି। ସାମ୍ବାଦିକମାନେ ତାଙ୍କୁ ରାସ୍ତାରେ ଦେଖି ବେଢ଼ିଗଲେ। ପଚାରିଲେ "ଆଜି ସକାଳେ ଆପଣଙ୍କ ମସ୍ତିଷ୍କରେ ଅସ୍ତ୍ରୋପଚାର ହୋଇଥିଲା ପରା! ଆପଣ ସନ୍ଧ୍ୟାବେଳେ କିପରି ଟାଙ୍ଗାଚଢ଼ି ବୁଲୁଛନ୍ତି ?" ବୃଦ୍ଧ ଅମାତ୍ୟ ଉତ୍ତର ଦେଲେ, "ମସ୍ତିଷ୍କ ରହିଛି ନର୍ସିଂହୋମ୍‌ରେ। ମୋର ମଥା ବର୍ତ୍ତମାନ ଭାରୀ ହାଲୁକା ଲାଗୁଛି। ଜୟ ମହାରାଜା ରିପୁଦମନଙ୍କ ଜୟ।"

କିନ୍ତୁ ଅସ୍ତ୍ରୋପଚାର ପାଇଁ ଠେଲାପେଲା ମଧ୍ୟରେ ଭୁଲକ୍ରମେ ଜଣେ ଅମାତ୍ୟଙ୍କ ମଥାରେ ଅସ୍ତ୍ରୋପଚାର ହୋଇପାରି ନ ଥିଲା। ବସ୍ତୁତଃ ସେ ଅସ୍ତ୍ରୋପଚାରରୁ ନିଜ ମସ୍ତିଷ୍କଟିକୁ ବଞ୍ଚାଇବା ପାଇଁ ରାଜଧାନୀ ଛାଡ଼ି ଗୋଟିଏ ଅରଣ୍ୟକୁ ପଳାୟନ କରିଥିଲେ। ସେହି ଅରଣ୍ୟରୁ ତାଙ୍କ ମସ୍ତିଷ୍କ ଓ ବିଚାରର ତରଙ୍ଗ କ୍ରମେ ବିଦ୍ୟୁତର ତରଙ୍ଗ ପରି ଅଞ୍ଜନଗଡ଼ବାସୀଙ୍କ ଚେତନା ଓ ବିଚାରକୁ ସଂକ୍ରମଣ କଲା... ଦିନେ ମହାରାଜା ରିପୁଦମନଙ୍କ ଗୁପ୍ତଚର ବିଭାଗର ମସ୍ତିଷ୍କବିହୀନ ଜଣେ ବଡ଼ କର୍ତ୍ତା ଜଣାଇଲେ, "ମହାରାଜା! ଜଣେ ଅମାତ୍ୟ ନିଜ ମସ୍ତିଷ୍କକୁ

ବଞ୍ଚାଇବା ପାଇଁ, ଅରଣ୍ୟକୁ ପଳାୟନ କରିଥିଲେ । ତାଙ୍କ ପାଖକୁ ବର୍ତ୍ତମାନେ ଅଞ୍ଜନଗଡ଼ବାସୀ ନରନାରୀ ଧାଡ଼ିଦେବା ଆରମ୍ଭ କରିଦେଲେଣି । ରାଷ୍ଟ୍ର ପ୍ରତି ଏଇ ଏକ ବଡ଼ ବିପଦ । ମହାରାଜା ରିପୁଦମନ ଏ ସଂକଟ ସମ୍ପର୍କରେ ବିଚାର ବିମର୍ଶ ପାଇଁ ମସ୍ତିଷ୍କବିହୀନ ତାଙ୍କ ଅମାତ୍ୟ ପାତ୍ର, ପାରିଷଦ ଓ ସଚିବମାନଙ୍କ ଆପତ୍‌କାଳୀନ ଅଧିବେଶନ ଡକାଇଲେ । ସେମାନେ ସବୁ ଶୁଣି ପରାମର୍ଶ ଦେଲେ... "ସେଇଟା ଅଞ୍ଜନଗଡ଼ ଦ୍ରୋହୀ, ଦେଶଦ୍ରୋହୀ । ଜୟ ମହାରାଜା ରିପୁଦମନଙ୍କ ଜୟ ।"

ଏଣିକି ପ୍ରତ୍ୟହ ମହାରାଜା ରିପୁଦମନଙ୍କ ନିବୁଜ ଦରବାର ପ୍ରକୋଷ୍ଠ ଅମାତ୍ୟପାତ୍ର, ପାରିଷଦ ଓ ସଚିବମାନଙ୍କ ସମବେତ କଣ୍ଠରେ... 'ଜୟ ମହାରାଜା ରିପୁଦମନଙ୍କ ଜୟ' – ଧ୍ୱନୀରେ ନିନାଦିତ ହେଲା । ମହାରାଜା ରିପୁଦମନ ଏଇ ଜୟନାଦରେ ବିଭୋର ହୋଇ ସବୁ ସମସ୍ୟା ସଂକଟ ଭୁଲିଗଲେ ।

କିନ୍ତୁ ନିରୁଦ୍ଧ ଦରବାର ପ୍ରକୋଷ୍ଠ ଓ ପ୍ରାସାଦ ବାହାରେ ଅରଣ୍ୟ ଆଡ଼େ, ଅଞ୍ଜନଗଡ଼ବାସୀ ନରନାରୀଙ୍କ ପଟୁଆର କ୍ରମେ ସ୍ଫୀତରୁ ସ୍ଫୀତତର ହେବା ପାଇଁ ଲାଗିଲା । ପାଣ୍ଡୁଲିପିଟି ଏଇଠାରେ ହଠାତ୍ ଶେଷ ହୋଇଯାଇଥିବାରୁ ଏହାପରେ କ'ଣ ହେଲା, ଜାଣିବାପାଇଁ ମୋର ଆଗ୍ରହ ବଢ଼ିଲା । ମୁଁ ମନେ ମନେ ଭାବୁଛି ରାଜ୍ୟରେ ଦେଶଦ୍ରୋହୀ ମାନଙ୍କର ସଂଖ୍ୟା ଯଦି କ୍ରମେ ଏଇପରି ବଢ଼ି ବଢ଼ି ଚାଲେ ତାହେଲେ ଅଞ୍ଜନଗଡ଼ରେ ଦେଶଭକ୍ତ ଆଉ ରହିଲେ କେଉଁମାନେ ?

*୧୪/୦୬/୮୭*

# ହରିଣୀର ଆଖି

ହରିଣୀମାନଙ୍କୁ ମୁଁ ତ ଅନେକ ଦେଖିଥିଲି... ମୃଗୋଦ୍ୟାନ ଆଉ ଚିଡ଼ିଆଖାନା ମାନଙ୍କର ସୁରକ୍ଷିତ ବେଷ୍ଟନୀ ଭିତରେ। କିନ୍ତୁ ସେଥର, କୁମାର ଶେଖରପ୍ରତାପଙ୍କ ଅତିଥି ହୋଇ ନ ଥିଲେ, ବଣ ହରିଣୀର ଆକ୍ଷି ସେଇ ବନ୍ୟ ପରିବେଶରେ ମୁଁ ପ୍ରକୃତରେ କେବେ ଦେଖି ପାରିନଥାନ୍ତି। ହରିଣୀର ଆକ୍ଷି ବା ମୃଗାକ୍ଷି ବା କୁରଙ୍ଗୀ ନୟନା, କେବଳ ରିହଯାଇଥାନ୍ତେ, ସଂସ୍କୃତ, ଆଉ ମଧ୍ୟଯୁଗୀୟ ଓଡ଼ିଆ କାବ୍ୟମାନଙ୍କରେ।

କୁମାର ଶେଖରପ୍ରତାପ ରାଜ-ବିରାଦର ହୋଇଥିଲେ ହେଁ, ସେତେବେଳକୁ ସବୁ ଉଜାଡ଼ି ପ୍ରାୟ ଫତୁଆ ଅବସ୍ଥାରେ ପହଞ୍ଚି ସାରିଥିଲେ। ''ଗଡ଼'' ନାମରେ ଲୋକମୁଖରେ ପରିଚିତ, ଏକ ଦେଶୀୟ ରାଜ୍ୟର ସେଇ ଛୋଟିଆ ସହରଟିରେ, ଏକ ଗୁଳ୍ମାକୀର୍ଣ୍ଣ ସୁବିସ୍ତୀର୍ଣ୍ଣ ପରିସର ମଧ୍ୟରେ ପୈତୃକ ଅମଳର ଏକ ଶୈବାଳାଚ୍ଛନ୍ନ ଜୀର୍ଣ୍ଣପ୍ରାୟ ଅଟ୍ଟାଳିକା ଆଉ ଏକ ଖମାର ଛଡ଼ା ତାଙ୍କର ସେତେବେଳକୁ ଆଉ ପ୍ରାୟ କିଛି ସ୍ଥାବର ସମ୍ପତ୍ତି ନ ଥିଲା। କୁମାର ଶେଖରପ୍ରତାପ, ହୋଟେଲଠାରୁ ଆରମ୍ଭ କରି, ସିନେମା ପର୍ଯ୍ୟନ୍ତ ନାନା ପ୍ରକାର ବ୍ୟବସାୟରେ ମାତି, ସବୁଥିରେ ପ୍ରଚୁର ଅର୍ଥଶ୍ରାଦ୍ଧ କରିକରି, ଆର୍ଥିକ ଦୃଷ୍ଟିରୁ ପ୍ରାୟ ନିଃଶେଷିତ ହୋଇ ପଡ଼ିଥିଲେ। ଏବେ ବର୍ଷର ଅଧିକାଂଶ ସମୟ ସେ ରହୁଥିଲେ ବମ୍ବେରେ ତାଙ୍କ ଶ୍ୱଶୁରଙ୍କ ଏକ ଫ୍ଲାଟ୍‌ରେ। କିନ୍ତୁ ପ୍ରତିବର୍ଷ ଶରତ ଋତୁରେ ସେ ଶିକାର ପାଇଁ ଆସି ପହଞ୍ଚିଯାନ୍ତି ତାଙ୍କ 'ଗଡ଼'ରେ। 'ଗଡ଼' ଆଉ ଶିକାରର ଆକର୍ଷଣ ସେ ଆଦୌ ଭୁଲିପାରି ନ ଥିଲେ। କଲେଜରେ ଆମେ ସହପାଠୀ ଥିବାବେଳେ, ସେ ଥିଲେ ମୋର ଜଣେ ଘନିଷ୍ଠ ବନ୍ଧୁ! ସେହି ସୂତ୍ରରେ ସେ ପ୍ରତିବର୍ଷ ନିଜ ''ଗଡ଼''କୁ ଆସିଲେ, ତାଙ୍କ ସହିତ କିଛିଦିନ ଫୁର୍ତ୍ତିରେ କଟାଇବା ପାଇଁ ସେ ମୋତେ ଆମନ୍ତ୍ରଣ କରିଥାନ୍ତି! ସେଥର ହାତରେ କୌଣସି କାମ ନ ଥିବାରୁ ମୁଁ ତାଙ୍କ ଆମନ୍ତ୍ରଣ ରକ୍ଷାକରି, ପ୍ରାୟ ଗୋଟିଏ ସପ୍ତାହକାଳ ତାଙ୍କର ଆତିଥ୍ୟ ଗ୍ରହଣ କରିଥିଲି।

ବର୍ଷାଋତୁ ତଥାପି ପୂରାପୂରି ବିଦାୟ ନେଇନାହିଁ। ନିର୍ମେଘ, ନୀଳ ଆକାଶରେ ଭେଳା ଭେଳା ଛିନ୍ନମେଘ ମାନଙ୍କରୁ ବେଳେବେଳେ ଅସରାଏ ବୃଷ୍ଟିହୋଇ, ଆକାଶ ପୁଣି ପରିଷ୍କାର

ହୋଇଯାଉଛି । ଆକାଶ ଯେପରି ଏକ ଅବୋଧ ଶିଶୁ । ଖିଆଲରେ କେତେବେଳେ ହସୁଛି କେତେବେଳେ କାନ୍ଦୁଛି । ସେଦିନ ସନ୍ଧ୍ୟାବେଳେ ବର୍ଷା ହଠାତ୍ ଯେପରି ଆରମ୍ଭ ହେଲା, ରାତିସାରା ବର୍ଷା ଝଡ଼ିପରି ଲାଗି ରହିବ ବୋଲି ମୁଁ ମନେ ମନେ ଧରି ନେଇଥିଲି । କୁମାରଙ୍କ 'ଉଆସ' ନିର୍ଜନ । ତାଙ୍କର କେତେଜଣ ପୁରୁଣା ଦିନର ଭୃତ୍ୟ ଅନୁଚର ସେଇ ସ୍ୱଳ୍ପାଲୋକିତ ବିବର୍ଣ୍ଣ ପରିବେଶ ମଧ୍ୟରେ ଛାୟାମୂର୍ତ୍ତି ପରି ନିଃଶବ୍ଦରେ ଚଳପ୍ରଚଳ ହେଉଥିଲେ । କୁମାର ଶେଖରପ୍ରତାପ ଆଉ ମୁଁ, ବାହାରପଟ ପ୍ରଶସ୍ତ ବାରନ୍ଦାର ଗୋଟିଏ କୋଣରେ ବସି, ଶେଷବର୍ଷଣର ଏକଟଣା ନୂପୁର ଶୁଣୁଥିଲୁ । ଗୁଳ୍ମାକୀର୍ଣ୍ଣ ଉଦ୍ୟାନ ଉପରେ ଫିକା, ମେଘୁଆ ଜହ୍ନ କେତେ ରହସ୍ୟମୟ ହୋଇପାରେ, ମନେ ମନେ ମୁଁ ତାହାକୁ ମାପିବା ପାଇଁ ଚେଷ୍ଟା କରୁଥିଲି । କୁମାର ଶେଖରପ୍ରତାପ ହଠାତ୍ ଜଳନ୍ତା ସିଗ୍ରେଟରେ ଗୋଟାଏ ଶେଷଟାଣ ଦେଇ, 'ଗୁଡ୍‌ନାଇଟ' କହି ଉଠି ଉପରକୁ ଚାଲିଗଲେ । ମୁଁ ବାରନ୍ଦାରେ ଏକୁଟିଆ ବସି ବସି ବର୍ଷାର ଏକଟଣା ସଂଗୀତ, ଝିଙ୍କାରୀମାନଙ୍କର ଝିଂଙ୍କାରବ ଆଉ ଭେକରଡ଼ି ଭିତରେ, କେତେବେଳେ ଛାଇନିଦରେ ଢୁଳେଇ ପଡ଼ିଥିଲି । ହଠାତ୍ ଶେଖରପ୍ରତାପଙ୍କ ଡାକରେ ମୋର ତନ୍ଦ୍ରା ଭାଙ୍ଗିଗଲା । ସେ ମୋ କାନ୍ଧ ଉପରେ ହାତରଖି କହୁଥିଲେ ''ସନ୍ଧ୍ୟା ମାତ୍ର ସାଢ଼େ ନ'ଟା ହୋଇଛି । ନାଇଟ୍ ଇଜ୍, କ୍ୱାଇଟ୍ ୟଙ୍ଗ୍ ! ଚାଲ ଶିକାର ପାଇଁ ବାହାରିବା । ଏପରି ୱେଦରରେ ଶିକାର ପ୍ରଚୁର ବାହାରିଥାନ୍ତି । ଜଙ୍ଗଲ ତ ଏଇ ପାଖରେ । ଦଶ ବାର ମାଇଲ ।'' ଶେଖରପ୍ରତାପ ପୋର୍ଟିରେ ଠିଆ ହୋଇଥିବା, ତାଙ୍କ ଜିପ୍ ଭିତରକୁ ଲମ୍ଫଦେଇ, ଡ୍ରାଇଭର ସିଟ୍‌ରେ ଷ୍ଟିଅରିଂ ଉପରେ ହାତରଖି ବସିପଡ଼ିଲେ । ପଛେ ପଛେ, ତାଙ୍କର ଜଣେ ପାଖ ଲୋକ, ଗୋଟାଏ ରାଇଫଲ୍ ଆଉ ଫ୍ଲାସ ଲାଇଟ ଧରି ଜିପ୍ ପଛ ସିଟ୍‌ରେ ବସିପଡ଼ିଲା । ବୋରଡମ୍ ଭାଙ୍ଗିବା ପାଇଁ ମୁଁ ଜିପ୍ ଭିତରକୁ ଉଠି ଶେଖରପ୍ରତାପଙ୍କ ପାଖ ସିଟ୍‌ରେ ବସି ପଡ଼ିଲି ।

ମେଘ ହଠାତ୍ ଛାଡ଼ି ଯାଇଥିଲା । ବର୍ଷଣକ୍ଳାନ୍ତ ଜଳଭାରହୀନ, ଭସାମେଘ ସବୁ ଆକାଶରେ କ୍ଳାନ୍ତ ପଦାତିକମାନଙ୍କ ପରି ଭାସି ଯାଉଥିଲେ, ସଦର ରାସ୍ତା ଛାଡ଼ି ଫରେଷ୍ଟ ରୋଡ୍ ଦୁଇ ପାଖରେ ବଡ଼ ବଡ଼ ବୁଦା ଆଉ ଉଞ୍ଚା ଉଞ୍ଚା ଗଛମାନଙ୍କର ଡାଳପତ୍ରରୁ ବର୍ଷା ବିନ୍ଦୁ ସବୁ ଥପ୍ ଥପ୍ ହୋଇ ପଡ଼ିବାର ଶବ୍ଦ ଆଉ ରାତିର ପକ୍ଷୀମାନଙ୍କର ଚିତ୍କାର ଅରଣ୍ୟର ଜମାଟବନ୍ଧା ନୀରବତାକୁ ଯେପରି ଆଉରି ଗଭୀର କରିଦେଇଥିଲା । ଏଇ ରାସ୍ତାରେ ଯେ କୌଣସି ମୁହୂର୍ତ୍ତରେ ହଠାତ୍ ଗୋଟିଏ ମହାବଳ ବାଘ ବୁଦା ଭିତରୁ ଲମ୍ଫ ଦେଇ ବାହାରି ପଡ଼ିବ ବୋଲି ମୁ ପ୍ରତି ମୁହୂର୍ତ୍ତରେ ଅପେକ୍ଷା କରୁଥିଲି । ମୋର ଦେହ ଭୟମିଶା ଉତ୍ତେଜନାରେ ରୋମାଞ୍ଚିତ ହୋଇ ଉଠୁଥିଲା । କିନ୍ତୁ ବାଘ ତ ବାଘ, ଗୋଟାଏ ଠେକୁଆ ସୁଦ୍ଧା ସେଦିନ କେଉଁଠି ଆଖିରେ ପଡୁ ନ ଥିଲା । ମାତ୍ର ଶିକାର ସନ୍ଧାନରେ ଶେଖରପ୍ରତାପ ଜଙ୍ଗଲର

ଆଉରି ଭିତରକୁ ଭିତରକୁ ଜିପ୍ ଚଳାଉଥିଲେ। ବେଳେବେଳେ ସେ ତାଙ୍କ କରଡ଼ରୟ ପ୍ୟାଣ୍ଟ ପକେଟରୁ ଗୋଟାଏ ରମ୍ ବୋତଲ କାଢ଼ି ନିର୍ଜଳା ରମ୍ ପାଟିରେ ଢାଳି ଢକ ଢକ ପିଉଥିଲେ। ଲକ୍ଷ୍ୟକରି ଦେଖିଲି କୁମାର ଶେଖରପ୍ରତାପଙ୍କର ବେସମ୍ଭାଳ ଅବସ୍ଥା। ହାତ ଥରୁଛି। ଆଗକୁ ଜଙ୍ଗଲ କ୍ରମେ ପତଳା ପଡ଼ି ଆସୁଥିଲା। ଏ ମୃଗୟା ବ୍ୟର୍ଥ ହୋଇଗଲା ବୋଲି ମୁଁ ମନେ ମନେ ଅବଶୋଷ କରୁଥିଲି।

ହଠାତ୍ ଗୋଟାଏ ବିଚିତ୍ରା ହରିଣୀ, ବୁଦା ଉହାଡ଼ରୁ କୁଦାମାରି ପଳାଇ ଯାଇଥିବା ବେଳେ, ଜିପ୍ ହେଡ୍‌ଲାଇଟ୍‌ରେ ଜଳକା ହୋଇ ଅଟକି ରହିଗଲା। ଜିପ୍ ପଛ ସିଟ୍‌ରୁ ପାଖଲୋକ ଜଣକ, ରାଇଫଲ୍‌ଟା କୁମାର ସାହେବଙ୍କ ଆଡ଼େ ବଢ଼ାଇ ଦେଇ ଫ୍ଲାସ୍ ଲାଇଟ୍‌ଟା ଜାଳିଦେଲା...। ସେଇଦିନ ସେଠାରେ ମୁଁ ପ୍ରଥମଥର ପାଇଁ ମୁଗ୍ଧ ବିସ୍ମିତ ଦୃଷ୍ଟିରେ ଦେଖିଥିଲି, ହରିଣୀର ଆଖି। ହରିଣୀର ଆଖି ପୁଣି ଏପରି ଦୀର୍ଘ, ଏପରି କରୁଣ, ଏପରି କୋମଳ, ଏପରି ଉଜ୍ଜ୍ୱଳ ହୋଇପାରେ, ଏ ଧାରଣା ଇତିପୂର୍ବରୁ ପ୍ରକୃତରେ ମୋର ନ ଥିଲା। ମୃତ୍ୟୁହୀନ ଲାବଣ୍ୟର ଏକ ପ୍ରତୀକ ରୂପେ 'ମୃଗାକ୍ଷି' ମନୁଷ୍ୟର ରସଚେତନାରେ ଯେପରି ତଥାପି ରହିଆସିଛି ତାହାର ଔଚିତ୍ୟ ସମ୍ପର୍କରେ ମୋର ଆଉ ସନ୍ଦେହ ରହିଲା ନାହିଁ। ମୃଗାକ୍ଷି କେବଳ କାବ୍ୟିକ ଉପମା ନୁହେଁ, ଏହାମଧ୍ୟ ପ୍ରକୃତରେ ଏକ ବାସ୍ତବ ସତ୍ୟ। ହରିଣୀର ଏକ କରୁଣ ଆଖିର ଅସହାୟ ଅଶ୍ରୁବିନ୍ଦୁ ସ୍ୱୟଂ ବିଷ୍ଣୁଙ୍କୁ ସୁଦ୍ଧା ଦେବପୁରରେ ଯେ କରୁଣା ବିଚଳିତ କରିଥିବ, ସେଥିରେ ମୁଁ ଆଉ ସନ୍ଦେହ ପୋଷଣ କରି ପାରୁ ନ ଥିଲି। କରୁଣ ଅସହାୟତା ସୁଦ୍ଧା, କେତେ ଶକ୍ତିଶାଳୀ ଓ ମର୍ମଭେଦୀ ହୋଇପାରେ, ସେଇଦିନ ସେଠାରେ ମୁଁ ପାଇଥିଲି ତାହାର ପ୍ରଥମ ପରିଚୟ। କୁମାର ଜିପ୍‌ର ସାମ୍‌ନା ଉଇଣ୍ଡ୍‌ସ୍କ୍ରିନ୍ ଦାଢ଼ରେ ରାଇଫଲ୍ ରଖି ହରିଣୀକୁ ଲକ୍ଷ୍ୟକରି ଟ୍ରିଗାର ଟିପିଦେଲେ ସତ। ମାତ୍ର ତାଙ୍କର ଥର ଥର କମ୍ପିତ ହାତରେ ଗୁଳି ଠିକ୍ ଲକ୍ଷ୍ୟଭେଦ କରିପାରିଲା ନାହିଁ। ଫ୍ଲାସ୍‌ଲାଇଟ୍‌ଟା ମଧ୍ୟ ହଠାତ୍ ସେତିକିବେଳେ ନିଭିଗଲା। ହରିଣୀ ସେଇ ସୁଯୋଗରେ ଲମ୍ଫଦେଇ ବଣବୁଦା ଭିତରେ ଅଦୃଶ୍ୟ ହୋଇଗଲା। ପଛସିଟ୍‌ରୁ ପାଖଲୋକ ଜଣକ କହିଲା, ''ଫେରି ଚାଲନ୍ତୁ ହଜୁର। ଆଜି ଯୋଗ ଖରାପ! ଆଜି ଆଉ ଶିକାର ପଡ଼ିବେ ନାହିଁ!''

ସେଦିନ ରାତିରେ କିନ୍ତୁ ଜଙ୍ଗଲରୁ ଫେରି ମୁଁ ଆଦୌ ଶୋଇପାରି ନ ଥିଲି। ଆଖିବୁଜିବା ମାତ୍ରେ, ମୋ ଆଖି ଆଗରେ ବାରମ୍ବାର ଭାସି ଉଠୁଥିଲା ବଣ ହରିଣୀର ସେଇ ଆଖି। ଏବେ ପ୍ରାୟ ଛତିଶ ବର୍ଷ ତଳର ସେଇ ସ୍ମୃତି କେବେ କେବେ ମନେ ପଡ଼ିଗଲେ ମୁଁ ଭାବେ, ଅନେକ ସମୟରେ ମାତାଲ୍‌ମାନେ ପ୍ରକୃତରେ ଏଇପରି ଗୋଟାଏ ଗୋଟାଏ ବଡ଼ ଟ୍ରାଜେଡ଼ୀରୁ ଆମକୁ ନିଷ୍କୃତ ଦେଇଥାଆନ୍ତି। ସେଦିନ କୁମାର ଶେଖରପ୍ରତାପ ପ୍ରକୃତିସ୍ଥ ଥିଲେ, ସୃଷ୍ଟିର ଗୋଟାଏ ଅତୁଳନୀୟ ନିଷ୍ପାପ ସୌନ୍ଦର୍ଯ୍ୟ, ବନ୍ଧୁକ ଗୁଳିରେ ଗୋଟାଏ

ମୁର୍ଦ୍ଦାର ପରି ତଳେ ଝରି ପଡ଼ିଥାନ୍ତା ସିନା ! ପ୍ରକୃତରେ ରେଗାନ୍ ହୁଅନ୍ତୁ, ଜୟବର୍ଦ୍ଧନେ ହୁଅନ୍ତୁ, ଜିଆ ହୁଅନ୍ତୁ ବା ଆତଙ୍କବାଦୀମାନେ ହୁଅନ୍ତୁ ସମସ୍ତେ ଅତି ଭୟଙ୍କର ଭାବରେ ପ୍ରକୃତିସ୍ଥ। ସେଥିପାଇଁ ଅତି ଶୀଳତ ନିଷ୍କମ୍ପ ଭାବରେ ସେମାନେ ଯୁଦ୍ଧ ବା ଗଣହତ୍ୟା ଘୋଷଣା କରି ପାରନ୍ତି। ଖାଲିସ୍ତାନୀ ଆତଙ୍କବାଦୀମାନେ ସୁଦ୍ଧା ମଦ୍ୟ ଓ ନିଶା ବିରୋଧୀ ! କୁମାର ଶେଖରପ୍ରତାପଙ୍କ ପରି ସେମାନେ କେହି କଦାପି ମାତାଲ୍ ନୁହନ୍ତି।

୨୧/୦୬/ ୮୭

# କିସ୍‌ସା କୁର୍ସୀକା

ସେଦିନ ସକାଳେ, ଭଦ୍ରଲୋକ ଯେପରି ଅମ୍ଳାନ ଭାବରେ ଦୁଇ ହାତ ଯୋଡ଼ି ନମସ୍କାର ନମସ୍କାର କହି, ଘର ଭିତରକୁ ନିଃସଙ୍କୋଚରେ ପଶି ଆସିଲେ, ଅଳ୍ପପୂର୍ବେ ଟେଲିଫୋନ୍‌ରେ ମୁଁ ତାଙ୍କୁ କେଇପଦ ବେଶ୍ କଡ଼ା କଡ଼ା କଥା କହିଥିବାରୁ, ମନେ ମନେ ଅପ୍ରତିଭ ହୋଇ ଉଠିଥିଲି। ଭଦ୍ରଲୋକ ଚା' ପାଇଁ ପ୍ରଥମେ ନାସ୍ତି କରୁଥିଲେ। କିନ୍ତୁ ମୋର ବାରମ୍ବାର ଅନୁରୋଧରେ ଅଗତ୍ୟା କପେ ଚା' ପାଇଁ ସେ ରାଜି ହେଲେ। ମୁଁ କୈଫିୟତ୍ ଦେବା ପରି କଣ୍ଠରେ କହିଲି, ''ଆପଣଙ୍କ ମ୍ୟୁନିସିପାଲିଟିର ସଫାଇ କର୍ମଚାରୀମାନେ ମୋତେ ଶେଷକୁ ବାଧ୍ୟ କଲେ, ଟେଲିଫୋନ୍‌ରେ ଆପଣଙ୍କୁ ସେପରି କଡ଼ା କଡ଼ା କଥା କହିବା ପାଇଁ। ବାହାର ଭିତର ଅବସ୍ଥା ସ୍ୱଚକ୍ଷୁରେ ଥରେ ଦେଖିଯାନ୍ତୁ, ବୁଝିପାରିବେ, କିପରି ପ୍ରାୟ ଏକ ସପ୍ତାହରୁ ଉର୍ଦ୍ଧ୍ୱଦିନ ଧରି ଆପଣଙ୍କର କୌଣସି ସଫାଇ କର୍ମଚାରୀ ସଫା କରିବାକୁ ଆସିନାହିଁ। ସବୁ ଆଡ଼, ଗଦା ଗଦା ଶୁଖିଲା ପତ୍ର ଆଉ ମଇଳା ଜମିଛି। ବାରମ୍ବାର ତାକିଦ୍ ଗଲେ ସୁଦ୍ଧା କୌଣସି ଫଳ ହେଉନାହିଁ। ମୁଁ ଆଉ କ'ଣ କରିଥାନ୍ତି କୁହନ୍ତୁ?''

ଭଦ୍ରଲୋକ ସ୍ଥାନୀୟ ମ୍ୟୁନିସିପାଲିଟିର ହେଲ୍‌ଥ ଅଫିସର। ସେ ସେହିପରି ଅମ୍ଳାନ ଭାବରେ ହସି ହସି କହିଲେ, "ଇଏ ତ ଆଜ୍ଞା, ଭି.ଆଇ.ପି. ମାନଙ୍କ ସହର। ଶ୍ରୀକ୍ଷେତ୍ର ମାହାତ୍ମ୍ୟରେ ପଢ଼ିଥିଲି, ସେ କ୍ଷେତ୍ରର ମାହାତ୍ମ୍ୟ ଏପରି ଯେ, ସେଠାରେ ଗର୍ଦ୍ଦଭ ସୁଦ୍ଧା ଚତୁର୍ଭୁଜ ବିଷ୍ଣୁ ରୂପେ ବିବେଚିତ ହୋଇଥାଏ। ସେହିପରି ଏ ଭି.ଆଇ.ପି. ସହରରେ ସମସ୍ତେ ଜଣେ ଜଣେ ଭି.ଆଇ.ପି.। ସଫେଇ କର୍ମଚାରୀମାନେ ସୁଦ୍ଧା। ସହଜେତ ଭୋଟ ପାଇଁ ସେମାନଙ୍କୁ ସାତଖୁଣ୍ ମାଫ୍। ମୁଁ ଆଉ କ'ଣ କରିପାରିବି କୁହନ୍ତୁ?" ... ଏ କଥାର ବା କି ଜବାବ ଅଛି? ଭଦ୍ରଲୋକ ଚା' କପ୍‌ରେ ଶେଷ ଚୁମକ୍ ଦେଇ କହିଲେ... "ଭି.ଆଇ.ପି. ସାହେବମାନଙ୍କ କଥା ଛାଡ଼ନ୍ତୁ। ସେମାନଙ୍କ ମାଡ଼ାମ୍‌ମାନଙ୍କଠାରୁ ପ୍ରତ୍ୟହ ଟେଲିଫୋନ୍‌ରେ ମୋତେ ଯେପରି ଗାଳି ଆଉ କଡ଼ା ତାଗିଦ୍ ଶୁଣିବାକୁ ପଡ଼ିଥାଏ, ତା' ତୁଳନାରେ ଆପଣଙ୍କ କଡ଼ା କଥା ସବୁ ତ ମୋତେ ଅଧିକ ଶ୍ରୁତିମଧୁର, ଅଧିକ ଭଦ୍ରୋଚିତ ଲାଗିଲା !।" ଭଦ୍ରଲୋକଙ୍କ ଆଡ଼େ ସିଗାରେଟ୍ ପାକେଟ୍‌ଟା ବଢ଼ାଇ ଦେଲି । ଭଦ୍ରଲୋକ

ଖଣ୍ଡେ ସିଗାରେଟ୍‌ରେ ନିଆଁ ଲଗାଇ ପୁଣି କଥା ଆରମ୍ଭ କଲେ, "ଏଇ ସହରରେ ସରକାରୀ ଡାକ୍ତରଖାନାରେ ମୁଁ ଜଣେ ସର୍ଜନ ଥିଲି।"

"ଆପଣ ତା'ହେଲେ ମ୍ୟୁନିସିପାଲିଟି ସଫେଇ କର୍ମଚାରୀମାନଙ୍କୁ ଠେଙ୍ଗାଇବା ପାଇଁ ଆସିଲେ କାହିଁକି ? କିପରି ?''

"ସେ କଥା ହେଲଥ୍ ଡିରେକ୍ଟର ସାହେବଙ୍କୁ ପଚାରିବେ ଆଜ୍ଞା ! ମୋତେ ଅର୍ଡ଼ର ମିଳିଲା ଚବିଶ ଘଣ୍ଟା ଭିତରେ ମ୍ୟୁନିସିପାଲିଟିରେ ଜଏନ କରିବା ପାଇଁ। ମୁଁ କ'ଣ କରନ୍ତି କୁହନ୍ତୁ ! ନାଚାର ! ତେବେ କାଲି ଦରଖାସ୍ତ ଦେଇ ଆସିଛି, ତିନି ମାସ ଅର୍ଣ୍ଣଡ୍ ଲିଭ୍ ପାଇଁ। ମୁଁ ଆଉ ଦିନକ ପାଇଁ ସୁଦ୍ଧା ଏ ଚାକିରିରେ ରହିବା ପାଇଁ ପ୍ରସ୍ତୁତ ନୁହେଁ। ଇଏ ସିଧା କଥା !''... ମୁଁ ନିରବ ରହିଲି ! ଜଣେ ସର୍ଜନ ଅପରେସନ୍ ଟେବୁଲ୍ ଆଉ ଛୁରୀ ଛାଡ଼ି, ଝାଡ଼ୁଦାରମାନଙ୍କୁ ଠେଙ୍ଗାଇବା ପାଇଁ ଠେଙ୍ଗାଧରି ମ୍ୟୁନିସିପାଲିଟି ଅଫିସରେ ବସିବ; ଏ କଥାଟା ମୋତେ ଭାରୀ କିମ୍ଭୁତ ଲାଗୁଥିଲା ! ଦେଶର ବୈଜ୍ଞାନିକମାନେ ଏବେ କାହିଁକି ଦେଶଛାଡ଼ି ବାହାରକୁ ପଳାଉଛନ୍ତି, କାହିଁକି ଆତ୍ମହତ୍ୟା କରୁଛନ୍ତି, ତାର କାରଣ ବୁଝିବା ପାଇଁ ମୋର ଆଉ ଅସୁବିଧା ରହିଲା ନାହିଁ। ଇଏ ପ୍ରକୃତରେ ଅନ୍ଧା ନଗରୀ, ଚଉପଟ୍ ରାଜା ପରି କଥ ! ଭଦ୍ରଲୋକ ଜଣେ ସହାନୁଭୂତିଶୀଳ, ଶ୍ରୋତା ପାଖରେ ପାଇ ନିଜ କଥା କହି ଚାଲିଥିଲେ... "ଦିନକର କଥା ଶୁଣନ୍ତୁ ! ସେଇଥିରୁ ମୋ ଅବସ୍ଥା ବୁଝିପାରିବେ-ସେଦିନ ସନ୍ଧ୍ୟାବେଳେ ମୁଁ ମୋ ଅଫିସରେ ଏକୁଟିଆ ବସିଛି। ଦୁଇ ଜଣ ସଫାଇ କର୍ମଚାରୀ ମଦ ନିଶାରେ ଟଳି ଟଳି ମୋ ଅଫିସ୍ ଭିତରକୁ ପଶି ଆସିଲେ। ଜଣେ ବୁଢ଼ା ଆର ଜଣକ ଭେଣ୍ଡିଆ ! ଦୁହିଁଙ୍କର ବେସମ୍ଭାଳ ଅବସ୍ଥା। ବୁଢ଼ା ଜଣକ ମୋ ବାଁ ପାଖ ଆଉ ଭେଣ୍ଡିଆ ଜଣକ ମୋ ଡାହାଣ ପାଖ କାନ୍ଧ ପାଖରୁ ଧରି ମୋତେ ଚଉକୀରୁ ଭିଡ଼ି କହିଲେ, "ତୁ ଏ ଚୌକୀରୁ ଉଠ୍। ମୁଁ ହେବି ହେଲ୍‌ଥ ଅଫିସର ! ତୁ' ଝାଡ଼ୁଦାର ମେହେନ୍ତରମାନଙ୍କୁ ଠେଙ୍ଗାଇ ପାରୁନାହୁଁ ! ମୁଁ ସେ (ଦୋ ଅକ୍ଷରୀ, ତିନି ଅକ୍ଷରୀ, ପାଞ୍ଚ ଅକ୍ଷରୀ) ମାନଙ୍କ ଚାକିରି ଖାଇବି। ମୁଣ୍ଡ ମୋଡ଼ି ଦେବି। (ମୁଦ୍ରଣ ଅଯୋଗ୍ୟ ଗାଳି) ! କାମରେ ଠକିବେ... ?"

ମୁଁ ଆଗ୍ରହରେ ପଚାରିଲି, "ସେଉଠୁଁ ... ?" ଭଦ୍ରଲୋକ କହିଲେ, "ମୁଁ ଆଉ ସେତେବେଳେ କଣ କରିପାରିଥାଆନ୍ତୁ କୁହନ୍ତୁ ? ନିର୍ବୋଧ ପରି ସେମାନଙ୍କ ଆଡ଼େ ଚାହିଁ ମୁରୁକି ମୁରୁକି ହସିବା ଛଡ଼ା ମୋର ଆଉ ଅନ୍ୟ ଉପାୟ ନ ଥିଲା ! କିନ୍ତୁ ସେ ଦୁଇ ଜଣଙ୍କ ଭିତରେ କିଏ ହେଲ୍‌ଥ ଅଫିସର କୁର୍ସୀରେ ବସିବ, ତାହା ଘେନି ଆରମ୍ଭ ହୋଇଗଲା ଝଗଡ଼ା ! ବୁଢ଼ା ଜଣକ ଘାଘଡ଼ା ଗଳାରେ ଭେଣ୍ଡିଆକୁ କହିଲା, "ଯା'ବେ (ମୁଦ୍ରଣ ଅଯୋଗ୍ୟ ଗାଳି) ତୁ କ'ଣ ହେଲ୍‌ଥ ଅଫିସର ହେବୁ ? ମୁଁ ହେବି !" ଭେଣ୍ଡିଆ ଜଣକ ବୁଢ଼ାକୁ ଠିକ୍ ସେହିପରି ଭାବରେ କହିଲା, "ଯା'ବେ (ପୂରାପୂରି ମୁଦ୍ରଣ ଅଯୋଗ୍ୟ, ସମ୍ବୋଧନ ଓ

ଗାଳି) ତୁ'ଟା ନିକମା ବୁଢ଼ା ! ତୁ (ଗାଳି) କ'ଣ ହାକିମ ହେବୁ ?" ଏହିପରି କିଛି ସମୟ ସେମାନଙ୍କ କଳି ତକରାଳରେ ବିତିଯିବା ପରେ, ମୁଁ କହିଲି, "ଠିକ୍ ଅଛି, ତୁମେ ଦୁଇଜଣ ଯାକ ମୋ ଜାଗାରେ ଏଇ ଗୋଟିଏ ଚଉକୀ ଉପରେ ବସିଲେବି ଚଳିଯିବ ! ଜାକିଜୁକି ବସିଲେ ତୁମେ ଦୁଇଜଣଙ୍କ ପାଇଁ ଏ ଗୋଟିଏ ଚଉକୀରେ ଜାଗାର ଅଭାବ ହେବ ନାହିଁ। ତେବେ ବର୍ତ୍ତମାନ ଅଫିସରେତ ବାବୁମାନେ କେହି ନାହାନ୍ତି ! କାଲି ସକାଳେ ଦଶଟାବେଳେ ଆସିବ ଯେ ତୁମ ଦୁଇ ଜଣଙ୍କୁ ମୁଁ ଅଫିସ୍‌ର ବାବୁମାନଙ୍କୁ ଚିହ୍ନାଇ ଦେବି, ଇଏ ଆଜିଠାରୁ ନୂଆ ହେଲଥ୍ ଅଫିସର୍ !" ସେମାନେ କଥାଟା ବୁଝିଲେ। ତା'ପରେ ସେହିପରି ମଦ ନିଶାରେ ଟଳି ଟଳି ଚାଲିଗଲେ।

ତା'ପରଦିନ ସକାଳେ ମୁଁ ଅଫିସକୁ ଆସିବା ବେଳକୁ ଦେଖେ, ସେ ଦୁଇଜଣ ଝାଡୁଦାର ଅଫିସ ବାହାରେ କାନ୍ଥକୁ ଆଉଜି ବସିଛନ୍ତି, ଅପରାଧୀ ପରି। ମୋତେ ଦେଖିବା ମାତ୍ରେ, ମୋର ପାଦ ଧରି, ସେ ଦୁଇଜଣ, କାଲି ସନ୍ଧ୍ୟାବେଳେ ଗୋଟାଏ ଭୁଲ କରି ପକାଇଥିଲେ ବୋଲି ମୋତେ ବାରମ୍ବାର କ୍ଷମା ମାଗିଲେ। ଆଉ ନାକ କାନ ମୋଡ଼ି ହୋଇ କହିଲେ, ଏପରି ଭୁଲ ସେମାନେ ଆଉ କେବେ କରିବେ ନାହିଁ!... ମୁଁ କହିଲି, "ତୁମେମାନେ ଆଉ କେବେ ହେଲ୍‌ଥ ଅଫିସର ହେବା ପାଇଁ ଆସିଲେ ମୋର ଆପତ୍ତି ନାହିଁ। କିନ୍ତୁ ଯେତେଦିନ ତୁମେମାନେ ହେଲ୍‌ଥ ଅଫିସର ଚଉକୀରେ ବସିବ, ସେଥିପାଇଁ ତୁମକୁ ଦୈନିକ ଜଣକା ତିରିଶ ଟଙ୍କା ଜୋରିମାନା ଦେବା ପାଇଁ ପଡ଼ିବ !" ହେଲ୍‌ଥ ଅଫିସର କୁର୍ସୀ ପାଇଁ ସେମାନଙ୍କର ଆଉ ଆଗ୍ରହ ନଥିଲା ! ସେମାନେ ଅନେକ କ୍ଷମା ମାଗି ଚାଲିଗଲେ।

ହେଲ୍‌ଥ ଅଫିସରଙ୍କ କଥା ଶୁଣି ମୋର ମନେ ହେଲା, ଦ୍ୱିତୀୟ ମହାଯୁଦ୍ଧ ପରେ ସଦ୍ୟ ସ୍ୱାଧୀନତା ପାଇଥିବା ଅନେକ ଦେଶରେ ସିଂହାସନ ପାଇଁ ଠିକ୍ ସେହିପରି ଘଟଣାମାନ ଘଟୁଛି। ଗୋଟିଏ ସିଂହାସନ। କିନ୍ତୁ ଗୋଟିଏ ସିଂହାସନ ଉପରେ ବସିବା ପାଇଁ ଦାବୀଦାର ଏକାଧିକ। ମାତାଲ୍ ସଫାଇ କର୍ମଚାରୀମାନେ ଯେଉଁ ହେଲ୍‌ଥ୍ ଅଫିସରଙ୍କୁ କୁର୍ସୀରୁ ତଡ଼ିବା ପାଇଁ ଅଣ୍ଟା ଭିଡ଼ିଥିଲେ, ସେମାନେ ଶେଷରେ ସେଇ ହେଲ୍‌ଥ୍ ଅଫିସରର ପାଦଧରି କ୍ଷମା ମାଗିବା ପରି, ସ୍ୱାଧୀନତା ପାଇବା ପରେ ସୁଦ୍ଧା ଇଂଲଣ୍ଡର ରାଣୀଙ୍କୁ ଅନେକ ସ୍ୱାଧୀନ ଦେଶ ସେମାନଙ୍କ 'ରାଣୀ' ବୋଲି ଘୋଷଣା କରିବା ପାଇଁ ସୁଦ୍ଧା କୁଣ୍ଠିତ ହେଉ ନାହାନ୍ତି। ଗୋଷ୍ଠୀ-ନିରପେକ୍ଷତା ସତ୍ତ୍ୱେ କୌଣସି ଗୋଟିଏ ସୁପର ପାୱାରର କାନି ନ ଧରିଲେ, ଅନେକଙ୍କର ପୁଣି ଚଳୁନାହିଁ।

ମୁଁ ତାଙ୍କୁ ଏସବୁ କଥା କ'ଣ ବା କହନ୍ତି ? ତାଙ୍କ ଆଡ଼େ ଚାହିଁ କେବଳ ମୁରୁକି ମୁରୁକି ହସିଲି- ତା'ଛଡ଼ା ମୁଁ ସେତେବେଳେ କ'ଣ କରିଥାନ୍ତି କୁହନ୍ତୁ !

୦୪/୦୭/୮୭

# ବୃଷଭ-ସମ୍ବାଦ

ଏଠାକୁ ଆସି ମୁଁ ଯାହାକୁ ସେବୁଠାରେ ବେଶୀ 'ମିସ୍' କରୁଛି, ସେ ହେଉଛି ସେଇ ବୁଲାଷଣ୍ଢ। ବ୍ୟକ୍ତିତ୍ୱହୀନ, ବୈଚିତ୍ର୍ୟହୀନ ହାକିମ ସ୍ୱଭାବର ସେ ଷଣ୍ଢଟି ପ୍ରକୃତରେ ଥିଲା ବ୍ୟକ୍ତିତ୍ୱସମ୍ପନ୍ନ। ତାର ସମୟାନୁବର୍ତ୍ତିତା ପ୍ରକୃତରେ ଲକ୍ଷ୍ୟ କରିବାର କଥା। ପ୍ରତିଦିନ ସକାଳ ନଅଟାରୁ ଦଶଟା ମଧ୍ୟରେ, ଭୁବନେଶ୍ୱର କ୍ଲବ୍‌ଆଡୁ ହସ୍‌ପିଟାଲ ଆଡ଼କୁ ଯାଇଥିବା ରାସ୍ତାରେ, ସେ ବେଶ୍ ଗୁରୁଗମ୍ଭୀର ଭାବରେ, କୁଆଡ଼ େଯ ବାହାରିଯାଏ, ଅନେକ ଖୋଜଖବର ନେଇ ସୁଦ୍ଧା, ମୁଁ ତାହା ଜାଣିପାରିଲି ନାହିଁ। ସକାଳେ ଯିବାବେଳେ, ସେ ତଳକୁ ମୁଣ୍ଡ ନୁଆଁଇ ଶାନ୍ତ, ସୁଧାର ଅଫିସ୍ ବାବୁଙ୍କ ପରି, ଏକମୁହାଁ ହୋଇ ଚାଲିଯାଏ। ଅକସ୍ମାତ୍ କେବେକେବେ କୌଣସି ଗାଭୀ ତାହାର ଦୃଷ୍ଟି ଆକର୍ଷଣ କଲେ, ଷଣ୍ଢଟି ଅବଶ୍ୟ କିଛିଟା ଉଦ୍ଦାମ, କିଛିଟା ଆବେଗପ୍ରବଣ ହୋଇପଡ଼େ। କିନ୍ତୁ ସବୁବେଳେ ମୁଁ ଲକ୍ଷ୍ୟ କରି ଦେଖିଛି, ଗାଭୀମାନେ ତାକୁ ପ୍ରାୟ ପ୍ରବଞ୍ଚିତ କରିଥାନ୍ତି। ବିଚରା ଶାନ୍ତଶିଷ୍ଟ ଷଣ୍ଢଟିକୁ ଅକାରଣରେ ମତାଇ, ସେମାନେ ଧରା ଛୁଆଁ ନ ଦେଇ ଏଣେ ତେଣେ ଦଉଡ଼ି ପଳାଇଥାନ୍ତି। ଷଣ୍ଢ ବିଚରା କାହୁଁ ବୁଝିବ, ଗାଭୀ ହେଲେ ବି ସିଏ ପ୍ରକୃତି, ଛଳନାମୟୀ।

ଏଇ କ୍ଷଣିକ ଉତ୍ତେଜନା ପରେ ଷଣ୍ଢଟି ପୁଣି ନିର୍ଲିପ୍ତ ଭାବରେ, ତା' ବାଟରେ ଆଗେଇ ଯାଏ-ଇଏ ଯେପରି ଥିଲା, ଗୋଟିଏ ସାମୟିକ ନୁଇସାନ୍‌ସ୍। ତାପରି ସ୍ଥିତଧୀ, ଏପରି ବ୍ୟାପାରରେ ଉତ୍ତେଜିତ, ଆବେଗପ୍ରବଣ ହେବା, ଆଦୌ ଉଚିତ ନ ଥିଲା। ତାପରେ ଷଣ୍ଢ ହସ୍‌ପିଟାଲ ଛକର ଡାହାଣ ମୋଡ଼ରେ ଅଦୃଶ୍ୟ ହୋଇଯାଏ। ସେଇ ବାଟରେ ସେ ଫେରେ ପୁଣି, ଠିକ୍ ସନ୍ଧ୍ୟା ପୂର୍ବରୁ-ରାସ୍ତାକଡ଼ର ବତୀଖୁଣ୍ଟମାନଙ୍କରେ ସେତେବେଳେ ଆଲୁଅ ଜଳି ନ ଥାଏ- ଠିକ୍ ଅଫିସ୍ ବାବୁମାନଙ୍କ ପରି। ରାତିରେ ଷଣ୍ଢଟି କେଉଁଠି ରହେ, କେଉଁଠି ଶୁଏ, ବହୁ ଅନୁସନ୍ଧାନ କରି ମଧ୍ୟ, ମୁଁ ସେ ରହସ୍ୟ ଭେଦ କରିପାରି ନ ଥିଲି। କିନ୍ତୁ ଦିନେ ଦିନେ ଫେରିବାବେଳେ ସେ ଯେପରି ଖୁରୀ ଖାଇ, ହେଣ୍ଟାଳ ଛାଡ଼ି ଫେରେ ମୋର ମନେ ହୁଏ, ଇଏ କେଉଁ ଗୋଠରେ ଅନ୍ୟ ପ୍ରତିଦ୍ୱନ୍ଦ୍ୱୀ ଷଣ୍ଢ ପ୍ରତି, ଦର୍ପିତ 'ଯୁଦ୍ଧଂ

ଦେହି' ଆହ୍ୱାନ ନୁହେଁ, ବରଂ ତାର ଆହତ ପୌରୁଷ ଓ ଅହଂକାରର ଇଏ ଯେପରି ନିଷ୍ଫଳ ଆର୍ତ୍ତନାଦ! ଷଣ୍ଢଟି ବିଚାରା କେଉଁଠି କେଉଁ ଗୋଠରେ ଆଜି ହୀନସ୍ତା ଭୋଗିଲା ବୋଲି, ତା'ପ୍ରତି ମୋ ମନ ସହାନୁଭୂତିରେ ଆର୍ଦ୍ର ହୋଇଉଠେ। ପରଦିନ ସକାଳୁ କିନ୍ତୁ ଠିକ୍ ନିର୍ଦ୍ଦିଷ୍ଟ ସମୟରେ ଷଣ୍ଢ ସେଇ ରାସ୍ତାରେ ବାହାରିଯାଏ, କାଲି ଯେପରି ଆଦୌ କିଛି ଘଟି ନ ଥିଲା। କିନ୍ତୁ କୌଣସି ଗାଭୀ ସେତେବେଳେ ତା' ନଜରରେ ପଡ଼ିଗଲେ, ଅନ୍ୟ ଦିନମାନଙ୍କ ପରି, ସେ ତାର ଉଦ୍ଦାମତାରେ ସାଇକେଲ, ଲୁନା, ସ୍କୁଟର ଆରୋହୀମାନଙ୍କ ପ୍ରତି ସୃଷ୍ଟି କରେ ଗୋଟାଏ ସମସ୍ୟା।

ଆମ ପଡ଼ାରେ କୌଣସି ପ୍ରସିଦ୍ଧ ଶିବ ମନ୍ଦିର ନ ଥିଲା। ତେଣୁ ଏ ଷଣ୍ଢ ମହାଦେବଙ୍କ ଷଣ୍ଢ ହୋଇ ନପାରେ। ଯେଉଁ ଗୋଟିଏ ଦୁଇଟି ଶିବ ମନ୍ଦିର ରହିଛି, ସେ ମନ୍ଦିରର ଶିବମାନେ ବାସୁଆ ବଦଳରେ ହିଁ ସନ୍ତୁଷ୍ଟ। ଷଣ୍ଢରେ ସେମାନଙ୍କର ପ୍ରୟୋଜନ ନ ଥାଏ। ଅନୁସନ୍ଧାନରୁ ଜଣାପଡ଼ିଲା, ସ୍ଥାନୀୟ ଗୋଟିଏ ଭେଟନାରୀ କଲେଜର ଷଣ୍ଢ ତା'ର ହୋମ୍ ଟାସ୍କରେ ଏତେ ବ୍ୟସ୍ତ ରହେ ଯେ, ବାହାରେ ବୁଲିବା ପାଇଁ ତାର ଅବସର ନ ଥାଏ। ଏ ପରିସ୍ଥିତିରେ ଷଣ୍ଢଟିର ବାଇଓ-ଡାଟା ଜାଣିବା ପାଇଁ ମୋ ମନରେ ଗୋଟିଏ ପ୍ରବଳ ଆଗ୍ରହ ଜାତ ହେଲା। ସେ ସମ୍ପର୍କରେ ଅନୁସନ୍ଧାନ କରିବା ପାଇଁ, ମୁଁ ମାଳୀକୁ ଲାଗାଇଦେଲି।

ମାଳୀ ଦିନେ କହିଲା... "ଷଣ୍ଢଟା ଆଜି ଗୋଟିଏ ଗୋଠରେ ପଶିଥିଲା ଯେ, ଗୋଟାଏ ରାଜା ଷଣ୍ଢ ତାକୁ ଶିଙ୍ଗରେ ଭୁଷି ନୟାନ୍ତ କରିଦେଲା।" ଆଃ... ବିଚାରା ଷଣ୍ଢ ବୁଝିପାରିଲା ନାହିଁ, ଗୋଟିଏ ଗୋଠରେ ଦୁଇଟା ଷଣ୍ଢର ଶାନ୍ତିପୂର୍ଣ୍ଣ ସହାବସ୍ଥାନ, ଅସମ୍ଭବ। ସେଠାରେ ନାସିକା ପ୍ରବେଶ କଲେ ଏଇପରି ଦଶା ଅବଧାରିତ।... ସେଦିନ ସନ୍ଧ୍ୟା ପୂର୍ବରୁ ଷଣ୍ଢ ଯେପରି ଖୁରୀ ଖାଇ ନିର୍ଜନ ରାସ୍ତାରେ ହେଣ୍ଟାଳ ଛାଡ଼ି କ୍ଲାନ୍ତ ପାଦରେ ଫେରୁଥିଲା, ଦିନବେଳା ତାକୁ ଏଇପରି ଗୋଟିଏ କିଛି ହୀନସ୍ତା ଭୋଗିବାକୁ ପଡ଼ିଥିବ ବୋଲି ମୁଁ ମନେ ମନେ ଅନୁମାନ କରୁଥିଲି।... ଆଉ ଦିନେ ମାଳୀ ଆସି ଖବର ଦେଲା, ଆଜି ପରିବା ମାର୍କେଟରେ ଷଣ୍ଢଟା ଗୋଟାଏ ପରିବା ଦୋକାନରୁ କଖାରୁଟିଏ ଝିଙ୍କିନେଇ ପଳାଇବାବେଳେ, ଯେପରି ଗୋବଛ ବାଡ଼ିଆ ଖାଇଲାନା, ବିଚାରା ଚର୍ ଚର୍ କରି ମୂତି ପକାଇଲା। ମାଳୀ ହସ ଚାପିବା ପାଇଁ ଚେଷ୍ଟା କରି ସୁଦ୍ଧା ହସି ପକାଇଲା। ମୁ ମଧ୍ୟ ହସଟାକୁ ଚାପି ପାରିଲି ନାହିଁ।

ସେଦିନ, ଆଉ ଟିକକୁ ମୋ ଘର ସାମନା ରାସ୍ତାରେ ବିଜୁଳିବତୀ ସବୁ ଜଳି ଉଠିବ। କ୍ଲବ ଆଡ଼େ ରାସ୍ତାଟା, ଅଫିସ ଛୁଟୀ ପରେ ଦିଶୁଛି... ନିରାଶ ଲୋକର ବୁକୁଥରା ଦୀର୍ଘଶ୍ୱାସ ପରି ବିକ୍ଷିପ୍ତ ଅଛିଣ୍ଡା। ହସ୍ପିଟାଲ ଛକଆଡୁ ଷଣ୍ଢର ହେଣ୍ଟାଳ ଶୁଭିଲା। ଆଜି ଦିନବେଳାର ସବୁ ଆଘାତ, ଲାଞ୍ଛନା ଓ ପରାଭବର ଗଣ୍ଠିଲି ପିଠି ଉପରେ ଲଦି,

ବିଚାରା ଷଣ୍ଢଟି ତାର ରାତିର ଆସ୍ଥାନକୁ ଫେରୁଥିଲା, ନିଷ୍ଫଳ ଗର୍ଜନ କରି- ଯାହା ପ୍ରକୃତରେ ଶୁଭୁଥିଲା, ତାର ଆହତ ପୌରୁଷର ଆର୍ତ୍ତନାଦ ପରି ! ଷଣ୍ଢ ଆଢ଼େ ଚାହିଁ ମୋର ମନେ ହେଲା, ଏ ଘର ବାହୁଡ଼ା ଷଣ୍ଢଟି, ଆଜିର ମାନବୀୟ ସ୍ଥିତିର ପ୍ରତୀକ ! ସକାଳେ ମଣିଷ ରାସ୍ତା ଉପରକୁ ବାହାରେ, ନିତ୍ୟ ବର୍ତ୍ତମାନ କାଳ ପରି, ସମୟନିଷ୍ଠ, କର୍ତ୍ତବ୍ୟନିଷ୍ଠ ଭାବରେ । ବସ୍‌ରେ ବା ଲୋକାଲ୍ ଟ୍ରେନ୍‌ମାନଙ୍କର ଖୁନ୍ଦାଖୁନ୍ଦି ଭିଡ଼ ଭିତରେ ଯିବାବେଳେ, ଦିନେ ଦିନେ ମୁହୂର୍ତ୍ତକ ପାଇଁ ଗୋଟାଏ ରୋମାଞ୍ଚକର ନାଟକର ଗୋଟାଏ ଦୃଶ୍ୟ ଅଭିନୀତ ହୋଇଯାଏ, କିନ୍ତୁ ତାପରେ ସେଇ ରୁଟିନ-ଖାଦ୍ୟ ପାଇଁ, ସମ୍ଭୋଗ ପାଇଁ, ପ୍ରଭୁତ୍ୱ ପାଇଁ ଝୁଙ୍କ । ଦିନାନ୍ତରରେ ସେ ପୁଣି ସେଇ ରାସ୍ତାରେ ଏଇ ଷଣ୍ଢ ପରି ଫେରେ ତାର ଆସ୍ଥାନକୁ, ଅପମାନିତ ପୌରୁଷର ଜ୍ୱାଳା ଭୁଲିବାକୁ ପୁଣି ତା' ମନରେ ଚେଇଁଉଠେ, ଜୟମାଲ୍ୟର ନିଶା ।

ଏଇ ତ ମଣିଷର ପ୍ରାତ୍ୟହିକ ଜୀବନ- "ପୁନରପି ଜନ୍ମଂ ପୁନରପି ମରଣଂ, ପୁନରପି ଜନନୀ ଜଠରେ ଶୟନଂ !" ବଞ୍ଚିବା ଗୋଟେ ଅର୍ଥହୀନ ରୁଟିନ୍‌ର ପ୍ରାତ୍ୟହିକ ପୁନରାବୃତ୍ତି !

୧୯/୦୭/୮୭

# କୋଇଲି-କଜଳପାତି

କୋଇଲିର କାବ୍ୟ ପ୍ରସିଦ୍ଧି ଅଛି ବୋଲି ସିନା, କୋଇଲି ବୋବାଇବା ମାତ୍ରେ, ଆମେ ସଙ୍ଗୀତର ପଞ୍ଚମ ସ୍ୱର ଶୁଣିପାରୁ ଓ କୋଇଲିକୁ କେନ୍ଦ୍ରକରି ମଧ୍ୟଯୁଗୀୟ ରୋମାଣ୍ଟିସିଜିମ୍‌ର ସ୍ୱପ୍ନଜାଲ ବୁଣି ବସୁ। ତା' ନହେଲେ କୋଇଲିର ସଙ୍ଗୀତ ଅପେକ୍ଷା କଜଳପାତିର କାକଳି ମୋତେ ବେଶୀ ଆକୃଷ୍ଟ କରିଥାଏ।

ଫଗୁଣ ସକାଳେ ଦିନେ, କୋଇଲିର ପ୍ରଥମ ଡାକ ଦୂର ଦିଗନ୍ତ ଆଡୁ ଭାସି ଆସିବା ବେଳେ, ମୁଁ ଅବଶ୍ୟ ମୁହୂର୍ତ୍ତକ ପାଇଁ ଆନମନା ହୋଇ ଉଠେ ଓ ବସନ୍ତ ଆସିଗଲା ବୋଲି ଅନୁଭବ କରିପାରେ। ତା'ନହେଲେ କୋଇଲି ଡାକରେ ମୁଁ ଲକ୍ଷ୍ୟ କରି ଆସିଛି ଏକ ପ୍ରମତ୍ତ ବ୍ୟାକୁଳତା-କୋଇଲିର ରତି ଭିକ୍ଷା। ସେଥିରେ ଥାଏ ଜାନ୍ତବ ମାଂସଳତା; କିନ୍ତୁ କଜଳପାତି ବୋବାଇଲେ, ମୁଁ ସେଥିରେ ଅନୁଭବ କରିପାରେ ନିର୍ଲିପ୍ତ ନୈସର୍ଗିକତା! କୋଇଲି ଡାକ ପରି ଏହା ସ୍ନାୟୁତନ୍ତ୍ରୀମାନଙ୍କୁ ଉତ୍ତେଜିତ କରେ ନାହିଁ, କିନ୍ତୁ ଏହାର ନିର୍ଲିପ୍ତତା ସବୁ ଉତ୍ତେଜନା ଓ ଉଦ୍‌ବେଳନକୁ ଶାନ୍ତ କରିଦିଏ। ଏହା ଯେପରି ଅନନ୍ତ କାଳରେ ହୃଦୟ ସଙ୍ଗୀତ।

କୋଇଲି ପରି କଜଳପାତି ରୁଟିନ୍‌ବଦ୍ଧ ଭାବରେ ଗୀତ ବୋଲେ ନାହିଁ। ସକାଳର ସବୁ ପକ୍ଷୀମାନଙ୍କ ପରି ଏହ ଅବଶ୍ୟ ଭଲକରି ଫରଚା ନ ଫିଟୁଣୁ, ଥରେ ରାବି ଉଠି ନିରବ ହୋଇଯାଏ। କୋଇଲି ପରି, କଜଳପାତି ମଧ୍ୟ ଭୋର ସକାଳୁ ଗୀତ ରିଆଜ୍ କରିଥାଏ; ମାତ୍ର କୋଇଲି ପରି ତାହା ରୁଟିନବଦ୍ଧ ନୁହେଁ। ପ୍ରତି ଦିନାନ୍ତରେ କଳଜପାତିର ବିଦାୟ ସଙ୍ଗୀତ ଶୁଣିବାକୁ ମିଳିଥାଏ। ମାତ୍ର ତାହା କଜଳପାତିର 'ମୁଡ୍' ଉପରେ ନିର୍ଭର କରେ। କୋଇଲି ଗୀତ ଗାଏ, ପେଶାଦାର ସଙ୍ଗୀତଜ୍ଞମାନଙ୍କ ପରି, କିନ୍ତୁ କଜଳପାତି ଗୀତଗାଏ, ନିଜ ଖିଆଲରେ! କୋଇଲି ପୁଣି-ଅଣ୍ଡିରା କୋଇଲି ସୁଦ୍ଧା ଶାଖାପତ୍ରର ଅନ୍ତରାଳରେ ଥାଇ ଗୀତ ବୋଲେ, ଅସୂର୍ଯ୍ୟପଶ୍ୟାମାନଙ୍କ ପରି! କିନ୍ତୁ କଜଳପାତି ଗୀତର

ଆସର ଜମାଏ ରାସ୍ତା କଡ଼ର ଇଲେକ୍ଟ୍ରିକ୍ ତାର ଉପରେ। କ୍ୱଚିତ୍ ଗଛ ଡାଳରେ ବସି, କଳଜପାତି କେବେ ଗୀତ ବୋଲିବା ମୁଁ ଲକ୍ଷ୍ୟ କରିଛି।

ଏଠାରେ କିନ୍ତୁ, କଳଜପାତିମାନେ, ବର୍ଷାଋତୁର ଆଗମନରେ ଭାରୀ ସ୍ୱତଃସ୍ଫୂର୍ତ୍ତ ହୋଇ ଉଠିଛନ୍ତି। ସକାଳେ କଜଳପାତିମାନଙ୍କର କାକଳି ଭିତରେ, ଏଇଠାରେ ପ୍ରତିଦିନ ମୋର ନିଦ ଭାଙ୍ଗୁଛି। କିନ୍ତୁ ରାଜଧାନୀର କଜଳପାତିମାନେ ଭାରୀ 'ମୁଡୀ'। ପ୍ରତିଦିନ ସନ୍ଧ୍ୟା ପୂର୍ବରୁ ମୁଁ ଦେଖେ, କେତୋଟି କଜଳପାତି ମୋ ଘର ସାମନା ରାସ୍ତା କଡ଼ର, ବିଜୁଳି ତାର ଉପରେ କୁଆଡୁ ଉଡ଼ି ଆସି ବସନ୍ତି। ମୁଁ ପ୍ରସ୍ତୁତ ହୋଇ ଉଠେ, ସେମାନଙ୍କ ସଙ୍ଗୀତ ଶୁଣିବା ପାଇଁ। ମାତ୍ର ରାଜଧାନୀର ବ୍ୟୁରୋକ୍ରାଟମାନଙ୍କ ପରି ସେମାନେ ଭାରୀ 'ବୋରଡ୍' ହୋଇଥିବା ପରି ଚୁପ୍‌ଚାପ ବସିଥାନ୍ତି। ସେମାନେ ଶୋକସଭାରେ ବସିବା ପରି, ଏପରି ମୂକମୌନ ଭାବରେ କାହିଁକି ଯେ ବସି ରହନ୍ତି, ତାହାର ରହସ୍ୟ ମୋତେ ପକ୍ଷୀବିଶାରଦ ସ୍ୱର୍ଗତଃ ଡକ୍ଟର ସଲିମ ଅଲ୍ଲୀ ସୁଦ୍ଧା କହି ପାରିନାହାନ୍ତି।

କେବେ କେବେ ଅକସ୍ମାତ, କଜଳପାତିଟିଏ ଥରେ ରାବି ଦେଇ, ଲାଞ୍ଜ ତଳ ଉପର ନଚାଇ ପାଖ ବଗିଚାର ମାଛି ଅନ୍ଧାର ଭିତରକୁ ଉଡ଼ିଯାଏ। ତା'ର କିଛି ପରେ ତା'ର ସାଥୀଟି ମଧ୍ୟ ନୀରବରେ ତା' ପଛେ ପଛେ ଉଡ଼ିଯାଏ। ତା'ର ଉଡ଼ିଯିବାର ରୀତି ଦେଖି ମୋର ମନେ ହୁଏ ବିଚାରା ପୁରୁଷଟି ନୀଡ଼ବାନ୍ଧି ରହିବାପାଇଁ ଯେପରି ଆଦୌ ଚାହେଁ ନାହିଁ। ପ୍ରକୃତି କେବଳ ମାୟାରଜ୍ଜୁରେ ବାନ୍ଧି, ତାକୁ ଟାଣି ଭିଡ଼ି ନୀଡ଼ବାହୁଡ଼ା କରୁଛି।

କିନ୍ତୁ କଜଳପାତିର ଆଉ ଗୋଟିଏ ଅନାବିଷ୍କୃତ ଦିଗ, ସେଦିନ ଖରାବେଳେ ଅକସ୍ମାତ ମୋର ଖୋଲା ଝରକା ବାଟେ ଲକ୍ଷ୍ୟ କଲି। ମୁଁ ଦେଖିଲି, ପଡ଼ୋଶୀ ଘର ଗୋଟିଏ ଗାଈ ମୋ ପଡ଼ିଆରେ ଘାସ ଚରୁଛି। ଆଉ ତା' ପିଠି ଉପରେ କଜଳପାତିଟିଏ ନଟବର ଠାଣିରେ ବସି ବେଢ଼ା ପରିକ୍ରମା କରୁଛି। ଗାଈ ବୋଧହୁଏ ତା' ପିଠି ଉପରେ କଜଳପାତିଟିଏ ସବାର ହୋଇଥିବା ଜାଣିପାରୁ ନାହିଁ। ସେ ଘାସ ଚରିବାବେଳେ, ଯେଉଁ ଝିଣ୍ଟିକା ଓ ପୋକ ଜୋକ ସବୁ ଖପ୍‌ଖାପ୍ ଡିଆଁମାରି ଉପରକୁ ଉଠୁଛନ୍ତି, ସେମାନଙ୍କୁ କଜଳପାତି ତଳକୁ ଉଡ଼ିଯାଇ ଟପ୍‌ଟାପ୍ ଗିଳି ପକାଉଛି। କେତେଦିନ ତଳେ ମୋର ପଡ଼ୋଶୀଙ୍କ ବଗିଚାରେ ସେଇ ମସ୍ତାନ ବଗ ଗୋଟାଏ ଗାଈ ପଛେପଛେ ଲମ୍ବା ପାହୁଲ ପକେଇ ଦଉଡ଼ି ଦଉଡ଼ି, ଝିଣ୍ଟିକା ଖାଉଥିବା ମୁଁ ବେଶ୍ କୌତୂହଳୀ ହୋଇ ଦେଖିଥିଲି। କିନ୍ତୁ ମସ୍ତାନ ବଗର କୌଶଳ ବା ଟେକ୍‌ନିକାଲ୍ ନୋ ହାଓ ତୁଳନାରେ କଜଳପାତିର ଏ ଟେକ୍‌ନିକାଲ ନୋ ହାଓ ନିଶ୍ଚୟ ଅନେକ ଉନ୍ନତ। ସବୁ ଉନ୍ନତ ଟେକ୍‌ନିକାଲ୍ ନୋ ହାଓର ସିଧା, ସରଳ ଅର୍ଥ ହେଉଛି, ବିନା ପରିଶ୍ରମରେ ଶୋଷଣ ଓ ଲୁଣ୍ଠନର ନିତ୍ୟ ନୂତନ କୌଶଳ। ମସ୍ତାନ୍

ବଗଟା ପଡ଼ୋଶୀ ଘରର ଛଉକା ଗାଈ ପଛେ ପଛେ ଧାଉଁଥିଲା, ଗୋଟାଏ ପେଟ କାଙ୍ଗାଳିଆ ଭିକାରୀ ପରି ଯେପରି ଯେତେ ଗିଳିଲେ ବି ତା' ପେଟ ପୋଡ଼ି ଯାଉଛି। କିନ୍ତୁ କଜ୍ଜଳପାତି ଗାଈ ପିଠି ଉପରେ ନଟବର ଠାଣିରେ ବସିଛି ଓ ଝିଣ୍ଟିକା, ପୋକ ଜୋକ ସବୁ ଗିଳିବା ବେଳେ, ମନେ ହେଉଛି, ବିଚାରା କୀଟ ପତଙ୍ଗମାନଙ୍କର ସଦ୍‌ଗତି ପାଇଁ ସେମାନଙ୍କୁ ତାର ଜଠର ଭିତରକୁ ସେ ପଠାଇ ଦେଉଛି ସିନା, ନୋହିଲେ ଏହି ଜାନ୍ତବ ଉଦର-ପୂର୍ତ୍ତି ପାଇଁ ତାର ତିଳେ ହେଲେ ଆଗ୍ରହ ନାହିଁ।

ଚଳ୍‌ତି ଅର୍ଥରେ ତ କଜଳପାତିଟି ନିଶ୍ଚୟ ଶୋଷକ ଗୋଷ୍ଠୀର, ନିଜର ମେହନତ ଉପରେ ସେ ବଞ୍ଚେ ନାହିଁ। ସେ ଆରିଷ୍ଟୋକାଟ୍ ନିର୍ଘାତ୍ ବୁର୍ଜୋୟା। ବସ୍ତୁତଃ ଲେଖକ, କବି, ସଙ୍ଗୀତଜ୍ଞ ଓ ଶିଳ୍ପୀମାନେ ଯେଉଁମାନଙ୍କର ପ୍ରାଥମିକ ଖାଦ୍ୟ ବା ଦ୍ରବ୍ୟ ଉତ୍ପାଦନ ଓ ବଣ୍ଟନ ପ୍ରକ୍ରିୟାରେ କୌଣସି ଭୂମିକା ନାହିଁ, ସେମାନେ ତ ଏଇଆ ହେବାକୁ ବାଧ୍ୟ। କମ୍ୟୁନିଷ୍ଟ ଦେଶ ହେଉ ବା ଆମେରିକା ପରି ନିରୋଳ, ଫ୍ରି ଏଣ୍ଟରପ୍ରାଇଜ୍ ପୁଞ୍ଜିବାଦୀ ଦେଶ ହେଉ, ଏମାନେ ସେଠାରେ ବଞ୍ଚି ରହିପାରନ୍ତି କେବଳ ସମାଜର ଗ୍ରାହକତା ଉପରେ ନିର୍ଭର କରି। ସୋଭିଏତ୍ ରୁଷିଆରେ ରାଷ୍ଟ୍ର ନିୟନ୍ତ୍ରିତ ଲେଖକ ସମିତି ବା ସଂସ୍ଥାର ପ୍ରମାଣପତ୍ର ପାଇପାରିଲେ, ସେ ଦେଶର ଔପନ୍ୟାସିକ ଓ କବିମାନେ ପ୍ରିନ୍‌ସ ପରି ବଞ୍ଚିବାରେ କୌଣସି ଅସୁବିଧା ନାହିଁ। ଆମେରିକାରେ ସେହିପରି ଶୁଦ୍ଧ ଲେଖକ ଓ କବିମାନେ ବିଶ୍ୱବିଦ୍ୟାଳୟ ଅଥବା ଫୋର୍ଡ଼ ଫାଉଣ୍ଡେସନ୍ ପ୍ରଭୃତି ସଂସ୍ଥାମାନଙ୍କର ଦାକ୍ଷିଣ୍ୟ ଉପରେ ନିର୍ଭର କରି କେବଳ, ସ୍ୱଚ୍ଛନ୍ଦ ଭାବରେ ବଞ୍ଚିରହିପାରନ୍ତି। କିନ୍ତୁ ସାହିତ୍ୟ ରୁଚି ପାଇଁ ପ୍ରସିଦ୍ଧ ଭାରତରେ, କବି ଓ ଲେଖକ ଯେତେ ବଡ଼ ହୁଅନ୍ତୁ ନା କାହିଁକି, ଧର୍ମଶାଳା ଅଥବା ଦାତବ୍ୟ ହସ୍‌ପାତାଳର ୱାର୍ଡ଼ଛଡ଼ା, ସେମାନଙ୍କର ଅନ୍ୟ ଅନ୍ତିମ ଗତି ନାହିଁ। ତା' ନହେଲେ ହିନ୍ଦୀ ସାହିତ୍ୟର ବେଶ୍ ପ୍ରସିଦ୍ଧ ଔପନ୍ୟାସିକ ଜୈନେନ୍ଦ୍ର କୁମାର, ଅଲ୍‌ଇଣ୍ଡିଆ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ମେଡ଼ିକାଲ ସାଇନ୍‌ସେସ୍‌ରେ ସ୍ଥାନ ଟିକିଏ ନ ପାଇ କ'ଣ ନୂଆଦିଲ୍ଲୀର ଓଖ୍‌ଲା ଅଞ୍ଚଳରେ ଗୋଟାଏ ସନ୍ତସନ୍ତିଆ ଘରେ ପଡ଼ି ରହିଥାନ୍ତେ ? ପ୍ରତ୍ୟକ୍ଷ ଅନୁଭୂତିରୁ ଜଣାପଡ଼ିବ, ଯେଉଁ ଦେଶ ଦିନେ କବି କାଳିଦାସ ଓ ଅନ୍ୟ ମହାକବିମାନଙ୍କୁ ଜନ୍ମ ଦେଇଥିଲା, ସେ ଦେଶରେ ଆଜି ସାହିତ୍ୟ ଚର୍ଚ୍ଚା ହୋଇଛି ଏକ ଅଭିଶାପ... ତେଣୁ ବୋଧହୁଏ ରାଜଧାନୀର କଜ୍ଜଳପାତିକୁ ବଞ୍ଚିବା ପାଇଁ ଏହି ନୂତନ ଟେକ୍‌ନିକାଲ୍ ନୋ ହାଓ ଆୟତ୍ତ କରିବା ପାଇଁ ପଡ଼ିଛି। ଏହାକୁ ଯଦି ଶୋଷଣ ବୋଲି ଆକ୍ଷେପ କରାଯାଏ, ତା'ହେଲେ ତାହା ଆଦୌ ଯଥାର୍ଥ ହେବ ନାହିଁ। କଜ୍ଜଳପାତିର ମଧ୍ୟ ବଞ୍ଚିବାର ଅଧିକାର ରହିଛି।

୨୬/୦୭/୮୭

# ଶୁକଲ ପକ୍ଷୀ ଓ ଛଞ୍ଚାଣ ସମ୍ବାଦ

ଏବେ ଦିନେ ଭୁବନେଶ୍ୱରରୁ, କଟକ ଆସିବାବେଳେ, ମୋର ସ୍ୱାଭାବିକ ରାସ୍ତା ଛାଡ଼ି, ଫ୍ଲାଇ-ଓଭର ବାଟେ, ସହର ଭିତରକୁ ପଶିଲି ! କହିବାକୁ ଗଲେ, ୧୯୭୫ ପରଠାରୁ ଏଇ ପ୍ରାୟ ୧୨ ବର୍ଷ ମଧ୍ୟରେ, 'ବାଉନ୍ ବଜାର ତେପନ ଗଳି'- ପ୍ରସିଦ୍ଧ କଟକ ସହରର ଅନେକ ପରିବର୍ତ୍ତନ ହୋଇଯାଇଥିବା, ମୁଁ ଶୁଣିଥିଲି- କିନ୍ତୁ ସେ ସବୁ ଦେଖିବା ପାଇଁ ଓ ଚିହ୍ନିବା ପାଇଁ ଇତିମଧ୍ୟରେ ସମୟ ଓ ସୁବିଧା ନଥିଲା। ସେଦିନ ରବିବାର ଥିବାରୁ ରାସ୍ତାରେ ଟ୍ରାଫିକ୍‌ର ଭିଡ଼ ନଥିବା ଅନୁମାନ କରି, ମୁଁ ଫ୍ଲାଇଓଭର ବାଟେ ସହର ଭିତରକୁ ପଶିଲି.. ହଠାତ୍ ବୃଦ୍ଧାବସ୍ଥାରେ ଆର୍ଥିକ ସମୃଦ୍ଧି ଆସିଲେ ବିଚାରା ବୁଢ଼ା ମଣିଷଟି ତା'ର ଏହି ସମୃଦ୍ଧି ଓ ସ୍ୱଚ୍ଛଳତାକୁ ନେଇ, କଣ କରିବ, ଯେପରି ବୁଝିପାରେ ନାହିଁ, କଟକ ସହରର ଅବସ୍ଥା ଏବେ ସେଇଆ ହୋଇଛି ବୋଲି ବାଟରେ ଆସୁ ଆସୁ ମୋର ମନେହେଲା। ରାଣୀହାଟ ବାଟେ ଆସିବାବେଳେ ଅନହୂତି ଗୋଟିଏ ଟ୍ରଲି ରିକ୍ସା ବିପରୀତ ଦିଗରୁ ଆସି, ମୋ କାର୍ ଉପରକୁ ଚଢ଼ିଗଲା। ଡ୍ରାଇଭର୍‌ର ଏଥିରେ ଦୋଷ ନ ଥିଲା। ସେ କାର୍‌ରୁ ଓହ୍ଲାଇ ବିଶୁଦ୍ଧ କଟକୀରେ ତେଲେଙ୍ଗା ଟ୍ରଲିବାଲାକୁ ବେଶ୍ ଗାଳିଗୁଲଜ କଲା। ଟ୍ରଲିବାଲା ତା' ନିଜ ମାତୃଭାଷାରେ କ'ଣ ସବୁ ତାକୁ କହିଗଲା, ମୁଁ ତା'ର ବିନ୍ଦୁ ବିସର୍ଗ ବୁଝିପାରିଲି ନାହିଁ। ଡ୍ରାଇଭର୍‌କୁ ପାଖକୁ ଡାକି କହିଲି.... "ଚଟ୍‌ପଟ୍ ଗାଡ଼ି ଭିତରକୁ ପଳାଇ ଆସି, ଗାଡ଼ି ଷ୍ଟାର୍ଟ କରିଦିଅ ! ସାମନା ମଡ୍‌ଗାର୍ଡ୍‌ରେ ସ୍କ୍ରାଚ୍ ପଡ଼ିଯାଇଛି ତ ଗ୍ୟାରେଜ୍‌ରେ ରଙ୍ଗ ବୋଳିଦେଲେ ଚଳିବ।

କିନ୍ତୁ ଏଇ ବଚସା ଭିତରେ ରାସ୍ତାର ମସ୍ତାନମାନେ ଘେରି ଯାଇ, ତମ ଦେହରେ ବର୍ତ୍ତମାନ ଯେଉଁସବୁ ସ୍କ୍ରାଚ୍ ପକାଇ ଦେବେ, ଯେତେ ରଙ୍ଗ ବୋଳିଲେ ବି ସେ ସ୍କ୍ରାଚ୍ ସବୁ ଯିବ ନାହିଁ। ଏ ସହରରେ ଟ୍ରାଫିକ୍‌ର ନିୟମ ସବୁ ବିଚିତ୍ର ! ତୁମେ ନୂଆଲୋକ ବୋଲି ଜାଣି ନାହିଁ। ଏ ସହରର ରାସ୍ତାରେ ପ୍ରଥମେ ସେଇ ଆଦିମ ଶଗଡ଼ର ହେଉଚି ଅଗ୍ରପ୍ରାଧାନ୍ୟ ! ତା' ତଳକୁ କ୍ରମାନ୍ୱୟରେ ଟ୍ରଲି, ସାଇକଲ୍ ରିକ୍ସା, ସାଇକେଲ୍, ସ୍କୁଟର,

ମଟର ସାଇକେଲ୍ ଓ ଲୁନା ! ଶଗଡ଼ିଆର ସବୁ ଭୁଲ ସତ୍ତ୍ୱେ କାର୍‌ବାଲା ଶଗଡ଼ ଦେହରେ ସାମାନ୍ୟ ଧକ୍‌କା ଲଗାଇଲେ ସୁଦ୍ଧା ଏଠାରେ କାର୍‌ବାଲା ଶଗଡ଼କୁ କ୍ଷତିପୂରଣ ଦେବା ପାଇଁ ବାଧ୍ୟ। ନ ଦେଲେ, ରାସ୍ତାର ମସ୍ତାନମାନେ ତାହା ଠିକ୍ ଆଦାୟ କରନ୍ତି; ଯଦ୍ୟପି ଶଗଡ଼ିଆ, ଟ୍ରଲିବାଲା ବା ରିକ୍‌ସାବାଲା ସେ କ୍ଷତି ପୂରଣ ପୂରା ଅଙ୍କରେ ପାଆନ୍ତି କି ନାହିଁ, ତାହା ଅଲଗା କଥା ! ଟ୍ରାଫିକ୍ କନେଷ୍ଟବଲମାନେ ଷ୍ଟାଣ୍ଡରେ ଠିଆ ହୋଇ ଭାରତନାଟ୍ୟମ ମୁଦ୍ରାରେ ଅଙ୍ଗଭଙ୍ଗୀ କରି, ବିଭିନ୍ନ ମୁଦ୍ରା ଦେଖାଇ ଏ ଦୃଶ୍ୟସବୁ ବେଶ୍ ଉପଭୋଗ କରନ୍ତି। ଏ ସହରର ଟ୍ରାଫିକ୍ ନିୟମରେ ତୁମେ ଏଥିପାଇଁ ସର୍ବେବ ଭାବରେ ଦୋଷୀ। ଚୁପ୍‌ଚାପ ଘରକୁ ପଳାଅ... !"

ମୋର ମନେହେଲା, ଏ ସହରର ଟ୍ରାଫିକ୍ ନିୟୟ ନିଶ୍ଚୟ କିମ୍ଭୁତ ମନେ ହୋଇପାରେ, ମାତ୍ର ଭାରତର ଅନ୍ୟତମ ପ୍ରାଚୀନ ନଗରୀ ଆମର ସନାତନ କଟକ ପରି ସାରା ପୃଥିବୀରେ ଏମିତି କ'ଣ ଆଉ ଅନ୍ୟ ସହର କୋଉଠି ଗୋଟିଏ ହେଲେ ଅଛି, ଯାହାର ନାମ ଆଗଆଡୁ ପଢ଼ିଗଲେ ଯାହା ପଛଆଡୁ ପଢ଼ିଗଲେ ବି ସେଇଆ ? ହଁ..... ଇଏ ପୁରାଣ ପ୍ରସିଦ୍ଧ କଟକ, ଯାହାର ନାମ ପୁରୁଣା ରେକର୍ଡ଼ମାନଙ୍କରେ ଏବେ ସୁଦ୍ଧା ରହିଛି, କୋଦିଣ୍ଡା ଦଣ୍ଡପାଟ। ମାଦଳା ପାଞ୍ଜିର ବର୍ଣ୍ଣନା ଅନୁସାରେ, ଅନଙ୍ଗଭୀମ ଦେବ ଦିନେ ଏଠାରେ ବୁଲୁବୁଲୁ ଦେଖିଲେ ଗୋଟିଏ 'ଶୁକଳ' ପକ୍ଷୀ ବା ବଗ ଗୋଟିଏ ଛଞ୍ଚାଣକୁ ମାଡ଼ି ବସିଛି ! ଅନଙ୍ଗଭୀମ ଦେବ ଏହି କିମ୍ଭୁତ ଦୃଶ୍ୟ ଦେଖି, ଏଠାରେ ଅଭିନବ 'ବାରଣାସୀ' ବା କଟକ ସହର ଓ ଦୁର୍ଗ ସ୍ଥାପନ କରି, ତାଙ୍କର ରାଜଧାନୀ ନିର୍ମାଣ କରିଥିଲେ। ସେଇ ଦିନୁ, ଏ ମାଟିରେ ବରାବର ବଗମାନେ ହିଁ ଛଞ୍ଚାଣମାନଙ୍କୁ କାବୁ କରି ଆସୁଛନ୍ତି !

ଓଡ଼ିଶାର ଶେଷ ସ୍ୱାଧୀନ ସମ୍ରାଟ ମୁକୁନ୍ଦ ହରିଚନ୍ଦନଙ୍କୁ କଳାପାହାଡ଼ ନାମରେ ପରିଚିତ ସୁଲେମାନ୍ କରାନୀ ସମ୍ମୁଖ ଯୁଦ୍ଧରେ ତ ପରାସ୍ତ କରି ନଥିଲେ ! ଶିଖି-ମନାଇଙ୍କ ଷଡ଼ଯନ୍ତ୍ରରେ କଳାପାହାଡ଼ ମୁକୁନ୍ଦଦେବଙ୍କୁ ପଛରୁ ଛୁରୀଭୁସି ହତ୍ୟାକରିଥିଲା। ଏଇ ତ "ଶୁକଳ ପକ୍ଷୀ" ଛଞ୍ଚାଣକୁ ମାଡ଼ି ବସିଥିବା ପରି କଥା ! ଇଂରେଜ ଐତିହାସିକମାନେ ପୁଣି ଲେଖିଛନ୍ତି: ୧୮୦୩ ଖ୍ରୀଷ୍ଟାବ୍ଦରେ ଇଷ୍ଟ ଇଣ୍ଡିଆ କମ୍ପାନୀର ପ୍ରାୟ ୩୦ ଜଣିଆ ଫଉଜ, କ୍ୟାପ୍‌ଟେନ୍ ମେଲ୍‌ଭୀଲ୍‌ଙ୍କ ନେତୃତ୍ୱରେ ପୁରୀ ଆଡୁ ଆସି ଯେତେବେଳେ ବାରବାଟୀ ଦୁର୍ଗ ପରିଖାର ଦକ୍ଷିଣ ପାଖରେ ଦୁର୍ଗ ଆକ୍ରମଣ ପାଇଁ ଡିନାମାଇଟ୍ ସବୁ ଖଞ୍ଜିଲେ, ସେତେବେଳେ କେହି ସେମାନଙ୍କର ସାମାନ୍ୟ ପ୍ରତିରୋଧ କରି ନଥିଲେ ! ଓଲଟି ସହରର କୌତୂହଳୀ ଜନତା ଉଚ୍ଚା ଉଚ୍ଚା ଗଛମାନଙ୍କ ଉପରେ ଚଢ଼ି ଏହି ଅଭିନବ ଦୃଶ୍ୟ ଉପଭୋଗ କରୁଥିଲେ ! କମ୍ପାନୀ ସିପାହୀମାନଙ୍କୁ ଡିନାମାଇଟ୍‌ରେ ଅଗ୍ନି ସଂଯୋଗ କରିବାପାଇଁ ସୁଦ୍ଧା ପଡ଼ିନଥିଲା ! ବାରବାଟୀ ଦୁର୍ଗରେ ଯେଉଁ ମରହଟ୍ଟା ସୈନ୍ୟମାନେ ରହିଥିଲେ, ସେମାନେ ବିନା

ପ୍ରତିରୋଧରେ ଦୁର୍ଗ ଛାଡ଼ି, ମହାନଦୀ ଡେଇଁ ପଶ୍ଚିମମୁହାଁ ପଳାଇଥିଲେ। କିନ୍ତୁ ସେଦିନ କ୍ୟାପଟେନ ମେଲଭୀଲ ଓ ତାଙ୍କର ମୁଷ୍ଟିମେୟ ସିପାହୀମାନଙ୍କର ସାମାନ୍ୟ ପ୍ରତିରୋଧ କରାଯାଇଥିଲେ, ଓଡ଼ିଶା ଇତିହାସ ନିଶ୍ଚୟ ଅନ୍ୟ ଆକାର ଧରିଥାଆନ୍ତା। ଇଏ ମଧ୍ୟ ଛଞ୍ଚାଣକୁ ଶୁକଳ ପକ୍ଷୀ ମାଡ଼ି ବସିବା ପରି, ସେଇ ପୁରୁଣା କଥା। ଏ ସହରର ଲୋକେ କଟକ ଓଡ଼ିଶାର ବିଦ୍ୟା ନଗରୀ ବୋଲି ଯଥାର୍ଥରେ ଆତ୍ମପ୍ରସାଦ ଅନୁଭବ କରିଥାଆନ୍ତି। ସବୁ ବୁଦ୍ଧିଜୀବୀଙ୍କର ଇଏ ପେଣ୍ଠ। ମାତ୍ର ମୋର ଯେତେଦୂର ସ୍ମରଣ ହେଉଛି, ସ୍ୱାଧୀନତା ପ୍ରାପ୍ତି ପରଠାରୁ ଗତ ଚାଳିଶ ବର୍ଷ ମଧ୍ୟରେ, ଏଇ ସହରର ମ୍ୟୁନିସିପାଲିଟି ମାତ୍ର ବୋଧହୁଏ ଥରେ ବା ଦୁଇଥର ପୂରା ସମୟ ଲୋକନିର୍ବାଚିତ କାଉନସିଲରମାନଙ୍କ ଦ୍ୱାରା ପରିଚାଳିତ ହୋଇ ଆସିଛି। ନୋହିଲେ କଲେକ୍ଟରମାନେ ଓଡ଼ିଶାର ଏହି ପ୍ରାଚୀନ ସ୍ୱାୟତ୍ତ ଶାସିତ ସଂସ୍ଥାର କର୍ଣ୍ଣଧାର ରୂପେ ବରାବର କାର୍ଯ୍ୟ କରି ଆସିଛନ୍ତି। ବିଦ୍ୟାନଗରୀର ବୁଦ୍ଧିଜୀବୀମାନେ, ଆତ୍ମଶାସନ କ'ଣ ତଥାପି ବୁଝିପାରି ନାହାନ୍ତି। ମନେପଡୁଛି, ଜାତୀୟଗୌରବ ମଧୁସୂଦନଙ୍କ ଆନ୍ଦୋଳନ ଫଳରେ ଊନବିଂଶ ଶତାବ୍ଦୀର ଶେଷ ପାଦରେ ଏ ସହରର ଲୋକ ନିର୍ବାଚିତ ମ୍ୟୁନିସିପାଲିଟି ପ୍ରତିଷ୍ଠିତ ହୋଇଥିଲା। ମାତ୍ର ଏହାର ପ୍ରଥମ ନିର୍ବାଚନରେ, ସ୍ୱାୟତ୍ତ ଶାସନର ପ୍ରବର୍ତ୍ତକ ମଧୁସୂଦନଙ୍କୁ ପରାସ୍ତ କରିଥିଲେ, କମିଶନର ଅଫିସର ଜଣେ ଅମଲା, ଦର୍ପନାରାୟଣ କାନୁନ୍‌ଗୋ।

ଇଏ ତ ସେଇ ଶୁକଳ ପକ୍ଷୀ ଛଞ୍ଚାଣକୁ ମାଡ଼ି ବସିବାର ଏକ କ୍ଲାସିକାଲ୍ ଉଦାହରଣ ।

ତେଣୁ ସେଦିନ ସଦର ରାସ୍ତା ଉପରେ ମୋ କାର୍‌କୁ ଟ୍ରଲି ରିକ୍‌ସାଟି ଯେପରି ମାଡ଼ିଗଲା, ସେଥିରେ ମୁଁ ଆଦୌ ବିସ୍ମିତ ହୋଇନଥିଲି କିମ୍ବା ହେଉନାହିଁ।

୦୨/୦୮/୮୭

# କଳାମାଣିକ ବାଇଗଣ ଓ ଦଳେଇଘାଇ ପଇଡ଼

ମୋ ପରି, ଏପରି କେତେକ ନିର୍ଘାତ କଟ୍‌କୀ ଅଛନ୍ତି, ଯେଉଁମାନଙ୍କ ପାଇଁ କଟକର 'ତେପନ ବଜାର ଛପନ ଗଳି'ର ଗୋଟାଏ ବିଶେଷ ଆକର୍ଷଣ ଅଛି। ଆମେ ଭୂ-ସ୍ୱର୍ଗ ସୁଇଜରଲାଣ୍ଡ ହେଉ ବା କାଶ୍ମୀର ହେଉ, ଦିଲ୍ଲୀ ବା ବମ୍ବେ ପରି ମହାନଗର ହେଉ, ଯେଉଁଠି ରହିଲେ ବି ବେଳେ ବେଳେ ନିଃସଙ୍ଗ ମୁହୂର୍ତ୍ତମାନଙ୍କରେ କଟକ ସହରର ପରିଚିତ ଧ୍ୱନି, ଗନ୍ଧ, ଗଳି ରାସ୍ତାରେ ବୁଲାବିକାଳି ହକରମାନଙ୍କର ବିଜ୍ଞାପନୀ ସଙ୍ଗୀତ ଆଉ ଷେଣ୍ଢ ଲଢ଼େଇର ଉତ୍ତେଜନା ଇତ୍ୟାଦି ଇତ୍ୟାଦି ପାଇଁ ଆମମାନଙ୍କର ମନ ହାଇଁପାଇଁ କରେ। କଟକ ପାଇଁ 'ନଷ୍ଟାଲଜିଆ' ଆମେ ଛାଡ଼ି ପାରୁନାହିଁ। ରାଜଧାନୀର ଗୋଟାଏ ହାକିମପଡ଼ାରେ ଏତେ ଦିନ ରହିରହି ମୁଁ ଗୋଟିଏ ଅଭାବ ଅନୁଭବ କରୁଥିଲି- ବିକ୍ରୀପାଇଁ ବିଜ୍ଞାପନୀ-ସଙ୍ଗୀତ। ଟେଲିଭିଜନ ବିଜ୍ଞାପନ କାର୍ଯ୍ୟକ୍ରମମାନଙ୍କରେ ସୁରେଲୀ, 'ଜିଙ୍ଗଲ୍' ବା ପଦେପଦେ ଗୀତଠାରୁ, ଏହା ସ୍ୱତନ୍ତ୍ର- ଯଦ୍ୟପି କଥାଟି ସମାନ। ଟେଲିଭିଜନର ନିଷ୍ପ୍ରାଣ 'ଜିଙ୍ଗଲ'ରେ ଅଛି କେବଳ ପେଷାଦାରୀ ଛଟକ। ମାତ୍ର କଟକ ସହର ଗଳିରାସ୍ତାର ହକରମାନଙ୍କର ବିଜ୍ଞାପନୀ ସଙ୍ଗୀତରେ ଥାଏ ଜୀବନ ଆଉ ରସିକତା।

ମୋର ଘର ସାମନା ରାସ୍ତା ଦେଇ ସେଠାରେ ପ୍ରତିଦିନ ସକାଳେ ଗୋଟିଏ ଲୋକ ଚିତ୍କାର କରି କରି ଯାଏ- "ଖୋଳେଇବ, ଶିଳ-ଖୋଳେଇବ" ସକାଳର ନିଛାଟିଆ ରାସ୍ତାରେ ତାର ଚିତ୍କାର ପ୍ରତିଧ୍ୱନିର ତରଙ୍ଗ ସୃଷ୍ଟି କରି, ଦୂରରେ ପୁଣି ମିଳାଇଥାଏ। ପ୍ରଥମେ ଯେଉଁଦିନ ମୁଁ ଏ ଚିତ୍କାର ଶୁଣିଲି, ସେଦିନ ମୁଁ ପ୍ରକୃତରେ କିଛି ସମୟପାଇଁ ସ୍ତବ୍ଧ ହୋଇ ରହିଗଲି। ଝରକାବାଟେ ଲୋକଟି ଦେଖାଯାଉଥିଲା ଖର୍ବକାୟ ! ପିନ୍ଧିଥିଲା, ଆଣ୍ଠୁ ତଳକୁ ଅଳ୍ପ ଝୁଲୁଥିବା ଖଣ୍ଡେ କୋଚଟ ଧୋତି। ଦେହରେ ଖଣ୍ଡେ ଗେଞ୍ଜି। ବିକ୍ରୀପାଇଁ କେବଳ ମେହନତ ବ୍ୟତୀତ ତାର ଅନ୍ୟ କିଛି ପଣ୍ୟ ନଥିଲା। ମାତ୍ର ତା'ର ସେହି ଚିତ୍କାର ଭିତରେ ମୁଁ ସେଦିନ ଶୁଣି ପାରିଥିଲି, ଗୋଟାଏ ଅତଳ ଗହ୍ୱର ଭିତରୁ ଗୋଟାଏ ଆର୍ତ୍ତ ପୀଡ଼ିତ ଆତ୍ମାର ଅନନ୍ତ ଯୁଗର ଆର୍ତ୍ତନାଦ। ଆଜିର ମିକ୍‌ସୀ, ଗ୍ରାଇଣ୍ଡର ଯୁଗରେ ଏଇ

ରାଜଧାନୀରେ କେତେ ଜଣ ବା ଶିଳ ଖୋଳାଇବାପାଇଁ ଏ ଲୋକଟିର ମେହନତ କିଣୁଥିବେ ? ସ୍ଥିର କରି ପାରିଲି ନାହିଁ। ଛତା ବୋଝେଇ ଶଗଡ଼ ବି ଯାଏ ସେଇବାଟେ ପ୍ରତିଦିନ ସକାଳେ ! ଜୀବିକାର୍ଜନ ଓ ଖାଦ୍ୟସଂଗ୍ରହର ତାଡ଼ନାରେ, ମଣିଷ ଓ ପଶୁର ସେଇ ସମ୍ମିଳିତ, ଚିରନ୍ତନ ସଂଗ୍ରାମ, ଯାହା ଦିନେ ଆରମ୍ଭ ହୋଇଥିଲା, ନବ୍ୟ-ପ୍ରସ୍ତର ଯୁଗରେ ! ଆଜିର ଇଲେକ୍‌ଟ୍ରୋନିକ୍‌ସ କମ୍ପ୍ୟୁଟର ଓ ସୁପର କମ୍ପ୍ୟୁଟର ଯୁଗରେ ସୁଦ୍ଧା, ତଥାପି ନବ୍ୟ-ପ୍ରସ୍ତର-ଯୁଗର ସେଇ ସଂଗ୍ରାମ ଶେଷ ହେଲା ନାହିଁ। କିନ୍ତୁ ଏଇ ଛତାବାଲାର ଚିତ୍କାର ନଥାଏ। ନିଦରେ ବିଳବିଳେଇବା ପରି ସେ ବେଳେବେଳେ ଡାକିଦିଏ 'ଛତା'। ତାର ବୋଧହୁଏ ଅର୍ଥନୀତିର ପରିଭାଷାରେ 'ସେଲରସ୍ ମାର୍କେଟ୍‌' । ଆଉ ଦିନେ ମୁହଁସଞ୍ଜର ଅଳ୍ପ ପୂର୍ବରୁ ଗୋଟାଏ ଗୁପ୍‌ଚୁପ୍‌ବାଲାର ଚିତ୍କାର ଶୁଣି ଚମକି ପଡ଼ିଥିଲି। ଗୋଟାଏ ଠେଲାଗାଡ଼ି ଠେଲିଠେଲି ସେ ଚିତ୍କାର କରି କରି ତା'ର ପଣ୍ୟ ବିକ୍ରି କଲାବେଳେ, ମନେ ହେଉଥିଲା, ଲୋକଟା ଯେପରି ଅକଥନୀୟ ଯନ୍ତ୍ରଣାରେ ଆର୍ତ୍ତନାଦ କରୁଛି।

କିନ୍ତୁ ଆମ କଟକ ସହରରେ ଗଳି ରାସ୍ତାମାନଙ୍କରେ ମୁଣ୍ଡବୋଝିଆ ବୁଲାବିକାଳୀମାନେ ଅପେକ୍ଷାକୃତ ଅଧିକ ରସବନ୍ତ। କେତେବର୍ଷ ତଳେ ବିଡ଼ାନାସୀ ପଠାଆଡ଼ୁ, ବୁଢ଼ାଟିଏ, ପ୍ରତିଦିନ ବାଇଗଣ ବୋଝ ମୁଣ୍ଡ ଉପରେ ରଖି ବିକ୍ରି କରିଯାଏ। ଗଳି ମୁଣ୍ଡ ଆଡୁ ଚେଁ ଚେଇଁଆ ଗଳାରେ ତା'ର ଡାକ ଶୁଭେ- "ମୋ କଳା ମାଣିକରେ"। ଦିନେ ସେଇ ମୁଣ୍ଡବୋଝିଆ ବୁଢ଼ାଟିର "କଳାମାଣିକ" ବସ୍ତୁଟି ଦେଖିବାପାଇଁ ପ୍ରବଳ ଆଗ୍ରହରେ ତାକୁ ପାଖକୁ ଡାକିଲି। ଟୋକେଇ ଭିତରେ ଥିଲା ବୋଝେ କଳା ମଚମଚ ବାଇଗଣ। କିନ୍ତୁ ଅଧିକାଂଶ ସେଥିରୁ ପୋକରା ! ବିରକ୍ତିରେ ମୁଁ କହିଲି, "ଏଇ ପୋକରା ବାଇଗଣଗୁଡ଼ାକୁ ତମେ କଳାମାଣିକ ଡାକୁଚ ! ବୁଢ଼ା ଅମ୍ଳାନ ଭାବରେ ପାକୁଆ ପାଟିରେ ହସି ହସି ଉତ୍ତର ଦେଲା, "ବାବୁ ! ଇଏ ପଠା ବାଇଗଣ। ଖାଲି ତ ନହୁଣୀ !" ଉଲ୍ଲେଖ କରିବା ନିଷ୍ପ୍ରୟୋଜନ। ତା'ର ନହୁଣୀରେ ମୋର ପ୍ରୟୋଜନ ନଥିଲା। ଆଉ ଦିନେ ବାଙ୍କାବଜାର ପରିବା ମାର୍କେଟ୍ ନାମରେ ପରିଚିତ ଗୋଟାଏ ଅରାଜକତା ଭିତରେ ଖଣ୍ଡେ ରିକ୍‌ସାରେ ମୁଁ କୌଣସିମତେ, ଷଣ୍ଢ, ଗାଈ, ରାସ୍ତା ଉପରେ ଜମେଇ ବସିଥିବା ମୁଣ୍ଡବୋଝିଆ ପରିବା ବିକାଳୀ ଆଉ ପିମ୍ପୁଡ଼ି ମେଳା ପରି, ଗରାଖମାନଙ୍କ ଭିଡ଼ ଭିତରେ ଆତ୍ମରକ୍ଷା କରିକରି ଚାଲିଛି। ମୋ କାନରେ ପଡ଼ିଲା, ଗୋଟିଏ ପଇଡ଼ ବିକାଳୀର ଡାକ। "ଦଳେଇ ଘାଇ ପଇଡ଼ ସରିଲା, ସରିଲା।" କିନ୍ତୁ ଦଳେଇଘାଇ ଅଞ୍ଚଳରେ ସେପରି ତ ନଡ଼ିଆଗଛ ମୁଁ ଦେଖିନାହିଁ। ତା'ହେଲେ ଦଳେଇଘାଇ ପଇଡ଼ କ'ଣ ? ପଇଡ଼ ବିକାଳି ହସିହସି ଉତ୍ତର ଦେଲା, "ଆଜ୍ଞା ! ଦଳେଇ ଘାଇରେ ଯେମିତି ଅକାତପାଣି, ଏ ପଇଡ଼ରେ ସେମିତି ପାଣି !" ଏ ଦଳେଇଘାଇ ପଇଡ଼ ହୋଇଥିବାରୁ, କିଛି ଚଢ଼ା ଦରରେ ଦୁଇଟା ପଇଡ଼

ରିକ୍ସାରେ ପକାଇ ଘରକୁ ଆଣିଲି। ଘରେ ଆନୁଷ୍ଠାନିକ ଭାବରେ ଦଳେଇଘାଇ ପଇଡ଼ର ଉଦ୍‌ଘାଟନ ବା ଉନ୍ମୋଚନ ହେବା ପରେ ଦେଖାଗଲା, ଦୁଇଟାଯାକ ଦଳେଇଘାଇ ପଇଡ଼ ମିଶି ସୁଦ୍ଧା ଗିଲାସ ଭର୍ତ୍ତି ହେଲା ନାହିଁ। ବୋକା, ନିର୍ବୋଧ ବୋଲି ଘରେ ନିନ୍ଦା, ଅପଯଶ ଶୁଣିବା ସାର ହେଲା ମାତ୍ର। ସେଇଠି ମଧ୍ୟ ଶୁଣିଥିଲି, ବାଇଗଣବାଲାମାନେ ଡାକୁଛନ୍ତି- 'ଅମଡ଼ାବାଟ ବାଇଗଣ, ଟଙ୍କାକୁ ଦି ଦି କିଲୋ, ସରିଲା, ସରିଲା।' କିନ୍ତୁ ଟଙ୍କାକୁ ଦି କିଲୋ ଅମଡ଼ାବାଟ ବାଇଗଣ ଲୋଭରେ କିଣିବା ବେଳକୁ ଦେଖାଗଲା, କିଲେ ବାଇଗଣ ଦାମ୍ ଦୁଇଟଙ୍କା। ସେଦିନର ଦଳେଇଘାଇ ପଇଡ଼ର ଅଭିଜ୍ଞତା ପରେ ମୁଁ ଆଉ ଅମଡ଼ାବାଟ ବାଇଗଣ କିଣିବାପାଇଁ ସାହସ କଲିନାହିଁ ! ମାତ୍ର ବସନ୍ତ କୁମାରୀ ପଟ୍ଟନାୟକଙ୍କର ବହୁ ଆଦୃତ 'ଅମଡ଼ାବାଟ' ଉପନ୍ୟାସ ନାମରେ ଇଏ ବାଇଗଣର ନାମକରଣ କାହିଁକି କିପରି ହେଲା, ତାହାର ରହସ୍ୟ ମୁଁ ଏବେ ସୁଦ୍ଧା ଭେଦ କରିପାରିଲି ନାହିଁ।

ଶଙ୍କରାଚାର୍ଯ୍ୟଙ୍କ ଜୀବନୀରେ ପଢ଼ିଥିଲି, ଶଙ୍କରାଚାର୍ଯ୍ୟ ଯେତେବେଳେ ବୈଦିକ ସ୍ମାର୍ତ୍ତ ପଣ୍ଡିତ ମୁଣ୍ଡନ ମିଶ୍ରଙ୍କ ସହିତ ଶାସ୍ତ୍ର ପ୍ରତିଯୋଗିତାପାଇଁ ବାରଣାସୀ ଆସିଲେ, ସେତେବେଳେ ମୁଣ୍ଡନ ମିଶ୍ରଙ୍କ ଘର କେଉଁଠି ବୋଲି ପଚାରିବାରୁ, ଲୋକେ ତାଙ୍କୁ କହିଲେ, "ଯେଉଁ ଘର ଆଗରେ ଦେଖିବ, ପଞ୍ଜୁରୀରେ ଶୁଆଟିଏ ବସି ବେଦମନ୍ତ୍ର ଉଚ୍ଚାରଣ କରୁଛି, ସେଇ ଘର ହେଉଛି, ମୁଣ୍ଡନ ମିଶ୍ରଙ୍କ ଘର।" ସେତେବେଳେ ବାରାଣସୀରେ ସାଧାରଣ ଲୋକେ କାହିଁକି ଶୁଆସାରୀମାନେ ସୁଦ୍ଧା କିପରି ବେଦ ନିପୁଣ- ଇଏ ଥିଲା ତାହାର ଏକ ସୂଚନା। ଆଉ ମୁଣ୍ଡନ ମିଶ୍ର ତ ମୁଣ୍ଡନ ମିଶ୍ର !

କଟକ ସହରର ଗଳି ରାସ୍ତାମାନଙ୍କରେ, ମୁଣ୍ଡ-ବୋଝିଆ ବୁଲାବିକାଳିମାନଙ୍କର ଡାକ ଶୁଣି, କିଏ କହିବାକୁ ସାହସ କରିବ ଯେ ଆମ କଟ୍‌କୀମାନଙ୍କର ରସଜ୍ଞାନ ନାହିଁ ବୋଲି ! ଗାଁ ପରିମଳ ଧୋବାଟୁଠରୁ ଜଣା ବୋଲି କିଏ ନଜାଣେ ?

୦୯/୦୮/୮୭

# ସଂସ୍କୃତିର ଯୁଗଳବନ୍ଦୀ: ଆମ କଟ୍‌କୀ ଉପଭାଷା

ସତ କହିଲେ, ଆମେ ଯେଉଁମାନେ ନିଜକୁ କଟ୍‌କୀ ବୋଲି ପରିଚୟ ଦେଉ, ପ୍ରକୃତରେ କିନ୍ତୁ ସେହି ଅସଲୀ ଖାନ୍‌ଦାନୀ କଟ୍‌କୀ ନୋହୁଁ। ଜୀବିକା ଓ ବୃତ୍ତି ସନ୍ଧାନରେ ଆମେ ସବୁ ମଫସଲମାନଙ୍କରୁ ଆସି, ଉଡ଼ା ଚଢ଼େଇ ପରି ଏଠାକୁ ବସାବାନ୍ଧି ରହୁ ରହୁ କ୍ରମେ କେତେ ପୁରୁଷ ଧରି ଏଠାରେ ରହିଯାଇଛୁ। ମାତ୍ର ଖାଣ୍ଟି କଟ୍‌କୀମାନଙ୍କର କଥିତ ଭାଷା ଓ ଚାଲିଚଳଣି ସହିତ ଆମମାନଙ୍କର ସଂପର୍କ ଅତି କ୍ଷୀଣ। ଖାଣ୍ଟି କଟ୍‌କୀମାନେ ଆଜି ମଧ୍ୟ ରହିଛନ୍ତି, କଟକ ସହରର "ତେପନ ଗଳି ମାନଙ୍କରେ"। ଏଇ ମୌସୁମୀରେ, ଆଜି ବି ସେମାନଙ୍କର ସିଲୁବାଡ଼ ଉପରେ ଜହ୍ନିଲଟା ମାଡୁଛି ଓ ସେଥିରେ ଜହ୍ନିଫୁଲ ଫୁଟୁଛି। ଏବେ ବି ସେଇ ଗଳି ଓ ବସ୍ତିମାନଙ୍କରେ ଖରାବେଳେ ଦେବୀମେଲା ହେଉ ବା ସାଇମଣ୍ଡପ ଉପରେ ଝଙ୍କାଳିଆ ବରଗଛ ଛାଇରେ ପଶାଖେଳ ପୂରାଦମ୍‌ରେ ଚାଲିଛି। ଏବେ ବି ରାମନବମୀ ହେଉ ବା ଚନ୍ଦନଯାତ୍ରା ମୌଜର ନାଚ ହେଉ; ବିଚ୍ ରାସ୍ତା ଉପରେ ଚାଲୁଛି। ସଂକ୍ଷେପରେ କହିଲେ, ଏଇ ସହରରେ ପ୍ରଥମେ ସହାବସ୍ଥାନ କରି ରହିଥିଲା, ଦୁଇଟି ସଂସ୍କୃତି ଆଉ ଦୁଇଟି ପୃଥିବୀ। ଗୋଟିଏ ଖାଣ୍ଟି କଟ୍‌କୀ ଅନ୍ୟଟି ତଥାକଥିତ କଟ୍‌କୀ। କିନ୍ତୁ ସନାତନ କଟକର ସେ ଗ୍ରାମ୍ୟତା ଆଜି ଆଉ ନାହିଁ। କଟକରେ ବର୍ତ୍ତମାନ ବହୁ ସଂସ୍କୃତି, ବହୁ ଭାଷା ଓ ବହୁ ପୃଥିବୀର ଭିଡ଼। କଟ୍‌କୀ ସମସ୍ତେ ନାଁକୁ ମାତ୍ର; ତା'ରି ଭିତରେ କିନ୍ତୁ ଖାନ୍‌ଦାନୀ କଟ୍‌କୀମାାନେ ସେମାନଙ୍କ ବସ୍ତିମାନଙ୍କରେ ଅପରିବର୍ତ୍ତିତ ଓ ଅପରିବର୍ତ୍ତନୀୟ ହୋଇ ରହିଯାଇଛନ୍ତି।

ପଚାଶ ବର୍ଷ ତଳେ, ମୁଁ ଯେତେବେଳେ ଗୋଟାଏ ନିପଟ ମଫସଲରୁ କଟକ ସହରକୁ କଲେଜରେ ପଢ଼ିବାପାଇଁ ଆସେ, ମୋତେ ରହିବାକୁ ପଡ଼ିଥିଲା, ଏହିପରି ପୁରୁଣା ବସ୍ତିରେ, ଗୋଟାଏ ମେସ୍‌ରେ। ପ୍ୟାଡ଼ଲ୍ ଉପରେ ପାଦ ରଖି ସାଇକେଲ୍ ଚଢ଼ିବାରେ ମୁଁ ସେତେବେଳେ ଆଦୌ ଅଭ୍ୟସ୍ତ ନଥିଲି। ହପ୍ ଉପରେ ପାଦ ରଖି କିଛି ବାଟ ଡିଙ୍କି କୁଟିବା ପରି କୁଦି ହେବାପରେ ଯାଇ ମୁଁ ସିଟ୍ ଉପରେ ବସି ପାରୁଥିଲି। ଏ ଥିଲା

ସେତେବେଳକା ସାଇକେଲ୍ ଚଢ଼ିବାର ମଫସଲୀ କାୟଦା । ଦିନେ ମେସ୍ ଗଳି ରାସ୍ତାରେ ଏଇପରି ଭାବରେ ସାଇକେଲ୍ ଉପରେ କୁଦାମାରି ବସି କଲେଜ ବାହାରିଛି, ରାସ୍ତାକଡ଼ର ଗୋଟାଏ ପାନ ଦୋକାନ ସାମନାରେ ବେଞ୍ଚ୍ ଉପରେ ବସିଥିବା କେତେଟା ଟୋକା ମୋତେ ଲକ୍ଷ୍ୟ କରି 'କମେଣ୍ଟ' ମାରିଲେ; "ଏଟା ପକ୍କା ମଫସଲୀ ଅଛି ।" କଟକୀ ଉପଭାଷା ସହିତ ସେଇଦିନ ହୋଇଥିଲା ମୋର ପ୍ରଥମ ପରିଚୟ । ତା'ପରେ ତ ବସ୍ତି ସହିତ ସଂପର୍କ ଯେତିକି ବଢ଼ିଲା, କ୍ରମେ କଟକୀ ଉପଭାଷା ସହିତ ପରିଚୟ ସେତିକି ନିବିଡ଼ତର ହେଲା । ମାର୍କେଟ୍‌ରେ ଦିନେ ଗୋଟାଏ ମୁଣ୍ଡବୋଝିଆ ନଡ଼ିଆବାଲା 'ନଡ଼ିଆ ଗୋଟି ହାଙ୍କିଲା ଦଶ ପଇସା !' ମୁଁ ଆର୍ତ୍ତନାଦ କଲି, ଗାଁରେ ତ ନଡ଼ିଆ ଗୋଟି ପାଞ୍ଚ ପଇସା । ଗରାଖ ସାଙ୍ଗରେ ଦର ମୁଲାଇବାପାଇଁ ନଡ଼ିଆ ବିକାଳିର କିନ୍ତୁ ବେଳ ନଥିଲା । ସେ କହିଲା, "ହଉ ଲଡ଼ିଆ ଗୋଟି ଲ ପଇସା, ଲବ ତ ନିଅ, ଲଇଲେ ବାଟ ପଡ଼ିଚି ଚାଲିଯାଅ...ହାଃ !" ସାଇରେ ମହାଦେବ ମେଢ଼ ତିଆରି ହେବ । ବସ୍ତିରେ ମାମଲତକାରମାନେ କାନ୍ଧରେ ପଖାଳକରା ଗାମୁଛା ପକାଇ ଚାନ୍ଦା ପାଇଁ ଆମ ମେସ୍‌କୁ ଆସି ମେସ୍ ମୁରବୀଙ୍କୁ କହିଲେ... "ହାମ୍ ସାଇରେ ଏସନ୍ ମାଦେବ୍, ବନିବ ! ଚାନ୍ଦା ଦିଅ,ଯେମ୍‌ତେ ସାଇ ଭାଇଙ୍କର ମିଜାଜ୍ ଖୁସ୍ !" ମେସ୍ ମୁରବୀ କୁନ୍ଥେଇ କୁନ୍ଥେଇ ଠନ୍‌ଠନିଆ ଟଙ୍କାଟିଏ କାଢ଼ିଦେଲେ । ସାଇବାଲା ତାଚ୍ଛଲ୍ୟରେ କହିଲେ, "ଲିଅ ! ମାଦେବ୍ ବନିବାପାଇଁ ଚାନ୍ଦା ଦଉଚନ୍ତି ଟଙ୍କାଟାଏ ! ଆଉ ଗୋଟାଏ ଠନ୍‌ଠନିଆ କମ୍‌ସେ ଦିଅ ବାବ୍‌ଉ...ହଃ !" ମେସ୍ ମୁରବୀ କୁନ୍ଥେଇ କୁନ୍ଥେଇ ରେଜା ରେଜ୍‌କୀ ମିଶାଇ ଆଉ ଆଠଣା ପଇସା ଦେଇ ସେମାନଙ୍କୁ କୌଣସି ମତେ ବିଦାକଲେ । କେତେ ଦିନ ଧରି ବିଡ଼ାନାସୀ ଆଡୁ ପ୍ରତ୍ୟହ ଆସୁଥିବା, ନଡ଼ିଆକୋରା ଆଉ ଖୁଆପେଡ଼ା ବିକ୍ରୀବାଲାର ଦେଖା ନଥିଲା । କାରଣ ପଚାରିବାରୁ ସେ ଦିନ, ସେ ଉତ୍ତର ଦେଲା... "ଧବଳିଶର ପଠାରେ ଗୁଡ଼ି ଉଡ଼େଇବାକୁ ଯାଇଥିଲ !" ଅସ୍‌ଲୀ କଟ୍‌କୀମାନଙ୍କର ଭାଷା ରୂପ ଓ କ୍ରିୟାରୂପ ଏହିପରି !

ଏବେ ତ ଆଉ ସେଇ ପୁରୁଣା ବସ୍ତିମାନଙ୍କୁ ଯିବାପାଇଁ ମୋର ଉପାୟ ନାହିଁ; ଯଦ୍ୟପି ମନ ବ୍ୟାକୁଳ ହେଉଛି; ଏଇ ବ୍ୟବଧାନ ଭିତରେ ସେଇ ପ୍ରିୟ ପରିଚିତ ବସ୍ତିମାନଙ୍କରେ ପରିବର୍ତ୍ତନର ଚେହେରା ଆଖିରେ ଦେଖିବାପାଇଁ । କିନ୍ତୁ ପ୍ରାୟ ପାଞ୍ଚ ବର୍ଷ ତଳେ ଦେଖିଥିଲି, ପଚାଶ ବର୍ଷ ତଳର ସେଇ ସନାତନ ଚେହେରା, ଦାଣ୍ଡରେ ସେଇ ଶଗଡ଼ ଗାଡ଼ି, ବାଡ଼ରେ ସେଇ ଜହ୍ନିଫୁଲ ଆଉ ଶୁଣିଥିଲି ସେଇ କଟ୍‌କୀ ଉପଭାଷା ! କଟକ ପ୍ରାୟ ଦେଢ଼ଶହ ବର୍ଷ ମୁସ୍‌ଲିମ୍ ଶାସନ ଅଧୀନରେ ରହିଥିବା ବେଳେ, କଟକ ହାବେଲୀ ନାମରେ ପରିଚିତ ତତ୍‌କାଳୀନ କଟକ ସହର ମୁସଲମାନ ସଂସ୍କୃତିର ଗୋଟିଏ

ବଡ଼ କେନ୍ଦ୍ର ଥିଲା। ସେହି ସୂତ୍ରରେ କଟକର ହିନ୍ଦୁ ମୁସଲମାନ ସଂସ୍କୃତିର ଯେଉଁ ଯୁଗଳବନ୍ଦୀ ଗଢ଼ି ଉଠିଥିଲା, ହିନ୍ଦୁମାନଙ୍କର ଏଇ କଟ୍‌କୀ ଉପଭାଷା ଥିଲା ତାହାର ଏକ ପରିପ୍ରକାଶ। ମୁସଲମାନୀ ଉର୍ଦ୍ଦୁ ଜବାନ୍ ମଧ୍ୟ କଥିତ ଓଡ଼ିଆର ଲାଳିତ୍ୟଦ୍ୱାରା କମ୍ ପ୍ରଭାବିତ ହୋଇ ନଥିଲା। ଏଇ କେତେଦିନ ତଳ ପର୍ଯ୍ୟନ୍ତ ସୁଦ୍ଧା ମୁଁ କୌଣସି ମୁସଲମାନ ବସ୍ତିରେ ଶୁଣିଛି... "ଅଗ୍‌ନାମେ ବକ୍‌ରୀ ଚରିସ୍ !" (ଦୁଆରେ ଛେଳି ଚରୁଛି) ହିନ୍ଦୁ ଓ ମୁସଲମାନ ସଂସ୍କୃତି ମଧ୍ୟରେ ପାରସ୍ପରିକ ଆଦାନ ପ୍ରଦାନ କେଉଁଠାରେ ଯଦି ମାର୍ମିକ ଓ ନିବିଡ଼ ଥିଲା, ତା'ହେଲେ ତାହା କେତେକାଂଶରେ କଟକରେ ଓ ବିଶେଷ ଭାବରେ ଖୋର୍ଦ୍ଧା ଅଞ୍ଚଳରେ। ଖୋର୍ଦ୍ଧା ଅଞ୍ଚଳରେ ଜଣେ ମୁସଲମାନ କବି ଥରେ ମୋ ପାଖକୁ ଓଡ଼ିଆରେ ରୀତିମତ ଗୋଟାଏ ଚଉତିଶା ଲେଖି ପଠାଇଥିଲେ। ଆଉ ମୋର 'ନୀଳଶୈଳ' ଉପନ୍ୟାସରେ ଯେଉଁ ଦ୍ୱିତୀୟ ରାମଚନ୍ଦ୍ର ଦେବଙ୍କ କଥା ରହିଛି, ସେଇ ରାମଚନ୍ଦ୍ର ଦେବ, କାଇପଦରର ବୋଖାରୀ ସାହେବଙ୍କଠାରେ ପ୍ରତି ଗୁରୁବାର ଦିନ ଖେଚିଡ଼ି ଭୋଗ ଲଗାଇବାପାଇଁ, ଯେଉଁ ଭୂମି ମୁସଲମାନ ପୂଜକମାନଙ୍କୁ ଦାନ କରିଥିଲେ, ଆଜି ସୁଦ୍ଧା ସେଇ ପୂଜକମାନଙ୍କର ବଂଶଧରମାନେ ସେଇ ଜମି ଭୋଗ କରୁଛନ୍ତି ଓ ପ୍ରତି ଗୁରୁବାର ଦିନ ଖେଚେଡ଼ି ଭୋଗ ଲଗାଉଛନ୍ତି। ଯାହାକୁ ଉଭୟ ହିନ୍ଦୁ ଓ ମୁଲସମାନ ପରମ ଶ୍ରଦ୍ଧା ଓ ଭକ୍ତିରେ ସେବନ କରୁଛନ୍ତି। ବୋଲଗଡ଼ ଅଞ୍ଚଳରେ ଗୋଟିଏ ଗ୍ରାମରେ ହିନ୍ଦୁମାନଙ୍କର ଦୋଳ ବିମାନ ବାହାରିବା ବେଳେ ତାହା ପ୍ରଥମେ ଜଣେ ମୁସଲମାନ ଗୃହସ୍ଥଙ୍କ ଘରକୁ ଆସି ସେଠାରେ ଯଥାବିଧି ଭୋଗ ପାଇବା ପରେ, ଠାକୁର ଗାଁ ପରିକ୍ରମା କରନ୍ତି। ଶୁଣିଛି; ଭୂଷଣ୍ଡପୁରରେ ପ୍ରସିଦ୍ଧ ତାରାପୀଠରେ ଦଶହରା ବେଳେ ପଶୁବଳିପାଇଁ ଯେଉଁ ପାଟଖଣ୍ଡା ବ୍ୟବହାର କରାଯାଏ, ତାହା କୁଆଡ଼େ ରହିଥାଏ ଜଣେ ମୁସଲମାନଙ୍କ ପାଖରେ। ପାରମ୍ପରିକ କାଳରୁ ସେ ହେଉଛନ୍ତି ଏହାର ମାର୍ଫତ୍‌ଦାର ! ହିନ୍ଦୁ ମୁସଲମାନଙ୍କ ମଧ୍ୟରେ ସାମ୍ପ୍ରଦାୟିକ ତିକ୍ତତା ଘେନି ଦିଲ୍ଲୀବାଲା ଯେତେ ଉଦ୍‌ବିଗ୍ନ ହୁଅନ୍ତୁ ନା କାହିଁକି, ଓଡ଼ିଶାରେ ରହି ମୋ'ରି ପରି ଲୋକଙ୍କ ପକ୍ଷରେ ଅନ୍ତତଃ ଏହା ସଂପୂର୍ଣ୍ଣ କଳ୍ପନାତୀତ ଲାଗୁଛି। ଆମ କଟ୍‌କୀ ଉପଭାଷା ହେଉଛି, ତାହାର ଏକ ବର୍ଣ୍ଣାଢ଼୍ୟ ପରିପ୍ରକାଶ। ଠିକ୍ କଥା... ସମ୍ବଲପୁରର କଥିତ ଭାଷା ଯଦି ହେବ ସମ୍ବଲପୁରୀ ଉପଭାଷା, ଗଞ୍ଜାମର କଥିତ ଭାଷା ଯଦି ହେବ ଦକ୍ଷିଣୀ ଉପଭାଷା ଓ ତାହା ଘେନି ବହୁ ପାଣ୍ଡିତ୍ୟପୂର୍ଣ୍ଣ ସନ୍ଦର୍ଭ ରଚିତ ହୋଇ ପାରିବ। ତା' ହେଲେ ଆମ କଟକୀ ଉପଭାଷା ଘେନି କାହିଁକି ସନ୍ଦର୍ଭ ଲେଖାଯାଇ ନପାରିବ ? ମୁଁ ନିଶ୍ଚିତ ଭାବରେ କହିପାରେ, କେହି ଏଥିପାଇଁ ଶ୍ରମ ସ୍ୱୀକାର କଲେ, ଆମର ଉତ୍କଳ ବିଶ୍ୱବିଦ୍ୟାଳୟର ଓଡ଼ିଆ ବିଭାଗରୁ ତାଙ୍କୁ ଖାଲି ଏମ୍.ଫିଲ୍. କାହିଁକି, ପିଏଚ୍.ଡି. ସୁଦ୍ଧା ମିଳିବା କଠିନ ହେବ ନାହିଁ।

୩୦/୦୮/୮୭

# ଆମ ସାଇ ରାମନବମୀ

କଟକ ସହରର ଗୋଟାଏ ବହୁ ପୁରୁଣା କାଳର ସାଇରେ, ଗୋଟାଏ ଭଡ଼ାଘରେ ମୋତେ ଦୀର୍ଘ ୧୦ ବର୍ଷ କାଳ ରହିବାକୁ ପଡ଼ିଥିଲା । କଟକ ସହର ତ ବିଭିନ୍ନ ସମୟରେ ଅନଙ୍ଗଭୀମ ଦେବଙ୍କ କାଳରୁ ଓଡ଼ିଶା 'ମୁଲକ'ର ରାଜଧାନୀ ହୋଇ ରହି ଆସିଥିଲା । ଉତ୍କଳ ମହାରାଜ୍ୟର ରାଜଧାନୀ ଦିନେ ଥିଲା ଏଇ କଟକ । ମୋଗଲ ମରହଟ୍ଟା କାଳରେ ମଧ୍ୟ କଟକ ଓଡ଼ିଶାର ରାଜଧାନୀ ଥିଲା । ୧୮୦୩ ଖ୍ରୀ.ରେ ଇଂରେଜମାନେ ଓଡ଼ିଶା ଅଧିକାର କରିବା ପରେ ପୁରୀ (Pooree) ଅବଶ୍ୟ କିଛି ଦିନ ଓଡ଼ିଶାର ରାଜଧାନୀ ହୋଇଗଲା । ଆଜି ଭୁବନେଶ୍ୱର ଓଡ଼ିଶାର ରାଜଧାନୀ ହୋଇଥିଲେ ସୁଦ୍ଧା, ଏହାର ଗୋଟିଏ ପାଦ ଭୁବନେଶ୍ୱରରେ ତ ଅନ୍ୟପାଦଟି ସନାତନ କଟକ ସହରରେ । କଟକ ଶବ୍ଦର ଅର୍ଥ ହିଁ ହେଲା ରାଜଧାନୀ । କିନ୍ତୁ କଟକର ଏପରି ପ୍ରସିଦ୍ଧି ସତ୍ତ୍ୱେ ଖାନ୍‌ଦାନୀ କଟକୀମାନେ ହେଉଛନ୍ତି ମେହନତୀ ମଣିଷ ! ରାଜକର୍ମର ଜଲ୍‌ପାପେଞ୍ଚ ମେଲି, ସେମାନେ ରସ ନିଗାଡ଼ି ଜାଣନ୍ତି ନାହିଁ । ସମସ୍ତେ ମେହନତ୍ କରି ନିଜ ନିଜର କୌଳିକ ପେଶା ବା ବୃତ୍ତିରୁ ଜୀବିକା ଅର୍ଜନ କରି ଥାଆନ୍ତି ! ସେଥିପାଇଁ କଟକର ପୁରୁଣା ସାଇମାନଙ୍କରେ ଏଇ ମେହନତୀମାନଙ୍କର ବାସ । କୋଉ ସାଇ ବଣିଆସାଇ ତ କୋଉଟା କାଠଗଡ଼ା ସାଇ, କୋଉଟା ଚିତ୍ରକର ସାଇ ତ କୋଉଟା ଶଗଡ଼ିଆ ସାଇ- ଏହିପରି । ମୁନ୍‌ସାପଡ଼ା ବି ଅଛି । ମୋଗଲ ଜମାନାରେ ବୋଧହୁଏ ସେ ସାଇରେ, ମୁନ୍‌ସୀ ବା କଲମ ପେଷା ଅମଲାମାନେ ରହୁଥିଲେ । ସେହିପରି ଦର୍ଜୀ ସାଇ, ସେହିପରି କୁମ୍ଭାର ସାଇ ଇତ୍ୟାଦି ଇତ୍ୟାଦି ! ପାଟରା ସାଇ ବି ଅଛି ! ଛତିଶ ପାଟକଙ୍କୁ ଘେନି କଟକ ସହରର ବାଉନ ବଜାର, ତେପନ ଗଳି !

ଏଇ ସାଇମାନଙ୍କରେ ଏବେ ସୁଦ୍ଧା, ସେଇ ନିବୁଜ ପଲ୍ଲୀସମାଜର ଚିତ୍ର ଓ ଚରିତ୍ର ଅପରିବର୍ତ୍ତିତ ରହିଛି ! ଖାନ୍‌ଦାନୀ କଟ୍‌କୀମାନେ ଅବଶ୍ୟ ଆମକୁ କହନ୍ତି ମଫସଲୀ । କିନ୍ତୁ ପ୍ରକୃତରେ ସେଇମାନଙ୍କ ସାଇମାନଙ୍କରେ ଆଜି ସୁଦ୍ଧା ଫସଲର ମାର୍କା ଲାଗି ରହିଛି । ଏ

ସାଇମାନଙ୍କରେ ବସବାସ କରି ରହିଥିବା ଖାନ୍‌ଦାନୀ କଟକୀମାନଙ୍କର ଜୀବନଶୈଳୀ ଯେପରି ବର୍ଣ୍ଣାଢ୍ୟ ସେଇପରି ରସାଳ ! ଏମାନଙ୍କର ମେଜାଜ୍ ଊଣା ଅଧିକେ 'ଏକ ଦିନ୍ କା ସୁଲତାନ୍'ର ମେଜାଜ୍ ପରି। ଅଧିକାଂଶ 'ଅଦ୍ୟଭକ୍ଷ ଧନୁର୍ଦ୍ଧର'। ବଞ୍ଚି ରହିବାର ନିତ୍ୟ ନୂତନ ଚାହିଦା, ଉଦ୍‌ବେଗ ଓ ଉତ୍‌କଣ୍ଠା ଭିତରେ, ଗୁଣାତ୍ମକ ଦୃଷ୍ଟିରୁ ସହରୀମାନଙ୍କ ଜୀବନ ଆଜି ସଙ୍କୁଚିତ ହୋଇ ପଡୁଥିବା ବେଳେ, ଅଭାବ ଓ ଅନଟନ ମଧ୍ୟରେ ସୁଦ୍ଧା ଏମାନଙ୍କର ମନ ଉଦାର ଓ ପ୍ରାଚୁର୍ଯ୍ୟମୟ ! ଏବେ କଟକରେ ମୁସଲମାନମାନଙ୍କର ତାଜିଆ ପଟୁଆର ତ ଆଉ ବାହାରୁ ନାହିଁ, କିନ୍ତୁ ସେଦିନ ତାଜିଆ ପଟୁଆରମାନଙ୍କର ପୁରୋଭାଗରେ ଥିଲେ, ସାଇର ହିନ୍ଦୁମୁଖିଆ ମାତବ୍ବର ଓ ପହିଲ୍‌ମାନ୍‌ମାନେ। ସେହିପରି ଦୀପାବଳିରେ କାଳୀମେଢ଼ସବୁ ବିସର୍ଜନପାଇଁ ବାହାରିବା ବେଳେ, ତା' ଆଗରେ ବାହାରୁଥିଲେ, ମୁସଲମାନ୍ ପହିଲ୍‌ମାନ୍‌ମାନେ। ଧର୍ମ ନାମରେ ଏତେଟା ସଂକୀର୍ଣ୍ଣତା କଟ୍‌କୀମାନଙ୍କର ମେଜାଜ୍‌ରେ ଆଦୌ ନଥିଲା। ସ୍ୱାଭାବିକ ଭାବରେ ମୁସଲମାନୀ ଲୁଙ୍ଗି ଥିଲା ଓ ଏବେ ବି ଅଛି ଘର ଭିତରେ ହିନ୍ଦୁମାନଙ୍କର ପରିଧାନ। ପୂର୍ବେ କୌଣସି କୌଣସି ହିନ୍ଦୁ ଆଖିରେ ସୁରମା ଲଗାଇ, କାନରେ ଅତର ଭିଜା ତୁଳା ଖୋସି ସାଇରାସ୍ତାରେ ବୁଲିବା ସୁଦ୍ଧା ମୁଁ ଦେଖିଛି।

ମୁଁ ଯେଉଁ ସାଇରେ ରହୁଥିଲି, ତାହା ଥିଲା ଗୋଟିଏ ଶଗଡ଼ିଆ ସାଇ। ଏ ସାଇରେ ମଧ୍ୟ ଗ୍ରାମଦେବତୀ ଥିଲେ। ତାଙ୍କର କାଳିସୀ ବି ଥିଲେ ଓ ପ୍ରତି ମଙ୍ଗଳବାର ବା ଗୁରୁବାର ଦିନ କାଳିସୀ ଗ୍ରାମଦେବତୀଙ୍କୁ ମାଜଣା କରିବା ପରେ, ତା'ଠାରେ ଠାକୁରାଣୀ ଅବତରୁଥିଲେ। ଗ୍ରାମଦେବତୀଙ୍କ ବରଗଛ ଛାଇରେ ଖରାବେଳେ ପଶା, ତାସ ଖେଳ ଓ ମଣ୍ଡପ ତଳେ ପିଲାଙ୍କ ଗୁଲିଖେଳ ଜମୁଥିଲା। ଏ ସାଇରେ ପ୍ରତିବର୍ଷ ରାମନବମୀ ଉପଲକ୍ଷରେ ଜୋର୍‌ସୋର୍‌ରେ ରାମନବମୀ ଯାତ୍ରା ହେଉଥିଲା। ବସ୍ତୁତଃ ଆଜି ରାମଚରିତ ମାନସର ପ୍ଲାବନରେ ବିଶି ରାମାୟଣ ଓ ଦାଣ୍ଡି ରାମାୟଣକୁ କଟକର ଲୋକ କାହିଁକି ସାରା ଓଡ଼ିଶାର ଲୋକ ପ୍ରାୟ ଭୁଲି ଗଲେଣି। ନିଜ ଇତିହାସ ଓ ସଂସ୍କୃତି ସଂପର୍କରେ ଉଦାସୀନ ଜାତି, ଆମ ଓଡ଼ିଆଙ୍କଠାରୁ ବଳି ଆଉ କେହି ନାହାନ୍ତି। କିନ୍ତୁ ଏ ସାଇର ରାମନବମୀରେ ସେଦିନ ଥିଲା ବିଶି ରାମାୟଣର ଆଦର। ରାମନବମୀ ଥିଲା କଟକ ସହରର 'ଫୋକ୍ କଲ୍‌ଚର'। ସେଇ ପ୍ରସଙ୍ଗରେ ମନେପଡୁଚି ଏ ସାଇର ମସ୍ତାନ ମୁକୁନ୍ଦ ଜେନାଙ୍କ କଥା। ଲୋକଟି ବାଙ୍ଗରା। ମୋଟାସୋଟା ମୂର୍ତ୍ତିଟିକୁ କିଏ ଯେପରି ଶିଶୁ କାଠରେ ଖୋଳି ଗଢ଼ିଛି। ଫାଲୁଆ ମୁହଁରେ ଦୁଇପଟ ବାଘୁଆ ନିଶ ! ସାଇରେ ମୁକୁନ୍ଦ ଜେନା ପ୍ରତି ସମସ୍ତଙ୍କର ଭୟ, ଯେତେ ଭୟ ମୋଟାସୋଟା ଚେହେରା ଆଉ ବାଘୁଆ ନିଶପାଇଁ ନୁହେଁ, ସେତେ ଭୟ ତା'ର ଘାଘଡ଼ା ପାଟି ଆଉ ଚିତ୍କାରପାଇଁ। ସକାଳେ ଅବଶ୍ୟ ସେ ଖୁବ୍ 'ସୋବର' ଭାବରେ

ଶଗଡ଼ ଚଳାଇନିଏ କାଠ ଗୋଲାକୁ, ଦିନ ସାରା କାଠ ବୋହିବାପାଇଁ। ଦିନର ଖଟଣି ପରେ କିନ୍ତୁ ମୁକୁନ୍ଦ ଜେନା ଜଣେ ଭିନ୍ନ ମଣିଷ। ଲୁଙ୍ଗି ଉପରେ ଖଣ୍ଡେ ନାଲିଆ ହାତକଟା ଗେଞ୍ଜି। ଗାଢ଼ ନାଲି ଗେଞ୍ଜି ଉପରେ ମଲମଲ ଅଦ୍ଧି କନାର ଫିନ୍‌ଫିନ୍ ପଞ୍ଜାବୀ, ଦେହଟି ତ୍ରିପଣ୍ଡ କଳା। ରଙ୍ଗର ବିଚିତ୍ର କମ୍ବିନେସନ୍। ତା' ଉପରେର ଟୋପିଏ ମାଲ୍ ପଡ଼ିଯାଇଥିବାରୁ ମେଜାଜର ରଙ୍ଗ ଗୋଲାପି। ସାଇ ରାସ୍ତାରେ ଗ୍ରାମଦେବତୀ ବରଗଛ ଆଡ଼େ ବାହାରିବା ବେଳେ, ମୁକୁନ୍ଦ ଜେନା ଘାଘଡ଼ା ଗଳାରେ ଗୀତ ବୋଲନ୍ତି। "ଲବିନା ତୋ ବିନା ହେଲି ଏତେ ସରିରେ !" ଏଇ ମୁକୁନ୍ଦ ଜେନା ଥରେ ଜିଦ୍ ଧରିଲେ, ତାଙ୍କୁ ରାମନବମୀ ଯାତ୍ରାରେ ଗୋଟାଏ କିଛି ପାର୍ଟି ନଦେଲେ, ସିଏ ହୁଲୁସ୍ଥୁଲ୍ କାଣ୍ଡ କରିଦେବେ। ରାମନବମୀର ମାମଲତ୍‌କାରମାନେ ମୁକୁନ୍ଦ ଜେନାଙ୍କୁ କି ପାର୍ଟ ବା ଦେବେ ? ଜେନାଙ୍କର ଦାବି ଥିଲା ରାମ ନୋହିଲେ ଲକ୍ଷ୍ମଣ ପାର୍ଟ ନେବାପାଇଁ। କିନ୍ତୁ ତାଙ୍କ ଚେହେରାକୁ ରାମ ବା ଲକ୍ଷ୍ମଣ ପାର୍ଟ ଆଦୌ ମାନନ୍ତା ନାହିଁ। ରାବଣ ପାର୍ଟ ପାଇଁ ମୁକୁନ୍ଦଙ୍କର ଅନିଚ୍ଛା। ତାଙ୍କ ବିଚାରରେ ଶ୍ରୀରାମ ହେଉଛନ୍ତି କୁଆଡ଼େ ମାଇଚିଆ ଓ ତାଙ୍କ ହାତରେ ମରିବାକୁ ସେ ପସନ୍ଦ କରୁନଥିଲେ। ତେଣୁ ମୁକୁନ୍ଦ ଜେନାଙ୍କୁ ରାମନବମୀ ଯାତ୍ରାରେ କୌଣସି ପାର୍ଟ ଦେବା ସମ୍ଭବ ନଥିଲା। ତେବେ ତାଙ୍କ ପାଟି ଆଉ ଚିତ୍କାରକୁ ଭୟ କରି, କୌଣସିମତେ ତାଙ୍କୁ ବୋଧସୋଧ କରିବାପାଇଁ ନିୟତି ପାର୍ଟ ଦିଆଗଲା। ମଞ୍ଚ ଉପରକୁ ନିୟତି ବେଶରେ ଆସିବା ପୂର୍ବରୁ ମୁକୁନ୍ଦ ଜେନାଙ୍କ ମୁଣ୍ଡରେ ଗୋଟାଏ ଲମ୍ୱା ଜଟା, ମୁହଁରେ ଦାଢ଼ି ଆଉ ଗେରୁଆ ଆଲଖାଲା ପିନ୍ଧାଇ ଡ୍ରେସିଂ ଓ ପେଣ୍ଟିଂ ଯଥାବିଧି କରାଯାଇଥିଲା। ମାତ୍ର ତାଙ୍କ ଦୁଇପଟ ବାଘୁଆ ନିଶରେ ଧଳା ରଙ୍ଗ ବୋଳିବାପାଇଁ ମୁକୁନ୍ଦ ଜେନା ବାଧା ଦେବାରୁ ଅଗତ୍ୟା ତାହା ସେହିପରି କଳା ମଚମଚ ରହିଥିଲା। ନିୟତି ବେଶରେ ତାଙ୍କୁ ମଞ୍ଚ ଉପରେ ଦେଖି ମୁଁ ସୁଦ୍ଧା ମୁହଁରେ ରୁମାଲ୍ ଚାପି ଖେଁ ଖେଁ ହୋଇ ହସିଉଠିଲି। ମୁକୁନ୍ଦ ଜେନା କିନ୍ତୁ ଭାରି ତନ୍ମୟ ଭାବରେ ଘାଘଡ଼ା ଗଳାରେ ଗୀତ ଆରମ୍ଭ କରିଦେଲେ-

"ସୀତାୟାକୁ ଭୁଟେଇ ନେଲା ରାବଣ
ହାଏରେ ରାମ ବେକୁବ ବନିଗଲା ବନସ୍ତେ।"

ମୁକୁନ୍ଦ ଜେନାଙ୍କ କଣ୍ଠରେ କିନ୍ତୁ କରୁଣ ରସ ଆଦୌ ଫିଟେ ନାହିଁ। ସିଏ ବୀରରସରେ ଏ ଗୀତ ବୋଲିବା ବେଳେ ମୋ ପରି କେତେକ ବେଆଦବ୍ ମୁହଁରେ ହାତ ଅଥବା ରୁମାଲ୍ ଚାପି ଖେଁ ଖେଁ ହସୁଥିଲେ। ମୁକୁନ୍ଦ ଜେନା ଗୀତ ଗାଉଥିବା ବେଳେ ଆମେ ହସୁଛୁ ବୋଲି ଯଦି ତାଙ୍କ ନଜରରେ ପଡ଼ିଯାଏ, ତା'ହେଲେ ତ ବିପଦ। କିନ୍ତୁ ମୁକୁନ୍ଦ ଜେନାଙ୍କ ଗୀତ ଓ ସୀତାୟାକୁ ରାବଣ ହରିନେବା କଥା ସାଇର ବୁଢ଼ୀମା' ମାଉସୀମାନଙ୍କ ପ୍ରାଣକୁ ଗଭୀର ଭାବରେ ସ୍ପର୍ଶ କରୁଥିଲା। ସେମାନେ ମୁହଁରେ

ଲୁଗା ମାଡ଼ି କୋହ ଚାପିବାକୁ ଚେଷ୍ଟା କରୁଥିଲେ। ସେଇଦିନୁ ମୁଁ ବୁଝିଛି, ସାହିତ୍ୟ ବା ସଙ୍ଗୀତ ଭାଷାରେ ନାହିଁ, କଣ୍ଠରେ ନାହିଁ ବା ମୁହଁରେ ନାହିଁ- ଏହା ରହିଛି ପାଠକ ବା ଶ୍ରୋତାର ହୃଦୟ ଓ ଚେତନା ଭିତରେ।

ସେ ସାଇ ଆଜି ସୁଦ୍ଧା ରହିଛି। ମୁକୁନ୍ଦ ଜେନା ମଲେଣି। ଶୁଣିଲି, ରାମନବମୀ ସେପରି ଆଉ ଜମୁ ନାହିଁ। ଏବେ ରାମନବମୀ ବେଳେ ସମସ୍ତେ କୁଆଡ଼େ ଧାଉଁଛନ୍ତି, ସହରର ମାରୁତି ମଣ୍ଡପ ଆଡ଼େ।

୦୬/୦୯/୮୬

# ଧବଳ ଟଗର

ମାନସ ଦୃଷ୍ଟିରେ କଟକ ସହର ସହିତ ମୋର ପ୍ରଥମ ପରିଚୟ ହୋଇଥିଲା, ମଧୁସୂଦନ ରାଓଙ୍କ 'ବର୍ଣ୍ଣବୋଧ'ର ପୃଷ୍ଠାରେ ଚାଟଶାଳୀ ନାମରେ କଥିତ ଗାଁ ମହାଦେବଙ୍କ ମନ୍ଦିରର ପିଣ୍ଡାରେ। "କଟକ ନଗର ଧବଳ ଟଗର !" କିନ୍ତୁ କଟକ ପରି ଗୋଟାଏ ସହରକୁ କାହିଁକି ଯେ ଧବଳ ଟଗର ସହିତ ତୁଳନା କରାଯିବ, ତାହା ମୁଁ ସେତେବେଳେ ବୁଝିପାରୁ ନଥିଲି। ସେ ପ୍ରଶ୍ନଟା ଦିନେ ଅବଧାନଙ୍କ ମେଜାଜ୍ ଟିକିଏ ପ୍ରସନ୍ନ ଥିଲାବେଳେ, ଭାରି ସନ୍ତର୍ପଣରେ ପଚାରିଲି। ସେ ମୋତେ କିଛି ଗାଳିଗୁଲଜ କରି ବୁଝାଇ ଦେଇଥିଲେ, "ତୁ ଟା ତ ଗଙ୍ଗମୂର୍ଖ ! ତୋ ଭାଗ୍ୟରେ କଟକ ସହର ମାଡ଼ିବା ନାହିଁ। ସେ ସହର ଏତେ ସୁନ୍ଦର ଯେ କବି ତାକୁ ଧବଳ ଟଗର କହିଛନ୍ତି।" ଯାହା ହେଉ, ଗଙ୍ଗମୂର୍ଖ ଅବସ୍ଥାରୁ ସାମାନ୍ୟ ଉତୁରି, ଆଜିକୁ ପ୍ରାୟ ପଚାଶ ବର୍ଷ ତଳେ ମୁଁ ଯେତେବେଳେ ପ୍ରଥମେ କଟକ ଆସେ, ସେତେବେଳେ ମୋର ସହପାଠୀ ବନ୍ଧୁମାନଙ୍କ ଭିତରେ ଏଇ ଧବଳ ଟଗର ଘେନି ବହୁ ଥଟ୍ଟା ପରିହାସ ହେଉଥିଲା।

ସେତେବେଳେ ସେମାନଙ୍କ ମେଳରେ ପରିହାସରେ କୁହାଯାଉଥିଲା, "କଟକ ସହର ଧବଳ ଟଗର / ବଡ଼ ମହରଗ / ବାପା ଟଙ୍କା ପଠବତ ପଠବ / ନହେଲେ ପାଠରେ ଡୋରି ବନ୍ଧବ !" କିନ୍ତୁ କଟକ ସହରର ସେତେବେଳର ମହରଗ (ଚାଉଳ କଟକୀ ଦଶସେର, ଖାସି ମାଂସ ସେର ଆଠ ଅଣା, ମାଛ ବିଶା ଦରରେ ବିକ୍ରି, ଇତ୍ୟାଦି) ଯେତେ ମୋତେ ବାଧୁ ନଥିଲା, ସେତେ ବେଶି ବାଧୁଥିଲା, କଟକ ସହରର ନାଳି ଧୂଳି ଆଉ ନର୍ଦ୍ଦମା। ବୋଧହୁଏ, କଟକ ସହରର ଏଇ ନାଳି ଧୂଳିକୁ ଲକ୍ଷ୍ୟ କରି, ସେତେବେଳେ ଗାଁ ଗହଳରେ ମାମଲାବାଜ୍ ମାମଲତକାରମାନେ ପ୍ରତିପକ୍ଷକୁ ଧମକାଉ ଥିଲେ, "ତତେ ନାଳି ସଡ଼କ ମଡ଼େଇଦେବି !" ଅର୍ଥାତ୍, କଟକରେ ତୋ' ନାଁରେ ମୋକଦ୍ଦମା କରି, ତତେ କଚିରିକୁ ଟାଣିବି ! ସକାଳେ ଖଣ୍ଡେ ବାସି ଧୋତି ଆଉ ବାସି କୁର୍ତ୍ତା ପିନ୍ଧି, ସାଇକେଲ୍‌ରେ କଲେଜ ବାହାରିଗଲେ, ଫେରିବା ବେଳକୁ ଧୋତି ଆଉ କୁର୍ତ୍ତାର ଅବସ୍ଥା

କୁମ୍ଭୀପଟିଆ ବାଆଜୀମାନଙ୍କର ଗେରୁଆ ବକଳ ଲୁଗା ପରି ହୋଇଯାଇଥାଏ। ପାଦଠାରୁ ଆଣ୍ଠୁ ପର୍ଯ୍ୟନ୍ତ ନାଲି ଧୂଳି ଭର୍ତ୍ତି। ଅଥଚ ବହୁ ବର୍ଷ ପରେ, ଊନବିଂଶ ଶତାବ୍ଦୀର ସପ୍ତଦଶକରେ, କଟକର ପ୍ରସିଦ୍ଧ କଲେକ୍ଟର ସାର୍ ଜନ୍ ବୀମ୍‌ସଙ୍କ ଜୀବନ-ସ୍ମୃତିରେ ପଢ଼ିଲି, କଟକ ସହରର ସୌନ୍ଦର୍ଯ୍ୟର ସେ ଭୂରି ଭୂରି ପ୍ରଶଂସା କରିଅଛନ୍ତି। ୧୮୭୩ ମସିହାଠାରୁ ୧୮୭୬ ମସିହା ପର୍ଯ୍ୟନ୍ତ ସେ କଟକର କଲେକ୍ଟର ଥିଲେ। ମଝିରେ କମିଶନର ଟି.ଇ. ରେଭେନ୍‌ସା ତିନିମାସପାଇଁ ଛୁଟିରେ ଯାଇଥିବାବେଳେ, ସେ ମଧ୍ୟ ଓଡ଼ିଶା ଡିଭିଜନ (କଟକ, ପୁରୀ, ସମ୍ବଲପୁର ଓ ବାଲେଶ୍ୱର)ର ଅସ୍ଥାୟୀ କମିଶନର ଦାୟିତ୍ୱ ତୁଲାଇଥିଲେ। ସେ ତାଙ୍କ ଜୀବନ-ସ୍ମୃତିରେ ଲେଖିଛନ୍ତି, କଟକ ସହର ସେତେବେଳେ ଯୋଗାଯୋଗ ଅଭାବରୁ ବାହାର ଦୁନିଆଠାରୁ ଏକ ପ୍ରକାର ବିଚ୍ଛିନ୍ନ ଥିବାରୁ କୌଣସି ୟୁରୋପୀୟ କଟକ ଆସିବାକୁ ଆଦୌ ରାଜି ହେଉ ନଥିଲେ। କିନ୍ତୁ ଯେଉଁମାନେ ଥରେ ଆସୁଥିଲେ, ସେମାନେ କିଛି ଦିନ କଟକରେ ରହିଯିବା ପରେ, କଟକ ଛାଡ଼ିଯିବାକୁ ଆଉ ରାଜି ହେଉ ନଥିଲେ। ସେତେବେଳେ କଟକ ସହରର ପ୍ରାୟ ଶହେରୁ ସାମାନ୍ୟ ଅଧିକ ୟୁରୋପୀୟ ପରିବାର ଚାକିରି ଓ ବ୍ୟବସାୟ ସଂକ୍ରାନ୍ତରେ କଟକ ସହରରେ ରହୁଥିଲେ। ସେମାନଙ୍କପାଇଁ ଥିଲା ଘୋଡ଼ା ଦୌଡ଼ପାଇଁ ରେସ୍‌କୋର୍ସ (ସେଥିପାଇଁ ବୋଧହୁଏ ଚାଉଳିଆଗଞ୍ଜର ପୁରୁଣା ନାଁ, ଚକରଚାନ୍ଦ ବଜାର), ବାରବାଟୀ ଦୁର୍ଗ ଭିତରେ ଗଲ୍‌ଫ କୋର୍ସ ଇତ୍ୟାଦି। ବୀମ୍‌ସ କଲେକ୍‌ଟର ଥିବାବେଳେ ପ୍ରଧାନ ପ୍ରଧାନ ରାସ୍ତା କଡ଼େ କଡ଼େ ଧାଡ଼ି ଧାଡ଼ି ଦେବଦାରୁ ଗଛ ସବୁ ଲଗାଇଥିଲେ। ବୀମ୍‌ସଙ୍କର କଟକ ବର୍ଣ୍ଣନା ପଢ଼ିଲେ, ଆଜକୁ ଶହେ ବର୍ଷ ତଳେ କଟକର ଚେହେରା ପ୍ରକୃତରେ ଭାରି ଲୋଭନୀୟ ମନେହୁଏ। ଦେବଦାରୁ ଛାୟାଘନ ବୀଥିକା ଭିତରେ ନାଲି ସୁର୍କୀ ରାସ୍ତା ଓ ରାସ୍ତା କଡ଼େକଡ଼େ ଚିତ୍ରପଟ ପରି ପରିଚ୍ଛନ୍ନ ବଙ୍ଗଳା ଆଉ କୋଠିମାନଙ୍କର ଦୃଶ୍ୟ ଆଖି ଆଗରେ ଭାସିଉଠେ। ୧୯୩୮ ସାଲରେ କଟକ ସହରର ଚେହେରାରେ ଅବଶ୍ୟ ଅନେକ ପରିବର୍ତ୍ତନ ଘଟି ଯାଇଥିଲା। ତଥାପି ଚାଉଳିଆଗଞ୍ଜଠାରୁ ଜୋବ୍ରା ପର୍ଯ୍ୟନ୍ତ ନାଲି ରାସ୍ତା ଓ କଟକ କଲେକ୍‌ଟରେଟ୍ ରାସ୍ତା ଦୁଇକଡ଼େ ବୀମ୍‌ସଙ୍କ ଦେବଦାରୁ ଗଛ ସବୁ ଅକ୍ଷତ ରହିଥିଲା।

ଆଜି କିନ୍ତୁ କଟକ ସହର ଝୁଗୀ-ଝୁପୁଡ଼ିର ଏକ ମେଳା। ବଡ଼ବଡ଼ କୋଠା, ଏପରିକି ଷ୍ଟାର୍ ହୋଟେଲ୍ ନାମରେ କଥିତ ସୌଖୀନ୍ ହୋଟେଲ୍‌ମାନଙ୍କୁ ଲାଗି ଅପରିଚ୍ଛିନ୍ନ ଝୁପୁଡ଼ି ବସ୍ତି। ସେଦିନ କାଠଯୋଡ଼ି କୂଳର ବଡ଼ ବୁରୁଜ ଉପରୁ ନରାଜର ଶୈଳ-ଶ୍ରେଣୀ ଉପରେ ସୂର୍ଯ୍ୟାସ୍ତର ଦୃଶ୍ୟ ସାରା ଭାରତରେ ଯେ ଏକ ଶ୍ରେଷ୍ଠ ଚିତ୍ତାକର୍ଷକ ଦୃଶ୍ୟ ଥିଲା, ସେଥିରେ ସନ୍ଦେହ ନାହିଁ। ଏବେ ଦିନେ କାର୍‌ରେ ସେଇ ବଡ଼ ବୁରୁଜ ଯାଇଥିଲି, ସୂର୍ଯ୍ୟାସ୍ତର ଦୃଶ୍ୟ ଦେଖିବାପାଇଁ। ମାତ୍ର ଝୁପୁଡ଼ି ବସ୍ତିର ଆବର୍ଜନା, କୋଳାହଳ ଓ ଚିତ୍କାର ମଧ୍ୟରେ ଅସ୍ତସୂର୍ଯ୍ୟ

ସେଦିନ ଆତ୍ମଗୋପନ କରି ରହିଲା । ମର୍କତକେଶରୀଙ୍କର ପ୍ରସିଦ୍ଧ କାଠଯୋଡ଼ି ବନ୍ଧ ଉପରେ, ପୁରୁଣା ଦିନର ଖାତିରରେ ଦଣ୍ଡେ ଆରାମରେ ବସିବାର ଉପାୟ ସୁଦ୍ଧା ନଥିଲା । ଐତିହାସିକ କାଠଯୋଡ଼ି ପଥର ବନ୍ଧ ଆଜି ହୋଇଛି ବସ୍ତିମାନଙ୍କପାଇଁ ମୁକ୍ତ ଶୌଚାଳୟ । ସେହିପରି ସେଦିନ ମହାନଦୀ ବନ୍ଧ କଡ଼େକଡ଼େ ଯେଉଁ ପୁଷ୍ପିତ କୃଷ୍ଣଚୂଡ଼ା ଗଛ ଆଉ ସିମେଣ୍ଟ ବେଞ୍ଚ୍ ସବୁ ରହିଥିଲା, ସେସବୁ କୁଆଡ଼େ ହଜିଗଲାଣି । ଆଜି ସେଠାରେ ଜାଳେଣି କାଠ ବାଉଁଶ ଆଉ ନଡ଼ା ଗୋଲା । ଧୋବା ତୁଠ ! ଐତିହାସିକ ବାରବାଟୀ ଦୁର୍ଗର ପରିଖାରେ ଚାଲିଛି ମାଛ ଚାଷ । ଆଉ ଦୁର୍ଗ ଭିତରେ ଓଡ଼ିଆ ଜାତି, ତାହାର ଇତିହାସ-ବିଶ୍ରୁତ ବୀରତ୍ୱର ସାକ୍ଷ୍ୟ ପ୍ରମାଣ ରୂପେ ବସାଇ ଦେଇଛି, ଅମଲା ଓ ହାକିମ, କଲମ୍‌ସିପାହୀମାନଙ୍କ ବସ୍ତି । ଅଥଚ କଟକ ସହରରେ ଗୋଟିଏ ସୁସଭ୍ୟ ମ୍ୟୁନିସିପାଲିଟି କୁଆଡ଼େ ଖୋଦ୍ କଲେକ୍ଟରଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ କାର୍ଯ୍ୟ କରୁଛି ! ସେଦିନର କଲେକ୍ଟର ମିଷ୍ଟର ବୀମ୍‌ସ ଓ ଆଜିର କଲେକ୍ଟରମାନଙ୍କ ମଧ୍ୟରେ କ୍ଷମତା ଓ ପଦମର୍ଯ୍ୟାଦାରେ କୌଣସି ପାର୍ଥକ୍ୟ ଘଟି ନାହିଁ । ତଥାପି କୌଣସି କଲେକ୍ଟର ଏବର କଟକ ସହରର ହାଲତ ପ୍ରତି ସାମାନ୍ୟ ଦୃଷ୍ଟି ଦେଇଥିବା ମୋର ମନେ ହୋଇନାହିଁ ।

ଖାଲି କଟକ କାହିଁକି ଭାରତର ପ୍ରାୟ ସବୁ ଛୋଟ ବଡ଼ ସହରରେ ଆଜି ହୋଇଛି ଏଇ ପ୍ରକାର ଅବସ୍ଥା । ସହର ସବୁ କ୍ରମେ ଗାଁ ଓ ବସ୍ତିରେ ପରିଣତ ହେଉଥିବା ବେଳେ, ସହରମାନଙ୍କର ପରିମାଣାତ୍ମକ ଅଭିବୃଦ୍ଧି ମଧ୍ୟ ବେଶ୍ ଆଖିଦୃଶିଆ ଭାବରେ ଚାଲିଛି । ବୀମ୍‌ସଙ୍କର ସେଇ ପ୍ରପିତାମହ ବୟସର କେତୋଟି ଦେବଦାରୁ ଗଛ ମୁଁ ଏବେ ସୁଦ୍ଧା ବୁଲିବୁଲି ଦେଖେ । ସେ ଗଛ ସବୁ ଯେପରି ସେମାନଙ୍କ ଭାଷାରେ ମୋତେ ପଚାରନ୍ତି, "ସହର ଲୋକମାନଙ୍କର ରୁଚି ଓ ସୌନ୍ଦର୍ଯ୍ୟବୋଧର ଉନ୍ନତି ନଆଣି, ଖାଲି ସହର ବିକାଶ ନାମରେ ଚଉଡ଼ା ରାସ୍ତା, ଉଜ୍ଜ୍ୱଳ ଆଲୋକ ଆଉ ବଡ଼ ବଡ଼ ଇମାରତ୍ ଠିଆ କରାଇବାରେ କି ଲାଭ ଅଛି ?" ମୁଁ ଗୋଟାଏ ଦୀର୍ଘଶ୍ୱାସ ପକାଇ ମନେମନେ ପ୍ରାର୍ଥନା କରେ, "ହେ, ଈଶ୍ୱର, ଆମ ସମସ୍ତଙ୍କୁ ସାମାନ୍ୟ ସୌନ୍ଦର୍ଯ୍ୟବୋଧ ଓ ରୁଚିବୋଧ ଦିଅ । ତମର କରୁଣାଭଣ୍ଡାର କଦାପି ଊଣା ହୋଇଯିବ ନାହିଁ ।"

୧୩/୦୯/୮୭

# ଜନ୍ ବୀମସ୍ ଓ ନିମଚୌଡ଼ି

କଟକ ସହରରେ କେଉଁଠି କେଉଁଠି ଏବେ ସୁଦ୍ଧା କୋଉ ପୁରୁଣା ଦିନର ଦେବଦାରୁ ଗଛସବୁ ଆଖିରେ ପଡନ୍ତି। ସେମାନଙ୍କ ଚେହେରାରେ କାଳର ବହୁ ଦନ୍ତଘାତ ଚିହ୍ନ- ଅତୀତରେ ବହୁ ଝଡ଼ ଓ ଝଞ୍ଜାର ! ତଥାପି ଏବେସୁଦ୍ଧା ସେମାନେ ଉର୍ଜ୍ଜସ୍ୱଳ ଓ ଚୂଡ଼ା ସେମାନଙ୍କର ଯେପରି ଆକାଶାଭିମୁଖୀ ! ହାଲ୍ ଫେସନର ମଣିଷମାନଙ୍କ ପରି ସେମାନେ ବିଷଣ୍ଣ, କ୍ଳାନ୍ତ, ଗ୍ରୁପିଙ୍ଗ୍ ଦେବଦାରୁ ନୁହନ୍ତି ! ଏହି ପୁରୁଣା ଦିନର ଦେବଦାରୁମାନଙ୍କୁ ଦେଖିଲେ, ମୋର ମନେପଡ଼ିଯାଏ ପ୍ରାତଃସ୍ମରଣୀୟ ଇଂରେଜ କଲେକ୍ଟର ସାର୍ ଜନ୍ ବୀମ୍ସ୍‌ଙ୍କ କଥା। ଉନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଯେଉଁ କେତେକ ଇଂରେଜ ରାଜ କର୍ମଚାରୀଙ୍କ ଅବଦାନ ଫଳରେ ଓଡ଼ିଶାରେ ନବଜାଗରଣ ବା ରେନେସାଁର ଭିତ୍ତିଭୂମି ନିର୍ମିତ ହୋଇଥିଲା, ବୀମ୍ସ୍ ସେମାନଙ୍କ ମଧ୍ୟରେ ଅଗ୍ରଗଣ୍ୟ ଥିଲେ। ବିଗତ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ "ଓଡ଼ିଆ ସ୍ୱତନ୍ତ୍ର ଭାଷା ନୟ !" ଆନ୍ଦୋଳନ ସରକାରୀ ସ୍ତରରେ ବିପଜ୍ଜନକ ସୀମାରେ ପହଞ୍ଚିଥିବାବେଳେ, ସାର୍ ଜନ୍ ବୀମ୍ସ୍ "A Comparative Grammar of Indo-Aryan Languages" ଗ୍ରନ୍ଥ ଲେଖି ଓଡ଼ିଆ ଭାଷାର ପ୍ରାଚୀନତା ଓ ମୌଳିକତା ପ୍ରତିପାଦନ କରି ନଥିଲେ ଆଜି ଆମେ ଯେଉଁ ଭାଷାରେ ଲେଖୁଛୁ ଓ କହୁଛୁ ତାର ଅସ୍ତିତ୍ୱ ହୁଏ ତ ନଥାନ୍ତା ! ଭାଷା ଓ ସାହିତ୍ୟ ଥିଲା ଓଡ଼ିଶାରେ ନବଜାଗରଣର ଭିତ୍ତିଭୂମି ଓ ସାର୍ ଜନ୍ ବୀମସ୍ ଥିଲେ ତାହାର ନିର୍ମାତା।

ଏହାଙ୍କର ଯଥାର୍ଥ ସ୍ମୃତି ଚିହ୍ନ ଅଦ୍ୟାପି କଟକରେ ନିର୍ମିତ ହୋଇ ନଥିବା ଯଥାର୍ଥରେ ଆମ୍ଭମାନଙ୍କର ଇତିହାସବୋଧର ଅଭାବ ସୂଚିତ କରିଥାଏ। ଖ୍ରୀଷ୍ଟାବ୍ଦ ୧୮୭୩ରୁ ଖ୍ରୀଷ୍ଟାବ୍ଦ ୧୮୭୭ ପର୍ଯ୍ୟନ୍ତ ସେ କଟକରେ କଲେକ୍ଟର ରୂପେ ଅବସ୍ଥାପିତ ଥିଲେ। ଏହି ସମୟ ମଧ୍ୟରେ ସେ କମିଶନର ରେଭେନ୍‌ସାଙ୍କ ସ୍ଥାନରେ ଅସ୍ଥାୟୀ କମିଶନର ରୂପେ ମଧ୍ୟ କେତେମାସ କାର୍ଯ୍ୟ କରିଥିଲେ। ତାଙ୍କର ଜୀବନ ସ୍ମୃତିରୁ ଜଣାପଡ଼େ, କଟକ ସହରର ସୌନ୍ଦର୍ଯ୍ୟ ବୃଦ୍ଧିପାଇଁ ସେ ସେତେବେଳେ ସହରର ନାଳିଗୋଡ଼ି ବିଛା ପୁରୁଣା

ରାସ୍ତାମାନଙ୍କର ଧାରେ ଧାରେ ଦେବଦାରୁ ବୀଥିକା ସବୁ ରୋପିଥିଲେ। କଟକରେ ସେତେବେଳେ ହୁଏତ ଦେବଦାରୁ ଗଛ ନଥିଲା ବା ସହଜଲଭ୍ୟ ନଥିଲା। ଦେବଦାରୁ ଚାରାପାଇଁ ସେ କଟକରେ ଗୋଟିଏ ଦେବଦାରୁ-ନର୍ସରୀ ସ୍ଥାପନ କରିଥିଲେ। ଏକଦା କଟକ କିଲଟରୀର ରାସ୍ତା ଦୁଇକଡ଼େ ଥିଲା ଏହି ଛାୟାଘନ ଦେବଦାରୁମାନଙ୍କର ବୀଥିକା। ଲାଲ୍‌ବାଗ୍ କୋଠିରେ ସେଦିନର ଘଞ୍ଚ ଦେବଦାରୁ ବଣ ମଧ୍ୟ ହୁଏତ ଥିଲା ସାର୍ ଜନ୍ ବୀମ୍‌ସଙ୍କ ଦେବଦାରୁ ପ୍ରୀତିର ନିଦର୍ଶନ। ଚାଉଳିଆଗଞ୍ଜ ଅଞ୍ଚଳରେ ଯୋବ୍ରା ପାଖରେ ଥିଲା ବୀମ୍‌ସଙ୍କର ବଙ୍ଗଳା ବା କୋଠି। ୧୯୪୦ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ସୁଦ୍ଧା ସେ କୋଠିରେ ଆସାମକୁ ଯାଉଥିବା ଦାଦନ ଶ୍ରମିକମାନଙ୍କର ରିକ୍ରୁଟିଙ୍ଗ ସେଣ୍ଟର ଥିଲା। ସାହେବମାନେ ଏଇଠାରେ ସେମାନଙ୍କର ଚା'ବାଗାନ୍‌ପାଇଁ ଓଡ଼ିଆ ଦାଦନ ଶ୍ରମିକମାନଙ୍କୁ ରିକ୍ରୁଟିଂ କରୁଥିଲେ। (ଓଡ଼ିଶାରେ ଦାଦନ ଶ୍ରମିକ ସମସ୍ୟା ତେଣୁ ଆଦୌ ନୂଆ ନୁହେଁ।) ସ୍ୱାଭାବିକ ଭାବରେ ସେ ରାସ୍ତା ଦୁଇକଡ଼େ ଓ ବୀମ୍‌ସ୍‌ଙ୍କ ବଙ୍ଗଳା ହତାରେ ଥିଲା ଘଞ୍ଚ ଦେବଦାରୁ ବଣ ! ଆଜି ସୁଦ୍ଧା ସେ ସବୁର ଧ୍ୱଂସାବଶେଷ ରହିଛି।

ଆଜି ଅବଶ୍ୟ ସନାତନ କଟକ ସହରକୁ ସୁଶୋଭିତ କରିବାପାଇଁ ଧୁମ୍‌ଧାମ୍ ଚାଲିଛି ! କିନ୍ତୁ ଇତିମଧ୍ୟରେ ଯେଉଁ ପୁରୁଣା ଗଛ ସବୁ ଅବାଧରେ ଜଣାଯାଇଛି, ନୂଆ ଗଛଟିଏ ଆଉ ରୋପା ଯାଉନାହିଁ। (ବନ ମହୋତ୍ସବ ନାମରେ କଟକ ମ୍ୟୁନିସିପାଲିଟି ବଜେଟ୍‌ରେ କେତେ ଟଙ୍କା ପ୍ରତିବର୍ଷ ଖର୍ଚ୍ଚ ହେଉଛି ଓ ସେ ଗଛ ସବୁ କାହାନ୍ତି, କଲେକ୍ଟର ଏକା ତାହାର ହିସାବ ଦେଇ ପାରନ୍ତି !) କାଠଯୋଡ଼ି କୂଳର ବଡ଼ ବୁରୁଜ ଉପରୁ ନରାଜର ଶୈଳ ଶ୍ରେଣୀ ଉପରେ ସୂର୍ଯ୍ୟାସ୍ତର ଦୃଶ୍ୟ ସେଦିନ ନିଶ୍ଚିତ ଭାବରେ ଥିଲା ସାରା ଭାରତରେ ତାରିଫ୍ କରିବା ଭଳି ଏକ ପ୍ରାକୃତିକ ଦୃଶ୍ୟ। ପ୍ରତି ସନ୍ଧ୍ୟାରେ ସେଠାରେ ଜମୁଥିଲା ସନ୍ଧ୍ୟାଭିଳାଷୀ ସହରବାସୀଙ୍କ ଭିଡ଼। ମାତ୍ର ଆଜି ସେଠାରେ ଗଢ଼ି ଉଠିଛି ଝୁଗୀ ଝୁପୁଡ଼ିର ମେଳା। କୁତ୍ସିତ ଚିତ୍କାର ଓ କୋଳାହଳ ଭିତରେ ସନ୍ଧ୍ୟାର ପ୍ରଶାନ୍ତି ଆଉ ନାହିଁ। ଅଥଚ ସ୍ଥାନଟି ଖାସ୍‌ମାହାଲର, ପୁଣି ମ୍ୟୁନିସିପାଲିଟିର ତତ୍ତ୍ୱାବଧାନରେ ସହରରେ ଉଜ୍ଜ୍ୱଳ ଆଲୋକର ବ୍ୟବସ୍ଥା ଚାଲିଛି; ମାତ୍ର ସେହି ଉଜ୍ଜ୍ୱଳ ଆଲୋକ ସବୁ ଯତ୍ରତତ୍ର ମୁକ୍ତ ଶୌଚାଳୟମାନଙ୍କୁ ହିଁ ଆଲୋକିତ କରିବାପାଇଁ ଉଦ୍ଦିଷ୍ଟ ! ...କଟକ ସହରର କର୍ତ୍ତାପୁରୁଷମାନେ ସ୍ମରଣ ରଖିବା ଉଚିତ, ସୌନ୍ଦର୍ଯ୍ୟ ସବୁବେଳେ ଗୁଣାତ୍ମକ, ଆଦୌ ପରିମାଣାତ୍ମକ ନୁହେଁ ! ସହରର ଅଧିବାସୀମାନଙ୍କର ରୁଚିଜ୍ଞାନକୁ ପ୍ରଥମେ ଶୋଭିତ ନକରି ସହରକୁ ସୁଶୋଭିତ କରିବାର ଉଦ୍ୟମ ଏକ ପଣ୍ଡଶ୍ରମ ମାତ୍ର ! ସେ ଦୃଷ୍ଟିରୁ ସର୍ବପ୍ରଥମେ କଟକ ସହରର କର୍ତ୍ତା ପୁରୁଷମାନଙ୍କର ରୁଚିଜ୍ଞାନକୁ ଶୋଭିତ କରାଯିବା ଆବଶ୍ୟକ। ମୋର ମନେହୁଏ ସାର୍ ଜନ୍ ବୀମ୍‌ସଙ୍କଠାରୁ ଏ ବାବଦରେ ଅନେକ କିଛି ଶିକ୍ଷା କରିବାର ରହିଛି।

ସାର୍ ଜନ୍ ବୀମ୍ସ୍ କେବଳ ଭାଷାପ୍ରେମୀ ନଥିଲେ, ସେ ମଧ ଥିଲେ ବୃକ୍ଷପ୍ରେମୀ। ତାଙ୍କର ପରମ୍ପରାପ୍ରୀତି ଓ ବୃକ୍ଷପ୍ରୀତିର ଆଉ ଏକ ଜୀବନ୍ତ ନିଦର୍ଶନ ହେଉଛି, ନିମ୍‌ଚୌଡ଼ି ଛକ ଉପରର ନିମଗଛ । ସୁପ୍ରସିଦ୍ଧ ବାଙ୍କି-ପଣ୍ଡିତ ଗୋବିନ୍ଦ ରଥଙ୍କ ଦ୍ୱାରା ରଚିତ "ରାଜଧାନୀ କଟକ ନଗରୀ" (ପ୍ରକାଶ କାଳ, ଅରୁଣୋଦୟ ପ୍ରେସ୍, ୧୮୯୪)ରେ ଲେଖା ଅଛି-

"ମରହଟ୍ଟା କାଳୁଁ ଥିଲା ନିମ ତରୁବର।
ତେଣୁ ଏ ନିମଚଉଡ଼ି ହେଲା ଆଖ୍ୟାଧର।
ବୀମ୍ସ ସାହେବଙ୍କର ଦୃଢ଼ ଆଦେଶରୁ।
ପ୍ରଜାଏ ରୋପିଲେ ଆଣି ନୂଆ ନିମତରୁ।"

ମରହଟ୍ଟାମାନଙ୍କ ଅମଳରେ ଏହି ଚଉମୁହାଣୀର ନାମ ଥିଲା ନିମଚଉଡ଼ି- ହୁଏତ ସେଠାରେ ମରହଟ୍ଟାମାନଙ୍କ ପୂର୍ବରୁ ଗୋଟାଏ ନିମଗଛ ଥିଲା ବୋଲି। କିନ୍ତୁ ବୀମ୍ସଙ୍କ ବେଳକୁ ସେ ଗଛଟି ମରି ଯାଇଥିଲା। ଇଂରେଜମାନେ ଇତିହାସ ଓ ପରମ୍ପରାପ୍ରିୟ ଥିବାରୁ ବୀମ୍ସ୍‌ଙ୍କର ଆଦେଶରେ ଲୋକେ ସେହି ସ୍ଥାନରେ ଆଉ ଗୋଟିଏ ନୂଆ ନିମଗଛ ଲଗାଇଥିଲେ। ଆଜି ମଧ ସେହି ସ୍ଥାନରେ ବୀମ୍ସ୍‌ଙ୍କର ସେହି ନିମଗଛଟି ରହିଛି। କିନ୍ତୁ ତା' ମୂଳରେ ଏବେ ଚିନାବାଦାମ ବିକ୍ରି ଚାଲିଛି... ସାଇକଲ ପ୍ୟାଚ୍‌ବାଲା ଗଛ ଦେହରେ ପୁରୁଣା ଟାୟାରର ମାଳା ଝୁଲାଇ ସାର୍ ଜନ୍ ବୀମ୍ସ୍‌ଙ୍କ ଓଡ଼ିଆ ଭାଷା ବତ୍ସଳତା ପ୍ରତି ଶ୍ରଦ୍ଧା ନିବେଦନ କରୁଅଛି।

ଓଡ଼ିଆ ସାହିତ୍ୟ ଓ ସଂସ୍କୃତିର ବଡ଼ ପଣ୍ଡାମାନେ ସେହି ଗଛମୂଳେ ଗୋଟିଏ ବେଦୀ ତିଆରି କରି, ଲୁହା ରେଲିଂ ବେଢ଼ାଇ ସେଠାରେ ସାର୍ ଜନ୍ ବୀମ୍ସ୍‌ଙ୍କର ଉଦ୍ଦେଶ୍ୟରେ ଗୋଟିଏ ସ୍ମୃତିଫଳକ ଲଗାଇ ପାରିଲେ କ୍ଷତି କ'ଣ ହୁଅନ୍ତା ? କେବଳ ଯେ ସହରବାସୀ ଇତିହାସ ପ୍ରତି ଶ୍ରଦ୍ଧା ପ୍ରକାଶ କରନ୍ତେ ତାହାନୁହେଁ, ଏହାଦ୍ୱାରା ପୂଜ୍ୟ ପୂଜା ପ୍ରତି ମଧ ଯଥାର୍ଥ ଶ୍ରଦ୍ଧା ନିବେଦନ କରନ୍ତେ ।

୨୦/୦୯/୮୭

# ସଂସ୍କୃତିର ଚାରି ଅଧ୍ୟାୟ

ମୋଟାମୋଟି ଭାବରେ ଓଡ଼ିଶାର ସାଂସ୍କୃତିକ ଇତିହାସକୁ ମୁଁ ଚାରିଗୋଟି ପର୍ଯ୍ୟାୟରେ ବିଭକ୍ତ କରିଅଛି। ଗୋଟିଏ ପର୍ଯ୍ୟାୟରେ; ଭୌମକର ଓ ଗଙ୍ଗବଂଶୀ ନରପତିମାନେ ଗଭୀର ଶ୍ରଦ୍ଧା, ପୁଣି ସ୍ଥପତି ଓ ଶିଳ୍ପୀମାନଙ୍କର ଗଭୀରତର ଧାର୍ମିକ ବିଶ୍ୱାସରେ, ଓଡ଼ିଶାର ଅକ୍ଷୟ କଳାକୀର୍ତ୍ତିଶାଳିନୀ ମନ୍ଦିରମାନ ନିର୍ମାଣ କରିଥିଲେ। କେବଳ ରାଜାଦେଶରେ ହୁକୁମ୍ ତାମିଲ୍ କରିବାପାଇଁ ବା ରାଜବଂଶର ପ୍ରଶସ୍ତି ପ୍ରଚାର ଉଦ୍ଦେଶ୍ୟ ଥିଲେ, କୋଣାର୍କ-ପୁରୀ-ଭୁବନେଶ୍ୱରର ମନ୍ଦିରମାନ କଦାପି ନିର୍ମିତ ହୋଇପାରିନଥାନ୍ତା। ଶ୍ରଦ୍ଧା ଓ ବିଶ୍ୱାସ ନଥିଲେ କେବଳ କାରିଗରୀ କୌଶଳ ଓ ହଟଚମଟଦ୍ୱାରା କୌଣସି କାଳଜୟୀ ସୃଷ୍ଟି କଦାପି ସମ୍ଭବ ହୁଏନାହିଁ।

ପରବର୍ତ୍ତୀ ପର୍ଯ୍ୟାୟରେ ଷୋଡ଼ଶ ଶତାବ୍ଦୀରେ ଯେଉଁ ବୈଦେଶିକ ଆକ୍ରମଣକାରୀମାନେ ଓଡ଼ିଶା ଦଖଲ କଲେ, ସେମାନେ ଓଡ଼ିଶାର ଜନସାଧାରଣଙ୍କର ଅର୍ଥନୈତିକ ଅବସ୍ଥା ଓ ଜମିଜମା ବ୍ୟବସ୍ଥାକୁ ପୂର୍ବ ତୁଳନାରେ କିଛିଟା ସୁଧାରିଲେ। ଏପରିକି ସୁଜା ଖାଁ ପରି ଉଦାରପନ୍ଥୀ ନାଏବ ନାଜୀମ୍‌ମାନେ ଜଗନ୍ନାଥ ଯାତ୍ରୀ ସଡ଼କକୁ ସୁଗମ କରାଇଲେ। ପୁଣି ଜଗନ୍ନାଥ ଯାତ୍ରୀମାନଙ୍କର ଜଳକଷ୍ଟ ନିବାରଣପାଇଁ, ଜଗନ୍ନାଥ-ସଡ଼କ କଡ଼ରେ ସ୍ଥାନେସ୍ଥାନେ ବାମ୍ଫିମାନ ଖୋଳାଇଲେ ସତ୍ୟ, ମାତ୍ର ମୋଗଲ ନାଏବ୍ ନାଜୀମ୍‌ମାନଙ୍କ କାଳରେ ଧର୍ମାନ୍ଧତାରେ ଧ୍ୱଂସ ହେଲା ବହୁ ପ୍ରାଚୀନ ମନ୍ଦିର ଓ କଳାକୀର୍ତ୍ତି। ଅଷ୍ଟାଦଶ ଶତାବ୍ଦୀରେ ଧର୍ମଧ୍ୱଜୀ ମରହଟ୍ଟାମାନେ ଓଡ଼ିଶାକୁ କିଛିକାଳ ଧରି ନିଜ ଶାସନାଧୀନ ରଖି, ସେମାନେ ଧର୍ମଧ୍ୱଜୀ ଥିବାରୁ ମନ୍ଦିରଗୁଡ଼ିକର ରକ୍ଷଣାବେକ୍ଷଣ କଲେ। ନୂଆ ମଠବାଡ଼ି ବସାଇଲେ। ଶ୍ରୀ ଜଗନ୍ନାଥଙ୍କୁ ସେବାପୂଜା କରିବାପାଇଁ ବିସ୍ତୀର୍ଣ୍ଣ ମାହାଲ ଓ ଅମୃତମଣୋହି ଜମି ଖଞ୍ଜିଲେ। କିନ୍ତୁ ଚଉତ ଆଦାୟ ନାମରେ ବର୍ଗୀ ଜୁଲମ ଚଳାଇ ଓଡ଼ିଶାର ଜନସାଧାରଣଙ୍କର ଅର୍ଥନୈତିକ ମେରୁଦଣ୍ଡ ଭାଙ୍ଗିଦେଲେ। ଉନବିଂଶ ଶତାବ୍ଦୀର ଆରମ୍ଭରେ ଦକ୍ଷିଣ ଆଡୁ ଚିଲିକା ବାଟେ ମେଲ୍‌ଭିଲ୍ ଓ ହାରପୋର୍ଟଙ୍କ ନେତୃତ୍ୱରେ ମୁଷ୍ଟିମେୟ ଇଷ୍ଟଇଣ୍ଡିଆ କମ୍ପାନୀ ସିପାହୀ ଚିଲିକା

ହୁଦବାଟେ ଆସି ପ୍ରଥମେ ପୁରୀ ଅଧିକାର କଲେ। ତା'ପରେ 'ଅଙ୍ଗୁଳି ପ୍ରବେଶାତ୍ ବାହୁ ପ୍ରବେଶ' ପରି, ସେମାନେ ସାରା ଓଡ଼ିଶା କ୍ରମେ ଦଖଲ କରିନେଲେ। ବ୍ରିଟିଶ୍ ଅମଳରେ ଇଂରେଜ ଶାସକମାନେ ଓଡ଼ିଶାର ଭଗ୍ନମନ୍ଦିରମାନଙ୍କର ସଂରକ୍ଷଣ କରି, ସେସବୁର ଉପଯୁକ୍ତ ରକ୍ଷଣାବେକ୍ଷଣ କଲେ। ଜନସାଧାରଣଙ୍କର ଅର୍ଥନୈତିକ ମେରୁଦଣ୍ଡକୁ ସଳଖିବାପାଇଁ କିଛି କିଛି ଚେଷ୍ଟା କଲେ, ଶାନ୍ତି ଶୃଙ୍ଖଳା ଆଣିଲେ ଏବଂ ସର୍ବୋପରି ଇଂରେଜୀ ଶିକ୍ଷା ପ୍ରବର୍ତ୍ତନଦ୍ୱାରା ଓଡ଼ିଶାରେ ନବଜାଗରଣପାଇଁ କ୍ଷେତ୍ର ପ୍ରସ୍ତୁତ କଲେ। ମାତ୍ର ସେମାନେ ଭାଙ୍ଗିଦେଲେ ଓଡ଼ିଶାର ବୀର୍ଯ୍ୟଦୀପ୍ତ ସାମରିକ ଅଭିମାନ ଓ ଅହଂକାର। ସେମାନଙ୍କର କଳାପାହାଡ଼ୀ ଆକ୍ରମଣର ଶରବ୍ୟ ହେଲା, ଖୋର୍ଦ୍ଧାର ବରୁଣେଇଗଡ଼, କଟକର ଇତିହାସ ପ୍ରସିଦ୍ଧ ବାରବାଟୀ ଓ ରାଇବଣିଆ ଦୁର୍ଗ ଇତ୍ୟାଦି। ଏଇ ଦୁର୍ଗମାନଙ୍କର ପ୍ରାଚୀରରେ ଓଡ଼ିଆ ଜାତିର ଦୁର୍ଦ୍ଧର୍ଷତାର ଯେଉଁ ଚେହେରା ଉତ୍‌କୀର୍ଣ୍ଣ ରହିଥିଲା, ତାହା ସେମାନଙ୍କ ମନରେ ଛାନିଆ ପୂରେଇ ଦେଇଥିଲା। ପାଇକ ବିଦ୍ରୋହ ବେଳେ ଓଡ଼ିଆ ପାଇକମାନେ କମ୍ପାନୀ ସରକାରଙ୍କୁ ଯେଉଁ ମରଣ କାମୁଡ଼ା ଦେଇଥିଲେ, ତାହା କମ୍ପାନୀ ଭୁଲି ପାରିନଥିଲା। ସେଥିପାଇଁ ଏଇ ଦୁର୍ଗମାନଙ୍କର ପ୍ରାଚୀର ସବୁ ସେମାନେ ଭାଙ୍ଗି ମାଟିରେ ମିଶାଇ ଦେଇଥିଲେ- ଯାହା ଫଳରେ କି ଓଡ଼ିଆ ଜାତି କାଳ କାଳ ପାଇଁ ତା'ର ସାମ୍ରାଜ୍ୟ ଓ ସାମରିକ ଐତିହ୍ୟକୁ ଭୁଲିଯିବ।

ସ୍ୱାଧୀନତା ପ୍ରାପ୍ତି ପରେ, କ'ଣ ହେଲା ନ ହେଲା, ତା'ର ହିସାବ ଫର୍ଦ୍ଦ ବାହାର କରିବା ଏଠାରେ ମୋର ଅଭିପ୍ରାୟ ନୁହେଁ। କିନ୍ତୁ ଅତୀତରେ; ଇତିହାସର ସବୁ ବିଡ଼ମ୍ବନା ବିପର୍ଯ୍ୟୟ ଓ ଦୁର୍ଭାଗ୍ୟ ମଧ୍ୟରେ ଓଡ଼ିଶାର କଳାକୀର୍ତ୍ତି ଓ ସାମରିକ ଅହଂକାର ଯେଉଁ ସ୍ମୃତି ଟିକକ ଓଡ଼ିଆ ଜାତିପାଖରେ ଅବଶିଷ୍ଟ ରହିଥିଲା, ତାହାକୁ ନିଭାଇ ଦେବାପାଇଁ ପ୍ରଗାଢ଼ ଉଦ୍ୟମ ଚାଲିଥିଲା। ଏବେ କ'ଣ ହେଉଛି ନହେଉଛି ତାହା ବିଚାର କରିବାର କଥା। ସଂସ୍କୃତି ଚର୍ଚ୍ଚା ଦ୍ୱାହିରେ ବାରବାଟୀର ଦୁର୍ଗ-ପରିଖା ଆଜି ବିଲାତି ଦଳରେ ଭର୍ତ୍ତି। ସେଠାରେ ଫିସରୀ ଡିପାର୍ଟମେଣ୍ଟ ମାଛ କଲ୍‌ଚର ଆରମ୍ଭ କରିଛନ୍ତି। ଦୁର୍ଗ ଭିତରେ କିରାଣୀ ପଡ଼ା ବସାଯାଇ, ନବ୍ୟ କଲମ ସିପାହୀ ଓ ସେନାପତିମାନଙ୍କର ଛାଉଣୀ ସବୁ ବସିଗଲାଣି। ବାରବାଟୀ ଦୁର୍ଗର ଐତିହାସିକ ମାଟି ଉପରେ ପାଦ ଦେଲେ, କୌଣସି ଓଡ଼ିଆ ଶିଶୁ, ବାଳକ ବା ଯୁବକ ମୁହୂର୍ତ୍ତକ ପାଇଁ ସୁଦ୍ଧା କଦାପି ମନେ ପକାଇ ପାରିବ ନାହିଁ, ତା'ର ଅନଙ୍ଗଭୀମ ଦେବ, କପିଳେନ୍ଦ୍ରଦେବ ଓ ମୁକୁନ୍ଦଦେବ ପ୍ରମୁଖଙ୍କୁ। ପଠାଣ, ମୋଗଲ, ମରହଟ୍ଟା ଓ ବ୍ରିଟିଶ୍‌ମାନଙ୍କ କାଳରେ ଏହି ସ୍ମୃତିଟିକୁ କିନ୍ତୁ ଜୀବନ୍ତ ଓ ଅକ୍ଷୁଣ୍ଣ ରଖାଯାଇଥିଲା। ଆଜି ଖୋର୍ଦ୍ଧାର ବରୁଣେଇ ଦୁର୍ଗ ପ୍ରାନ୍ତରରେ ଖୋଜିବସିଲେ, ଦୁର୍ଜ୍ଜୟ ଓଡ଼ିଆ ପାଇକମାନଙ୍କର ସ୍ମୃତି ତ ମିଳିବ ନାହିଁ, ବରଂ ମିଳିପାରିବ ସାମାଜିକ ବନୀକରଣ ବା ଅନ୍ୟ କିଛି ପାଇଁ

ଉଦ୍ୟମ। ରାଇବଣିଆ ଏବେ ଏକ ପରିତ୍ୟକ୍ତ ପ୍ରାନ୍ତର। ଓଡ଼ିଆ ଜାତିର ଏହି ଇତିହାସ ବିସ୍ମୃତ ପିଢ଼ିକୁ, ସେମାନଙ୍କର ଐତିହ୍ୟ ଓ ଇତିହାସ ମନେପକାଇ ଦେବାପାଇଁ କେଉଁଠାରେ ସାମାନ୍ୟ ସ୍ମୃତି ଫଳକଟିଏ ସୁଦ୍ଧା ନାହିଁ। ଓଡ଼ିଶା ସାହିତ୍ୟ ଅକାଦେମୀର ରଜତ ଜୟନ୍ତୀ ଉତ୍ସବବେଳେ ବହୁ ଅର୍ଥ ବ୍ୟୟ କରି ବାରବାଟୀ ଦୁର୍ଗ ପ୍ରାଚୀରର ପ୍ରକାଣ୍ଡ ଆଲୋକଚିତ୍ରମାନ ଉଠାଇ ସେ ସବୁର ପ୍ରଦର୍ଶନ କରାଯାଇଥିଲା। ତାହା ସେତେବେଳେ ସ୍ୱଦେଶୀ ଓ ବିଦେଶୀ ଦର୍ଶକମାନଙ୍କର ମନରେ କି ଚାଞ୍ଚଲ୍ୟ ସୃଷ୍ଟି କରିଥିଲା, ପ୍ରତ୍ୟକ୍ଷଦର୍ଶୀମାନେ କେବଳ ତାହା ସ୍ମରଣ କରିପାରନ୍ତି।

କଥା ଥିଲା, ରଜତ ଜୟନ୍ତୀ ଅବକାଶରେ ଏକାଦେମୀ ଯେଉଁ କଳା, ସମ୍ପଦ ବା ଆସେଟ୍ ସବୁ ସୃଷ୍ଟି କରିବ, ଓଡ଼ିଶା ସରକାରଙ୍କ ପକ୍ଷରୁ ଓଡ଼ିଶା ମ୍ୟୁଜିୟମ୍ ସେସବୁକୁ ବିନା ମୂଲ୍ୟରେ ଗ୍ରହଣ କରି ସେସବୁର ସଂରକ୍ଷଣ କରିବ। ଏପରି ହୋଇପାରିଥିଲେ ଏଇ କଳା ସମ୍ପଦ ସବୁ ଅନ୍ତତଃ ପକ୍ଷେ ସୁରକ୍ଷିତ ରହିପାରିଥାଆନ୍ତା। ମାତ୍ର ମ୍ୟୁଜିୟମ୍ କର୍ତ୍ତୃପକ୍ଷ କେଜାଣି କାହିଁକି ସେସବୁକୁ ସ୍ପର୍ଶ ସୁଦ୍ଧା କଲେ ନାହିଁ। ଅଥଚ ରଜତ ଜୟନ୍ତୀ ବେଳେ ତିଆରି କରାଯାଇଥିବା ରାଜାରାଣୀ ମନ୍ଦିରର ପ୍ରସିଦ୍ଧ ଲେଖିକା ମୂର୍ତ୍ତିର ଅନୁକରଣରେ ଡାଳିମ୍ବାକାରରେ ତିଆରି କରାଯାଇଥିବା ପ୍ରକାଣ୍ଡ ଲେଖିକା ମୂର୍ତ୍ତିଟିକୁ ସରକାରଙ୍କର ସାଂସ୍କୃତିକ ବିଭାଗ, ଅକାଦେମୀକୁ ନ ଜଣାଇ ଏକପ୍ରକାର ହରଣଚାଳ କରି, ଟ୍ରକରେ ପକାଇ ସିଧା ଦିଲ୍ଲୀ ଟ୍ରେଡ଼୍ ଫେୟାରର ଓଡ଼ିଶା ପାଭଲିୟନ୍‌କୁ ଚାଲାଣ କରିଦେଲେ। ସେଥିରେ ପୁଣି ଟ୍ରକ୍‌ରେ ନେବାବେଳେ ଏ ମୂର୍ତ୍ତିର ଗୋଟିଏ ହାତ ଭାଙ୍ଗି ଯାଇଥିଲା। ସେହିପରି ସାରା ଭାରତରେ ଆଜି ଏଲୋରା ଅଜନ୍ତାର ପୂର୍ବକାଳୀନ ବୋଲି କୁହାଯାଇଥିବା ପ୍ରସିଦ୍ଧ ସୀତାବିଞ୍ଜି ଫ୍ରେସ୍‌କୋ ଭିତ୍ତିଚିତ୍ରର ଗୋଟିଏ ବିଶ୍ୱସ୍ତ ପ୍ରତିଲିପି ଖୋଜିଲେ ଓଡ଼ିଶାରେ କାହିଁକି ଭାରତର କେଉଁଠି ହେଲେ ମିଳିବ ନାହିଁ। ଅକାଦେମୀର ରଜତ ଜୟନ୍ତୀ ବେଳେ ପ୍ରଚୁର ଅର୍ଥବ୍ୟୟ କରାଯାଇ ଏହାର ଏକ ପ୍ରକାଣ୍ଡ ପ୍ରତିଲିପି ଅଙ୍କନ କରାଯାଇଥିଲା। ସେ ପ୍ରତିଲିପିଟି ଅକାଦେମୀ ଗୋଦାମରେ ବହୁକାଳ ପଡ଼ିବା ପରେ ଓଡ଼ିଶା ମ୍ୟୁଜିୟମ୍‌ର ଶତବାର୍ଷିକୀ ବେଳେ କେବଳ ସ୍ୱର୍ଗୀୟା ଇନ୍ଦିରାଗାନ୍ଧୀଙ୍କ ଯୋଗୁ ତାହା ଶତବାର୍ଷିକୀ ମଣ୍ଡପରେ ପ୍ରଦର୍ଶିତ ହୋଇପାରିଥିଲା। ଏବେ ତାହା ଅବଶ୍ୟ ମ୍ୟୁଜିୟମ୍‌ରେ ରହିଛି, ମାତ୍ର ସୀତାବିଞ୍ଜି ଫ୍ରେସ୍‌କୋ ସମ୍ପର୍କରେ ଆଜି କୌଣସି ଶିକ୍ଷିତ ଓଡ଼ିଆ ଯୁବକକୁ ପଚାରିଲେ, ସେ ଏହାର ଅସ୍ତିତ୍ୱ ସଂପର୍କରେ ବିନ୍ଦୁ ବିସର୍ଗଟିଏ ସୁଦ୍ଧା କହିପାରିବ ନାହିଁ।

ଆଜି ସଂସ୍କୃତିଚର୍ଚ୍ଚା ନାମରେ ଖୁବ୍ ହଟ୍ଟଗୋଳ ଶୁଣାଯାଉଥିବା ଆଶା ଓ ଆନନ୍ଦର କଥା। କିନ୍ତୁ ସଂସ୍କୃତିର ସଂଜ୍ଞା କ'ଣ ? ସଂସ୍କୃତି ଚର୍ଚ୍ଚାର ଆଭିମୁଖ୍ୟ ବା କ'ଣ ? ସଂସ୍କୃତିର କେଉଁ ଅର୍ଥ ବୁଝି, ଓଡ଼ିଶା ବଜେଟରେ କରଦାତାମାନଙ୍କର ପ୍ରଭୂତ ଅର୍ଥ ଖର୍ଚ୍ଚ କରାଯାଉଛି ?

ଏସବୁ ପ୍ରଶ୍ନର ଉତ୍ତର କିଏ କିପରି ଦେବ, ମୁଁ ଜାଣେନାହିଁ। ଜାଣିବାପାଇଁ ମୋର ଆଗ୍ରହ ମଧ୍ୟ ନାହିଁ। କିନ୍ତୁ ସଂସ୍କୃତି ମଠର ମଠାଧୀଶମାନଙ୍କୁ ମୋର କେବଳ ଗୋଟିଏ ବିନୀତ ନିବେଦନ- ଉତ୍କଳୀୟ ସଂସ୍କୃତିର ସବୁ ତ ଯାଇଥିଲା, ଯେଉଁ ସ୍ମୃତି ଟିକକ ଅବଶିଷ୍ଟ ରହିଥିଲା, ତାହାକୁ ବର୍ତ୍ତମାନ ଧ୍ୱଂସମୁଖରୁ ଅନ୍ତତଃ ରକ୍ଷା କରାଯାଉ।

୨୬/୦୯/୮୭

# ସ୍କନ୍ଧଂ ନବାଧତେ ରାଜନ୍...

କାଳିଦାସ ଲେଖିଥିଲେ, "ମନ୍ଦଃ କବିଯଶଃପ୍ରାର୍ଥୀ"ମାନଙ୍କ କଥା। କବିଯଶପ୍ରାର୍ଥୀମାନଙ୍କ ପ୍ରତି ଏଥିରେ ପ୍ରଚ୍ଛନ୍ନ ଥିଲା କିଛିଟା କଟାକ୍ଷ। ସେତେବେଳେ ହୁଏତ ଥିଲେ, ବହୁ କବିଯଶପ୍ରାର୍ଥୀ, ଉଜ୍ଜୟିନୀଠାରୁ ଆରମ୍ଭ କରି, ଥାନେଶ୍ୱର ପର୍ଯ୍ୟନ୍ତ। କିନ୍ତୁ ସଂପ୍ରତି ଯତ୍ରତତ୍ର ଦେଖାଦେଲେଣି, ବହୁ ମହାକବି-ଯଶପ୍ରାର୍ଥୀ।

ମାତ୍ର ସଂସ୍କୃତ କାବ୍ୟ ସାହିତ୍ୟର ଇତିହାସ ପର୍ଯ୍ୟାଲୋଚନା କଲେ ଦେଖାଯିବ ମହାକାବ୍ୟ ଓ ସେହି ସୂତ୍ରରେ ମହାକବିମାନେ ସୁସମୃଦ୍ଧ ସଂସ୍କୃତ କାବ୍ୟ-ସାହିତ୍ୟର ଅବକ୍ଷୟଗ୍ରସ୍ତ ପର୍ଯ୍ୟାୟରେ ହିଁ ପ୍ରକଟିତ ହୋଇଥିଲେ। ସଂସ୍କୃତ ସାହିତ୍ୟର ଐତିହାସିକମାନେ ଆନୁମାନିକ ଖ୍ରୀଷ୍ଟୀୟ ଦ୍ୱିତୀୟ ଶତାବ୍ଦୀଠାରୁ ଦ୍ୱାଦଶ ଶତାବ୍ଦୀ ପର୍ଯ୍ୟନ୍ତ କାଳକୁ 'କାବ୍ୟଯୁଗ' ନାମରେ ନାମିତ କରିଥାଆନ୍ତି। ଖ୍ରୀଷ୍ଟୀୟ ଷଷ୍ଠ ଶତାବ୍ଦୀରେ 'ଶିଶୁପାଳ ବଧ'ର ପ୍ରଣେତା ମାଘଙ୍କଠାରୁ ଆରମ୍ଭ କରି, 'ନୈଷଧ'ର କବି ଶ୍ରୀହର୍ଷଙ୍କ ପର୍ଯ୍ୟନ୍ତ ଚିହ୍ନିତ କାଳର କବିମାନଙ୍କର କାବ୍ୟକୁ ସଂସ୍କୃତ ସାହିତ୍ୟର ସମାଲୋଚକମାନେ ମହାକାବ୍ୟ ରୂପେ ଚିହ୍ନିତ କରିଅଛନ୍ତି। ସେହି ସୂତ୍ରରେ ମହାକାବ୍ୟମାନଙ୍କର ପ୍ରଣେତାମାନେ ହେଉଛନ୍ତି ମହାକବି।

ଏଇ ମହାକବିମାନଙ୍କର ମହାକାବ୍ୟଗୁଡ଼ିକ ପ୍ରବୃତ୍ତିରେ ଆଳଙ୍କାରିକ ଓ ପ୍ରୟୋଗବାଦୀ। ପ୍ରୟୋଗବାଦ ଦ୍ୱାହିରେ ଏମାନେ ରସ- ଯାହାକି ହେଉଛି କାବ୍ୟର ଆତ୍ମା- ତାହାକୁ ଏକପ୍ରକାର ବିସର୍ଜନ ଦେଇଥିଲେ। ଅଳଙ୍କାରର ଔଜ୍ଜ୍ୱଲ୍ୟ, କାବ୍ୟର କାନ୍ତି ଏହି ଆଳଙ୍କାରିକ କାବ୍ୟମାନଙ୍କରେ ନିଷ୍ପ୍ରଭ ହୋଇପଡ଼ିଥିଲା। ଅନ୍ୟ ଭାବରେ କହିଲେ, ପ୍ରସାଧନର ଚମତ୍କାରିତା ମଧ୍ୟରେ ଲାବଣ୍ୟମୟୀର ଲାବଣ୍ୟ ହଜି ଯାଇଥିଲା। ଲାବଣ୍ୟମୟୀର ଶୋଭା କିନ୍ତୁ, ତାର ପ୍ରସାଧନ ବା 'ମେକ୍‌ଅପ୍' କିମ୍ୱା ଅଳଙ୍କାରରେ ନଥାଏ, ଥାଏ ତା'ର ନିରାଭରଣ ଲାବଣ୍ୟରେ। କାବ୍ୟ କବିତା କ୍ଷେତ୍ରରେ ମଧ୍ୟ ଠିକ୍ ସେଇ କଥା। ପ୍ରୟୋଗବାଦ କଦାପି କାବ୍ୟର ଆତ୍ମା ହୋଇ ନପାରେ। ମହାକବିମାନେ

କିନ୍ତୁ ଏ ସରଳ ସତ୍ୟଟିକୁ ଭୁଲିଯାଇ କ୍ଲିଷ୍ଟ, ବହୁଅର୍ଥବ୍ୟଞ୍ଜକ- ତେଣୁ ଦୁର୍ବୋଧ୍ୟ କାବ୍ୟମାନ ରଚନା କରିବାକୁ ଲାଗିଲେ। ସେଥିପାଇଁ ଏହି ମହାକାବ୍ୟ ଓ ମହାକବିମାନଙ୍କ ସହିତ ସଂସ୍କୃତ କାବ୍ୟ ସାହିତ୍ୟର ବିଳୟ ଘଟିଥିଲା। କାଳିଦାସ, ସୁବନ୍ଧୁ, ଗୁଣାଢ଼୍ୟ ଓ ଭାରବୀ ପ୍ରମୁଖ ପ୍ରସିଦ୍ଧ କାଳଜୟୀ କବିମାନେ କିନ୍ତୁ ମହାକବି ଗୋଷ୍ଠୀର ଅନ୍ତର୍ଭୁକ୍ତ ନୁହନ୍ତି କିମ୍ବା ସୁପ୍ରସିଦ୍ଧ 'ରଘୁବଂଶ' ବା 'ଋତୁସଂହାର' ପ୍ରଭୃତି କାବ୍ୟମାନ ମହାକାବ୍ୟ ଶ୍ରେଣୀଭୁକ୍ତ ନୁହନ୍ତି। ସେଥିପାଇଁ ମହାକବି-ଯଶପ୍ରାର୍ଥୀମାନେ ସ୍ମରଣ ରଖିବା ଉଚିତ, ମହାକବି ଓ ମହାକାବ୍ୟ ଗୌରବ ନୁହେଁ; ବରଂ ଅପମାନ। ପ୍ରଶସ୍ତି ନୁହେଁ; ପରିହାସ।

ସଂସ୍କୃତରେ ପୁଣି ମହାପଣ୍ଡିତର ଅର୍ଥ ହେଉଛି ମୂର୍ଖ। ମହାବ୍ରାହ୍ମଣର ଅର୍ଥ ଚଣ୍ଡାଳ। ମହାମାଂସର ଅର୍ଥ ଘୁଷୁରି ମାଂସ। ଏସବୁ ସୁପ୍ରତିଷ୍ଠିତ ପରମ୍ପରା ସତ୍ତ୍ୱେ କାହିଁକି ଯେ ମହାକବି ଯଶପାଇଁ କେହିକେହି କବି ଏପରି ବ୍ୟାକୁଳ, ତାହାର କାରଣ ବୁଝିବା ପ୍ରକୃତରେ କଠିନ। ଏହା ଯଦି ଏକ ମାନସିକ ବିକୃତି ହୋଇଥାଏ, ତା'ହେଲେ ଯେତେ ଶୀଘ୍ର ସେମାନେ ସେପରି ବିକୃତିରୁ ଆରୋଗ୍ୟ ଲାଭ କରନ୍ତି ତାହା କାବ୍ୟ ପକ୍ଷରେ ତଥା କବିମାନଙ୍କ ସାରସ୍ୱତ ସ୍ୱାସ୍ଥ୍ୟ ପକ୍ଷରେ ସେତେ ମଙ୍ଗଳପ୍ରଦ ହେବ। ସର୍ବକାଳର ମହାକବି କାଳିଦାସଙ୍କୁ କେହି କେହି ମହାକବି ରୂପେ ସମ୍ବୋଧନ କରିବା ତ ଦୂରର କଥା, କବି କାଳିଦାସ ବୋଲି ସୁଦ୍ଧା ଚିହ୍ନିତ କରିଯାଇନାହାନ୍ତି। ତାଙ୍କର କାବ୍ୟ ଓ ନାଟକମାନଙ୍କରେ ହିଁ ତାଙ୍କର ଅମଳିନ ମହାକବି ଯଶ ଉତ୍କୀର୍ଣ୍ଣ ହୋଇ ରହିଛି। କୌଣସି ବିକ୍ରମାଦିତ୍ୟଙ୍କ ରାଜ ଦରବାରରେ କାଳିଦାସଙ୍କୁ ମକରକୁଣ୍ଡଳ ଓ ଉତ୍ତରୀୟ ଦେଇ କେହି ମହାକବି ଉପାଧି ଦେଇ ନାହାନ୍ତି। କାଳିଦାସ ବିକ୍ରମାଦିତ୍ୟଙ୍କର ରାଜସଭାର ଗୌରବ ବଢ଼ାଇଛନ୍ତି ସିନା; ବିକ୍ରମାଦିତ୍ୟଙ୍କର ରାଜସଭା ଓ ମକରକୁଣ୍ଡଳ କାଳିଦାସଙ୍କର କବି ଯଶକୁ ଆଦୌ ଅଧିକ ଗୌରବ ଦେଇ ନାହିଁ। ନିଖିଳ ବିଶ୍ୱର ରସାମୋଦୀ ପାଠକସମାଜ କାଳିଦାସଙ୍କୁ ମହାକବି କାହିଁକି, ସର୍ବକାଳର କବିରୂପେ ସ୍ୱୀକୃତି ଦେଇଅଛନ୍ତି।

ଇଂରାଜୀ ସାହିତ୍ୟରେ ସେକ୍‌ସପିଅରଙ୍କୁ କିଏ ବା ପୋଏଟ୍ ସେକ୍‌ସପିଅର ବୋଲି ଚିହ୍ନାଇଥାଏ ? କିନ୍ତୁ ମହାକାଳ ତାଙ୍କୁ କାଳିଦାସଙ୍କ ପରି ସର୍ବକାଳର ବିଶ୍ୱକବି ରୂପେ ସ୍ୱୀକୃତି ଦେଇଛି। ସେଲୀ, ବାଇରନ୍, କୀଟ୍‌ସ, ୱାଡ଼ର୍ସୱାର୍ଥ ପ୍ରମୁଖ କବିକୁଳ କେବେ ତ ଛାତିରେ ମହାକବିର ଚକ୍‌ମା ଝୁଲାଇ ବୁଲି ନାହାନ୍ତି; କିନ୍ତୁ ସବୁ ଦୃଷ୍ଟିରୁ ସେମାନେ କ'ଣ ମହାକବି ପଦବାଚ୍ୟ ନୁହନ୍ତି ? ଅଥଚ ଜର୍ମାନ କବି ଗେଟେ ଭାରି ଜୋର୍‌ରେ କହିଥିଲେ; "ବିଶ୍ୱ ସାହିତ୍ୟ ଓ ସେହି ସୂତ୍ରରେ ବିଶ୍ୱକବିମାନଙ୍କର କଥା। ଏକଥା ସେକ୍‌ସପିୟର କିନ୍ତୁ କେବେ ଭୁଲରେ ସୁଦ୍ଧା ଉଚ୍ଚାରଣ କରି ନଥିଲେ। ତଥାପି ସେକ୍‌ସପିୟର, ସେକ୍‌ସପିୟର

ଗେଟେ, ଗେଟେ- ଜଣେ ସାର୍ବଜନୀନ ପାଠକର ହୃଦୟ ଓ ଚେତନାର ଓ ଆଉ ଜଣେ ଲାଇବ୍ରେରୀ ବୁକ୍-ସେଲ୍‌ଫର ଉପର ଥାକରେ ।

ସେଥିପାଇଁ ମହାକବି ଯଶପାଇଁ ବ୍ୟାକୁଳତା ଦେଖି କାଳିଦାସଙ୍କର ଗୋଟିଏ ଉକ୍ତି ମୋର ମନେପଡୁଛି, "ସ୍କନ୍ଧଂ ନବାଧତେ ରାଜନ୍ ତବ ବାଧତି ବାଧତେ"।

୧୧/୧୦/୮୭

# ଋତୁ-ସଂହାର

ଏ ଋତୁ ହେମନ୍ତ ନୁହେଁ। ଏହା ଅନ୍ୟ ଏକ ଋତୁ। ମାତ୍ର ମୁଁ ତାହାର ନାମ ଜାଣେ ନାହିଁ। ଏହି ସ୍ତମ୍ଭର ସୁଧୀ ପାଠକ, ପାଠିକାମାନେ ମଧ୍ୟ ତାହା ଜାଣି ନଥିବେ। ଋତୁଚକ୍ରର ଷଡ଼ଋତୁ ମଧ୍ୟରେ ଏ ଋତୁ କିନ୍ତୁ ନାହିଁ। ଋତୁ ସବୁ ଆଜି ଋତୁହ [illegible] ହୋଇଛନ୍ତି କାହିଁକି କେଜାଣି ? ଏ ବର୍ଷ ଶରତ ମଧ୍ୟ କୁଆଡ଼େ ବାଁ-କାଲିଆ ଦେଇ କାଶତଣ୍ଡୀ ବଣମାନଙ୍କରେ ଲୁଚିଛପି ବିଦାୟ ନେଇଗଲା, ମୁଁ ଆଦୌ ଜାଣିପାରିଲି ନାହିଁ। ଝରା ଶେଫାଳି ରହିଗଲା କେବଳ କବିତା ବହିମାନଙ୍କରେ। ସେହିପରି ଶରତର ସ୍ୱର୍ଣ୍ଣାଭ ଗୋଧୂଳି। ଆଶ୍ୱିନର ନିର୍ମେଘ ଆକାଶରେ ଖଣ୍ଡଖଣ୍ଡ ଛିଣ୍ଡା ମେଘ ନ ଥିଲେ କିମ୍ବା ବଳାକା ବି ନଥିଲେ। ଦେବୀ ଅବଶ୍ୟ ସାର୍ବଜନୀନ ପୂଜାମଣ୍ଡପମାନଙ୍କୁ ସପରିବାର ଯଥାବିଧି ଆସି ବିଦାୟ ନେଇଗଲେ- କିନ୍ତୁ ଅଶ୍ୱବାହନରେ। ଫଟା ଶୋଷିଲା ମାଟି ଉପରେ ଘୋଡ଼ା ଟାପୁରୁ ଖାଲି ଧୂଳି ଉଡ଼ିଲା ! କୈଳାସପୁରୀରେ ଶିବ ଏକୁଟିଆ ରହିପାରିଲେ ନାହିଁ। ବୋଧହୁଏ ଚିଲମ ସଜାଇଦେବାକୁ ସେଠାରେ କେହି ନଥିଲେ। ନନ୍ଦୀ, ଭୃକୁଟୀ କେଉଁଠି ନିଜେ ଭୋଳ ହୋଇ ପଡ଼ିଥିବେ, ବିଚରା ଭୋଳାନାଥଙ୍କ ହାଇଫରମାସ ଆଉ ବୁଝିବ କିଏ ? ଅଗତ୍ୟା ମହାଦେବ ଆମ ସହରର କୌଣସି କୌଣସି ସାଇକୁ ବାସୁଆ ବଳଦ ପିଠିରେ ଚଢ଼ି ଆସିଲେ। ବୋଧହୁଏ ଅଶିଣର ଖରା-ଝାଞ୍ଜି ଜ୍ୟେଷ୍ଠମାସର ଝାଞ୍ଜିକୁ ବଳି ପଡ଼ିବାରୁ ଗୋଟିଏ ସାଇ ପୂଜାମଣ୍ଡପକୁ ଭୋଳାନାଥ କଳା ସନଗ୍ଲାସ୍ ପିନ୍ଧି ଆସିଥିବା ମୁଁ ଦେଖିଲି ! ଲମ୍ବୋଦର ଗଣେଶଜୀ ସେଇ ମଣ୍ଡପରେ ଗୋଟାଏ ଜିନ୍ ପ୍ୟାଣ୍ଟ ପିନ୍ଧି ବସିଥିଲେ। ଏମିତି ସବୁ ଉଦ୍‌ଭଟତା ମଧ୍ୟରେ ଶରତ ଆସିଲା ଆଉ ଚାଲିଗଲା।

ଆଶ୍ୱିନର ଶେଷ ସନ୍ଧ୍ୟାରେ କୁଆଁରପୂନେଇଁ ଜହ୍ନ ବି ଦିନେ ଉଇଁଲା। ଫୁଲବଉଳବେଣୀ ଗୀତସବୁ କେବେଠାରୁ ନୀରବ ହୋଇଛି। କୁମାରୀମାନଙ୍କର ପୂର୍ଣ୍ଣିମା କାହିଁକି କିପରି କୁମାର ପୂର୍ଣ୍ଣିମା ହୋଇଗଲା, ତାହାର ରହସ୍ୟ ମୁଁ ଆଜି ସୁଦ୍ଧା ଖୋଜି ପାଉ ନାହିଁ। ତେବେ ପୁରୀ ବଡ଼ଦେଉଳରେ କୁମାରପୂର୍ଣ୍ଣମୀ ବୋଲି ଜଗନ୍ନାଥ ମହାପ୍ରଭୁଙ୍କର ସେଦିନ କୌଣସି ସ୍ୱତନ୍ତ୍ର

ସେବାବିଧି ନାହିଁ। ମୋର ମନେହେଉଛି, ସେଦିନ କେବଳ ଭିତର କୁଆଁର ଓ ବାହାର କୁଆଁର, ଏହିପରି ଦୁଇଗୋଟି କୁଆଁର ବିଧି ହୋଇଥାଏ। ତା'ହେଲେ କୁଆଁର ଶବ୍ଦର ଅର୍ଥ କ'ଣ ? ଏହା କିନ୍ତୁ ବୋଧହୁଏ କୁମାର ନୁହେଁ କିମ୍ବା କୁମାରୀ ବି ନୁହେଁ। କୁମାରପୂର୍ଣ୍ଣମୀର ସନ୍ଧ୍ୟାରେ ପୂନେଇଁ ଜହ୍ନ ଅବଶ୍ୟ ବିବର୍ଣ୍ଣ ମାଟି ଉପରେ ମୁଠାମୁଠା ରଣୀଫୁଲ ବିଞ୍ଚିଲା। ସେଥିରେ କିନ୍ତୁ ସରାଗ ନଥିଲା। ଫଟାମାଟି ଉପରେ କୁଆଁରପୂନେଇଁ ଜହ୍ନ ଗୋଟାଏ ନିଷ୍ଠୁର ଉପହାସ ପରି ଲାଗିଲା। ଆମ ସହରରେ କିନ୍ତୁ ସେଦିନ କାକୁଡ଼ି ବିକାଳୀମାନଙ୍କର 'କଟେପୁଅ ବାର' ପଡ଼ିଲା। ମୋ ନାତୁଣୀର ପୂଜାଡାଲାପାଇଁ କାକୁଡ଼ି କଷିଟିଏ ବଜାରରୁ କିଣା ହୋଇ ଆସିଲା। ମୁରୁକୁଟିଆ ଚେହେରା। ଦୈର୍ଘ୍ୟ ଦେଢ଼ ଇଞ୍ଚ। ଗୋଲେଇ ସେହି ଅନୁସାରେ- ମୂଲ୍ୟ ମାତ୍ର ତିନିଟଙ୍କା ପଚାଶ ପଇସା। ଏହିପରି ଉଦ୍‌ଭଟତା ମଧ୍ୟରେ ଝିଅମାନେ ଶରତ ଋତୁକୁ ବିଦାୟ ଦେଲେ। ସେମାନଙ୍କ ଡାଲାରେ କିନ୍ତୁ ହେମନ୍ତ ଆସିଲା ନାହିଁ। ପହିଲୁ ଶୀତ କୁଆଡ଼େ ନିଖୋଜ।

ସକାଳ ସବୁ କାକଳିହୀନ। କାଉ ବୋବେଇବା ସୁଦ୍ଧା ମୁଁ ଏବେ ଖୁବ୍ କମ୍ ଶୁଣୁଛି। ଗୁଣ୍ଡୁଚିମୂଷାମାନେ ତ କେଉଁଆଡ଼େ ନିଖୋଜ ହୋଇଛନ୍ତି। ହେମନ୍ତର ସକାଳ ଖରାରେ କମଳାଲେମ୍ବୁ ଚୋପାର ନାରଙ୍ଗୀ ରଙ୍ଗ ନାହିଁ। ହେମନ୍ତ ସକାଳ ଓ ଖରା ଶାଣଦିଆ ଛୁରି ପରି ଚକ୍‌ଚକ୍ କରୁଥିବା ମୁଁ କେବେ ମୋ ଜୀବନର ଛଅଷଠିଟି ହେମନ୍ତ ମଧ୍ୟରେ ଦେଖି ନଥିଲି। ନା... ଇଏ ଏକ ଅନ୍ୟ ଋତୁର ଆକାଶ !

ବାରନ୍ଦାରେ ବସିଛି, ସାମନା ରାସ୍ତାରେ ବୁଢ଼ାଟିଏ ମୁଣ୍ଡରେ ବାଇଗଣ ବୋଝ ମୁଣ୍ଡାଇ ଧକେଇ ଧକେଇ ଡାକି ଚାଲିଥିଲା। ସେ କଳାମାଣିକ ବାଇଗଣ ବୁଢ଼ାର କଳାମାଣିକ ଡାକ ବୋଧହୁଏ ନିରବ ହୋଇଗଲାଣି। ଇଏ ଅନ୍ୟ ଏକ ବୁଢ଼ା। ଉଦ୍ଦେଶ୍ୟହୀନ କୌତୂହଳରେ ତାକୁ ପାଖକୁ ଡାକିଲି। ସିଏ କ୍ଳାନ୍ତ ଭାବରେ ଆସି ବାରନ୍ଦା ପାହାଚ ଉପରେ ବସିଲା। ଗାମୁଛାରେ ମୁହଁରୁ ଝାଳ ପୋଛିଲା। ଜଣେ ପ୍ରତିବେଶୀଙ୍କ କଥା ମନେ ପଡ଼ିଗଲା। ସିଏ କହୁଥିଲେ, ତାଙ୍କ ଗାଁ ଆଡ଼େ ଛନଛନିଆ ଚେହେରାର ବାଇଗଣଗୁଡ଼ା କୁଆଡ଼େ ଭାରି ପିତା ଲାଗୁଛି। ମୁଁ ପଚାରିଲି, "ବାଇଗଣଗୁଡ଼ା ଏବେ ପିତା ଲାଗୁଛି କାହିଁକି କିହୋ ? ତମ ବାଇଗଣ ପିତା ଲାଗିବ ନାହିଁ ତ ?" ବୁଢ଼ାଟି ବୋଧହୁଏ ଚିଡ଼ା ପ୍ରକୃତିର। ସିଏ ଉତ୍ତର ଦେଲା, "ମୁଁ କ'ଣ ଘରେ ବାଇଗଣ ତିଆରି କରୁଚି ? ଧରତୀମାତା ଯୋଉ ଫଳ ଦେଉଛି, ମୁଁ ସେଇ ଫଳ ତମ ଦୁଆରକୁ ଆଣୁଛି ମିଠା, ପିତା କଥା ସିଏ ଜାଣେ।" ମୁଁ ପଚାରିଲି, "କିନ୍ତୁ ଧରତୀମାତାର ଏପରି ବିଚିତ୍ର ଖିଆଲ କାହିଁକି ହେଲା ?"

୧୮/୧୦/୮୭

# ପାଳଭୂତ

ଭୋର ସକାଳୁ କାଉଟାଏ କା... କା... ହେଉଛି; କଣ୍ଠରେ କିନ୍ତୁ କର୍କଶ ତୀବ୍ରତା ନାହିଁ। ଧକେଇ ଧକେଇ ବୋବାଉଛି। ଯେପରି ଶୋଷରେ ତା' ତଣ୍ଟି ଶୁଖିଯାଇଛି। ଫଟାମାଟିର ଆର୍ତ୍ତନାଦ ଯେପରି ଏ କାଉଟାର କଣ୍ଠରେ ଫାଟିପ... କିଛିଦିନ ତଳେ ଖବରକାଗଜରେ ପଢ଼ିଥିଲି, ଘୋର ମରୁଡ଼ିଗ୍ରସ୍ତ କଳାହାଣ୍ଡି, ବଲାଙ୍ଗୀର ଜିଲ୍ଲାରେ କୁଆଡ଼େ କାଉମାନେ ଆଉ ଦିଶୁ ନାହାନ୍ତି। ବୋଧହୁଏ ଦୁର୍ଭିକ୍ଷର ପଦଧ୍ୱନି ଶୁଣି ସେମାନେ ଡରକି, ଅନ୍ୟଆଡ଼େ ଉଡ଼ି ପଳାଇଛନ୍ତି। କିନ୍ତୁ ଆମ ଉପକୂଳବର୍ତ୍ତୀ ଜିଲ୍ଲାମାନ ତ କାଉମାନଙ୍କର ଚରାଭୂଇଁ। ଆମର ଇଆଡ଼େ ସକାଳୁ ସନ୍ଧ୍ୟା ପର୍ଯ୍ୟନ୍ତ କାଉମାନେ କାରଣ ଅକାରଣରେ କା କା ହେଉଥାଆନ୍ତି। ମୁଁ ଏଠାରେ କିନ୍ତୁ ସେମାନଙ୍କୁ ଏବେ କ୍ୱଚିତ୍ ଦେଖୁଛି। ସେମାନଙ୍କ କା... କା... ଶବ୍ଦ ମଧ୍ୟ କ୍ୱଚିତ୍ ଶୁଣୁଛି। ବଣି ଚଢ଼େଇମାନେ ଏଠି ହଠାତ୍ ନିଖୋଜ ହୋଇଛନ୍ତି। ଦୀର୍ଘ ତିନି ମାସ ପରେ କାଲି ମୁହଁସଞ୍ଜର ମହଲଣ ଆଲୁଅ ଭିତରେ କୃଷ୍ଣଚୂଡ଼ା ଡାଳ ଉପରେ କଜଳପାତିଟିଏ କେଉଁଆଡୁ ବାଟ ଭୁଲି ଆସିଥିବା ପରି ଉଡ଼ିଆସି ଥରେ ରାବିଦେଇ ପୁଣି କେଉଁଆଡ଼େ ଉଡ଼ି ପଳାଇଗଲା। କଜଳପାତିଟି ଯେପରିକି ଏକ ଅଜଣା ଆତଙ୍କରେ ଆତଙ୍କିତ। କଜଳପାତିମାନେ ବି ଆଉ ଦେଖାନାହାନ୍ତି। ସେମାନଙ୍କର କାକଳୀ ନିରବ। ଗୁଣ୍ଡୁଚିମୂଷାମାନଙ୍କର କ'ଣ ହେଲା ? ସେମାନେ ସୁଦ୍ଧା ପାଚେରୀ ଉପରେ ଚପଳ ଶିଶୁମାନଙ୍କ ପରି ଆଉ ଧାଁ ଦଉଡ଼ ହେଉ ନାହାନ୍ତି। ମୋର ପୃଥିବୀ ହଠାତ୍ ନିସ୍ତରଙ୍ଗ, ନିସ୍ତବ୍ଧ ହୋଇ ପଡ଼ିଛି। ଭାରି ଉତ୍ପୀଡ଼କ ଏକ ସ୍ତବ୍ଧତା।

ସୁଦୂର ୧୯୫୫ ମସିହାରେ ମାଓ-ସେ-ତୁଙ୍ଗ୍‌ଙ୍କର ଚୀନ୍‌ରେ ମୁଁ ଅନୁଭବ କରିଥିଲି, ଏଇ କାକଳିହୀନ ସ୍ତବ୍ଧତା। ପେକିଂ (ବେଇଜିଙ୍ଗ୍) ସହରରେ ମୋ ହୋଟେଲ୍‌ର ବାଲ୍‌କନୀ ଉପରକୁ ଗୋଟାଏ ପୁରୁଣା ଗଛର ଶାଖାପତ୍ର ଲମ୍ବି ଆସିଥିଲା। ସେଥିରେ ଅବଶ୍ୟ ଲାଲ ଲାଲ ଫୁଲସବୁ ଫୁଟିଥିଲା। ମାତ୍ର ଚଢ଼େଇଟିଏ କେବେ ଭୁଲ୍‌ରେ ସୁଦ୍ଧା ସେ ଗଛ ଡାଳକୁ ଆସୁ ନଥିଲା କିମ୍ବା ବୋବାଉ ନଥିଲା। ଚୀନ୍‌ରେ ପାଞ୍ଚ ସପ୍ତାହବ୍ୟାପୀ

ମୋର ଅବସ୍ଥାନ କାଳରେ ସେ ଦେଶରେ ମୋ ଆଖିରେ ଚଢ଼େଇଟିଏ ପଡ଼ି ନଥିଲା। ଏହାର କାରଣ ପଚାରି ମୁଁ ବୁଝିଥିଲି, ମାଓ-ସେ-ତୁଙ୍ଗ୍‌ଙ୍କ ଚୀନ୍‌ରେ ମୂଷା, ମାଛି ଓ ଚଢ଼େଇଙ୍କୁ ମାରିବା ଏକ ବୈପ୍ଳବିକ କାର୍ଯ୍ୟକ୍ରମ ରୂପେ ଗୃହୀତ ହୋଇଥିଲା। କୃଷିକ୍ଷେତ୍ରରେ କୃଷକମାନଙ୍କର ଶସ୍ୟକୁ ଏମାନଙ୍କ ଉତ୍ପାତରୁ ବଞ୍ଚାଇବା ଥିଲା ଏ ବୈପ୍ଳବିକ କାର୍ଯ୍ୟକ୍ରମର ଲକ୍ଷ୍ୟ। ମାଛିମାନଙ୍କୁ ଅବଶ୍ୟ ସଂହାର କରାଯାଉଥିଲା ସ୍ୱାସ୍ଥ୍ୟ ରକ୍ଷାପାଇଁ ପେକିଂରେ ସମବାୟ କୃଷି ଦପ୍ତରର ଅଧିକାରୀମାନେ ଷ୍ଟାଟିଷ୍ଟିକ୍‌ସ ଦେଇଥିଲେ, ଚଢ଼େଇ ଓ ମୂଷାମାନେ ପ୍ରତିବର୍ଷ କେତେ ଲକ୍ଷ ଟନ୍ ଖାଦ୍ୟଶସ୍ୟ ଉଜାଡ଼ୁଛନ୍ତି।

ଭାରତରେ ସେତେବେଳେ ମଧ୍ୟ ଠିକ୍ ଏହି ପ୍ରକାର ଉଦ୍ଦେଶ୍ୟରେ ମାଙ୍କଡ଼ ମାରିବା କାର୍ଯ୍ୟକ୍ରମ ହାତକୁ ନିଆଯାଇଥିଲା। ବାଣୁଆମାନେ ମାଙ୍କଡ଼ ମାରି ତା' ଲାଙ୍ଗୁଡ଼ କୌଣସି ଅଧିକାରୀଙ୍କୁ ଦେଖାଇଲେ ବାଣୁଆକୁ ବୋଧହୁଏ ଟଙ୍କାଏ ବା ଦୁଇଟଙ୍କା ମିଳୁଥିଲା। ହନୁମାଙ୍କଡ଼ମାନେ ମରୁଥିଲେ, କିନ୍ତୁ ପାତିମାନେ ବାଣୁଆମାନଙ୍କୁ ବାଁକାଲିଆ ଦେଇ ଆଉରି ବେଶିବେଶି ଉତ୍ପାତ ହେବା ଆରମ୍ଭ କରିଦେଇଥିଲେ। ସେମାନେ ଠିକ୍ ବୁଝିଥିଲେ, ଏ ମାଓ-ସେ-ତୁଙ୍ଗ୍‌ଙ୍କ ଚୀନ୍ ନୁହେଁ, ଇଏ ରାମରାଜ୍ୟ। ଏଠି ତେଣୁ ବାନରମାନଙ୍କର ସାର୍ବଭୌମତ୍ୱ। ବାନରମାନେ ନଥିଲେ ରାମଚନ୍ଦ୍ର କ'ଣ ସେଦିନ ଲଙ୍କା ଜୟ କରିପାରିଥାଆନ୍ତେ ! ଏଠାରେ ତେଣୁ ବାନରମାନଙ୍କର ଲୀଳା ଅବ୍ୟାହତ ରହିଥିଲା। ଏ ପାତିମାନେ ବି ଅଜବ ଥିଲେ। କିଛି ଲାଞ୍ଚ ରିସ୍‌ୱତ୍ ପାଇଗଲେ ସେମାନେ ଝାମ୍ପି ନେଇଥିବା ବାସନକୁସନ ବା ଲୁଗାକୁ ଛାତଉପରୁ ବା ଗଛ ଡାଳରୁ ତଳକୁ ଫିଙ୍ଗି ଦେଉଥିଲେ।

ତେଣୁ କେବଳ ସରକାରୀ ଲୋକେ ଲାଞ୍ଚ ରିସ୍‌ୱତ୍‌ରେ ଅଭ୍ୟସ୍ତ ବୋଲି, ଯାହା ଅପବାଦ ଶୁଣାଯାଏ, ସେଥି ସହିତ ମୁଁ ସେଇଦିନୁ ଆଦୌ ଏକମତ ନୁହେଁ। ଯେଉଁଠି ମର୍ଯ୍ୟାଦା ପୁରୁଷ ରାମଚନ୍ଦ୍ରଙ୍କର ବାନରବାହିନୀ ଆଖି ଆଗରେ ଲାଞ୍ଚ ନେଉଛନ୍ତି ଓ ମାଗୁଛନ୍ତି, ସେଠାରେ କେବଳ ଅମଲାମାନଙ୍କ ପ୍ରତି ଆକ୍ଷେପ କରିବାରେ ଆଦୌ ନ୍ୟାୟ ନାହିଁ ବା ଯଥାର୍ଥତା ନାହିଁ। ତେବେ ବାନରନିଧନ ବିରୁଦ୍ଧରେ ଆମ ସହରର କେତେକ ଜୀବୋଦୟଧର୍ମୀ ବ୍ୟବସାୟୀ ପ୍ରତିବାଦର ସ୍ୱର ଉଠାଇଥିଲେ। ଛୋଟକାଟିଆ ଦଳଟିଏ ମଧ୍ୟ ଏଥିପାଇଁ ଗଢ଼ିଉଠିଲା ଓ ଆମ ସହରର ଗୋଟିଏ ଖବରକାଗଜରେ ସେମାନଙ୍କର ପ୍ରସ୍ତାବ ଓ ପ୍ରତିବାଦ ମଧ୍ୟ ବାହାରିଲା।

ବାନରନିଧନ ଅଭିଯାନ ସେଇଠାରେ ଶେଷ ହୋଇଗଲା। ଏବେ କ'ଣ ହୋଇଛି, ଜାଣେ ନାହିଁ। କାରଣ ବାନର-ଅଧ୍ୟୁଷିତ ଅଞ୍ଚଳକୁ ମୁଁ ବହୁବର୍ଷ ହେଲା ଆଉ ଯାଇନାହିଁ। ପ୍ରତିବର୍ଷ ଆମ୍ବଦିନେ, ମୋ ବାଡ଼ିରେ ହନୁମାନଙ୍କ ଉତ୍ପାତ ଲାଗିରହିଛି।

କିନ୍ତୁ ଗୁଣ୍ଡୁଚିମୂଷା, କାଉ, କଜ୍ଜଳପାତି, ବଣିମାନଙ୍କର ହଠାତ୍ କ'ଣ ହୋଇଗଲା ? ସେମାନଙ୍କ ନିଧନପାଇଁ କୌଣସି ଅଭିଯାନ ଆରମ୍ଭ ହୋଇଥିବା ମୁଁ ତ ଜାଣେ ନାହିଁ। କିମ୍ବା ବିଂଶସୂତ୍ରୀ କାର୍ଯ୍ୟକ୍ରମରେ ସୁଦ୍ଧା ମୁଁ ଏହା ଖୋଜି ପାଉନାହିଁ। ତା'ହେଲେ ମୋର ସକାଳ ସବୁ ହଠାତ୍ କାକଳିହୀନ ହୋଇପଡ଼ିଛନ୍ତି କାହିଁକି ?

ଏଇ କାକଳିହୀନ ସକାଳମାନଙ୍କରେ ମୋତେ ଲାଗୁଛି, ଆମେ ସବୁ ପାଳଭୂତମାନଙ୍କ ପରି ମରୁଡ଼ିଜଳା କ୍ଷେତମାନଙ୍କରେ ଚଢ଼େଇ ହୁରୁଡୋଉଛୁ। କିନ୍ତୁ ଫସଲ ନାହିଁ। ଚଢ଼େଇମାନେ ବି ନାହାନ୍ତି। ସବୁଆଡ଼େ ଖାଲି ପାଳଭୂତ ଆଉ ପାଳଭୂତ !

୨୫/୧୦/୮୭

# ସନ୍ଧ୍ୟାଦୀପ

ସୁଧୀ ପାଠକପାଠିକାମାନେ ! ଆପଣମାନେ କେବେ କ'ଣ ଭୁଆଁ ବୁଲିଛନ୍ତି ? ଅବଶ୍ୟ ମହିଳାମାନଙ୍କ ଜୀବନରେ ଭୁଆଁବୁଲାଣିପାଇଁ ସେପରି ଅବକାଶ ନଥାଏ। ସେମାନଙ୍କ ଚଲାବାଟ ସୁନିର୍ଦ୍ଦିଷ୍ଟ। କିନ୍ତୁ ପୁରୁଷମାନେ ଅଜଣା ଅଚିହ୍ନା ବାଟରେ ଟିକିଏ ସ୍ୱପ୍ନପ୍ରବଣ ହୋଇଗଲେ, ଭୁଆଁବୁଲାରେ ନୟାନ୍ତ ହୋଇଥାଆନ୍ତି। ମୋ ନିଜର ଏକ ଅଭିଜ୍ଞତାରୁ ମୁଁ କହିପାରେ, ଭୁଆଁବୁଲାଣିଠାରୁ ବଳି ଉତ୍କଣ୍ଠାପୂର୍ଣ୍ଣ ଓ ଉତ୍ପୀଡ଼କ ମାନସିକ ଯନ୍ତ୍ରଣା ଆଉ ଅନ୍ୟ କିଛି ନାହିଁ।

ଥରେ ଗୋଟିଏ ନିର୍ବାଚନ ବେଳେ, ମୋର ଜଣେ ଶୁଭାନୁଧ୍ୟାୟୀ କର୍ମୀ ଆସି ଜିଦ୍ ଲଗାଇଲେ, ଆଶୀର୍ବାଦପାଇଁ ମୋତେ ଏକ ବାବାଙ୍କ ମଠକୁ ଯିବାପାଇଁ ପଡ଼ିବ, ସେ ବାବା ବଡ଼ ଅଦ୍ଭୁତକର୍ମା; କିନ୍ତୁ ମୁଁ ନର୍କଗାମୀ ହୁଏ ପଛେ, ବାବାମାନଙ୍କଠାରୁ ସବୁବେଳେ ନିଜକୁ ସମ୍ଭ୍ରମଶୀଳ ଦୂରତ୍ୱରେ ରଖିଥାଏ। ସେଥିପାଇଁ କର୍ମୀବନ୍ଧୁଙ୍କୁ ମୁଁ ପ୍ରାୟ ଫାଙ୍କିଦେଇ ଚାଲିଥାଏ। କିନ୍ତୁ ସେ ନଛୋଡ଼ବନ୍ଧା। ଦିନେ ଅପରାହ୍ଣରେ କିଛି ଫୁଲ ଓ ଫଳ ସହିତ ଆସି ମୋତେ, ସଙ୍ଗେସଙ୍ଗେ ବସିବା ସ୍ଥାନରୁ ଉଠି, ସେଇ ବାବାଙ୍କ ମଠକୁ ଯିବାପାଇଁ ଜିଦ୍ ଧରିଲେ। ମୁଁ ନାଚାର। ଗୋଟିଏ ଉର୍ଦ୍ଦୁ ଆପ୍ତବାକ୍ୟ ମନେପଡ଼ିଲା, "ପୀରମାନେ ନିଜେ ଉଡ଼ନ୍ତି ନାହିଁ, କିନ୍ତୁ ଚେଲାମାନେ ସେମାନଙ୍କୁ ଉଡ଼ାନ୍ତି।" ମୋର ସେତେବେଳେ ସେଇ ଅବସ୍ଥା। ସେଇ ଆପ୍ତବାକ୍ୟ ସ୍ମରଣକରି କର୍ମୀଙ୍କ ସହିତ ଜିପ୍‌କୁ ଉଠିଲି। ରାସ୍ତା ବିଶେଷ ଦୂର ନୁହେଁ। ଜଟଣୀ ପାଖରୁ ଗୋଟାଏ ଦିଗହଜା ଟାଙ୍ଗି ଭିତରେ ମାତ୍ର ଆଠ ଦଶ କିଲୋମିଟର ଗଲେ ପଡ଼ିବ ବାବାଙ୍କ ଆଶ୍ରମ। ଶୀତଦିନିଆ ଅପରାହ୍ଣ। ନିର୍ବାଚନ ସଭାର ଜଞ୍ଜାଳ ଏଡ଼ାଇ ବାହାରେ ଟିକିଏ ବୁଲିଆସିବାର ଲୋଭ ଏଡ଼ି ପାରିଲି ନାହିଁ।

ଜଟଣୀ ଡେଇଁ କ୍ରମେ ରେଳଲାଇନ୍ କଡ଼େ କଡ଼େ କିଛି ବାଟ ଯିବା ପରେ ସେଇ ଦିଗନ୍ତଛୁଆଁ ପଥୁରିଆ ଟାଙ୍ଗି ଭିତରେ ପଶିଲୁ। ଅପରାହ୍ଣର ସୂର୍ଯ୍ୟ ପଶ୍ଚିମ ଦିଗବଳୟରେ ସେତେବେଳକୁ ଢଳି ପଡୁଥାଆନ୍ତି। ଚାହୁଁଚାହୁଁ ଗୋଧୂଳିର ମୁଠାମୁଠା ଅବିର ସେଇ କଙ୍କରିଳ

ଟାଙ୍ଗର ଉପରେ ବିଞ୍ଛିହୋଇଗଲା। ନିର୍ଜନ ଟାଙ୍ଗର ଭୂଇଁରେ, ଅନେକ ଦୂରରେ ଦେଖାଯାଉଥିବା ଗୋଟାଏ ଗଛକୁ ଲକ୍ଷ୍ୟରଖି ଶଗଡ଼ ଗୁଳା ଧରି ଆମର ଜିପ୍ ଚାଲିଥାଏ। ଶଗଡ଼ ଗୁଳା ସବୁ ଦେହର ଶିରାପ୍ରଶିରା ପରି ଛନ୍ଦାଛନ୍ଦି ହୋଇ ଜନ୍ମିଯାଇଛନ୍ତି। କେଉଁ ଗୁଳାଟା କେଉଁ ଗୁଳାରେ ମିଶି ପୁଣି ପୁଣି କେଉଁ ଦିଗରେ କେଉଁ ଗୁଳାରେ ଯାଇଛି, ତାହା ବାରିପାରିବା କଠିନ। ଟାଙ୍ଗି ଭିତରେ କେତେ ବାର ବାଟଭୁଲି ଏପାଖ ସେପାଖ ହେବା ପରେ ଡ୍ରାଇଭର ଜିପ୍‌କୁ ବନ୍ଦ କରିଦେଲା। ପ୍ରଥମେ ରାସ୍ତା ଠିକଣା ନହେଲେ ସେ ଆଉ ଆଗକୁ ଜିପ୍ ନେବ ନାହିଁ। କାରଣ ଇତି ମଧ୍ୟରେ ଆମେ କୁଆଡ଼େ ତିରିଶ ଚାଳିଶ କିଲୋମିଟର ଏପାଖ ସେପାଖ ହୋଇ ବୁଲି ସାରିଲୁଣି। ଯାହା ପେଟ୍ରୋଲ୍ ବଳିଛି, ସେଥିରେ ଜଟଣୀରେ ପହଞ୍ଚିପାରିବା ସନ୍ଦେହଜନକ। କିନ୍ତୁ ଫେରିବାର ରାସ୍ତା ମଧ୍ୟ ଅନିର୍ଦ୍ଦିଷ୍ଟ। କ୍ରମେ କ୍ରମେ ଫିକା ପଡ଼ିଆସୁଥିବା ବିବର୍ଣ୍ଣ ଗୋଧୂଳିର କ୍ଷୀଣ ଆଲୋକ ମଧ୍ୟରେ ଚାରିଆଡ଼େ କେବଳ ଛନ୍ଦାଛନ୍ଦି ଶଗଡ଼ଗୁଳା ଆଉ ଶଗଡ଼ଗୁଳା। ଆରମ୍ଭରେ ଯୋଉ ଗଛଟିକୁ ଲକ୍ଷ୍ୟ ରଖି ଜିପ୍ ଚାଲିଥିଲା, ସେ ଗଛଟି ମଧ୍ୟ କେଉଁଆଡ଼େ ହଜିଗଲାଣି। ଆଉ ଆଖିରେ ପଡୁନାହିଁ । ଶଗଡ଼ିଆଟିଏ ବା ମଣିଷଟିଏ କେଉଁଠି ଆଖିରେ ପଡୁନାହାନ୍ତି, ଯିଏ ଆମକୁ ଦେଇପାରନ୍ତେ ରାସ୍ତାର ଠିକଣା।

କ୍ରମେ ଅଗ୍ନିକୋଣରୁ ସେଇ ଟାଙ୍ଗି ଉପରେ ଓହ୍ଲାଇ ଆସିଲା ପାତଳ କୁହୁଡ଼ିର ଆସ୍ତରଣ। ଆଉ ଟିକକୁ ଘୋଟିଆସିବ ସନ୍ଧ୍ୟାର ଅନ୍ଧକାର। ମୋର ସିଗାରେଟ୍ ସବୁ ଶେଷ ହୋଇଥିଲା। ଡ୍ରାଇଭର ଅନନ୍ୟୋପାୟ ହୋଇ ଷ୍ଟିଅରିଂ ଉପରେ ଅସହାୟ ଭାବରେ ମୁଣ୍ଡ ଲଦିଦେଇଥିଲା। କର୍ମୀବନ୍ଧୁଟି ପଛ ସିଟ୍‌ରେ ବସି ଆଖିବୁଜି ବୋଧହୁଏ ଗୁରୁନାମ ସ୍ମରଣ କରୁଥିଲେ। ଏହି ଅନ୍ଧକାର ପାରାବାର ଭିତରେ ରାତିଟା କିପରି କଟିବ ସେଇ ଦୁଷ୍ଚିନ୍ତାରେ ମୁଁ କ୍ରମେ ଅସ୍ଥିର ହୋଇଉଠୁଥିଲି।

ହଠାତ୍ ପାତଳା କୁହୁଡ଼ିର ପର୍ଦ୍ଦା ଭେଦି ଅନେକ ଦୂରରେ ଗୋଟାଏ କ୍ଷୀଣ ଆଲୋକ ମୁଁ ଦେଖିପାରିଲି। ଛାଇ ନିଦରେ ମୁଦିହୋଇ ଆସୁଥିବା ଆଖିପତା ପରି ଦୂର ଦିଗ୍‌ବଳୟ ଓ ତା'ରି ଭିତରେ ଲେସି ହୋଇ ଯାଇଥିବା ଗାଁଗଣ୍ଡା ସବୁ କ୍ରମେ ହଜି ଯାଉଛନ୍ତି। ତାରି ଭିତରେ ନିସ୍ପନ୍ଦ ଆଲୋକ ଶିଖାଟିକୁ ଦେଖି, ଅକୂଳ ଦରିଆରେ ମୁଁ ହଠାତ୍ ଯେପରି କୂଳ ପାଇଗଲି ! ସେଇ ଆଲୋକ ଦେଇପାରିବ ଲକ୍ଷ୍ୟର ଠିକଣା। ସେଠି ନିଶ୍ଚୟ ଅଛି କୌଣସି ଲୋକାଳୟ ବା ଗ୍ରାମ। ମୁଁ ଡ୍ରାଇଭରକୁ ଗୋଟାଏ ମୃଦୁ ଧକ୍‌କା ଦେଇ କହିଲି, "ସେ ଆଲୁଅକୁ ଲକ୍ଷ୍ୟରଖି ଜିପ୍ ଚଲାଅ। ସେଠି ନିଶ୍ଚୟ ମଣିଷର ସନ୍ଧାନ ମିଳିବ ଓ ସେ ଆମକୁ ବାଟ ବତାଇ ଦେବ।" ଡ୍ରାଇଭର ଗୁଳା ନମାନି ଏକମୁହାଁ ହୋଇ, ସେଇ ଆଲୁଅକୁ ଲକ୍ଷ୍ୟ ରଖି ଜିପ୍ ଛୁଟାଇ ଦେଲା।

ପ୍ରାୟ ଆଠ ଦଶ ମିନିଟ୍ ଭିତରେ ଆମେ ସେଇ କ୍ଷୀଣ ଆଲୋକ ପାଖରେ ପହଞ୍ଚିଗଲୁ। ଗୋଟିଏ ଦରିଦ୍ର ଗୃହସ୍ଥର କୁଟୀର ଦୁଆରେ ଚଉରାମୂଳେ, ଗୃହବଧୂ ଦୀପ ଜାଳି ଦେଇ ଯାଇଥିଲା। ଆମେ ସେଇ ସନ୍ଧ୍ୟାଦୀପକୁ ଲକ୍ଷ୍ୟ କରି ଆସୁଥିଲୁ। ଦୀପ ସେତେବେଳକୁ କ୍ରମେ ନିଭିନିଭି ଆସୁଥାଏ। ପବନରେ ପୋଡ଼ା ସଳିତାର ଗନ୍ଧ। ଗୃହସ୍ଥଠାରୁ ପଚାରି ବୁଝିଲୁ, ମଠଟା ସେଠାରୁ ପ୍ରାୟ ଡାକେ ବାଟ। ଏହାପରେ ବାବାଙ୍କ ଆଶ୍ରମରେ ପହଞ୍ଚିବାପାଇଁ ଆମର ବିଶେଷ ଅସୁବିଧା ହୋଇନଥିଲା।

ବାବା ଦର୍ଶନ ସାରି ମଠରୁ ଫେରିବା ବାଟରେ ଉକ୍ତ କର୍ମୀ ଜଣକ କହିଲେ, "ଆପଣଙ୍କ ଅବିଶ୍ୱାସ ଯୋଗୁ ବାବା ଆମକୁ ଏତକ ଭୁଆଁବୁଲାଇଲେ।" କିନ୍ତୁ ଆମେ ଯେ ସେଇ ଭୁଆଁବୁଲାରୁ ଫେରି ଜଟଣୀ ପେଟ୍ରୋଲ୍ ପମ୍ପ୍ ପାଖରେ ପହଞ୍ଚିପାରିଲୁ, ସେତକ ପ୍ରକୃତରେ ଥିଲା ମୋ ପକ୍ଷରେ ବାବାଙ୍କ ଆଶୀର୍ବାଦ। କିନ୍ତୁ ଜଟଣୀରୁ ଫେରିବା ବାଟରେ ବିଜୁଳି ଆଲୁଅ ଓ ପରିଚ୍ଛନ୍ନ ପିଚୁ ସଡ଼କର ନିର୍ଦ୍ଦିଷ୍ଟତା ମଧ୍ୟରେ ମତେ ଲାଗିଲା, ପଥର ଟାଙ୍ଗିର ସେ ଭୁଆଁବୁଲା ଅପେକ୍ଷା ଏ ବିଜୁଳି ଆଲୋକ ଆଉ ପିଚୁ ରାସ୍ତାର ଖୁଲଖୁଲିଆ କେଜାଣି ଆଉରି ଜଟିଳ, ଆଉରି ଅସମାଧିତ। କ୍ଷୀଣ ସନ୍ଧ୍ୟା ଦୀପଟି ସେଇ ଭୁଆଁବୁଲାଣି ଭିତରେ ଆମକୁ ଲକ୍ଷ୍ୟସ୍ଥଳରେ ଠିକ୍ ପହଞ୍ଚାଇ ପାରିଥିଲା। କିନ୍ତୁ ଏଇ ବିଜୁଳିବତି ଖୁଣ୍ଟ ଆଉ ପିଚୁ ରାସ୍ତା ସବୁ ଆମକୁ ବାଟ ଦେଖାଉଛନ୍ତି ହୁଏତ ଠିକ୍, ଆମର ଲକ୍ଷ୍ୟ ସ୍ଥଳ କେଉଁଠି ତାହାର ସନ୍ଧାନ ଦେଇ ପାରୁ ନାହାନ୍ତି। ସେଇଦିନୁ ମୁଁ ସନ୍ଧ୍ୟାଦୀପକୁ ପ୍ରଣାମ ଜଣାଇ ଆସୁଛି। ସନ୍ଧ୍ୟାଦୀପ ହୁଏତ ବାଟ ଆଲୋକିତ କରେ ନାହିଁ। କିନ୍ତୁ ଲକ୍ଷ୍ୟସ୍ଥଳର ଠିକ୍ ଇସାରା ଦେଇଥାଏ- ବଣା ବାଟୋଇର ସାଥୀ ବିଜୁଳିବତି ଖୁଣ୍ଟ ନୁହେଁ, ଗୃହସ୍ଥର ଅଙ୍ଗନରେ ଚଉରା ବେଦୀ ତଳେ ସନ୍ଧ୍ୟାର କ୍ଷୀଣ ଦୀପଶିଖା ।

*୦୧/୧୦/୮୭*

# ବେଲଖଣ୍ଡିରେ ରାତି

ବୋଧହୁଏ ୧୯୫୦ ବା ୧୯୫୧ ମସିହାର କଥା। ସେଥିପାଇଁ ପୂର୍ବତନ ଦେଶୀୟ ରାଜ୍ୟ ବଲାଙ୍ଗୀରର ସେହି ସ୍ଥାନଟିର ନାମ ମୁଁ ଭୁଲିଗଲିଣି। ହୋଇପାରେ, ତେଲନଦୀ କୂଳର ବେଲଖଣ୍ଡି। ଏଇଠାରେ ଚାପରେ, କାର୍, ଜିପ୍ ବା ବସ୍ ପାରି କରାଇ ଭବାନୀପାଟଣା ରାସ୍ତା ଧରିବାପାଇଁ ପଡୁଥିଲା। ନଦୀ କୂଳରେ ଗୋଟାଏ ଅନୁଚ୍ଚ ପାହାଡ଼ ମୁଣ୍ଡିଆ କାଟି ରାସ୍ତା ତିଆରି ହୋଇଛି। ରାସ୍ତା ଦୁଇକଡ଼େ ପତଳା ଅରମା ଜଙ୍ଗଲ। ରାସ୍ତାର ଡାହାଣପାଖ ମୁଣ୍ଡିଆ ଉପରେ ମହାରାଜାଙ୍କ ଅମଳର ଗୋଟାଏ ପୁରୁଣା ଡାକବଙ୍ଗଳା- ସେଦିନ ଦେଖାଯାଉଥିଲା ଗୋଟାଏ ଭୂତକୋଠି ପରି। ସେଦିନ ମୁଁ ବଲାଙ୍ଗୀରରୁ ଗୋଟିଏ ଜିପ୍‌ରେ ଭବାନୀପାଟଣା ବାହାରି ସେଠାରେ ପହଞ୍ଚିବାବେଳକୁ ନିର୍ଜନ ନଦୀଶଯ୍ୟା, ବନଶୀର୍ଷ ଉପରେ ଡିସେମ୍ବରର ସଂକ୍ଷିପ୍ତ ଗୋଧୂଳି, ମୁହଁସଞ୍ଜର ପାତଳା ଅନ୍ଧାର ଭିତରେ କ୍ରମେ ନିଭି ଆସୁଥିଲା।

ନଦୀଘାଟର ମାଝୀ ସେପଟେ ଚାପ ବାନ୍ଧି ସେତେବେଳକୁ ତା'ର ଘରକୁ ଚାଲିଯାଇଥିଲା। ନଦୀ ଧାର ସେପଟେ ସନ୍ଧ୍ୟାର କ୍ଷୀଣ ଆଲୋକରେ ଚାପ ଡଙ୍ଗାର ଛାଇ ନଦୀରେ ମୁହଁ ମାଡ଼ି ଓଲଟି ରହିଥିବା ପରି ଗୋଟାଏ ଭ୍ରମ ସୃଷ୍ଟି କରୁଥିଲା। ମାଝୀ ଉଦ୍ଦେଶ୍ୟରେ ଡ୍ରାଇଭରର ଡାକ ସେହି ନିର୍ଜନ ଅପନ୍ତରା ବନଭୂମିରେ ପ୍ରତିଧ୍ୱନିର ତରଙ୍ଗ ସୃଷ୍ଟିକରି ନୀରବ ହୋଇଗଲା। ଅର୍ଥାତ୍ କାଲି ସକାଳ ପୂର୍ବରୁ ଆମେ ଆଉ ନଦୀ ପାର ହୋଇପାରିବୁ ନାହିଁ। ଅଗତ୍ୟା ଡ୍ରାଇଭର ଆମକୁ ଭୂତକୋଠି ପରି ପଡ଼ି ରହିଥିବା ସେଇ ଡାକବଙ୍ଗଳାକୁ ରାତିରେ ଆଶ୍ରୟପାଇଁ ଆଣିଲା।

ଇତି ମଧ୍ୟରେ କେତେବର୍ଷ ଧରି ଡାକବଙ୍ଗଳାର ଚୌକିଦାର ସେଠାରେ ହୁଏତ କୌଣସି ଜିପ୍, କାର୍ ବା ସହରୀ ମଣିଷ ଦେଖି ନଥିଲା। ସେଥିପାଇଁ, ସେ ବଙ୍ଗଳା ହତା ଭିତରେ ଗୋଟାଏ ଜିପ୍‌ର ଆଲୁଅ ଦେଖି, ହୁଏତ ପ୍ରଥମେ ତା'ର ଆଖିକୁ ବିଶ୍ୱାସ କରିପାରି ନଥିଲା। ସେଥିପାଇଁ ଡାକବଙ୍ଗଳା ହତାର ଗୋଟାଏ କୋଣରେ ତା'ର ଖପରଲି ଛାଉଣୀ

ଘର ଭିତରୁ ବାହାରି ସେ ଅଧାବାଟରୁ ପୁଣି ଅନ୍ଧାର ଗୁମ୍ଫା ପରି ଦିଶୁଥିବା ସେଇ ଘରକୁ ଫେରିଗଲା। ଡ୍ରାଇଭର ଓ ଭୃତ୍ୟର ମିଳିତ କଣ୍ଠରେ ଡକାଡକି ପରେ ସେ ଗୋଟାଏ ମିଞ୍ଜିମିଞ୍ଜିଆ ଲଣ୍ଠନ ଆଉ ଗୋଟିଏ ବାଲ୍‌ତି ଧରି ଜିପ୍ ପାଖକୁ ଆସିଲା। ଡ୍ରାଇଭର ଓ ଭୃତ୍ୟ ମିଳିତ ଭାବରେ ସେଇ ବୁଢ଼ାକୁ ବୁଝାଇ ଦେଲେ ଯେ ମୁଁ ଏଠି କାଲି ସକାଳ ପର୍ଯ୍ୟନ୍ତ ରହିବି, ବ୍ୟବସ୍ଥା କରିବାପାଇଁ ପଡ଼ିବ।

ବୁଢ଼ା ଚୌକିଦାର ନୀରବରେ ଡାକବଙ୍ଗଳାର ଗୋଟାଏ କୋଠରି ଖୋଲିଦେବା ମାତ୍ରେ ତା' ଭିତରୁ ପଞ୍ଚାଏ ଚେମେଣିଆ ଆଉ ସେମାନଙ୍କ ଡେଣାରେ ଅନେକ ଦିନର ଧୂଳି, ପବନରେ ଭାସି ଆସିଲା। କେତେବର୍ଷ ପରେ ସେଦିନ ରାତିରେ ମୁଁ ବୋଧହୁଏ ସେଠାରେ ଥିଲି ପ୍ରଥମ ଅତିଥି ! ଚୌକିଦାର ସନ୍ଧ୍ୟାର ଛାଇ ପରି ନୀରବ ସନ୍ତର୍ପଣରେ ଲଣ୍ଠନଟି ଗୋଟାଏ ଗୋଲ୍ ଟେବୁଲ୍ ଉପରେ ରଖିଦେଇ ବାହାରୁ ବାଲ୍‌ତିଏ ପାଣିଆଣି ବାଥ୍‌ରୁମ୍‌ରେ ରଖିଦେଲା। ତା'ପରେ ସେ ଡ୍ରାଇଭରକୁ ଯାହା କହିଲା ସେଥିରୁ ବୁଝିଲି ତା'ର ଡ୍ୟୁଟି ଶେଷ ହୋଇଗଲା। ଏଠାରେ ରନ୍ଧାରନ୍ଧିର ବ୍ୟବସ୍ଥା ନାହିଁ। ପାଖରେ କେଉଁଠି ଗାଁରେ ଚୂଡ଼ା, ମୁଢ଼ି କିମ୍ବା କୁକୁଡ଼ା ମିଳିପାରେ। ଚୌକିଦାର ଛାୟାମୂର୍ତ୍ତି ପରି ଡାକବଙ୍ଗଳା ବାହାରେ ଡିସେମ୍ବର ସନ୍ଧ୍ୟାର ଶୀତ ଆଉ ଅନ୍ଧାର ଭିତରେ ହଜିଗଲା। ଗୋଟାଏ ଚଉଡ଼ାକାଠ ଖଟ ଉପରେ ମୋର ବେଡ୍ ହେଲ୍‌ଡରଟା ଖୋଲିଦେଇ ଡ୍ରାଇଭର ମଧ୍ୟ ଭୃତ୍ୟକୁ କ'ଣ ଚୁପ୍‌ଚାପ୍ କହିଦେଇ ବାହାରକୁ ଚାଲିଗଲା। ଏହାର ଅର୍ଥ ମୁଁ ବୁଝିଗଲି। ଆଜି ରାତିରେ ସେ ଆଉ ଫେରିବ ନାହିଁ। ଯେତେ ଅଚିହ୍ନା, ଅପନ୍ତରା ଜାଗା ହେଉପଛେ, ରାତିଟାପାଇଁ ସେ କେଉଁଠି ଯେ ତା'ର ଖାଦ୍ୟ ଅଥବା ପେୟ ଓ ଆଶ୍ରୟ ପାଇଯାଏ, ମୁଁ ଯେତେ ଜାଣିବାପାଇଁ ଚେଷ୍ଟାକଲେ ସୁଦ୍ଧା ତାର କୌଣସି ଅଦ୍ଦିଶ ପାଏ ନାହିଁ।

ସନ୍ଧ୍ୟା ଆଠଟା ବାଜିବା ମାତ୍ରେ ଗୋଟାଏ ବ୍ୟାଗ୍‌ରୁ ଭୃତ୍ୟ କାଢ଼ିଦେଲା, ଗୋଟାଏ ପାଉଁରୁଟି ଆଉ ଗୋଟାଏ ଖୋଲା ବଟର ଟିଣ। ରାତିରେ ଏଇ ହେବ ଆହାର। ଭୃତ୍ୟପାଇଁ ଅଧେ ପାଉଁରୁଟି ରଖିଦେଇ ଅବଶିଷ୍ଟ ପାଉଁରୁଟି ମୁଁ ବଟର ଲଗାଇ ଖାଇଦେଲି। ତା'ପରେ ଦିନର କ୍ଳାନ୍ତି ଦୂରକରିବାପାଇଁ ବିଛଣା ଉପରେ ଲୋଟିପଡ଼ିଲି।

ସେତେବେଳକୁ ରାତିପ୍ରାୟ ଏଗାରଟା। ଭୃତ୍ୟ ପାଖ ଖଟରୁ ହଠାତ୍ ଶଙ୍କିତ କଣ୍ଠରେ ଡାକିଲା 'ଶୁନ୍‌ଛନ୍' ? ଛାଇ ନିଦରୁ ଉଠି ମୁଁ ପଚାରିଲି 'କ'ଣ ?' ସେ 'ଏଇ... ଏଇ' କହିବା ଛଡ଼ା ଆଉ କିଛି କହିପାରିଲା ନାହିଁ। ମୁଁ ବିସ୍ମିତ ହୋଇ ଶୁଣିଲି, ଡାକବଙ୍ଗଳା ଚାରିପଟେ ଅନେକ ପାଦର ରିଣିଝିଣି ନୂପୁର ଶବ୍ଦ। କେତେବେଳେ କମୁଛି, ଆଉ କେତେବେଳେ ବଢୁଛି। ଦଳେ ଆଦିବାସୀ ଧାଙ୍ଗଡ଼ୀ ଅଣ୍ଟାରେ ହାତ ଛନ୍ଦାଛନ୍ଦି ହୋଇ ଡାକବଙ୍ଗଳା ଚାରିପଟେ ଯେପରି ନାଚୁଛନ୍ତି। ଏପରି ଶବ୍ଦ ମୁଁ ଆଉ କେବେ ଶୁଣି ନଥିଲି।

ଏ ଶବ୍ଦ କ'ଣ ? କିଏ ଏମାନେ ନାଚୁଛନ୍ତି ? ଭୃତ୍ୟ ଡାଆଣୀ, ଡାଆଣୀ କହି ଭୟରେ ମୋ ପାଖକୁ ଲାଗିଆସିଲା। ଭୟରେ ମୋର ଅବସ୍ଥା ମଧ୍ୟ ତଦ୍ରୂପ। ଡାଆଣୀମାନଙ୍କର ହାବୁଡ଼ରେ ଯେତେବେଳେ ପଡ଼ିଛୁ, ଆମେ ଯେ କାଲି ପୁଣି ସକାଳ ଦେଖିବୁ, ସେ ପ୍ରତ୍ୟୟ ମୋର ଆଉ ନଥିଲା। ଭୟ ଦୁଇ ଲୋମଶ ବାହୁ ମେଲି, କ୍ରମେ ଯେପରି ମୋର ଛାତିକୁ ଗୋଟାଏ ଅଜଗର ପରି ତା'ର କୁଣ୍ଡଳୀ ଭିତରେ ଚାପି ଆଣୁଥିଲା। ମୁଁ କ୍ରମେ ଯେପରି ଦେଖି ପାରୁଥିଲି, ଦୀର୍ଘସ୍ତନା, ଉଲ୍ଲଙ୍ଗିନୀ ଡାକିନୀ ସାକିନୀମାନେ ନାଚିନାଚି ହସିହସି ମୋର ରକ୍ତ ଶୋଷିବାପାଇଁ ଆଗେଇ ଆସୁଥିଲେ !

ଲଣ୍ଠନଟା ସେତିକିବେଳେ ଦପ୍‌ଦପ୍ ହୋଇ ନିଭିଗଲା। ଆଶ୍ଚର୍ଯ୍ୟର କଥା, ଅଳ୍ପ ସମୟ ପରେ ସେଇ କୋଠରି ଭିତରେ ଗୋଟିଏ ଠନ୍‌ଠନ୍ ଶବ୍ଦ ଚାରିଆଡ଼େ ଘୂରି ବୁଲିଲା। ଭୃତ୍ୟ ଏହାପରେ ଭୟରେ ମୋତେ ଯେପରି କୁଣ୍ଢାଇ ଧରିଲା, ସେଥିରେ ମୋର ଅବସ୍ଥା କ୍ରମେ ଯେ ଆଉରି ଅସମ୍ଭାଳ ହୋଇ ଉଠିଲା, ତାହା ଉଲ୍ଲେଖ କରିବା ନିଷ୍ପ୍ରୟୋଜନ। ପର ମୁହୂର୍ତ୍ତରେ ଭାବିଲି, ଯଦି ଡାଆଣୀ ଚିରୁଗୁଣୀମାନଙ୍କ ହାତରେ ପ୍ରାଣ ଯିବା ନିଶ୍ଚିତ, ତା' ହେଲେ ଥରେ ସେମାନଙ୍କର ମୁକାବିଲା କରିବାପାଇଁ ଭୟ କାହିଁକି ? ହୋଲ୍‌ଡର ଭିତରୁ ଟର୍ଚ୍ଚଟା କାଢ଼ି ଘର ଭିତରେ ଚାରିଆଡ଼େ ଆଲୁଅ ପକାଇଲି। ଗୋଟାଏ କୋଣରେ ଟର୍ଚ୍ଚ ଆଲୁଅରେ ଯାହା ଦେଖିଲି ସେଇ ଭୟଙ୍କର ମୁହୂର୍ତ୍ତରେ ସୁଦ୍ଧା ମୁଁ ହସ ରୋକି ପାରିଲି ନାହିଁ। ବଟରର ଟିଣ ଶେଷ ହୋଇଯାଇଥିବାରୁ ଭୃତ୍ୟ ତାକୁ ଖଟ ତଳେ ରଖିଦେଇଥିଲା। ଗୋଟାଏ ମୂଷା କେତେବେଳେ ଖାଦ୍ୟ ଲୋଭରେ ତା' ଭିତରକୁ ମୁଣ୍ଡ ପୂରାଇ ଦେଇଥିବାରୁ ମୂଷା ଟିଣ ଭିତରୁ ନିଜକୁ ଆଉ ମୁକ୍ତ କରିପାରୁ ନଥିଲା। ଯନ୍ତାରେ ପଡ଼ିଥିବା ପରି ମୂଷାଟା ଟିଣ ଭିତରେ ମୁଣ୍ଡ ଗଳାଇ ଘର ଭିତରେ ଦଉଡ଼ିବା ବେଳେ ଚଟାଣରେ ଟିଣଟା ପିଟିହେଉଥିବା ବେଳେ ସେଇ ପ୍ରକାର ବିଚିତ୍ର ଶବ୍ଦ ଓ ତା' ସହିତ ଭୂତଭୟ ସୃଷ୍ଟି କରୁଥିଲା। ଆଲୁଅ ପଡ଼ିବାରୁ ମୂଷାଟା ବଟର ଟିଣ ଭିତରୁ ମୁକ୍ତିପାଇ କେଉଁଆଡ଼େ ପଳାଇଲା।

ତା'ପରେ ପୁଣି ଦୀର୍ଘସ୍ତନା ଉଲ୍ଲଙ୍ଗିନୀ ଡାକିନୀମାନଙ୍କର ସେଇ ନାଚ ଆଉ ନୂପୁରର ଧ୍ୱନି। ସାରା ରାତି ଅନିଦ୍ରା ଓ ଭୟରେ କଟିଲା। ବଙ୍ଗଳା କୋଠରି ସ୍କାଇଗ୍ଲାସ୍ ବାଟେ କ୍ରମେ ଶେଷ ରାତିର ପାଉଁଶିଆ ଆଲୋକ ଉକୁଟି ଉଠିଲା। ଡାକିନୀମାନଙ୍କର ନୂପୁର ଧ୍ୱନି ସେତେବେଳକୁ ତଥାପି ନୀରବ ହୋଇ ନଥିଲା ମାତ୍ର ସେଥିରେ ପୂର୍ବର ତୀବ୍ରତା ନଥିଲା। ଆଲୁଅ ଫିଟିବା ସଙ୍ଗେ ସଙ୍ଗେ ସେ ଶବ୍ଦ ମଧ୍ୟ କ୍ରମେ ଯେପରି ଦୂରକୁ ଦୂରକୁ ଅପସରି ଯାଉଥିଲା।

ବାରଣ୍ଡାକୁ ଆସି ମୋର ମନେହେଲା, ଜଙ୍ଗଲୀ ଝିଙ୍କାରୀମାନଙ୍କର ଝିଲ୍ଲୀରବ ଶୁଣି କାଲି ରାତିରେ ଆମେ ସବୁ ଏପରି ଭୟଭୀତ ହୋଇପଡ଼ିଥିଲୁ। ଗତ ରାତିର ସେଇ ଦୀର୍ଘସ୍ତନାମାନେ ଆଉ ନଥିଲେ। ସେମାନଙ୍କର ନୂପୁର ଧ୍ୱନି ମଧ୍ୟ ନୀରବ ହୋଇଥିଲା।

ସେଇଦିନୁ ମୁଁ ଜାଣିଛି, ଡାକିନୀ, ପ୍ରେତିନୀମାନେ ମଶାଣୀ ପଦାରେ ବା ଥୁଣ୍ଟା ଓସ୍ତଗଛ ଡାଳରେ ନଥାନ୍ତି, ସେମାନେ ରହିଥାଆନ୍ତି ଆମରି ମନର ଅନ୍ଧାରି ଗୁମ୍ଫାମାନଙ୍କରେ। କୌଣସି ବିଶେଷ ପରିସ୍ଥିତିରେ, କୌଣସି ବିଶେଷ ଶବ୍ଦ, ଗନ୍ଧ ବା ସ୍ୱରର ସଂସ୍ପର୍ଶରେ ଆସିଲେ ସେମାନେ ଦଳ ଦଳ ହୋଇ ବାହାରି ଆସନ୍ତି, ଆମକୁ ଆକ୍ରମଣ କରିବାପାଇଁ।

ସେହିଦିନୁ ମୁଁ ଭୟ କରିଆସୁଚି ମୋ' ନିଜକୁ ! ମୋର ମନକୁ।

୦୮/୧୧/୮୭

# ଦାରିଦ୍ର୍ୟର ସଂଜ୍ଞା

ଦାରିଦ୍ର୍ୟର ସଂଜ୍ଞା ବା ସୀମାରେଖା କଥା ଉଠିଲେ, ମୋ ସ୍ମୃତିରେ ଭାସିଉଠେ– କେତେ ବର୍ଷ ତଳେ ରାୟପୁର- ଜଗଦଲପୁର ରାସ୍ତା କଡ଼ରେ ସେଇ ମାରିଆ ଆଦିବାସୀଟିର କଥା। ସେଥର ମୁଁ ରାୟପୁରରୁ ଗୋଟିଏ କାର୍‌ରେ ଏଇ ରାସ୍ତାରେ ବାହାରିଥିଲି, ଦନ୍ତେୱାଡ଼ାଠାରେ ବସ୍ତିର ଆଦିବାସୀମାନଙ୍କର ଇଷ୍ଟଦେବୀ ଦନ୍ତେଶ୍ୱରୀଙ୍କର ଦର୍ଶନପାଇଁ। ସଙ୍ଗରେ ଥିଲେ ରାୟପୁରର ଜଣେ କାଠ ବ୍ୟବସାୟୀଙ୍କର ତରୁଣ ବୟସ୍କ ବଙ୍ଗାଳୀ ମ୍ୟାନେଜର। ମାସଟା ଥିଲା ଅପ୍ରେଲ୍। ବନଚ୍ଛାୟାହୀନ ପଥୁରିଆ ଅଞ୍ଚଳରେ ଖରା କ୍ରମେ ଟାଣ ହୋଇ ଆସୁଥିଲା। ଦନ୍ତେୱାଡ଼ା ପ୍ରାୟ ୧୫/୧୬ କିଲୋମିଟର ବାକି ଅଛି, ଷ୍ଟେପନ୍‌ଟା ହଠାତ୍ ଫାଟିଗଲା।

ରାୟପୁରରୁ କିଛି ବାଟ ଆସିବା ପରେ ଗୋଟାଏ ପଛ ଚକ ଫାଟିଥିଲା। ଏଇ ଷ୍ଟେପିନ୍‌ଟାକୁ ଲଗାଇ ଆମେ ଆସୁଥିଲୁ। ବର୍ତ୍ତମାନ ସେ ଷ୍ଟେପିନ୍ ବି ଗଲା। ତରୁଣ ମ୍ୟାନେଜର ନିରୁଦ୍‌ବିଗ୍ନ କଣ୍ଠରେ କହିଲେ, "କେହି ମୋଟର ସାଇକେଲ୍‌ବାଲା ପଛକୁ ଯାଉଥିଲେ ଡ୍ରାଇଭର ଚକାଟା ନେଇ ଏଇ ପାଖରୁ ସଜାଡ଼ି ଆଣିବ। ଘଣ୍ଟାଏ, ଦୁଇ ଘଣ୍ଟା ଡେରି ହୋଇଯାଇପାରେ। ମା' ଦନ୍ତେଶ୍ୱରୀଙ୍କର ଇଚ୍ଛା !"

କିନ୍ତୁ ସେ ପର୍ଯ୍ୟନ୍ତ ଆଶ୍ରୟ କେଉଁଠି ? ଆକାଶରୁ ଶେଷ ଚୈତ୍ର-ମଧ୍ୟାହ୍ନର ଖରା ନିଆଁଗୁଣ୍ଡ ଝାଡୁଥିଲା। ମ୍ୟାନେଜର୍ ପ୍ରାୟ ଫର୍ଲଙ୍ଗେ ଦୂରରେ ଝାପ୍‌ସା ଝାପ୍‌ସା ହୋଇ ଦେଖାଯାଉଥିବା ମେଞ୍ଚାଏ ଛାଇ ଆଉ ତା' ଭିତରେ ଦେଖାଯାଉଥିବା କେତେଟା ଖପରଲି ଛାଉଣି କୁଡ଼ିଆ ଦେଖାଇ କହିଲେ, "ଚାଲନ୍ତୁ, ଡ୍ରାଇଭର୍ କିଛି ଗୋଟାଏ ବ୍ୟବସ୍ଥା କରିବା ପର୍ଯ୍ୟନ୍ତ ଆମେ ସେଇଠାରେ ଅପେକ୍ଷା କରିବା। ଅସୁବିଧା ହେବ ନାହିଁ। ସବୁ ମା' ଦନ୍ତେଶ୍ୱରୀଙ୍କର ଇଚ୍ଛା।"

ଗୋଟାଏ ପଣସ ତୋଟା ଭିତରେ ପ୍ରାୟ ଚାରି ପାଞ୍ଚଟି ଅନୁଚ୍ଚ କୁଡ଼ିଆ ପରି ଘର। ମ୍ୟାନେଜର କହିଲେ, "ଇଏ ମାରିଆ ଆଦିବାସୀମାନଙ୍କର ଗୋଟାଏ ଛୋଟ ବସତି। ଏମାନେ ରାସ୍ତାକାମ କରୁକରୁ ଏଇଠି ଘର ବାନ୍ଧି ରହିଯାଇଛନ୍ତି।"

ମଧ୍ୟାହ୍ନର ରୌଦ୍ରପୋଡ଼ା ମରୁଭୂମି ଭିତରେ ସ୍ଥାନଟା ପ୍ରକୃତରେ ଲାଗୁଥିଲା ଗୋଟାଏ ଓଏସିସ୍ ପରି। ଅନେକ ଡକାଡକି ପରେ, ପ୍ରାୟ ଷାଠିଏ ଟପିଥିବା ଜଣେ ବୁଢ଼ା ମାରିଆ ପଦାକୁ ବାହାରି ଆସିଲା। ତା' ଦେହର ଚମସବୁ ଯେପରି ଦୁହିଁ ହୋଇ ଆସିଥିଲା। ମୁହଁ ଉପରେ ତା'ର ବାର୍ଦ୍ଧକ୍ୟର କୁଞ୍ଚିତ ରେଖା ସବୁ ଯେପରି ବୁଢ଼ୀଆଣି ଜାଲ ମେଲିଥିଲା। ଆଖି ଦିଇଟା କୁମ୍ଭାଟୁଆ ଆଖି ପରି ଲାଲ। ପିନ୍ଧିଥିଲା ଏଠିସେଠି ଫୁଟିଫାଟି ଯାଇଥିବା ଖଣ୍ଡେ ଢିଲା ନେଳି ହାଫ୍‌ପ୍ୟାଣ୍ଟ୍। ମ୍ୟାନେଜର ଜଣକ ବେଶ୍ ଚଲ୍‌ତା ପୁର୍‌ଜା ଲୋକ। ଏ ଅଞ୍ଚଳରେ ଜଙ୍ଗଲ କାମ କରିକରି ସେ ମାରିଆ ମୁରିଆମାନଙ୍କର ଭାଷା ଶିଖି ଯାଇଥିଲେ। ସେ ସେହି ବୁଢ଼ା ମାରିଆକୁ ବୁଝାଇ ଦେଲେ ଆମର ଅବସ୍ଥା ଓ ସେଠାରେ କିଛି ସମୟ ଅପେକ୍ଷା କରିବାପାଇଁ ଆମର ଅନୁରୋଧ। ବୁଢ଼ା ମାରିଆ କୌଣସି ଉତ୍ତର ନଦେଇ ଇସାରାରେ ଆମକୁ ଡାକି ନେଲା। କୁକୁରଟାଏ ଭୁକିଭୁକି ଆମ ଆଡ଼େ ତେଢ଼ି ଆସୁଥିଲା, ମାତ୍ର ବୁଢ଼ାର ଗୋଟାଏ ଅସ୍ଫୁଟ ଚିତ୍କାରରେ ସେ ସେଠାରୁ ପଳାଇଲା।

ଗୋଟାଏ ଝଙ୍କାଳିଆ ପଣସ ଗଛ ଛାଇରେ ବୁଢ଼ା ଆମପାଇଁ ଦୁଇଟା ଦଉଡ଼ିଆ ଖଟ ପକାଇ ଦେଇ ଗୋଟାଏ କୁଡ଼ିଆ ଭିତରକୁ ଯାଇ ଚୁପ୍‌ଚାପ୍ ଅଦୃଶ୍ୟ ହୋଇଗଲା। ଅନ୍ୟ କୁଡ଼ିଆମାନଙ୍କରେ ସେତେବେଳେ କେହି ନଥିଲେ। ସମସ୍ତେ ବୋଧହୁଏ ସଙ୍ଗରେ ପିଲାଛୁଆଙ୍କୁ ଧରି କାମରେ ବାହାରି ଯାଇଥିଲେ। ଘର ଜଗି ରହିଥିଲେ ବୋଧହୁଏ କେତେ ଜଣ ନିପାରିଲା ବୁଢ଼ୀ ଆଉ ବୁଢ଼ା। ବୁଢ଼ୀଟିଏ କୌତୂହଳରେ ଗୋଟିଏ କୁଡ଼ିଆ ଭିତରୁ ଆମ ଆଡ଼େ ଉଙ୍କିମାରି ଚାହିଁଲା। ତା'ର ଅଣ୍ଟା ଚାରିପଟେ ସାମାନ୍ୟ ଆଭରଣ। ମୋତେ ଭାରି ଶୋଷ ଲାଗୁଥିଲା। ମୁଁ "ପାଣି ମିଳିବ କି ?" ବୋଲି ପଚାରିବାରୁ ତରୁଣ ମ୍ୟାନେଜରଟି ଉଠିଯାଇ ସେଇ ବୁଢ଼ାକୁ ତା' ଭାଷାରେ ଡାକି କ'ଣ କହିଲେ। ତା'ପରେ ଫେରିଆସିଲେ, ଖଟିଆ ଉପରକୁ।

ମୁଁ ସଲପ ପିଇବି କି ବୋଲି ସେ ମୋତେ ସନ୍ତର୍ପଣରେ ପଚାରିଲେ। ସଲପ ପ୍ରତି ମୋର କେବେ ଅନାଗ୍ରହ ନଥିଲା। ଫୁଲବାଣୀ ଓ କୋରାପୁଟ ଜିଲ୍ଲାରେ ବୁଲିବାବେଳେ ମୁଁ ପ୍ରଚୁର ସଲପ ପିଇଛି। ଏହାର ସ୍ୱାଦ ଖଜୁରି ନୀରା ପରି। ନିଶା ଠିକ୍ ବିଅର୍ ନିଶାପରି ମୋଲାୟମ୍। ଇଏ ଆଦିବାସୀମାନଙ୍କର ଖାଦ୍ୟ ଓ ପାନୀୟ। ଆମେ ଯେପରି ଗାଈର ହେପାଜତ କରୁ, ଏମାନେ ଠିକ୍ ସେହିପରି ସଲପ ଗଛର ହେପାଜତ୍ କରନ୍ତି। ସଲପ ଗଛ ସଂପର୍କରେ ଏମାନେ ମଧ୍ୟ ଖୁବ୍ ସ୍ପର୍ଶକାତର। ଶୁଣିଛି, ବାପର ସଲପ ଗଛରୁ ପୁଅ ସଲପ ଠେକି ଓହ୍ଲାଇଲେ, ବାପ ପୁଅକୁ ତୀର ବିନ୍ଧି ଦେବ। ପୁଅର ସଲପ ଗଛରୁ ବାପ ସଲପ ଠେକି ଓହ୍ଲାଇଲେ, ପୁଅ ମଧ୍ୟ ଛାଡ଼ିଦେବ ନାହିଁ। ବୁଢ଼ା ମାରିଆ ତା' ଗଛରୁ ଗୋଟାଏ ବଡ଼ ସଲପ ରସ ଠେକି ଦଉଡ଼ି ଟାଣି ଓହ୍ଲାଇ ଆଣିଲା। ତା'ପରେ ଦୁଇଟା

ଚେପା ଆଲୁମିନିୟମ୍ ଗ୍ଲାସ୍‌ରେ ଦୁଇ ଗ୍ଲାସ୍ ସଲପ ରସ ଆମପାଇଁ ମାଟି ଉପରେ ରଖିଦେଲା। ଆମେ ଠେକିଟାକୁ ଖାଲି କରିଦେଲୁ। କିଛିକ୍ଷଣ ପରେ ବୁଢ଼ା କୁକୁଡ଼ା ଡିମ୍ବ ଆଣି ରଖି ଦେଇଗଲା। ସଲପ ପରେ ସିଝା କୁକୁଡ଼ା ଅଣ୍ଡା ଭାରି ତୃପ୍ତିକର ଲାଗିଲା। ପ୍ରକୃତରେ ସବୁ ମା' ଦନ୍ତେଶ୍ୱରୀଙ୍କର ଇଚ୍ଛା।

ଡ୍ରାଇଭର୍ ଗୋଟାଏ ବସ୍‌ରେ ଫେରିଲାବେଳକୁ ତିନିଟା ବାଜି ଯାଇଥିଲା। ଆମେ ବୁଢ଼ା ପାଖରୁ ବିଦାୟ ନେଇ ଆସିବାବେଳେ ମୋର ମନେହେଲା, ତା'ର ସଲପ ରସ ଆଉ ଚାରିଟା କୁକୁଡ଼ା ଅଣ୍ଡାପାଇଁ ପଇସା ନ ଦେଇ ଗଲେ ଭାରି ଅନ୍ୟାୟ ହେବ। ଏତକର ଦାମ୍ ବୁଢ଼ାପାଇଁ ତ କମ୍ ହେବ ନାହିଁ। ପକେଟରୁ ଖଣ୍ଡେ ଦଶ ଟଙ୍କିଆ ନୋଟ୍ କାଢ଼ି ମୁଁ ବୁଢ଼ା ହାତରେ ଧରାଇଦେବା ମାତ୍ରେ ସେ ହଠାତ୍ ରାଗିମାଗି ତା' ଭାଷାରେ ଯେପରି ବିସ୍ଫୋରଣ କରି ଉଠିଲା, ସେଥିରେ ମୁଁ ପ୍ରକୃତରେ ଡରିଗଲି। ମୁଁ କ'ଣ ଅନ୍ୟାୟ କଲି କି ବୋଲି ମ୍ୟାନେଜରଙ୍କୁ ପଚାରିବାରୁ ସେ କହିଲେ, "ବୁଢ଼ା କହୁଚି, ସଲପ ଆଉ ଅଣ୍ଡା ପାଇଁ ତାକୁ ଟଙ୍କା ଦେଇ ଆମେ ତା'ର ଅପମାନ କଲୁ। ଆମେ ରାସ୍ତା କଡ଼ରେ ଅସୁବିଧାରେ ପଡ଼ିଯାଇଥିଲୁ। ସେ ଆମକୁ ଠେକିଏ ସଲପ ଆଉ ଚାରିଟା ଅଣ୍ଡା ଦେଲା ମାତ୍ର। ଏଥିପାଇଁ ସେ ଦାମ୍ ନେବ କାହିଁକି ? ସେ'ତ ଆଉ ସଲପ ବିକ୍ରି କରୁନାହିଁ। ବୁଢ଼ା ମାରିଆ ଦଶଟଙ୍କିଆ ନୋଟ୍ ଖଣ୍ଡକ ଘୃଣାରେ ତଳକୁ ଫିଙ୍ଗିଦେଲା।

ମୁଁ ନୋଟ୍‌ଟା ତଳୁ ଉଠାଇ ପକେଟରେ ରଖିବାବେଳେ ମୋର ମନେହେଲା, ସେ ବୁଢ଼ାଟି ଯେପରି ଗୋଟାଏ ଭିକାରୀକୁ ଦଶଟଙ୍କିଆ ନୋଟ୍‌ଟାଏ ଦାନ କରିଦେଲା। ଆମେ ମଧ୍ୟବିତ୍ତମାନେ ପ୍ରକୃତରେ ମନ ଓ ଚିନ୍ତାରେ କେତେ ଦରିଦ୍ରନୋହୁଁ ସତେ !

ସେଇଦିନୁ ମୁଁ ଭାବି ଆସୁଛି, ପ୍ରକୃତରେ ଦାରିଦ୍ର୍ୟର ସଂଜ୍ଞା କ'ଣ ? ଏହା ଆମର ମନର ଦୈନ୍ୟରେ ନା ଆୟର ପରିମାଣରେ ? ମଣିଷ ଯଦି ମନରେ ଦରିଦ୍ର, କାଙ୍ଗାଳ ହୋଇଥାଏ, ତା'ହେଲେ କୁବେର ସମ୍ପଦ ସୁଦ୍ଧା ତା'ର ଦାରିଦ୍ର୍ୟ ଘୁଞ୍ଚାଇ ପାରିବ ନାହିଁ।

*୧୫/୧୧/୮୭*

# ଶତପୂର୍ତ୍ତି

ଏହି ସ୍ତମ୍ଭର ସୁଧୀ ପାଠକପାଠିକାମାନଙ୍କ ପକ୍ଷରେ ଏକଥା ଅବଶ୍ୟ ଏକ ସମ୍ବାଦ ହୋଇ ନପାରେ; କିନ୍ତୁ ଏ ସ୍ତମ୍ଭର ଲେଖକ ହିସାବରେ ମୋ ପକ୍ଷରେ ଗୋଟିଏ ଶ୍ରେଷ୍ଠ ସମ୍ବାଦ ହେଉଛି, ଗତ ସଂଖ୍ୟା 'ସମ୍ବାଦ'ରେ ପ୍ରକାଶିତ 'ଶେଷସ୍ତମ୍ଭ'ରେ ଏହାର ଶତପୂର୍ତ୍ତି ହୋଇଗଲା। 'ସମ୍ବାଦ'ର ସାହିତ୍ୟ ପୃଷ୍ଠା ଆରମ୍ଭ ଦିନୁ ଏ ପର୍ଯ୍ୟନ୍ତ ସାମୟିକ ନୀରବତା ଓ ନିସ୍ପୃହତା ମଧ୍ୟରେ ଏହି ସ୍ତମ୍ଭଟି ଯେ ଅନାହତ ଓ ନିରବଚ୍ଛିନ୍ନ ରହିପାରିଛି, ତାହା ପ୍ରକୃତରେ ଏହାର ଲେଖକ ହିସାବରେ ମୋ ପକ୍ଷରେ ନିଶ୍ଚୟ ଏକ ସୁସମ୍ବାଦ। 'ସମ୍ବାଦ'ର ପାଠକପାଠିକାମାନଙ୍କର ଏହି ସ୍ତମ୍ଭ ପ୍ରତି ଅକୁଣ୍ଠ ଶ୍ରଦ୍ଧା ଓ ପ୍ରକାଶକଙ୍କର ଆଗ୍ରହ ଫଳରେ କେବଳ ଏହା ସମ୍ଭବ ହୋଇପାରିଛି।

ବସ୍ତୁତଃ ସାମୟିକ ନିସ୍ପୃହତା ଫଳରେ ଏହି ସ୍ତମ୍ଭଟି ବେଳେବେଳେ ଅନିୟମିତ ହୋଇପଡ଼ିଛି। କିନ୍ତୁ ଏହି ସ୍ତମ୍ଭଟିକୁ ନ ଦେଖି ବହୁ ବିଦଗ୍ଧ ପାଠକ ସେମାନଙ୍କ ସଶ୍ରଦ୍ଧ ପତ୍ରାଘାତରେ ମୋତେ ଅସ୍ଥିର କରି ପକାଇଛନ୍ତି। ଶେଷସ୍ତମ୍ଭ ପୁଣି ଆରମ୍ଭ ହୋଇଛି। ଏହି ଅନୁଭୂତିରୁ ଲେଖକ ଓ ପାଠକମାନଙ୍କ ମଧ୍ୟରେ ଯେଉଁପ୍ରକାର ଗଭୀର ମାର୍ମିକ ସଂପର୍କ ରହିଛି ତାହା ମୁଁ ଉପଲବ୍ଧି କରିପାରିଛି। ଲେଖକ ତା'ର ସୃଷ୍ଟିର ଅର୍ଦ୍ଧେକ ସ୍ରଷ୍ଟା ମାତ୍ର। ଅନ୍ୟ ଅର୍ଦ୍ଧଟିର ସ୍ରଷ୍ଟା ହେଉଛନ୍ତି, ବିଦଗ୍ଧ ପାଠକଗୋଷ୍ଠୀ। ତେଣୁ ପାଠକମାନଙ୍କୁ ବାଦ୍ ଦେଇ କଦାପି ସାହିତ୍ୟର ପରିକଳ୍ପନା କରାଯାଇ ନପାରେ। ମୋ ପକ୍ଷରେ ସାହିତ୍ୟର ସଂଜ୍ଞା ତେଣୁ ଭାବ ଓ ଭାଷାର କେବଳ ସାଯୁଜ୍ୟ ବା ଯୁଗନଦ୍ଧତା ନୁହଁ। ଏଥିରେ ପାଠକମାନଙ୍କର ମଧ୍ୟ ସଂପୃକ୍ତି ରହିଛି। ବସ୍ତୁତଃ 'ଶେଷସ୍ତମ୍ଭ'ର ସଫଳତାପାଇଁ ଯଦି କୌଣସି କୃତିତ୍ୱ ଥାଏ, ତା' ହେଲେ ତାହା ଏହି ସ୍ତମ୍ଭର ଲେଖକ ହିସାବରେ ମୋର ଯେତିକି ପାଠକମାନଙ୍କର ମଧ୍ୟ ସେତିକି।

କେତେକ ସହଯୋଗୀଙ୍କର ଅନୁରୋଧରେ 'ଶେଷସ୍ତମ୍ଭ' ପ୍ରଥମେ ଆରମ୍ଭ କରିବା ବେଳେ ବ୍ୟକ୍ତିନିଷ୍ଠ ଦୃଷ୍ଟିରୁ ସାହିତ୍ୟ, ସଂସ୍କୃତି ଓ ସମାଜ ସଂପର୍କରେ କିଛି ଲଘୁ, କିନ୍ତୁ

ଗଭୀର ଆଲୋଚନା କରିବା ମୋର ଉଦ୍ଦେଶ୍ୟ ଥିଲା। ସେହିପରି ମଧ୍ୟ ଆରମ୍ଭର ଶେଷସ୍ତମ୍ଭଗୁଡ଼ିକ ଲେଖାଯାଇଥିଲା। କିନ୍ତୁ କ୍ରମେ ଏହାର ଉପଜୀବ୍ୟ ହୋଇପଡ଼ିଲା, ମୋର କେତେକ ନିବିଡ଼ ଅନୁଭୂତି। ଅଭିଜ୍ଞତା ବା ଅନୁଭୂତି କେବଳ ସାହିତ୍ୟପାଇଁ ଯଥେଷ୍ଟ ନୁହେଁ। ଅଭିଜ୍ଞତା ବା ଅନୁଭୂତି ନଥିଲେ କୌଣସି ସତ୍ ସାହିତ୍ୟର ସୃଷ୍ଟି ସମ୍ଭବ ନୁହେଁ। ଏକଥା ନିଶ୍ଚିତ ଭାବରେ ସତ୍ୟ। କିନ୍ତୁ ତାହା ମଧ୍ୟ ଜର୍ଣ୍ଣାଲିଜମ୍।

ଜର୍ଣ୍ଣାଲିଜମ୍‌ର ଅର୍ଥ ଏବେ ଅବଶ୍ୟ ବୁଝାଯାଉଛି ସାମ୍ବାଦିକତା ବା ରିପୋର୍ଟିଂ। କିନ୍ତୁ ଉନବିଂଶ ଶତାବ୍ଦୀରେ ଜର୍ଣ୍ଣାଲ୍ କହିଲେ ବୁଝାଉଥିଲା, ଡାଯରୀ (ଦିନଲିପି ବା ରୋଜନାମଚା ଅର୍ଥରେ ନୁହେଁ)। ଏହା ଥିଲା ବ୍ୟକ୍ତିଗତ ଅଭିଜ୍ଞତାର ବ୍ୟକ୍ତିନିଷ୍ଠ ଲିପି। ଇଂରାଜୀ ସାହିତ୍ୟରେ ସୁଇଫ୍‌ଟ ଓ ଆଡ଼ିସନ୍ ପ୍ରମୁଖ ଥିଲେ ଏହାର ଶ୍ରେଷ୍ଠ ପ୍ରତିନିଧି। ଫରାସୀ ଓ ଇଂରାଜୀ ସାହିତ୍ୟରେ ଏ ପ୍ରକାର ବହୁ ଜର୍ଣ୍ଣାଲିଷ୍ଟ ଆବିର୍ଭୂତ ହୋଇଥିଲେ। କିନ୍ତୁ ସାହିତ୍ୟପାଇଁ ଅଭିଜ୍ଞତା ବା ଅନୁଭୂତି କେବଳ ଯଥେଷ୍ଟ ନୁହେଁ। ଏହା ସବୁ ତିନି ପରିଧି ବିଶିଷ୍ଟ 'ଥ୍ରୀ-ଡାଇମେନ୍‌ସନାଲ୍' ନିଶ୍ଚୟ। କିନ୍ତୁ ଏହାପରେ ରହିଛି ଚତୁର୍ଥ ପରିଧି ବା 'ଫୋର୍ଥ-ଡାଇମେନ୍‌ସନ'। ତାହା ହେଉଛି ଉପଲବ୍ଧି। ଉପଲବ୍ଧିର ସ୍ପର୍ଶ ନଥିଲେ ଅନୁଭୂତିର କୌଣସି ସାର୍ବଜନୀନ ଆବେଦନ ନାହିଁ ବା ନଥାଏ। ନିଷାଦର କ୍ରୂର ଶରାଘାତରେ ପ୍ରତ୍ୟହ କେତେ କ୍ରୌଞ୍ଚ ପକ୍ଷୀ ମରୁ ନାହାନ୍ତି। କ୍ରୌଞ୍ଚର ବିଚ୍ଛେଦରେ କେତେ କ୍ରୌଞ୍ଚୀ ବିଳାପ କରୁନାହାନ୍ତି। କିନ୍ତୁ ଜଣେ ବାଲ୍ମୀକିଙ୍କର ଶୋକୋପଲବ୍ଧି କେବଳ ସେହି ଶୋକକୁ ବିଶ୍ୱସାହିତ୍ୟର ପ୍ରଥମ ଶ୍ଳୋକରେ ପରିଣତ କରିପାରିଥିଲା। ସେଥିପାଇଁ କୁହାଯାଇଛି ସଂସ୍କୃତରେ ଶ୍ଳୋକ ଶବ୍ଦଟିର ଉତ୍ସ ହେଉଛି ଶୋକ। ଗୋଟିଏ ସ୍ପର୍ଶାତୁର କବିପ୍ରାଣ ମଧ୍ୟରୁ ପ୍ରତିବାଦର ଯେଉଁ ସ୍ୱର ସେଦିନ ଉଚ୍ଚାରିତ ହୋଇଥିଲା, ତାହାହିଁ ହେଉଛି ପ୍ରଥମ ଶ୍ଳୋକ, ପ୍ରଥମ ମହାକାବ୍ୟ। ବାଲ୍ମୀକିଙ୍କର ଶୋକୋଚ୍ଛ୍ୱାସ ଶ୍ଳୋକ ମାଧ୍ୟମରେ ନିଖିଳ ପ୍ରାଣରେ କାବ୍ୟରୂପେ ଝଙ୍କୃତ ହୋଇଥିଲା। ସେଥିପାଇଁ ଅନୁଭୂତି କେବଳ ଯଥେଷ୍ଟ ନୁହେଁ। ଏହା ଉପଲବ୍ଧିରେ ପରିଣତ ହେବା ଆବଶ୍ୟକ। ଯେଉଁ ସାହିତ୍ୟରେ ଉପଲବ୍ଧି ନାହିଁ, ସେଥିରେ ଲେଖକର ବକ୍ତବ୍ୟ ମଧ୍ୟ ନାହିଁ। ଯେଉଁ ସାହିତ୍ୟରେ ବକ୍ତବ୍ୟ ନାହିଁ, ତାହା ବର୍ଣ୍ଣମାଳାର ସଂଯୋଜନା ହୋଇପାରେ- ଅର୍ଥାତ୍ ରଚନା ହୋଇପାରେ, ମାତ୍ର ସେଥିରେ ସାହିତ୍ୟର ଆବେଦନ ନଥାଏ। 'ଶେଷସ୍ତମ୍ଭ'ରେ ମୁଁ ଯେଉଁ ବ୍ୟକ୍ତିଗତ ଅଭିଜ୍ଞତାର କଥାସବୁ ଲେଖିଆସୁଛି ସେସବୁ ମୋର ବ୍ୟକ୍ତିନିଷ୍ଠ ଉପଲବ୍ଧିର କଥା।

କ୍ରମେ ଏହାର ଆଙ୍ଗିକରେ ଆସିଛି ପରିବର୍ତ୍ତନ ଓ ବୈଚିତ୍ର୍ୟ। କେତେକ 'ଶେଷସ୍ତମ୍ଭ' ଲେଖୁଲେଖୁ ହୋଇଯାଇଛି ମିନିଗଳ୍ପ ଅଥବା ମିନି ପ୍ରବନ୍ଧ, କିନ୍ତୁ ସବୁଥିରେ ରହିଛି ମୋର

ନିଜସ୍ୱ ଉପଲବ୍‌ଧି ଓ ନିଜସ୍ୱ ବକ୍ତବ୍ୟ। ସେଥିପାଇଁ ଏହା ବ୍ୟକ୍ତିନିଷ୍ଠତାର ସଂକୀର୍ଣ୍ଣ ଗଣ୍ଡି ଭେଦି ଭାବନିଷ୍ଠ ହୋଇପାରିଛି।

କିନ୍ତୁ ଶତପୂର୍ତ୍ତି ପରେ ମୁଁ ଆଉ ଲେଖିବି କ'ଣ ? ଅନୁଭୂତି ତ ଆଉ ଅମାପ ନୁହେଁ। ପୁଣି ବୃହତ୍ତର ପ୍ରଶ୍ନ ହେଉଛି, ଶହେର ଗୋଟିଏ ରହସ୍ୟମୟ ତାତ୍ପର୍ଯ୍ୟ ରହିଛି। ଏହି ଶହେ ପୂର୍ଣ୍ଣ ହେବା ହେଉଛି, ଯୁଗ, ରୁଚି ଓ ଇତିହାସ ପରିବର୍ତ୍ତନର ଋତୁ। ଶତାବ୍ଦୀରୁ ଶତାବ୍ଦୀ କାଳନଦୀର ସ୍ରୋତରେ ନୂଆନୂଆ ମୋଡ଼ ଓ ବୁଲାଣି ବୁଲିଛି। ସାହିତ୍ୟର ଇତିହାସରେ ପୁଣି ଏ ମୋଡ଼ବୁଲାଣି ଆହୁରି ସୁସ୍ପଷ୍ଟ। ଉଦାହରଣ ସ୍ୱରୂପ, ଅଷ୍ଟାଦଶ ଶତାବ୍ଦୀ ଆରମ୍ଭରେ ଫରାସୀ ବିପ୍ଳବର ବ୍ୟର୍ଥତା ମଧ୍ୟରୁ କବି-ଚେତନାରେ ଯେଉଁ ମୋହଭଙ୍ଗ ଘଟିଥିଲା, ସେଥିରୁ ଜନ୍ମଲାଭ କରିଥିଲା 'ରୋମାଣ୍ଟିକ୍ ରିଭାଇଭାଲ୍' ଇଂରାଜୀ କବି ୱ୍ଡ୍‌ର୍ସୱ୍ୱାର୍ଥ, କଲିରିଜ୍, କିଟସ୍, ବାଇରନ୍ ଓ ସେଲୀ ପ୍ରମୁଖ ଥିଲେ ଏହାର ଆଦ୍ୟ ପ୍ରତିନିଧି। ଓଡ଼ିଆ ସାହିତ୍ୟରେ ମଧ୍ୟ ଅଷ୍ଟାଦଶ ଶତାବ୍ଦୀର ସନ୍ଧ୍ୟାରେ ମଧ୍ୟଯୁଗର ସ୍ତିମିତ ଆକାଶରେ ଜଳି ଉଠିଥିଲା ଆଧୁନିକ ଯୁଗର କାବ୍ୟତାରା। 'ଶେଷସ୍ତମ୍ଭ'ର ଶତପୂର୍ତ୍ତି ହୋଇଗଲା। ଏହାପରେ ଆଉ କ'ଣ ଲେଖିବି ?

ସୁଧୀ ପାଠକପାଠକମାନେ ବୋଧହୁଏ ଦେଇପାରିବେ, ଏହି ପ୍ରଶ୍ନର ଉତ୍ତର।

୨୨/୧୧/୮୭

# ବୁଢ଼ା ନୋଳିଆ ଓ ସମୁଦ୍ର

କେତେବର୍ଷ ତଳେ ମୋତେ ଥରେ କାର୍ଯ୍ୟ ଉପଲକ୍ଷରେ ଛତ୍ରପୁର ସର୍କିଟ୍‌ହାଉସ୍‌ରେ ପୂରା ଗୋଟାଏ ଦିନ ହାତବାନ୍ଧି ବସି ରହିବାପାଇଁ ପଡ଼ିଥିଲା। ନିଛାଟିଆ ସର୍କିଟ୍ ହାଉସ୍। ଚାରିଆଡ଼େ ଅପନ୍ତରା ବାଲିବନ୍ତରେ ଅରାଏ ଅରାଏ ରଙ୍ଗଣୀ ଧୂ  ଆଉ ଝାଉଁମାନଙ୍କର ବିଷଣ୍ଣ ଦୀର୍ଘଶ୍ୱାସ; ମୋତେ ଭାରି ବୋରିଂ ଲାଗୁଥିଲା। ଏହିପରି ଭୟଙ୍କର ଚିଟା ଲାଗୁଥିବାବେଳେ ହଠାତ୍ ଜଣେ ବହୁଦିନ ପୂର୍ବର ସହପାଠୀ ସେଠାରେ ଆସି ପହଞ୍ଚିଗଲେ। ସେତେବେଳେ ସେଠାରେ ସେ ସମବାୟ ବିଭାଗର ଜଣେ ମଧ୍ୟମଶ୍ରେଣୀ ଅଫିସର ରୂପେ ଅବସ୍ଥାପିତ ଥିଲେ। ଅନେକ ଦିନ ପରେ ତାଙ୍କ ସହିତ ଏଇ ଥିଲା ମୋର ପ୍ରଥମ ସାକ୍ଷାତ। ମୋତେ ଭାରି ଚିଟା ଲାଗୁଥିବା ଶୁଣି ସେ ପ୍ରସ୍ତାବ କଲେ, ଚାଲନ୍ତୁ ସମୁଦ୍ରକୂଳରୁ ବୁଲି ଆସିବା।

ମନେପଡୁଛି, ସର୍କିଟ୍ ହାଉସ୍‌ଠାରୁ ସମୁଦ୍ର କୂଳ ପ୍ରାୟ ଆଠଦଶ ମାଇଲ୍ ରାସ୍ତା। ଦୁଇକଡ଼େ ବେଶ୍ ଉଚ୍ଚାଉଚ୍ଚା କିଆ ଗଛ ଭିତର ଦେଇ ସମୁଦ୍ର କୂଳର ଆରିଆପଲ୍ଲୀ ପର୍ଯ୍ୟନ୍ତ ଲମ୍ବିଥିଲା ନାଲି ସୁର୍କୀବିଛା ରାସ୍ତା। ସର୍କିଟ୍ ହାଉସରୁ ବାହାରି ଭାରି ଅବାସ୍ତବ-ସ୍ୱପ୍ନିଳ ଲାଗୁଥିଲା, ଉଚ୍ଚା ଉଚ୍ଚା ଘଞ୍ଚ କିଆବଣ ଭିତର ଦେଇ ଏଇ ନିଛାଟିଆ ନାଲି ସଡ଼କ। ଜିପ୍‌ରେ ଆସିବାବେଳେ ଭଦ୍ରଲୋକ କହୁଥିଲେ, ଆରିଆପଲ୍ଲୀ ନୋଳିଆମାନଙ୍କ ଗାଁରେ ସେ ସ୍ଥାପନ କରିଥିବା ଗୋଟିଏ ନୋଳିଆ ସମବାୟ ସମିତିର କଥା। ସରକାରୀ ଅଫିସରମାନଙ୍କର ଏଇ ହେଉଛି ବିପଦ। ନିଜ ନିଜ ଫାଇଲ୍ ଆଉ ଅଫିସ୍ ଛଡ଼ା କଥାବାର୍ତ୍ତା ହେବାପାଇଁ ସେମାନଙ୍କର ଅନ୍ୟ କିଛି ପ୍ରାୟ ନଥାଏ। ସେ ସମବାୟ ସମିତି ସ୍ଥାପନ କରିବା ପୂର୍ବରୁ ଆରିଆପଲ୍ଲୀର ନୋଳିଆ ଧୀବରମାନଙ୍କର ଅର୍ଥନୈତିକ ଅବସ୍ଥା କ'ଣ ଥିଲା ଓ ସେମାନେ ସମବାୟ ସମିତିରେ ଯୋଗ ଦେବାପରେ ସେମାନଙ୍କ ଅର୍ଥନୈତିକ ଅବସ୍ଥାରେ କି ପରିବର୍ତ୍ତନ ଘଟିଛି, ଭଦ୍ରଲୋକ ତାହାର ବିସ୍ତାରିତ ବିବରଣୀ ଓ ପରିସଂଖ୍ୟାନ ସବୁ ଦେଉଥିବାବେଳେ ମୁଁ ଦୁଇପାଖର କିଆବଣ ଭିତରେ ନିଜକୁ

ଯେପରି ହଜାଇ ଦେଇଥିଲି ଓ ସେଠାକୁ ଶୁଣା ଯାଉଥିବା ସମୁଦ୍ରର ନିର୍ଘୋଷ ଶୁଣିବାପାଇଁ ଚେଷ୍ଟା କରୁଥିଲି ।

ଭଦ୍ରଲୋକ କହିଲେ, "କିନ୍ତୁ ଶୁଣି ଆଶ୍ଚର୍ଯ୍ୟ ହେବେ, ଆରିଆପଲ୍ଲୀର ସବୁ ନୋଳିଆ ସୋସାଇଟିର ମେମ୍ବର ହେଲେ ସିନା, ଜଣେ ବୁଢ଼ା ନୋଳିଆ କିନ୍ତୁ ଏଥିରେ ତ ଆଦୌ ଯୋଗ ଦେଉନାହିଁ, ବରଂ ଯେଉଁମାନେ ସୋସାଇଟିରେ ମେମ୍ବର ହୋଇଛନ୍ତି, ସେମାନଙ୍କୁ ସୋସାଇଟି ଛାଡ଼ି ଚାଲିଆସିବାପାଇଁ ସେ ମତାଉଛି। ସେଥିପାଇଁ ଆରିଆପଲ୍ଲୀର ଅନ୍ୟ ନୋଳିଆମାନେ ତାକୁ ବାସନ୍ଦ ସୁଦ୍ଧା କରିଛନ୍ତି। ତଥାପି ସେ ସୋସାଇଟିରେ ଯୋଗ ଦେବାପାଇଁ ନାରାଜ। ଏଇଥିରୁ ବୁଝୁଥିବେ ଆମ ଅବସ୍ଥା। ଲୋକେ ଭଲକଥା, ଭଲକାମପାଇଁ ନାରାଜ, ଯେମିତି ଆରିଆପଲ୍ଲୀର ଏଇ ବୁଢ଼ା ନୋଳିଆ ! ...କଣ୍ଠରେ ତାଙ୍କର ବିରକ୍ତି। ଭଦ୍ରଲୋକଙ୍କର କଥାବାର୍ତ୍ତା ସର୍କିଟ୍ ହାଉସ୍‌ର ନୀରବତାଠାରୁ ସୁଦ୍ଧା ମୋତେ ଆଉରି ବୋରିଂ ଲାଗୁଥିଲା। ମୁଁ ସିଗ୍ରେଟ୍ ଟାଣି ଟାଣି ଅନ୍ୟମନସ୍କ ଭାବରେ ବେଳେବେଳେ ଭଦ୍ରଲୋକଙ୍କ କଥାରେ ହୁଁ ହାଁ କରୁଥିଲି। କିନ୍ତୁ ଏଇ ଅବାଗିଆ ବୁଢ଼ା ନୋଳିଆ ସଂପର୍କରେ ଅଧିକ କିଛି ଶୁଣିବା ପାଇଁ ମୋର ଆଗ୍ରହ ହୋଇଥିଲେ ହେଁ ଭଦ୍ରଲୋକ ତା' ସଂପର୍କରେ ଆଉ କିଛି କହିଲେ ନାହିଁ।

ସମୁଦ୍ର କୂଳରେ ଆରିଆପଲ୍ଲୀର ନୋଳିଆ ବସତି। ସେତେବେଳକୁ ଫେବ୍ରୁଆରି ମାସର କଅଁଳ ଖରା, ଗହଳ କିଆବଣ ଆଉ ଝାଉଁର ହା ହୁତାଶ ଭିତରେ ଝିମେଇ ପଡ଼ିଥିଲା। ନୋଳିଆମାନେ ସେତେବେଳେ ଡଙ୍ଗା ଆଉ ଜାଲ ଧରି ସମୁଦ୍ର ଭିତରକୁ ବାହାରି ଯାଇଥିଲେ। ନୋଳିଆଣୀମାନେ ମାଛ, ଶୁଖୁଆ ପସରା ଧରି ଛତ୍ରପୁର ସହରକୁ ଚାଲି ଯାଇଥିଲେ। ନୋଳିଆମାନଙ୍କର ନୁଆଣିଆ କୁଡ଼ିଆମାନଙ୍କରୁ କୁଣ୍ଡଳୀ ମୋଡ଼ି ଧୂଆଁ ଉପରକୁ ଉଠୁଥିଲା। କେତେଟା ଲଙ୍ଗଳା ନୋଳିଆ ପିଲା ସମୁଦ୍ର କୂଳରେ ଦଉଡ଼ା ଦଉଡ଼ି ହେଉଥିଲେ। ସମୁଦ୍ରର ଗର୍ଜନ ଆଉ ବେଳେବେଳେ ସେଇ ନୋଳିଆ ପିଲାମାନଙ୍କର ଚିତ୍କାର ବ୍ୟତୀତ ଅନ୍ୟ କୌଣସି ଶବ୍ଦ ବା ଜୀବନର ସତ୍ତା ସେଠାରେ ନଥିଲା।

ଭଦ୍ରଲୋକ ପ୍ରାୟ ଚିତ୍କାର କରି ଉଠିବା ପରି କଣ୍ଠରେ କହିଲ, "ଏଇ ସେ ବୁଢ଼ା !" ବୁଢ଼ା ନୋଳିଆଟିଏ ଅଣ୍ଟା ଚାରିପଟେ ଖଣ୍ଡେ ଅଣଓସାରିଆ ଧୋତି ଗୁଡ଼ାଇ ବାଲି ଉପରେ ମୁହଁମାଡ଼ି ପଡ଼ିଥିବା ଗୋଟାଏ ଡଙ୍ଗା ଉପରେ ସମୁଦ୍ର ଆଡ଼କୁ ମୁହଁ କରି ଚୁପ୍‌ଚାପ୍ ବସିଥିଲା... ଆଉ ପିକା ଟାଣୁଥିଲା। ମୁଁ ତାକୁ ଦେଖିବାର ଆଗ୍ରହ ଓ କୌତୂହଳ ଚାପି ନପାରି ତା' ପାଖକୁ ଯିବାପାଇଁ ଭଦ୍ରଲୋକଙ୍କୁ କହିଲି। ଆମ ସାଙ୍ଗରେ ଆସିଲା ସେମାନଙ୍କ ଅଫିସ୍‌ର ଜଣେ ଯୁବକ କିରାଣୀ। ଅଳ୍ପସଳ୍ପ ଓଡ଼ିଆ ଆଉ ଇଂରାଜୀ ସେ ବୁଝିପାରେ ଓ ତେଲେଙ୍ଗୀ ମଧ୍ୟ ଉଚାରଣରେ କହିପାରେ। ଆମେ ବାଲିରେ ଚାଲି ଚାଲି ବୁଢ଼ା ପାଖକୁ ଆସିଲୁ। ମାତ୍ର

ସେଠାରେ ଆମର ଉପସ୍ଥିତିକୁ ସେଇ ବୁଢ଼ା ନୋଳିଆ ଯେପରି ସଂପୂର୍ଣ୍ଣ ଭାବରେ ଉପେକ୍ଷା କରୁଥିଲା। ସେ ଥରେ ତଳୁ ମୁହଁ ଉଠାଇ ଆମ ଆଡ଼େ ଚାହିଁ ପୁଣି ତଳକୁ ମୁଣ୍ଡ ନୁଆଇଁ ଦେଲା। ସେଠାରେ ଆମେ ସବୁ ଯେପରି ଥିଲୁ ସଂପୂର୍ଣ୍ଣ ଅବାନ୍ତର। ଇଏ ଯେପରି ଥିଲା ଗ୍ରୀକ୍ ଦାର୍ଶନିକ ଡାଇଜେନିସ୍‌ର ରୂପାନ୍ତର ।

ମୁଁ ପଚାରିଲି, "ତୁମେ ଆଜି ସମୁଦ୍ର ଭିତରକୁ ଯାଇନାହଁ କାହିଁକି ?" ବୁଢ଼ା ନୋଳିଆ ଘୋର ଅନିଚ୍ଛାରେ ତା' ଭାଷାରେ କ'ଣ ବିଳିବିଳେଇବା ପରି ଚିଡ଼ିଚିଡ଼ି ହୋଇ ଉଠି ପୁଣି ନୀରବ ହୋଇଗଲା। କିରାଣୀ ଜଣକ ବୁଝାଇ ଦେଲା, ବୁଢ଼ା କହୁଛି "ସମୁଦ୍ରକୁ ଯିବାପାଇଁ ତା'ର ଆଜି ଇଚ୍ଛା ହେଲାନାହିଁ। କ'ଣ ହେଲା ସେଇଠୁ ? ସିଏ ତା' ଇଚ୍ଛାର ମାଲିକ। ସମୁଦ୍ର ନୁହେଁ।"

ନୋଳିଆ ବୁଢ଼ାର ଉତ୍ତର ମୋ କୌତୂହଳକୁ ଆଉରି ବଢ଼ାଇ ଦେଇଥିଲା। ମୁଁ କହିଲି, "ବୁଢ଼ାକୁ ପଚାର, ସିଏ ତମ ସୋସାଇଟିରେ ଯୋଗ ଦେଉନାହିଁ କାହିଁକି ? କାହିଁକି ଅନ୍ୟମାନଙ୍କୁ ବାଧା ଦେଉଛି ?" ଯୁବକ କିରାଣୀଟି ତା' ଭାଷାରେ ବୁଢ଼ା ନୋଳିଆକୁ ମୋର ପ୍ରଶ୍ନ ବୁଝାଇ ଦେଲା। ବୁଢ଼ା ପିକାରୁ କଳେ ବହଳିଆ ଧୂଆଁ ଧୀରେ ଧୀରେ ଛାଡ଼ି ଯାହା ଉତ୍ତର ଦେଲା ତାର ଅର୍ଥ ହେଉଛି, ସେ ଆଉ ସମୁଦ୍ର ! ତା' ଭିତରେ ତମେ ଧୋବ ଧାଉଳିଆ ମଧ୍ୟସ୍ଥି ବାବୁମାନେ କିଏ ? ଲହଡ଼ି ସାଙ୍ଗରେ ସେ ଲଢ଼ିବ ଆଉ ମାଛ ଧରିବ ! ମାଟି ଉପରେ କୁର୍ସିରେ ବସି ଏ ବାବୁମାନେ ସେଥିରେ ମାମ୍‌ଲତି କରିବାକୁ କିଏ ?

କୋଅପରେଟିଭ୍ ସୋସାଇଟିର ହାକିମ ଜଣକ ବୁଢ଼ାକୁ ବୋଧହୁଏ ଶହେଏକଥର ପାଇଁ ସୋସାଇଟିର ଉପଯୋଗିତା ସଂପର୍କରେ କ'ଣ ବୁଝାଇବାକୁ ଚେଷ୍ଟା କରୁଥିଲେ। ମାତ୍ର ସେସବୁ ଶୁଣିବାପାଇଁ ବୁଢ଼ାର ଧୈର୍ଯ୍ୟ ବା ଆଗ୍ରହ ନଥିଲା। ସେ ଲମ୍ବା ଲମ୍ବା ପାହୁଲ ପକାଇ ସେଠାରୁ ଉଠି କିଆ ଗୋହିରୀ କଡ଼ର ଗୋଟିଏ ଛୋଟ ଚାଳିଆ ଆଡ଼େ ଚାଲିଗଲା। ଶୁଣିଲି, ସେଠାରେ ଚା' ବିକ୍ରି ହୁଏ। ଆଉ ଚାଉଳି ବି !

ଆମ ସହିତ ଗୁଡ଼ାଏ ବାଜେ କଥାବାର୍ତ୍ତା କରି ବୁଢ଼ାର ମିଜାଜ୍ ଯେପରି ଖରାପ ହୋଇ ଯାଇଥିଲା !

୨୯/୧୧/୮୭

# କବିର ପ୍ରତିବାଦ

ଅଷ୍ଟାଦଶ ଶତାବ୍ଦୀର ମଧ୍ୟଭାଗରେ, ସାମୁଏଲ୍ ଜନ୍‌ସନ୍, ସେକ୍ସପିୟର-ସାହିତ୍ୟର ବିଶିଷ୍ଟ ସମାଲୋଚକ ଓ ଅଭିଧାନପ୍ରଣେତା ରୂପେ ଇଂରାଜୀ-ସାହିତ୍ୟରେ ବିପୁଳ ପ୍ରତିଷ୍ଠାର ଅଧିକାରୀ ଥିଲେ। ସେହି ସୂତ୍ରରେ ସମାଜରେ ତାଙ୍କର ନାମଯଶ ଓ ପ୍ରତିଷ୍ଠା ମଧ୍ୟ ଥିଲା ଅପରିସୀମ। ସ୍ୱାଭାବିକ ଭାବରେ ସେ ଥିଲେ ଗୁରୁଗମ୍ଭୀର ହେଡ଼ମାଷ୍ଟରିଆ ପ୍ରକୃତିର ଲୋକ ଏବଂ କିଛିଟା ଚିଡ଼ିଚିଡ଼ା ମିଜାଜ୍‌ର ମଧ୍ୟ। ତାଙ୍କ ପରି ଜଣେ ଗମ୍ଭୀର, ଶୁଚିବାଦୀ ପ୍ରକୃତିର ଲୋକର, ଅଲିଭର ଗୋଲ୍ଡସ୍ମିଥ୍‌ଙ୍କ ପରି ଜଣେ ଭବଘୂରା, ଖିଆଲି ଓ ଅବାଗିଆ କବିଟି ସହିତ ବନ୍ଧୁତ୍ୱର ସଂପର୍କ ଯେପରି ନିବିଡ଼ ଥିଲା, ଭାବି ବସିଲେ ମନୁଷ୍ୟ ଚରିତ୍ରର ବୈଚିତ୍ର୍ୟ ପ୍ରକୃତରେ ବିସ୍ମୟରେ ଅବାକ୍ କରିଦିଏ। ବୋଧହୁଏ ଦୁହେଁଥିଲେ ପରସ୍ପରର ପରିପୂରକ।

ବିଶିଷ୍ଟ ସାହିତ୍ୟିକ ମାକ୍‌ଲେ, ଜନ୍‌ସନ୍ ଓ ଗୋଲ୍ଡସ୍ମିଥ୍‌ଙ୍କ ବନ୍ଧୁତ୍ୱ ସଂପର୍କରେ ଗୋଟିଏ କୌତୁକାବହ ଘଟଣା ଲିପିବଦ୍ଧ କରି ଯାଇଛନ୍ତି। ଘଟଣାଟି ହେଲା, ଜନ୍‌ସନ୍ ଦିନେ ଗୋଲ୍‌ଡସ୍ମିଥ୍‌ଙ୍କ ପାଖରୁ ଏସ୍.ଓ.ଏସ୍ ଡାକରା ପାଇଲେ, ତାଙ୍କ ପାଖକୁ ବସିବା ସ୍ଥାନରୁ ସଙ୍ଗେ ସଙ୍ଗେ ଉଠି ଆସିବାପାଇଁ। ବନ୍ଧୁବତ୍ସଳ ଜନ୍‌ସନ୍ ଆସି ଦେଖନ୍ତି, ଅଦାଲତର ପିଆଦା ଗୋଲ୍ଡସ୍ମିଥ୍‌ଙ୍କୁ ବାନ୍ଧିନେବାପାଇଁ ଆସିଛି। କବି ମଦ ପିଇବାପାଇଁ କାହା ପାଖରୁ ଥରେ ପାଞ୍ଚପାଉଣ୍ଡ କରଜ କରିଥିଲେ; ମାତ୍ର କରଜ ଶୁଝି ନପାରିବାରୁ ସେ ଅଦାଲତରେ ମୋକଦ୍ଦମା କରିଥିଲା। ସେଥିପାଇଁ ଅଦାଲତରୁ ଶେରିଫ୍ ବର୍ତ୍ତମାନ ତାଙ୍କୁ ବାନ୍ଧି ନେବାପାଇଁ ପିଆଦା ପଠାଇଛି।

ଭାରି ବିକଳ ଭାବରେ କବି, ଜନସନ୍‌ଙ୍କୁ ଜଣାଇଲେ। ଜନ୍‌ସନ୍‌ଙ୍କ ପାଖରେ ଗୋଲ୍‌ଡସ୍ମିଥ୍‌ଙ୍କର ଖଣ୍ଡେ ପାଣ୍ଡୁଲିପି କେବେଠୁ ପଡ଼ି ରହିଥିଲା। ପାଣ୍ଡୁଲିପିଟିକୁ ଜଣେ ପ୍ରକାଶକଙ୍କ ପାଖରେ ବିକ୍ରି କରି ସେ ସଙ୍ଗେ ସଙ୍ଗେ ଟଙ୍କାର ବ୍ୟବସ୍ଥା କରୁଛନ୍ତି ବୋଲି କହି, ସେଠାରୁ ଚାଲି ଆସିଲେ। ଜନ୍‌ସନ୍ ଜଣେ ପ୍ରକାଶକଙ୍କୁ ପାଣ୍ଡୁଲିପିଟି ବିକ୍ରି କରିଦେଇ

ତାଙ୍କ ହାତରେ ପାଞ୍ଚ ପାଉଣ୍ଡ ଗୋଲ୍ଡସ୍ମିଥ୍‌ଙ୍କ ପାଖକୁ ପଠାଇଦେଲେ। ସେଇ ପ୍ରକାଶକଙ୍କ ଦପ୍ତରରେ ପ୍ରକାଶକ ଫେରିବା ପର୍ଯ୍ୟନ୍ତ ଅପେକ୍ଷା କରି ବସି ରହିଲେ। ମାତ୍ର ବହୁବେଳ ପର୍ଯ୍ୟନ୍ତ ପ୍ରକାଶକ ନଫେରିବାରୁ ଜନ୍‌ସନ୍ ବ୍ୟସ୍ତ ବିବ୍ରତ ଭାବରେ ଗୋଲ୍ଡସ୍ମିଥ୍‌ଙ୍କ ପାଖକୁ ପୁଣି ଫେରିଆସି ଯାହା ଦେଖିଲେ, ତାହା ବିସ୍ମୟରେ ତାଙ୍କୁ ହତବାକ୍ କରିଦେଲା। ବହୁବେଳୁ ପେଟରେ ମୁନ୍ଦାଏ ନିଶାପାଣି ପଡ଼ି ନଥିବାରୁ ଗୋଲ୍ଡସ୍ମିଥ୍ ଭାରି ଅବସନ୍ନ ହୋଇ ବସିଥିଲେ। ବର୍ତ୍ତମାନ ହାତରେ ପାଞ୍ଚ ପାଉଣ୍ଡ ପାଇଯିବା ମାତ୍ରେ ସେ ତତ୍‌କ୍ଷଣାତ୍ ପୁଣି କିଛି ମଦ୍ୟ ମଗାଇ ଅଦାଲତ ପିଆଦା ଓ ପ୍ରକାଶକଙ୍କ ମେଳରେ ଆରମ୍ଭ କରିଦେଇଥିଲେ- ହସ ଖୁସି ଓ ଆମୋଦର ମୈଫିଲ୍। ଗୋଲ୍‌ଡସ୍ମିଥ୍‌ଙ୍କର ପକେଟ୍ ଶୂନ୍ୟ ଥାଇପାରେ; କିନ୍ତୁ ମେଜାଜ୍‌ଟି ଥିଲା ସମ୍ରାଟର ।

ଜନ୍‌ସନ୍ ବହୁ କଷ୍ଟରେ ପ୍ରେରିତ ପାଞ୍ଚ ପାଉଣ୍ଡର ଏ ପ୍ରକାର ବିନିଯୋଗ ସ୍ୱଚକ୍ଷୁରେ ଦେଖି ବୁଝିଗଲେ., ଗ୍ଲାସ୍ ସବୁ ଖାଲି ହେଇଯିବାପରେ ପିଆଦା ଗୋଲ୍ଡସ୍ମିଥ୍‌ଙ୍କୁ ବାନ୍ଧିନେବା ଅବଧାରିତ। ଆଉରି ପାଞ୍ଚ ପାଉଣ୍ଡ ଦରକାର, ଋଣ ପରିଶୋଧ କରି ଗୋଲ୍‌ଡସ୍ମିଥ୍‌ଙ୍କୁ ମୁକୁଳାଇବା ପାଇଁ। ପୁଣି ଆଉରି ପାଞ୍ଚପାଉଣ୍ଡପାଇଁ କବିଙ୍କ ପାଖରେ ଆଉ କି ସଂପତ୍ତି ବା ଥିଲା ? ଅନେକ ଖୋଜାଖୋଜି ପରେ ଗୋଲ୍ଡସ୍ମିଥ୍‌ଙ୍କର ଆଉ ଏକ ଦୀର୍ଘ କବିତା 'ଦି ଟ୍ରାଭ୍‌ଲର୍ସ'ର ପାଣ୍ଡୁଲିପି ମିଳିଗଲା। ଜନ୍‌ସନ୍ ତାକୁ ପାଞ୍ଚ ପାଉଣ୍ଡପାଇଁ ବିକ୍ରିକରି ଏଥର ନିଜେ ଆସି ବନ୍ଧୁଙ୍କୁ ଅଦାଲତ ପିଆଦାଠାରୁ ମୁକୁଳାଇଲେ।

ଗୋଲ୍ଡସ୍ମିଥ୍‌ଙ୍କ ଜୀବନ କାହାଣୀରୁ ମନେହୁଏ, ସେ ଘୋର ମଦ୍ୟାସକ୍ତ ଥିଲେ। ଆପାତ ଦୃଷ୍ଟିରେ ଏହାକୁ ଜଣେ ଖାପଛଡ଼ା, ଭବଘୂରା କବିର ଚାରିତ୍ରିକ ବିକୃତି ବୋଲି ଶୁଚିବାଦ, ବ୍ୟାକରଣଧର୍ମୀ ସ୍କଲାର୍ମାନେ କହିପାରନ୍ତି। କିନ୍ତୁ ମୋର ମନେହୁଏ, ଗୋଲ୍ଡସ୍ମିଥ୍‌ଙ୍କ ମାତ୍‌ଲାମୀ ଚାରିତ୍ରିକ ବିକୃତି ନଥିଲା, ଏହା ଥିଲା ତାଙ୍କ ପକ୍ଷରେ ଏକ ମନସ୍ତାତ୍ତ୍ୱିକ ସଙ୍କଟରୁ ପରିତ୍ରାଣ ଓ ସେହି ସୂତ୍ରରେ ତାଙ୍କ ସାହିତ୍ୟ ସୃଷ୍ଟିପାଇଁ ପ୍ରେରଣାର ଉତ୍ସ।

ଅଷ୍ଟାଦଶ ଶତାବ୍ଦୀର ମଧ୍ୟଭାଗରେ ଇଂଲଣ୍ଡରେ ଶିଳ୍ପବିପ୍ଳବ କୃଷିଭିତ୍ତିକ ଗ୍ରାମ୍ୟ ପରିବେଶ, ସମାଜ ଓ ମୂଲ୍ୟବୋଧରେ ଆଣିଥିଲା ବିପୁଳ ପରିବର୍ତ୍ତନ। ଗ୍ରାମାଞ୍ଚଳମାନଙ୍କରୁ ହଜାର ହଜାର ନରନାରୀଙ୍କୁ ଛିନ୍ନମୂଳ କରି, ସେମାନଙ୍କୁ କଳ କାରଖାନାମାନଙ୍କର କ୍ଷୁଧିତ ଉଦର ଭିତରକୁ ଫିଙ୍ଗି ଦିଆଗଲା। ଯେଉଁ ପଲ୍ଲୀ-ପ୍ରକୃତି ଓ ସ୍ନିଗ୍ଧ ସବୁଜ ପରିବେଶ ମଧ୍ୟରେ ଗୋଲ୍ଡସ୍ମିଥ୍‌ଙ୍କର କାବ୍ୟଚେତନା ଅଙ୍କୁରିତ ହୋଇଥିଲା, ତାହା ଶିଳ୍ପବିପ୍ଳବର କୁତ୍ସିତ ଧୂମିଳତା ମଧ୍ୟରେ କୁଆଡ଼େ ହଜିଗଲା। ସେଥି ସଙ୍ଗେ ସଙ୍ଗେ ହଜିଗଲା, ପ୍ରାକ୍-ଶିଳ୍ପ-ବିପ୍ଳବ ଯୁଗର ସମାଜ, ଚଳଣି ଓ ମୂଲ୍ୟବୋଧ। ଗୋଲ୍ଡସ୍ମିଥ୍‌ଙ୍କର ପ୍ରସିଦ୍ଧ 'ଦି ଡେଜର୍ଟେଡ୍ ଭିଲେଜ୍' କବିତା ହେଉଛି ଏହାର ପ୍ରତୀକ... ପରିଚିତ ପୃଥିବୀ ଓ

ପରିବେଶର ଏହି କୁତ୍ସିତ ରୂପାନ୍ତର ଗୋଲ୍ଡସ୍ମିଥ୍‌ଙ୍କ ସ୍ପର୍ଶାତୁର ପ୍ରାଣରେ ଯେଉଁ ଆବେଗିକ ଓ ମାନସିକ ସଂକଟ ସୃଷ୍ଟି କରିଥିଲା, ସେଥିରେ ସେ କ୍ଳାନ୍ତ ଅବସନ୍ନ ହୋଇ ପଡ଼ିଥିଲେ। ମଦ ପିଇବା ତାଙ୍କ ପକ୍ଷରେ ମାତଲାମୀ ନଥିଲା। ଏହା ତାଙ୍କ ପାଇଁ ଥିଲା, ମାନସିକ ଓ ଆବେଗିକ ସଙ୍କଟରୁ ନିଷ୍କୃତିର ପଥ। ଗୋଲ୍ଡସ୍ମିଥ୍‌ଙ୍କର ମାତଲାମୀ ଥିଲା, ଶିଳ୍ପବିପ୍ଳବ ଓ ତାରି ଭିତରେ ଫୁଟି ଉଠିଥିବା ମନୁଷ୍ୟର ନିଷ୍ଠୁରତା, ଶୋଷଣ ଓ ଲୁଣ୍ଠନ ବିରୁଦ୍ଧରେ ଏକ ମୌନ ପ୍ରତିବାଦ !

୦୬/୧୨/୮୭

# ରଙ୍ଗିନ୍ ଓଢ଼ଣା

ଭକ୍ତମାନେ ଭଗବାନ ଶ୍ରୀକୃଷ୍ଣଙ୍କୁ "ଦାରିଦ୍ର୍ୟ ଭଞ୍ଜନ ବାନା" କହି ଖୁବ୍ ସ୍ତୁତି କରିଥାଆନ୍ତି। ମାତ୍ର ସମଗ୍ର ପୁରାଣ ସାହିତ୍ୟ ଆଲୋଚନା କଲେ ଦେଖାଯିବ, ବୋଧହୁଏ ଏକା ସୁଦାମା ଛଡ଼ା ଶ୍ରୀକୃଷ୍ଣ ଆଉ କାହାରି ଦାରିଦ୍ର୍ୟ ନିବାରଣ କରିନାହାନ୍ତି। ସୁଦାମା ପୁଣି ଶ୍ରୀକୃଷ୍ଣଙ୍କ ସଖା ଓ ବନ୍ଧୁ। ଯେଉଁଠି ସ୍ୱୟଂ ଭଗବାନ ମନୁଷ୍ୟର ଦାରିଦ୍ର୍ୟ ନିବାରଣ କରିପାରି ନାହାନ୍ତି, ସେଠାରେ ଅମଲାତନ୍ତ୍ରି ଶାସନକଳ କିପରି ଫାଇଲ୍‌ପତ୍ରରେ ଅଥବା ରାଜନୈତିକ ନେତାମାନେ ଋଣମେଳାରେ ଋଣବାଣ୍ଟି ଦାରିଦ୍ର୍ୟର ଦୂରୀକରଣ କରିପାରିବେ, ତାହା ମୋ ମନରେ ବହୁଦିନୁ ସଂଶୟ ସୃଷ୍ଟି କରିଆସିଛି। ଆଇ.ଆର.ଡି.ପି. ଓ ଏନ୍.ଆର.ଇ.ପି. ପ୍ରଭୃତି ବ୍ୟବସ୍ଥାସବୁ ଦାରିଦ୍ର୍ୟ ଉପରେ ରଙ୍ଗିନ ଘଟାଟୋପ ମାତ୍ର। ଏହା ଆଖି ଆଗରୁ ଦାରିଦ୍ର୍ୟକୁ ସାମୟିକ ଭାବରେ ଲୁଚାଇ ଦେଇପାରିବ ସତ୍ୟ- କିନ୍ତୁ କଦାପି ହଟାଇପାରିବ ନାହିଁ। ଦାରିଦ୍ର୍ୟର ବିଲୋପପାଇଁ ପ୍ରୟୋଜନ ମନୁଷ୍ୟର ଆତ୍ମବଳ, ମନୋବଳ ଓ ତାହାର ବାହୁବଳ। ସହଜ, ସୁଲଭ ବ୍ୟାଙ୍କଋଣ ବା ମୁଠିଦାନ ମନୁଷ୍ୟର ମନୋବଳକୁ ଦୁର୍ବଳ କରି ତାହାକୁ ପରାଙ୍ଗପୁଷ୍ଟ କରିଦେବ ସିନା, ତାର ଦାରିଦ୍ର୍ୟ କଦାପି ଘୁଞ୍ଚିବ ନାହିଁ... ମୋର ଏହି ଉପଲବ୍ଧି ଯେଉଁ ଘଟଣାରୁ ଜନ୍ମିଲା, ତାହା ହେଉଛି ଏହିପରି-

ସେତେବେଳେ ନୂଆଦିଲ୍ଲୀରେ କମନ୍ ୱେଲ୍‌ଥ ଦେଶମାନଙ୍କର ଶାସନମୁଖ୍ୟମାନଙ୍କର ଏକ ଅଧିବେଶନପାଇଁ ବିରାଟ ପ୍ରସ୍ତୁତି ଚାଲିଥାଏ। ବ୍ରିଟିଶ୍ ରାଣୀ ଏଲିଜାବେଥ୍ କମନ୍‌ୱେଲ୍‌ଥର ପ୍ରଧାନରୂପେ ଏହି ଅଧିବେଶନରେ ଯୋଗ ଦେଉଥିବାରୁ ଅତୀତ ସଂପର୍କ ଦୃଷ୍ଟିରୁ ନୂଆଦିଲ୍ଲୀରେ ଆୟୋଜନର ମାତ୍ରାଟା କିଛି ପରିମାଣରେ ଅତିରଞ୍ଜିତ ହୋଇଉଠିଥିଲା। ଯେଉଁବାଟେ ମର୍ତ୍ତ୍ୟଲୋକରେ ଏହି ଆଗନ୍ତୁକ ଅବତାର-ପୁରୁଷମାନେ ଯାତାୟାତ କରିବେ, ସେହି ରାସ୍ତାସବୁକୁ ସୁଶୋଭିତ କରିବାପାଇଁ ଦିନରାତି କାର୍ଯ୍ୟ ଲାଗିଥାଏ। ରାସ୍ତାସବୁ ଦେଖା ଯାଉଥାଆନ୍ତି ନୂଆଦିଲ୍ଲୀର ପ୍ରସାଧିତ ନାଗରିକମାନଙ୍କ ପରି। ଗଣତାନ୍ତ୍ରିକ ସାମ୍ୟବାଦୀ

ରାଷ୍ଟ୍ର ଭାରତର ରାଜଧାନୀରେ ଦାରିଦ୍ର୍ୟର ଚେହେରା କାହା ଆଖିରେ ଯେପରି କେଉଁଠି ନପଡ଼ିବ, ସେଥିପାଇଁ କର୍ତ୍ତାପୁରୁଷମାନେ ଭାରି ନଜର ରଖିଥାଆନ୍ତି।

ଦିନେ ଫିରୋଜସାହ ରୋଡ୍‌ରୁ ବାହାରି ଜନପଥ ବାଟେ ପାର୍ଲିଆମେଣ୍ଟ ହାଉସ୍‌ଷ୍ଟ୍ରିଟ୍‌କୁ ମୁଁ ଚାଲି ଚାଲି ଯାଉଛି ଦେଖିଲି, ଜନପଥ ଗୋଲେଇ ଉପରେ କାମ୍ପାକୋଲା କମ୍ପାନୀ ମାଲିକଙ୍କର ଯେଉଁ ପ୍ରକାଣ୍ଡ ହୋଟେଲର ଇମାରତ୍ ଅର୍ଦ୍ଧନିର୍ମିତ ଅବସ୍ଥାରେ ଏକ ପ୍ରାଗୈତିହାସିକ ଦାନବର କଙ୍କାଳ ପରି ଠିଆ ହୋଇଥିଲା, ସେଟା ଆଉ ଆଖିରେ ପଡୁନାହିଁ। ତା' ଚାରିପଟେ ଉଚ୍ଚା ଉଚ୍ଚା ରଙ୍ଗିନ ସାମିଆନା ସବୁ ପାଚେରୀ ପରି ଠିଆ କରାଯାଇଛି। ରାସ୍ତା କଡ଼ର ଫୁଟପାଥରେ ଜାମୁଗଛମାନଙ୍କ ଛାଇରେ ଯେଉଁ ବାସହୀନ ଦରିଦ୍ରମାନେ ସେମାନଙ୍କ ଘରସଂସାର ଜମାଇ ଥାଆନ୍ତି, ସେମାନେ ମଧ୍ୟ କେହି ଆଖିରେ ପଡୁ ନାହାନ୍ତି। ଏଇ ଫୁଟ୍‌ପାଥ୍ ଉପରେ ଯେଉଁ ବୁଢ଼ା ଜଣକ ଗୋଟାଏ ଚାରପାଇ ଉପରେ ପଡ଼ି ଦିନରାତି ହୁକା ଟାଣୁଥାଏ, ସିଏ ସୁଦ୍ଧା କୁଆଡ଼େ ନିଖୋଜ। ମୋତେ ଏସବୁ ହଠାତ୍ ଅବାସ୍ତବ ଲାଗିଲା। ତା'ପରେ ପ୍ରତିଦିନ ମୁଁ କୌତୂହଳରେ ଏହାକୁ ଲକ୍ଷ୍ୟ କରିବାକୁ ଲାଗିଲି !

ଦିନେ ସନ୍ଧ୍ୟାବେଳେ ଷ୍ଟ୍ରିଟ୍ ଲାଇଟ୍ ସବୁ ଜଳି ଉଠିଲା ପରେ ମୁଁ ପାର୍ଲିଆମେଣ୍ଟ ହାଉସ୍‌ରୁ ଚାଲିଚାଲି ଫେରୁଛି, ଦେଖିଲି, ସେଇ ସାମିଆନା ଘେର ଭିତରୁ ଫୁଟ୍‌ପାଥ୍‌ର ବାସହୀନମାନେ ଜଣଜଣ ହୋଇ ପୁଣି ସେଇ ଫୁଟ୍‌ପାଥ୍ ଉପରକୁ ଫେରି ଆସୁଛନ୍ତି ! କେଉଁଠି କେଉଁଠି ଉଠାଚୂଲିମାନଙ୍କରେ ନିଆଁ ସୁଦ୍ଧା ଜଳିଲାଣି! ପୁଣି ଫୁଟ୍‌ପାଥ୍ ଉପରେ ବାସହୀନମାନଙ୍କର ସେଇ ନିତିଦିନିଆ ସଂସାର... ଚାରପାଇ ଉପରେ ସେ ବୁଢ଼ାଟି ମଧ୍ୟ ତା'ର ହୁକାଧରି ବସିଗଲାଣି। ତା'ର ଦୁଇଟା ନାତି ଖଣ୍ଡେ ଖଣ୍ଡେ ନେକେଡ଼ା ପିନ୍ଧି ଚାରପାଇ ପାଖରେ ଦଉଡ଼ା ଦଉଡ଼ି ଆରମ୍ଭ କରିଦେଲେଣି। କିନ୍ତୁ ସେ ରଙ୍ଗିନ ସାମିଆନା ସବୁ ସେହିପରି ଟଣା ହୋଇ ରହିଛନ୍ତି।

ବୁଢ଼ା ପାଖକୁ ଯାଇ ପଚାରିଲି, "ରାମ୍ ରାମ୍ ଲାଲାଜୀ, ତମମାନଙ୍କର କାହାରି ଏତେଦିନ ଦେଖା ନଥିଲା ତ ! କଥା କ'ଣ ? ଦେଶକୁ ଯାଇଥିଲ କି ?" ବୁଢ଼ା ଅବଧି ମିଶା ହିନ୍ଦୀରେ ଯାହା ଉତ୍ତର ଦେଲା, ତାହାର ଅର୍ଥ ହେଉଛି, ପୋଲିସ୍ ସେମାନଙ୍କୁ ଫୁଟ୍‌ପାଥ୍‌ରୁ ତଡ଼ି ସେହି ସାମିଆନ୍ ଘେର ଭିତରକୁ ପଠାଇ ଦେଇଛି ! ଦିନବେଳା ଆମେ ସେଇଠି ରହୁଛୁ। ବାହାରିକୁ ବାହାରିବା ମନା। ...ଇଏ ତ ଆଶ୍ଚର୍ଯ୍ୟ କଥା ! ବୁଢ଼ାକୁ ତାହାର କାରଣ ପଚାରିବାରୁ ସେ କହିଲା, "ଭଗ୍‌ବାନ୍ କୋ ମାଲୁମ୍ !" କିନ୍ତୁ ଦିନସାରା ସାମିଆନାର ସେଇ ରଙ୍ଗିନ ଓଢ଼ଣି ଭିତରେ ଲୁଚି ରହି ରହି ସେ ଯେ କ୍ଳାନ୍ତ ଓ ବିରକ୍ତ ହୋଇ ଉଠିଥିଲା, ଏହା ତାହାର କଣ୍ଠସ୍ୱରରେ ଥିଲା ସୁସ୍ପଷ୍ଟ। ପରେ ବୁଝିଲି, ପାଲାମ୍

ଏଆରପୋର୍ଟ ଠାରୁ ଆରମ୍ଭ କରି ନୂଆଦିଲ୍ଲୀର ପ୍ରଧାନ ରାସ୍ତାମାନଙ୍କର କଡ଼େ କଡ଼େ କୌଣସି ଫୁଟ୍‌ପାଥ୍‌ରେ ଆଉ ବାସହୀନ, ଆଶ୍ରୟହୀନମାନେ ନାହାନ୍ତି। ସେମାନଙ୍କୁ ହୁଏତ ଦିଲ୍ଲୀ ବାହାରର ସହରତଳି ଅଞ୍ଚଳମାନଙ୍କୁ ପଠାଇ ଦିଆଯାଇଛି; ନହେଲେ ଏହିପରି ରଙ୍ଗିନ ସାମିଆନା ଘେରମାନଙ୍କରେ ଆବଦ୍ଧ ରଖାଯାଇଛି- ଯେପରି ବିଦେଶାଗତ ରାଷ୍ଟ୍ରମୁଖ୍ୟମାନଙ୍କର ନଜର ସେମାନଙ୍କର ଦାରିଦ୍ର୍ୟ ଉପରେ ନପଡ଼ିବ।

ଦାରିଦ୍ର୍ୟ ଉପରେ ପ୍ରସାଧନର ମେକ୍‌ଅପ୍ ବୋଲିଲେ ତ ଦାରିଦ୍ର୍ୟ ଆଉ ଘୁଞ୍ଚେନାହିଁ। ତାହା ସାମୟିକ ଭାବରେ ଆଖି ଆଗରୁ ଅପସରି ଯାଇ ପୁଣି ଉକୁଟି ଫୁଟି ଉଠୁଛି !

ଗାନ୍ଧିଜୀ କହୁଥିଲେ, ଦାରିଦ୍ର୍ୟ ପାଇଁ ଆମେ ଲଜ୍ଜିତ ହେବା ଉଚିତ ନୁହେଁ। ଆମେ ଦରିଦ୍ର ନୋହୁଁ, କିନ୍ତୁ ଆମକୁ ଏକ ବିକୃତ ସାମାଜିକ ଓ ଅର୍ଥନୈତିକ ବ୍ୟବସ୍ଥା ଦରିଦ୍ର କରି ରଖିଛି। ସେହି ବିକୃତ ବ୍ୟବସ୍ଥାର ମୌଳିକ ପରିବର୍ତ୍ତନ ମଧ୍ୟରେ କେବଳ ଦାରିଦ୍ର୍ୟ ଘୁଞ୍ଚିପାରିବ ତା'ଉପରେ ରଙ୍ଗିନ ସାମିଆନାର ପର୍ଦ୍ଦା ଝୁଲାଇ ନୁହେଁ।

୧୩/୧୨/୮୭

# ଅସ୍ତ ତାରକା ପାଇଁ ଏଲିଜୀ

ଡିସେମ୍ବର ମାସର ସଂକ୍ଷିପ୍ତ ଅପରାହ୍ଣଟି ଆସନ୍ନ ସନ୍ଧ୍ୟାର ମାଛିଅନ୍ଧାର ଭିତରେ କେତେବେଳେ ହଜିଗଲା, ମୁଁ ତାହାକୁ ଠିକ୍ ଧରିପାରି ନଥିଲି। ଅଥଚ ସେହି ଲଜ୍ଜାଶୀଳା ବଧୂଟିର ପାଦର ଚାଲି ମାପିବାପାଇଁ ମୁଁ ବାରଣ୍ଡାରେ ଅନେକବେଳୁ ବସି ରହିଥିଲି ଓ ସାମ୍ନାପଟ ସିମେଣ୍ଟବନ୍ଧା ଅଗଣାରେ ଅନାଗତ କାଳର ସୁନୀଲ ଗାଭାସ୍କର, କପିଳଦେବ, ଶ୍ରୀକାନ୍ତ, ମନୀନ୍ଦ୍ର, ଚେତନ ଶର୍ମା, ରବି ଶାସ୍ତ୍ରୀ, ଏପରିକି ଇମ୍ରାନ୍ ଖାଁ ଓ ଆଲାନ୍ ବର୍ଡରମାନଙ୍କର ବ୍ୟାଟିଂ ଓ ବୋଲିଂ ଦେଖୁଥିଲି। ଏମାନଙ୍କର ବୟସ ୭ରୁ ୧୨/୧୪ ମଧ୍ୟରେ। ବେଳେବେଳେ ସାହିର ୨୦/୨୨ ବର୍ଷର ଭେଣ୍ଡିଆମାନେ ସୁଦ୍ଧା ସେହି ସିମେଣ୍ଟ 'ପିଚ୍' ଉପରେ ଅବତୀର୍ଣ୍ଣ ହୋଇଯାଉଥିଲେ।

ଉଇକେଟ୍ ନାହିଁ । ପଶ୍ଚିମପଟ ପାଚେରିର ଗୋଟିଏ ସ୍ଥାନରେ ଅସ୍ପଷ୍ଟ ଚିହ୍ନଟିଏ ଆଙ୍କିଦିଆଯାଇଛି। ବଲ୍ ସେଇଠି ବାଜିଲେ ଖେଳାଳି ଆଉଟ୍। କାହାର ବଲ୍, ସେ ସ୍ୱପକ୍ଷ ହେଉ କି ବିପକ୍ଷ ହେଉ, ସେଠାରେ ବାଜିବା ମାନେ ବୁବୁନ୍ (ବୟସ ୭) 'ଆଉଟ୍' ବୋଲି ଚିତ୍କାର କଲାବେଳେ ନିଶୁତି ସାଇରାସ୍ତାଟା ହଠାତ୍ ଯେପରି ଚମକି ଉଠୁଛି ! ବୁବୁନ୍‌ର ଏକମାତ୍ର ସଂକଳ୍ପ, ସିଏ ହେବ 'ସୁନୀଲ ଗାଭାସ୍କର' ! ଅବଶ୍ୟ ବେଳେବେଳେ ଜଣେ 'ରାଇଟର୍' ହେବ ବୋଲି ମୋ' ପାଖରେ ସିଏ ଘୋଷଣା କରିଛି। କିନ୍ତୁ ସବୁବେଳେ ମୁଁ ତାକୁ ବୁଝାଇ ଦେଇଛି, "ବାବୁରେ ! 'ରାଇଟର' ହେବାର ଦୁର୍ବୁଦ୍ଧି କେବେ କରିବୁ ନାହିଁ। ସେଥିରେ ଅନେକ ଯନ୍ତ୍ରଣା। ଆମର ସେ 'ସୁନୀଲ ଗାଭାସ୍କର' ହେବା ଭଲ... !"

ବୁବୁନ୍ ପ୍ରଥମେ ସାରା ଘରଟାକୁ ଗୋଟାଏ ଗ୍ରାଉଣ୍ଡ ବୋଲି ଭାବୁଥିଲା। ମୁଁ ଯେଉଁ ଘରଟିରେ ଲେଖାପଢ଼ା କରେ, ଭଦ୍ରଭାଷାରେ କହିଲେ ମୋ'ର ଷ୍ଟଡିରୁମ୍- ସେ ରୁମ୍‌ଟି ପ୍ରତି ବୁବୁନ୍‌ର କାହିଁକି ଏତେ ଆଗ୍ରହ ବଳିଲା ଜାଣେନାହିଁ, କିନ୍ତୁ ତାର ବଲ୍ ସବୁ ପଡ଼ିଲା କେତେବେଳେ ଟେବୁଲ ଉପରେ ତ କେତେବେଳେ ମୋର ଡିଭାନ୍ ଉପରେ। ବହି

ଆଲମାରିଗୁଡ଼ିକର କାଚକବାଟ ସବୁ କ୍ରମେ ଘୋର ବିପନ୍ନ ହୋଇଉଠିଲେ। ଦିନେ ମୁଁ ଚରମପତ୍ର ଦେଲି, "ଆଉଥରେ ନିଷିଦ୍ଧ ଅଞ୍ଚଳରେ ତୁମେ ବୋଲିଂ, ବ୍ୟାଟିଂ କରିଚ ତ ତୁମ ବ୍ୟାଟ୍ ଆଉ ବଲ୍‌କୁ ମୁଁ ସିଧା ପୋଲିସ୍ ପାଖରେ ଧରାଇଦେବି। ତୁମେ ଏବେଠୁ ଜାଣିରଖ, ଅନ୍ୟକୁ ଆଘାତ କରିବା, ଅନ୍ୟର ନିଷ୍କଳତା ଭାଙ୍ଗିବା ଏକ 'କଗ୍‌ନିଜିବ୍‌ଲ୍ ଅଫେନ୍‌ସ୍' !" ବୁବୁନ୍ ସେଇଦିନୁ, ସାମ୍ନାପଟର ସିମେଣ୍ଟ ଅଗଣାକୁ ତା'ର ପିଚ୍ କରିଛି ଓ ସେଠାରେ ଗୋଟିଏ 'ଟିମ୍' ମଧ୍ୟ ତେଳାଇଛି ! ସେ ତା'ର କ୍ୟାପ୍‌ଟେନ୍।

ଷ୍ଟ୍ରିଟ୍‌ଲାଇଟ୍ ଜଳିଲାଣି ! ଖେଳ ଭାଙ୍ଗିଲା ! ବୁବୁନ୍ ତାର ଅଣ୍ଟା ତଳକୁ ଖସିପଡୁଥିବା ଅମାନିଆ ଫୁଲପ୍ୟାଣ୍ଟଟାକୁ ଗୋଟାଏ ହାତରେ ଉପରକୁ ଟାଣି ଅନ୍ୟ ହାତର କାଖତଳେ ତା ଛାତିଏ ଉଚ୍ଚର ବ୍ୟାଟ୍‌ଟାକୁ ବେଶ୍ ଗୋଟିଏ ଷ୍ଟାଇଲ୍‌ରେ ଚାପିଧରି ମୋ' ପାଖକୁ ଆସି ହଠାତ୍ ଘୋଷଣା କଲା, "ମୁଁ ଆଉ ସୁନୀଲ ଗାଭାସ୍କର ହେବିନାହିଁ।"

କିନ୍ତୁ କଥା କ'ଣ ? ସୁନୀଲ ଗାଭାସ୍କର ପ୍ରତି ହଠାତ୍ ବିତୃଷ୍ଣା କାହିଁକି ? ଟେଲିଭିଜନରେ କ୍ରିକେଟ୍‌ମ୍ୟାଚ୍ ସବୁ ଦେଖିଦେଖି ସୁନୀଲ ଗାଭାସ୍କର ହେବାପାଇଁ ସେ ତ ଏକଲବ୍ୟ ପରି ବ୍ୟାଟିଂ, ବୋଲିଂ କରୁଥିଲା ! ଏବେ, କ'ଣ ହୋଇଗଲା ? ମୁଁ ପଚାରିଲି "ତା'ହେଲେ ହେବୁ କ'ଣ ?" ସିଏ କ'ଣ ଗୋଟିଏ ନାଁ ଅସ୍ପଷ୍ଟ ଭାବରେ କହିଦେଇ ଭିତରକୁ ଦୌଡ଼ି ପଳାଇଲା। ଆମ ପାଚକ ଯୁବକଟି ନିପଟ ମଫସଲ୍ ଗାଁରୁ ଆସିଥିଲେ ସୁଦ୍ଧା, ଟେଲିଭିଜନ ପ୍ରସାର ଫଳରେ ବର୍ତ୍ତମାନ କ୍ରିକେଟ୍‌ର ଜଣେ ବଡ଼ ସମଝଦାର ! ତାଙ୍କ ଗାଁରେ କୁଆଡ଼େ ସେମାନେ ତାବଲ ପଟାକୁ ବ୍ୟାଟ୍ କରି ଗୋଟିଏ ରବର ବଲ୍‌କୁ ପିଟିପିଟି 'କ୍ରିକେଟ୍' ଖେଳନ୍ତି ! ତାକୁ ଦିନେ ପଚାରିଲି, "ଏ ବିଦ୍ୟା ସେ ଶିଖିଲା କିପରି ?" ସେ କହିଥିଲା, 'ଗାଁରେ ଡାଗରପୁଆ ଖେଳଠାରୁ ଏଇଟା ଆଉ ବେଶି କ'ଣ ?" ଯାହାହେଉ କ୍ରିକେଟ ବିଷୟରେ ସେ ମୋ'ଠାରୁ ଅନେକ ବେଶି ଓ୍ୱାକ୍‌ବହାଲ୍ ହୋଇଥିବାରୁ, ମୁଁ ତାକୁ ପଚାରିଲି, "ବୁବୁନ୍ କ'ଣ ହେବ ବୋଲି କହିଛି କିରେ ?" ସେ ଉତ୍ତର ଦେଲା "ଦିଲ୍ଲୀପ ବଲବନ୍ତ ଭେଙ୍ଗ୍‌ସରକାର !" ଏହାଙ୍କ ନାମ ସେପର୍ଯ୍ୟନ୍ତ ମୁଁ ଶୁଣିନଥିଲି। ଅସହାୟ କଣ୍ଠରେ ପଚାରିଲି, "ଇଏ ପୁଣି କିଏ ?" ସେ ମୋର ଅଜ୍ଞତା ପ୍ରତି କୃପା ପ୍ରଦର୍ଶନ କରିବାପରି କଣ୍ଠରେ କହିଲା, "ଇଏ ପରା ଇଣ୍ଡିଆ କ୍ୟାପ୍‌ଟେନ୍। ଏଥର ଟେଷ୍ଟ୍‌ରେ ସେ କ୍ୟାପ୍‌ଟେନ୍ !"

ଏବେ ବୁବୁନ୍‌ର କଥା ବୁଝିଗଲି। ସୁନୀଲ ଗାଭାସ୍କର ବର୍ତ୍ତମାନ ଅସ୍ତ ତାରକା ! ନୂତନ ତାରକାର ଉଦୟ ହୋଇଛି। ଦିଲ୍ଲୀପ ବଲବନ୍ତ ଭେଙ୍ଗସରକାର। ସେଥିପାଇଁ, ପ୍ରତିମାସରେ ଭାଙ୍ଗି ଫିଙ୍ଗି ଦେଉଥିବା ବ୍ୟାଟ୍ ପରି, ବୁବୁନ୍ ବର୍ତ୍ତମାନ ନୂତନ ତାରକା ଭେଙ୍ଗ ସରକାର ପଛରେ ଧାଇଁଛି।

ତାରକାମାନଙ୍କ କଥା ଚିନ୍ତାକରି ମୁହୂର୍ତ୍ତକ ମଧ୍ୟରେ ମୋର ମନ ବିଷଣ୍ଣ ହୋଇଗଲା। ଆଃ... ଏହି ତାରକାମାନେ ସେମାନେ ସେଲୁଲଏଡ୍ ଫିଲ୍ମ ଦୁନିଆର ହୁଅନ୍ତୁ, କ୍ରିକେଟ ପିଚ୍‌ର ହୁଅନ୍ତୁ ବା ରାଜନୈତିକ ମଞ୍ଚର ହୁଅନ୍ତୁ- ଜଳୁଥିବା ପର୍ଯ୍ୟନ୍ତ ଦୂର ଆକାଶର ଷ୍ଟାର । ମାତ୍ର ଫିକା ପଡ଼ିଯିବା ମାତ୍ରେ ଅତୀତ କାଳର ଗୋଟାଏ କ୍ଷୀଣ ପ୍ରତିଧ୍ୱନି, ପାଦପ୍ରଦୀପ ଆଗରୁ ଲୁଚିଯାଇଥିବା ଆଉଗୋଟେ ନାଁ !

ସନ୍ଧ୍ୟାର ଅନ୍ଧକାର ନାଲିଚା-ଗୋଧୂଳିକୁ ଗ୍ରାସ କରିଯିବା ପରି, କାଳ ଦିନେ ସବୁ ଷ୍ଟାର୍, ସବୁ ଔଜ୍ଜ୍ୱଲ୍ୟକୁ ଗ୍ରାସ କରିଯାଏ। ତା'ବୋଲି ଅନ୍ଧକାର ମଧ୍ୟ ସତ୍ୟ ନୁହେଁ। ଏହା ଏକ ଅର୍ଦ୍ଧସତ୍ୟ ! ସତ୍ୟ ହେଉଛି- ମୁହୂର୍ତ୍ତକର ଆନନ୍ଦ, ଉତ୍ତେଜନା, ସଂଗ୍ରାମ ଓ ସଫଳତା । ...ଜ୍ଞାନୀ ପଣ୍ଡିତମାନେ ଯାହାକୁ କହନ୍ତି 'ମାୟା' ! ମୋ' ଦୃଷ୍ଟିରେ ତାହା ମଧ୍ୟ ସତ୍ୟର ଅନ୍ୟଏକ ଦିଗ ! ବିଗତ ଦିନର ତାରକାମାନେ ଆଜି ମିଥ୍ୟା ହୋଇଥାଇପାରନ୍ତି; ମାତ୍ର ଗତକାଲି ସେମାନେ ଆକାଶରେ ଆଙ୍କିଯାଇଥିଲେ ଆଲୋକର ଯେଉଁ ସ୍ୱାକ୍ଷର, ତାହା ତ ଆଉ ମିଥ୍ୟା ନୁହେଁ।

୨୦/୧୨/୮୭

# ବେଇଜିଙ୍ଗ୍ ଆକାଶରେ ଚନ୍ଦ୍ରୋଦୟ

ଏବେ ସିନେ-ଖବରକାଗଜରେ ପଢ଼ିଲି, ଚୀନ୍‌ର ରାଜଧାନୀ ବେଇଜିଙ୍ଗ୍‌ରେ ନାରୀମାନଙ୍କର କେଶଚର୍ଯ୍ୟା ଓ ପ୍ରସାଧନ, କଳାକୌଶଳ 'ବିଉଟିସିଆନ୍'ମାନଙ୍କୁ ତାଲିମ୍ ଦେବାପାଇଁ ବେଇଜିଙ୍ଗ 'ମୋନିତା' ନାମରେ ଗୋଟିଏ ସ୍କୁଲ ଖୋଲାଯାଇଅଛି। ଚୀନ୍ ଭୂଖଣ୍ଡରେ ବ୍ରିଟିଶ୍ ଉପନିବେଶ ହଂକଂର ହଂକଂ 'ମୋନିତା କଲେଜ' ସହଯୋଗରେ ବେଇଜିଙ୍ଗ୍‌ରେ ଏହି ସ୍କୁଲ୍‌ଟି ସ୍ଥାପିତ ହୋଇଅଛି। କେବଳ ନିର୍ମାଣ ମେସିନ୍ ଓ ଯନ୍ତ୍ରପାତିପାଇଁ ପାଶ୍ଚାତ୍ୟ ଦେଶମାନଙ୍କର 'କୋଲାବୋରେସନ୍' ଲୋଡ଼ାଯାଉଛି ତା ନୁହେଁ, ଜୀବନ୍ତ ନରନାରୀମାନଙ୍କର ଫ୍ୟାଶନ୍ କ୍ଷେତ୍ରରେ ମଧ୍ୟ ପାଶ୍ଚାତ୍ୟ ଦେଶମାନଙ୍କରୁ ଟେକ୍‌ନିକାଲ୍ ନୋ-ହାଓ ଆବଶ୍ୟକ ପଡ଼ିଲାଣି ବୋଲି ଏଥିରୁ ଅନୁଭୂତ ହେଉଛି। ତେବେ ଚୀନ୍‌ର ପ୍ରତିବେଶୀ ଜାପାନର ନାରୀମାନଙ୍କର ହେୟାର୍‌ଷ୍ଟାଇଲ୍ ଓ ପ୍ରସାଧନ ପରିପାଟୀ ସାରା ପୃଥିବୀରେ ଅତ୍ୟନ୍ତ ଲୋଭନୀୟ ବୋଲି ମୋର ଧାରଣା। ଜାପାନୀ ମହିଳାମାନେ ଯଦି ସେମାନଙ୍କ ପାରଂପରିକ ପରିଚ୍ଛଦ ଛାଡ଼ି ଭାରତୀୟ ମହିଳାମାନଙ୍କର ଶାଢ଼ି ସବୁ ପିନ୍ଧନ୍ତେ, ତା'ହେଲେ ପୃଥିବୀର ସବୁ ବିଉଟି କନ୍‌ଟେଷ୍ଟରେ ସେମାନେ ଯଶସ୍ୱିନୀ ହୁଅନ୍ତେ, ଏଥିରେ ମୋର ତିଳାର୍ଦ୍ଧ ପ୍ରମାଣେ ସନ୍ଦେହ ନାହିଁ।

ଯାହାହେଉ ବେଇଜିଙ୍ଗ୍‌ରେ ନାରୀମାନଙ୍କପାଇଁ 'ମୋନିତା ଫ୍ୟାଶନ୍ ସ୍କୁଲ୍' ଖୋଲାଯାଇଥିବାର ସମ୍ବାଦ ପଢ଼ି ମୋ' ସ୍ମୃତି ପଟରେ ଭାସି ଉଠିଲା, ୩୨ବର୍ଷ ତଳେ ମୁଁ ଭାରତ ପାର୍ଲାମେଣ୍ଟର ପ୍ରଥମ ଓ ଶେଷ ପ୍ରତିନିଧି ଦଳର ଜଣେ ସଦସ୍ୟରୂପେ ଚୀନ୍‌କୁ ଯାଇଥିବାବେଳର ଗୋଟିଏ ଘଟଣା। ଦୀର୍ଘ ପାଞ୍ଚସପ୍ତାହକାଳ ଅବସ୍ଥାନ କରି ମୁଁ ସେତେବେଳେ ସମଗ୍ର ଚୀନ୍ ଭୂଖଣ୍ଡ ଭ୍ରମଣ କରିବାର ସୁଯୋଗ ପାଇଥିଲି। ମାଓ-ସେ-ତୁଙ୍ଗ୍‌ଙ୍କ ନେତୃତ୍ୱରେ ନୂତନ ଚୀନ୍ ଗଠନପାଇଁ ଯୁବକଯୁବତୀମାନଙ୍କର ସଂକଳ୍ପ ଓ ଉଦ୍ୟମ ଦେଖି ସେତେବେଳେ ମୁଁ ଅତ୍ୟନ୍ତ ଚମତ୍କୃତ ହୋଇଥିଲି। ଖଣ୍ଡେ ଖଣ୍ଡେ ନୀରସା ଷ୍ଟାଏଲ୍‌କୁ କନାରେ ତିଆରି ଢିଲା ପ୍ୟାଣ୍ଟଲୁନ୍ ଓ ବେକବୁଜା କୋଟ୍ ସେତେବେଳେ ଥିଲା ଉଭୟ

ନରନାରୀଙ୍କର ଭୂଷଣ। ନାରୀଙ୍କୁ ପୁରୁଷଠାରୁ ହଠାତ୍ ବାରିବାର ଉପାୟ ନଥିଲା। ଚୀନା ଯୁବକମାନେ ଅଜାତଶ୍ମଶ୍ରୁ ପୁଣି ମହିଳାମାନଙ୍କର ହେୟାର-ଷ୍ଟାଇଲ୍ ପୁରୁଷମାନଙ୍କ ପରି ବବ୍‌ଡ୍। ନାରୀମାନେ ପୁରୁଷମାନଙ୍କ ପରି ନିରାଭରଣା। ସେମାନଙ୍କର ଚେହେରାରେ ପ୍ରସାଧନ ପରିପାଟୀର ଲେଶମାତ୍ର ନଥିଲା। ସେହି ପୋଷାକ ପରିପାଟୀରେ, ନରନାରୀ ନିର୍ବିଶେଷରେ ସମସ୍ତେ ମେଳାମେଳା ପିମ୍ପୁଡ଼ି ପରି ଚୀନ୍‌ର ନବନିର୍ମାଣରେ ନିଜକୁ ସେପରି ସମର୍ପିତ କରିଦେଇଥିଲେ। ଏ ଦୃଶ୍ୟ ତ ମୋତେ ଅନେକ ପ୍ରେରଣା ଦେଇଥିଲା, ତଥାପି ମୋର ସୌନ୍ଦର୍ଯ୍ୟଲାଳସୀ ଆଖିକୁ ନାରୀମାନଙ୍କର ଏହି ବ୍ରହ୍ମଚାରିଣୀ ବେଶ ଭାରି ଖଟକା ଲାଗୁଥିଲା।

ନାରୀ ହେଉଛି ପ୍ରକୃତି। ସେ ପୁରୁଷର ସହକର୍ମିଣୀ ନିଶ୍ଚୟ। ଦେଶ ଓ ଜାତିର ନବନିର୍ମାଣରେ ତାହାର ସମାନ ଭୂମିକା ରହିଛି ନିଶ୍ଚୟ। କିନ୍ତୁ ସେ ଟିକିଏ ହାସ୍ୟମୟୀ, ଲାସ୍ୟମୟୀ ହେବାରେ କ୍ଷତି କ'ଣ ? ଯାହହେଉ ଚୀନ୍ ଭ୍ରମଣ ଶେଷରେ ମୋତେ ରହିବାକୁ ପଡ଼ିଥିଲା କ୍ୟାନ୍‌ଟନ୍ ସହରରେ ସୁକିଂୟାଙ୍ଗ୍ ନଦୀ (ଔପନ୍ୟାସିକ ନାମ 'ପର୍ଲ') କୂଳରେ ଗୋଟିଏ ଦଶତାଲା ହୋଟେଲର ଷଷ୍ଠ ବା ସପ୍ତମ ମହଲାରେ। ହୋଟେଲର ଖୋଲା ଝରକାବାଟେ ମୁକ୍ତ ଆକାଶ ଓ ପର୍ଲ ନଦୀର ବିସର୍ପିଳ ଜଳବେଣୀ ଭାରି ପ୍ରୀତିପ୍ରଦ ଲାଗୁଥିଲା। ମୁଁ ଓ ମୋର ଇଣ୍ଟରପ୍ରିଟର ଚୁପ୍‌ଚାପ୍ ବସି ଲେମ୍ବୁରସ ମିଶା ସାବ୍‌ଜା ଚା' ପିଉଥିଲୁ। ଇଣ୍ଟରପ୍ରିଟର୍‌ର ବୟସ ୨୨/୨୩ରୁ ବେଶି ହେବନାହିଁ। ଆରମ୍ଭରୁ ଏପର୍ଯ୍ୟନ୍ତ ସେ ମୋର ସଙ୍ଗେସଙ୍ଗେ ରହିଥିବାରୁ, ତା'ସହିତ ମୋର ସାମାନ୍ୟ ବନ୍ଧୁତା ଗଢ଼ିଉଠିଥିଲା। ବହୁବେଳର ନିରବତା ଭାଙ୍ଗି ଇଣ୍ଟରପ୍ରିଟର ମୋତେ କହିଲା, "ଆମ ଦେଶରୁ ଆପଣ ବିଦାୟ ନେବା ପୂର୍ବରୁ ଆମପାଇଁ ଆପଣଙ୍କର କିଛି ବାର୍ତ୍ତା ଅଛି କି ?" ମୁଁ ଉତ୍ତର ଦେଇଥିଲି, "ମୋର କେବଳ ଗୋଟିଏ ବାର୍ତ୍ତା ଅଛି... ତାହା ହେଲା, ତୁମ ଦେଶର ନାରୀମାନଙ୍କର ଚେହେରାକୁ ଅକାରଣରେ ରୁକ୍ଷ ଓ ଅବିନ୍ୟସ୍ତ କରି ରଖାଯାଉଛି। ସେମାନଙ୍କର ରୂପବିନ୍ୟାସ ପ୍ରତି ଟିକିଏ ଦୃଷ୍ଟି ଦିଆଗଲେ, ସେମାନେ ସେମାନଙ୍କର ପ୍ରତିବେଶିନୀ ଜାପାନୀ ମହିଳାମାନଙ୍କୁ ବିଉଟିକଣ୍ଟେଷ୍ଟମାନଙ୍କରେ ଯେ ହାର୍‌ମନେଇ ପାରନ୍ତେ ସେଥିରେ ମୋର ସନ୍ଦେହ ନାହିଁ।" ଇଣ୍ଟରପ୍ରିଟ୍‌ର ନୀରବ ରହିଥିଲା ସେ ବୋଧେ ଭାବୁଥିଲା, ଗୋଟେ ପୁଞ୍ଜିବାଦୀ ଦେଶର ଜଣେ ଅବକ୍ଷୟଗ୍ରସ୍ତ ବୁର୍ଜୋୟାର ଇଏ ଗୋଟିଏ ବିକୃତ ଚିନ୍ତା। ମୁଁ ହଠାତ୍ ତାକୁ ପଚାରିଲି, "ତୁମର କୌଣସି ଗାର୍ଲ ଫ୍ରେଣ୍ଡ୍ ଅଛନ୍ତି କି ?" ସେ ଟିକେ ଲାଜେଇଯାଇ ଉତ୍ତର ଦେଲା, "ମହାମାନ୍ୟ ତୁଙ୍ଗନେତା କମ୍ରେଡ ମାଓ-ସେ-ତୁଙ୍ଗଙ୍କ ନେତୃତ୍ୱରେ ଆମେସବୁ ବର୍ତ୍ତମାନ ମାତୃଭୂମିର ପୁନର୍ନିର୍ମାଣରେ ଲାଗିପଡିଛୁ। ପ୍ରେମ ଫ୍ରେମ ପରି ବାଜେକଥା ପାଇଁ ଆମର ସମୟ କାହିଁ ?"

ଏବେ ବୋଧହୁଏ ପୁନଃର୍ନିର୍ମାଣର ସେହି ଉଦ୍ୟୋଗପର୍ବ ଶେଷ ହୋଇଗଲାଣି। କମ୍ରେଡ୍ ମାଓ-ସେ-ତୁଙ୍ଗଙ୍କ ଯୁଗ ଥିଲା, "ରୋଟିକା ସବାଲ୍"ର ଯୁଗ କିନ୍ତୁ କମ୍ରେଡ୍ ଡେଙ୍ଗ୍-ଝ୍ୟାଓ-ପେଙ୍ଗ୍ଙ୍କ ଚୀନ୍‌ରେ ଆଜି ଆଉ ରୋଟିପାଇଁ ବ୍ୟାକୁଳତା ନାହିଁ। ପେଟର କ୍ଷୁଧା ମେଣ୍ଟିଯିବା ପରେ ଆଜି ଚେଇଁଛି ମନର କ୍ଷୁଧା। ସେଥିପାଇଁ ବେଇଜିଂର ଆକାଶରେ ଆଜି ଖୋଜାପଡ଼ିଛି ଚନ୍ଦ୍ର !

୨୭/୧୨/୮୭

# ଶାଳଗଛ ଓ ବନଲତା

ସେଥର ମୁଁ ଚୀନ୍ ଯାଇଥିବାବେଳେ ଆମ ଦଳରେ ଥିଲେ, ପାର୍ଲିଆମେଣ୍ଟର ଜଣେ ସର୍ଦ୍ଦାରଜୀ ଏମ୍.ପି.। ଦୀର୍ଘକାୟ ବୃଷାଳ ଚେହେରା, ଉଚ୍ଚତାରେ ପ୍ରାୟ ୬ଫୁଟ ୪ଇଞ୍ଚ। ସେଇ ମାପରେ ଦେହର ଗୋଲେଇ ଓ ଚେହେରା। ମୁଣ୍ଡରେ ପଗଡ଼ି ବାନ୍ଧିଲେ ତାଙ୍କର ଉଚ୍ଚତା ସାଢ଼େ ୬ଫୁଟକୁ ଛୁଏଁ। ଦାଢ଼ିଟି ମଧ୍ୟ ବେଶ୍ ପ୍ରଲମ୍ବିତ। ମୁଁ କ୍ରମେ ଲକ୍ଷ୍ୟ କଲି, ଆମେ ଯେଉଁଆଡ଼େ ଯାଉଥିଲୁ, ସବୁଠାରେ ସିଏ ହୋଟେଲ ଲବି ହେଉ, ରାସ୍ତା ହେଉ, ୟୁନିଭରସିଟି କି କଳ କାରଖାନା, ପାର୍କ ହେଉ ଅଥବା ଅପେରା ହେଉ, ସବୁଠାରେ ଚୀନା ନରନାରୀ, ବାଳକବାଳିକା ତାଙ୍କୁ ଯେପରି, ସେମାନଙ୍କ ସରୁସରୁ ଆଖିରେ ଡବଡବ ଚାହୁଁଥିଲେ। ସେଥିରେ ସେମାନଙ୍କର ସମ୍ଭ୍ରମ, କୌତୂହଳ ଓ ବିସ୍ମୟ ପ୍ରକାଶ ପାଉଥିଲା। ଏକଥା ଦିନେ ମୁଁ ମୋର ଚୀନା ଇଣ୍ଟରପ୍ରିଟରକୁ ପଚାରିଲି, କାରଣ କ'ଣ ବୁଝିବାପାଇଁ। ସିଏ ସଙ୍କୋଚରେ ଉତ୍ତର ଦେଇଥିଲେ, "ଆପଣଙ୍କ ବନ୍ଧୁଟି ବେଶ୍ ଦୀର୍ଘକାୟ। ଆମ ଦେଶରେ ଏତେ ଉଚ୍ଚାଲୋକ ଦେଖିବାକୁ ମିଳନ୍ତି ନାହିଁ ତ !" ମୁଁ ମନେମନେ ଭାବିଲି, ମଙ୍ଗୋଲୟଡ଼ ଷ୍ଟକ୍‌ର ଲୋକମାନେ ଆଉ କେତେ ବା ଉଚ୍ଚ ହୁଅନ୍ତେ ! ମୋର ମନେହୁଏ, ଗୌତମ ବୁଦ୍ଧ ମଙ୍ଗୋଲୟଡ଼ ଷ୍ଟକର ଥିଲେ ହେଁ ନିଶ୍ଚୟ ଦୀର୍ଘକାୟ ଥିଲେ। କିନ୍ତୁ ସିଏ ତ ଅବତାର ପୁରୁଷ। ତାଙ୍କ କଥା ନିଆରା।

ତେବେ ସେହିଦିନୁ ମୁଁ ଜାଣିଥିଲି, ଦୀର୍ଘକାୟ ଲୋକମାନଙ୍କ ପ୍ରତି ଚୀନ୍‌ର ନରନାରୀ ବେଶ୍ ଆଗ୍ରହୀ। ସେଥିପାଇଁ ଏବେ ଦିନେ ଖବରକାଗଜରେ ଚୀନା ରମଣୀମାନେ ଆଉ ଖର୍ବକାୟ ଯୁବକମାନଙ୍କ ପ୍ରତି ଆକୃଷ୍ଟ ହେଉନଥିବାରୁ ଗେଡ଼ାମାନଙ୍କ ପାଇଁ ବିବାହ ବଜାରରେ ଏକ ବିପତ୍ତି ଦେଖା ଦେଇଥିବାର ସମ୍ବାଦ ପଢ଼ି ମୁଁ ଆଦୌ ବିସ୍ମିତ ହୋଇନଥିଲି।

ଯେତେଦିନ ପର୍ଯ୍ୟନ୍ତ ସମାଜରେ ବ୍ୟକ୍ତିସ୍ୱାତନ୍ତ୍ର୍ୟ ଓ ବ୍ୟକ୍ତିଗତ ରୁଚି ଅଭିରୁଚିର ପ୍ରଶ୍ନ ନଥିଲା, ସେତେଦିନ ପର୍ଯ୍ୟନ୍ତ ଚୀନା ରମଣୀମାନେ ବାଙ୍ଗରାମାନଙ୍କୁ ହୁଏତ ଆଦରୁଥିଲେ। କିନ୍ତୁ ଆଜି କମ୍ରେଡ଼ ଡେଙ୍ଗ-ଝ୍ୟାଓ-ପେଙ୍ଗଙ୍କ ଅମଳର କଥା ନିଆରା। ଆଜି ନାରୀମାନଙ୍କ

ବିଚାରରେ ଖର୍ବକାୟ ପୁରୁଷ ସହିତ ରାସ୍ତାରେ ଚାଲିବା କୁଆଡ଼େ ଲଜ୍ଜାର କଥା। ପୁରୁଷମାନେ ଅବଶ୍ୟ ରଣପା ଚଢ଼ି ଡେଙ୍ଗା ଦିଶିବା ପରି ୪/୫ ଇଞ୍ଚର ହାଇହିଲ ଜୋତା ପିନ୍ଧି ଉଚ୍ଚା ଦିଶିବାପାଇଁ ଚେଷ୍ଟା କରୁଛନ୍ତି। କିନ୍ତୁ ବେଇଜିଙ୍ଗ୍ ବିଶ୍ୱବିଦ୍ୟାଳୟର ଜଣେ ଅଧ୍ୟାପିକା ମିସ୍ ଲିଲୁଙ୍କ ମତରେ, ଏହାଦ୍ୱାରା ସେମାନେ ଡେଙ୍ଗା ଦିଶିପାରନ୍ତି ସତ୍ୟ, ମାତ୍ର ନାରୀମାନଙ୍କର ହୃଦୟ ଜୟ କରିପାରିବେ ନାହିଁ। ଜଣେ ଦୀର୍ଘକାୟ ପୁରୁଷ ଅପେକ୍ଷାରେ ମିସ୍ ଲିଲୁ ଏପର୍ଯ୍ୟନ୍ତ ଅବିବାହିତା ରହିଛନ୍ତି। ସିଏ କହନ୍ତି, ଉଚ୍ଚତା ହେଉଛି ଶକ୍ତିର ପରିଚାୟକ... କିନ୍ତୁ ଚୀନ୍‌ର ନରମାନେ ଯେ ଦୀର୍ଘକାୟ ମୋର ସେପରି ମନେ ହୁଏନାହିଁ।

ଏହି ସ୍ତମ୍ଭର ପ୍ରିୟ ପାଠକ, ପାଠିକାମାନେ ପଚାରିପାରନ୍ତି, ନିଜେ ଖର୍ବାଙ୍ଗୀ ହୋଇ ଖର୍ବକାୟ ପୁରୁଷମାନଙ୍କ ପ୍ରତି ବିତୃଷ୍ଣା କାହିଁକି ? ଏ ପ୍ରଶ୍ନ ବନରଲତାକୁ ପଚାରିଲେ, ସିଏ କେଜାଣି ତାହାର ଯଥାର୍ଥ ଉତ୍ତର ଦେଇ ପାରନ୍ତା। ଅରଣ୍ୟରେ ଲତା କାହିଁକି ଉଚ୍ଚା ଉଚ୍ଚା ଶାଳଗଛମାନଙ୍କ ପ୍ରତି ଆକୃଷ୍ଟ ହୁଏ, କାହିଁକି ପୁଣି ଖର୍ବକାୟ ଗଛମାନଙ୍କୁ ସିଏ ଉପେକ୍ଷା କରେ ତାର କାରଣ ସେଇ ଏକା ସିନା ଜାଣେ ! ଦୀର୍ଘକାୟ ଶାଳତରୁପାଇଁ ବନଲତାର ଏଇ ଆକର୍ଷଣରୁ ସଂସ୍କୃତରେ ବୋଧହୁଏ ଶାଳପ୍ରାଂଶୁ କଥାଟି ପୁରୁଷର ଏକ ବିଭୂଷଣ ରୂପେ ବ୍ୟବହୃତ ହୋଇ ଆସୁଛି। 'ଲିଲୁ' ମତବାଦିନୀ ପ୍ରିୟ ପାଠିକାମାନେ ମୋତେ ଦୟାକରି ଗାଳିଗୁଲଜ କରିବେ ନାହିଁ। ଆମ ଦେଶର କବି ପରମ୍ପରାରେ ମହାକବିମାନେ ବନିତାକୁ ବ୍ରତତୀ ବା ଲତା ସହିତ ସବୁବେଳେ ତୁଳନା କରି ଆସିଛନ୍ତି। ସେମାନେ ପୁଣି ପଦ ଲେଖିଛନ୍ତି "ବିନାଶ୍ରୟେ ନ ବର୍ତ୍ତନ୍ତେ କବିତା ବନିତା ଲତା"। କମ୍ୟୁନିଷ୍ଟ ଦେଶ ହେଉପଛେ, ସେ ଦେଶର ନାରୀ ମଧ୍ୟ ବନିତା ! ସିଏ ଶାଳଗଛଟିକୁ ନଖୋଜି ଆଉ କ'ଣ ସାହାଡ଼ା ଗଛକୁ ଖୋଜନ୍ତା !

ତେବେ ଚୀନ୍‌ର ନାରୀମାନେ ଜାଣି ଆଶ୍ୱସ୍ତ ହେବେ ଯେ ଆମ ଉତ୍କଳଖଣ୍ଡରେ ଆମ ଇଷ୍ଟଦେବ ଜଗନ୍ନାଥ ହେଉଛନ୍ତି ବାମନରୂପୀ ! ଆମେ ସେଥିପାଇଁ ଶ୍ରଦ୍ଧାରେ ତାଙ୍କ ନାମ ରଖିଛୁ ଦଧିବାମନ। ସବୁ ମଙ୍ଗଳ କର୍ମରେ ପ୍ରଥମେ ଏଇ ଦଧିବାମନଙ୍କର ଆରାଧନା ! ଆମ ଉତ୍କଳ ଖଣ୍ଡରେ ବାମନତନ୍ତ୍ର ହେଉଛି ମୁଖ୍ୟତନ୍ତ୍ର ! ବାମନତନ୍ତ୍ରର ସରଳ ଅର୍ଥ ହେଲା, କାହାକୁ କଦାପି ସାଢ଼େ ଛଅଫୁଟିଆ ହେବାକୁ ଦିଆଯିବ ନାହିଁ। ବାଙ୍ଗରମାନଙ୍କ ଉପରକୁ ଯିଏ ଟିକିଏ ଡେଙ୍ଗା ଦିଶିଲା ତା' ଗୋଡ଼ିକାଟି ତାକୁ ବାଙ୍ଗରଟିଏ କରିଦେବାକୁ ପଡ଼ିବ। ତା'ହେଲେ ଚୀନା ନାରୀମାନଙ୍କର ବାଙ୍ଗରମାନଙ୍କ ପ୍ରତି ଏତେଟା ଆଶ୍ରଦ୍ଧା ଆଉ କାହିଁକି।

୦୩/୦୧/୮୮

# ହାଟବାହୁଡ଼ା

ବିଧବାର ଫୁଙ୍ଗୁଳା ହାତ ପରି, ପିଚୁ ରାସ୍ତା ଆଗକୁ ଆଗକୁ ଲମ୍ବି ଯାଇଛି, ଏକଦର୍ଶୀ ମୁହୂର୍ତ୍ତମାନଙ୍କ ପରି। ପଥୁରିଆ ରାସ୍ତା ଦୁଇକଡ଼େ ଟାଙ୍ଗରା ଭୂଇଁ। ସବୁଜିମାର ଲେଶମାତ୍ର କେଉଁଠାରେ ନାହିଁ। କର୍କଶ, କଙ୍କରିତ। ଆଜିର ଶିଳ୍ପସମୃଦ୍ଧ ଯୁଗର ପ୍ରତୀକ ଚିହ୍ନ। ରାସ୍ତା ଦୁଇ ଧାରରେ ଦିନେ ଯେଉଁଠାରେ ପାହାଡ଼ ବା ଜଙ୍ଗଲ ଥିଲା, ଯେଉଁଠି କେତେକେତେ ହରିଣମାନେ ଡିଆଁ ମାରୁଥିଲେ, କେବେକେବେ ଚିତାବାଘ ଟାଏ ଯେଉଁଠି ଗାଈଟାଏ ବା ହରିଣଟାଏ ଝାମ୍ପି ନେଉଥିଲା, ଆଜି ସେ ଜଙ୍ଗଲ ଆଉ ନାହିଁ। ସେଠି କେବଳ ଟାଙ୍ଗର ଆଉ ଟାଙ୍ଗର।

ଡ୍ରାଇଭର ଧ୍ୟାନରେ ବସିବା ପରି ଷ୍ଟିଅରିଙ୍ଗ ଉପରେ ଦୁଇହାତ ରଖି ଜିପ୍ ଚଲାଉଛି। ସେ ଅନ୍ୟ ଦିନମାନଙ୍କରେ ମିତବାକ୍। ଆଜି କିନ୍ତୁ ପୂରାପୂରି ନିର୍ବାକ। ଅନେକ ଦୂରରେ ଦିଗ୍‌ବଳୟ ଦେହରେ ଲେସି ହୋଇ ଯାଇଥିବା ପରି ଗୋଟାଏ ପାହାଡ଼ର ନୀଳାୟିତରେଖା କ୍ଳାନ୍ତ ଆଖିକୁ ପ୍ରତିପାଦନ କରୁଛି, ପ୍ରକୃତରେ ଦୂର ପର୍ବତ ସୁନ୍ଦର।

କିନ୍ତୁ ଏ ସକାଳଟା ଆଶ୍ୱିନ ମାସର ସକାଳ ନହୋଇ ଜ୍ୟେଷ୍ଠମାସର ସକାଳ ମଧ୍ୟ ହୋଇପାରି ଥା'ନ୍ତା। ନିର୍ମେଘ ଆକାଶରେ ଖରା ଟାଇଁ ଟାଇଁ କରୁଛି। କ୍ରମେ ଦୂର ପାହାଡ଼ଟା ମଧ୍ୟ ଚିଟା ଲାଗିଲାଣି। ...କ୍ରମେ ସେହି ବିରକ୍ତିକର ଚିଟା ଭାଙ୍ଗି ଆସିଲା, ଯେତେବେଳେ ଦେଖିଲି, ଦଳଦଳ ଆଦିବାସୀ ପୁରୁଷ ଆଉ ସ୍ତ୍ରୀ କୋଉ ହାଟଆଡ଼େ ଚାଲିଛନ୍ତି। ପୁରୁଷମାନଙ୍କ ମଧ୍ୟରେ ଅଣ୍ଟା ତଳକୁ କଉପୁନୀଠାରୁ ଆରମ୍ଭ କରି ଢିଲା ହାଫ୍‌ପ୍ୟାଣ୍ଟ ଫୁଲ୍‌ପ୍ୟାଣ୍ଟ ପିଠିରେ ଇଂରାଜୀରେ ଛାପା ଯାଇଥିବା ନାନା ପ୍ରକାର ପଦାବଳୀ ଆଉ ବିଚିତ୍ର ରଙ୍ଗବେରଙ୍ଗର ଗେଞ୍ଜି ସହିତ ସବୁ ପ୍ରକାରର ପୋଷାକ। କିଏ ଗୋଟାଏ ବାଉଙ୍ଗୀରେ ଦୁଇଭାର ପରିବା ପସରାହାଟକୁ ନେଇ ଯାଉଛି ବିକ୍ରିବଟା ପାଇଁ। କିଏ କାନ୍ଧେଇ ଚାଲିଛି ଗୋଟାଏ ଢିଙ୍କିଆ ନାଉ, କିଏ ବା ମୁଣ୍ଡେଇ ଚାଲିଛି ଗୋଟାଏ ଛୋଟିଆ କଖାରୁ। ଜଣେ ଆଦିବାସୀ କିନ୍ତୁ ମୁଣ୍ଡରେ ଗୋଟାଏ ଗଞ୍ଜା କୁକୁଡ଼ାକୁ ବସାଇ ନେଉଛି, ଯାହାର ଉଦ୍ଦେଶ୍ୟ ବୁଝିବାପାଇଁ

କଷ୍ଟ ହେଲାନାହିଁ। ଡ୍ରାଇଭରର ଅନେକ ବେଳର ନୀରବତା ଭାଙ୍ଗି ତା' ଛାଆଁକୁ କହିଲା, "ହାଟରେ କୁକୁଡ଼ା ଲଢ଼େଇବ।"

ସ୍ତ୍ରୀଲୋକମାନେ ମଧ୍ୟ ଚାଲିଛନ୍ତି ଦଳଦଳ ହୋଇ। ବୁଢ଼ା, ଦରବୁଢ଼ାଠାରୁ ଆରମ୍ଭ କରି ଧାଙ୍ଗଡ଼ାମାନଙ୍କ ପର୍ଯ୍ୟନ୍ତ ସବୁ ବୟସର। ବୁଢ଼ା ଦରବୁଢ଼ାମାନଙ୍କ ସାଙ୍ଗରେ କିଛିକିଛି ପଣ୍ୟ ଅଛି। କିନ୍ତୁ ଧାଙ୍ଗଡ଼ାମାନଙ୍କର ବୋଧହୁଏ ଖିଲିଖିଲି ହସ ଆଉ ଥଟ୍ଟାଟାପରା ବ୍ୟତୀତ ଅନ୍ୟ ପସରା ନାହିଁ। କିଏ ପିନ୍ଧିଛି ନାରଙ୍ଗୀ ରଙ୍ଗର ଖଦୀ ଶାଢ଼ି ତ କିଏ ପିନ୍ଧିଛି ସାବ୍‌ନା ରଙ୍ଗର ରେଶମୀ ଶାଢ଼ି ଓ ଆଉ କିଏ କିଏ ବା କଳା ମୁଗୁନୀ ଦେହରେ ବେଢ଼ାଇଛି ହଳଦିଆ ରଙ୍ଗର ଶାଢ଼ି। ମୁଣ୍ଡରେ ସମସ୍ତଙ୍କର ବାଙ୍କ ଖୋଷା। ସେମାନଙ୍କ ଖୋଷାରେ କିନ୍ତୁ ଆଉ ଜଙ୍ଗଲୀ ଫୁଲ ନାହିଁ କିମ୍ବା ଧଳା କୁରେଇ ଫୁଲ ଖିଲିଖିଲି ହସୁନାହିଁ। ସମସ୍ତଙ୍କ ଖୋଷାରେ ଏବେ ପ୍ଲାଷ୍ଟିକ୍‌ର ରଙ୍ଗବେରଙ୍ଗ ଫୁଲ। ମୁଁ ଜାଣିଛି, ଏସବୁ ଅଞ୍ଚଳରେ ହାଟ କେବଳ କିଣାବିକାର ମେଳା ନୁହେଁ। କୃଷିଭିତ୍ତିକ ସଭ୍ୟତା ଆଉ ସମାଜରେ ହାଟ ମଧ୍ୟ ସହୀସଙ୍ଗାତ, ବନ୍ଧୁବାନ୍ଧବଙ୍କ ସହିତ ମିଳନର ଏକ ଅବକାଶ। ଏଠାରେ ମନ ସୁଦ୍ଧା ବିକାକିଣା ହୁଏ। ପ୍ରାୟ ୭/୮ କିଲୋମିଟର ଧରି ମୁଁ ଦେଖିଆସୁଛି, ଏଇ ଦୃଶ୍ୟ।

ଆଗରେ ଦେଖାଗଲାଣି, ସେଇ ସକାଳୁଆ ହାଟ। ଏସବୁ ଅଞ୍ଚଳରେ ହାଟ ସକାଳୁ ସକାଳୁ ଜମି ଖରାବେଳକୁ ଭାଙ୍ଗିଯାଏ। ପିଲାଦିନୁ ହାଟମାନଙ୍କର ଆକର୍ଷଣ ମୋପାଇଁ ଭାରି ପ୍ରବଳ। ମୁଁ ତେଣୁ ହାଟ ପାଖରେ ଜିପ୍ ଠଳକୁ ଗଡ଼ାଇବାପାଇଁ ଡ୍ରାଇଭରକୁ କହିଲି। ସବୁ ହାଟର ଗୋଟାଏ ବିଶେଷ ବାସନା ଥାଏ- ଧୂଆଁପତ୍ର, ସଜପରିବା, ଗୁଡ଼ିଆ ଦୋକାନ ତେଲ କଡ଼େଇରୁ ଛଣାଛଣିର ବାସନା, ଧୂଳି ଆଉ ଝାଳର ଫେଣ୍ଟାଫେଣ୍ଟି ଏକ ବିଚିତ୍ର କକ୍‌ଟେଲ୍। ମୁଁ ସେଇ ବାସନାକୁ ଦୁଇ ନାକପୁଡ଼ା ଫୁଲାଇ ଆଘ୍ରାଣ କଲି, ଆଉ ନାଳି ଆଡ଼କୁ ଚାହିଁ ଦେଖିଲି, ରଙ୍ଗରେବଙ୍ଗର ମେଳା। ମନୋହାରୀ ଦୋକାନ ପାଖରେ ଦେଖିଲି, ଦରବୁଢ଼ୀଟିଏ ସୁଦ୍ଧା ପ୍ଲାଷ୍ଟିକ୍ ଫୁଲ ମୂଲାଉଛି, ତା' ଗଭା ସଜେଇବାପାଇଁ। ଧାଙ୍ଗଡ଼ୀଟିଏ ଗୋଟାଏ ଆଇନା କିଣିବାପାଇଁ ଦର କଷାକଷି କରୁଛି ଦୋକାନୀ ସାଙ୍ଗରେ। ସମସ୍ତେ ଗରାଖ। ସମସ୍ତେ ପସରାମାନଙ୍କ ସହିତ ଦର କଷାକଷିରେ ବ୍ୟସ୍ତ। କିନ୍ତୁ ଆଶ୍ଚର୍ଯ୍ୟର କଥା, ସେହି ବିକାକିଣାର ଘୋଘୋ ହାଟରେ ମଧ୍ୟବୟସ୍କା ଆଦିବାସୀଜଣେ କେଉଁଠି ଯୋଗାଡ଼ କରିଥିବା ଖଣ୍ଡେ ଫିକା ଅଲିଭ୍ ଗ୍ରୀନ୍ ରଙ୍ଗର ପ୍ୟାଣ୍ଟଲୁନ୍ ଆଉ ରାସ୍ତା କଡ଼ରେ ବିକ୍ରି ହେଉଥିବା ଗାରଗାରିଆ ଖଣ୍ଡେ ନାଲି ବ୍ୟାନିଅନ୍ ପିନ୍ଧି ଗୋଟାଏ ସପ୍ତସ୍ୱରୀ ବଜାଇ ବଜାଇ ନଟବର ଠାଣିରେ ବୁଲୁଛି। ତା' ମୁଣ୍ଡର ଠେକାରେ ପୁଣି ଖୋସିଛି ଗୋଟାଏ ମୟୂରଚୂଳ। ତା' ପାଖକୁ ଯିବାପାଇଁ ଆଗ୍ରହ ହେଉଥିଲା। କିନ୍ତୁ ଡ୍ରାଇଭର ମନେପକାଇ

ଦେଲା, ଏଠି ଡେରିକଲେ ସଭାବେଳକୁ ପହଞ୍ଚି ହେବନାହିଁ। ଅଗତ୍ୟା ସେଠାରୁ ଚାଲିଆସିଲି।

ପ୍ରାୟ ଅପରାହ୍ଣ ପାଞ୍ଚଟାବେଳେ ସେଇବାଟେ ପୁଣି ଫେରିବାକୁ ପଡ଼ିଲା। ହାଟ ଅନେକବେଳୁ ଭାଙ୍ଗି ଯାଇଥିଲା। ସକାଳେ ଯେଉଁ ହାଟପଦାରେ ଦେଖୁଥିଲି ମଣିଷମାନଙ୍କର ମେଳା, ଏବେ ସେହି ହାଟ ପୂରା ଶୂନ୍‌ଶାନ୍। ପରିତ୍ୟକ୍ତ ହାଟଚାଳିଆ ସବୁ କରୁଣ, ଉଦାସ ଦିଶୁଛନ୍ତି। ହଁ ଏଇ ହେଉଛି ସଂସାର ! ଜିପ୍‌ରୁ ଓହ୍ଲାଇ ସେଇ ମଇଳା ପରିତ୍ୟକ୍ତ ହାଟରେ କିଛିକ୍ଷଣ ବୁଲିବୁଲି ଶୋକସମ୍ବରଣ କରିପାରିଲି ନାହିଁ। ବୁଲୁବୁଲୁ ହଠାତ୍ ଦେଖିଲି, ଗୋଟାଏ ଶାଳଗଛ ତଳେ, ସେଇ ଯେଉଁ ଲୋକଟା ମୁଣ୍ଡରେ ମୟୂର ଚୂଳଟାଏ ଖୋଷି ଅଲିଭ୍ ଫ୍ରାନ୍‌ସ ପ୍ୟାଣ୍ଟଲୁନ୍ ପିନ୍ଧି, ସପ୍ତସ୍ୱରୀ ବଜାଇ ବଜାଇ ହାଟ ଗହଳି ଭିତରେ ବୁଲୁଥିଲା, ସେ ଏବେ ଗଛତଳେ ଚାରିକାତ ମେଲାଇ ପଡ଼ିଥିଲା। ସେହି ଗଛମୂଳେ ବୋଧହୁଏ ଶୁଣ୍ଢୀ ଖୋଲିଥିଲା ମଦଦୋକାନ। ଏ ଲୋକଟି ଶାଳପତ୍ରଦନାମାନଙ୍କରୁ ଆକଣ୍ଠ ପିଇ ସେଇଠି ଲୋଟିପଡ଼ିଥିଲା, ବେଚେତ୍ ହୋଇ। ଜିପ୍‌ର ଘର୍ଘର ଶବ୍ଦରେ ତା' ନିଦ ଭାଙ୍ଗିଗଲା। ସେ ଉଠିବସି ଆଖିମେଲି ଚାରିଆଡ଼କୁ ଚାହିଁଲା ଓ ସେଠାରେ ମୋତେ ଦେଖି କ'ଣ ଭାବିଲା କେଜାଣି, ସେଠାରୁ ଧପାଲି ଧପାଲି ରାସ୍ତା ଆଡ଼କୁ ଚାଲିଗଲା।

କିଛି ବୁଝିପାରିଲି ନାହିଁ। ବିକାକିଣାର ଏ ହାଟ ଭିତରକୁ ଏ ଆସିଥିଲା ବା କାହିଁକି ? କି ସଉଦା ବା ନେଇ ସେ ତା' ଘରକୁ ଫେରିଲା ଏଇ ହାଟରୁ ? ଶୂନ୍ୟ ଥଳି। ରିକ୍ତ ହାତ ! ସେ ସପ୍ତସ୍ୱରୀଟା ସୁଦ୍ଧା କେଉଁଠି ଦେଖିଲି ନାହିଁ ! ସେ ହାଟବାହୁଡ଼ାଟିକୁ ମୁଁ ରାସ୍ତା ଉପରେ ମଧ୍ୟ ଦେଖିଲି ! ପାଦର ଚାଲିରେ ତା'ର, ଶୂନ୍ୟ ଥଳି, ରିକ୍ତ ହାତପାଇଁ ଆଦୌ ଅବସୋସ ଥିବାପରି ମନେ ହେଲାନାହିଁ ! ହାଟ ସଉଦାପାଇଁ ଯାହା ବା କିଛି ପାଣ୍ଠି ଆଣିଥିଲା ସାଙ୍ଗରେ ସବୁ ଉଡ଼ାଇ ଦେଇଗଲା, ହାଟରେ ଶୁଣ୍ଢୀଦୋକାନରେ। ଲକ୍ଷ୍ୟକରି ଦେଖିଲି, ତା' ପିଠିରେ ବାନିଅନ୍ ଉପରେ ଇଂରାଜୀରେ ଲେଖା ହୋଇଛି 'ଲଭ୍‌ଅନ୍'। ଫୁଟପାଥ୍ କଡ଼ର ବାନିଅନ୍। ମୁଣ୍ଡ ଠେକାରେ କିନ୍ତୁ ସେଇ ମୟୂର ଚୂଳ। ଆଉ ସେଇ ନଟବର ଠାଣିରେ ଚାଲି। ଗୈରିକ ଗୋଧୂଳି ମଧ୍ୟରେ ସେଇ ନିସଙ୍ଗ ହାଟବାହୁଡ଼ାଟି ଭାରି ଉଦାସ ଦିଶୁଥିଲା...। ସିଏ ସନ୍ଥକବି ଭକ୍ତଚରଣ ନୁହେଁ, ଯିଏ ଲେଖିଛନ୍ତି, "ଗଣ୍ଠିରେ ବାନ୍ଧିନେଲେ, କେ କେତେ ଧନରେ ?" ସିଏ ଶଙ୍କରାଚାର୍ଯ୍ୟଙ୍କର 'ମୋହମୁଦ୍‌ଗର'ର ପଦଟିଏ ସୁଦ୍ଧା ବୁଝିପାରିବ ନାହିଁ। କିନ୍ତୁ ମୋର ମନେହେଲା, ସିଏ ଯେପରି ଜୀବନ୍ତ ମୋହମୁଦ୍‌ଗର !

୧୦/୦୧/୮୮

# କୋଣାର୍କରେ ଦିନେ

ମୁଁ ଟିଭିରେ ନ୍ୟୁଜ୍‌ପ୍ରୋଗ୍ରାମ୍ ଦେଖିବା ସୁଦ୍ଧା ବନ୍ଦକରି ଦେଲିଣି, ଅନେକ ଦିନୁ। ଆଖିକୁ ଭାରି କ୍ଳାନ୍ତିକର। ଟ୍ରାନ୍‌ଜିଷ୍ଟର ସେଟ୍‌ରେ ଅଲ୍ ଇଣ୍ଡିଆ ରେଡ଼ିଓ ଏବେ ଏ ଦିଗରେ ମୋର ଏକମାତ୍ର ସହାୟ। ଆଜି (ଜାନୁଆରୀ ୯, ୧୯୮୮ ରିଖ)ହିନ୍ଦୀ ନ୍ୟୁଜ୍ ବୁଲେଟିନ୍ ପୂର୍ବରୁ ରେଡ଼ିଓରେ ଶୁଣିଲି, କୋଣାର୍କଠାରେ ଆଗନ୍ତୁକ ରୁଷ୍ ଯୁବ ପ୍ରତିନିଧିଦଳଙ୍କ ସହିତ କଟକ ଆକାଶବାଣୀ ରିପୋର୍ଟରଙ୍କ ସାକ୍ଷାତକାରର ବିବରଣୀ। ସୋଭିଏତ୍ ଯୁବ ପ୍ରତିନିଧିଦଳଙ୍କୁ ଆମର ବେତାର କେନ୍ଦ୍ର ପ୍ରତିନିଧି ପଚାରିଲେ... "ଏ ସୂର୍ଯ୍ୟ ମନ୍ଦିର ଦେଖି ଆପଣଙ୍କର କ'ଣ ଧାରଣା ହେଲା ? ଆପଣ କ'ଣ ଅନୁଭବ କଲେ ?" ସୋଭିଏତ୍ ଯୁବ ପ୍ରତିନିଧି ଦଳ ଆକାଶବାଣୀ ପ୍ରତିନିଧିଙ୍କର ଏ ପ୍ରଶ୍ନ ଶୁଣି ବେଶ୍ ପ୍ରସ୍ତେ ଠୋ ଠୋ ହସିଲେ। ସେହି ମିଳିତ ହାସ୍ୟରୋଳରେ ଶୁଣାଯାଉଥିଲା ମଧ୍ୟ କେତେକ ତରୁଣୀଙ୍କ କଣ୍ଠସ୍ୱର ! ପ୍ରତିନିଧି ଦଳର ନେତା ବିଶୁଦ୍ଧ ରୁଷୀୟ ଭାଷାରେ ଉତ୍ତର ଦେଲେ, "ଏତେ ଲୋକଙ୍କ ଭିତରେ କ'ଣ ଏପରି ସବୁ ପ୍ରଶ୍ନର ଉତ୍ତର ଦେଇହୁଏ ? ଏସବୁ ଆପଣା ଭିତରେ କଥାବାର୍ତ୍ତା ହେବାର ବିଷୟ ସିନା !" (ଦୋଭାଷୀଙ୍କର ଅନୁବାଦ)। ମୁଁ ମନେମନେ ତୁଳନା କରି ଭାବିଲି, ଆମ ଦେଶର କଳାପ୍ରେମୀ ବା ନାତିବାଗୀଶମାନଙ୍କୁ ଏ ପ୍ରଶ୍ନ ପଚରା ଯାଇଥିଲେ, ସେମାନେ ନିଶ୍ଚୟ ଉତ୍ତର ଦେଇଥାଆନ୍ତେ... ଆମେ ଏ ପୁଣ୍ୟଭୂମିର ବିରାଟ ଆଧ୍ୟାତ୍ମିକ ମହିମା ଓ କଳା ନୈପୁଣ୍ୟରେ ବିହ୍ୱଳ ହୋଇଗଲୁ। ଇତ୍ୟାଦି ଇତ୍ୟାଦି।

ମୁଁ ପାଶ୍ଚାତ୍ୟ ସଭ୍ୟତା ଓ ସମାଜର ଯେତେ ବିରୋଧୀ ହେଲେ ହେଁ ସେମାନଙ୍କ ଅକୁଣ୍ଠ ସ୍ପଷ୍ଟବାଦିତାକୁ ସବୁବେଳେ ନମସ୍କାର କରେ- ଅବଶ୍ୟ ଆନ୍ତର୍ଜାତିକ ରାଜନୀତି କ୍ଷେତ୍ରରେ ସେମାନଙ୍କର 'ଡବଲ୍-ଟକ୍' ବ୍ୟତୀତ। ସୋଭିଏତ ଯୁବ ପ୍ରତିନିଧି ଦଳ ମୁଖିଆଙ୍କର ପୂର୍ବୋକ୍ତ ଉତ୍ତର ଶୁଣି, ମୋ' ମନରେ ସେଇ ପ୍ରକାର ଭାବର ମଧ୍ୟ ଉଦୟ ହେଲା।

କୋଣାର୍କ ସୂର୍ଯ୍ୟ ମନ୍ଦିରକୁ ଦଳଦଳ ମହୁମାଛି ପରି ଯେଉଁ ପର୍ଯ୍ୟଟକମାନେ ଆସନ୍ତି, ସେମାନେ କ'ଣ ଆସିଥାନ୍ତି, ଓଡ଼ିଶାର ଆଧାତ୍ମିକ କଳା ଓ ସ୍ଥାପତ୍ୟ ଦେଖି ଚମତ୍କୃତ ହେବାପାଇଁ ? ଖଜୁରାହୋ ସେମାନେ କ'ଣ ଯାଇଥାନ୍ତି, ମଧ୍ୟଯୁଗୀୟ ଚାନ୍ଦେଲା ରାଜବଂଶର ସ୍ଥାପତ୍ୟ ଓ ଭାସ୍କର୍ଯ୍ୟର ଗବେଷଣାପାଇଁ- ଖଜୁରାହୋ ମ୍ୟୁଜିୟମରେ ଉମା ମହେଶ୍ୱରଙ୍କ ଯୁଗନଦ୍ଧ ମିଥୁନ ମୂର୍ତ୍ତି ସେମାନଙ୍କପାଇଁ ଏକମାତ୍ର ଆକର୍ଷଣ ? ଆଉ ତା' ସହିତ ଅନ୍ୟ ମନ୍ଦିରମାନଙ୍କର ଗାତ୍ରରେ ବିଭିନ୍ନ କଳା-କୌଶଳରେ ବନ୍ଧମୂର୍ତ୍ତି । ଖାସ୍ ଏଇଥିପାଇଁ ଦିଲ୍ଲୀରୁ ଦୈନିକ ଗୋଟାଏ ଜୁମ୍ବୋ ଫ୍ଲାଇଟ୍ ସୁଦ୍ଧା ଦୁଇଥର ଖଜୁରାହୋ ଯିବା ଆସିବା କରୁଛି। ଆଉ ତା' ସହିତ ମଧ ମୁଣ୍ଡଟେକି ଉଠିଲାଣି, ସେଇ ଅପନ୍ତରା ଟାଙ୍ଗରା ଭୂଇଁରେ ଫାଇଭଷ୍ଟାର ହୋଟେଲ 'ଚାନ୍ଦେଲା' ।

କୋଣାର୍କକୁ ମଧ ଯେଉଁ ପର୍ଯ୍ୟଟକମାନେ ଆସନ୍ତି, ସେମାନେ ଆସିଥାଆନ୍ତି ଠିକ୍ ଏହିପରି କାରଣରୁ। ମୋଟାମୋଟି ଭାବରେ ଓଡ଼ିଶାକୁ ଯଦି କେହି ଆନ୍ତର୍ଜାତିକ କ୍ଷେତ୍ରରେ ପ୍ରସିଦ୍ଧ କରି ଥାଆନ୍ତି, ତା'ହେଲେ ସେମାନେ ମହାମେଘବାହନ ଖାରବେଳ ବା ସୂର୍ଯ୍ୟବଂଶୀ ସମ୍ରାଟ କପିଳେନ୍ଦ୍ର ବା ପ୍ରତାପରୁଦ୍ର ବା ଓଡ଼ିଶାର ସିଦ୍ଧ ସାଧକ ଓ କବିକୁଳ ନୁହନ୍ତି; ଓଡ଼ିଶାକୁ ପ୍ରସିଦ୍ଧ ଆଣି ଦେଇଛନ୍ତି, ଚଉଷଠି ବନ୍ଧ-ବିଶାରଦ ମାନେ ! ତନ୍ତ୍ର ଯୁଗରେ, ମନୁଷ୍ୟର ସବୁ ନିଗୃହୀତ ଓ ଅବରୁଦ୍ଧ ପ୍ରବୃତ୍ତି ଯେପରି ଆଧାତ୍ମିକ ସାଧନା ମଧରେ ଫିଟି ପଡ଼ିଥିଲା, ତାହା ସେହିପରି ମଧ ସ୍ଥାପତ୍ୟ ଓ ଭାସ୍କର୍ଯ୍ୟକୁ ଅନୁପ୍ରେରିତ କରିଥିଲା। କୋଣାର୍କ ହେଉଛି, ସେହି କଳାର ସ୍ଥାପତ୍ୟ। ଆଦିକବି ସାରଳା ଦାସ ସେଥିପାଇଁ ମହାଭାରତର 'ବନପର୍ବ'ରେ କୋଣାର୍କକୁ 'ଭଣ୍ଡମାନଙ୍କର ତୀର୍ଥ' ବୋଲି ଆକ୍ଷେପ କରିଅଛନ୍ତି ! ତେବେ ସାରଳାଙ୍କ ଦୃଷ୍ଟିରେ ଯାହା ଥିଲା ଭଣ୍ଡ ତାହା ଆଜିର ପରିବର୍ତ୍ତିତ ଦୃଷ୍ଟିକୋଣରେ ହେଉଛି ଶ୍ରେଷ୍ଠ କଳାର ନିଦର୍ଶନ ! ସରକାରଙ୍କର ପର୍ଯ୍ୟଟନ ବିଭାଗ ବୈଦେଶିକ ମୁଦ୍ରା ଆକାରରେ ଯେତେଯେତେ ଆୟ କରୁଛନ୍ତି ବୋଲି ହିସାବ ଦିଅନ୍ତୁ ନା କାହିଁକି, ସେମାନେ ତାହା ଆୟ କରୁଛନ୍ତି, ଆମର ପ୍ରତ୍ନତାତ୍ତ୍ୱିକମାନଙ୍କର କଳା ଭାସ୍କର୍ଯ୍ୟରୁ ଆଦୌ ନୁହେଁ, ତାହା ସେମାନେ ଆୟ କରୁଛନ୍ତି, ଉଲ୍ଲଙ୍ଗ ଯୁଗନଦ୍ଧ ମୂର୍ତ୍ତିରୁ ଅଥବା ଉଭାବନ୍ଧରେ ଆଶ୍ଳିଷ୍ଟ ନରନାରୀଙ୍କ ମିଥୁନ ମୂର୍ତ୍ତିରୁ ! ଅଥଚ ସାଧାରଣ ବିଚାରରେ ଏସବୁ ଅଶ୍ଳୀଳତା ଓ ଭ୍ରଷ୍ଟାଚାର ବୋଲି ଭର୍ତ୍ସନା କରିବାପାଇଁ ଆମ ଦେଶରେ ନୀତିବାଗୀଶମାନଙ୍କର ମଧ ଅଭାବ ନାହିଁ।

ମନେପଡୁଛି, ସନ୍ଥ ବିନୋବାଜୀ ଥରେ ପରାମର୍ଶ ଦେଇଥିଲେ, ଖଜୁରାହୋ, କୋଣାର୍କ ମନ୍ଦିରର ମୂର୍ତ୍ତିମାନଙ୍କୁ ସିମେଣ୍ଟ ପଲସ୍ତରା ତଳେ ରୁନ୍ଧି ଦେବା ଉଚିତ। କିନ୍ତୁ ସୋଭିଏତ୍ ଯୁବ ପ୍ରତିନିଧି ଦଳର ମୁଖିଆଙ୍କର ପୂର୍ବୋକ୍ତ ଉକ୍ତି ରେଡ଼ିଓରେ ଶୁଣି ମୁଁ ଆଶ୍ୱସ୍ତ

ହେଲି... ନା ଆଜି ମଧ୍ୟ ଏଇ ଟେକ୍‌ନୋଲଜି ଓ ନିଷ୍ପ୍ରାଣ କମ୍ପ୍ୟୁଟରାଇଜ୍‌ଡ ଯୁଗରେ ଯୌବନ ଓ ହୃଦୟର ଆଦିମ ଆବେଗ ସବୁ ପୂରାପୂରି ହଜି ଯାଇନାହିଁ... ଆଜି ମଧ୍ୟ ଯୌବନ ଶେଷପାଇ ନାହିଁ... ଆଜି ମଧ୍ୟ ହୃଦୟାବେଗ ପୂରାପୂରି ଶୁଖି ଯାଇନାହିଁ। ଆଜି ମଧ୍ୟ ଏଇ ମଣିଷ ଭିତରେ ବସନ୍ତ ଛପି ରହିଛି... ଖଜୁରାହୋ ବା କୋଣାର୍କ କେବେ କେବେ ଦେଖିଲେ ତା' ଭିତରେ ଛୁଟି ଯାଉଛି ଅଦିନ ବସନ୍ତର ସେଇ ହିଲ୍ଲୋଳ !

୧୭/୦୧/୮୮

# ଘଡ଼ିଆମାଳରେ ଝଡ଼

ହଂସୁଆ ନଦୀ ଘାଟ ଛାଡ଼ିବାବେଳକୁ ଆକାଶର ଚେହେରା ହଠାତ୍ ବିବର୍ଣ୍ଣ ଓ ଅପ୍ରସନ୍ନ ହୋଇ ଉଠୁଥିଲା। ଅକ୍ଟୋବର ମଧ୍ୟାହ୍ନର ନାରଙ୍ଗୀ ଖରା ଉପରେ ବୋଳି ହୋଇ ଆସୁଥିଲା, ପେନ୍‌ସିଲ୍ ସୀସାର ପ୍ରଲେପ। ଭଡ଼ାଲଞ୍ଚର ସାରଙ୍ଗ୍ ଶୋଭାନ୍ ମିଆଁ କହିଲେ... "ପାଗଯୋଗର ହାଲତ୍ ଭଲ ଦିଶୁନାହିଁ। ଦରିଆରେ ତୋଫାନ୍ ଉଠିବା ପରି ଲାଗୁଛି। ଆଜି ତାଳତୁଆ ନଗଲେ କ'ଣ ଚଳନ୍ତା ନାହିଁ ?" ଶୋଭନ୍ ମିଆଁଙ୍କ ମେହେନ୍ଦୀ ରଙ୍ଗ ବୋଳା ଦାଢ଼ିଟି ଫୁଲି ଉଠିଲା, ଆକାଶରେ ଖଣ୍ଡ ଖଣ୍ଡ କଳା ମେଘମାନଙ୍କ ପରି !

ଶୋଭାନ୍ ମିଆଁ ଅଳ୍ପ କଥାର ମଣିଷ। ବେଶି କଥାବାର୍ତ୍ତା କରନ୍ତି ନାହିଁ। ଲଞ୍ଚ୍ ଉପରେ କ୍ୟାବିନ୍‌ରେ ବସି ଲଞ୍ଚ୍ ଚଳାଉ ଥିବାବେଳେ ଗୋଟାଏ ଟିଣ ଚୁଙ୍ଗାରେ ତଳେ ଅପରେଟ୍‌ର ଓ କ୍ଲିନ୍‌ରକୁ ଚିତ୍‌କାର କରି କ'ଣ ପଦେ ପଦେ ନିର୍ଦ୍ଦେଶ ଦିଅନ୍ତି; ତା'ପରେ ପୁଣି ଚୁପ୍‌ଚାପ୍ ନଦୀ ଭିତରକୁ ଏକ ଲୟରେ ଚାହିଁ ଲଞ୍ଚ୍ ଚଳାନ୍ତି। କିନ୍ତୁ କୌଣସି ବିଷୟରେ ତାଙ୍କର ଦୃଢ଼ମତ ଜଣାଇ ଦେବାବେଳେ ତାଙ୍କ ଦାଢ଼ିଟା ହଠାତ୍ ଫୁଲିଉଠେ।

ମୁଁ ଏ ଲଞ୍ଚ୍‌କୁ ମୋ' ନିର୍ବାଚନ ପ୍ରଚାରପାଇଁ ଭଡ଼ା ନେବା ଦିନଠାରୁ ଶୋଭାନ୍ ମିଆଁଙ୍କଠାରେ ତାଙ୍କ ଦାଢ଼ିର ଏକ ବିଶେଷତ୍ୱଟି ବରାବର ଲକ୍ଷ୍ୟ କରି ଆସୁଛି। ପାଗଯୋଗର ଅବସ୍ଥା ମୋତେ ମଧ କାହିଁକି ଭଲ ମନେ ହେଉନଥିଲା। ଆକାଶରେ ଅବଶ୍ୟ ଝଡ଼ବାଦଲ ଆସିବାର ସେପରି କୌଣସି ଚିହ୍ନ ଆଖିରେ ପଡୁ ନଥିଲା। ତଥାପି ଅକ୍ଟୋବର ମାସଟା ଆକସ୍ମିକ ଝଡ଼ବାଦଲର ମାସ। ବେଳେବେଳେ ଦମକାଏ ପବନ ପଶ୍ଚିମ ଦିଗରୁ ପାଗଳ ପରି ଛୁଟିଆସି ନଦୀ କଡ଼ର ସୁନ୍ଦରୀ, ହେନ୍ତାଳ ଆଉ ବାଉଁଶ ଗଛ ଗୁଡ଼ାକ ଉପରେ ହୁ ହୁ ହୋଇ ଛୁଟି ଯିବାବେଳେ ଗଛଗୁଡ଼ିକ କାଳିଶିମାନଙ୍କ ପରି ଦଣ୍ଡକପାଇଁ ନାଚି ଉଠି ପୁଣି ଚୁପ୍‌ଚାପ୍ ହୋଇ ଯାଉଥିଲେ। ତାଳତୁଆ ସେଠାରୁ ପ୍ରାୟ ତିନି ଚାରିଘଣ୍ଟାର ରାସ୍ତା, ଉଜାଣିରେ ଯିବାକୁ ପଡ଼ିବ ବୋଲି। ଏହି ସମୟ ଭିତରେ ହଠାତ୍ ଯେ ପାଗଯୋଗ ଅସମ୍ଭାଳ ଭାବରେ ଖରାପ ହୋଇଯିବ, ମୋର ସେପରି ପ୍ରତ୍ୟୟ ହେଉନଥିଲା। ମୁଁ କଣ୍ଠସ୍ୱରକୁ ଅକାରଣରେ

ଗମ୍ଭୀର କରି କହିଲି... "ସାରଙ୍ଗଜୀ ! ଇଏହେଲା ଚୁନା ଓ ଓ୍ୱକତ ! ଆଜି ସନ୍ଧ୍ୟାରେ ତାଳତୁଆରେ ମିଟିଂ ଅଛି। ମୋତେ ସେ ମିଟିଂରେ ପହଞ୍ଚିବାପାଇଁ ପଡ଼ିବ। ପୁଣି ଆଉଥରେ ଏ ଅଞ୍ଚଳକୁ ଆସିବା ମୋ' ପକ୍ଷରେ ଇଲେକ୍‌ସନ୍ ପୂର୍ବରୁ ଆଉ ସମ୍ଭବ ନୁହେଁ।" ଶୋଭାନ୍ ମିଆଁ କର୍ତ୍ତବ୍ୟନିଷ୍ଠ ମଣିଷ। ଠିକ୍ ଅଛି, ତାଙ୍କର କହିବା କଥା, ସେ କହିଦେଲେ। ମାଲିକ ଯଦି ଜିଦ୍ ଲଗାଇଛି ଯିବ ବୋଲି, କମ୍ପାନୀର ନୌକର ହୋଇ ସେ ଆଉ ମନା କରିବ କାହିଁକି ? ବାଟରେ ଯଦି ଲଞ୍ଚ୍ ବୁଡ଼ିବ, ତା'ହେଲେ ସିଏ ଆଉ କ୍ଲିନର ପହଁରି ପହଁରି ରକ୍ଷା ପାଇଯିବେ। ମାଲିକ ଯଦି ପହଁରା ଜାଣି ନଥିବ, ତା'ହେଲେ କୁମ୍ଭୀର, ମଗରଙ୍କ ପେଟରେ ଯିବ। ସିଏ ନାଚାର ! ଶୋଭାନ୍ ମିଆଁ ତାଙ୍କ ଦାଢ଼ି ଫୁଲାଇ ଶିଡ଼ିରେ ଚୁପ୍‌ଚାପ୍ ତାଙ୍କ କ୍ୟାବିନ୍‌କୁ ଉଠିଗଲେ। ଲଞ୍ଚ ହଂସୁଆ ଘାଟ ଛାଡ଼ିଲା !

କ୍ୟାବିନ୍ ଭିତରେ ମୋ' ସହିତ ଦୁଇ-ତିନିଜଣ କର୍ମୀ। ସେମାନେ ଏଇ ଲୁଆରିଆ ନଦୀ ନାଳ ଅଞ୍ଚଳର ଲୋକ। ସେମାନେ ମଧ୍ୟ ହୁଏତ ମନେମନେ ଆସନ୍ନ ଝଡ଼ର ଆଶଙ୍କା କରୁଥିଲେ। ଅନ୍ତତଃ ସେମାନଙ୍କର ମୁହଁର ଚେହେରାରେ ଏହା ଥିଲା, ସୁସ୍ପଷ୍ଟ। ହଂସୁଆ ନଦୀ ଶେଷ ହୋଇ କେଉଁଠାରେ ପାଟଶାଳା ନଦୀ ଆରମ୍ଭ ହେଲା, ପୁଣି ଯେଉଁଠି ପାଟଶାଳା ଶେଷ ହୋଇ ଘଡ଼ିଆମାଳ ବାହାରିଲା, ମୁଁ ସେ ସବୁ ଜାଣିବାର ଉପାୟ ନଥିଲା। କିନ୍ତୁ ଘଡ଼ିଆମାଳ ମଝିରେ ହଠାତ୍ ଲଞ୍ଚଟା ଯେପରି ପବନର ଝିଙ୍କାର ଓ କଲୋଲ୍ଲାସରେ ଉପରକୁ ଉଠିଲା, ପଡ଼ିଲା, ତାହା ପ୍ରକୃତରେ ମୋତେ କିପରି ଅସ୍ୱାଭାବିକ ଲାଗିଲା। ଜଣେ କର୍ମୀ କହିଲେ... "ଇଏ ଘଡ଼ିଆମାଳ, ଡାଙ୍ଗମାଳ ଘାଟ ଆଉରି କିଛି ବାଟ ଅଛି।" ସେତେବେଳକୁ ହଠାତ୍ ଝଡ଼ ପାଗଳ ପରି ଆକାଶରେ ତାଣ୍ଡବ ଆରମ୍ଭ କରିଦେଇଥିଲା। ତା' ସାଙ୍ଗରେ ବର୍ଷା। ଶୋଭାନ୍ ମିଆଁ କ୍ୟାବିନ୍ ଭିତରୁ ଚୁଙ୍ଗାରେ ମେସିନ୍ ଚଳାଉଥିବା ଅପରେଟର୍‌କୁ ଚିତ୍କାର କରି କ'ଣ ସବୁ ନିର୍ଦ୍ଦେଶ ଦେଉଥିଲେ, ଆମେ ତାହା ଶୁଣିପାରୁ ନଥିଲୁ। ସାରଙ୍ଗ କଥାମାନି ଆସି ନଥିଲେ, ବୁଦ୍ଧିମାନର କାର୍ଯ୍ୟ ହୋଇଥାଆନ୍ତା। ଝଡ଼ ଭିତରେ ଏ ଯାତ୍ରା ମୋତେ ମହାଯାତ୍ରା ପରି ଲାଗୁଥିଲା।

ତେବେ ଲଞ୍ଚଟା ପବନର ଧକ୍‌କାରେ ଯେପରି ନଦୀ ଅତଡ଼ା କାନ୍ଥି ଆଡ଼େ ମୁହାଁଇ ଥିଲା, ମୁଁ ମନେ ମନେ ସାମାନ୍ୟ ଆଶ୍ୱସ୍ତ ହୋଇ ଭାବୁଥିଲି, ଯାହା ହେଉ ଅତଡ଼ା କାନ୍ଥିର ଉହାଡ଼ରେ ଝଡ଼ର ଝିଙ୍କାରରୁ ଅନେକଟା ରକ୍ଷା ମିଳିବ। କିନ୍ତୁ କ୍ୟାବିନ୍‌ରୁ ଶୋଭାନ୍ ମିଆଁଙ୍କ ଚିତ୍କାର ଶୁଭିଲା... 'ଲଙ୍ଗର୍ ! ଲଙ୍ଗର୍ !" ଅପରେଟ୍‌ର ସଙ୍ଗେ ସଙ୍ଗେ ଲଙ୍ଗର୍ ପକାଇ ଦେଲା। ଆଶ୍ଚର୍ଯ୍ୟ। ଏ ଭୟଙ୍କର ନଦୀ ମଝିଟାରେ ଏତେବେଳେ ଲଞ୍ଚଟାକୁ ଲଙ୍ଗର୍ ପକାଇ ଅଟକାଇ ଦେବାର ମତ୍‌ଲବ୍ କ'ଣ ? ପୁଣି ଲଞ୍ଚଟାକୁ ସାରଙ୍ଗ ପଶ୍ଚିମ ମୁହାଁ କରାଉଛି ! ଅଥଚ ପଶ୍ଚିମ କୋଣରୁ ହିଁ ଆସୁଛି ଝଡ଼ର ଘନଘନ ଆଘାତ ! ଲୋକଟା ପ୍ରକୃତରେ

ପାଗଳ ! କ୍ୟାବିନ୍ ଭିତରେ ଆମେ ସମସ୍ତେ ଚୁପ୍‌ଚାପ୍ ଇଷ୍ଟନାମ ଚିନ୍ତା କରିବା ଛଡ଼ା ଆଉ ଅନ୍ୟ ଉପାୟ ନଥିଲା।

ପ୍ରାୟ ଦୁଇଘଣ୍ଟା ପରେ ଝଡ଼ର ବେଗ କମି ଯାଇଥିଲା; ଯଦ୍ୟପି ନଦୀର ଅବସ୍ଥା ଦିଶୁଥିଲା ତଥାପି ଭୟଙ୍କର। ଆମେ ସନ୍ଧ୍ୟାର ଅନେକ ପରେ ତାଳତୁଆ ଘାଟ ଧରିଲୁ। ସେଦିନ ରାତିରେ ଗୋଟିଏ ଛୋଟିଆ ପ୍ରାଥମିକ ସ୍କୁଲ ଘରେ ଆମପାଇଁ ରହିବାର ବ୍ୟବସ୍ଥା ହୋଇଥିଲା। ଚଟାଣ ଉପରେ ଖଣ୍ଡେ ସତରଞ୍ଜି ଉପରେ ଶୋଭାନ୍ ମିଆଁ ବାଁ ଆଣ୍ଠୁ ଭାଙ୍ଗି ତା' ଉପରେ ଡାହାଣ ଆଣ୍ଠୁ ଚାପି, ଧୂଆଁଳିଆ ଲଣ୍ଠନ ଭିତରକୁ ଚାହିଁ ନିର୍ଲିପ୍ତ ଭାବରେ ବିଡ଼ି ଟାଣୁଥିଲେ। ଗୋଟାଏ ଏତେ ବଡ଼ ବିପଦ ଭିତରୁ ଆମେ ସମସ୍ତେ ଯେ ରକ୍ଷା ପାଇପାରିଲୁ, ତାହାର ଟେନ୍‌ସନ୍‌ର ଲେଶ ମାତ୍ର ତାଙ୍କ ଚେହେରାରେ ଲକ୍ଷ୍ୟ କରି ହେଉ ନଥିଲା !

ଅନେକ ବେଳର ନୀରବତା ଭଙ୍ଗ କରି ମୁଁ ପଚାରିଲି... "ଘଡ଼ିଆଳ ନଈରେ ତୁମ କାମ ତ ମୋତେ ଅଜବ୍ ଲାଗିଲା ସାରଙ୍ଗ୍‌ଜୀ ! ନଈ ମଝିରେ ଝଡ଼ ଯେ ଲଞ୍ଚ୍‌କୁ କେତେବେଳେ କୋଉ ପାଖକୁ ମାଡ଼ିଦେବ, ଠିକଣା ନଥିଲା; ସେତେବେଳେ ତୁମେ ଲଞ୍ଚ୍‌ଟାକୁ ଅତଡ଼ା କାନ୍ଥିପାଖକୁ ନନେଇ ସେଇ ମଝି ନଈରେ ଲଙ୍ଗର୍ ପକାଇ ପୁଣି ଝଡ଼ ସାମନାକୁ ମୁହାଁଇ ଅଟକାଇ ଦେଲ କାହିଁକି ? ଅତଡ଼ା କାନ୍ଥି ପାଖରେ ତ ଆମେ ଅନ୍ତତଃ ଝଡ଼ରୁ କିଛିଟା ନିରାପଦ ରହିପାରି ଥା'ନ୍ତେ !"

ଶୋଭାନ୍ ମିଆଁ ବିଡ଼ିରେ ଗୋଟାଏ ଶେଷ ଟାଣ ଦେଇ ଉତ୍ତର ଦେଲେ... "ଆରେ ବାବୁଜୀ... ! ଅତଡ଼ା କାନ୍ଥି ପାଖକୁ ଯାଇଥିଲେ, ଝଡ଼ ଲଞ୍ଚ୍‌କୁ କାନ୍ଥିରେ ପିଟି ପିଟି ଛତର ଛାଲ କରି ଦେଇଥାଆନ୍ତା। ଝଡ଼ ବେଳେ ନଦୀ କାନ୍ଥି ପାଖକୁ ଯିବା ଭାରି ଖତର୍‌ନାକ୍ ! ସେତେବେଳେ ନଈ ମଝିରେ ଝଡ଼କୁ ସାମନା କରି ଲଙ୍ଗ୍‌ର ପକାଇ ଦେବାରେ ବିପଦ କମ୍ !"

ସେଇ ଦିନୁ ମୁଁ ବୁଝିଛି, ମଝି ଦରିଆରେ ଯେତେବେଳେ ଝଡ଼ ଆକ୍ରମଣ କରେ, ଜୀବନରେ ଯେତେବେଳେ ବିପଦ ସବୁ ଘନୀଭୂତ ହୋଇ ଆସେ, ସେତେବେଳେ ନିରାପତ୍ତା ପାଇଁ ଘର କୋଣକୁ ପଳାଇ ଯିବାରେ ଅଛି, ବେଶି ବିପଦ ! କିନ୍ତୁ ବିପଦକୁ ସାମନା ସାମନି ମୁକାବିଲା କରିବାରେ ଅଛି ବରଂ ଆତ୍ମରକ୍ଷାର ବାଟ।

ସେଇଦିନୁ ମୁଁ 'କଳାଙ୍ଗୀ ଲଞ୍ଚର ସାରଙ୍ଗ୍ ଶୋଭନ୍ ମିଆଁକୁ ମୋର ଜଣେ ଗୁରୁ ତାଲିକାରେ ରଖିଛି !

୨୪/୦୧/୮୮

# ଗୋଟିଏ ନ୍ୟୁଡ୍ ଚିତ୍ର ସଂପର୍କରେ

'ୱାଶିଂଟନ୍ ପୋଷ୍ଟ' କାଗଜର ସାଂହାଇ ସମ୍ବାଦଦାତାଙ୍କ ଚୀନ୍‌ରେ ଏକ ଚିତ୍ରକଳା ପ୍ରଦର୍ଶନୀ ସଂପର୍କିତ ସମ୍ବାଦଟି ପଢ଼ି ମୁଁ ରୀତିମତ ଚକିତ ହୋଇ ଉଠିଲି। ସମ୍ବାଦଟି ହେଉଛି- ସେହି ଚିତ୍ରକଳା ପ୍ରଦର୍ଶନୀରେ ଚୀନା ବିଚାରକମଣ୍ଡଳୀ ଗୋଟିଏ 'ନ୍ୟୁଡ୍' ଚିତ୍ରକୁ ଶ୍ରେଷ୍ଠ ବିବେଚନା କରି, ପୁରସ୍କାରଦ୍ୱାରା ତାହାକୁ ସମ୍ମାନିତ କଲେ। ଆପଣମାନେ ପଚାରିପାରନ୍ତି, ଏପରି ଏକ ମାମୁଲି ସମ୍ବାଦରେ ଚକିତ ହେବାପାଇଁ ଅଛି ବା କ'ଣ ? ଥିଲା ବା କ'ଣ ? କିନ୍ତୁ ମୋର ବିସ୍ମୟର କାରଣ ହେଉଛି, ୧୯୪୮ ମସିହାରେ ଚୀନ୍ ଭୂଖଣ୍ଡରେ କମ୍ୟୁନିଷ୍ଟ ଶାସନ ଓ ସମାଜ ପ୍ରତିଷ୍ଠିତ ହେବା ଦିନୁ, ସେ ଦେଶରେ ଏଇ ଦୀର୍ଘ ଚାଳିଶ ବର୍ଷ ମଧ୍ୟରେ 'ନ୍ୟୁଡ୍' ଚିତ୍ର ପୂରାପୂରି ନିଷିଦ୍ଧ ଥିଲା। ସେହିପରି ଆବ୍‌ଷ୍ଟ୍ରାକ୍ଟ ପେଣ୍ଟିଙ୍ଗ୍ ସୁଦ୍ଧା କମ୍ୟୁନିଷ୍ଟ ରାଷ୍ଟ୍ର ନିୟନ୍ତାମାନଙ୍କ ଦୃଷ୍ଟିରେ ଥିଲା, ଅତି ବିପଜ୍ଜନକ। ଅବକ୍ଷୟଗ୍ରସ୍ତ ବୁର୍ଜୋୟାର ବିକୃତ ରୁଚି। ତେଣୁ ହଠାତ୍ କିପରି ଗୋଟିଏ 'ନ୍ୟୁଡ୍' ଚିତ୍ରକୁ ବିଚାରକମଣ୍ଡଳୀ ଶ୍ରେଷ୍ଠ କଳାକୃତି ରୂପେ ବିବେଚନା କରି, ତାହାକୁ ପ୍ରଥମ ପୁରସ୍କାର ଦେଇ ସମ୍ମାନିତ କଲେ, ତାହାହିଁ ମୋ ପକ୍ଷରେ ଥିଲା ବିସ୍ମୟର କାରଣ ! ...ପ୍ରିୟ ପାଠକେ, କ୍ଷମା କରିବେ। ବହୁ ଚେଷ୍ଟା ସତ୍ତ୍ୱେ ଏହି ଇଂରାଜୀ 'ନ୍ୟୁଡ୍' ଶବ୍ଦର ମନଲାଖି ଓଡ଼ିଆ ପ୍ରତିଶବ୍ଦଟିଏ ମୁଁ ବାହାର କରିପାରିଲି ନାହିଁ। ବିବସ୍ତ୍ର, ଉଲ୍ଲଙ୍ଗ, ଅନାବୃତ- ଏହିପରି ଯେତେଯେତେ ଶବ୍ଦ ମନକୁ ଆସିଲା, କୌଣସିଟିରେ କିନ୍ତୁ 'ନ୍ୟୁଡ୍' ଶବ୍ଦର ତୀବ୍ର ଇନ୍ଦ୍ରିୟାନୁଗତା ପ୍ରକାଶ ପାଇପାରିଲା ନାହିଁ। 'ନ୍ୟୁଡ୍' ଶବ୍ଦଟି ଉଚ୍ଚାରଣ କରିବା ମାତ୍ରେ ସ୍ନାୟୁତନ୍ତ୍ରୀ ସବୁ ଉତ୍ତେଜନାରେ ଶିହରିତ ହୋଇଉଠେ ! ଏହି ଶବ୍ଦରେ ଅତି ବନ୍ଧନହୀନ ମୁକ୍ତି ଓ ବେପରୁଆ ଖିଆଲର ବ୍ୟଞ୍ଜନା। କିନ୍ତୁ ଉପରୋକ୍ତ ଶବ୍ଦଗୁଡ଼ିକରେ ରହିଛି କେବଳ ଅଭିଧାନ ଓ ବ୍ୟାକରଣର ମେଦୁଳ ଶୀତଳତା। ସେଥିପାଇଁ ମୁଁ ସେହି 'ନ୍ୟୁଡ୍' ଶବ୍ଦଟିକୁ ଅବିକୃତ ରଖିବାପାଇଁ ବାଧ୍ୟ ହୋଇଛି।

ହଠାତ୍ ବେଇଜିଙ୍ଗ୍‌ରେ ସେଦିନ ଅବକ୍ଷୟଗ୍ରସ୍ତ ବୁର୍ଜୋୟାର ବିକୃତ ରୁଚି ଆଜି ପ୍ରଗତିଶୀଳ ଚେତନାର ପ୍ରତୀକ ହୋଇପାରିଲା କିପରି ? କିପରି ବା ପୁଣି କମ୍ୟୁନିଷ୍ଟ ଚୀନ୍‌ରେ ଆବ୍‌ଷ୍ଟ୍ରାକ୍ଟ ପେଣ୍ଟିଂକୁ ଶ୍ରେଷ୍ଠ କଳାକୃତିର ସ୍ୱୀକୃତି ଦିଆଗଲା ? ତେବେ

ବେଇଜିଙ୍ଗ୍‌ରେ ନାରୀମାନଙ୍କର ଶୃଙ୍ଗାରଚର୍ଚ୍ଚା ଓ ପ୍ରସାଧନ ପାଇଁ ଫ୍ୟାସନ ସ୍କୁଲ୍ ପୁଣି ବିଉଟି-ପାର୍ଲର ସବୁ ଇତିମଧ୍ୟରେ ଖୋଲାଯିବା ଦିନୁ ଉଲ୍ଲଙ୍ଗିନୀର ଅନାବୃତ ଦେହର ଲୀଳାୟିତ ରେଖାସବୁ ଆବିଷ୍କାର କରିବାପାଇଁ ସେଠାରେ ଏକ କୌତୂହଳ ଜନ୍ମିଥିବା ସ୍ୱାଭାବିକ। ତାହାର ଫଳଶ୍ରୁତି ସ୍ୱରୂପ ସାଂହାଇ ଚିତ୍ରକଳା ପ୍ରଦର୍ଶନୀରେ 'ନ୍ୟୁଡ୍' ଛବିପାଇଁ ଏଇ ପୁରସ୍କାରର ଘୋଷଣା। ...ମନେପଡୁଛି, ସୋଭିଏତ୍ ରୁଷିଆର ନେତା ନିକିତା କୃଷ୍ଚେଭ୍ ଥରେ ପ୍ୟାରିସ୍‌ରେ ଏକ ଚିତ୍ରକଳା ପ୍ରଦର୍ଶନୀରେ ଗୋଟିଏ ଆବ୍‌ଷ୍ଟ୍ରାକ୍ଟ୍ ପେଣ୍ଟିଙ୍ଗ୍ ଦେଖି ଏହା ଗୋଟିଏ ଗଧ ଲାଙ୍ଗୁଡ଼ ପରି ଦିଶୁଛି ବୋଲି ଟିପ୍‌ପଣୀ କରିଥିଲେ। ତେଣୁ କମ୍ୟୁନିଷ୍ଟ ଚୀନ୍ ଭୂଖଣ୍ଡରେ ଆଜି ସେହି ଆବ୍‌ଷ୍ଟ୍ରାକ୍ଟ ପେଣ୍ଟିଙ୍ଗ୍ ସୁଦ୍ଧା କିପରି ଓ କାହିଁକି ଯେ ଶ୍ରେଷ୍ଠ କଳାକୃତି ରୂପେ ବିବେଚିତ ହୋଇପାରିଲା, ସେ ସଂପର୍କରେ ପ୍ରକୃତରେ ମନସ୍ତାତ୍ତ୍ୱିକ ଗବେଷଣାର ପ୍ରୟୋଜନ ରହିଛି।

ଉଲ୍ଲଙ୍ଗତା ହେଉଛି, ବ୍ୟକ୍ତିର ଅନାପେକ୍ଷିକ ସ୍ୱାଧୀନତାର ଶେଷ ସୀମାନ୍ତ। ମନୁଷ୍ୟ ଯେତେବେଳେ ସମାଜ, ସଂସ୍କାର ଓ ପ୍ରଥାବଦ୍ଧ ରୁଚିର ବନ୍ଧନ ସବୁ ଗୋଟିକ ପରେ ଗୋଟିଏ ଭାଙ୍ଗି ସାରି ନିଜକୁ ମୁକ୍ତ ଓ ସ୍ୱାଧୀନ ବୋଲି ଘୋଷଣା କରେ, ସେତେବେଳେ ସେ ହୋଇଥାଏ ଉଲ୍ଲଙ୍ଗ, ବିବସ୍ତ୍ର। ଉଲ୍ଲଙ୍ଗତାକୁ କିନ୍ତୁ ଦାରିଦ୍ର୍ୟର ଉଲ୍ଲଙ୍ଗତା ଠାରୁ ଅଲଗା କରି ଦେଖିବା ଉଚିତ। ଦାରିଦ୍ର୍ୟର ଉଲ୍ଲଙ୍ଗତାରେ ଥାଏ ଅଭାବ ଓ ଦାରିଦ୍ର୍ୟର ପାତନ; କିନ୍ତୁ କ୍ଲବ୍‌ର ସୁଇମିଙ୍ଗ୍ ପୁଲ୍‌ରେ ଅଥବା ସମୁଦ୍ର ବେଳାରେ ଆମେ ଯେଉଁ ଉଲ୍ଲଙ୍ଗତା ଲକ୍ଷ୍ୟକରୁ, ତାହା ହେଉଛି ପ୍ରାଚୁର୍ଯ୍ୟର ବେପରୁଆ ଉଦାମତା। କିନ୍ତୁ ଉଲ୍ଲଙ୍ଗତା ମଧ୍ୟରେ ଅନାପେକ୍ଷିକ ମୁକ୍ତି ଓ ବନ୍ଧନହୀନ ସ୍ୱାଧୀନତାର ଘୋଷଣା ସୁସ୍ପଷ୍ଟ। ସେହିପରି ଭାବରେ ଆବ୍‌ଷ୍ଟ୍ରାକ୍ଟ ପେଣ୍ଟିଙ୍ଗ୍‌ରେ ମପାଚୁପା ରେଖା ଓ ଧରାବନ୍ଧା ଫର୍ମ ବା ଆଙ୍ଗିକର ଅନୁଶାସନ ବିରୁଦ୍ଧରେ ଥାଏ ଅମୂର୍ତ୍ତ ଭାବନାର ବନ୍ଧନହୀନ ବିସ୍ତାର। ଏ ଉଭୟଟି କିନ୍ତୁ ରାଷ୍ଟ୍ର, ବିଶେଷତଃ କମ୍ୟୁନିଷ୍ଟ ରାଷ୍ଟ୍ରମାନଙ୍କ ପକ୍ଷରେ ଆଦୌ ନିରାପଦ ନୁହେଁ। କିନ୍ତୁ ଆଜି କମ୍ୟୁନିଷ୍ଟ ଦୁନିଆରେ ନୂଆ ରାଷ୍ଟ୍ରାଦର୍ଶ, ନୂଆ ସମାଜ ଓ ନୂଆ ରୁଚିର ଯେଉଁ ପ୍ରତ୍ୟନ୍ୱୟ ବା ଆଣ୍ଟିଥିସିସି କ୍ରମେ ଫିଟି ପଡୁଅଛି, ସାଂହାଇ ପ୍ରଦର୍ଶନୀରେ ଉପରୋକ୍ତ 'ନ୍ୟୁଡ୍' ଚିତ୍ରଟି ହେଉଛି, ତାହାର ସ୍ୱଚ୍ଛାର ଘୋଷଣା।

ପାଠକମାନେ ଉତ୍କଣ୍ଠିତ ହେବେଣି ଚିତ୍ରଟିର ବିଷୟବସ୍ତୁ ଜାଣିବାପାଇଁ। ଚିତ୍ରଟିର ଶୀର୍ଷକ ହେଲା- 'ଦି ଆର୍ଥ'। ବିବସ୍ତ୍ରମାନବ ଓ ମାନବୀର ଶାୟିତ ଚିତ୍ର।

ପ୍ରକୃତରେ ଧରିତ୍ରୀ କ'ଣ ବିବସ୍ତ୍ର, ଉଲ୍ଲଙ୍ଗିନୀ ନୁହେଁ ?

ଆକାଶ କ'ଣ ଉଲ୍ଲଙ୍ଗ ନୁହେଁ ? ଶିଶୁ ମଧ୍ୟ କ'ଣ ଉଲ୍ଲଙ୍ଗ ନୁହେଁ ?

୩୧/୦୧/୮୮

# ସେମାନେ ଓ ଆମେ

ଫୁଲବାଣୀର ବେଲଘର ଅଞ୍ଚଳରେ ସେଥର ଗୋଟାଏ ରେଭିନ୍ୟୁସେଡ୍‌ର ଦୁଇବଖୁରିଆ ଘରେ, ବନ୍ଧୁ ମଣୀନ୍ଦ୍ର ସହିତ ମୋତେ ପୂରା ଦୁଇଦିନ ଅଟକି ରହିବାକୁ ପଡ଼ିଥିଲା। ଚାରିପଟେ ଘେରିବେଲଘର ଅଞ୍ଚଳର ନିଘଞ୍ଚ ଜଙ୍ଗଲ ଆଉ ପରସ୍ତ ପରସ୍ତ ପାହାଡ଼। ଆଉ ତା'ରି ଭିତରେ କେଉଁଠି କେଉଁଠି ଛୋଟଛୋଟ କନ୍ଧପଲ୍ଲୀ। ଏ ସବୁ ଭାରି ଚିଟା ଲାଗିଆସିଥିଲା। ଏ ଷଷ୍ଠ ଦଶକର କଥା। ଓଡ଼ିଶା ସରକାର ସେତେବେଳେ ଆଦିବାସୀ ଗୋତିମାନଙ୍କୁ ମହାଜନ, ସାହୁକାରମାନଙ୍କ କବଳରୁ ମୁକ୍ତ କରିଦେବାପାଇଁ ଋଣଛାଡ଼ ଘୋଷଣା କରିଥାନ୍ତି- ଅର୍ଥାତ୍ ଆଉ କେହି ଆଦିବାସୀ ସାହୁକାର ମହାଜନମାନଙ୍କ ପାଖରେ ଋଣୀ ହୋଇ ରହିନାହାନ୍ତି। ତେଣୁ ସ୍ୱାଭାବିକ ଭାବରେ ସେମାନେ ଗୋତିମୁକ୍ତ। ଏଇ କାର୍ଯ୍ୟକ୍ରମ ଖୁବ୍ ସଫଳ ହୋଇପାରିଛି ବୋଲି ସରକାରୀ ମହଲରେ ଭାଷଣ, ବିବୃତ୍ତି ଓ ପ୍ରଚାରର ଅନ୍ତ ନଥିଲା। ଚକ୍ଷୁକର୍ଣ୍ଣର ବିବାଦଭଞ୍ଜନ ପାଇଁ ବନ୍ଧୁ ମଣୀନ୍ଦ୍ରଙ୍କୁ ସାଙ୍ଗରେ ଧରି ମୁଁ ଫୁଲବାଣୀ ଜିଲ୍ଲାର ଏହି ଈଶ୍ୱର ପରିତ୍ୟକ୍ତ ନିଘଞ୍ଚ ଅଞ୍ଚଳକୁ ଆସିଥିଲି। ସଙ୍ଗରେ ବାଣିଗୋଛାଠାରୁ ଜଣେ ପାଣ ଦୋ'ଭାଷୀକୁ ସଙ୍ଗରେ ଆଣିଥିଲୁ, କୁଇଭାଷୀ କନ୍ଧମାନଙ୍କ ସହିତ କଥାବାର୍ତ୍ତା ସହଜ କରିବାପାଇଁ।

ଆମେ ଆସିବାର ଉଦ୍ଦେଶ୍ୟ ତାକୁ ବୁଝାଇ କହିଲୁ। ତା'ଛଡ଼ା ସାପବିଷ ଝାଡ଼ିବା ଓ ସର୍ପବନ୍ଧନମନ୍ତ୍ର ଶିଖିବାପାଇଁ ମଣୀନ୍ଦ୍ର ମଧ୍ୟ ଖୋଜୁଥିଲା ଜଣେ କନ୍ଧଗୁଣିଆ। ଏଥିରେ, ପାଣ ଦୋଭାଷୀ ଜଣକ, ଆମର ସହାୟକ। ଅଥଚ ସେ ଆମକୁ ହେଇ ଆସୁଚି କହି, ସେଇ ରେଭିନ୍ୟୁସେଡ୍‌ରେ ବସାଇଦେଇ କୁଆଡ଼େ ଯେ ଚାଲିଯାଏ, ତା'ର ଆଉ ପତ୍ତା ମିଳେନି। ରେଭିନ୍ୟୁସେଡ୍‌ରେ ବସି ବସି ଦରସିଝା ଭାତ ଆଉ ବଣକୁକୁଡ଼ାର ଅପୂର୍ବ ଝୋଳ ଖାଇଖାଇ ଚିଟା ଭାଙ୍ଗିବାପାଇଁ ଆମେ କେବଳ ପାଖଆଖରେ ବୁଲାବୁଲି କରୁ ଆଉ ଗୋଟାଏ ମୂର୍ଖ ଖିଆଲପାଇଁ ପରସ୍ପର ଉପରେ ଦୋଷାରୋପ କରୁ।

ଏଇପରି ଭାବରେ ଆମର ଧୈର୍ଯ୍ୟଚ୍ୟୁତି ଚରମସୀମାରେ ପହଞ୍ଚିଥିଲାବେଳେ ସେହି ପାଣ ଦୋଭାଷୀ- ନାଁ ବୋଧହୁଏ ମାଇକେଲ ନାଇକ ଆସି ଖବର ଦେଲା, ବହୁ କଷ୍ଟରେ ସେ ଗୁଣିଆର ସନ୍ଧାନ ପାଇଲା। ସେ ତା' ଗାଁରେ ନଥିଲା ଆଜି କୁଆଡୁ ଫେରି ଆସିଛି। ଏବେ ବାହାରିଗଲେ ତା' ଦେଖା ମିଳିଯିବ। ଆଉ ସେ ଗାଁରେ ମଧ କନ୍ଧମାନଙ୍କୁ ଭେଟି ସେମାନଙ୍କଠାରୁ ରଣଛାଡ଼ ବିଷୟରେ ସବୁକଥା ବୁଝାଯାଇପାରିବ। ଆମେ ଆଉ କାଳବିଳମ୍ବ ନକରି ଜିପ୍‌ରେ ସଙ୍ଗେ ସଙ୍ଗେ ବାହାରି ଗଲୁ। ଦୋଭାଷୀ କହିଥିଲା, ଗାଁଟା ମୋଟେ ଡାକେ ଦି'ଡାକ ବାଟ, କିନ୍ତୁ ପାହାଡ଼ୀ ରାସ୍ତାରେ ଅନେକ ହଟ୍-ସୁ ବେଣ୍ଡ କଟାଇ ଆମେ ପତଳା ଜଙ୍ଗଲଘେରା ଗୋଟାଏ କନ୍ଧ ଗାଁରେ ପହଞ୍ଚିଲା ବେଳକୁ ଫେବୃଆରି ମାସ ଅପରାହ୍‌ଣରେ ଲମ୍ବା ଲମ୍ବା ଶୀତୁଳିଆ ଛାଇ ଚାରିଆଡ଼େ ବୁଲି ଆସିଥିଲା। ଗାଁ ମୁଣ୍ଡରେ ଗୋଟାଏ ଆଶ୍ରମ ସ୍କୁଲ। ତାଲା ବନ୍ଦ । ଆଶ୍ରମସ୍କୁଲ ପିଣ୍ଡାରେ ଜଣେ ଲେଙ୍ଗୁଡ଼ି ପିନ୍ଧା କନ୍ଧ ସଲପ ନିଶାରେ ଚିତ୍ ହୋଇ ଶୋଇଥିଲା। ଦୋଭାଷୀ ତା' ସହିତ କ'ଣ କଥାବାର୍ତ୍ତା ହେବାପରେ ଆମକୁ ସେ ବୁଝାଇଦେଲା, 'କଟିକିଆ ସ୍କୁଲ ମାଷ୍ଟର ଧାନକଟାପାଇଁ ତା' ଗାଁକୁ ପୁଷମାସଠୁ ଯାଇଚି ଯେ ଆଉ ଫେରିନାହିଁ। ଏ କନ୍ଧଟି ସ୍କୁଲ ଜଗି ଏଠି ଶୋଇଚି।' ତେଣୁ ଆଶ୍ରମ ସ୍କୁଲ ଶିକ୍ଷକଙ୍କ ଠାରୁ ତଥ୍ୟ ସଂଗ୍ରହର ସମ୍ଭାବନା ନଥିଲା।

ଆମେ ତା'ପରେ ଗାଁ ଭିତରକୁ ଆସିଲୁ। ଗାଁ କହିଲେ, ଗୁଡ଼ାଏ ଅର୍ଦ୍ଧଭଗ୍ନ ନୁଆଣିଆ ଢାଉଳିପା ଚାଳଘରର ସମଷ୍ଟି। ମଝିରେ ଗୋଟାଏ ବୁଢ଼ା ତେନ୍ତୁଳିଗଛ ମୂଳେ ଗାଁର ଝାକେରୀ ସ୍ଥାନ ବା ଗ୍ରାମ ଦେବତାଙ୍କ ଆସ୍ଥାନ। ଆମ ଜିପ୍ ସେଇଠାରେ ଅଟକିବା ମାତ୍ରେ ଦଳେ ଲେଙ୍ଗୁଟି ପିନ୍ଧା କନ୍ଧ ଆମପାଖକୁ ଛୁଟି ଆସିଲେ। କାହାରି କାହାରି ଦେହରେ ଖଣ୍ଡେ ଖଣ୍ଡେ ଛିଣ୍ଡାଜାମା ଅଥବା ଭୋଟ କମ୍ବଳ। ବିସ୍ମୟ ଓ କୌତୂହଳରେ କିନ୍ତୁ ଆମପ୍ରତି ସେ ଆଖି ମାନଙ୍କରେ ସନ୍ଦେହ ଓ ଅବିଶ୍ୱାସ ଅତି ସୁସ୍ପଷ୍ଟ। ମୁହଁ ସବୁ ସେମାନଙ୍କର ପଥରରେ ଖୋଳା ମୁହଁ ପରି ନିସ୍ପୃହ ଓ ନିର୍ଲିପ୍ତ।

ମୁଁ ଖଣ୍ଡେ ନୋଟ୍‌ଖାତା ପକେଟରୁ କାଢ଼ି ଗ୍ରାମର ନାମ ଇତ୍ୟାଦି ଲେଖିସାରିବା ପରେ ପୂରା ପ୍ରଫେସନାଲ କାଇଦାରେ ପଚାରିଲି... "ତୁମର ଏଇ ଗାଁରେ ଏବେ କେତେଜଣ ଗୋତି ଅଛନ୍ତି।" ଦୋଭାଷୀ ମୋ'ର ପ୍ରଶ୍ନ ସେମାନଙ୍କୁ କୁଇଭାଷାରେ ବୁଝାଇଦେଲା। ସେମାନେ କେହି କୌଣସି ଉତ୍ତର ଦେଲେନାହିଁ। ଦୋଭାଷୀକୁ ମୋ' ପ୍ରଶ୍ନ ଆଉଥରେ ବୁଝାଇ ଦେବାପାଇଁ କହିଲି। ସେଇ କନ୍ଧମାନଙ୍କ ଭିତରେ ଦରବୁଢ଼ା, ଡେଙ୍ଗାଲୋକଟିଏ ଠିଆ ହୋଇଥିଲା। ସେ ମଧ ଲେଙ୍ଗୁଟା ପିନ୍ଧି ଘୋଡ଼େଇ ହୋଇଥିଲା ଗୋଟାଏ ଭୋଟ୍ କମ୍ବଳ। କନ୍ଧମାନଙ୍କ ମେଳରେ ସେ ଦିଶୁଥିଲା ଅନ୍ୟ କନ୍ଧଙ୍କ ପରି। ତା' ମୁଣ୍ଡ ଠେକାରୁ ବାହାରକୁ ଉଙ୍କି ମାରୁଥିଲା ଶାଳପତ୍ରରେ ମୋଡ଼ା ଖଣ୍ଡେ ଠେକା ବା ଧୂଙ୍ଗିଆ।

ସେ ଅଧା ଓଡ଼ିଆ, ଅଧା କୁଇ ବୋଲିରେ ମୁଣ୍ଡ ହଲାଇ ହଲାଇ କହିଲା... "ନାଇଁ ମହାପ୍ରୁ! ଆମ ଏ ଗାଁରେ ଆଉ କେହି ଗୋତି ନଥିବାର ଏକା। କେହି ଆଉ ମହାଜନ, ସାହୁକାର ପାଖରେ ଖାତକ ନଥିବାର ଏକା।" ଏହାପରେ ଆଉକିଛି ବୁଝିବାପାଇଁ ନଥିଲା। ଆମେ ଗୁଣିଆର ସାକ୍ଷାତ ପାଇଲୁ ନାହିଁ। ଡାହାଣୀ ଛଡ଼ାଇବାପାଇଁ ଅଳ୍ପପୂର୍ବେ ସେ ପୁଣି ଆଉକୋଉ ଗାଁକୁ ଚାଲିଯାଇଥିଲା।

ଫୁଲବାଣୀ ଟାଉନ୍‌କୁ ଆମେ ଫେରିଆସିବାପରେ ପାଣଦୋଭାଷୀ ତା' ବିଦାକି ନେଇ ଚାଲିଗଲା। ମଣୀନ୍ଦ୍ରର ମନଖରାପ। ସର୍ପମନ୍ତ୍ର ସେ ସଂଗ୍ରହ କରିପାରିଲା ନାହିଁ। ମୁଁ ଖୁସି, ସରକାରଙ୍କର ପ୍ରଚାରିତ ଗୋତିମୁକ୍ତି ଯୋଜନା ପ୍ରକୃତରେ ସଫଳ ହୋଇପାରିଛି।

ଡ୍ରାଇଭର ବାଲିଗୁଡ଼ାର ବାସିନ୍ଦା। ସିଏ ଆମ କଥାବାର୍ତ୍ତା ଶୁଣି ମୁରୁକି ମୁରୁକି ହସି କହିଲା, "ସେ ଗାଁରେ ଯେଉଁ ବୁଢ଼ାଟି ଆଉ କେହି ଗୋତି ନାହାନ୍ତି କି ସାହୁକାର ମହାଜନର ଖାତକ ନାହାନ୍ତି ବୋଲି କହିଥିଲା, ସିଏ ନିଜେ ହେଉଛି ଗୋଟାଏ ମଦଭାଟି ଠିକାଦାର ଆଉ ସାହୁକାର। ସେ ଗାଁରେ ସମସ୍ତେ ତା'ର ଗୋତି।" ମଣୀନ୍ଦ୍ର ଆଉ ମୁଁ ହଠାତ୍ ସେଠାରେ ଗୋଟାଏ ଭୂତ ଦେଖିବାପରି ଚମକି ଉଠିଲୁ। ମୋର ବୁଝିବାପାଇଁ ଆଉ ବାକି ରହିଲାନାହିଁ ଯେ ଏହିପରି ତଥ୍ୟ ସଂଗ୍ରହ ସେତେବେଳେ ଚାଲିଥିଲା ଓ ଏବେ ମଧ ଚାଲିଛି ଆଦିବାସୀମାନଙ୍କ ପାଇଁ ଗୋତିମୁକ୍ତି ଓ ସେହିପରି ଅନ୍ୟସବୁ କଲ୍ୟାଣକର ଯୋଜନା। ସେମାନେ ସାହୁକାର ଶୋଷକମାନଙ୍କୁ ଯେତେ ବିଶ୍ୱାସ କରନ୍ତି, ଆମ ପାଖରୁ ସନ୍ଦେହ ଓ ଅବିଶ୍ୱାସରେ ସେତିକି ଦୂରଛଡ଼ା ହୋଇ ରହନ୍ତି। ଆମର ହାକିମ ମହାପ୍ରୁମାନେ ସେ ଦୂରତ୍ୱକୁ ଆହୁରି ବଢ଼ାଇ ଦିଅନ୍ତି ସିନା, କମାଇ ପାରନ୍ତି ନାହିଁ। ଭୁବନେଶ୍ୱରରେ ତତ୍‌କାଳୀନ ମୁଖ୍ୟମନ୍ତ୍ରୀଙ୍କୁ ଏକଥା କହିଲି। ସେ ମୋ କଥା ବିଶ୍ୱାସ କଲେ ନାହିଁ ଓ ଆଦିବାସୀମାନଙ୍କର ଉତ୍‌ଥାନ ପାଇଁ ସରକାର କ'ଣ କ'ଣ କରୁଛନ୍ତି ତା'ର ଗୋଟାଏ ଫରିସ୍ତା ଦେଲେ। ମୁଁ ସ୍ମିତହସି ଉତ୍ତର ଦେଇଥିଲି, "ଆପଣମାନେ ସବୁ ଦେଉଛନ୍ତି, ସବୁ କରୁଛନ୍ତି ଠିକ୍, କିନ୍ତୁ ସାହୁକାର ମହାଜନମାନଙ୍କୁ ସେମାନେ ଆପଣମାନଙ୍କଠାରୁ ବେଶୀ ବିଶ୍ୱାସ କରନ୍ତି। ଆପଣମାନେ ସବୁ ଦେଉଛନ୍ତି, କିନ୍ତୁ ଦେଇପାରୁ ନାହାନ୍ତି ହୃଦୟ ଓ ପତିଆରା।" ମୁଖ୍ୟମନ୍ତ୍ରୀ ମହୋଦୟଙ୍କର ଟିପଣୀ ଥିଲା, "ତୁମେ ଗୋଟାଏ ସିନିକ୍"।

୦୭/୦୨/୮୮

# ସଭ୍ୟତାର ଅଭିଶାପ

ପାଖରେ କାହା ଗୁହାଳରୁ ଦିନସାରା ଗୋଟାଏ ଗାଈ ରହିରହି ଯେତେବେଳେ ହମ୍ବାରଡ଼ି ଦିଏ, ମୋର ଚାରିପଟେ ଘେରି ରହିଥିବା ଜମାଟବନ୍ଧା କଙ୍କରିଳ ସ୍ତବ୍ଧତା ଗୋଟାଏ ଶାଣିତ ଛୁରିକାଘାତରେ ଯେପରି ଆର୍ତ୍ତନାଦ କରିଉଠେ। ସନ୍ଧ୍ୟାପରେ କିନ୍ତୁ ସେ ହମ୍ବାରଡ଼ି ଆଉ ଶୁଭେ ନାହିଁ। ସିଏ ତ ହମ୍ବାରଡ଼ି ନୁହେଁ... ଯେପରି କେଉଁ ଅତଳ ଗହ୍ୱର ଭିତରୁ ଗୋଟିଏ ଉତ୍ପୀଡ଼ିତ ଆତ୍ମାର ଆର୍ତ୍ତନାଦ। ଆର୍ତ୍ତନାଦ, ସେ ଯନ୍ତ୍ରଣାବିଦ୍ଧ ଚିତ୍କାର, ମୋତେ ଲାଗେ, ଗୋଟାଏ ପ୍ରତିବାଦର ସ୍ୱର ପରି। ସନ୍ଧ୍ୟା ପରେ ଅବଶ୍ୟ ସେ ଗାଈର ହମ୍ବାରଡ଼ି ଆଉ ଶୁଭେ ନାହିଁ। ସବୁ ଚୁପ୍‌ଚାପ୍। ସବୁ ଶାନ୍ତ। କିନ୍ତୁ ସକାଳେ ପୁଣି ଆରମ୍ଭ ହୋଇଯାଏ, ସାରାଦିନ ରହିରହି... ସେଇ ଚିତ୍କାର... ସେଇ ଆର୍ତ୍ତନାଦ... ସେଇ ହମ୍ବାରଡ଼ି। ଏହାର ରହସ୍ୟ ମୁଁ ବୁଝିପାରେ ନାହିଁ।

ଦିନେ ଆମ କ୍ଷୀରବାଲା ଗୁଆଲାକୁ ପଚାରିଲି, "ଏ ଗାଈଟା ଏପରି ହମ୍ବାରଡ଼ି ଦେଉଛି, କାହିଁକି ?" ସେ ଉତ୍ତର ଦେଲା, "ଗାଈଟା ବାଛୁରୀକୁ ଖୋଜୁଛି !" କିନ୍ତୁ ଗାଈ ତା' ବାଛୁରୀକୁ କାହିଁକି ଏପରି ବିକଳ ଭାବରେ ଖୋଜୁଛି ବୋଲି ପଚାରିବାରୁ ସେ ଈଷତ୍ ବିରକ୍ତ କଣ୍ଠରେ ଉତ୍ତର ଦେଲା, "କ୍ଷୀର ଦେବାପାଇଁ ତ ଆଉ କ'ଣ ?" ଗାଈର ହମ୍ବାରଡ଼ିଠାରୁ ଗୁଆଲାର ଏ ଉତ୍ତର ମୋତେ ଆହୁରି ପ୍ରହେଳିକାପୂର୍ଣ୍ଣ ଲାଗିଲା। ଗାଈ ବାଛୁରୀକୁ କ୍ଷୀର ଦେବ, ଇଏ ତ ମାମୁଲି ସାଧାରଣ କଥା। ସେଥିପାଇଁ ଏବେ ହମ୍ବାରଡ଼ିର କି ପ୍ରୟୋଜନ ବା ଅଛି ? ସେଇ କଥା ପଚାରିବାରୁ, ବୁଢ଼ା ଗୁଆଲା ମୋ' ଆଡ଼େ ଯେପରି ବଲବଲ ଆଖିରେ ଚାହିଁଲା, ସେଥିରୁ ମନେହେଉଥିଲା, ଯେପରି ବା ଜୀବନରେ ସର୍ବପ୍ରଥମଥର ପାଇଁ ସେ ଗୋଟାଏ ନିର୍ବୋଧ ଅଥବା ପାଗଳକୁ ଦେଖିଲା। ସେ ସଂକ୍ଷେପରେ କହିଲା, "ଗାଈ ମାଲିକ ବାଛୁରୀକୁ ମା'ଠାରୁ ଦୂରରେ କେଉଁଠି ବାନ୍ଧି ରଖିଛି। ଗାଈ ପହ୍ନାରେ କ୍ଷୀର ଭିଡ଼େଇବାବେଳେ ଗାଈକୁ କଷ୍ଟ ହେଉଛି। ସେ ତା' ବାଛୁରୀକୁ ଖୋଜୁଛି ପହ୍ନାରୁ କ୍ଷୀର ପିଆଇ ଦେଲେ, କଷ୍ଟ ରହନ୍ତା ନାହିଁ। ହେଲେ ବାଛୁରୀକୁ ପାଉନାହିଁ।" କିନ୍ତୁ ବାଛୁରୀକୁ

ସେମାନେ ଗାଈଠାରୁ ଅଲଗେଇ ରଖିଛନ୍ତି କାହିଁକି ବୋଲି ପଚାରିବାରୁ, ଗୁଆଲା ଏଥର ପ୍ରକୃତରେ ଭାରି ବିରକ୍ତ ହୋଇ ଉତ୍ତର ଦେଲା, "କ'ଣ ଏତିକି ବୁଝିପାରୁ ନାହଁ ମ ? ବାଛୁରୀ ତ ସବୁ କ୍ଷୀର ପିଇଯିବ- ମାଲିକ ଆଉ ପାଇବ କ'ଣ ? ବିକିବ କ'ଣ ?"

ଗୁଆଲା ଚାଲିଯିବା ପରେ, ପୁଣି ସେଇ ନିର୍ଜନ ସ୍ତବ୍ଧତା ଆଉ ତା' ସାଙ୍ଗରେ ମିଶିଗଲା, ହମ୍ବାରଡ଼ିର ଅବ୍ୟକ୍ତ ବିଷାଦ। ହଠାତ୍ ମୋର ମନେପଡ଼ିଗଲା, ବହୁ ବର୍ଷ ତଳେ, ଫୁଲବାଣୀର ବେଲଘର ଅଞ୍ଚଳରେ ସେଇ ରେଭିନ୍ୟୁ ସେଡ୍‌ର କଥା। ସକାଳେ 'ବେଡ୍ ଟି'ପାଇଁ କେଉଁଠି ହେଲେ ଟୋପାଏ କ୍ଷୀର ମିଳିଲା ନାହିଁ। ଚୌକିଦାର ଜଣକ କଳାହାଣ୍ଡି ଅଞ୍ଚଳର ଲୋକ। ଅନେକ ଦିନୁ ସେ ସେଠାରେ ରହି ଯାଇଥିଲା। ସେ କହିଲା, "ଇଆଡ଼ିକା ମଣ୍ଷମାନେ ଗୁରସ୍ ନାଇଁ ଖାଇବା ! ହେଥିପାଇଁ ସେନ୍‌ମାନେ ଗାଈ ନାଇଁ ରଖିବାର। କିଲଟର ଥରେ ବାଲିଗୁଡ଼ା ଆଡୁ ଗାଈ ଆଣି କନ୍ଧିଆମାନଙ୍କ ଭିତରେ ବାଣ୍ଟିଥିଲା। ସେ ଗାଈକୁ ବାଘ ଖାଇଲା କି ମଣ୍ଷ ଖାଇଲା, କେ ଜାଣ୍‌ଛେଁ ୧ ।" ଆଶ୍ଚର୍ଯ୍ୟ କଥା, ଏମାନଙ୍କର ଗାଈ କ୍ଷୀର ପ୍ରତି ଅଶ୍ରଦ୍ଧା କାହିଁକି ? ନିଜେ ନଖାଇଲେ ତ ନିଶ୍ଚୟ ବିକ୍ରି କରିପାରନ୍ତେ ! ଚୌକିଦାର କହିଲା, "ଏ କନ୍ଧିଆମାନେ କହନ୍, ଗୁରସ୍ ଉପରେ ବାଛୁରୀର୍ ହକ୍। ସେନ୍‌ମାନେ ବାଛୁରୀ ମୁହଁରୁ ତା' ଆଧାର ଛଡ଼ାଇ ନେବେ କେନ୍‌ଥି ପାଇଁ ? ସେନ୍‌ମାନେ କ୍ଷୀର ଦୁହଁନ୍ତି ନାଇଁ ! ବାଛୁରୀ କ୍ଷୀର ପିଇଯାଏ।"

ସେଇ କଥା ମନେ ହିଁ ପଡ଼ିଗଲା, ସଭ୍ୟତାର ଏ ଅରଣ୍ୟ ଭିତରେ। ମୋର ମନେହେଲା, ସବୁ ସଭ୍ୟତାର ଭିତ୍ତି ହେଉଛି ଶୋଷଣ ଓ ଲୁଣ୍ଠନ। ଦୁର୍ବଳକୁ ଶୋଷଣ କରି ଗଢ଼ିଉଠେ ସବୁ ସଭ୍ୟତାର ମୀନାର। ମଣିଷ ଇ ହେଉଛି ମଣିଷର ସବୁଠାରୁ ବଳି ଶୋଷକ। ସିଏ ରାଷ୍ଟ୍ର ହେଉ, ସାହୁକାର ମହାଜନ ହେଉ, ସବୁ ପ୍ରକାରଭେଦ ମାତ୍ର। ସେଇଦିନୁ ମୁଁ ଭାବି ଆସୁଛି ମଣିଷ ଯଦି କେଉଁଦିନ ଅଭିବ୍ୟକ୍ତିର କୌଣସି ଏକ ପର୍ଯ୍ୟାୟରେ, ଆଦର୍ଶ ସଂସ୍କୃତିସମ୍ପନ୍ନ ମଣିଷ ହୋଇପାରେ, ତା'ହେଲେ ସେ ହେବ ଜଣେ ଲେଙ୍ଗୁଟୀ ପିନ୍ଧା ଆଦିବାସୀ। ଅବଶ୍ୟ ତା'ଠାରେ ରହିବ, ଶୁଚିବୋଧ, ଶିକ୍ଷା ଓ ସଂସ୍କୃତି ! ସେଇଦିନ କେବଳ ଶୋଷଣମୁକ୍ତ ସମାଜ ସମ୍ଭବ ହୋଇପାରିବ। କିନ୍ତୁ ସେ ଶିକ୍ଷା ଓ ସଂସ୍କୃତିସମ୍ପନ୍ନ ହେବାପରେ ପୁଣି ଯେ ଏକ ଶୋଷକ ସାଜି, ଗାଈ ଦୁହିଁବାପାଇଁ ବାଛୁରୀକୁ ଅଲଗା କରି ନରଖିବ, ତା'ର କୋଉ ସ୍ଥିରତା ଅଛି ? ସଭ୍ୟତା ପ୍ରକୃତରେ ଏକ ଅଭିଶାପ !

ପୁଣି ଶୁଭିଲାଣି, କେଉଁଠୁ ସେଇ ଗାଈର ଅଶାନ୍ତ ହମ୍ବାରଡ଼ି। ତା'ର ବାଛୁରୀ କେଉଁଠୁ କ୍ଷୀଣ କଣ୍ଠରେ ଦେଉଛି ତା'ର ଦୁର୍ବଳ ପ୍ରତ୍ୟୁତ୍ତର। ସେ ଅସହାୟ... ସେ ଖୁଣ୍ଟରେ ବନ୍ଧା ହୋଇ ପଡ଼ିଛି। ଗାଈର ପହ୍ନାରେ କିନ୍ତୁ ସ୍ତନ୍ୟର ଯନ୍ତ୍ରଣା !

୧୪/୦୨/୮୮

# ଗୋଟିଏ କ୍ରିକେଟ୍ ପିଚ୍‌ର କାହାଣୀ

ମାଘ ମାସର ଗୋଟାଏ ଶୀତୁଳିଆ ଅପରାହ୍ଣ । 'ଷଡ଼ି' ନାମରେ କଥିତ ମୋର କୋଠରିର ଖୋଲା ଝରକା ବାଟେ କୃଷ୍ଣଚୂଡ଼ା ଡାଳ ଉପରେ ଚେନାଏ ମହଳ ଖରା ଆଡ଼େ ଅନ୍ୟମନସ୍କ ଦୃଷ୍ଟିରେ ଚାହିଁ ମୁଁ ବସିଥିଲି । ବାହାରପଟ ସିମେଣ୍ଟ ଅଗଣାଟା ନିଶୂନ, ନିସ୍ତବ୍ଧ ହୋଇ ଯେପରି ଅପରାହ୍ଣର ଖରାରେ ମୁହଁମାଡ଼ି ଶୋଇଥିଲା । ଗତକାଲିଠାରୁ ବୁବୁନ୍ ଦଳର କ୍ରିକେଟ୍ ପିଚ୍ ଏଠାରୁ ଉଠିଯାଇଛି ବା ଉଠାଇ ଦିଆଯାଇଛି । କ୍ରିକେଟ୍‌ସ ଅତ୍ୟାଚାରରେ ବାହାରେ ଅଧିକାଂଶ ଫୁଲକୁଣ୍ଡଙ୍କର ଅବସ୍ଥା କ୍ରମେ ଅତ୍ୟନ୍ତ ଉଦ୍‌ବେଗଜନକ ହୋଇ ଉଠିଲା । ବଲ୍ ମାଡ଼ରେ କେଉଁ ଫୁଲକୁଣ୍ଡର ପେଟ ଫାଟି ଅନ୍ତବୁଜୁଳା ବାହାରି ପଡ଼ିବା ପରି ମାଟି ଆଉ ଚେର ପଦାକୁ ବାହାରି ପଡ଼ିଥିଲା ତ ଆଉ କେଉଁ ଫୁଲକୁଣ୍ଡ ଚଉଚୀର ହୋଇ ଫାଟି ପଡ଼ିଲା । କେଉଁ ଗଛର ଡାଳ ଭାଙ୍ଗି ବଡ଼ ବିଷଣ୍ଣ ଭାବରେ ତଳକୁ ଝୁଙ୍କି ପଡ଼ିଲା ତ କେଉଁ ଗଛରୁ ଫୁଲ ପାଖୁଡ଼ା ସବୁ ତଳେ ଛିନ୍‌ଭିନ୍ ହୋଇ ଝରି ପଡ଼ିଲା । ଛୋଟିଆ ଲନ୍‌ଟିର ଅବସ୍ଥା ନ କହିବା ଭଲ । ତାହା କ୍ରମେ ଦେଖାଗଲାଣି ବହୁଦିନୁ ଅବସରପ୍ରାପ୍ତ କୌଣସି ବୃଦ୍ଧଙ୍କର ଚନ୍ଦାମୁଣ୍ଡ ପରି । ଏହି ପରିସ୍ଥିତିରେ ଘରର ମୁରବୀ ଲୋକମାନେ ସିମେଣ୍ଟ ଅଗଣାରୁ ବୁବୁନ୍ ଦଳର କ୍ରିକେଟ ପିଚ୍‌କୁ ନିର୍ବାସିତ କରି ଦେଇଥିଲେ ।

ସେଦିନ ଅପରାହ୍ଣରେ ବୁବୁନ୍ (୮) ଓ ତା'ର ବଡ଼ ଭଉଣୀ ସେରୀ (୯) ହଠାତ୍ ମୋ ପାଖକୁ ଯେପରି କିଛି ଗୋଟାଏ ଅନୁଯୋଗ ନେଇ ମୋ 'ଷଡ଼ି' ଭିତରକୁ ଆସିଲେ । ଏହାକୁ ଯେ କହନ୍ତି 'ଆଇରନିକ୍' ବା ବିଡ଼ମ୍ବନା । ଏଇ କେତେଦିନ ତଳେ ବୁବୁନ୍ ତା'ର ଜନ୍ମଦିନରେ ପାଇଥିଲା ଗୋଟାଏ ଅର୍ଖ ନୂଆ କ୍ରିକେଟ୍ ବ୍ୟାଟ୍, ବଲ୍, ଓ୍ୱିକେଟ୍, କେଟସ୍ ଜୋତା, ପ୍ୟାଡ୍, ଗ୍ଲୋଭସ୍ ଆଉ କ୍ୟାପ୍ ପ୍ରଭୃତି ଉପହାର । କିନ୍ତୁ ସେ ସବୁ ପୋଷାକ ପିନ୍ଧି ଖେଳିବାକୁ ବାହାରିବା ବେଳକୁ କ୍ରିକେଟ୍ ପିଚ୍‌ଟି ନିର୍ବାସିତ ହୋଇ ଯାଇଥିଲା । ବୁବୁନ୍ ସେଦିନ ସେରୀକୁ ଧରି ଆସିଥିଲା, ମୋର ମୋରାଲ୍ ସପୋଟ୍‌ପାଇଁ ।

ସେରୀର କିନ୍ତୁ କ୍ରିକେଟରେ ଆଗ୍ରହ ନାହିଁ । ସିଏ କାହିଁକି ଆସିଥିଲା, ସେକଥା ଇତି ମଧ୍ୟରେ ପୂରାପୂରି ଭୁଲିଯାଇ ଓଡ଼ିଶୀ ନୃତ୍ୟ ଶିକ୍ଷାର ଷ୍ଟେପିଙ୍ଗ୍ ଆରମ୍ଭ କରି ଦେଇଥିଲା ।

ବୁବୁନ୍ ଅଗତ୍ୟା ବିଷଣ୍ଣ କଣ୍ଠରେ କହିଲା, "ଆମକୁ ଖେଳିବାକୁ ଦଉ ନାହାନ୍ତି । ତମେ କହ ।" ମୁଁ କହିଲି, "ବୁବୁନ୍ ! ମୋ ରୀଟ୍ ଏ ରାଜ୍ୟରେ ଆଜିକାଲି ଅଚଳ ହୋଇ ପଡ଼ିଛି । କିନ୍ତୁ ଫୁଲକୁଣ୍ଡର ଗଛ ଆଉ ଫୁଲମାନଙ୍କର ନାଲିସ ଶୁଣିବା ପରେ, ପୁଣି ସେମାନଙ୍କର ଅବସ୍ଥା ଦେଖିବା ପରେ, ମୁଁ ଆଉ ତମ ପକ୍ଷରେ ନାହିଁ ।" ବୁବୁନ୍ ପିନ୍ଧିଥିଲା କେଟ୍‌ସ, ପ୍ୟାଣ୍ଟ, ଆଉ ପ୍ୟାଡ୍ ସମେତ ପୂରା ୟୁନିଫର୍ମ । ମୋତେ ତା' ପକ୍ଷକୁ ଢଳାଇବାପାଇଁ ସେ କରୁଣ କଣ୍ଠରେ ପଚାରିଲା, "ସେମାନେ ଖେଳିବେ କେଉଁଠି ?" ମୁଁ କହିଲି, "ବୁନୁନ୍, ଆଜିଠାରୁ ତୁମର ପ୍ରଥମ ଶିକ୍ଷାରମ୍ଭ ହେଉଛି । ପ୍ରଥମ କଥାଟି ମନେରଖ- ଜଗନ୍ନାଥ କାହାକୁ ପୂରା ଗିଲାସେ ପାଣି ପିଇବାପାଇଁ କେବେ ଦେଇ ନାହାନ୍ତି । କାହାକୁ ଚଉଠ ଗ୍ଲାସ୍, କାହାକୁ ତା'ଠୁ କମ୍ । କାହାକୁ ବା ଅଧେ । କାହାରି ଶୋଷ ଏଥିରେ ମରେ ନାହିଁ । ଜନ୍ମ ଦିନରେ ମୁଁ ଏସବୁ ପ୍ରେଜେଣ୍ଟ, ଧର ଚଉଠ ଗ୍ଲାସ୍ ପାଇଛି ବାକିତକ ତ ମିଳିବ ନାହିଁ । କ'ଣ କରି ପାରିବି ?"

ବୁବୁନ୍ ନିରୀହ କଣ୍ଠରେ ପଚାରିଲା, "ଜଗନ୍ନାଥ କାହିଁକି ଦିଅନ୍ତି ନାହିଁ ?" "ମୁଁ କ'ଣ ଜାଣିଛି ।" ତା' ଛଡ଼ା ମୋ ଉତ୍ତର ଦେବାପାଇଁ ଆଉ ଥିଲା ବା କ'ଣ ?"

କିନ୍ତୁ ଜଗନ୍ନାଥଙ୍କର ଚିତ୍ରପଟ ଆଡ଼େ ଚାହିଁ ସେତେବେଳେ ମୋର ମନେହେଲା, ବୁବୁନ୍‌ର ନିରୀହ ପ୍ରଶ୍ନରେ ଜଗନ୍ନାଥ ବୋଧହୁଏ ଟିକିଏ ମଳିନ ଦିଶିଲେ । ବୁବୁନ୍ ପଚାରିଲା, "ଗିଲାସେ ପୂରା ହେବ କେମିତି ?" ମୁଁ ଉତ୍ତର ଦେଲି, "ସେ ବୁଦ୍ଧି ତୁମମାନଙ୍କର ନିଜର ।" ବୁବୁନ୍ କ'ଣ ବୁଝିଲା କେଜାଣି, ପ୍ୟାଣ୍ଟର ଦୁଇ ପକେଟରେ ଦୁଇ ହାତ ପୂରାଇ ସେଠାରୁ ଗମ୍ଭୀର ଭାବରେ ଚାଲିଗଲା ।

ତା' ପରଦିନଠାରୁ ଘର ସାମନାର ପିଚୁ ରାସ୍ତାରେ ଆରମ୍ଭ ହୋଇଗଲା ବୁବୁନ୍ ଦଳର କ୍ରିକେଟ୍ ପିଚ୍ । ସେମାନଙ୍କର ରେ...ରେ କାର ରବ, ବଲ୍ ଫିଙ୍ଗା ଓ ବ୍ୟାଟିଂରେ ଜଣେ ଦୁଇଜଣ ସାଇକେଲ୍‌ବାଲା ସାଇକେଲ୍‌ରୁ ଖସିପଡ଼ିଲେ । ଜଣେ ସ୍କୁଟରବାଲା ଅଳ୍ପକେ ଗୋଟିଏ ଆକ୍ସିଡେଣ୍ଟରୁ ବର୍ତ୍ତିଗଲେ । ବଲ୍ କେଉଁ ପ୍ରତିବେଶୀଙ୍କ ଠାକୁର ଘରେ ପଡ଼ିଲାଣି ତ କାହା ବେଡ୍‌ରୁମ୍‌ରେ ଯାଇ ହାଜର । ସେଇ ରାସ୍ତାରେ ପାଖ ପଡ଼ାର ଜଣେ ବୃଦ୍ଧ ପ୍ରତିବେଶୀ ଦିନେ ସାନ୍ଧ୍ୟ ଭ୍ରମଣରେ ବାହାରି ଥିଲେ । ବୋଧହୁଏ ହିମାଳୟ ଉପରେ ଶୀତରୁ ରକ୍ଷା ପାଇବାପାଇଁ ତାଙ୍କ ପରି ଏତେ ଗରମ ପୋଷାକ ଆଉ କେହି ପିନ୍ଧୁ ନଥିବେ । ମୁଣ୍ଡରେ ଗୋଟାଏ ତିନିକୋଣିଆ ଚୂଳ ବାଲା ଉଲେନ୍ ଟୋପି । ବେକରେ ପରସ୍ତେ ବହଳିଆ ମଫଲର୍ । ବେକଠାରୁ ଆଣ୍ଠୁ ତଳ ପର୍ଯ୍ୟନ୍ତ ଗୋଟାଏ ମୋଟା ଓଭରକୋଟ୍ ।

ସେ ରାସ୍ତା ମଝିରେ ଧୀର ପାଦରେ ଚାଲିଚାଲି ଯାଉଥିଲେ ଠିକ୍ ମାଘ ମାସର ସନ୍ଧ୍ୟା ଧୀରେ ଧୀରେ ମାଡ଼ି ଆସିବା ପରି । କ୍ରିକେଟ୍ ଦଳର କେହି ବୋଲିଂ କଲାବେଳେ ବଲ୍‌ଟା ତାଙ୍କ ପଛ ପାଖ ଅଣ୍ଟା ତଳର ଗୋଟାଏ ବିଶେଷ ସ୍ପର୍ଶାତୁର ସ୍ଥାନରେ ବାଜିଗଲା । ସେ ଫେରିପଡ଼ି ଚାହିଁବା ବେଳକୁ ଯେଉଁମାନେ ଖେଳୁଥିଲେ ସେମାନେ କିଏ କୁଆଡ଼େ ଆଖପାଖ ପାଚେରି ଡେଇଁ ନିପତ୍ତା ହୋଇ ସାରିଥିଲେ ।

ଭଦ୍ରଲୋକ ମୋର ପରିଚିତ ବ୍ୟକ୍ତି । ମୋତେ ବାରଣ୍ଡାରେ ବସି ହସୁଥିବା ଦେଖିପାରି ସେ ମୋ ପାଖକୁ ଆସି ବେଶ୍ କଡ଼ା ଗଳାରେ ପଚାରିଲେ, "ଆପଣଙ୍କ ଘର ଆଗରେ ଏସବୁ କ'ଣ ଚାଲିଛି ? ଏଇ ପିଲାଗୁଡ଼ାକ ଉପରକୁ ବଲ୍ ପକାଉଛନ୍ତି ।" ମୁଁ ତାଙ୍କୁ ଶାନ୍ତ କଣ୍ଠରେ ଉତ୍ତର ଦେଲି, "ସେମାନେ ପାଇଥିଲେ ଗିଲାସରେ ପାଏରୁ ସୁଦ୍ଧା କମ୍ ପରିମାଣର ପାଣି । ସେଥିରେ ଶୋଷ ମେଣ୍ଟିଲା ନାହିଁ ତ । ସେଥିପାଇଁ ସେମାନେ ତାଙ୍କ ନିଜ ବୁଦ୍ଧିରେ ଗିଲାସଟାକୁ ପୂର୍ଣ୍ଣ କରୁଛନ୍ତି । ମୁଁ ତ ନିରୁପାୟ ।" ଭଦ୍ରଲୋକଙ୍କର କ୍ରୋଧ ଶାନ୍ତ ପଡ଼ିନଥିଲା । ସେ ପଚାରିଲେ, "ତା' ବୋଲି ଆମ ଉପରକୁ ବଲ୍ ପକାଇବେ ?" ମୁଁ ଉତ୍ତର ଦେଲି, "ଆମ ଭାଗ୍ୟ ଭଲ । ଏବେ କ୍ରିକେଟ୍ ବଲ୍ ପଡୁଛି । ଆଉ ଦଶବର୍ଷ ପରେ ଆମ ଉପରକୁ ଏମାନେ ଯେ ହ୍ୟାଣ୍ଡ୍‌ଗ୍ରେନେଡ୍ ନ ପକାଇବେ, ଆଉ ଏ ଗଳି ରାସ୍ତାମାନଙ୍କରେ ବଙ୍କର ସବୁ ତିଆରି ନ କରିବେ, ତା'ର କୋଉ ସ୍ଥିରତା ଅଛି ? ଜାଫନାର କାଣ୍ଡ କାରଖାନା ସବୁ ଦେଖୁଛନ୍ତି ତ ।" ଭଦ୍ରଲୋକ କ'ଣ ବୁଝିଲେ କେଜାଣି ମୋ ଉପରେ ସବୁ ରାଗ ଓଜାଡ଼ି ବିସ୍ଫୋରଣ କଲେ, "ଆପଣ ହିଁ ଏଥିପାଇଁ ଦାୟୀ ।" ଭଦ୍ରଲୋକ ସେଇଠାରୁ ତାଙ୍କ ଘରମୁହାଁ ଫେରିଗଲେ ।

ମୁଁ ପଛକୁ ଫେରିପଡ଼ି ଚାହିଁ ଦେଖେ, ବୁବୁନ୍ କବାଟ ଉହାଡୁ ଉଙ୍କି ମାରି ଏ ଦୃଶ୍ୟ ଦେଖୁଛି ଓ ତା' ବିରୋଧରେ ନାଲିସ ଶୁଣୁଛି । ସିଏ ଚାଲିଯିବା ପରେ ମୁଁ କହିଲି, "ନାଓ କମ୍ ଅନ୍ ବୁବୁନ୍ । ଦି କୋଷ୍ଟ ଇଜ୍ କ୍ଲିଅର୍ ।" ଆସନ୍ନ ସନ୍ଧ୍ୟାର ମହଳ ଅନ୍ଧାର ବୁବୁନ୍ ଦଳର ରେ...ରେ କାରରେ ପୁଣି ସରବ ହୋଇ ଉଠିଲା ।

୨୧/୦୨/୮୮

# ମଣିଷ ଭିଡ଼ ଭିତରେ ଓ ବାହାରେ

ଭିତରଗଡ଼ ଗାଁରେ ମୁଁ ସଭା କରିବାର ପ୍ରସ୍ତାବ ଶୁଣି ରାଜନଗରରେ ଆମ ଦଳର ବୟସ୍କ ପୁରୁଖା କର୍ମୀମାନେ ମୁହଁମୋଡ଼ିଲେ। କଂଗ୍ରେସ ପ୍ରାର୍ଥୀଙ୍କ ଘର ସେଇ ଗାଁରେ, ସେଥିପାଇଁ ଗାଁର ଅଧିକାଂଶ ଲୋକେ ତାଙ୍କ ପକ୍ଷରେ। ତା'ଛଡ଼ା ସେ ଗାଁରେ ଆମର ଯେଉଁ ଅଳ୍ପ କେତେଜଣ ସମର୍ଥକ ଅଛନ୍ତି, ସେମାନେ ସେଭଳି ପାରିବାର ନୁହଁନ୍ତି। ତା' ଉପରେ ପୁଣି ସେଇ ଗାଁଲୋକଙ୍କ ଜିଦ୍, ତାଙ୍କ ଗାଁରେ କଦାପି ଉତ୍କଳ-କଂଗ୍ରେସର ସଭା କରିବାକୁ ଦିଆଯିବ ନାହିଁ। ମୋର ଜିଦ୍ ସେଇ ଗାଁରେ ଅଲବତ୍ ମୁଁ ସଭା କରିବି।

୧୯୭୧ ମସିହା। ସମଗ୍ର ଉପକୂଳବର୍ତ୍ତୀ ଓଡ଼ିଶାରେ କେନ୍ଦ୍ରାପଡ଼ା ନିର୍ବାଚନ ମଣ୍ଡଳୀରୁ ପଞ୍ଚମ ଲୋକସଭାକୁ ଏକମାତ୍ର ମୁଁ ଉତ୍କଳକଂଗ୍ରେସ ଟିକେଟରେ ନିର୍ବାଚିତ ହୋଇଥାଏ। ସେତେବେଳେ ଇନ୍ଦିରା ଗାନ୍ଧୀ ହାୱା ସାରାଦେଶରେ ପ୍ରବଳ। ଏଇ ସମୟରେ ରାଜନଗର ବିଧାନସଭା ନିର୍ବାଚନ ମଣ୍ଡଳୀରେ ଗୋଟିଏ ଉପନିର୍ବାଚନ ହେଲା। ଉତ୍କଳ କଂଗ୍ରେସ ନେତା ବିଜୁ ପଟ୍ଟନାୟକ ସେଠାରୁ ପାର୍ଥୀ ହେଲେ। ରାଜନଗରରେ ସେତେବେଳେ ଆମ କର୍ମୀମାନଙ୍କ ମଧ୍ୟରେ ୧୯୬୨ ମସିହାଠାରୁ ମୋ' ପ୍ରତି ଗଭୀର ଶ୍ରଦ୍ଧା ଓ ପ୍ରତ୍ୟୟ ଥିବାରୁ ନିର୍ବାଚନ ଦାୟିତ୍ୱରେ ମୁଁ ତିନିସପ୍ତାହ କାଳ ରାଜନଗର ବଜାରରେ ଗୋଟିଏ ଛୋଟିଆ ଚାଳଘରେ କ୍ୟାମ୍ପକରି ରହିଥିଲି। ସେଠାରେ ଶୁଣିଲି, ଆମ କର୍ମୀମାନେ ଭିତରଗଡ଼ ଗାଁରେ ସଭା କରିବାପାଇଁ ରାଜି ହେଉନାହାନ୍ତି ବା ଭରସିପାରୁ ନାହାନ୍ତି। ସେଥିପାଇଁ ପୁରୁଖା କର୍ମୀମାନେ ମୋତେ ପରାମର୍ଶ ଦେଲେ, ସେ ଗାଁକୁ ବାଦ୍ ଦେବାପାଇଁ... କିନ୍ତୁ ମୁଁ ଚିରଦିନ ଜିଦିଆ ପ୍ରକୃତିର। ମୁଁ ଜିଦ୍ ଧରିଲି, କେହି ମୋ' ସାଙ୍ଗରେ ନଗଲେ ବି ମୁଁ ଏକୁଟିଆ ସେ ଗାଁରେ ସଭା ନିଶ୍ଚୟ କରିବି। ବୟସ୍କ କର୍ମୀମାନେ ମୋର ଜିଦ୍‌କୁ ଏକ ନିର୍ବୋଧ ଗୁମାନ ବୋଲି ନିଶ୍ଚୟ ଭାବିଥିବେ। ସେମାନଙ୍କୁ ମୁଁ ବାକିପରି ବୁଝାଇ ପାରନ୍ତି, ନିର୍ବାଚନ ମୋ' ପକ୍ଷରେ, ମନୁଷ୍ୟମାନଙ୍କର ବିଚିତ୍ର ଅରଣ୍ୟରେ ଖିଆଲି ମନର ମୃଗୟା। ଏ ମୃଗୟାରେ ଜିତିବା ହାରିବା ଗୌଣ। ମୁଖ୍ୟ ହେଉଛି ଉତ୍ତେଜନା !

ମୁଁ ଦିନେ ମୋର କେତେଜଣ ବିଶ୍ୱସ୍ତ କର୍ମୀଙ୍କୁ ଭିତରଗଡ଼ ଗାଁରେ ସଭାପାଇଁ ମୋର ଯୋଜନା ବୁଝାଇ କହିଲି। ସେ ସଭାପାଇଁ ପ୍ରଚାରପତ୍ର ଛାପାଯିବ ନାହିଁ କିମ୍ବା ଡାକବାଜିରେ ସଭାର ପ୍ରଚାର ମଧ ହେବନାହିଁ। ଆମର ଦୁଇଜଣ କର୍ମୀ ସେ ଗାଁକୁ ଯାଇ କାହାଘରେ ଦୁଇଦିନ ଆଗରୁ ରହିଯିବେ, ଆମ ପ୍ରତିପକ୍ଷ ଦଳଙ୍କ ଆଖିରେ ପଡ଼ି ନପାରିବାଭଳି। ଅମୁକ ତାରିଖ ଦିନ ସେମାନେ ସେ ଅଞ୍ଚଳରେ ଭଡ଼ା ପେଟ୍ରୋମାକ୍ସ ସବୁ ବିଭିନ୍ନ ଆଳରେ ଭଡ଼ାରେ ନେବେ, ସେଇପରି ମାଇକ୍ରୋଫୋନ୍। ଯେପରି ମୁଁ ସଭା କରିବାର ସୁରାକ୍ କେହି ନପାଆନ୍ତି।

ନିର୍ଦ୍ଦିଷ୍ଟ ଦିନ ଖରାବେଳେ ମୁଁ ଫକୀରର ସ୍କୁଟର ପଛରେ ବସି ଭିତରଗଡ଼ ଗାଁ ମୁଣ୍ଡନଦୀବନ୍ଧ ପର୍ଯ୍ୟନ୍ତ ଆସିଲି। ସେଠାରେ ବିଲ ଗହୀର ଓ କିଆଗୋହିରୀ ଭିତରେ ଚାଲିଚାଲି କିଛିବାଟ ଆସି ସେ ଗାଆଁରେ ଆମ ସମର୍ଥକଙ୍କ ଘରେ ପହଞ୍ଚିବି। ମୁଁ ଗାଁରେ ପହଞ୍ଚିବା ପରେ ଯାଇ ସେମାନେ ଆଖପାଖ ଗାଁ ମାନଙ୍କରେ ସନ୍ଧ୍ୟାବେଳେ ସଭାର ପ୍ରଚାର ଆମ ସମର୍ଥକମାନଙ୍କ ମଧରେ କାନେକାନେ ଚଳାଇବେ । ଅର୍ଥାତ୍ ସଭାଟିକୁ ଏପରି ଆୟୋଜନ କରିବାକୁ ପଡ଼ିବ, ଯେପରି ଆମର ପ୍ରତିପକ୍ଷଦଳ ତାହାର ସାମାନ୍ୟତମ ସୁରାକ୍ ନପାଆନ୍ତି।

ସେହିପରି କାର୍ଯ୍ୟ ମଧ ହେଲା। ସେଦିନ ସନ୍ଧ୍ୟାରେ ଭିତରଗଡ଼ ଗାଁର ଗୋଟିଏ ସାହି ଦାଣ୍ଡରେ ଚାରିଟା ପେଟ୍ରୋମାକ୍ସ ଏକାଥରେ ଜଳିଉଠିଲା। ମାଇକ୍ରୋଫୋନ୍‌ରେ ବାଜିଲା, 'ଆଜି ଆକାଶେ ଏ କି ରଙ୍ଗ ଲାଗିଲା' ରେକର୍ଡ। ସଭାସ୍ଥାନରେ ବୟସ୍କ ଭୋଟର କେହି ଆଖିରେ ପଡୁ ନଥିଲେ। ସେମାନେ ଝାମେଲା ଭୟରେ ଆଖପାଖ ପିଣ୍ଡାମାନଙ୍କରେ ସଭା ଶୁଣିବାପାଇଁ ବସିଗଲେ। କିନ୍ତୁ ସଭା ସ୍ଥାନରେ ରୁଣ୍ଡ ବାନ୍ଧିଲେ ଲଙ୍ଗଳା, ଦରଲଙ୍ଗଳା ପିଲାମାନେ। ଆମ ପ୍ରତିପକ୍ଷ ଦଳ ମୁଁ ସଭାକରୁଥିବାର ଖବର ପାଇବାବେଳକୁ ମୁଁ ଲଙ୍ଗଳା, ଦରଲଙ୍ଗଳା ପିଲାମାନଙ୍କୁ ମାଇକ୍ରୋଫୋନ୍‌ରେ ଯଥାବିଧି ପ୍ରିୟ ଭାଇ ଓ ଭଉଣୀମାନେ ସମ୍ବୋଧନ କରି ମୋର ଭାଷଣ ଆରମ୍ଭ କରିଦେଇଥିଲି। ସେମାନେ ବେଶି ଚିତ୍କାର ପାଟିଗୋଳ କଲେ, ମଝିରେ ମଝିରେ ମୁଁ ସେମାନଙ୍କୁ ଗୋଟାଏ ଦୁଇଟା ମଜାଗପ ଶୁଣାଉଥାଏ। ସେମାନେ ବେଳେବେଳେ ଖୁସି ହୋଇ ହାତତାଳି ଦେଉଥାନ୍ତି। ସଭାରେ ଏ ହାତତାଳି ଗୋଟିଏ ସଂକ୍ରାମକ ଜିନିଷ। ପିଲାମାନଙ୍କର ହାତତାଳି ଶୁଣି ପିଣ୍ଡା ଉପରୁ ବି ହାତତାଳି ପଡୁଥାଏ। ପ୍ରତିପକ୍ଷମାନେ କିନ୍ତୁ ଏଥିପାଇଁ ଆଦୌ ପ୍ରସ୍ତୁତ ନଥିଲେ। ସେମାନେ ଗୋଟିଏ ସମାନ୍ତରାଳ ସଭା କରିବାପାଇଁ ପେଟ୍ରୋମାକ୍ସ ଆଉ ମାଇକ୍ ଖୋଜିଲାବେଳକୁ ସେଇ ପଲ୍ଲୀ ଅଞ୍ଚଳରେ ଆଉ କେଉଁଠୁ ପାଇଲେ ନାହିଁ। ଚାଳିଶି ମିନିଟ୍ ପରେ ସଭା ଭାଙ୍ଗିଲା। ଲଜେନ୍‌ସ ପାଇ ପିଲାମାନେ ଖୁବ୍ ଜୋରରେ ଉତ୍କଳ-କଂଗ୍ରେସର ଜୟଧ୍ୱନି ଦେଲେ।

ସଭା ଶେଷ ହେବାମାତ୍ରେ ମୁଁ ଫେରିବାକୁ ବାହାରିଲି। ମୋତେ ନଦୀବନ୍ଧ ପର୍ଯ୍ୟନ୍ତ ପାଛୋଟି ଦେବାପାଇଁ ଆମ ଦଳର କେତେକ କର୍ମୀ ଓ ସମର୍ଥକ ପେଟ୍ରୋମାକ୍ସ ଧରି, ସେଇ ଅନ୍ଧାର ରାତିରେ ମୋ' ସାଙ୍ଗରେ ଆସିଲେ। ସେମାନେ ଖୁସି। ଆମ ସଭା ହେଲା କିନ୍ତୁ ସେମାନେ ସଭା କରି ପାରିଲେ ନାହିଁ। ଏହି ସମୟରେ ମଝି ବାଟରେ ଆମ ଛୋଟ ପଟୁଆର ଉପରେ ବୃଷ୍ଟି ହୋଇଥିଲା, ହୁଡ଼ା ବିଲର ଟେକା ଆଉ ତା' ସଙ୍ଗରେ ଅଶ୍ରାବ୍ୟ ଗାଳି। ପେଟ୍ରୋମାକ୍ସ ସବୁ ଉତ୍ତ୍ୟକ୍ତ ଜନତାର- ଢେଲାମାଡ଼ରେ ଛିନ୍ନଛତ୍ର ହୋଇ କେଉଁଠି ଅନ୍ଧକାରରେ ପଡ଼ିଲା। ମୋ' ସାଙ୍ଗରେ ଯେଉଁମାନେ ପଟୁଆରରେ ଆସୁଥିଲେ, ସେମାନେ ଢେଲାମାଡ଼ରୁ ଆତ୍ମରକ୍ଷାପାଇଁ କିଏ କୁଆଡ଼େ ଛାଟିପିଟି ହୋଇ ପଳାଇଲେ। ମୁଁ କିନ୍ତୁ ଏ ବାଟଘାଟ ସହିତ ଅଜଣା କିଟିକିଟି ଅନ୍ଧାର ଭିତରେ କୁଆଡ଼େ ପଳାଇବି ସ୍ଥିର କରିନପାରି କିଆଗୋହିରୀ ମଝିରେ ଦୁଇହାତ ଲମ୍ବାଇ ଟ୍ରାଫିକ୍ କନେଷ୍ଟବଳ ପରି ଠିଆ ହୋଇଗଲି। ସେଇ ଅନ୍ଧାର ଭିତରେ ମୋର ଧଳା ପାଇଜାମା ଆଉ ପଞ୍ଜାବୀ ଚିକ୍ ଚିକ୍ କରୁଥାଏ। ଆକ୍ରମଣକାରୀମାନଙ୍କ ମଧ୍ୟରୁ ଜଣେ ପାଟିକଲା, "ଆରେ ଶଳା ଏ ପାଳଭୂତ କିଏ ବେ" ସେମାନେ ମୋ' ପାଖକୁ ଆସିବାରୁ ସେମାନଙ୍କୁ ମୁଁ ମୋ ନାଁ କହିଲି ଓ ପରିଚୟ ଦେଲି। ତା'ପରେ ଏଇ ଭିଡ଼ ଭିତରର ମଣିଷମାନଙ୍କଠାରେ ଆଖି ପିଛୁଳାକେ ଘଟିଗଲା ଏକ ଗୁଣଗତ ପରିବର୍ତ୍ତନ! ମୁଁ କାହିଁକି ସେଠାରେ ଏକୁଟିଆ ସେପରି ଠିଆ ହୋଇଛି ବୋଲି ସେମାନେ ସହାନୁଭୂତିପୂର୍ଣ୍ଣ କଣ୍ଠରେ ପଚାରିଲେ। ମୁଁ କହିଲି, "ତୁମେମାନେ ତ ଢେଲାମାଡ଼ରେ ଲାଇଟ୍ ସବୁ ଭାଙ୍ଗିଦେଲ, ତୁମ ଢେଲା ଭୟରେ କିଏ କୁଆଡ଼େ ପଳାଇଗଲେ। ମୁଁ ଆଉ କରନ୍ତି କ'ଣ ?" ଏହାପରେ ସେମାନେ ମୋ' ସାଙ୍ଗରେ ଆସିଥିବା ଲୋକମାନଙ୍କ ଉଦ୍ଦେଶ୍ୟରେ ଆହୁରି ଅଶ୍ରାବ୍ୟ ଭାଷାରେ, ମୋତେ ଏ ଅପନ୍ତରାରେ ଏକୁଟିଆ ଛାଡ଼ିଦେଇ ପଳାଇ ଥିବାରୁ ଅନେକ ଗାଳିଗୁଲଜ କଲେ। ମୋତେ ସେଦିନ ରାତିରେ ସେମାନେ ଆଉ ତାଙ୍କ ଗାଁରୁ ଛାଡ଼ିଦେଲେ ନାହିଁ। ମୁଁ ସେପରି ଅବସ୍ଥାରେ ସେତେରାତିରେ ତାଙ୍କ ଗାଁରୁ ଚାଲିଆସିଲେ, ଗାଁର ବଦନାମ ହେବ ଓ ସେମାନଙ୍କର ଅଧର୍ମ ମଧ୍ୟ ହେବ। ସେମାନେ ମୋର ଦୁଇହାତ ଧରି ରାତିଟା ତାଙ୍କ ଗାଁରେ ରହିଯିବାପାଇଁ ମୋତେ ବହୁ ଅନୁରୋଧ କଲେ। ମୁଁ ଅନୁରୋଧ ରକ୍ଷାକରି ସେମାନଙ୍କ ସହିତ ଅଗତ୍ୟା ଗାଁ ଭିତରକୁ ଆସିଲି।

ଗାଁ କଂଗ୍ରେସ ପାର୍ଟିର ନିର୍ବାଚନ ଅଫିସ୍‌ରେ ସେଦିନ ରାତିରେ ମୋର ରହିବାପାଇଁ ବ୍ୟବସ୍ଥା ହେଲା। ଖଣ୍ଡେ ତକ୍ତପୋଷ ଉପରେ ମୋ'ପାଇଁ ବିଛଣା ସୁଦ୍ଧା ପ୍ରସ୍ତୁତ ହୋଇଗଲା। ଚୁଡ଼ା, ଦହି, ଛେନା, ଗୁଡ଼ଚକଟା ଖାଇ ମୁଁ ଖଟ ଉପରେ ଚୁପ୍‌ଚାପ୍ ବସିରହିଲି ଆଉ ଗୋଟାକ ପରେ ଗୋଟାଏ ସିଗାରେଟ୍ ଟାଣି ଚାଲିଲି। ଘରଭିତରେ ପାଞ୍ଚ ଛଅଜଣ ଅଚିହ୍ନା

ଲୋକ ଚଟାଣ ଉପରେ ବସି ରହିଥାନ୍ତି ଯେପରି ମୋର କିଛି ଅସୁବିଧା ନହୁଏ। ଲଣ୍ଡନ ଆଲୁଅରେ ମୁଁ ସେମାନଙ୍କ ଆଡ଼େ ଚାହିଁ ଭାବୁଥାଏ, ଭିଡ଼ଭିତରେ ଥିବାବେଳେ ସେମାନେ ଢେଲା ପିଙ୍ଗୁଥିଲେ, ଅଶ୍ରାବ୍ୟ ଭାଷାରେ ଗାଳି ଦେଉଥିଲେ। କିନ୍ତୁ ଭିଡ଼ ବାହାରେ ସେଇ ମଣିଷର ପ୍ରାଣରେ ଅନ୍ୟମଣିଷଟି ପ୍ରତି କେତେ ଶ୍ରଦ୍ଧା, କେତେ ଆଦର, କେତେ ସହାନୁଭୂତି ! ମୋତେ ବିସ୍ମିତ ଲାଗୁଥାଏ, ଭିଡ଼ ବାହାରେ ସେ ମଣିଷମାନଙ୍କର ଭିନ୍ନ ଚେହେରା ଦେଖି।

ରାଜନୀତି କିନ୍ତୁ ଏ ଭିଡ଼ ଭିତରର ମଣିଷମାନଙ୍କ ଉପରେ ଭାରି ଆସ୍ଥାଶୀଳ। କାରଣ ସେମାନେ ସ୍ଲୋଗାନ୍ ଦେଇପାରନ୍ତି, ଢେଲା ଫିଙ୍ଗିପାରନ୍ତି, ଛୁରୀ ସୁଦ୍ଧା ଭୁଷୀ ପାରନ୍ତି। କିନ୍ତୁ ଭିଡ଼ ବାହାରେ ସାହିତ୍ୟ ଖୋଜିବୁଲେ, ଭିଡ଼ ବାହାରର ମଣିଷମାନଙ୍କୁ ଚିହ୍ନିବାପାଇଁ ଓ ବୁଝିବାପାଇଁ। ରାଜନୀତି କେବଳ ଯଦି ଏଇ ଭିଡ଼ ବାହାରର ମଣିଷମାନଙ୍କୁ ଚିହ୍ନି ପାରନ୍ତା ତା'ହେଲେ ଆଜି ଏ ଦେଶରେ ଗଣତାନ୍ତ୍ରିକ ରାଜନୀତିର ଚେହେରା ନିଶ୍ଚୟ ଅଲଗା ହୁଅନ୍ତା, ସେଥିରେ ମୋର ସନ୍ଦେହ ନାହିଁ।

୨୮/୦୨/୮୮

# ନିଃଶବ୍ଦରୁ ଶବ୍ଦ ଆଡ଼େ

ବଡ଼ିସକାଳେ ନିଦ ଭାଙ୍ଗିବାପରେ, ମୁଁ ସେଇ ଅପନ୍ତରାରେ କୁଆଡ଼େ କିପରି ଗଲାରାତିରେ- ଆସି ପହଞ୍ଚିଲି ବୁଝିପାରୁନଥିଲି। ମାନ୍ଦ୍ରାଜ୍ ଆଡ଼େ ଯାଇଥିବା ନ୍ୟାସ୍‌ନାଲ ହାଇୱେ କଡ଼ରେ ତାଳବାଉଙ୍ଗା ଛାଉଣି ଗୋଟିଏ ଚାଳିଆ, ମାଟିକାନ୍ଥ ସବୁ ଚଉଠ ଉଚ୍ଚାରେ ଉଠି ବହୁଦିନୁ ସେଇଠାରେ ବନ୍ଦ ହୋଇପଡ଼ିଛି। ତା'ରି ଭିତରେ ମୋ'ର ହୋଲ୍‌ଡ୍‌ଅଲ ବିଛଣା ଉପରେ ନିଦ ଭାଙ୍ଗିଲା। ଚାଳିଆ କାନ୍ଥରେ ତେଲଗୁ ସିନେମା ପୋଷ୍ଟର ଦେଖି ମୋ'ର ଧୀରେଧୀରେ ମନେପଡ଼ିଗଲା, କାଲି ରାତି ସାଢ଼େ ଏଗାରଟାରେ ମୁଁ ଜିପ୍‌ରେ ବ୍ରହ୍ମପୁର ଛାଡ଼ିଥିଲି, ଶ୍ରୀକାକୁଲମ୍ ଅଭିମୁଖରେ। ରାଜ୍ୟ ପୁନର୍ଗଠନ କମିଶନ ଆଗରେ ସାକ୍ଷ୍ୟ ଦେବାପାଇଁ ଶ୍ରୀକାକୁଲମ୍ ଜିଲ୍ଲାର ଓଡ଼ିଆମାନଙ୍କ ପକ୍ଷରୁ ସାକ୍ଷ୍ୟ ଓ ତଥ୍ୟ ସଂଗ୍ରହର ଦାୟିତ୍ୱ ଉତ୍କଳ ସମ୍ମିଳନୀ ଓ ଗଣତନ୍ତ୍ର ପରିଷଦ ପକ୍ଷରୁ ମୋ' ପକ୍ଷରେ ନ୍ୟସ୍ତ ହୋଇଥିଲା। ମେ ମାସର ଶେଷଭାଗ। ଦିନରେ ପ୍ରଚଣ୍ଡ ଝାଞ୍ଜି ଓ ଉତ୍ତାପ। ସେଥିପାଇଁ ଥଣ୍ଡାରେ ଥଣ୍ଡାରେ ଶ୍ରୀକାକୁଲମ୍‌ରେ ପହଞ୍ଚିବାପାଇଁ ମୁଁ ବ୍ରହ୍ମପୁର ଛାଡ଼ିଥିଲି ରାତି ସାଢ଼େ ଏଗାରଟାରେ। ବାଟରେ କିନ୍ତୁ ସୋମ୍‌ପେଟା ଛାଡ଼ିବାପରେ ଆକାଶରେ ମାଡ଼ିଆସିଥିଲା ପବନ ଆଉ ବର୍ଷା। ଘଡ଼ଘଡ଼ି ଚଡ଼ଚଡ଼ି ସାଙ୍ଗକୁ ଲଟା ବିଜୁଳି ରାତିଟାକୁ ହଠାତ୍ ଯେପରି ଗୋଟାଏ କାଳ ରାତିରେ ପରିଣତ କରିଦେଇଥିଲା। କଣ୍ଟୁରୀ ଡ୍ରାଇଭର ରାସ୍ତାକଡ଼ରେ ଏହି ଚାଳିଆଟା ଦେଖିପାରି ସେଇଠାରେ ଅଟକି ଯାଇଥିଲା ଆଶ୍ରୟପାଇଁ। ଚାଳିଆ ସାମ୍ନାରେ ପୁରୁଣା ମଡେଲ ଉଇଲିସ୍ ଜିପ୍‌ଟା ସକାଳର ଫିକା ଆଲୁଅରେ ଦିଶୁଛି, କେଉଁ ଯୁଦ୍ଧ ସୀମାନ୍ତରେ ପରିତ୍ୟକ୍ତ ଗୋଟାଏ ଯୁଦ୍ଧବିଧ୍ୱସ୍ତ ଜିପ୍ ପରି। ସାମ୍ନା ସିଟ୍ ଉପରେ କଣ୍ଟୁରୀ ଶୋଇଛି ଗୋଟେ ମୃତ ସୈନିକ ପରି। ତା'ର ନିଦ ତଥାପି ଭାଙ୍ଗି ନଥିଲା।

ଚାରିଆଡ଼ ଶୁନ୍‌ଶାନ୍। ହାଇୱେ ଉପରେ ସେପର୍ଯ୍ୟନ୍ତ ଗୋଟାଏ ଟ୍ରକ୍ କି ବସ୍ ଯିବାଆସିବା ଆରମ୍ଭ କରିନାହିଁ। ବଢ଼ି ସକାଳୁ କପେ ଚା'ପାଣିପାଇଁ ମୋର ସ୍ତିମିତ ସ୍ନାୟୁକେନ୍ଦ୍ର ସବୁ ଯେପରି ଚିତ୍କାର କରିବାପାଇଁ ଆରମ୍ଭ କରିଦେଇଥିଲେ। କିନ୍ତୁ ଏଠି ଚା'

ଦୋକାନ କାହିଁ ? ଯେଉଁଆଡ଼େ ଆଖି ଯାଏ ସେଆଡ଼େ କେବଳ ଗତ ରାତିର ବର୍ଷାଭିଜା ଦିଗନ୍ତ ବିସ୍ତାରୀ ହୁଡ଼ାବିଲ ଆଉ ହୁଡ଼ାବିଲ। ଗୋଟାଏ କାଉ ସୁଦ୍ଧା କେଉଁଠି ଉଡ଼ିବା ଅଥବା କା କା କରିବା ଦିଶୁ ନଥିଲା। ରାସ୍ତା କଡ଼ରେ ଗୋଟାଏ ଦୁଇଟା ରୋଗଣା ଖଜୁରୀଗଛ ବ୍ୟତୀତ ଅନ୍ୟକିଛି ଗଛ ନଥିଲା। ନିର୍ମେଘ ଆକାଶରୁ ସକାଳର ଫିକା ମେଘୁଆ ଖରା କ୍ରମେ ଫିଟିଫିଟି ଆସୁଛି। ତା'ରି ଭିତରେ ଏହି ପରିତ୍ୟକ୍ତ, ନିର୍ଜନ ନିସ୍ତବ୍ଧତା ମୋତେ ପ୍ରକୃତରେ ଭୀତିପ୍ରଦ ଲାଗୁଥିଲା। ଏ ଯେପରି ମନୁଷ୍ୟର ଉଲ୍ଲଙ୍ଗ ନିଃସଙ୍ଗ ଆତ୍ମା।

ହଠାତ୍ କଳା କିଟିକିଟି ଡେଙ୍ଗା ଚେମେଡ଼ା ବୁଢ଼ାଟିଏ ପଲେ ଛେଳି ଅଡ଼ାଇ ସେଇବାଟେ ଯାଉ ଯାଉ ସେଠାରେ ଗୋଟାଏ ଜିପ୍ ଦେଖି ନିର୍ବୋଧ କୌତୂକରେ ଅଟକି ଠିଆ ହୋଇଗଲା। ତା'ପରେ ସେଇ ଚାଳିଆ ଭିତରେ ଗୋଟାଏ ଧୋବଧାଉଳିଆ ବାବୁ ଚେହେରାର ମଣିଷ ଦେଖି ତା'ର କୌତୂହଳ ଓ ବିସ୍ମୟ ଆହୁରି ବଢ଼ିଯାଇଥିବ। ଛେଳିକଥା ଭୁଲିଯାଇ ବ୍ୟାପାର କ'ଣ ବୁଝିବାପାଇଁ ସେ ଚାଳିଆ ପର୍ଯ୍ୟନ୍ତ ଆସି ବାହାରେ ଠୁଙ୍କା ହୋଇ ବସିପଡ଼ିଲା। ଲୋକଟାର ବୟସ ନିଶ୍ଚୟ ୬୦ ଟପିଥିବ। ପିନ୍ଧାରେ ଖଣ୍ଡେ କାଛିଆ ପରି କଉପୁନି। ମୁଣ୍ଡରେ ପେଣ୍ଡା ଚୁଟି ଗଣ୍ଠିହୋଇ ବନ୍ଧା ହୋଇଛି। ନାକରେ ଗୋଟେ ସୁନା ଫାସିଆ। ମୁହଁଯାକ ବୁଢ଼ିଆଣୀ ଜାଲପରି ଛନ୍ଦାଛନ୍ଦି କୁଞ୍ଚିତ ବଳି ରେଖା। ତା'ରି ଭିତରୁ ସେ ମୋ ଆଡ଼େ ଚାହିଁ ରହିଥିଲା ନିର୍ବାକ୍, ବିସ୍ମୟ ଓ କୌତୂହଳରେ। ମୁଁ ମଧ୍ୟ ସେଇ ଅପନ୍ତରା ଭିତରେ ଗୋଟାଏ ଜିଅନ୍ତା ମଣିଷର ସାନ୍ନିଧପାଇ ସେତେବେଳେ- କମ୍ ଆଶ୍ୱସ୍ତ ଅନୁଭବ କରୁନଥିଲି। ତାକୁ ପଚାରିଲି, "ଏଠି କେଉଁଠି ଚା' ଦୋକାନ ଅଛି ?" ବୁଢ଼ାଟି ମୋର ଓଡ଼ିଆ କଥା ବୁଝି ନପାରି ମୋ ଆଡ଼େ କେବଳ ବଲ ବଲ ଆଖିରେ ଚାହିଁ ରହିଥିଲା। କିନ୍ତୁ ଏଥର ଲକ୍ଷ୍ୟ କଲି ତା'ର ଦୁଇ ଶେତା ଆଖିରୁ ବିସ୍ମୟ କଟିଯାଇ ଫୁଟି ଉଠିଛି ମୋ' ପ୍ରତି ସହାନୁଭୂତି। ଏ ଅଜଣା ବାବୁଟା କେଉଁଠୁ ଆସି କାହିଁକି ପଡ଼ିଛି ଏଠି ଏଇ ଅପନ୍ତରାରେ ! ମୁଁ ଅଗତ୍ୟା ଠାରରେ ବୁଝାଇବାକୁ ଚେଷ୍ଟା କଲି, କାଲି ରାତିରେ ଘୋର ବର୍ଷା ପବନ ହେବାରୁ ମୁଁ ଏଇଠି ଆଶ୍ରୟ ନେଇଥିଲି। ଏବେ ମୋର ଦରକାର ପିଇବାପାଇଁ କପେ ଚା' ବା କଫି। ଦୁଇ ହାତରେ ଆଙ୍ଗୁଠିରେ କେତେଥର ଠାରଠୁରରେ ମୋର ବକ୍ତବ୍ୟ ତାକୁ ବୁଝାଇବା ପରେ ସେ ବୁଝିଗଲା, ମୁଁ ଖୋଜୁଛି ଗୋଟାଏ କଫି ଦୋକାନ। ତା'ପରେ ସେ ମଧ୍ୟ ମୋତେ ଠାରରେ କହିଲା, ତା'ସାଙ୍ଗରେ ଜିପ୍‌ରେ ବସି ଆସିବାପାଇଁ।

କଣ୍ଟୁରୀ ନିଦ ସେତେବେଳକୁ ଭାଙ୍ଗିସାରିଥିଲା। ମୁଁ କହିଲି, ଚାଲ ଏ ବୁଢ଼ା କେଉଁଠି ଗୋଟେ କଫି କି ଚା' ଦୋକାନ ଆମକୁ ଦେଖାଇ ଦେବ। ବୁଢ଼ାକୁ ଜିପ୍‌ରେ ବସାଇ ତା'ର ଠାରମତେ ଆମେ ପୁଣି ପଛକୁ ଫେରିଲୁ। ପ୍ରାୟ ମାଇଲିଏ ବାଟ ପଛକୁ ଫେରିଲା

ପରେ ଗୋଟିଏ ଗାଁ ଭିତରକୁ ପଡ଼ିଥିବା କଚା ରାସ୍ତା ଧରିଲୁ । ଅଳ୍ପବାଟ ସେହି ରାସ୍ତାରେ ଯିବାପରେ ପଡ଼ିଲା ଗୋଟାଏ ଗାଁ ମୁଣ୍ଡରେ ଇଟିଲି, ଉପମା ଆଉ କଫି ଦୋକାନ । ବୁଢ଼ାଟିକୁ ମନେମନେ ଅଜସ୍ର ଧନ୍ୟବାଦ ଦେଇ ତାକୁ ଆମନ୍ତ୍ରଣ ଜଣାଇଥିଲୁ କଫି ଖାଇବାପାଇଁ । ମାତ୍ର ବୁଢ଼ା ଆମକୁ ଦୋକାନ ପାଖରେ ଛାଡ଼ିଦେଇ ସେଇଠାରୁ ଭୂତ ଲାଗିବାପରି ହୁଇହୁଇ ଚିତ୍କାର କରି ଦୌଡ଼ି ପଳାଇଗଲା । କଣ୍ଟୁରୀ ଟିପଣୀ କଲା, "ଲୋକଟା ପାଗଳା କି ?" ମୁଁ କହିଲି, "ନା ! ତା'ର ଛେଳିପଲ ବୋଧହୁଏ ମନେପଡ଼ିଗଲା ।" ଆମକୁ ଏ ଜାଗାଟା ଦେଖେଇବାପାଇଁ ସେ ତାର ଛେଳିପଲ ଛାଡ଼ି ଆସିଥିଲା ତ !

କଫି ପିଇବାପରେ ଆମେ ପୁଣି ଫେରିଲୁ । ବୁଢ଼ାଟି ସେତେବେଳକୁ ଦୌଡ଼ି ଦୌଡ଼ି ସେଇ ଚାଳିଆଠାରୁ ଅଳ୍ପ ଦୂରରେ ଛେଳିପଲର ପାଖଧରି ଯାଉଥିଲା । ଜିପ୍ ହର୍ଣ୍ଣ ଶୁଣି ସେ ଫେରି ଚାହିଁଲା । ତାର ମୁହଁରେ ମୁଁ ସ୍ପଷ୍ଟ ଲକ୍ଷ୍ୟ କଲି ଚେନାଏ ହସ । ଯେପରି ଆମେ ତାର ବହୁପରିଚିତ । ମୋର ମନେହେଲା, ମାନବୀୟ ସ୍ଥିତି କି ଟ୍ରାଜେଡ଼ି ! ଏହି ଅଜଣା ଅପନ୍ତରା ଭିତରେ ଯେଉଁଠି ଜଣେ ଅନ୍ୟର ଭାଷା ବୁଝେନାହିଁ, ସେଇ ଭାଷାହୀନ ନିଃଶବ୍ଦ ଜଗତରେ ଆମେ ହୋଇପଡ଼ିଥିଲୁ ପରସ୍ପରର ବନ୍ଧୁ । କିନ୍ତୁ ଭାଷାଭାଷୀ ଶବ୍ଦର ଜଗତରେ ସିଏ ମୋର ପ୍ରତିପକ୍ଷ ଅଥବା ମୁଁ ତା'ର ଶତ୍ରୁ । ...ଶ୍ରୀକାକୁଲମ୍ ଯାଉଛି, ତା'ରି ଭାଇ ବିରାଦରମାନଙ୍କ ବିରୁଦ୍ଧରେ ସାକ୍ଷ୍ୟ ସଂଗ୍ରହ ପାଇଁ !

୦୬/୦୩/୮୮

# ସଭ୍ୟତାର ଅନ୍ୟନାମ

ସେଦିନ ଲନ୍‌ରେ ଆଦିବାସୀ ଚେହେରାର ସେ ଦୁଇଜଣ ହୃଷ୍ଟପୁଷ୍ଟ ବାଙ୍ଗରା ଲୋକଙ୍କୁ ଦେଖି ମୁଁ ଭାରି ବିସ୍ମିତ ହୋଇଉଠିଥିଲି। ରାଜଧାନୀର ମଖମଲି ପରିବେଶ ଭିତରେ ସେମାନଙ୍କର ସୁନ୍ଦର ଝାମ୍ପୁରା ବାଳ, ଚଉଡ଼ା ନାକ, ମୋଟାମୋଟା ଓଠ ଓ ଅଣ୍ଟାତଳେ ଖଣ୍ଡେ ଖଣ୍ଡେ କାଛିଆ ଆଦୌ ଖାପ ଖାଉନଥିଲା ମନେହେଉଥିଲା, ଇଏ ଯେପରି ଥିଲା ସହର ସହିତ ସେମାନଙ୍କର ପ୍ରଥମ ପରିଚୟ। କାନ୍ଧରେ ବାଉଙ୍ଗୀରୁ ସେମାନେ ଝୁଲାଇଥିଲେ ଗୋଟାଏ ଗୋଟାଏ ଠେକି। ମୋ'ଠାରେ ଏମାନଙ୍କର କି କାର୍ଯ୍ୟ ଥାଇପାରେ ଭାବି ଖୁବ୍ ବିସ୍ମିତ ହୋଇ ଉଠିଥିଲି। ସେମାନଙ୍କ ପଛରେ ମାଳୀ କେତେବେଳେ ଆସି ସେଠାରେ ପହଞ୍ଚି ଯାଇଥିଲା। ସେ କହିଲା, "ଏମାନେ ଆମ ଆଡ଼ର ଦୁଇଜଣ ମଲାର। ଜଙ୍ଗଲରେ ଏମାନେ ବୁଲିବୁଲି ମହୁଫେଣା କାଟନ୍ତି, ବାଘୁଆମାଛିକୁ ସୁଦ୍ଧା ଏମାନେ କାବୁକରି ପାରନ୍ତି। ଆପଣ ବାଘୁଆ ମହୁ ଖୋଜୁଥିଲେ, ସେଥିପାଇଁ ଏମାନଙ୍କୁ ଧରିଆଣିଛି। ଦାମ୍ ଭାରି ଶସ୍ତା। ଟଙ୍କା ପଇସା କଥା ଏମାନେ ବୁଝିନାହାନ୍ତି ତ ସେଥିପାଇଁ !" ଆମର ମଧ୍ୟବିତ୍ତ ସୁଲଭ ମନର ଦାରିଦ୍ର୍ୟ ଏପରି ଯେ ଶସ୍ତାରେ କେଉଁଠି ବିଷ ମିଳୁଥିଲେ ବି ଆମେ ଶସ୍ତାମୂଲରେ ସେ ବିଷ ସୁଦ୍ଧା କିଣିବାପାଇଁ ବ୍ୟାକୁଳ ହୋଇଉଠିବୁ ! ମୁଁ ସେହି ଶସ୍ତାରେ ଏ ଜଙ୍ଗଲୀମହୁ କିଣିବାପାଇଁ ଗୋଟାଏ ଡେକ୍‌ଚି ମଗାଇଲି। ଜଣେ ମଲାର ତା' ଠେକିରୁ ମହୁତକ ସେହି ଡେକ୍‌ଚି ଭିତରେ ଅଜାଡ଼ିଦେଲା। ମାଳି ହିସାବି ମଣିଷ। ସେ କହିଲା, "ଏତକ ମହୁ ଓଜନରେ ବାରଶହ /ତେରଶହ ହେବ। ଏ ମହୁ କେଉଁଠି ତ ମିଳିବ ନାହିଁ। କେଉଁଠୁ ମିଳିଲେ ବି ଷାଠିଏ/ସତୁରୀ ଟଙ୍କାରୁ କମ୍‌ରେ କେଉଁଠୁ ପାଇବେ ନାହିଁ।" ମୋର ଖାଣ୍ଟି ମହୁ ଦରକାର ଔଷଧ ସେବନପାଇଁ। କବିରାଜ ବି ଥରେ କହିଥିଲେ କେଉଁଠୁ ବାଘୁଆ ମହୁ ସଂଗ୍ରହ କରିବାପାଇଁ। ତେଣୁ ଶସ୍ତାରେ ବାଘୁଆମହୁ କିଣିବାର ଲୋଭ ଏଡ଼ାଇ ପାରିଲି ନାହିଁ। ମାଳି ପୁଣି କହିଲା, "ଏତକ ମହୁପାଇଁ ସେମାନେ ତ ପନ୍ଦରଟଙ୍କା ପାଇଲେ ବି ଖୁସି ହୋଇଯିବେ।" କିନ୍ତୁ ଡେକିଚି ଭିତରେ କଳା ବାଦାମୀ ରଙ୍ଗର ମହୁର ଚେହେରା

ଦେଖି ମୁଁ ଚିତ୍କାର କରି ଉଠିଲି, "ଏ ମହୁ ନା ନର୍ଦ୍ଦମାର ପଙ୍କ", ମହୁ ଭିତରେ ଜନ୍ଦା, ମଲା ମହୁମାଛିଠାରୁ ଆରମ୍ଭ କରି କାଠ ଓ ମହୁଫେଣାର ଟୁକୁରା ଟୁକୁରା ଅଂଶ ପର୍ଯ୍ୟନ୍ତ ପଡ଼ିଥିଲା। ଏ ପୁଣି କୁଆଡ଼େ ବିଶୁଦ୍ଧ ମହୁ ! ମଲାର ଜଣକ, ତା' ଓଡ଼ିଆ ମିଶା ଭାଷାରେ ମାଳିକୁ କ'ଣ ବୁଝାଇଦେଲା। ମାଳି କହିଲା, ଏମାନେ ମହୁକୁ ଛାଣି ସଫା କରନ୍ତି ନାହିଁ। ସେମାନଙ୍କର ଏ ପ୍ରକାର ନିୟମ ଅଛି। ଜଙ୍ଗଲରେ ଗଛରୁ ସେମାନେ ଯେଉଁ ମହୁଫେଣା ଯେପରି କାଟନ୍ତି, ସେମାନେ ସେଇଆକୁ ସେପରି ବିକ୍ରି କରନ୍ତି। କିଣିବା ଲୋକ ଘରେ ତାକୁ ଛାଣି ସଫା କରେ। ମହୁ କିନ୍ତୁ ପୂରାପୂରି ଖାଣ୍ଟି !" ତା'ପରେ ମାଳି ମହୁର ବିଶୁଦ୍ଧତାର ଡିମନଷ୍ଟ୍ରେସନ୍ ଦେଲା। ତା' ପକେଟରୁ ଖଣ୍ଡେ ପାଞ୍ଚଟଙ୍କିଆ ନୋଟ କାଢ଼ି ନୋଟଖଣ୍ଡ ସେଇ ମହୁ ଭିତରକୁ ପକାଇଦେଲା। ମିନିଟ୍‌କ ପରେ ନୋଟଖଣ୍ଡକ କାଢ଼ି ଦେଖାଇଦେଲା ସେଥିରେ ଟୋପାଏ ହେଲେ ମହୁ ଲାଗିନଥିଲା। ଜଙ୍ଗଲର ଖାଣ୍ଟି ମହୁକୁ ଏ ସହରୀ ଟଙ୍କା ସ୍ପର୍ଶ କରେନାହିଁ ! ଇଏ କୁଆଡ଼େ ମହୁ ଖାଣ୍ଟି କି ନୁହେଁ, ତାହା ପରୀକ୍ଷା କରିବାର ଗୋଟିଏ ଉପାୟ। ମାଳି ତା'ପରେ ମୋ' ପାଖରୁ ଦିଆସିଲି ମାଗିନେଇ ଗୋଟିଏ କାଠି ଜଳାଇ ଟୋପାଏ ମହୁ ଉପରକୁ ସେ ଜଳନ୍ତା କାଠିଟା ଫିଙ୍ଗିଦେଲା। ପେଟ୍ରୋଲରେ ନିଆଁ ଧରିବାପରି ମହୁରେ ନିଆଁ ଲାଗିବାମାତ୍ରେ ତା' ହୁତ୍‌ହୁତ୍ ହୋଇ ଜଳି ଉଠିଲା। ମହୁ ଖାଣ୍ଟିଥିଲେ ଏହିପରି କୁଆଡ଼େ ଜଳେ ! ଏ ଡିମନଷ୍ଟ୍ରେସନ୍ ପରେ ମହୁର ବିଶୁଦ୍ଧତା ସଂପର୍କରେ ମୋର ଆଉ ସନ୍ଦେହ ନଥିଲା। ମାଳି ଦର ଛିଡ଼ାଇଦେଲା, ସେତକ ମହୁପାଇଁ ପନ୍ଦରଟଙ୍କା। ସେମାନେ ଓଜର ଆପତ୍ତି କଲେନାହିଁ। ବରଂ ଲକ୍ଷ୍ୟ କଲି ସେମାନଙ୍କ ବନ୍ୟ ଆଖିରେ ଆନନ୍ଦର ଉଜ୍ଜ୍ୱଳତା। କିନ୍ତୁ ସେମାନେ ନୋଟ୍ ଚିହ୍ନି ପାରନ୍ତି ନାହିଁ। ଆଙ୍ଗୁଠିରେ ଲମ୍ବା ଚଉଡ଼ାମାପି ଟଙ୍କାଏଠାରୁ ଶହେଟଙ୍କିଆ ନୋଟ୍ ପର୍ଯ୍ୟନ୍ତ ସେମାନେ କୁଆଡ଼େ ଠିକ୍ ଜାଣିପାରନ୍ତି। ସେହିପରି ଭାବରେ ଦଶଟଙ୍କିଆ, ପାଞ୍ଚଟଙ୍କିଆ ନୋଟ ଦୁଇଖଣ୍ଡକୁ ଆଙ୍ଗୁଠିରେ ମାପିବା ପରେ ଜଣେ ମଲାର ତା'ର କାଛିଆ ଭିତରୁ ସୂତାରେ ଝୁଲୁଥିବା ଗୋଟାଏ ଗାଞ୍ଜିଆ ଭିତରେ ଭାଙ୍ଗିଭୁଙ୍ଗି ରଖିଦେଲା। ଏ ଟଙ୍କାରେ ସେ ସହରରୁ କ'ଣ କିଣିବ କେଜାଣି ? ସହରର ମନହାରୀ ଜିନିଷରେ ଏ ମଲାରର କି ପ୍ରୟୋଜନ ଥାଇପାରେ ବୁଝିପାରୁ ନଥିଲି।

ପ୍ରାୟ ବର୍ଷକ ପରେ ସେ ମଲାର ଦୁଇଜଣ ଆଉ ଦୁଇଦିନ ଆସିଲେ ମହୁ ବିକିବାପାଇଁ ! ଚେହେରାରୁ ମନେହେଉଥିଲା, ଏ ବର୍ଷକ ଭିତରେ ଦାରିଦ୍ର୍ୟର ସୀମାରେଖା ତଳୁ ଅନେକ ଉପରକୁ ଉଠି ଯାଇଛନ୍ତି ସେମାନେ। ଚେହେରାରେ ମଧ୍ୟ ସହରୀ ଛାପ ସୁସ୍ପଷ୍ଟ। କାଛିଆ ପରିବର୍ତ୍ତେ ପାଇକଛି ମାରି ସେମାନେ ପିନ୍ଧିଥିଲେ ଆଉ ଉପରକୁ ଧୋତି। ରାସ୍ତାକଡ଼ ଫୁଟପାଥ ଉପରେ ବିକ୍ରି ହେଉଥିବା ରଙ୍ଗିନ୍ ଗେଞ୍ଜି ପିନ୍ଧିଥିଲେ ସେମାନେ

ଦେହରେ। ପୂର୍ବପରି ସେମାନଙ୍କ ମହୁରେ କିନ୍ତୁ କାଠିକୁଟା ମହୁଫେଣା ଓ ମଲାଚ୍ଛନ୍ଦା ପ୍ରଭୃତି ଭାସୁ ନଥିଲା । ସହରଲୋକେ ମହୁର ସେ ପ୍ରକାର ଆଦିମ ଚେହେରା ଚାହୁଁ ନଥିବାରୁ ସେମାନେ ଏଥର ମହୁକୁ ଛାଣି ସଫା କରି ଆଣିଥିଲେ। ମୁଁ ସେମାନଙ୍କୁ ପୂର୍ବଥର ପରି ପନ୍ଦରଟଙ୍କା ଦେଲି, ଏମାନେ କିନ୍ତୁ ଅଡ଼ି ବସିଲେ ଚାଳିଶି ଟଙ୍କାରୁ କମ୍‌ରେ ଦେବେନାହିଁ । ଚାଳିଶି ଟଙ୍କା ହେଲେ ବି ଏ ମହୁ ଶସ୍ତା। ସେମାନଙ୍କୁ କୋଡ଼ିଏ ଟଙ୍କିଆ, ଦଶଟଙ୍କିଆ ଓ ପାଞ୍ଚଟଙ୍କିଆ ନୋଟ ମିଶାଇ ଚାଳିଶ ଟଙ୍କା ଦେଲି। ଆଶ୍ଚର୍ଯ୍ୟ ! ସେମାନେ ନୋଟକୁ ପୂର୍ବଥର ପରି ଆଙ୍ଗୁଠିରେ ଆଉ ମାପିଲେ ନାହିଁ ! ନୋଟର ଚେହେରା ଦେଖି ସେମାନେ ତାକୁ ଠିକ୍ ଗଣି ପାରିଲେ ଓ ଅଣ୍ଟିରେ ଗଣ୍ଠି ପକାଇ ରଖିଲେ। କିନ୍ତୁ ଏଥର ମହୁରେ ପୂର୍ବଥର ସେ ଆରଣ୍ୟ ସ୍ନିଗ୍ଧତା, ସୁଗନ୍ଧ ଆଉ ନିଷ୍ପତା ନଥିଲା ! ସେଥିରେ ଚିନିଶିରା କି ପାଣିଆଗୁଡ଼ ମିଶିଥିବା ପରି ମୋତେ ଲାଗିଲା। ତେଣୁ ତାହାର କେତେଦିନ ପରେ ସେ ଦୁଇଜଣ ମଲାର ତୃତୀୟ ଥର ଯେତେବେଳେ ପୁଣି ମହୁ ବିକିବାପାଇଁ ଆସିଲେ, ସେମାନେ ମହୁରେ କିଛି ଭେଜାଲ ମିଶାଉଛନ୍ତି ବୋଲି, ମୁଁ ସେମାନଙ୍କୁ ଭର୍ତ୍ସନା କଲି। ସେମାନେ କିନ୍ତୁ କୌଣସି ଉତ୍ତର ଦେଲେ ନାହିଁ। ଇଚ୍ଛା ହେଲେ ନିଅ ନହେଲେ ନାହିଁ... ଆଖିର ଚାହାଣୀରେ ସେମାନଙ୍କର ଏହିପରି ଭାବ। ଦାମ୍ ନେଲେ ପଇଁଚାଳିଶି ଟଙ୍କା। ପୂର୍ବ ଅପେକ୍ଷା ପାଞ୍ଚଟଙ୍କା ବେଶି ! ମୁଦ୍ରା ଭିତ୍ତିକ ସମାଜ ଅର୍ଥାତ୍ ସଭ୍ୟତା ସହିତ ଇତି ମଧ୍ୟରେ ସେମାନଙ୍କ ପରିଚୟ ଯେ ଘନିଷ୍ଠ ହୋଇସାରିଥିଲା, ସେଥିରେ ମୋର ଆଉ ସନ୍ଦେହ ନଥିଲା। କୌତୂହଳବଶତଃ ଗୋଟିଏ ଚାମୁଚ୍‌ରେ ଟୋପାଏ ମହୁ ବାହାରକୁ କାଢ଼ି ଦିଆସିଲି କାଠି ମାରି ଲଗାଇ ଦେଲି, ବିଶୁଦ୍ଧତା ପରୀକ୍ଷା କରିବାପାଇଁ। କିନ୍ତୁ ପୂର୍ବପରି ତା' ହୁତ୍ ହୁତ୍ ହୋଇ ଜଳିଲା ନାହିଁ। ସେଁ ସେଁ ହୋଇ ସଙ୍ଗେ ସଙ୍ଗେ ଲିଭିଗଲା। ମୁଁ ଚିତ୍କାର କଲି... "ଏ ମହୁ ଭେଜାଲ" ! ମାଳି ପାଖରେ ଠିଆ ହୋଇଥିଲା। ସିଏ ମୁରୁକି ମୁରୁକି ହସି କହିଲା, "ଆଉ ଖାଣ୍ଟି ଜିନିଷ କାହିଁ ? ବିଶ୍ୱ ସୁଦ୍ଧା ଏବେ ଭେଜାଲ୍। ସେଦିନର ମହୁ ଆଉ ଖାଣ୍ଟି ରହନ୍ତା କିପରି ?"

ମଲାର ଦୁଇଜଣ ରାସ୍ତା ଆଡ଼କୁ ବାହାରି ଯାଇଥିଲେ ! ମୁଁ ସେମାନଙ୍କ ଆଡ଼େ ଚାହିଁ ଭାବୁଥିଲି, ହଁ, ଏ ହେଉଛି ସଭ୍ୟତା ! ଯାହାର ଅପର ନାମ ହେଉଛି ବିକୃତି ଓ ଶଠତା। ସେଥିପାଇଁ ମନୁଷ୍ୟ ସଭ୍ୟତାର ବିକାଶ ଯୁଗକୁ ଯୁଗ ଘଟି ଆସୁଛି, ତାହାର ଚରିତ୍ରର ଗୁଣାତ୍ମକ ଅଧୋଗତି ଓ ବିକୃତି ମଧ୍ୟରେ। ସଭ୍ୟତାର ଅପରନାମ ତେଣୁ ଆଜି ଭେଜାଲ୍ ଓ ବିକୃତ ନକଲ। ଏଇ ଭେଜାଲ ସଭ୍ୟତାପାଇଁ ଆଜି ଏତେ ବାଡ଼ାବାଡ଼ି, ଏତେ ପ୍ରତିଯୋଗିତା।

୧୩/୦୩/୮୮

# ନିଃଶବ୍ଦତାର ସଙ୍ଗୀତ

ଫଗୁଣର ରେଶମୀ ହାୱା ତଥାପି ବୋହିବାକୁ ଆରମ୍ଭ କରିନାହିଁ। ପବନରେ ଅବିରଉଡ଼ା ଚପଳତା ମଧ ନାହିଁ। ମାଘମାସର ନିଷ୍ପ୍ରଭ ଆକାଶ ତଥାପି ଖଣ୍ଡ ଖଣ୍ଡ ପାଉଁଶିଆ ମେଘର ଭୋଟ କମ୍ବଳ ଛାଡ଼ିନାହିଁ। ସବୁଆଡ଼ ଚୁପ୍‌ଚାପ୍...। ମା[illegible]ାତୁଲିଆ ନିରବତା। ହଠାତ୍ ଦୂରର କେଉଁ ବୃକ୍ଷ ଶାଖାରେ କୋଇଲିଟିଏ ଥରେ ଦୁଇଥର ରାବି ଉଠିଲା। ମୁଁ ଉତ୍କୀର୍ଣ୍ଣ ହୋଇ ଝରକାଆଡ଼େ ବାହାରକୁ ଚାହିଁବାବେଳକୁ କୋଇଲିଟି ନିରବ ହୋଇଗଲା। କିନ୍ତୁ ତା'ର ପ୍ରତିଧ୍ୱନି ହିଲ୍ଲୋଳ ତୋଳି ଯେପରି ଦିଗନ୍ତଆଡ଼େ ଭାସିଯାଉଥିଲା। ଗତବର୍ଷ ସେପ୍ଟେମ୍ବର ମାସରେ ଗୋଟେ ମେଘାଛନ୍ନ ଅପରାହ୍ଣରେ ମୁଁ ଶୁଣିଥିଲି, ମୌସୁମ୍‌ର ଶେଷ କୁହୁ। କୋଇଲିଟାର କଣ୍ଠରେ କିନ୍ତୁ ମିଠାସ୍ ନଥିଲା ! ସେଇ ଗତ ଫଗୁଣରୁ ରାବିରାବି ତା'ର କଣ୍ଠ ଯେପରି ଫାଟି ପଡ଼ିଥିଲା।

ମୋର ମନେହେଲା, ସେ କୋଇଲିଟା ତା' ଜୀବନରେ ଅନେକ ରାବିଛି। ଜୀବନସାରା ତାର କଣ୍ଠ ଫିଟିବା ଦିନୁ ସେ ଅଜସ୍ର ରାବିଥିଲେ ସୁଦ୍ଧା କୁହୁର ତୃଷ୍ଣା ତା'ର ତଥାପି ପ୍ରଶମିତ ହୋଇନଥିଲା। କିନ୍ତୁ ଶରୀରର ଯନ୍ତ୍ରପାତି ତ ଆଉ ମାନେନାହିଁ ମନର ଖିଆଲ୍ ! ତା'ର କଣ୍ଠସ୍ୱର ଯେ ଦିନେ କ୍ଳାନ୍ତ ହୋଇପଡ଼ିବ, ଫାଟିଯିବ, ସେ ସେକଥା ଜାଣିସୁଦ୍ଧା ଯେପରି ଜାଣି ନଥିଲା କିମ୍ବା ଜାଣିବାପାଇଁ ଚେଷ୍ଟା କରିନଥିଲା, ସେକଥା କିଏ କହିପାରିବ ? ପକ୍ଷୀର ଜୀବନ ହେଉ ବା ମନୁଷ୍ୟର ଜୀବନ ହେଉ, ସବୁକଥା ଜାଣିସୁଦ୍ଧା କେହି କିଛି ଜାଣିନଥାନ୍ତି। କିନ୍ତୁ ଅବଶେଷରେ ଏପରି ଗୋଟେ ମୁହୂର୍ତ୍ତ ଆସେ ଯେତେବେଳେ ତା'ର ପରିଚୟ ହୁଏ, ଚରମ, ଅବଶ୍ୟମ୍ଭାବୀ ପରିଣତି ସହିତ ! ସେଦିନ ସେହି ମେଘାଛନ୍ନ ସେପ୍ଟେମ୍ବର ଅପରାହ୍ନରେ ସେ ବୁଢ଼ା କୋଇଲିଟାର ଯେପରି ପରିଚୟ ହୋଇଥିଲା, ତା'ର ସବୁ ସଙ୍ଗୀତମୁଖର ମୁହୂର୍ତ୍ତର ଶେଷ ପରିଣତି ସହିତ। ତାର କଣ୍ଠସ୍ୱର କେବେଠାରୁ ହୁଏତ ପଡ଼ିଯାଇଥିଲା, କୌଣସି ସଙ୍ଗିନୀର ଫଟା କଣ୍ଠର ସେ କର୍କଶ ଚିତ୍କାର ପ୍ରତି କର୍ଣ୍ଣପାତ କରିବା କିମ୍ବା ତା'ର ପ୍ରତିଉତ୍ତର ଦେବା କଥାନୁହେଁ, ସେଥିପାଇଁ ଆଉ

ସେପରି କୌଣସି ଆକର୍ଷଣ ଅଥବା ମାଦକତା ନଥିଲା। ତଥାପି ସେ ବୁଢ଼ା କୋଇଲିଟା ବୋବାଇବାକୁ ଚେଷ୍ଟା କଲା; ମାତ୍ର ତା'ର କଣ୍ଠସ୍ୱର ପୂରା ତାଳଲୟରେ ନଫିଟୁଣୁ ଅବସାଦରେ ନିରବ ହୋଇଯାଇଥିଲା। ସେ ଅନେକ ପୂର୍ବରୁ ବୁଝିବା ଉଚିତ୍ ଥିଲା, ତା'ର ସଙ୍ଗୀତର ଆସର କେବେଠାରୁ ଶେଷ ହୋଇଯାଇଛି। ମାତ୍ର ସେଦିନ ସେପ୍ଟେମ୍ବରର ସେହି ମେଘଢଙ୍କା ଅପରାହ୍ନରେ ସେଇ ସତ୍ୟକୁ ସେ ବୁଝିଲା, ଚିହ୍ନିଲା ଓ ତା' ପରଠାରୁ କେଉଁଆଡ଼େ ନିରବରେ ହଜିଗଲା। ଅନ୍ତତଃ ମୁଁ ବାଡ଼ିପଟ ଆମ୍ବଗଛ ଡାଳରେ ସେ ବୁଢ଼ା କୋଇଲିଟାକୁ ଆଉ ଦେଖିଲି ନାହିଁ। ଛଅମାସର ବ୍ୟବଧାନ ପରେ ମୁଁ ଶୁଣିଲି କୋଇଲିର ଏଇ ପ୍ରଥମ ଡାକ ! ଏକ ନୂଆ କୋଇଲିର କଣ୍ଠରେ ଥିଲା ସକାଳ ଶିଶିର ଧୁଆ ସତେଜ୍, ସଜୀବ ମାଦକତା। ଫଗୁଣର ତଥାପି ଡେରି ଅଛି ! ଚାରିଆଡ଼େ ଘେରି ରହିଛି ବିଷାଦର ଋତୁ, କିନ୍ତୁ ଏଇ କୋଇଲିଟି ଯେପରି ତା'ର ଅନ୍ତରର ସଙ୍ଗୀତକୁ ଚାପି ରଖିପାରୁ ନଥିଲା ! ସେଥିପାଇଁ ସେ ଅଦିନରେ ଥରେ ରାବି ଉଠି ପୁଣି ନିରବ ହୋଇଯାଇଥିଲା ! ଫଗୁଣ ନ ଆସିଲେ– କ'ଣ କୁହୁ କେବେ ଆସିଥାଏ ! ଏ ସୃଷ୍ଟିର ବିଚିତ୍ର ନିୟମ।

ଅଳ୍ପଦିନ ପରେ ଫଗୁଣ ଆସିଲା, ଆମ୍ବତୋଟା ମାନଙ୍କର ଶାଖାରେ ଶାଖାରେ ବଉଳର ମହୋତ୍ସବ ! ଆଉ ସେଥି ସଙ୍ଗେସଙ୍ଗେ ଜାଗିଉଠିଲେ ଫଗୁଣର ବୈତାଳିକ କୋଇଲିମାନେ ! ସଙ୍ଗୀ ଡାକିଲା ସଙ୍ଗିନୀକୁ ! ସଙ୍ଗିନୀ ଦେଲା ତା'ର ପ୍ରତ୍ୟୁତ୍ତର। କୋଇଲିମାନଙ୍କର ଦୁନିଆରେ ଲାଗିଗଲା ଯୌବନ ଓ ସଙ୍ଗୀତର ମଦନୋତ୍ସବ... କୁହୁର ଏଇ ଚାତେରୀ ମଧ୍ୟରେ କିନ୍ତୁ ଭୁଲିପାରୁ ନଥିଲି ସେଇ ବୁଢ଼ା କୋଇଲିଟିର କଥା। ହାତରେ କାମ ନଥିବା ଶୂନ୍ୟ ମୁହୂର୍ତ୍ତମାନଙ୍କରେ ମୁଁ ମନେମନେ କଳ୍ପନାର ଜାଲ ବୁଣୁଥିଲି, ସେଇ ବୁଢ଼ା କୋଇଲିଟିକୁ ଘେନି।

ମୋ'ର ଆଖିରେ ଭାସିଉଠେ, ଗୋଟିଏ ଗଛର ପତ୍ର କୋଟରରେ ଗୋଟିଏ ନିଃସଙ୍ଗ ନୀଡ଼ ! ବୁଢ଼ା କୋଇଲିଟି ସେଇ ନୀଡ଼ ଭିତରେ ନେଇଛି ତା'ର ସଙ୍ଗୀତହୀନ ନିଃଶବ୍ଦ ଆଶ୍ରୟ, ସେ ଚାରିଆଡ଼େ କେବଳ ଶୁଣୁଛି, ଅନ୍ୟକୋଇଲିମାନଙ୍କ କଣ୍ଠରେ କୁହୁର ଝଙ୍କାର। ପ୍ରକୃତିର ବଶବର୍ତ୍ତି ହୋଇ ସେ ଚେଷ୍ଟା କରୁଛି, ସେମାନଙ୍କର କଣ୍ଠ ସହିତ ନିଜର କଣ୍ଠ ମିଶାଇବାପାଇଁ ! ତା'ର ପକ୍ଷ ଦୁଇଟା ଅସ୍ଥିର ହୋଇ ଉଠୁଛି, ସଙ୍ଗିନୀର ସନ୍ଧାନରେ ଉଡ଼ିଯିବାପାଇଁ ! ମାତ୍ର ଉଡ଼ିବାକୁ ଚେଷ୍ଟା କରିବାମାତ୍ରେ କ୍ଳାନ୍ତ ଡେଣା ଦୁଇଟା ଉପରକୁ ଉଠିବା ପରିବର୍ତ୍ତେ ଅବସାଦରେ ତଳକୁ ଝୁଲିପଡୁଛି। ସେ ବୁଝି ସୁଦ୍ଧା ବୁଝୁନାହିଁ...। ସଂଗ୍ରାମ କରୁଛି, ତା'ର ଭବିତବ୍ୟ ସହିତ। ସେ ପୁଣି ଡେଣା ଦୁଇଟିକୁ ଝାଡ଼ିଝୁଡ଼ି ଉଡ଼ିଯିବାକୁ ଚେଷ୍ଟା କରୁଛି। ଭାରି ବିଷଣ୍ଣ ଲାଗିଲାଣି। ଏଇ ଅନ୍ଧକାର ପତ୍ରକୋଟର। ଆମ୍ବତୋଟା ମାନଙ୍କରେ ଏବେ ବଉଳର ମହୋତ୍ସବ, କୁହୁର ମୈଫିଲ୍ !

ସେ ଏଠି ଏକ ନିସଙ୍ଗ ପତ୍ରକୋଟର ଭିତରେ ଆଉ ପଡ଼ିରହିବ କାହିଁକି ? ଅତୀତର କେଉଁ ସଙ୍ଗିନୀକୁ ଡାକିବାପାଇଁ, ସେ ରାବିବାକୁ ଚେଷ୍ଟା କରୁଛି। ମାତ୍ର ଫଟାକଣ୍ଠ ଆହୁରି ଫାଟି ଗଲାଣି ! ଏ ତ କୁହୁ ନୁହେଁ, ଛଏ କର୍କଶତା। ତା'ପରେ ସେ ଭବିତବ୍ୟକୁ ମାନିନେଇ ନିରବ ହୋଇଯାଇଛି।

ଏଣିକି ସେ ଦିବାରାତ୍ରି ଶୁଣୁଛି, ନିଃସ୍ତବ୍ଧତା'ର ସଙ୍ଗୀତ। ସେ ଗାଇ ନପାରିଲେ କ'ଣ ହେଲା; ଗୋଟିଏ କଣ୍ଠସ୍ୱର ନିରବ ହୋଇଗଲେ କ'ଣ କୁହୁଧ୍ୱନି ନିରବ ହୋଇଯିବ ! କୁହୁ ଚିରନ୍ତନ, କିନ୍ତୁ ତା'ର କଣ୍ଠ ଥିଲା କ୍ଷଣସ୍ଥାୟୀ ! ସେ ଏତେଦିନ ନିଜର ସଙ୍ଗୀତରେ ନିଜେ ମୁଗ୍ଧ ଥିଲା। ସେଇ ଆତ୍ମନିମଜ୍ଜିତ ମୁଗ୍ଧତା ମଧ୍ୟରେ ସେ ତ କେବେ ଜାଣିପାରି ନଥିଲା ନିଃଶବ୍ଦତାର ମଧ୍ୟ ସଙ୍ଗୀତ ଅଛି। ତା'ର କ୍ଳାନ୍ତ କଣ୍ଠରେ ଆଉ କୁହୁ ଫିଟିବ ନାହିଁ ସିନା, କିନ୍ତୁ ଅନ୍ତର ଭିତରେ ସେ ତ ଶୁଣିପାରିବ ଲକ୍ଷ କଣ୍ଠର କୁହୁରାବ ! ସିଏ ତ ତା'ର ଦେହରେ ଅନୁଭବ କରିପାରିବ ବସନ୍ତର ମହୁ ରୋମାଞ୍ଚ। ତା'ପାଇଁ ଏତକ କ'ଣ ଯଥେଷ୍ଟ ନୁହେଁ !

୨୦/୦୩/୮୮

# ସାହିତ୍ୟ କ'ଣ ଏକ ଛଦ୍ମବେଶ

ଲର୍ଡ ବାଇରନ୍ ନାମରେ ପରିଚିତ, ଜର୍ଜ ଗର୍ଡନ ବାଇରନ୍ ଥିଲେ, ମୋର ଯୌବନର ପ୍ରିୟତମ କବି। ତାଙ୍କର କବିତାପାଇଁ ଯେତେନୁହେ, ସେତେ ତାଙ୍କର ଅଶାନ୍ତ, ବିଦ୍ରୋହୀ, ରୋମାଣ୍ଟିକ୍, ଭାବମୂର୍ତ୍ତିପାଇଁ। ତେଣୁ ଏବେ ଯେଉଁଦିନ ଲଣ୍ଡନରୁ ଜଣେ ବନ୍ଧୁଙ୍କଠାରୁ ପତ୍ର ପାଇଲି ଯେ ବାଇରନ୍‌ଙ୍କର ଦ୍ଵି'ଶତବାର୍ଷିକୀ ପାଳନପାଇଁ ଧୁମ୍‌ଧାମ୍ ଚାଲିଛି, ସେତେବେଳେ ମୁଁ କିଛିଟା ଆନନ୍ଦିତ ଓ କିଛିଟା ଚିନ୍ତାନ୍ୱିତ ହୋଇପଡ଼ିଥିଲି। ଚିନ୍ତାର କାରଣ ଥିଲା- ସାହିତ୍ୟ କ'ଣ ତାହାହେଲେ ଲେଖକ ବା କବିର ଏକ ବର୍ଣ୍ଣାଢ଼୍ୟ ଛଦ୍ମବେଶ ? ପରିଣତ ବୟସରେ ମୋତେ ମନେହୋଇଛି, ରୋମାଣ୍ଟିକ୍-ରିଭାଇଭାଲ୍ କାଳର ସେଲି, କିଟ୍‌ସଙ୍କ ତୁଳନାରେ ବାଇରନ୍‌ଙ୍କ କାବ୍ୟ ପ୍ରତିଭା ଈଷତ୍ ନିଷ୍ପ୍ରଭ ଥିଲା।

କିନ୍ତୁ ଏମାନଙ୍କ ମଧ୍ୟରେ ବାଇରନ ଥିଲେ ବେଶ୍ ପ୍ରସିଦ୍ଧ। ଏ ବିରୋଧାଭାସର ରହସ୍ୟ ଥିଲା, ବାଇରନ୍‌ଙ୍କର ଅନୁଶାସନହୀନ, ଖିଆଲି, ଖାପଛଡ଼ା, ବନ୍ଧନହୀନ ଜୀବନ ଓ ତାଙ୍କୁ ଘେରି ସେଦିନର ଲଣ୍ଡନର ଶିଷ୍ଟବିଶିଷ୍ଟ ଓ ସମ୍ଭ୍ରାନ୍ତ ସମାଜରେ ନାନା ସ୍କାଣ୍ଡାଲ୍‌ର କାହାଣୀ। ଲେଡି କାରୋଲିନ୍ ଲ୍ୟାମ୍‌ଙ୍କ ସହିତ ବାଇରନ୍‌ଙ୍କର ସଂପର୍କ କାହାଣୀ ସେଦିନ ଲଣ୍ଡନର ବିଦ୍‌ଗଧ ସମାଜରେ ଏକପ୍ରକାର ଝଡ଼ ସୃଷ୍ଟି କରିଥିଲା କହିଲେ ଚଳେ। ସେହି ଲେଡି କାରୋଲିନ୍ ବାଇରନ୍‌ଙ୍କ ସଂପର୍କରେ ଲେଖିଛନ୍ତି... 'Mad, bad & dangerous to know.' ନିଜର ବୈମାତ୍ରେୟା ଭଗିନୀ ସହିତ ବାଇରନ୍‌ଙ୍କ ନିଷିଦ୍ଧ ପ୍ରେମକାହାଣୀ ଘେନି ସେଦିନ ଲଣ୍ଡନର ସମ୍ଭ୍ରାନ୍ତ ସମାଜରେ ବହୁ ଭ୍ରୂଲତା କୁଞ୍ଚିତ ହୋଇଥିଲା। ଏହା ଉପରେ ଥିଲା ପୁଣି ବାଇରନ୍‌ଙ୍କ ସମଲିଙ୍ଗୀ ଯୌନବ୍ୟଭିଚାର ଘେନି ଅସଂଖ୍ୟ କାହାଣୀ। ବାଇରନ ଅପେକ୍ଷାକୃତ ଅସ୍ୱଚ୍ଛଳ ପରିବେଶରେ ଜନ୍ମଗ୍ରହଣ କରିଥିଲେହେଁ ନିୟତିର ବିଚିତ୍ର ବିଧାନରେ ଜଣେ ଲର୍ଡଙ୍କର ବିସ୍ତୀର୍ଣ୍ଣ ସଂପତ୍ତି ଉତ୍ତରାଧୀକାର ସୂତ୍ରରେ ଆକସ୍ମିକ ଭାବରେ ପାଇଥିଲେ। ତାଙ୍କର ଜନ୍ମଗତ ସଂସ୍କାର ସହିତ ଜୀବନର ଆକସ୍ମିକ ପରିବେଶର ସାମଞ୍ଜସ୍ୟ ନଥିଲା।

ସେ ପୁଣି ଜନ୍ମରୁ ସାମାନ୍ୟ ଖଞ୍ଜ ଥିଲେ। ସେଥିପାଇଁ ବହୁ ପ୍ରେମିକା ବାଇରନ୍‌ଙ୍କର ପ୍ରେମନିବେଦନ ପ୍ରତ୍ୟାଖ୍ୟାନ କରିଥିଲେ। ତା'ର ପ୍ରତିକ୍ରିୟା ସ୍ୱରୂପ ବାଇରନ୍‌ଙ୍କର ଯୌନ ଜୀବନ ଥିଲା ଯେପରି ଖାପଛଡ଼ା, ସେହିପରି ବାଧାବନ୍ଧନହୀନ, ଅନୁଶାସନମୁକ୍ତ, ଓ ବିଦ୍ରୋହୀ। ବାଇରନ୍ ନିଜ ସଂପର୍କରେ କହିଛନ୍ତି, "ହଠାତ୍ ଦିନେ ସକାଳେ ଉଠିଲାବେଳକୁ ସେ ଖୁବ୍ ପ୍ରସିଦ୍ଧ ହୋଇପଡ଼ିଥିଲେ"। ...'Awake one morning and found himself famous'... ଏ ଆଲେକ୍‌ଜାଣ୍ଡରଙ୍କର... 'ଭିନି, ଭିଡ଼ି, ଭିସି' ପରି କଥା! କିନ୍ତୁ ଏବେ ମୋର ମନେହୁଏ, ବାଇରନ୍‌ଙ୍କର କବିତା ତାଙ୍କୁ ସେଦିନ ଯେତେ ପ୍ରସିଦ୍ଧି ଦେଇନଥିଲା, ସେତେବେଶି ପ୍ରସିଦ୍ଧି ଦେଇଥିଲା ତାଙ୍କର ରୋମାଣ୍ଟିକ୍ ବିଦ୍ରୋହୀ ଭାବମୂର୍ତ୍ତି ! ବସ୍ତୁତଃ ସେଦିନ ପ୍ରଥା ଓ ପରମ୍ପରାବଦ୍ଧ ଲଣ୍ଡନର ଅଭିଜାତ ସମାଜରେ ସେ ଏକପ୍ରକାର ଅପାଂକ୍ତେୟ ଥିଲେ। ଅଥଚ ଆଜି ଲଣ୍ଡନରେ 'Mad, bad & dangerous...' 'କବି ବାଇରନ୍‌ଙ୍କର ଦ୍ୱିଶତବାର୍ଷିକୀ ପାଳନପାଇଁ ବିପୁଳ ଆୟୋଜନ ଚାଲିଚି ! ଏଇ ଦୁଇଶହ ବର୍ଷ ମଧ୍ୟରେ ଲଣ୍ଡନର ବିଦ୍‌ଗଧ ସମାଜ ଭୁଲିଯାଇଛି, ବାଇରନ୍‌ଙ୍କର ସବୁ ବିକୃତି ଓ ବ୍ୟାଭିଚାର। ନିଜ କାବ୍ୟସୃଷ୍ଟି ମାଧ୍ୟମରେ ସେ ଏକ ନୂତନ ବିଭୁତିରେ ଉଦ୍‌ଭାସିତ ହୋଇଉଠିଛନ୍ତି !

ସାହିତ୍ୟର ଏଇ ବିଚିତ୍ର 'ଆଲ୍‌କେମି' ବା ସ୍ପର୍ଶମଣି- ମୋତେ ପ୍ରକୃତରେ ବିସ୍ମିତ ଓ ଚିନ୍ତାନ୍ୱିତ କରିଦେଇଥିଲା। ଲେଖକ ବା କବିର ଅସଲ ଚେହେରା ପ୍ରକୃତରେ କ'ଣ ତାହାହେଲେ ତାହା ସାହିତ୍ୟକୃତିରେ ନାହିଁ ? ଏବେ ଦେଖୁଛି, ଅନେକ ନିଜର ବାସ୍ତବ ଜୀବନରେ ଯାହା ନୁହନ୍ତି, ସେଇଆକୁ ସେମାନେ ଲେଖୁଛନ୍ତି ଗଦ୍ୟ ବା ପଦ୍ୟରେ, ଏପରିକି ଦୁର୍ନୀତି ଓ ଭ୍ରଷ୍ଟାଚାରର ଯିଏ ଜୀବନ୍ତ ପ୍ରତୀକ ସେ ସୁଦ୍ଧା ତାର ଲେଖାରେ ଲେଖିଛି ସୁନୀତି ଓ ସଦାଚାରର ଯେତେସବୁ ଆପ୍ତକଥା ! ପୀଡ଼କ ଓ ଅତ୍ୟାଚାରୀ ଲେଖିଛି- ଶ୍ରଦ୍ଧା, ପ୍ରୀତି ଓ ସଦ୍‌ଭାବନାର କଥା। ଘୋର ପ୍ରତିକ୍ରିୟାଶୀଳ ସେହିପରି ନିଜ ଲେଖାରେ ଦେଇଛି, ପ୍ରଗତିର ଜୟଧ୍ୱନି ! ଏସବୁ କିପରି ସମ୍ଭବ ହେଉଛି ଓ କାହିଁକି ? ହୁଏତ ହୋଇପାରେ ଉତ୍ତରପୁରୁଷମାନଙ୍କଠାରୁ ସାହିତ୍ୟର ମଖମଲି ଆବରଣ ତଳେ ନିଜର ପ୍ରକୃତ ଚେହେରା ଲୁଚାଇ ରଖିବାପାଇଁ। ଷୋଡ଼ଶ-ସପ୍ତଦଶ ଶତାବ୍ଦୀର ପ୍ରସିଦ୍ଧ ଇଂରାଜୀ ପ୍ରାବନ୍ଧିକ ଫ୍ରାନ୍‌ସିସ୍ ବେକନ୍‌ଙ୍କ ସଂପର୍କରେ ବ୍ରିଟେନ୍‌ର ଲର୍ଡ ଚାନ୍‌ସେଲର ଲର୍ଡ ଡେନ୍‌ଙ୍ଗସ୍ ଲେଖିଛନ୍ତି... ଅଧିକାଂଶ ଲେଖକ ହେଉଛନ୍ତି, ଡକ୍ଟର ଜେକିଲ୍ ଓ ମିଷ୍ଟର ହାଇଡ୍ !... ଅଧାଆଲୁଅ, ଅଧାଛାଇ ! ଦ୍ୱିଧାକ୍ରାନ୍ତ ବ୍ୟକ୍ତିତ୍ୱ। ଗୋଟିଏ ପାଖରେ ଦେବତ୍ୱ ଅନ୍ୟ ପାଖରେ ଇତରତା ! ଲର୍ଡ ବାଇରନ୍‌ଙ୍କର କବିତା ଓ ଜୀବନ ମଧ୍ୟରେ ସେହି ଖଣ୍ଡିତ ବ୍ୟକ୍ତିତ୍ୱ ଓ ବିରୋଧାଭାସ ପରିସ୍ଫୁଟ ହୋଇ ଉଠିଛି। ସେ ପ୍ରକୃତରେ ଜୀବନରେ ଯାହା ଥିଲେ ଇତିମଧ୍ୟରେ ଆଜିର

ପାଠକ ସମାଜ ତାହା ଭୁଲିଯାଇଛି। କିନ୍ତୁ ଆଜି ଶ୍ରଦ୍ଧାର ସହିତ ସ୍ମରଣ ରଖିଛି, କେବଳ ତାଙ୍କର କବିତା। ତେଣୁ ବାଇରନ୍‌ଙ୍କର ଦ୍ୱିଶତବାର୍ଷିକୀ ନୁହେଁ, ଏହା ପ୍ରକୃତରେ ତାଙ୍କ କାବ୍ୟମୂର୍ତ୍ତିର ଜୟନ୍ତୀ !

ତା'ହେଲେ ସାହିତ୍ୟ କ'ଣ କବି ବା ଲେଖକର ଏକ ଛଦ୍ମବେଶ ? ସାହିତ୍ୟ କ'ଣ ମିଥ୍ୟାର ଏକ ଉଜ୍ଜ୍ୱଳ ଘଟାଟୋପ ? ଲର୍ଡ ବାଇରନ୍ ଲେଖିଛନ୍ତି... "ମିଥ୍ୟା ହେଉଛି ସତ୍ୟର ଛଦ୍ମବେଶ"... "a lie is nothing but the truth in masquarade." ମୋ ମତରେ କିନ୍ତୁ ମିଥ୍ୟାର ଛଦ୍ମବେଶ କଦାପି ସତ୍ୟ ହୋଇନପାରେ। ସେହିପରି ସାହିତ୍ୟ ଲେଖକ ବା କବିର କଦାପି ଛଦ୍ମବେଶ ହେବା ଉଚିତ୍ ନୁହେଁ।

୨୭/୦୩/୮୮

# ଘଣ୍ଟପାଟୁଆ

ଝରକା ବାହାରେ ବୁଢ଼ାଚମ୍ପାଗଛର ଡାଳରେ, ଚୈତ୍ର ମଧ୍ୟାହ୍ନର ଗରମହାୱା ସୃଷ୍ଟି କରିଛି ପତ୍ର ମର୍ମର। ମୁଁ ଡିଭାନ୍ ଉପରେ ପଡ଼ି ଝରାପତ୍ରର ସଙ୍ଗୀତ ଶୁଣୁଛି। ଦିନ କେତେଟା ପରେ ମହାବିଷୁବ ସଂକ୍ରାନ୍ତି, ତା'ପରେ ବୈଶାଖ। ହଠାତ୍ ମଧ୍ୟାହ୍ନର ସ୍ତବ୍ଧତା ଭାଙ୍ଗି ଫାଟକ ବାହାରେ ଗୋଟାଏ ଘଣ୍ଟି ବାଜି ଉଠିଲା। ହରଚଣ୍ଡୀ ଠାକୁରାଣୀଙ୍କ ଘଣ୍ଟ-ପାଟୁଆ ନନ୍ଦ ଦେଉରୀ ଆସିଲେ କି ବୁଲି ! ମୁଁ ଭୃତ୍ୟକୁ ଡାକି କବାଟ ଫିଟାଇଲି। ନା, ଏ ନନ୍ଦ ଦେଉରୀ ନୁହନ୍ତି। ହାଡ଼ଗିଲା ଚେହେରାର ଲମ୍ବା କଳାକିଟିକିଟି ଦିଶୁଥିବା ଘଣ୍ଟପାଟୁଆଟିଏ ମୁଣ୍ଡ ଉପରେ ପାଟୁଆ ରଖି ଫାଟକବାହାରେ ଠିଆ ହୋଇଛି। ତା' ସାଙ୍ଗରେ ଆସିଥିବା ହାଫ୍‌ପ୍ୟାଣ୍ଟ୍ ପିନ୍ଧା ବାର/ତେରବର୍ଷର ପିଲାଟିଏ ଘଣ୍ଟ ପିଟୁଥିଲା। ଏ ଘଣ୍ଟପାଟୁଆ ଆଉ କେବେ ଆମ ଘରକୁ ଆସିନଥିଲା କିମ୍ବା ନନ୍ଦ ଦେଉରୀ ପ୍ରତିବର୍ଷ ଏଇଦିନ ଯେପରି ସଗର୍ବ ପାଟୁଆ ସଜାଇ ଯଜମାନପ୍ରତି ଶ୍ରଦ୍ଧା, ପ୍ରତ୍ୟୟ ଓ ଶୁଭକାମନା ନେଇ ଆସନ୍ତି, ଯା'ଠାରେ କୌଣସି ଲକ୍ଷଣ ଦେଖିପାରି ନାହିଁ। ଯେ ଯେପରି ଆସିଥିଲା କେବଳ କିଛି ଦକ୍ଷିଣା ଉଦ୍ଦେଶ୍ୟରେ। ତାକୁ ଟଙ୍କାଟିଏ ଦେଇ ବିଦା କରିଦେଲି।

ନନ୍ଦ ଦେହୁରୀ ଆସିଥିଲେ ପ୍ରାୟ ପାଞ୍ଚ/ଛଅବର୍ଷ ତଳେ। ସେଥର କହୁଥିଲେ, ଅଣ୍ଠାବାତରେ ସେ ଅକାମୀ ହୋଇଗଲେଣି। ମା'ର ସେବା କରିବାପାଇଁ ଏଣିକି କଷ୍ଟ ହେଉଛି ! ଆଉ ଏଣିକି ଘଣ୍ଟପାଟୁଆ ନେଇ ଏତେ ଦୂରବାଟରୁ ସେ ସହରକୁ ଆସିପାରିବେ କି ନାହିଁ ସନ୍ଦେହ ! ନାତିଟୋକାକୁ ଏ କାମପାଇଁ ସେ ଶିଖାଉଥିଲେ, ମାତ୍ର ଏଥିପାଇଁ ତାକୁ ସଂକୋଚ ଲାଗିଲା। ସେ ଖୋଜୁଛି, କୋଉ ଅଫିସ୍‌ରେ ପିଅନ ଚାକିରି। ଏହିପରି ତାଙ୍କ ନିଜ ସୁଖଦୁଃଖ କଥା ପରେ, ସେ ଆଗେ ପଚାରି ବସନ୍ତି ଗୋଟିଗୋଟି କରି ମୋ' ପରିବାରର ହାନିଲାଭ କଥା। ସହରଠାରୁ ଷାଠିଏ/ସତୁରି କିଲୋମିଟର ଦୂରର ଅଧିବାସୀ ନନ୍ଦ ଦେହୁରୀ ପ୍ରତିବର୍ଷ ଘଣ୍ଟପାଟୁଆ ନେଇ ଆମ ଘରକୁ ଆସି ଯେପରି ପରିବାରର ଜଣେ ଶୁଭାନୁଧ୍ୟାୟୀ ହୋଇ ପଡ଼ିଥିଲେ। ସେସବୁ ପ୍ରସଙ୍ଗ ସାରିବାପରେ ନନ୍ଦ ଦେହୁରୀ ଆରମ୍ଭ

କରନ୍ତି ଦେଉଳରେ ପଣ୍ଡା ଓ ମାଳି ସେବକମାନଙ୍କ ଭିତରେ ଲାଗିଥିବା ମାଲିମକଦ୍ଦମା କଥା। ଦେବୋତ୍ତର ବାଲା କିପରି ପଣ୍ଡାମାନଙ୍କ ଆଡ଼କୁ ଢ଼ଳିଛନ୍ତି, ସେ ନାଲିସ୍ ବି କରନ୍ତି ପୁଟ ଦେଇ। ତାଙ୍କ କହିବା ଅନୁସାରେ ମାଳିମାନେ ହେଉଛନ୍ତି ଠାକୁରାଣୀଙ୍କ ଆଦିସେବକ। ପଣ୍ଡାମାନେ କେବଳ ଅନ୍ନଭୋଗ ରାନ୍ଧି ଭୋଗ ଲଗାଉଥିଲେ। ସେଥିପାଇଁ ଜମି ମଧ୍ୟ ପାଇଥିଲେ। ମାତ୍ର କ୍ରମେ ସେମାନେ ଜମିସବୁ ବିକିଭାଙ୍ଗିଦେଇ ଦୈନିକ ଅନ୍ନଭୋଗପାଇଁ ମାଳିମାନଙ୍କଠାରୁ ଚାଉଳ ନେଉଛନ୍ତି। ଦକ୍ଷିଣାରେ ଭାଗ ବସାଉ ଅଛନ୍ତି। ମାଳିମାନଙ୍କର ମକଦ୍ଦମା ସେମିତି ଝୁଲି ରହିଛି; ଫଇସଲା ହେଉନାହିଁ। ପରିସ୍ଥିତିରେ କ'ଣ କରାଯିବ ବୋଲି ସେ ମୋର ପରାମର୍ଶ ମାଗନ୍ତି। ଏହିପରି ନାନା ସାଂସାରିକ କଥାବାର୍ତ୍ତା ପରେ ନନ୍ଦ ଦେହୁରୀ ପ୍ରସ୍ତୁତ ହୁଅନ୍ତି ପାଟୁଆନାଚପାଇଁ।

ସଙ୍ଗେ ସଙ୍ଗେ ତାଙ୍କର ବେଶ ପରିବର୍ତ୍ତନ ହୋଇଯାଏ। ଅଣ୍ଟା ଚାରିପଟେ ବେଢ଼ାଇ ନିଅନ୍ତି ଗୋଟାଏ କଳା ଘାଗରା। ତା'ପରେ ମୁଣ୍ଡଠାରୁ ଅଣ୍ଟା ପର୍ଯ୍ୟନ୍ତ ବେଢ଼ାଇ ନିଅନ୍ତି ଗୋଟାଏ କଳା ଘାଗରା। ତା' ପରେ ମୁଣ୍ଡଠାରୁ ଅଣ୍ଟା ପର୍ଯ୍ୟନ୍ତ ସେ ବେଢ଼ାଇ ନିଅନ୍ତି ଶାଢ଼ି ଅଞ୍ଚଳ ପରି, ସେଇ କଳାକନାର ଗୋଟାଏ ଓଢ଼ଣି। ପାଲିସ୍-କଳାକାଠରେ ତିଆରି ଖଣ୍ଡେ ଗୋଲାକାର କାଠସ୍ତମ୍ଭ ଠାକୁରାଣୀଙ୍କ ପ୍ରତୀକ। ଏହା ଦିନେ ଶାବର ସମାଜରେ ଥିଲା ଠାକୁରାଣୀ ବା ଦେବୀଙ୍କ ପ୍ରତୀକ। ପରବର୍ତ୍ତୀ କାଳରେ ଏ କାଠସ୍ତମ୍ଭ ବ୍ରାହ୍ମଣ୍ୟାୟିତ୍ ହୋଇ ହେଲେ ସ୍ତମ୍ଭେଶ୍ୱରୀ। କିନ୍ତୁ ଶକ୍ତିପୂଜାର ବହୁ ଆବର୍ତ୍ତନ ବିବର୍ତ୍ତନ ଭିତରେ ଏଇ ଆଦିମ କାଠସ୍ତମ୍ଭ କ୍ରମେ ପରିଣତ ହୋଇଛି, ପାଟୁଆ ଠାକୁରାଣୀ ରୂପେ ! ତାଙ୍କର ମାଳି ବା ଦେହୁରୀମାନେ ଘାଗରା ପିନ୍ଧି, ଦେହରେ ଘୋଡଣି ଢାଙ୍କି, ନାରୀବେଶରେ ସେଇ ପାଟୁଆ ଠାକୁରାଣୀଙ୍କୁ ମୁଣ୍ଡ ଉପରେ ରଖି ଚୈତ୍ରମାସରେ ଘରଘର ବୁଲି ନାଚନ୍ତି। ଏ ହେଉଛି ଘଣ୍ଟପାଟୁଆ ନାଚ।

ନନ୍ଦ ଦେହୁରୀଙ୍କ ସାଙ୍ଗରେ ଥାଏ ଦୁଇଟା ଛୋଟଛୋଟ ରଣପା। ସେଇ ରଣପା ପିନ୍ଧି ସେ ସିମେଣ୍ଟ ଅଗଣା ଉପରେ ବହେ ନାଚନ୍ତି। ତା'ପରେ ତଳେ ଚିତ୍ ହୋଇ ଶୋଇ କପାଳ ଉପରେ ପାଟୁଆସ୍ତମ୍ଭ ରଖି ସେ ଅଦ୍ଭୁତ ଭାବରେ ନାଚନ୍ତି। ସେତେବେଳେ ଘଣ୍ଟ ବାଜେ ତାଳରଖି... ଡି... ଡିଙ୍ଗ୍... ଡାଓ... ଡି... ଡିଙ୍ଗ୍.... ଡାଓ...। ଏହିପରି ନାଚ ଶେଷହେବାପରେ ଠାକୁରାଣୀଙ୍କ ପାଖରେ ଭୋଗ ଦିଆଯାଏ। ତା'ପରେ ନନ୍ଦ ଦେହୁରୀ ଦକ୍ଷିଣା ନେଇ ବିଦାୟ ନିଅନ୍ତି...।

କିନ୍ତୁ ସେ ଗତ କେତେବର୍ଷ ଆଉ ବୋଧେ ସହରକୁ ଆସୁନାହାନ୍ତି। ବଞ୍ଚିଛନ୍ତି କି ନାହିଁ ଜାଣିବାର ଉପାୟ ନାହିଁ। ନାତିଟୋକା ଶେଷକୁ ହୁଏତ କେଉଁଠି ଚାକିରି ପାଇଗଲା। ଚୈତ୍ରମାସଟା ମୋତେ ପ୍ରକୃତରେ ନିରୁତ୍ସବ ଲାଗୁଛି। ଏ କେବଳ ଘଣ୍ଟପାଟୁଆ ନନ୍ଦ

ଦେହୁରୀଙ୍କ ସଂସାରରେ ଯେ ଘଟିଛି, ତା'ନୁହେଁ, ଆଉରି ଅନେକ ଘଣ୍ଟପାଟୁଆ ମଧ୍ୟ ସଭ୍ୟତାର ଗ୍ରାସରେ ପଡ଼ି ଘ  ପାଟୁଆ ସେବା ବନ୍ଦ କରିଦେବେଣି !

ଯାହା ଦିନେ ଥିଲା, ଆମ ନିଜ ଜୀବନ ସହିତ ଘନିଷ୍ଠ ଓ ଆବେଗିକ ଭାବରେ ଜଡ଼ିତ ଏକ ଉତ୍ସବ, ଆଜି ତାହା ପରିଣତ ହୋଇଛି ଲୋକନୃତ୍ୟର ଏକ ନିଷ୍ପ୍ରାଣ ଫର୍ମରେ ଅଥବା ଘରଘର ବୁଲି ଦକ୍ଷିଣା ସଂଗ୍ରହର ଏକ ସୁଲଭ ପନ୍ଥାରେ। ଘଣ୍ଟପାଟୁଆ ଆମ ଜୀବନ ଓ ପରିବେଶରୁ ବିଦାୟ ନେଇଗଲେଣି ! ଏହା ଏବେ ରହିଛି କେବଳ 'ଆପ୍‌ନା ଉତ୍ସବ' ପରି ବରାଦି ସାଂସ୍କୃତିକ ସମାରୋହମାନଙ୍କରେ। ସବୁ ଲୋକ-କଳାର ଏହାହିଁ ହେଉଛି କ୍ରମ ପରିଣତି। ଜୀବନର ଆବେଗିକ ସ୍ତରରୁ ଏହା ବିଦାୟ ନେଇ କ୍ରମେ ରହିଯାଏ, ବରାଦୀ ସାଂସ୍କୃତିକ ଉତ୍ସବମାନଙ୍କରେ କେବଳ ଏକ ଫର୍ମ ରୂପେ।

୦୩/୦୪/୮୮

# ଦୁଇଟି କ୍ଷୁଧାର କାହାଣୀ

ଖବରକାଗଜରେ ପଢ଼ିଲି... ଖବରଟା ରହସ୍ୟଜନକ ହେଲେ ହେଁ ନିର୍ମମ... ନରସିଂହପୁର ଅଞ୍ଚଳରେ ଜଙ୍ଗଲ ପାଖକୁ ଲାଗି କେତୋଟି ଗ୍ରାମ। କିଛିଦିନ ହେବ ଗୋଟାଏ ବାଘ ବା ଗୋଟାଏ କିଛି ଜନ୍ତୁ ସନ୍ଧ୍ୟାବେଳେ ଅନ୍ଧାରରେ ଗାଁ ଭିତରକୁ ପଶି ଶିଶୁମାନଙ୍କୁ ଝାମ୍ପି ନେଉଯାଉଛି। କିଏ କହୁଛି, ସେଇଟା ବାଘ ନୁହେଁ, ରାମଶିଆଳି ହୋଇପାରେ; କିଏ ପୁଣି କହୁଛି ଜନ୍ତୁଟା ଗୋଟାଏ ମାଙ୍କଡ଼। ଅନ୍ଧାର ଭିତରେ ଗାଁ ଲୋକେ ଠିକ୍ ବାରି ପାରୁନାହାନ୍ତି। ଆଜି ଏଇ ଇନ୍‌ସାଟ୍ ଉପଗ୍ରହ, ସୁପର କମ୍ପ୍ୟୁଟର ଯୁଗରେ ସୁଦ୍ଧା ଏସବୁ ଗାଁର ଲୋକମାନେ ନିରନ୍ଧ୍ର ଅନ୍ଧକାର ଭିତରେ ଏକବିଂଶ ଶତାବ୍ଦୀ ଆଡ଼େ ବାଟ ଦରାଣ୍ଡି ଦରାଣ୍ଡି ହାମୁଡ଼େଇ ଚାଲିଛନ୍ତି। ଗାଁରେ ଯେଉଁ ଗୋଟାଏ ଦୁଇଟା ଲଣ୍ଠନ ଅଛି ତାହାର ମିଞ୍ଜିମିଞ୍ଜି ଆଲୁଅରେ ମଣିଷ ଶିଶୁମାନଙ୍କୁ କି ଜାନ୍‌ୱାର୍ ଝାମ୍ପି ନେଉଛି, ଠିକ୍ ଜାଣି ପାରୁନାହାନ୍ତି। ସେ ଗାଁମାନଙ୍କୁ ବିଜୁଳି ଆଲୁଅ ତଥାପି ଯାଇନାହିଁ। ଆଜି ସୁଦ୍ଧା ସେଠାରେ ସେହି ପ୍ରାଗୈତିହାସିକ ଆଦିମ ଅନ୍ଧକାର। ଏଇ ଅନ୍ଧକାର ଭିତରୁ ସେଦିନ ଜନ୍ମଲାଭ କରିଥିଲେ, ଯେତେସବୁ ଭୂତ, ପ୍ରେତ, ଡାହାଣୀ, ଚିରଗୁଣୀ, ଯକ୍ଷ, ରକ୍ଷ, ପିଶାଚର ଦଳ। ଏବେ ମଧ୍ୟ ସେମାନେ ମଣିଷର ସେଇ ଅନ୍ଧାରୁଆ ଅବଚେତନ ଭିତରେ ଲୁଚି ଛପି ରହିଯାଇଅଛନ୍ତି।

ଆଉ ଦିନେ ଖବର ବାହାରିଥିଲା ନୟାଗଡ଼ ଓ ଖଣ୍ଡପଡ଼ା ମଝିରେ କେଉଁ ଗୋଟାଏ ଗାଁ ଭିତରକୁ ଚିତା ବାଘଟାଏ ଦିନ ବେଳେ ନିର୍ଭୟରେ ପଶି ଗୋଟାଏ ପିଲାକୁ ଝାମ୍ପି ନେଉଥିଲା; ମାତ୍ର ଲୋକେ ଘେରିଯିବାରୁ ବାଘଟା ଗଛ ଉପରକୁ ଉଠିଗଲା। ଦିନଯାକ ଗଛରୁ ଓହ୍ଲାଇଲା ନାହିଁ। ସନ୍ଧ୍ୟାର ଅନ୍ଧାର ଭିତରେ ବାଘଟା ଗଛରୁ ଓହ୍ଲାଇ ସେଇ ଅନ୍ଧାରରେ ଜଙ୍ଗଲ ଭିତରକୁ ପଳାଇଲା। ଇଏ ଖାଲି ଅନଗ୍ରସର ଓଡ଼ିଶାରେ କିଟିକିଟି ଅନ୍ଧାର ଭିତରେ ଅସହାୟ ମାନବୀୟ ସ୍ଥିତି ନୁହେଁ। ୨୧ ମାର୍ଚ୍ଚ ୧୯୮୮ 'ଇଣ୍ଡିଆନ୍ ଏକ୍ସପ୍ରେସ୍'ରେ ପଢ଼ିଲି, ଅଗ୍ରଗାମୀ ବମ୍ବେ ମହାନଗରୀର ଉପକଣ୍ଠରେ ଝକ୍‌ଝକ୍ ବିଜୁଳି ଆଲୁଅ ଭିତରେ

ସୁଦ୍ଧା ଚିତା ବାଘଟିଏ ଗୋଟିଏ ଚାରିବର୍ଷ ବୟସ୍କା ଆଦିବାସୀ ଝିଅକୁ ଝାମ୍ପିନେଇ ପଳାଇଗଲା। ବାଘମାନେ, ମନେହେଉଛି ଆଜି ମଣିଷଠାରୁ ବଳି ବୋଧହୁଏ ବେଶି କ୍ଷୁଧିତ ପାଲଟିଗଲେଣି। ତା' ନହେଲେ ସେମାନେ ନିଃଶବ୍ଦରେ ଲୋକାଳୟ ଭିତରକୁ ପଶି ମଣିଷ ଶିଶୁ ଝାମ୍ପି ନେଉନଥାନ୍ତେ। ମଣିଷ ଜଙ୍ଗଲ ପଦାକଲା। ଜଙ୍ଗଲର ଜୀବଜନ୍ତୁମାନଙ୍କୁ ମାରି ସଫା କରିଦେଲା। ବାଘର ଆହାର ଗଲା, ବିହାର ମଧ୍ୟ ଗଲା। ଏହାପରେ ବାଘ ମଣିଷକୁ ଆହାର କରିବା ଛଡ଼ା ତା'ର ଆଉ କି ଚାରା ଅଛି ? ବାଘ ଓ ମଣିଷ ମଧ୍ୟରେ ଇଏ ଆତ୍ମରକ୍ଷାର ଯୁଦ୍ଧ ! ଦୁଇଟି କ୍ଷୁଧାର ସଂଘାତ।

ଅନୁସନ୍ଧାନ କରି ଜାଣିଲି, ବ୍ୟାଘ୍ର ସଂରକ୍ଷଣପାଇଁ ଏ ଦେଶରେ ତିଆରି ହେଲାଣି ପଇଁଚାଳିଶି ଗୋଟି ନ୍ୟାସନାଲ୍ ପାର୍କ, ପୁଣି ଦୁଇଶହ ଏକୋଇଶି ଗୋଟି ଅଭୟାରଣ୍ୟ। ଏବେ ବନ୍ୟଜନ୍ତୁ-ସଂରକ୍ଷଣ ଆନ୍ଦୋଳନର ପୁରୋଧାମାନଙ୍କର ଚାପରେ ପଡ଼ି ସରକାର ଖଞ୍ଜି ଦେଇଛନ୍ତି ଏଥିପାଇଁ ନବେ ଲକ୍ଷ ହେକ୍ଟର ପରିମିତ ଭୂମି। ଏଇ ଭୂମି ଭିତରେ ବାଘମାନେ ନିଃଶଙ୍କରେ ରହିପାରିବେ। କିନ୍ତୁ ଭାରତର ଜନସଂଖ୍ୟା ବୃଦ୍ଧି ସହିତ ତାଳ ଦେଇ ଏସବୁ ସଂରକ୍ଷଣ ବ୍ୟବସ୍ଥା ଫଳରେ ବାଘମାନଙ୍କର ସଂଖ୍ୟା ମଧ୍ୟ କ୍ରମେ ଦ୍ରୁତଗତିରେ ବୃଦ୍ଧିପାଇ ଚାଲିଛି। ବନ୍ୟଜନ୍ତୁ ବିଶାରଦମାନଙ୍କର କହିବା ପ୍ରକାରେ ଗୋଟିଏ ବାଘପାଇଁ ପ୍ରୟୋଜନ ପନ୍ଦର ବର୍ଗକିଲୋମିଟର ଜଙ୍ଗଲ ଓ ସେଥିରେ ପର୍ଯ୍ୟାପ୍ତ ପରିମାଣର ତୃଣଭୋଜୀ ଜୀବଜନ୍ତୁ। କିନ୍ତୁ ଗୋଟିଏ ମଣିଷର ବଞ୍ଚିବା ପାଇଁ ଅନ୍ୟୂନ କେତେ ଭୂମି ଓ କେତେ ଖାଦ୍ୟ ପ୍ରୟୋଜନ, ଏ ପର୍ଯ୍ୟନ୍ତ ତାହାର ହିସାବ ଯୋଜନା କମିଶନ କଷି ପାରିଲେ ନାହିଁ। ମଣିଷମାନେ ପ୍ରୋଜେକ୍ଟ ଟାଇଗର ପ୍ରକଳ୍ପ ଓ ଅଭୟାରଣ୍ୟମାନଙ୍କରୁ ତଡ଼ାଖାଇ ଭୂମିହୀନ, ବାସହୀନ, ଅବ୍ୟବସ୍ଥିତ ଓ କ୍ଷୁଧିତ ଅବସ୍ଥାରେ ବୁଲୁଛନ୍ତି। ବାଘମାନଙ୍କୁ ମଧ୍ୟ ଜଙ୍ଗଲ ଆଉ କୁଳଉ ନାହିଁ। ତୃଣଭୋଜୀ ପଶୁମାନେ କେବେଠାରୁ ଯାଇଛନ୍ତି ମଣିଷର ଜଠରରେ। ବାଘ ତେଣୁ ଆଜି ଖାଦ୍ୟ ସଂଗ୍ରହପାଇଁ ପଶୁଛି ଲୋକାଳୟମାନଙ୍କ ଭିତରେ...। ମଣିଷପାଇଁ ତ ଆଉ କେଉଁଠି ଅଭୟାରଣ୍ୟ ନାହିଁ; ଯେଉଁଠି ମଣିଷ କ୍ଷୁଧା,ପାଚନ ଓ ଦମନରୁ ମୁକ୍ତ ରହି ବାଘ ପରି ନିଃଶଙ୍କରେ ବିଚରଣ କରିପାରିବ !

ମଣିଷପାଇଁ ସେ ଅଭୟାରଣ୍ୟ କେବେ ? କେଉଁ ଶତାବ୍ଦୀରେ ?

୧୦/୦୪/୮୮

# ନାରୀର ଶେଷ ପରିଚୟ

ପୂର୍ବତନ ଦେଶୀୟ ରାଜ୍ୟ ବଲାଙ୍ଗୀରରେ ଗୋଟେ ଜମିଦାରୀ... ଜରାସିଂଗା। ପ୍ରତିବର୍ଷ ଆଶ୍ୱିନ ମାସରେ ଜରାସିଂଗାରେ ଦୁର୍ଗାପୂଜାବେଳେ ବୟରାପିଟା କାଳିଶି ଯାତ୍ରା ଅନୁଷ୍ଠିତ ହୋଇଥାଏ। ବୟରାର ଅର୍ଥ ହେଉଛି- ପାଗଳ। କାଳିଶି ଉପରେ ଠାକୁରାଣୀ ଅବତରି ଥିବାବେଳେ ସେ ବେତରେ ବୟରାମାନଙ୍କୁ ପିଟିଲେ ପାଗଳାମୀ ଆରୋଗ୍ୟ ହୋଇଯାଏ, 'କଣ୍ଟକେ ନୈବ କଣ୍ଟକ' ନ୍ୟାୟରେ। ଏହାଛଡ଼ା ବୟରାପିଟା କାଳିଶିଠାରୁ ହୁକୁମ୍ ପାଇଲେ ବନ୍ଧ୍ୟାନାରୀମାନେ ସନ୍ତାନବତୀ ହୋଇଥାନ୍ତି। ସେଥିପାଇଁ ଜରାସିଂଗାରେ ଏ ବୟରାପିଟା ଯାତ୍ରାକୁ କେବଳ ବଲାଙ୍ଗୀରରୁ ନୁହେଁ, ବହୁ ଦୂରଦୂରାନ୍ତରରୁ ମଧ ଯାତ୍ରୀ ସମାଗମ ହୋଇଥାଏ। ରାୟପୁର ଜିଲ୍ଲାର ଲୋକେ ମଧ ଏଠାକୁ ଆସନ୍ତି। ସେ ଅଞ୍ଚଳ ଯେତେକ ବଦ୍ଧପାଗଳ ଓ ସନ୍ତାନ କାଂକ୍ଷିଣୀ ନାରୀ ସମସ୍ତେ ବୟରାପିଟା କାଳିଶିଠାରୁ, ହୁକୁମ୍‌ପାଇବା ଆଶାରେ ଏଠାରେ ଭିଡ଼ ବାନ୍ଧିଥାନ୍ତି। ଠାକୁରାଣୀ ଅବତାର ଥିବାବେଳେ କାଳିଶି ମଧ ହୋଇଯାଏ ଏକ ମହାପାଗଳ ! ବନ୍ଧ୍ୟାନାରୀମାନେ ବ୍ରତୋପାବାସ କରି ସନ୍ତାନପାଇଁ ପାଗଳ ଆଉ ପାଗଳାମାନେ ତ ସହଜେ ପାଗଳ। ଏହାତେଣୁ ହୋଇଉଠେ ପାଗଳାମୀର ଏକ ମହାମିଳନ। ଦିନବେଳେ ପ୍ରଚୁର ପଶୁବଳି ପଡ଼େ ଏଠାରେ ! ଇଏ ମଧ ଏକ ରକ୍ତାକ୍ତ ବାତୁଳତା ! ଏଇ ଯାତ୍ରାକଥା ମୁଁ ଶୁଣୁଥିଲି; କିନ୍ତୁ ଦେଖିବାର ସୁଯୋଗ କେବେ ପାଇନଥିଲି। ଥରେ ଜରାସିଂଗାର ତରୁଣ ଜମିଦାର, ମୋ ବନ୍ଧୁ ବ୍ରଜେନ୍ଦ୍ରଙ୍କର ଆମନ୍ତ୍ରଣ କ୍ରମେ ମୁଁ ଜରାସିଂଗା ଆସିଲି, ବୟରାପିଟା ଯାତ୍ରା ଦେଖିବାପାଇଁ। ତା' ଆଜକୁ ଅନେକବର୍ଷ ତଳର କଥା।

ସେଦିନ ସନ୍ଧ୍ୟାବେଳେ ଅସରାଏ ଚକଡ଼ା ବର୍ଷା ପରେ ମେଘ ଛାଡ଼ି ଯାଇଥିଲା। ଆକାଶରେ ମେଳାମେଳା ଛିନ୍ନ ମେଘ ମଧ୍ୟରେ ଶୁକ୍ଳତିଥିର ଜହ୍ନ ଭାରି ମଳିନ ଦିଶୁଥିଲା। ଝୁପୁଝୁପିଆ ଜଙ୍ଗଲ, ବଣବୁଦା ଓ ଗଛପତ୍ରମାନଙ୍କ ଉପରେ ସେଇ ମଳିନ ଜ୍ୟୋତ୍ସ୍ନା ପଡ଼ି ଭାରି ବିଷଣ୍ଣ ଦିଶୁଥିଲା...। ବ୍ରଜେନ୍ଦ୍ରଙ୍କ ପ୍ୟାଲେସ୍‌ରେ ରାତ୍ରିର ଭୋଜନ ପର୍ବ ଶେଷ

ହେବାବେଳକୁ ସମୟ ରାତି ଏଗାରଟାରୁ ଗଡ଼ିଯାଇଥିଲା। ବ୍ରଜେନ୍ଦ୍ର କହିଲେ, "ଉଠନ୍ତୁ ଏଥର। ଯାତ୍ରା ଏତେବେଳକୁ ବୋଧହୁଏ ଭାଙ୍ଗିଯିବଣି।" ଆମେ ତରବର ହୋଇ ତାଙ୍କ କାର୍‌ରେ ଯାତ୍ରା ପାଖକୁ ବାହାରିଲୁ...। ପତଳା ଜଙ୍ଗଲ ଭିତରେ ବୟରାପିଟା କାଳିଶିଙ୍କର ଆସ୍ଥାନ। ଯାତ୍ରାଠାରୁ ଅଳ୍ପ ଦୂରରେ ଗାଡ଼ିରଖି ଆମେ ସେଠାକୁ ପାଦରେ ଚାଲିଚାଲି ଆସିଲୁ। ଯାତ୍ରା କିନ୍ତୁ ସେତେବେଳକୁ ଭାଙ୍ଗି ନଥିଲା। ବୟରାପିଟା କାଳିସୀ ଅଳ୍ପ ପୂର୍ବେ ବାହାରିଥିଲେ। କେତେଜଣଙ୍କୁ ହୁକୁମ ଦେବା ପରେ ସେ ପୁଣି ତାଙ୍କ ଆସ୍ଥାନ କୁଡ଼ିଆ ଭିତରକୁ ଫେରିଯାଇଛନ୍ତି। ଶୁଣାଶୁଣିରୁ ବୁଝିଲି, ସେ ଆଉ ଥରେ ପୁଣି ବାହାରିବେ। ସେଦିନ ପାଇଁ ପାଗଳମାନଙ୍କୁ ହୁକୁମ ଦେବା ଶେଷ ହୋଇ ଯାଇଛି। ସକାଳୁ ଯେଉଁ ବନ୍ଧ୍ୟାନାରୀମାନେ ଆଗରେ ଦୀପ ଜାଳି କାଳିଶିଙ୍କଠାରୁ ହୁକୁମ୍‌ପାଇଁ ଅସୀମ ପ୍ରତୀକ୍ଷାରେ ବସିଥିଲେ, ସେମାନଙ୍କ ମଧ୍ୟରୁ କେତେକ ମଧ୍ୟ ହୁକୁମ ପାଇ ଚାଲିଗଲେଣି। ତଥାପି ସେଠାରେ ଆଗରେ ଗୋଟିଏ ଗୋଟିଏ ଦୀପ ଜାଳି କାଳିଶିଙ୍କ ଆସ୍ଥାନ କୁଡ଼ିଆ ଆଗରେ ଦୁଇ ଦୁଇ ହାତ ଛଡ଼ାରେ ବସି ରହିଥିଲେ ପ୍ରାୟ ପାଞ୍ଚ, ଦଶ ସରିକି ସ୍ତ୍ରୀ ଲୋକ। କାଳିଶିଙ୍କଠାରୁ ହୁକୁମ ନପାଇବା ପର୍ଯ୍ୟନ୍ତ ସେମାନେ ସେହିପରି ବସିରହିଥିବେ। ଏଇ ହେଉଛି ବିଧି। ଏଥର ଯାତ୍ରାରେ କାଳିଶି ପ୍ରସନ୍ନ ନହେଲେ ସେମାନେ ପୁଣି ଆରବର୍ଷ ଆସିବେ। ଆସ୍ଥାନ କୁଡ଼ିଆ ସାମନାରେ ଛାୟା ମୂ ର୍ତିପରି ଗୁଡ଼ିଏ ଲୋକ ଭୟ, ଭ୍ରାନ୍ତି ଓ ସଂଭ୍ରମରେ କାଳିଶିଙ୍କର ଆବିର୍ଭାବପାଇଁ ଅପେକ୍ଷା କରି ଠିଆହୋଇଥିଲେ। ଠାକୁରାଣୀ ନଅବତରିବା ପର୍ଯ୍ୟନ୍ତ କାଳିଶି ଆସ୍ଥାନ କୁଡ଼ିଆ ଭିତରେ ନିସ୍ତେଜ ଭାବରେ ଅଧିଆରେ ପଡ଼ିବା ଭଳି ପଡ଼ି ରହନ୍ତି। କିନ୍ତୁ ଠାକୁରାଣୀ ଅବତରିବା ମାତ୍ରେ କାଳିଶି ମହାବିକ୍ରମରେ ଲମ୍ଫ ଦେଇ ଗୋଟାଏ ବେତ ହଲେଇ ହଲେଇ ପଦାକୁ ବାହାରି ଆସନ୍ତି। ଢୋଲ ଆଉ ଧୁମ୍‌ସା ସବୁ ଖୁବ୍ ଜୋର୍‌ରେ ବାଜି ଉଠେ। ମାଟିପାତ୍ରମାନଙ୍କରେ ଝୁଣା ଜଳେ ଦପ୍‌ଦପ୍ ହୋଇ। କାଳିସୀ ଝୁଣାଧୂଆଁର ସେ ଶିଖା ସବୁ ଯେପରି ଏକା ଲହମାରେ ଶୋଷି ନିଅନ୍ତି। ସେହି ଜନାକୀର୍ଣ୍ଣ ପରିବେଶ ହଠାତ୍ ଗୋଟାଏ ଆଦିମ ଆତଙ୍କରେ ଭୟଙ୍କର ହୋଇଉଠେ। ତା'ପରେ କେଉଁ ପାଗଳକୁ ହୁଏତ କେଇ ପାହାର ପିଟନ୍ତି, ନୋଇଲେ ଦୀପଜାଳି ପ୍ରତୀକ୍ଷାରେ ବସିଥିବା କୌଣସି ସ୍ତ୍ରୀ ଲୋକ ଆଗରେ ଠିଆହୋଇ ତାକୁ ଦୁଇ ବାହୁରେ ବେଢେଇ ନେଇ ତା' ଆଗରେ କମ୍ପିକମ୍ପି ନାଚନ୍ତି...। ଇଏ ହେଲା କାଳିଶିଙ୍କ ଠାରୁ ହୁକୁମ୍ ପାଇବାର ସୂଚନା।

ଯାତ୍ରାସ୍ଥାନରୁ ଅଳ୍ପ ଦୂରରେ ଗଛବୁଦାର ଝୁକ୍‌ଝୁକିଆ ଅରମା ଭିତରେ ଠିଆ ହୋଇ ସେ ଦୃଶ୍ୟ ଦେଖିବାବେଳେ, ସବୁ ମୋତେ ଲାଗୁଥିଲା ଖଣ୍ଡେ ଷ୍ଟିଲ୍ ଲାଇଫ୍ ଚିତ୍ର ପରି! ଅନନ୍ତ ପ୍ରତୀକ୍ଷାରେ ସମସ୍ତେ ଯେପରି ମୂକ, ସ୍ଥିର, ଅଚଞ୍ଚଳ। ସମସ୍ତେ ଅପେକ୍ଷା କରିଛନ୍ତି କାଳିଶିର ଆବିର୍ଭାବ। ଆସ୍ଥାନ କୁଡ଼ିଆ ଭିତରେ କାଳିଶି ମଧ ଅପେକ୍ଷା କରି ପଡ଼ିଛନ୍ତି

କେତେବେଳେ ଠାକୁରାଣୀ ଅବତରିବେ ! ଜୀବନ ଓ ପୃଥିବୀ ହଠାତ୍ ଯେପରି ପରିଣତ ହୋଇଥିଲା ଏକ ଅଖଣ୍ଡ ପ୍ରତୀକ୍ଷାରେ... !

ଅନେକ ବେଳ ପରେ ଆସ୍ଥାନ କୁଡ଼ିଆ ଆଗରେ ଛାୟାମୂର୍ତ୍ତି ସବୁ ଈଷତ୍ ଚଞ୍ଚଳ ହୋଇଉଠିଲେ ! ଢୋଲ ବାଜା ସବୁ ଏକାସାଙ୍ଗରେ ବାଜି ଉଠିଲା । ଝୁଣା ପାତ୍ରମାନଙ୍କରେ ଝୁଣା ଜଳିଉଠିଲା, ଲମ୍ବା ଶିଖା ମେଲି ! ବାୟରାପିଟା କାଳିସୀ ମୁଣ୍ଡ ଉପରେ ଗୋଟାଏ ଲମ୍ବା ବେତକୁ ଦୁଇ ହାତରେ ବଙ୍କାଇ ଧରି କୁଡ଼ିଆ ବାହାରକୁ ଲମ୍ଫ ଦେଇ ଆସିଲେ । ଲହ ଲହ ଜିଭ ବୁଲାଇ ନିଆଁଶିଖା ସବୁ ଗୋଟାଏ ଗୋଟାଏ ଲହମାରେ ଯେପରି ଗିଳି ପକାଇଲେ । ତା'ପରେ ହଠାତ୍ ଗୋଟାଏ ସ୍ତ୍ରୀଲୋକ ଆଗରେ ଯାଇ ଉଭା ହୋଇଗଲେ । ସେ କାଳିଶି ପାଦତଳେ ସାଷ୍ଟାଙ୍ଗ ଦଣ୍ଡବତ କରି ତଳୁ ଉଠି ଠିଆ ହେବା ମାତ୍ରେ କାଳିଶି ତାକୁ ଦୁଇ ବାହୁରେ ଆଲିଙ୍ଗନ କରି କିଛି ସମୟ କମ୍ପି କମ୍ପି ନାଚିଲେ । ତା' ପରେ ଆସିଲେ ଦୀପ ଜାଳି ଅପେକ୍ଷା କରିଥିବା ଅନ୍ୟ ଗୋଟିଏ ସ୍ତ୍ରୀଲୋକ ପାଖକୁ । ସେଥିରେ କିନ୍ତୁ କୌଣସି କ୍ରମ ନଥିଲା । କାଳିସୀ କେତେବେଳେ କାହା ଉପରେ ପ୍ରସନ୍ନ ହେବେ, ସେଥିରେ କ'ଣ ଆଉ କ୍ରମ ଥାଏ ! ସେଥର କେତେଗୁଡ଼ିଏ ସ୍ତ୍ରୀ ଲୋକଙ୍କ ପ୍ରତି ପ୍ରସନ୍ନ ହେବା ପରେ କାଳିଶି ପୁଣି ଅବଶ ହେଇ ଆସ୍ଥାନ କୁଡ଼ିଆ ଭିତରକୁ ଫେରିଗଲେ । ଢୋଲବାଜା ସବୁ ବନ୍ଦ ହୋଇଗଲା । ଝୁଣା ପାତ୍ର ଓ ନିଆଁ ବରିଆ ସବୁ ଲିଭିଗଲା । ଆଜିକ ପାଇଁ ଯାତ୍ରା ଶେଷ ! କାଳିସୀ ଆଉ ଆଜି ବାହାରିବେ ନାହିଁ । ପୁଣି କାଲିକି... । କ୍ରମେ ଲୋକେ ସେଇ ପାଣିଚିଆ ମେଘ ଆଲୁଅ ଭିତରେ ଛାୟାମୂର୍ତ୍ତି ପରି ନିଃଶବ୍ଦରେ ମିଳାଇ ଗଲେ । ତଥାପି ସେଠାରେ ନିଃସଙ୍ଗ ଦୀପଜାଳି ଶେଷହୀନ ପ୍ରତୀକ୍ଷାରେ ସନ୍ତାନ କାମନାରେ ବସି ରହିଥିଲେ, ଆହୁରି ପ୍ରାୟ ଦୁଇ ତିନିଜଣ ସ୍ତ୍ରୀଲୋକ ଅନେକ ଛଡ଼ାଛଡ଼ା ହୋଇ ।

ଆଜି କାଳିଶି ସେମାନଙ୍କ ପ୍ରତି ପ୍ରସନ୍ନ ହେଲେ ନାହିଁ । କାଲି ପୁଣି ପ୍ରସନ୍ନ ହେଲେ କି ନାହିଁ କେ ଜାଣେ ? ଦୀପ ଶିଖାର କୋମଳ ମଳିନ ଆଲୋକରେ ସେମାନଙ୍କ ମୁହଁ ସବୁ ଦିଶୁଥିଲା, ଅନନ୍ତ ଧୈର୍ଯ୍ୟଶୀଳା ବସୁନ୍ଧରା ପରି !

ସେଇଦିନ ସେହି ବୟରାପିଟା ଯାତ୍ରା ଭିତରେ ଠିଆହୋଇ ମୁଁ ପାଇଥିଲି ନାରୀର ଶେଷ ପରିଚୟ... । ସେ କନ୍ୟା..., ସେ ଭଗିନୀ..., ସେ ଜାୟା..., ସେ ମଧ୍ୟ ପ୍ରେମିକା... । କିନ୍ତୁ ଏସବୁ ତା'ର ବାହ୍ୟ ପରିଚୟ... । ତାର ଶେଷ ପରିଚୟ... ସେ ଜନନୀ ! ସନ୍ତାନପାଇଁ, ସୃଷ୍ଟିପାଇଁ ତାର ଶେଷହୀନ ପ୍ରତୀକ୍ଷା ।

୧୭/୦୪/୮୮

# ଦୟଣା ଓ କେତକୀ

"ଶ୍ରୀଭୁଜେ ଦୟଣା କେରି କେରି, ଆହେ ନୀଳଗିରି..." ଜଗନ୍ନାଥଙ୍କର ଏହିପରି ଅନେକ ଜଣାଣ ଓ ଭଜନ, ପୁଣି କେତେକ ମଧ୍ୟଯୁଗର ଓଡ଼ିଆ କାବ୍ୟରେ ଦୟଣାର ଉଲ୍ଲେଖ ଦେଖି ମୋ ମନରେ ଗୋଟାଏ ବଦ୍ଧମୂଳ ଧାରଣା ଜନ୍ମିଥିଲା ଯେ ଗୋଟିଏ ଫୁଲର ନାମ ଦୟଣା ଓ ତାହା ଜଗନ୍ନାଥଙ୍କର ଅତି ପ୍ରିୟ। ପୁଣି ଶ୍ରୀମନ୍ଦିରରେ ଜଗନ୍ନାଥଙ୍କର ଦୟଣା-ଚୋରି ନାମରେ ପ୍ରତିବର୍ଷ ଗୋଟିଏ ଯାତ୍ରା ବା ଉତ୍ସବ ହୁଏ। ଏହି ଯାତ୍ରାର ବିଧି ହେଲା, ସେଦିନ ନିର୍ଗୁଣ ପୁରୁଷୋତ୍ତମ ଶ୍ରୀଜଗନ୍ନାଥଙ୍କର ଚଳନ୍ତି ପ୍ରତିମା ବା ଲୀଳାବିଗ୍ରହ ମଦନମୋହନ ଗୋଟିଏ ପାଲିଙ୍କିରେ ଜଗନ୍ନାଥବଲ୍ଲଭ ଉଦ୍ୟାନକୁ ଆସନ୍ତି। ସେଠାରୁ ଦୟଣାଫୁଲ ଚୋରି କରି ଜଗନ୍ନାଥଙ୍କଠାରେ ତାହାକୁ ଅର୍ପଣ କରନ୍ତି। ଶୂନ୍ୟରୂପୀ ନିର୍ଗୁଣ ଜଗନ୍ନାଥଙ୍କର ଏହିପରି ବହୁ ସଗୁଣ ଚପଳତାର ଅସ୍ତ୍ର ହେଉଛନ୍ତି ମଦନମୋହନ। ଦୟଣା ଚୋରି ମଧ୍ୟରେ ଜଗନ୍ନାଥ ଆଉ ଗାଁ ଗହଳର ସେଇ ଦୁଷ୍ଟ, ଅମାନିଆ ପିଲାଟି ଭିତରେ କୌଣସି ତଫାତ୍ ରହେନା- ଯିଏ ଅନ୍ୟର ବାଡ଼ ଡେଇଁ ବଗିଚାରୁ ଫୁଲ, ଫଳ ଚୋରାଇ ନିଏ। ଯାହାହେଉ ଏଥିରୁ ମୁଁ ବୁଝିଥିଲି ଦୟଣା ସର୍ବତ୍ର ସୁଲଭ ନୁହେଁ। ଏହା କେବଳ ମିଳିଥାଏ ଜଗନ୍ନାଥବଲ୍ଲଭ ଫୁଲ ବଗିଚାରେ।

କିନ୍ତୁ ଦୟଣା ଫୁଲଟିର ଚେହେରା ମୁଁ କେବେ ଦେଖି ନଥିଲି; ଯଦ୍ୟପି ଏ ଜଗନ୍ନାଥଙ୍କର ନିତ୍ୟ ଲାଗି ଫୁଲ ବୋଲି, ମୁଁ ମନେ ମନେ ଧରି ନେଇଥିଲି। କେବେ ସମୟ ସୁଯୋଗ ମିଳିଲେ ଜଗନ୍ନାଥବଲ୍ଲଭ ମଠକୁ ଯାଇ ଦୟଣା ଫୁଲ ଦେଖିବି ବୋଲି ମନେମନେ ମୋର ଗୋଟାଏ ବାସନା ରହିଥିଲା। କିନ୍ତୁ କ୍ରମେ ପୁରୀ ମୋ ପକ୍ଷରେ ବହୁ ଦୂର ହୋଇଉଠିଲା। ସେ ବାସନା ତୃପ୍ତ ହେବାର ସମ୍ଭାବନା ପୁଣି ଆହୁରି ସୁଦୂର ହୋଇଉଠିଲା। ଦୟଣାପାଇଁ ମନ ଏହିପରି ବ୍ୟାକୁଳ ଥିବାବେଳେ ମୋର ଜଣେ ଆତ୍ମୀୟା ହଠାତ୍ ମୋତେ ଆସି କହିଲେ, ସେ ପୁରୀ ଯାଉଛନ୍ତି ଓ ପଚାରିଲେ, ପୁରୀରୁ ମୋ ପାଇଁ କ'ଣ ଆଣିବେ ? ମୁଁ ତାଙ୍କୁ କହିଲି, "ମୋ ପାଇଁ ଦୟଣା ଫୁଲ" ଆଣିବାପାଇଁ। ଦୟଣା

ସେ ପ୍ରଥମଥର ପାଇଁ ମୋ ପାଖରୁ ଶୁଣିଲେ କି କ'ଣ ମୋତେ ପଚାରିଲେ, "ପୁରୀରେ ସେ ଦୟଣା କେଉଁଠି ପାଇବେ ?" ସବ୍‌ଜାନତା ପରି ମୁଁ କହିଲି, "ଜଗନ୍ନାଥଙ୍କର ଛଡ଼ାମାଳରେ ଦୟଣା ନିଶ୍ଚୟ ରହିଥିବ, ନୋହିଲେ ଜଗନ୍ନାଥବଲ୍ଲଭ ମଠ ବଗିଚାକୁ ଗଲେ ସେଠି ପ୍ରଚୁର ଦୟଣା ଫୁଲ ପାଇପାରିବ।" ଆତ୍ମୀୟା ସେଥର ଅନେକ ରାତିରେ ପୁରୀରୁ ଫେରି ଯାହା ମୋତେ ଜଣାଇଲେ, "ମନ୍ଦିରରେ କିମ୍ବା ଜଗନ୍ନାଥବଲ୍ଲଭ ମଠ ବଗିଚାରେ କେଉଁଠି ହେଲେ ଦୟଣା ନାହିଁ।"

ତାଙ୍କ କଥା ଶୁଣି, ମୋର ବିସ୍ମୟର ଅନ୍ତ ରହିଲାନାହିଁ। ଜଗନ୍ନାଥଙ୍କର ଜଣାଣ, ଭଜନ ଓ ମଧ୍ୟଯୁଗୀୟ ଓଡ଼ିଆ କାବ୍ୟମାନଙ୍କରେ ଯେଉଁ ଦୟଣାର ଏତେ ପ୍ରଶସ୍ତି, ତାହା କିପରି ପୁରୀରେ ମିଳିଲା ନାହିଁ, ଜାଣି ମୁଁ ବିସ୍ମିତ ହୋଇଉଠିଲି। ଯଦି ପୁରୀରେ ଦୟଣା ନାହିଁ, ତା'ହେଲେ ପୁରୀକୁ କେନ୍ଦ୍ର କରି ସୃଷ୍ଟି ହୋଇଥିବା ମଧ୍ୟଯୁଗୀୟ ସାହିତ୍ୟରେ ଏତେ ଦୟଣା ଆସିଲା କିପରି ଓ କେଉଁଠୁ ?

ଆତ୍ମୀୟାମୋର ବିସ୍ମୟକୁ ଆଉରି ବଢ଼ାଇ ଦେଇ କହିଲେ, "ମୁଁ ସେବକମାନଙ୍କୁ ପଚାରି ବୁଝିଲି, ଦୟଣା ଫୁଲ ନୁହେଁ, ତାହା ଏକ ସୁଗନ୍ଧ ପତ୍ର। ଏହାକୁ ଦୟଣା-ତୁଳସୀ ବୋଲି ସେମାନେ କହନ୍ତି। ଇଏ ପୁରୀରେ ନାହିଁ କିମ୍ବା ଓଡ଼ିଶାରେ ସୁଦ୍ଧା ନାହିଁ।

"ତା'ହେଲେ ?"

ଆତ୍ମୀୟା ଉତ୍ତର ଦେଲେ, "ପ୍ରତିବର୍ଷ ଦୟଣାଚୋରି ଉତ୍ସବ ବେଳେ ଟେମ୍ପଲ୍ ଆଡ଼୍‌ମିନିଷ୍ଟ୍ରେସନ୍ ମାନ୍ଦ୍ରାଜରୁ ଦୟଣା ମଗାଇ ଥାଆନ୍ତି। ଏଥିପାଇଁ କୁଆଡ଼େ ଚାରି, ପାଞ୍ଚ ହଜାର ଟଙ୍କା ମୂଲ୍ୟ ଦେବାପାଇଁ ପଡ଼େ। ଜଗନ୍ନାଥଙ୍କର ଚଳନ୍ତି ପ୍ରତିମା ମଦନମୋହନ କାହିଁକି ଜଗନ୍ନାଥ ବଲ୍ଲଭ ମଠ ବଗିଚାକୁ ଯାଇ ସେଠାରୁ ଦୟଣା ଚୋରିକରି ଆଣି ଜଗନ୍ନାଥଙ୍କୁ ଭେଟି ଦିଅନ୍ତି, ଏବେ ତାହାର ରହସ୍ୟ ବୁଝିଲି। କିନ୍ତୁ ମୋର ମନ ମାନିଲା ନାହିଁ। ଦୟଣା ଯଦି ଓଡ଼ିଶା ମାଟିରେ ଜନ୍ମୁ ନଥିବ, ତା'ହେଲେ ପାରମ୍ପରିକ କାଳରୁ ଜଗନ୍ନାଥଙ୍କ ସେବାରେ ଏହାର ବ୍ୟବହାର ହେଉଥାଆନ୍ତା କିପରି ? ହୁଏତ ଦିନେ ଏ ମାଟିରେ ଦୟଣା ହେଉଥିଲା। ହୁଏତ ହେଉଥିଲା ପ୍ରଚୁର। କିନ୍ତୁ ଏବେ ଆମର ଅକାମିପଣିଆରୁ ଦୟଣା ଆଉ ଜନ୍ମୁ ନାହିଁ।

ଏଥିରେ ଦୁଃଖିତ ହେବାପାଇଁ ଅନେକ କାରଣ ଥିଲେ ହେଁ ବିସ୍ମିତ ହେବାପାଇଁ କୌଣସି କାରଣ ନାହିଁ ବୋଲି ମୋତେ ଲାଗିଲା। ଓଡ଼ିଆ ଜାତିର ସ୍ୱାଭିମାନ ସଂପର୍କରେ ଗଳଦ୍‌ଘର୍ମ ହୋଇ ଭାଷଣ ଦେଉଥିବା ନେତାମାନଙ୍କ ପାଇଁ ଫୁଲମାଳ, ଏପରିକି ଗେଣ୍ଡୁ ଫୁଲ ମାଳ ସୁଦ୍ଧା ଏବେ ଆସୁଛି କଲିକତାରୁ। ଗେଣ୍ଡୁଫୁଲ ସବୁ ବୋଧେ ଆଉ ଆମ ବାରି ବଗିଚାରେ ଫୁଟୁ ନାହାନ୍ତି। ସେଥିପାଇଁ କଲିକତାରୁ ପ୍ରଚୁର ଆମଦାନୀ ହେଉଛି ଅର୍କିଡ୍

ସାଙ୍ଗକୁ ଗେଣ୍ଡୁଫୁଲ। ସେହି ନ୍ୟାୟରେ ଦୟଣା ଓଡ଼ିଶାରେ ଆଉ ଜନ୍ମୁ ନଥିବାରେ ଆଶ୍ଚର୍ଯ୍ୟ ହେବାର କ'ଣ ଅଛି ?

ଦୟଣା ସାଙ୍ଗକୁ ଜଗନ୍ନାଥଙ୍କର ଅନ୍ୟ ପ୍ରିୟ ଫୁଲ କେତକୀ ମଧ୍ୟ ଏବେ ଦୁଷ୍ପ୍ରାପ୍ୟ ହୋଇଉଠିଲାଣି। କପିଳେଶ୍ୱରପୁର ଶାସନର ଐତିହାସିକ କେତକୀ ବନକୁ କେହି ଜାଳିପୋଡ଼ିଦେଲେ- ବୋଧହୁଏ ବାଡ଼ିବଗିଚା କଲିରୁ। କିନ୍ତୁ ଏହି କେତକୀ ବନର କେତକୀ ଫୁଲରେ କେବଳ ରଥଯାତ୍ରା ପହଣ୍ଡି ବେଳେ ଜଗନ୍ନାଥଙ୍କର ଟାହିଆ ତିଆରି ହୋଇଥାଏ। ମାତ୍ର କପିଳେଶ୍ୱରପୁର କାଳିଆ ଗୋପୀନାଥଙ୍କର କେତକୀ ବଣ ପୋଡ଼ିଯିବା ପରେ, ଜଗନ୍ନାଥଙ୍କର ଟାହିଆ ପାଇଁ ଏଣିକି କେତକୀ କେଉଁଠାରୁ ଆମଦାନୀ କରାଯିବ, ସେଇ କଥା କେବଳ ଭାବୁଛି।

୧୪/୦୪/୮୮

# ଗୋଦୋ ପାଇଁ ପ୍ରତୀକ୍ଷା

ଦୁଇବର୍ଷ ତଳେ, କଠିନ ଶରୀରପୀଡ଼ାରେ ଶଯ୍ୟାଶାୟୀ ହୋଇପଡ଼ିଛି- ଏଇ ସମୟରେ ଦିନେ ଖରାବେଳେ ମୋ' ସ୍ତ୍ରୀ ଆସି କହିଲେ, ଜଣେ ପଶ୍ଚିମା ବାବାଜୀ ରାସ୍ତାରେ ଯାଉଥିଲେ, ସେ ବାରଣ୍ଡାରେ ଠିଆ ହୋଇଥିବା ଦେଖି ପାଖକୁ ଆସି ତାଙ୍କ ହାତରେ ଏଇ ରୁଦ୍ରାକ୍ଷଟି ଦେଇ କହିଲେ, ନାଲି ସୂତାରେ ବାଁ ହାତରେ ବାନ୍ଧିଦିଅ। ସବୁ ଶରୀରପୀଡ଼ା ଦୂର ହୋଇଯିବ। ରୁଦ୍ରାକ୍ଷଟି ସ୍ତ୍ରୀଙ୍କ ହାତରୁ ନେଇ ଦେଖିଲି, ଇଏ ଏକମୁଖୀ ରୁଦ୍ରାକ୍ଷ। ସାଧାରଣତଃ ଏହା ଦୁର୍ଲଭ। ସ୍ତ୍ରୀ ପଚାରିଲେ, "କିନ୍ତୁ ସେ ଜାଣିଲେ କିପରି ତୁମ ଶରୀରପୀଡ଼ା କଥା ? ବାବାଜୀଙ୍କୁ ଏଥିପାଇଁ କେତେଟଙ୍କା ଦେବି।" ମୁଁ ସେଇ ବାବାଜୀଙ୍କୁ ମୋ' ରୋଗଶଯ୍ୟା ପାଖକୁ ନେଇଆସିବାକୁ କହିଲି।

ବାବାଜୀ ଜଣକ ଶୀର୍ଣ୍ଣକାୟ, କିନ୍ତୁ ଦେହର ଗଠନ ହୃଷ୍ଟପୁଷ୍ଟ, ମୁଣ୍ଡରେ ଲମ୍ବାବାଳ, ମୁହଁରେ ଦାଢ଼ି। ବେକରେ ଗୋଟିଏ ରୁଦ୍ରାକ୍ଷମାଳା, କାନ୍ଧରେ ଝୁଲାମୁଣିଟିଏ। ମନରେ ରେଖାପାତ କଲାପରି, ସେପରି ସାଧୁମହାରାଜଙ୍କ ଚେହେରା ତାଙ୍କଠାରେ ଲକ୍ଷ୍ୟ କରିପାରିଲି ନାହିଁ। ସିଏ ମୋ ବିଛଣା ପାଖରେ ଗୋଟିଏ ଚୌକି ଉପରେ ବସିଲେ। ତା'ପରେ ମୋ' ହାତ ତାଙ୍କୁ ଦେଖାଇବାପାଇଁ କହିଲେ। ମୁଁ କିନ୍ତୁ ମୋ' ହାତ କେବେ କାହାକୁ ଦେଖାଏ ନାହିଁ। ମୋ' ହାତ ଦେଖାଇବାପାଇଁ ତାଙ୍କୁ ନାସ୍ତି କରିଦେଲି।

ତା'ପରେ ସେ ମୋ' କପାଳକୁ କିଛିକ୍ଷଣ ନିରୀକ୍ଷଣ କରି ଚାହିଁଲେ ଏବଂ ତା'ପରେ ଆଖି ବୁଜିଦେଲେ। ଏହିପରି କିଛିକ୍ଷଣ କଟିଯିବାପରେ ସେ ଧୀରେ ଧୀରେ ଆଖିମେଲି କହିଲେ, "ଏସବୁ ତୁମ ପ୍ରାରବ୍ଧ। ପୂର୍ବ ଜନ୍ମରେ ତୁମେ ଯେଉଁ ଗୁରୁ ଅଭିଶାପ ପାଇଛ, ଏ ଜନ୍ମରେ ସେଥିପାଇଁ ଏସବୁ ଭୋଗୁଛ !"

ମୁଁ ହେତୁବାଦୀ ହେଲେହେଁ ପୁନର୍ଜନ୍ମର ପ୍ରାରବ୍ଧରେ ବିଶ୍ୱାସ କରେ। ଭାରତୀୟ ଦର୍ଶନର ଶ୍ରେଷ୍ଠ ହେତୁବାଦୀ ଦାର୍ଶନିକ- ଗୌତମବୁଦ୍ଧ ପୁଣି ଗୀତାର ପ୍ରବକ୍ତା ଭଗବାନ ଶ୍ରୀକୃଷ୍ଣ ପୁନର୍ଜନ୍ମ ଓ ପ୍ରାରବ୍ଧର କଥା ବାରମ୍ବାର କହି ଅଛନ୍ତି। ସେଥିପାଇଁ ଏ ସବୁଥିରେ

ମୋର ଗଭୀର ବିଶ୍ୱାସ ରହିଛି। ତା'ଛଡ଼ା ଆମର ବୁଦ୍ଧିଗ୍ରାହ୍ୟ, ପରିଦୃଶ୍ୟମାନ ଜଗତର ଉର୍ଦ୍ଧ୍ୱରେ ଏପରି ଅନେକ ରହସ୍ୟ ରହିଛି, ଯାହାର ଉତ୍ତର କୌଣସି ଦର୍ଶନ, କୌଣସି ଯୁକ୍ତି, କୌଣସି ବିତର୍କ ମଧ୍ୟରେ ମିଳିବ ନାହିଁ।

ମୁଁ ପଚାରିଲି... 'ପୂର୍ବଜନ୍ମରେ ମୋତେ ଗୁରୁ ଅଭିଶାପ ମିଳିଲା କାହିଁକି ?'

ବାବାଜୀ ମୁହଁ ଗମ୍ଭୀର କରି ଉତ୍ତର ଦେଲେ, ପୂର୍ବଜନ୍ମରେ ବଦ୍ରିନାଥ ଆଶ୍ରମରେ ଜଣେ ଗୁରୁଙ୍କ ନିକଟରେ ତୁମେ ତିନିଜଣ ଶିଷ୍ୟ ଥିଲ। ସେମାନଙ୍କ ଭିତରେ ତୁମେ ଥିଲ ଭାରି ତାର୍କିକ। ଥରେ ଏହିପରି ତର୍କରେ ତୁମେ ଗୁରୁଙ୍କୁ ପରାସ୍ତ କରିଥିଲ, ସେଥିପାଇଁ ସେ କ୍ରୋଧରେ ତୁମକୁ ଯେଉଁ ଅଭିଶାପ ଦେଇଥିଲେ, ତାହା ତୁମେ ଏ ଜନ୍ମରେ ଭୋଗୁଛ !" ମୁଁ ବିଛଣା ଉପରେ ଉଠିବସି ଉଷ୍ମ କଣ୍ଠରେ କହିଲି, "ତା'ହେଲେ ସେ କଦାପି ମୋର ଗୁରୁ ନଥିଲେ। କାରଣ ଶିଷ୍ୟଠାରୁ ପରାସ୍ତ ହେବା ହେଉଛି ଗୁରୁର ଶ୍ରେଷ୍ଠ ଗୌରବ। ଆମ ଶାସ୍ତ୍ରରେ ସୁଦ୍ଧା ଏକଥା କୁହାଯାଇଛି !" ବାବାଜୀ ନିର୍ଲିପ୍ତ କ[illegible] ଉତ୍ତର ଦେଲେ, "ଇଏ ମଧ୍ୟ ଥିଲା ଗୁରୁଙ୍କପାଇଁ ପ୍ରାରବ୍ଧ। ସବୁ ସେଇ ପ୍ରାରବ୍ଧର ଖେଳ !"

ଇତି ମଧ୍ୟରେ ମୋ' ସ୍ତ୍ରୀ ବାବାଜୀଙ୍କପାଇଁ ଗିଲାସେ ସର୍ବତ ଆଣି ଦେଲେ। ବାବାଜୀ ସର୍ବତ ଗିଲାସକୁ ଗଳାରେ ଢାଳି ଢକଢକ କରି ପିଇସାରିବା ପରେ କହିଲେ, "ତେବେ ତୁମର ଏସବୁ ରିଷ୍ଟ ଖୁବ୍ ଶୀଘ୍ର ଖଣ୍ଡନ ହୋଇଯିବ। ଏହା ଭିତରେ ଦିନେ ଅକସ୍ମାତ୍ ତୁମ ପୂର୍ବଜନ୍ମର ସେ ଦୁଇଜଣ ସତୀର୍ଥ ଆସି ପହଞ୍ଚି ଯିବେ। ସେମାନଙ୍କ ସ୍ପର୍ଶରେ ତୁମର ସବୁ ଆଧିବ୍ୟାଧି ଦୂର ହୋଇଯିବ। ତୁମର ପ୍ରାରବ୍ଧ ଓ ସଞ୍ଚିତ ସବୁ କଟିଯିବ।"

ବାବାଜୀ ଯିବାପାଇଁ ଉଠୁଉଠୁ କହିଲେ, "ମୁଁ ବର୍ତ୍ତମାନ ରାମେଶ୍ୱର ଯାଉଛି, ଦୀପାବଳି ବେଳକୁ ଫେରିବି। ସେତେବେଳକୁ ତୁମେ ଆରୋଗ୍ୟଲାଭ କରିସାରିଥିବ।" ଏକମୁଖୀ ରୁଦ୍ରାକ୍ଷଟିପାଇଁ ପଚିଶିଟି ଟଙ୍କା ପ୍ରଣାମୀ ଦେଇ ବାବାଜୀଙ୍କୁ ବିଦାୟ ଦେଲି।

ଦୀପାବଳି ପୂର୍ବରୁ ଅବଶ୍ୟ ମୁଁ ସଂପୂର୍ଣ୍ଣ ଆରୋଗ୍ୟ ହୋଇଗଲି। କିନ୍ତୁ ସେଇଦିନୁ ବାହାର ବାରଣ୍ଡାରେ ଦୁଇତିନିଘଣ୍ଟା ମୋର ସେଇ ପୂର୍ବଜନ୍ମର ସତୀର୍ଥଙ୍କ ଅପେକ୍ଷାରେ ବସିରହିବା, ପରେ ଏକପ୍ରକାର 'ଅବ୍‌ସେସନ୍'ରେ ପରିଣତ ହୋଇଗଲା। ସେମାନେ ଆସିଲେ ନାହିଁ। ମୁଁ ଜାଣେ ସେମାନେ କେବେ ଆସିବେ ନାହିଁ। ତଥାପି ଏବେ ବି ମୁଁ ସେମାନଙ୍କ ପ୍ରତୀକ୍ଷାରେ ବସୁଛି... ଘର ସାମ୍ନା ରାସ୍ତାରେ ସେପରି କେହି ଆସୁନାହାନ୍ତି କିମ୍ବା ଯାଉନାହାନ୍ତି। ଅବସରପ୍ରାପ୍ତ ଗୋବିନ୍ଦବାବୁ ଅଣ୍ଟାବାତ ସତ୍ତ୍ୱେ ବାଡ଼ିଠୁକ୍‌ଠୁକ କରି ସନ୍ଧ୍ୟା ଭ୍ରମଣରେ ବାହାରୁ ଅଛନ୍ତି। ହରିବାବୁ ବଜାରଥଳି ହାତରେ ଝୁଲାଇ ପରିବାକିଣି ବାହାରିଛନ୍ତି। ଦୁଇଜଣ ମସ୍ତାନ ଅକାରଣରେ ହଇହଲ୍ଲା କରି କେଉଁଆଡ଼େ ଦିଗ୍‌ବିଜୟରେ ବାହାରିଛନ୍ତି। ଦହିବରାବାଲା ତା'ର ପଣ୍ୟ ସମ୍ଭାର ବିଚିତ୍ର କଣ୍ଠରେ ଘୋଷଣା କରି କରି

ଚାଲିଛି... ଘୁଘୁନି... ଆଳୁଦମ୍... ଦହିବରା...! କିନ୍ତୁ ପୂର୍ବଜନ୍ମର ସେ ଦୁଇଜଣ ସତୀର୍ଥଙ୍କର ଦେଖାନାହିଁ।...

ମୁଁ ଜାଣେ ଏ ପ୍ରତୀକ୍ଷା ଏକ ନିର୍ବୋଧର ପ୍ରତୀକ୍ଷା ! ଏ ପ୍ରତୀକ୍ଷାର ଅର୍ଥ ହୁଏନାହିଁ। ଏହା ଅଳିକ ବିସ୍ମୟ। ତଥାପି ମୁଁ ପ୍ରତୀକ୍ଷା କରିଛି ଓ କରିବି କାରଣ ଜୀବନଟା ତ ଏକ ପ୍ରତୀକ୍ଷା ! ...ଯେଉଁ ପ୍ରତୀକ୍ଷାର କେବେ କୌଣସି ଅର୍ଥ ହୁଏନାହିଁ। କିନ୍ତୁ ସେପରି ପ୍ରତୀକ୍ଷା ନଥିଲେ ଜୀବନଟା କେତେ ଶୂନ୍ୟଗର୍ଭ ନହୁଅନ୍ତା ସତେ !

(ପ୍ରସିଦ୍ଧ ଉଦ୍ଭଟ ନାଟ୍ୟକାର, Waiting For Godotର ପ୍ରଣେତା ସାମୁଏଲ୍ ବେକେଟ୍‌ଙ୍କ ଉଦ୍ଦେଶ୍ୟରେ)

୦୮/୦୪/୮୮

# ପୁନଶ୍ଚ ଦୟଣା

ମଣିଷର ଅଜ୍ଞତାର ତ ଶେଷ ନାହିଁ! ଏହିପରି ଏକ ଅଜ୍ଞତାର ବଶବର୍ତ୍ତୀହୋଇ ମୁଁ ଗତ ଏପ୍ରିଲ୍ ୨୪ ତାରିଖ 'ସମ୍ବାଦ' ସାହିତ୍ୟ ପୃଷ୍ଠାର 'ଶେଷସ୍ତମ୍ଭ'ରେ 'ଦୟଣା ଓ କେତକୀ' ଶୀର୍ଷକ ଲେଖାରେ ଲେଖିଥିଲି, ଓଡ଼ିଶାରେ ଦୟଣା ବୋଧହୁଏ ମିଳେ ନାହିଁ। କେଜାଣି କାହିଁକି, ସେଦିନ ହଠାତ୍ ଦୟଣା ପାଇଁ ମୋ ମନରେ ଜାଗିଥିଲା ଅହେତୁକ ବ୍ୟାକୁଳତା। ସେଦିନ ବୈଶାଖର ରୌଦ୍ରଦଗ୍ଧ ମଧ୍ୟାହ୍ନ ପରେ, ଆକାଶରେ ହଠାତ୍ ଦେଖାଦେଇଥିଲା ଘନ ମେଘାଡମ୍ବର। କେତୋଟି ବଳାକା ସୁଦ୍ଧା କଳାମେଘର ପୃଷ୍ଠଭୂମିରେ ଉଡ଼ିଯାଉଥିଲେ। ଖୋଲା ଝରକା ବାଟେ ଅଦିନ ମେଘର ସେହି ଆଡ଼ମ୍ବର ଦେଖୁଛି, ହଠାତ୍ ମୋର ଜଣେ ତରୁଣ ଆତ୍ମୀୟ ଭୁବନେଶ୍ୱରରୁ ଫେରି ମୋତେ ଛୋଟ ଦୟଣାପତ୍ର କେତେଟା ଧରେଇଦେଇ କହିଲେ, "ଏଇ ନିଅନ୍ତୁ ଦୟଣା। ଭୁବନେଶ୍ୱରରୁ ଆଣିଲି।"

ସେଦିନ ତାଙ୍କର ଭୁବନେଶ୍ୱର ଯିବା ଥିଲା ସଂପୂର୍ଣ୍ଣ ଅପ୍ରତ୍ୟାଶିତ। ପୁଣି ନିତାନ୍ତ ଆକସ୍ମିକ ଭାବରେ ସେଦିନ ଭୁବନେଶ୍ୱରରେ ମୋର କନ୍ୟାପରି ଜଣେ ମହିଳା ଆୟୁଷ୍ମତୀ ଶ୍ରୀମତୀ ଆଶାଲତା ପାଣିଙ୍କ ଘରକୁ କାହିଁକି ଯେ ସେ ଯାଇଥିଲେ ତାହାର ମଧ୍ୟ ସେ କୌଣସି କାରଣ ଦେଇପାରିଲେ ନାହିଁ। ସେଦିନ ସକାଳର 'ଶେଷସ୍ତମ୍ଭ'ରେ ଆଶାଲତା ମଧ୍ୟ 'ଦୟଣା ଓ କେତକୀ' ସେ ପର୍ଯ୍ୟନ୍ତ ପଢ଼ି ନଥିବା ପରେ ମୋତେ କହିଥିଲେ। ତଥାପି ନିତାନ୍ତ ଆକସ୍ମିକ ଭାବରେ ମୋର ଆତ୍ମୀୟଙ୍କୁ ଦୟଣାପତ୍ର କେତୋଟି ନିଜ ବାଡ଼ିରୁ ତୋଳି ସେ ମୋପାଇଁ ତାଙ୍କ ହାତରେ ପଠାଇ ଦେଇଥିଲେ।

ଦୟଣାର ସ୍ୱର୍ଗୀୟ ଅପାର୍ଥିବ ସୁବାସରେ ସେଦିନ ବର୍ଷାଭିଜା ସନ୍ଧ୍ୟାଟି ପୁଲକିତ ହୋଇଉଠିଥିଲା। ରୌଦ୍ର ସନ୍ତାପିତ ମାଟି ଉପରେ କରୁଣାର ବାରିଧାରା ପରି, ତା'ପରେ ଝରି ପଡ଼ିଥିଲା ଶୀତଳ ବର୍ଷାଧାରା। ସମଗ୍ର ବ୍ୟାପାରଟି ମୋତେ ଭାରି ରହସ୍ୟମୟ ଲାଗୁଥିଲା। ମୁଁ ଅନୁଭବ କଲି, ମୁଁ କ୍ରମେ କିପରି ଧୀରେ ଧୀରେ ମୋର ଅଲକ୍ଷିତରେ ରହସ୍ୟବାଦୀ ହୋଇପଡୁଛି।

ଏହା ପରେ ସୋନପୁରରୁ ଶେଷସ୍ତମ୍ଭର ଜଣେ ପାଠକ ଶ୍ରୀ ମାନଭଞ୍ଜନ ମିଶ୍ର ଦୟଣା ସଂପର୍କରେ ମୋର ବ୍ୟାକୁଳତା ଲକ୍ଷ୍ୟକରି ଏକ ପତ୍ର ଲେଖି ପଠାଇଲେ, "ପଶ୍ଚିମ ଓଡ଼ିଶା ବିଶେଷତଃ ବୌଦ, ସୋନପୁର, ବଲାଙ୍ଗୀର, ସମ୍ବଲପୁର, ସୁନ୍ଦରଗଡ଼, କଳାହାଣ୍ଡି ଅଞ୍ଚଳରେ ଦୟଣାଗଛ ବିଶେଷ ପରିମାଣରେ ଜନ୍ମିଥାଏ। ଏହାକୁ ସ୍ଥାନୀୟ ଲୋକେ 'ଦହନା' ବା 'ତହନା' ବୋଲି କହିଥାନ୍ତି। ଏହା ତୁଳସୀ ଗଛ ପରି ଛୋଟ ହୋଇ ବଢ଼େ ଓ ତୁଳସୀ ପରି ଏଥିରେ ଜଟ ମଧ୍ୟ ଥାଏ। ଏହାର ପତ୍ର ଖୁବ୍ ସୁଗନ୍ଧଯୁକ୍ତ। ଏଣୁ ଉଭୟ ଦେବୀ ଓ ଦେବତାଙ୍କ ପାଖରେ ଏହାର ପତ୍ର ମାଳା କରି ଦିଆଯାଏ। ଏହା ଦଶହରା ବେଳେ ଦୁର୍ଗାଦେବୀଙ୍କୁ ଓ ରଥଯାତ୍ରାବେଳେ ଜଗନ୍ନାଥଙ୍କୁ ବିଶେଷ ଭାବେ ଦିଆଯାଏ। ଏହାର ପତ୍ର ସୁବାସଯୁକ୍ତ ହୋଇଥିବାରୁ ଲୋକମାନେ ଖୋସାରେ ଏହାକୁ ଲଗାନ୍ତି। 'ସମ୍ବାଦ'ର 'ଶେଷସ୍ତମ୍ଭ' ଲେଖାରେ ଦୟଣା ପ୍ରତି ଜନ୍ମିଥିବା ଆପଣଙ୍କ କୌତୁହଳ ଓ ଉତ୍ସୁକତାର ଉପଶମପାଇଁ ଏଥି ସହିତ ଛୋଟ ଦୟଣା ଡାଳ ଖଣ୍ଡିଏ ପଠାଇଲି।"

ଏହାପରେ ଭୁବନେଶ୍ୱରରୁ ଜଣେ ପାଠିକା ଆୟୁଷ୍ମତୀ ଗୀତାଞ୍ଜଳି ପାଣି ପୁରୀରେ ଦୟଣାର ସୁଲଭତା ସଂପର୍କରେ ଲେଖି ପଠାଇଲେ। "ଦୟଣା ପୁରୀରେ ଏବଂ ଓଡ଼ିଶାରେ ନାହିଁ ବୋଲି କହିବା ଠିକ୍ ନୁହେଁ। କାରଣ ପୁରୀର ବାଲିମଠରେ ପ୍ରଚୁର ପରିମାଣରେ ଦୟଣା ରହିଛି। ପୁରୀର ତାଳବଣିଆଠାରୁ କିଛିବାଟ ଆଗକୁ ଗଲେ ଏହି ମଠ ପଡ଼େ।"

ଅଜ୍ଞତା ହେଉଛି, ସବୁ ଜ୍ଞାନର ଜନନୀ। ମୋପାଇଁ ଏହି ଘଟଣାରେ ଅନ୍ତତଃ ତାହା ପ୍ରମାଣିତ ହୋଇଗଲା। ଯେଉଁମାନେ ମୋର ଏ ଅଜ୍ଞତା ଦୂର କଲେ ଜଗନ୍ନାଥ ସେମାନଙ୍କର ସର୍ବବିଧ କଲ୍ୟାଣ କରନ୍ତୁ!

ମୋର ରିକ୍ତ ଶୂନ୍ୟ ପରିବେଶ ଏବେ ଦୟଣାର ଅପାର୍ଥିବ ସୁବାସରେ ନିତ୍ୟ ସୁରଭିତ। ପତ୍ର ସବୁ ଅବଶ୍ୟ ଶୁଖି କ୍ରମେ ଖଣ୍ଡଖଣ୍ଡ ହୋଇ ଝରିପଡ଼ିଲାଣି; ମାତ୍ର ତାହାର ସୌରଭର ଅବଶେଷ ତଥାପି ନିଭିନାହିଁ। ଈଶ୍ୱରଙ୍କର କରୁଣାର ଅନ୍ତ ନଥିବା ପରି ଦୟଣାର ସୁବାସର ମଧ୍ୟ ଶେଷ ନାହିଁ!

୧୪/୦୪/୮୮

# ଘରାନା

ପଞ୍ଚମ ଦଶକରେ ମୁଁ ନୂଆଦିଲ୍ଲୀର କନ୍‌ଷ୍ଟିଚ୍ୟୁସନ୍ ହାଉସ୍‌ରେ ରହୁଥିବାବେଳେ ମୋର ନିକଟତମ ପ୍ରତିବେଶୀ ଥିଲେ ରାଜସ୍ଥାନରୁ ରାଜ୍ୟସଭାକୁ ନିର୍ବାଚିତ ଶ୍ରୀ ମହେନ୍ଦ୍ରସିଂହ ରାଣାବତ୍। ଥରେ ତାଙ୍କୁ 'ରାଣାବତ୍' କଥାଟିର ଅର୍ଥ ପଚାରିଥିଲି। ସେ ଉତ୍ତର ଦେଇଥିଲେ, ରାଣାବତ୍ ଗୋଟିଏ 'ବତ୍' ପ୍ରତ୍ୟୟାନ୍ତ ଶବ୍ଦ। ଯାହାର ଅର୍ଥ ହେଲା- ସେମାନେ ଉଦୟପୁରର ରାଣା ରାଜ ପରିବାରର ନହେଲେ ହେଁ ସେମାନଙ୍କ ଭାଇ ବିରାଦର। ଅର୍ଥାତ୍ ରାଣାଗୋତ୍ରୀୟ। କିନ୍ତୁ ଏ ଭଦ୍ରଲୋକଙ୍କଠାରେ ରାଣା ବିରାଦରୀର ଦର୍ପ, ଅହଂକାର ଅଥବା ଅହମିକାର ଲେଶମାତ୍ର ନଥିଲା। ଭଦ୍ରଲୋକ ମଧ୍ୟ-ବୟସୀ। ଚଉଖୁଣ୍ଟିଆ ମୁହଁରେ ଦର୍ପର କିଛିଟା ନିଶାଣ ଲକ୍ଷ୍ୟ କରାଯାଇ ପାରିଲେ ବି ଆଖି ଦୁଇଟି କୋମଳ ଓ ଅଭିଜାତସୁଲଭ। ଓଠରେ ସବୁବେଳେ ଲାଗି ରହିଥାଏ ମିତହାସ୍ୟର ମୁଲାୟମ ସ୍ପର୍ଶ। ଭଦ୍ରଲୋକ ଭାରି ମିତ୍‌ବାକ୍। କଣ୍ଠସ୍ୱର ମଧ୍ୟ କୋମଳ। କିନ୍ତୁ ବେଳେବେଳେ କୌଣସି ନା କୌଣସି କାରଣରୁ ସେ ବିସ୍ଫୋରଣ କରି ଉଠିଲେ, ତାଙ୍କ ଭିତରୁ ବାହାରିପଡ଼େ ସେ ମଧ୍ୟଯୁଗୀୟ ରାଣାମାନଙ୍କର ଚେହେରା !

ପ୍ରତ୍ୟହ ସନ୍ଧ୍ୟାବେଳେ ତାଙ୍କ ସୁଇଟ୍ ସାମ୍ନା ଲନ୍‌ରେ ଜମେ ଆମର ପ୍ରତ୍ୟହିକ ଆସର। ଇଂରାଜୀରେ ଯେଉଁ କଥାଟି ଅଛି- 'Birds of same feather flock together' ତା' ନିତାନ୍ତ ମିଛ ନୁହେଁ। ଏଇ ଆଡ୍ଡାରେ ପ୍ରତ୍ୟହ ଯେଉଁ ଚାରି/ପାଞ୍ଚଜଣ ଯୋଗ ଦେଇଥାନ୍ତି, ସେମାନେ ଭାରତର ବିଭିନ୍ନ ପ୍ରାନ୍ତରୁ ଆସିଥିଲେ ବି ସ୍ୱଭାବରେ ଗୁଣେ ଅଧିକେ ସମସ୍ତେ ପ୍ରାୟ ସମାନ। ଏଇ ଆଡ୍ଡାରେ ରାଜନୀତି ଚର୍ଚ୍ଚା ଆଦୌ ହୁଏନାହିଁ। ଦିନସାରା ସେଇଥିରେ ଘାଣ୍ଟି ହେବାପରେ ରାଜନୀତି ଚର୍ଚ୍ଚା ପାଇଁ ସେତେବେଳେ କାହାରି ଆଉ ଆଗ୍ରହ ନଥାଏ। ମୁଖ୍ୟତଃ ଯାହା ସବୁ ଚର୍ଚ୍ଚା ହୁଏ ସେସବୁ ଖାଦ୍ୟ, ପାନୀୟ ଓ ସେହିପରି ନାନା ବାଜେକଥା ସଂପର୍କରେ। ପୁରୁଣା ଦିଲ୍ଲୀର କେଉଁ ଗଳି ବା ଉପଗଳିରେ କେଉଁଠି ଭଲ ସାମିକବାବ୍ ମିଳେ, କେଉଁ ରେସ୍ତୁଁରାରେ ବଟେରା ପୁରି ସବୁଠାରୁ ମସୁର୍, ମୋତିମହଲର ତନ୍ଦୁର

ଚିକେନ୍ କାହିଁକି ପ୍ରସିଦ୍ଧ, ଜାମାମସ୍‌ଜିଦ୍‌ର କେଉଁ ଗଳିରେ ସବୁଠାରୁ ଭଲ ବିରିଆନି ବା କିମା ପରାଟା ମିଳେ, ଇତ୍ୟାଦି ବିଷୟରେ ଚର୍ଚ୍ଚାଠାରୁ ଆରମ୍ଭ କରି କନିଆକ୍, ସେରି, ସାମ୍ପେନ୍, ପୋର୍ଟ ୱାଇନ୍ ଓ ସ୍କଚ୍ ହ୍ୱିସ୍କି ପର୍ଯ୍ୟନ୍ତ ନାନା ପ୍ରସଙ୍ଗର ଚର୍ଚ୍ଚା ଚାଲେ। ଆମେ ସମସ୍ତେ ପ୍ରାୟ ଥିଲୁ ଖାଦ୍ୟଲୋଭୀ ଓ ସ୍ୱୀକାର କରିବାରେ ଲଜ୍ଜା ନାହିଁ, ମଧୁଲୋଭୀ ମଧ୍ୟ। ତେଣୁ ଏସବୁ ବିଷୟ ଥିଲା ଆମ ଆଲୋଚନାର ମୁଖ୍ୟ ପ୍ରସଙ୍ଗ। ଥରେ ଆଲୋଚନା ଚାଲିଲା ସ୍କଚ୍ ହ୍ୱିସ୍କିକୁ କାହିଁକି ପୃଥିବୀର ଆଉ କୌଣସି ହ୍ୱିସ୍କି ଅତିକ୍ରମ କରିପାରୁନାହିଁ? ଆମର ସ୍ୱଦେଶୀ ହ୍ୱିସ୍କିମାନଙ୍କର ସ୍ୱାଦ କାହିଁକି ଅଶ୍ୱମୂତ୍ର ପରି...। ରାଣାବତ୍ ଗୋଟିଏ ଗ୍ଲାସ୍‌ରୁ ସେତେବେଳେ ନିରବରେ ମୁନ୍ଦିଏ ମୁନ୍ଦିଏ ହ୍ୱିସ୍କି ପିଉଥିଲେ। ସେ ହଠାତ୍ ତାଙ୍କର ସ୍ୱଭାବସିଦ୍ଧ ନିରବତା ଭାଙ୍ଗି କହିଲେ, "କେଉଁମାନେ କେବେ ଉଦୟପୁରୀ ଘରାନାର ଆଶା ପିଇନାହଁ ! ଆଶାରୁ ବଳି ଏପରି ମସୁର୍ ୱାଇନ୍ ଆଉ ପୃଥିବୀରେ ନାହିଁ !" ତା'ପରେ ସେ ବୁଝାଇଦେଲେ ଓଟମାନଙ୍କର କ୍ଷୀରରୁ ଏ ମଦ ତିଆରି ହୁଏ। ଉଦୟପୁରୀ ଆଶାର ପ୍ରସିଦ୍ଧି ସାରା ରାଜସ୍ଥାନରେ ସୁବିଦିତ। ଜଣେ ବନ୍ଧୁ ପଚାରିଲେ, "ଆଶା ଯଦି ସାରା ପୃଥିବୀରେ ଏପରି ଅତୁଳନୀୟ, ତା'ହେଲେ ତାକୁ ପ୍ରୋସେସିଂ କରି ୟୁରୋପକୁ ରପ୍ତାନୀ କଲେ ତ ଆପଣମାନେ ଅନେକ ଫରେନ୍ ଏକ୍ସଚେଞ୍ଜ ପାଇପାରନ୍ତେ।" ପ୍ରଶ୍ନଟି ଶୁଣି ରାଣାବତ୍ ଦଣ୍ଡେ ଗୁମ୍ ହୋଇ ବସିଗଲେ... ଇଏ ଯେପରି ଝଡ଼ ପୂର୍ବର ନିରବତା। ତା'ପରେ ବିସ୍ଫୋରଣ କରି ଉଠିଲେ। "ନନ୍‌ସେନ୍‌ସ ! ତୁମେ ସବୁ ବେପାରୀ ବଣିଆ। ମୋନାଫାପାଇଁ ତୁମେ ସବୁବେଳେ ବେପାର କରିପାର। କିନ୍ତୁ ଆମେ ନିଜ ଘରାନାକୁ ଟଙ୍କାପାଇଁ ବିକ୍ରି କରିବୁ ଦୁନିଆ ବଜାରରେ। ରାଣାବତ୍ ଶାନ୍ତ ପଡ଼ିବାପରେ ବୁଝାଇଦେଲେ, ରାଣାବତ୍‌ମାନଙ୍କର ପ୍ରତ୍ୟେକ ପରିବାରରେ ଆଶା ତିଆରି ହୁଏ, କିନ୍ତୁ ଅତିଥି, ଅଭ୍ୟାଗତମାନଙ୍କର ଚର୍ଚ୍ଚାପାଇଁ, ବିକ୍ରିପାଇଁ ନୁହେଁ। ଆଶା ସେମାନଙ୍କର ବଂଶର ଇଜ୍ଜତ୍... ଆମେ ସମସ୍ତେ ମିଶି ତାଙ୍କୁ ସେଦିନ ଅନୁରୋଧ କଲୁ, ଥରେ ଆମକୁ ଆଶା ପିଆଇବାପାଇଁ।

ସେଥର ଶୀତଦିନେ ରାଣାବତ୍ ଆମ ଆଡ୍ଡାର ବନ୍ଧୁମାନଙ୍କୁ ଦିନେ ସନ୍ଧ୍ୟାରେ ଡିନ୍‌ର ପାଇଁ ଆମନ୍ତ୍ରଣ କଲେ। ଦିଲ୍ଲୀର ନାନା ସ୍ଥାନରୁ ଖାଦ୍ୟସବୁ ହଟ୍-କେସ୍ ଭିତରେ ଆସି ରହିଥିଲା, ଟେବୁଲ୍ ଉପରେ ରଖାଯାଇଥିଲା କେବଳ ଦୁଇବୋତଲ ଆଶା ଆଉ ୱାଇନ୍ ପିଇବାପାଇଁ ଛୋଟଛୋଟ କାଚ ଗ୍ଲାସ୍ ବା ଡିକାନ୍‌ଟର। ଏହାକୁ ଓଠରେ ଲଗାଇ ଖୁବ୍ ଆସ୍ତେ ଆସ୍ତେ ପିଆଯାଏ। କିନ୍ତୁ ଢକ୍‌ଢକ୍ କରି ନୁହେଁ। ଡିକାନ୍‌ଟରର ବ୍ୟବସ୍ଥା ଦେଖି ମୁଁ ପୂର୍ବରୁ ପ୍ରାୟ ଠିକ୍ ଅନୁମାନ କରିନେଇଥିଲି ଆଶାର ସ୍ୱାଦ ହେଉଛି, ବେଶ୍ ମିଠା। କିନ୍ତୁ କେରଳର ବନ୍ଧୁ ମଥାଇମଞ୍ଜୁରନ୍ ବିଚାରା ଗୋଟାଗୋଟା ଢୋକରେ ଗୋଟାଏ ଗୋଟାଏ ଡିକାନ୍‌ଟର ସାଫ୍ କରିଦେଲେ। ଅନ୍ୟ ଦୁଇଜଣ ସେତେବେଳେ ଆଶାର ତୀବ୍ରତାରେ

ଅଛ ବହୁତ ଅସ୍ଥିର ହୋଇଉଠିସାରିଥିଲେ। ଖାଇବାର ଉପକ୍ରମପାଇଁ ବ୍ୟବସ୍ଥା ହେଉଛି ଏହିପରି ସମୟରେ ମଥାଇମଞ୍ଜୁରନ୍ ବାହାଦୁରୀ ଦେଖାଇବାପାଇଁ ଆଉ ଗୋଟିଏ ଗ୍ଲାସ୍ ଆଶା ନେଲେ। ସେ ଭାବିଥିଲେ, ଏହା ସେରି ବ୍ରାଣ୍ଡି କିମ୍ବା ଡ୍ରାଇମାଟିନି ପରି ନିରୀହ ବସ୍ତୁ। ମାତ୍ର ସେତେବେଳକୁ ଆଶାର ପ୍ରକୋପରେ ସେ ବିସମ୍ଭାଳ ହୋଇ ଉଠିଲେଣି। ଚତୁର୍ଥ ଗ୍ଲାସ୍‌ଟିକୁ ସେ ବର୍ତ୍ତମାନ କ'ଣ କରିବେ ସ୍ଥିର କରିନପାରି ଚୁପ୍‌ଚାପ୍ ତାକୁ ନେଇ ବାଥ୍‌ରୁମ୍ ୱାସ୍ ବେସିନ୍ ଭିତରେ ଢାଳିଦେଇ ଢଳିଢଳି ଖାଇବା ଟେବୁଲ୍ ପାଖକୁ ଫେରି ଆସିଲେ। ମାତ୍ର ରାଣାବତ୍‌ଙ୍କର ଦୃଷ୍ଟିରୁ ଏହା ବାଦ୍ ପଡ଼ିନଥିଲା। ତା'ପରେ ଘଟିଗଲା ପ୍ରଳୟକାଣ୍ଡ। ମଥାଇ ବାଥ୍‌ରୁମ୍‌ରୁ ଫେରି ଆସିବାମାତ୍ରେ ରାଣାବତ୍ ତାଙ୍କ ଲେଖାଲେଖି ଟେବୁଲ୍ ଉପରେ ପଡ଼ିଥିବା ଗୋଟାଏ ଧାରୁଆ କାଗଜକଟା ଛୁରୀ ଉଠାଇ ମଥାଇର ନେକ୍‌ଟାଇକୁ ଟାଣିଧରି ଚିତ୍କାର କଲେ, 'ୟୁ ବ୍ଲଡି ସ୍ୱାଇନ୍ ! ୟୁ ହାଭ୍ ଇନ୍‌ସଲ୍‌ଟେଡ୍ ମାଇଁ ହେରିଟେଜ୍ ! ମାଇଁ ଖାନ୍‌ଦାନ୍ ! ନାଓ ଆଇ ଉଇଲ୍ ଷ୍ଟାବ୍ ୟୁ ଟୁ ଡେଥ୍...' ରାଣାବତ୍‌ଙ୍କର ରୁଦ୍ରବିସ୍ଫୋରଣ ଦେଖି ଆମେ ସବୁ ସ୍ତମ୍ଭୀଭୂତ ହୋଇଗଲୁ। ଦୁହିଁଙ୍କ ମଝିରେ ପଶି ଛଡ଼ାଛଡ଼ି କରିବାପରେ ଅବସ୍ଥା ସମ୍ଭଳା ପଡ଼ିଲା। ରାଣାବତ୍‌ଙ୍କୁ ତାଙ୍କର ଏଇ ବିସ୍ଫୋରଣର କାରଣ ପଚାରିବାରୁ ସେ ଶାନ୍ତ କଣ୍ଠରେ ବୁଝାଇଦେଲେ, ମଥାଇ ଗ୍ଲାସ୍‌ଟାକୁ ୱାସ୍ ବେସିନ୍‌ରେ ନଢ଼ାଳି ଟେବୁଲ୍ ଉପରେ ଛାଡ଼ିଯାଇଥିଲେ କ'ଣ ହୋଇଥାନ୍ତା ? ଚାକରବାକର ପିଇ ଦେଇଥା'ନ୍ତେ। ମାତ୍ର ସେ ମୋର ଘରନା ଆଶାକୁ ୱାସ୍ ବେସିନ୍‌ରେ ଢାଳି ମୋ' ବୁନିଆଦ୍‌କୁ ଅପମାନ କଲା କାହିଁକି ? ଆମେ ସବୁ ରାଣାବତ୍‌ଙ୍କୁ ବୁଝାବୁଝି କରିବାକୁ ଚେଷ୍ଟା କରୁଥିବାବେଳେ ମଥାଇ ବିଚରା ଅଭୁକ୍ତ ଅପ୍ରସ୍ତୁତ ଅବସ୍ଥାରେ ସେଠାରୁ ଖସି ପଳାଇ ଯାଉଥିଲା। ରାଣାବତ୍ କ୍ଷିପ୍ର ଗତିରେ ଧାଇଁଯାଇ ତାଙ୍କୁ ଧରି ପକାଇ ଏଥର, ମିନତିଭରା କଣ୍ଠରେ କହିଲେ, "ବ୍ରଦର ୟୁ ସୁଡ୍‌ନଟ୍ ଇନ୍‌ସଲ୍‌ଟ ମି ଏଗେନ୍" ! ତୁମେ ମୋର ନିମନ୍ତ୍ରିତ ଅତିଥି, ଯାହା ସବୁ ଘଟିଗଲା ମୋତେ କ୍ଷମାକର। କିନ୍ତୁ ତୁମେ ମୋର ଘରୁ ଅଭୁକ୍ତ ଅବସ୍ଥାରେ ଚାଲିଗଲେ ମୋର ବଂଶ ମର୍ଯ୍ୟାଦା ଉପରେ ଆହୁରି ଥରେ ପଦାଘାତ କରିଯିବ। ଆମେ ସମସ୍ତେ ମାଥାଇଙ୍କୁ ମଧ ବୁଝାବୁଝି କରି ଖାଇବା ଟେବୁଲ୍ ପାଖକୁ ଫେରାଇ ଆଣିଲୁ।

ତା'ପରେ ହୋ... ହୋ... ଅଟ୍ଟହାସ୍ୟ ରୋଳ ମଧ୍ୟରେ ଅଛପୂର୍ବରୁ ସବୁ ତିକ୍ତତା କୁଆଡ଼େ ଯେପରି ଉଡ଼ି ମିଳାଇଗଲା।... କିନ୍ତୁ ତା'ପରେ ବହୁଦିନ ପର୍ଯ୍ୟନ୍ତ ମୁଁ ଲକ୍ଷ୍ୟ କରି ଦେଖିଛି ମଥାଇକୁ ଦୂରରୁ ଦେଖିଲେ, ରାଣାବତ୍‌ଙ୍କ ମୁହଁ କିପରି ଗମ୍ଭୀର ହୋଇଉଠେ।

୨୨/୦୫/୮୮

# ବଉଳା ଗାଈ ଓ ବ୍ରହ୍ମରାକ୍ଷସ

ମାଇନର ସ୍କୁଲରେ ଫାଷ୍ଟ ପିରିଅଡ୍ ଘଣ୍ଟା ବାଜୁଛି... ସପ୍ତମ ଶ୍ରେଣୀରେ ଫାଷ୍ଟ ପିରିଅଡ୍ ସାହିତ୍ୟ- ମାନେ ଆନନ୍ଦ ପଣ୍ଡିତ ! ମୁଁ ସ୍ୱସ୍ତିର ଦୀର୍ଘଶ୍ୱାସ ଛାଡ଼ିଲି ! ଖରାଦିନ ସକାଳୁଆ ସ୍କୁଲ। ମୁଁ ବିଛଣାରେ ଘାଲେଇ ପଡ଼ି ଘଣ୍ଟା ଶବ୍ଦ ଶୁଣୁଛି। ମନେ ମନେ ବେଶ୍ ଆନନ୍ଦିତ ହେଉଛି। ବୋଉ କହିଛି, ଆଜି ଇସ୍କୁଲ ଯିବା ଦରକାର ନାହିଁ। କାଲି ସଞ୍ଜରେ ବଉଳା ଗାଈ କୁଆଡ଼େ ହଜିଛି। ବୋଉ ତେଣୁ କାଲି ରାତିରୁ ଖାଡ଼ା ଖାଡ଼ା ଓପାସ। ଅନେକ ଦେବଦେବୀଙ୍କୁ ଘିଅଦୀପ ମନାସି ସାରିଲାଣି। ବାପା ତାଙ୍କ କାମରେ ଚାରିଦିନ ପାଇଁ କଟକ ଯାଇଛନ୍ତି। ମୁଁ ମନେ ମନେ ପ୍ରାର୍ଥନା କରୁଛି, ବଉଳା ଗାଈ ଜମା ନ ମିଳନ୍ତା କି ! ତା'ହେଲେ ସ୍କୁଲ ଆଉ ପାଠପଢ଼ା ଅତ୍ୟାଚାରରୁ କିଛିଟା ତ୍ରାହି ମିଳନ୍ତା; ଅବଶ୍ୟ ବାପା ଫେରିବା ପର୍ଯ୍ୟନ୍ତ। ଏହିପରି ମୁଗ୍ଧ ଆବେଶରେ ଘାଲେଇ ବିଛଣାରେ ପଡ଼ିଛି। ବୋଉ ମୋତେ ବିଛଣା ଉପରୁ ଝିଙ୍କି ଟାଣି ବସାଇ ଆକଟିଲା, "କିରେ ! ଖରା ମାଡ଼ିଆସୁଛି ! ତୁ ଆଉ କେତେବେଳେ ଗାଈ ଖୋଜି ବାହାରିବୁ ? ସେ ଅଲକ୍ଷଣାଟା କାହିଁ।"

ଅଲକ୍ଷଣାଟି ହେଉଛ ଆମ ଚାକର ଟୋକା ଧୋବା। ସେ ମୋର ସମବୟସୀ। ତେଣୁ ସୁକର୍ମ, ଦୁଷ୍କର୍ମରେ ବନ୍ଧୁ ! ଗାଈ ହଜିଯାଇଥିବାରୁ ସକାଳେ ତା'ର ଗୁହାଳ ପାଇଟି ନଥିଲା। ସେ ତେଣୁ କେଉଁଠି ଆମ୍ବଗଛରେ ଚଢ଼ିଛି ନିଶ୍ଚୟ। ଆମ୍ବକଷି ଚୋବାଉଥିବ... ଏ ବଉଳା ଗାଈଟିକୁ ବୋଉ ବାପଘରୁ ଯୌତୁକ ଆଣିଥିଲା। ସେଥିପାଇଁ ବଉଳା ପ୍ରତି ତା'ର ମମତା ଭାରି ନିବିଡ଼। ବଉଳା ମୁଣ୍ଡର ଚାନ୍ଦ ପରି କୁଆଡ଼େ ଚାନ୍ଦ ଆଉ କୋଉ ଗାଈର ନାହିଁ ଇତ୍ୟାଦି। କିନ୍ତୁ ଗାଈଟି ବର୍ତ୍ତମାନ ଜରାଜୀର୍ଣ୍ଣ। ବୋଉର ସେବାଚର୍ଚ୍ଚା ସତ୍ତ୍ୱେ ତା' ଦେହର ପଞ୍ଜରାମାନ ସବୁ ବାହାରକୁ ଫୁଟି ଦିଶିଲାଣି। କ୍ଷୀରଦେବା ଦିନରେ ସୁଦ୍ଧା ଦୁଇ ଓଳିରେ ତିନି ପାଆ କ୍ଷୀର ଦେଲେ ବେଶୀ ହୋଇଗଲା। ଏବେ ସେ କୁଆଡ଼େ ବରଡ଼ ହୋଇଗଲାଣି ! ତଥାପି ସେଇ ଗାଈ ହେଉଛି ବୋଉର ବାପଘରର ବହୁ ସ୍ମୃତି ସହିତ ଜଡ଼ିତ। ବଉଳି କାଲି ସଞ୍ଜରୁ

ହଜିଥିବାରୁ ସେ ପ୍ରକୃତରେ ଭାରି ମର୍ମାହତ। ତା'ର ସାରା ଶୈଶବଟା ଯେପରି ହଠାତ୍ କୁଆଡ଼େ ହଜିଯାଇଛି।

ଲୁଗା ଅଣ୍ଟିରେ ଅଣ୍ଟିଏ ଅଣ୍ଟିଏ ଚୁଡ଼ା ପୂରାଇ ମୁଁ ଆଉ ଧୋବା ଗାଈ ଖୋଜି ବାହାରିଲୁ। ବୈଶାଖ ମାସର ଖରା ଆକାଶରୁ ନିଆଁଗୁଣ୍ଡ ଝାଡ଼ିଲାଣି। ବୋଉ କହିଥିଲା, ଆଖପାଖରେ ଯେତେ କାଞ୍ଜିଆହୁଦା ଅଛି, ସେସବୁ ପ୍ରଥମେ ଦେଖିବା ପାଇଁ। କେଉଁ ନିଆଁଲଗା ବଉଳାକୁ ନେଇ ନିଶ୍ଚୟ କାଞ୍ଜିଆହୁଦାରେ ପକାଇଛି। ତେବେ ଆମେ ନିରୁଦ୍ଦିଷ୍ଟ ଭାବରେ ଆକସ୍ମିକ ମୁକ୍ତିର ଉତ୍ତେଜନାରେ ଗୋଟିଏ ଛୋଟ କେନାଲ ବନ୍ଧ ଉପରେ ଗାଈ ସନ୍ଧାନରେ ଚାଲିଛୁ, ଧୋବା ହଠାତ୍ ପଚାରିଲା, "ବାବୁ କଞ୍ଚାଖାଇ ଆମ୍ବ ଖାଇବ, କଞ୍ଚାଖାଇ। ଆମ୍ବର କଷି ସୁଦ୍ଧା କଞ୍ଚା ଥିବାବେଳେ ବେଶ୍ ମିଠା ଲାଗେ।'' ତା ପ୍ରସ୍ତାବରେ ମୁଁ ସଙ୍ଗେ ସଙ୍ଗେ ରାଜି ହୋଇଗଲି। ଗାଈଖୋଜା ଛାଡ଼ି ଆମେ କେନାଲ କୂଳରେ ଗୋଟାଏ ଆମ୍ବତୋଟା ଭିତରକୁ ପଶିଗଲୁ। ଧୋବା ଗଛଟି ଦେଖାଇ ଦେବାରୁ, ତା' ଉପରେ ଚଢ଼ିଲୁ ଓ ମନଭରି କଞ୍ଚାଖାଇ ଆମ୍ବ ଖାଇବା ପରେ ପୁଣି ଗାଈଖୋଜି ବାହାରିଲୁ।

କେନାଲବନ୍ଧର ପୂର୍ବପଟେ ଦିଗହଜା ଗୋଟାଏ ବିରାଟ ଧାନବିଲ ଗହୀର। ଏପାଖରୁ ଚାହିଁଲେ ସେ ପାଖର ଗାଁ' ସବୁ ଜାଲଜାଲୁଆ ଦିଶନ୍ତି, ଡ୍ରଇଂଖାତାରେ ପେନ୍‌ସିଲ୍‌ରେ ଟଣା କୌଣସି ଚିତ୍ରକୁ ଆଙ୍ଗୁଠିରେ ଘଷି ଘଷି ନିଭାଇବା ପରି। ଚକ ଭିତରେ ସ୍ଥାନେ ସ୍ଥାନେ ଗାଈ ସବୁ ଚରୁଥିଲେ। ଆମେ ଏହିପରି କେତେଟା ଗାଈଗୋଠ ଦେଖିବା ପରେ, ଧୋବା ସେହି ଗହୀର ଭିତରେ ମୋତେ ଗୋଟିଏ କିଆ ଗୋହରୀଘେରା ଶଶ୍ମାନ ଦେଖାଇ ଦେଇ କହିଲା, "ଏ ମଶାଣି ଭିତରେ ଛନଛନିଆ ଘାସ ଥାଏ। ଗାଈ ସବୁ ଚରିବାକୁ ଆସନ୍ତି। ତା' ଭିତରକୁ ଯିବା ? ବଉଳା କେଜାଣି ସେଠି ମିଳିପାରେ।" କିନ୍ତୁ ତା ସଙ୍ଗେ ସଙ୍ଗେ ଧୋବା ମୋତେ କହିଲା, "ସେ ମଶାଣିରେ ଲକ୍ଷେ ଲୋକ ପୋଡ଼ା ସରିଲେଣି। ଶିମିଳି ଗଛରେ ବ୍ରହ୍ମରାକ୍ଷସ ଅଛି। ଏ ମଶାଣି ପାଖରେ ସେ ମଣିଷମାନଙ୍କୁ ଦେଖିଲେ ଡାକେ। ଆମେ ଯିବା ?" ଭୟର କଥା ଶୁଣିଲେ, ବେପରୁଆମି ଦେଖାଇବା ମୋର ସେଇ ପିଲାଦିନୁ ଅଭ୍ୟାସ। ମୁଁ କହିଲି, "ଚାଲବେ ବ୍ରହ୍ମରାକ୍ଷସ ଡାକିଲେ ଦେଖିବା ମୁଁ ବ୍ରହ୍ମରାକ୍ଷସ କୀଳାମନ୍ତ ଜାଣିଛି।" ଆମେ ଅଣ୍ଟିରୁ ମୁଠିଏ ମୁଠିଏ ଚୁଡ଼ା ପାଟିରେ ପକାଇ ମଶାଣିପଦା ଭିତରକୁ ପଶିଲୁ। ମଶାଣି ଭିତରେ ଗୋଟିଏ ପୋଖରୀ ହୁଡ଼ାରେ କେତେଟା ମୂର୍ଦ୍ଦାରଙ୍କର ଅଧାପୋଡ଼ା କୋକେଇ। ଜୁଇ, ହେଁସ ଓ କତରା ପ୍ରଭୃତି ଦେଖି ମୁଁ ମନେ ମନେ ଭାରି ଛାନିଆ ହୋଇଉଠିଲି। ଆଉ ଗାଈ ନଖୋଜି ପିଟ୍‌ପିଟିଆ ହୋଇ ଆମେ ସେହି ମଶାଣି ଭିତରୁ ଏକମୁହାଁ ହୋଇ ଗହୀର ଆଡ଼କୁ ପ୍ରାଣମୂର୍ଚ୍ଛା ଦୌଡ଼ିଲୁ, କେନାଲବନ୍ଧକୁ ଲକ୍ଷ୍ୟ ରଖି। ଆମେ ମଶାଣି ଭିତରୁ ବାହାରିବା ପରେ ସେହି ନିଛାଟିଆ ଗହୀର ଭିତରେ

କିଏ ଯେପରି ଲହରିଆ କଣ୍ଠରେ ଭାରି ଆତୁର ଥିବା ପରି ଡାକି ଉଠିଲା, "ହେ... ହେ... ହେ..." କିନ୍ତୁ କେହି କୁଆଡ଼େ ନାହାଁନ୍ତି। ଧୋବା କହିଲା, "ହେ ବ୍ରହ୍ମରାକ୍ଷସ ଡାକୁଛି।" କେନାଲବନ୍ଧକୁ ଉଠିବା ପରେ ଆମ ମନରେ ଯେପରି ସାହସ ଫେରିଲା... କିନ୍ତୁ ସେ ଲହରିଆ ହେ... ହେ ଡାକ ତଥାପି ଯେପରି ନିରବ ହୋଇନଥିଲା।

ଟାଣ ଗାଧୁଆବେଳ ସରିକି ଆମେ ଘରକୁ ଫେରିବା ବେଳକୁ ବଉଳା ଆପେ ଆପେ ଘରକୁ ଫେରିଆସିଥିଲା। ବୋଉ ଗୁହାଳ ଭିତରେ ବଉଳା ପାଖରେ ଠିଆହୋଇ ତା'ର ଦେହ ଆଉଁସୁ ଥିଲା ଓ ତାକୁ କଅଁଳ ଘାସ ଗୋଟାଏ ଟୋକେଇରୁ ଖୁଆଉଥିଲା। ମୁଁ ଝାଳନାଳ ହୋଇ ବ୍ରହ୍ମରାକ୍ଷସ ହାବୁଡ଼ରୁ କୌଣସିମତେ ଯେ ପ୍ରାଣ ବଞ୍ଚାଇ ଫେରିଆସି ପାରିଛି, ଏଥିପ୍ରତି ଯେପରି ବୋଉର ଦୃଷ୍ଟି ନଥିଲା। ସେ ଓଲଟି ମତେ ଆକଟିଲା, "ତମେ ଦିଟା କୁଆଡ଼େ ହେଣ୍ଡିମାରି ବୁଲୁଥିଲ କିରେ? ମୋ ବଉଳା ତ ଭାରି ସୁଧାର। ସିଏ କେତେବେଳୁ ତା' ଛାଁକୁ ଫେରିଆସିଲାଣି। ଗାଈ ଖୋଜିବା ନାଁରେ ତୁମ ଦୁଇଟାକୁ ଗୋଟା ବାହାନା ମିଳିଗଲା।"

ବଉଳା ପ୍ରତି ଈର୍ଷା ଓ ବୋଉ ପ୍ରତି କ୍ରୋଧରେ ମୋର ମନ ଓ ଦେହ ହଠାତ୍ ଜର୍ଜରିତ ହୋଇଗଲା। ମୁଁ ବ୍ରହ୍ମରାକ୍ଷସ ହାବୁଡ଼ରୁ ପ୍ରାଣ ବଞ୍ଚାଇ ଆସିଛି, ସେ କଥା କୁଆଡ଼େ ଗଲା, ମୁଁ କୁଆଡ଼େ ହେଣ୍ଡି ମାରୁଥିଲି! ଗୁହାଳ ଭିତରେ ଖଣ୍ଡେ ଛାଟ ପଡ଼ିଥିଲା। ସେହି ଛାଟରେ ବଉଳା ଉପରେ ଦୁଇ ଛାଟ କଷିଦେଇ ମୁଁ ଦୁମ୍ ଦୁମ୍ ପାଦରେ ଘର ଭିତରକୁ ଆସି ବିଛଣା ଉପରେ ମୁହଁମାଡ଼ି ପଡ଼ିଗଲି।

ଏହା ଭିତରେ ଅର୍ଦ୍ଧଶତାବ୍ଦୀରୁ ଅଧିକ କାଳ ବିତିଗଲାଣି। କିନ୍ତୁ ସେଦିନର ସେହି ନିଛାଟିଆ ଗହୀର କିଆଘେରା ସେଇ ମଶାଣି ପଦା ଆଉ ସେହି ବ୍ରହ୍ମରାକ୍ଷସର ଡାକ ମୁଁ ଆଜି ସୁଦ୍ଧା ଭୁଲିପାରିନାହିଁ। ଏବେ ବି ବେଳେବେଳେ ଅସତର୍କ ମୁହୂର୍ତ୍ତମାନଙ୍କରେ ଆଖି ବୁଜିନେଲେ ମୁଁ ଶୁଣିପାରେ ସେଇ ବ୍ରହ୍ମରାକ୍ଷସର ଲହରିଆ ଡାକ, "ହେ... ହେ... ହେ...!"

ଏବେ ମନେ ହେଉଛି ଏ ବ୍ରହ୍ମରାକ୍ଷସ ବୋଧହୁଏ ମୋର ଅତୃପ୍ତ, ଅଶାନ୍ତ, ନିଃସଙ୍ଗ ଆତ୍ମା। ଗୋଟିଏ ଅପନ୍ତରା ଗହୀର ଭିତରେ ସିଏ କେବଳ ଡାକୁଛି ଆଉ ଡାକୁଛି । ମୁଁ କିନ୍ତୁ ସେ ଡାକ ଶୁଣି ଭୟରେ ଆଣ୍ଠୁଗଣ୍ଠି ଛିଣ୍ଡାଇ, ଏକମୁହାଁ ହୋଇ ଦୌଡ଼ିଛି। କିନ୍ତୁ କେଉଁଆଡ଼େ ଠିକ୍ ଜାଣେନାହିଁ।

୨୯/୦୫/୮୮

# ଆବାହନ ଓ ବିସର୍ଜନ

ହଠାତ୍ ଜୀବନର ଗୋଟିଏ ନୂତନ ରହସ୍ୟ, ସେହି ଅପନ୍ତରା ନିଛାଟିଆ ରାସ୍ତାକଡ଼ର ଗୋଟିଏ କଲଭର୍ଟ ବାଡ଼ ଉପରେ ସେଦିନ ରାତିରେ ମୁଁ ଚିତ୍‌ହୋଇ ଶୋଇ ଥକ୍‌କା ମାରୁଥିବାବେଳେ ମୋ' ଆଗରେ ଉଦ୍‌ଘାଟିତ ହୋଇଥିଲା। ପ୍ରତି ଟ୍ରାଜିକ୍ ଅଭିଜ୍ଞତାର ନେପଥ୍ୟରେ ମଧ୍ୟ ରହିଥାଏ, ତାହାର ଗୋଟିଏ କମିକ୍ ବା ହାସ୍ୟୋଦ୍ଦୀପକ ଦିଗ ! ତା'ନହେଲେ ଜୀବନ ପ୍ରକୃତରେ ବଡ଼ ଦୁର୍ବିସହ ହୋଇଉଠନ୍ତା...। ରାତି ସେତେବେଳକୁ ବାରଟା ବାଜିବା ଉପରେ। ରଣିଫୁଲ ପରି ସେହି ଅପନ୍ତରା ଭୂମି ଉପରେ ଜହ୍ନ ଆଲୁଅ ଚାରିଆଡ଼େ ବିଞ୍ଚି ହୋଇ ପଡ଼ିଚି। ଏଠାକୁ ଆଜି ସକାଳେ ଟ୍ରେନ୍‌ରେ ଆସିଥିଲି ତ, ଜଣେ ମହାନ୍ କବିଙ୍କ ସ୍ମୃତିସଭାରେ ସମ୍ମାନିତ ବକ୍ତାଭାବେ ଭାଷଣ ଦେବାକୁ। ମୁଁ ସେହି ଛୋଟିଆ ରେଲଷ୍ଟେସନ୍‌ରେ ଆଜି ସକାଳେ ପହଞ୍ଚିବା ବେଳକୁ, ବିପୁଳ ସମ୍ବର୍ଦ୍ଧନା ! ପ୍ରାୟ ୨୦/ ୨୫ ଜଣ ନଳିପ୍ୟାଣ୍ଟ ଓ ଟି-ସାର୍ଟ ପିନ୍ଧା, ଦୀର୍ଘ କେଶ, ବର୍ଦ୍ଧିତ ଶ୍ମଶ୍ରୁ ଯୁବକ ମୋ ନାମରେ ଜିନ୍ଦାବାଦ୍ ଧ୍ୱନି ଦେଇ ମୋତେ ଫୁଲମାଳ ପିନ୍ଧାଇଦେଲେ। ସେମାନଙ୍କର ସାହିତ୍ୟ-ସଂସଦ ବା ସାଂସ୍କୃତିକ ପରିଷଦ, ଏହିପରି କିଛି ଗୋଟାଏ ନାମରେ ମଧ୍ୟ ଜିନ୍ଦାବାଦ୍ ଧ୍ୱନି ପଡ଼ିଲା। ସମଗ୍ର ବ୍ୟାପାରଟା ମତେ ଲାଗିଲା ଗୋଟାଏ ହୁଜୁଗ୍ ପରି। ଛାତିଟା ମୋର ଆନନ୍ଦରେ କୁଣ୍ଢେମୋଟ ହୋଇଗଲା। କିନ୍ତୁ କପଟ ବିନୟରେ ମୁଁ ମୁହଁ ଶୁଖାଇ ପଚାରିଲି, "ଏଠୁ ଆଉ କେତେ ରାସ୍ତା ?" ଯେପରି ଏ ସବୁଥିରେ ମୁଁ ଅନାଗ୍ରହୀ। କେତେଜଣ ଯୁବକ ଏକା ସଙ୍ଗରେ କହିଉଠିଲେ, "ରାସ୍ତା ତ ମୋଟେ ତିନି କିଲୋମିଟର ! କିନ୍ତୁ ଗାଡ଼ି ରହିଛି।"

ପ୍ଲାଟଫର୍ମ ବାହାରେ ଜିପ୍‌ଟିଏ ପ୍ରକୃତରେ ଅପେକ୍ଷା କରି ରହିଥିଲା। ଜିପ୍‌ଟିର ଚେହେରାରେ ବ୍ୟସ୍ତ ବିବ୍ରତ, 'ବି-କ୍ଲାସ୍' ଠିକାଦାରର ଧୂସର ଚେହେରା ।... ରହଣୀସ୍ଥଳ ଥିଲା ଗୋଟିଏ ରେଭିନ୍ୟୁ ରେଷ୍ଟସେଡ୍, ଯାହାକୁ ସେମାନେ ଶ୍ରଦ୍ଧାରେ କହୁଥିଲେ ଡାକବଙ୍ଗଳା; ଦୁଇଟି ମାତ୍ର କୋଠରି। ଗୋଟିଏ ରିଜର୍ଭ ରହିଛି ଜଣେ ମନ୍ତ୍ରୀଙ୍କ ପାଇଁ ।

ସେ ଆଜି ସନ୍ଧ୍ୟାର ସମ୍ମାନିତ ଅତିଥି। ତା'ମାନେ ତାଙ୍କ ଭାଷଣ ମୋତେ ଆଜି ଦୁଇ ଘଣ୍ଟାରୁ ଅଢ଼େଇ ଘଣ୍ଟା ପର୍ଯ୍ୟନ୍ତ ଶୁଣିବାପାଇଁ ପଡ଼ିବ। ସେ ଆଶଙ୍କାରେ ମୁଁ ମନେମନେ ଟିକେ ଚିନ୍ତିତ ହୋଇଉଠିଲି। ଅନ୍ୟ ରୁମ୍‌ଟି ଥିଲା ମୋ' ପାଇଁ ଉଦ୍ଦିଷ୍ଟ, ମୋ' ପାଇଁ ଯଥାବିଧି ଲିମ୍‌କା କୋଲ୍‌ଡ୍ରିଙ୍କ୍ ଓ ସିଗାରେଟ୍ ଇତ୍ୟାଦି ଆସିଗଲା। ଯୁବକମାନେ ମୋ' ଚାରିପଟେ ଯେପରି ଘେରି ବସିଗଲେ, ମୋର ମନେହେଲା, ସେମାନେ ଏହାପରେ ବୋଧହୁଏ ମୋ' ସହିତ ସାହିତ୍ୟ ସଂପର୍କରେ କିଛି ପ୍ରସଙ୍ଗ ଆଲୋଚନା କରିବାପାଇଁ ବ୍ୟାକୁଳ। କିନ୍ତୁ ସେମାନେ ମନ୍ତ୍ରୀଙ୍କ ପ୍ରୋଗାମ୍‌କୁ ଓ ଖରାବେଳେ ମୁଁ କ'ଣ ଖାଇବି। ସେହିପରି ପାର୍ଥିବ ବ୍ୟାପାରମାନଙ୍କରେ ବେଶି ବ୍ୟସ୍ତ ଥିବାର ଲକ୍ଷ୍ୟକରି, ମୁଁ ମନେ ମନେ କିଛିଟା ହତାଶ ହୋଇପଡ଼ିଲି। ଜଣେ ଯୁବକଙ୍କୁ ପଚାରିଲି, "ତୁମ ପ୍ରୋଗ୍ରାମ୍ ଠିକ୍ ସମୟରେ ଆରମ୍ଭ ହୋଇ ଠିକ୍ ସମୟରେ ଶେଷ ହୋଇ ପାରିବ ତ ? ସମ୍ମାନିତ ଅତିଥି, ମନ୍ତ୍ରୀ ମହୋଦୟଙ୍କର ସଂକ୍ଷିପ୍ତତମ ଭାଷଣପାଇଁ ତ ଦୁଇଘଣ୍ଟା ସମୟ ଆବଶ୍ୟକ। ମୋତେ କିନ୍ତୁ ରାତି ୧୧.୪୫ ମିନିଟ୍ ଟ୍ରେନ୍ ଧରିବାପାଇଁ ପଡ଼ିବ।"

ସେମାନେ ମୋତେ ଆଶ୍ୱାସନା ଦେଲେ, "ଚିନ୍ତା କରନ୍ତୁ ନାହିଁ, ସାର୍ ! ଆମର ସାଂସ୍କୃତିକ କାର୍ଯ୍ୟକ୍ରମ ଅର୍ଥାତ୍ ଥିଏଟର ଆରମ୍ଭ ହେବ ଠିକ୍ ୯.୩୦ରେ ତେଣୁ ସଭା ଠିକ୍ ୬.୦୦ଟାରେ ଆରମ୍ଭ ହୋଇ ୯ଟାବେଳକୁ ନିଶ୍ଚୟ ଶେଷ ହୋଇଯିବ। ଟ୍ରେନ୍ ଧରିବାରେ ଆପଣଙ୍କର କୌଣସି ଅସୁବିଧା ହେବନାହିଁ। ଜିପ୍ ତ ରହିଛି ! ଆମେ ବି ରହିଛୁ।" –କିନ୍ତୁ ସମ୍ମାନିତ ଅତିଥି ମହୋଦୟଙ୍କର ଆସିବାରେ ସ୍ୱାଭାବିକ ବିଳମ୍ବ କାରଣରୁ ସଭା ସେଦିନ ଆରମ୍ଭ ହେଲା ୭ଟାରେ। କବିଙ୍କର ପ୍ରତିମୂର୍ତ୍ତିରେ ଯଥାବିଧି ମାଲ୍ୟଦାନ ଓ ଦୀପଦାନ ପ୍ରଭୃତି ଉପଚାର ପରେ ମୁଁ ସମ୍ମାନିତ ବକ୍ତା ଭାବରେ ଭାଷଣ ଦେବାକୁ ଉଠିବାବେଳେ ସାମ୍ନାରେ ଦେଖେ ସେ ଅଞ୍ଚଳର ପ୍ରାୟ ୫୦/୬୦ଜଣ ଯୁବକ ଓ ଗୁଡ଼ିଏ ଶିଶୁ; ସେମାନଙ୍କ ମଧ୍ୟରେ ଆଙ୍ଗୁଠିରେ ଗଣିହେବା ଭଳି 'ବୋରଡ଼୍' କେଶ ଥିବା କେତେଜଣ ବୃଦ୍ଧ।

ଭାଷଣ ଦେବାପୂର୍ବରୁ ପ୍ରଥମେ ପଚାରିଲି, "ଏଇ ମହାନ୍ କବିଙ୍କର କାବ୍ୟ ସବୁ କେତେଜଣ ପଢ଼ିଛ ହାତ ଉଠାଅ !" ଗୋଟିଏ ହେଲେ ହାତସୁଦ୍ଧା ଉଠିଲା ନାହିଁ। ତା'ପରେ ଆଉଥରେ ସେ ପ୍ରଶ୍ନର ପୁନରାବୃତ୍ତି କରିବାରୁ ପଛଧାଡ଼ିରୁ ମାତ୍ର ଦୁଇ/ତିନି ଗୋଟି ହାତ ବଡ଼ କୁଣ୍ଠିତ ଭାବରେ ଉଠିଲା। ଏହାପରେ ଭାଷଣ ଦେବାପାଇଁ ମୋର ଆଉ ପ୍ରବୃତ୍ତି ନଥିଲା। ସ୍ମୃତିପୂଜା, ପ୍ରତିଭାର ପୂଜା ହେବା ଆବଶ୍ୟକ। ପ୍ରେତର ନୁହେଁ। ସେହିପରି କିଛିକିଛି ଟାଣଟାଣ କଥା କହି ୧୫ମିନିଟ୍ ମଧ୍ୟରେ ମୋର ଭାଷଣ ଶେଷ କରି ମୁଁ ବସି ପଡ଼ିଲି। ଏହାପରେ ସମ୍ମାନିତ ଅତିଥି ମହୋଦୟ ଭାଷଣ ଦେବାପାଇଁ ଉଠି ବିନା

ଉପକ୍ରମଣିକାରେ କହିଲେ, "ସମ୍ମାନିତ ବକ୍ତା ମହୋଦୟ ଆପଣଙ୍କୁ ଯାହା ପଚାରିଲେ, ମୁଁ ବର୍ତ୍ତମାନ ଗୋଟିଗୋଟି କରି ସବୁକଥା ଆପଣମାନଙ୍କୁ ବୁଝାଇଦେବି।" ସମ୍ମାନିତ ଅତିଥି, ମନ୍ତ୍ରୀ ହେଲେ କ'ଣ ହେଲା ଜଣେ ସାହିତ୍ୟ-ରସିକ। ସେ କବିଙ୍କ ସଂପର୍କରେ ତାଙ୍କ କାବ୍ୟରୁ ବହୁ ଉଦ୍ଧୃତି ଓ ଉଦାହରଣ ଦେଇ ଦୀର୍ଘ ଦୁଇଘଣ୍ଟା କାଳ ଶାସନରେ ନିର୍ମଳତା ସଂପର୍କରେ- ଭାଷଣ ଦେବାପରେ ସୁଦ୍ଧା, ଆହୁରି କେତେକ କାବ୍ୟ ସଂପର୍କରେ କହିବାପାଇଁ ବାକି ରହିଯାଇଥିଲା। ବୟୋବୃଦ୍ଧ ସଭାପତି ମହୋଦୟ ଇତି ମଧ୍ୟରେ ଢୁଳେଇ ଢୁଳେଇ ଶୋଇ ସାରିଥିଲେ। ଶ୍ରୋତାମାନଙ୍କ ମଧ୍ୟରୁ ଯୁବକମାନେ କେଉଁଆଡ଼େ ଉଠିଗଲେଣି। ଶିଶୁମାନେ କେବଳ କୋଳାହଳ କରୁଛନ୍ତି ଓ ସେମାନଙ୍କୁ ଚୁପ୍ କରାଇବାପାଇଁ ବେଳେବେଳେ ନାଲିପଗଡ଼ିଆ ପୋଲିସ୍ କନେଷ୍ଟବଳ ଆସି ଚୁପ୍... ଚୁପ୍... ପାଟିକରି ଯାଉଛି। ସମସ୍ତେ ବର୍ତ୍ତମାନ ଥିଏଟର ଦେଖିବାପାଇଁ ବ୍ୟାକୁଳ। ସିନ୍ ଇତ୍ୟାଦିର ବନ୍ଧାବନ୍ଧି କାର୍ଯ୍ୟ ପେଣ୍ଡାଲ ଉପରେ ଆରମ୍ଭ ହୋଇଗଲାଣି, କିନ୍ତୁ ସମ୍ମାନିତ ଅତିଥି ମହୋଦୟ ସେଥିପ୍ରତି ନିର୍ଲିପ୍ତ। ସେ ହଠାତ୍ ପୁଣି ଫେରି ଆସିଛନ୍ତି ତୁଳସୀ ସ୍ତବକକୁ। ଟେବୁଲ ଉପରେ ଚକା ମାହୁଲି ପକାଇ ମଝିରେ ଭାଷଣ ଦେଇ ଚାଲିଛନ୍ତି। ଅବଶେଷରେ ଦଳେ ଯୁବକ ସାମ୍ନାର କଳାପରଦା ବା ଡ୍ରପ୍ ସିନ୍‌ଟା ପକାଇଦେଲେ। ମୁଁ ସ୍ୱସ୍ତିରେ ଦୀର୍ଘଶ୍ୱାସ ଛାଡ଼ି ସେଠାରୁ ପଳାଇ ଆସିଲି। କିନ୍ତୁ ରେଷ୍ଟସେଡ୍‌ରେ ମୋ ରୁମ୍‌ଟି ଇତିମଧ୍ୟରେ ହୋଇଗଲାଣି ଗ୍ରୀନ୍‌ରୁମ୍। ସେଠାରେ ଅଭିନେତା ଓ ପୁରୁଷ ଅଭିନେତ୍ରୀମାନଙ୍କର ପେଣ୍ଟିଂ ଚାଲିଚି।

ଚୌକିଦାର ଆସି କହିଲା, "ଆପଣଙ୍କ ଚମଡ଼ାବ୍ୟାଗ୍‌ଟା ମୋ'ପାଖରେ ରହିଛି ନିଅନ୍ତୁ !" ଏବେ ଯାଏ କୁଆଡ଼େ ? ଖାଇବା କଥା ଛାଡ଼। ଯେଉଁମାନେ ମୋତେ ଆଜି ସକାଳେ ଏତେ ସମ୍ବର୍ଦ୍ଧନା ଜଣାଇ ପାଛୋଟି ଆଣିଥିଲେ, ମୋତେ ବିଦାୟ ଦେବାପାଇଁ ସେମାନଙ୍କ ଭିତରୁ କେହିଜଣେ ହେଲେ ସେଠାରେ ଦେଖାନାହାନ୍ତି। ଜିପ୍ କଥା ପଚାରିବାରୁ ବୁଝିଲି, ହଟ ଦାସ ଠିକାଦାରର ଜିପ୍ ମନ୍ତ୍ରୀଙ୍କ ଡ୍ୟୁଟିରେ ଆସିଥିଲା। ଚାଲିଗଲାଣି। ଭାବିଲି ମନ୍ତ୍ରୀ ତ ନିଶ୍ଚୟ ଫେରିବେ। ତାଙ୍କ ସହିତ କାର୍‌ରେ ଫେରିବା ଆଶାରେ ତାଙ୍କ କୋଠରିକୁ ଆସିଲି। ମନ୍ତ୍ରୀଙ୍କୁ ସେତେ ରାତିରେ ସୁଦ୍ଧା ଘେରି ଠିଆ ହୋଇଥିଲେ କେତେକ ଯୁବକ ଓ ରାଜନୈତିକ କର୍ମୀ। ଶାସନକୁ କିପରି ନିର୍ମଳ, କଳଙ୍କମୁକ୍ତ କରାଯିବ, ସେ ସଂପର୍କରେ ମନ୍ତ୍ରୀ ମହୋଦୟ ତଥାପି ସେମାନଙ୍କୁ ବୁଝାଉଛନ୍ତି।

ମୁଁ ଅନୁମାନ କରିନେଲି, ମନ୍ତ୍ରୀ ରାତି ପାହାନ୍ତା ଆଗରୁ ଏଠୁ ଆଉ ବାହାରୁ ନାହାନ୍ତି। ମୁଁ କିନ୍ତୁ ସେତେବେଳକୁ ପୂରାପୂରି ବୋରଡ୍। ଅଗତ୍ୟା ବ୍ୟାଗ୍‌ଟି ହାତରେ ଝୁଲାଇ ତିନିକିଲୋମିଟର ରାସ୍ତା ଷ୍ଟେସନ୍ ପର୍ଯ୍ୟନ୍ତ ଚାଲିଚାଲି ଆସିବାପାଇଁ 'ଜୟ ମା କାଳୀ'

କହି ରାସ୍ତା ଉପରକୁ ବାହାରି ପଡ଼ିଲି। ପ୍ରାୟ ଗୋଟାଏ କିଲୋମିଟର ଯିବାପରେ କ୍ଳାନ୍ତ ଅବଶ ହୋଇ ମୁଁ ରାସ୍ତାକଡ଼ର ଗୋଟେ କଲ୍‌ଭର୍ଟ ବାଡା ଉପରେ ଚିତ୍ ହୋଇ ଶୋଇପଡ଼ିଲି ଓ ମନେମନେ ଭାବିଲି, ସାହିତ୍ୟ ସଂସ୍କୃତି ନାମରେ ଏ ସବୁ ପ୍ରକୃତରେ ଗୋଟିଏ ଗୋଟିଏ ହୁଜୁଗ୍। ଏଥିରେ ଆଉ ମାତିବି ନାହିଁ ବୋଲି ମନେମନେ ଶପଥ କଲି।

ସାର୍ବଜନୀନ ପୂଜାମଣ୍ଡପମାନଙ୍କରେ ଦେବଦେବୀମାନଙ୍କର ଆବାହନ ହୋଇଥାଏ, ନିତାନ୍ତ ନିରୁଛବ ଭାବରେ; କିନ୍ତୁ ବିସର୍ଜନ ବେଳର ଆଡମ୍ବରଟା ହୋଇଯାଏ ବେଶି। ଆବାହନ ତ ନିରୁଛବ ! କିନ୍ତୁ ବ୍ୟାଣ୍ଡପାର୍ଟି ଲାଇଟ୍, ଧାଙ୍ଗଡ଼ା, ମସ୍‌ଗୁଲି ନାଚଠାରୁ ଆରମ୍ଭ କରି ମାଇକ୍ରୋଫୋନ୍‌ର ରଡ଼ି ପର୍ଯ୍ୟନ୍ତ କୋଳାହଳରେ ବିସର୍ଜନ ମୁହୂର୍ତ୍ତଟି ପ୍ରବଳ ଭାବରେ ମୁଖର ହୋଇଉଠେ। ମାତ୍ର ଆବାହନ ବେଳର ମଙ୍ଗଳଘଟଟି ପୂଜାମଣ୍ଡପର କୋଣରେ ପଡ଼ିରହିଥାଏ ବିସ୍ମୃତ, ପରିତ୍ୟକ୍ତ ହୋଇ। କିନ୍ତୁ ସାର୍ବଜନୀନ ସାହିତ୍ୟ ସମାରୋହ ବା ଉତ୍ସବମାନଙ୍କରେ ଏହା ଠିକ୍ ବିପରୀତ। ଆବାହନ ବେଳେ ଭାରି ଉତ୍ସବମୁଖର ବିସର୍ଜନବେଳେ କିନ୍ତୁ ସବୁ ପରିତ୍ୟକ୍ତ। ସବୁ ଶୂନ୍‌ଶାନ୍! ସବୁ ବିସ୍ମୃତ!

ହଠାତ୍ ବିପରୀତ ଆଡୁ ଗୋଟେ କାର୍‌ର ହେଡ୍ ଲାଇଟ୍ ପଡ଼ିଲା। ଇଏ ଥିଲା ବୋଧହୁଏ ମନ୍ତ୍ରୀଙ୍କ କାର୍। ଲିଫ୍‌ଟ ପାଇବା ଆଶାରେ ମୁଁ ରାସ୍ତାରେ ଠିଆ ହୋଇପଡ଼ିଲି, ମନ୍ତ୍ରୀ ମହୋଦୟ ମୋତେ ସେଠାରେ ଏକୁଟିଆ ଠିଆ ହୋଇଥିବାର କାରଣ ପଚାରିବାରୁ ମୁଁ କହିଲି, "ଏପରି ସୁନ୍ଦର ଜ୍ୟୋସ୍ନା ସହରମାନଙ୍କରେ ମିଳେନାହିଁ ତ ! ସେଥିପାଇଁ... !" ମନ୍ତ୍ରୀ ମହୋଦୟ କହିଲେ, "ଆସନ୍ତୁ ମୋ ସାଙ୍ଗରେ ମୁଁ ଏକାଥରେ ଆପଣଙ୍କୁ ନେଇ ଆପଣଙ୍କ ଘରେ ଛାଡ଼ିଦେବି। ସେ ମହାକବିଙ୍କ ସଂପର୍କରେ ଆଉ ବହୁତ କଥା ଅଛି। ଯାହା ଆପଣଙ୍କୁ ବାଟରେ ଗୋଟିଏ ଗୋଟିଏ କରି ଶୁଣାଇବି। ସଭାରେ ସବୁକଥା କହିବାପାଇଁ ତ ସମୟ ହେଲାନାହିଁ..." ଭାବିଲି ଏ ବରଂ ଭଲ। ଏ ଅପନ୍ତରା ରାସ୍ତା କଡ଼ରେ କଲଭର୍ଟ ବାଡ଼ା ଉପରେ ପଡ଼ିରହିବାଠାରୁ।

୦୫/୦୬/୮୮

# ପୈତୃକ ବେତବାଡ଼ିଟି ଥିଲା ବୋଲି

ଡାକେ ବାଟ, କେତେ ଅସରନ୍ତି ହୋଇପାରେ: ପୁଣି ନିଜ ନିଜ ନିର୍ବାଚନ ମଣ୍ଡଳୀରେ, ନିଜେ ଜଣେ ଛୋଟ ବଡ଼ ସାହିତ୍ୟିକ ହୋଇଥିଲେ କୌଣସି ସାହିତ୍ୟ ସଭାକୁ ସମ୍ମାନିତ ଅତିଥି ବା ସେହିପରି କିଛି ଗୋଟାଏ ହୋଇ [illegible] ବେଳେ ବେଳେ କି ମାରାତ୍ମକ ବିପଦର ସମ୍ମୁଖୀନ ହେବାକୁ ପଡ଼େ, ତାହା ମୁଁ ସେହିଦିନଠାରୁ ବୁଝିଛି। ଗୋଟାଏ ଅରମା ରାତିରେ; ଅପନ୍ତରା ହୁଡ଼ାମାଳ ଗହୀର ଭିତରେ।

ସେଦିନ ତିନିଟା ବେଳେ ମୋ ନିର୍ବାଚନମଣ୍ଡଳୀର ଲଗାଲଗି ଗୋଟିଏ ପଡ଼ୋଶୀ ଗାଁକୁ ଏକ ବାଦୀପାଲା ଉଦ୍‌ଘାଟନ କରିବାପାଇଁ ମୋର କାର୍ଯ୍ୟକ୍ରମ ଥିଲା। କିନ୍ତୁ ସେହିଦିନ ନିର୍ଦ୍ଦିଷ୍ଟ ସମୟର ଅଢ଼େଇ ଘଣ୍ଟା ପରେ ଜଣେ ଯୁବକ ଧଇଁସଇଁ ହୋଇ ଆସି କହିଲେ, "ସାର୍ ଉଠନ୍ତୁ ବାହାରିବା। ଟିକିଏ ଡେରି ହୋଇଗଲା।" ବିରକ୍ତି ଓ ବିସ୍ଫୋରଣକୁ ମୁଁ କୌଣସିମତେ ଚାପିରଖି କହିଲି, "କିନ୍ତୁ, ତୁମେ ତ ଗୌତମ ରାଉତ ନୁହଁ, ଯିଏ ଆସିଥିଲେ ମୋ ସହିତ କାର୍ଯ୍ୟକ୍ରମ ସ୍ଥିର କରିବାପାଇଁ, ଆଉ ଯିଏ କହିଯାଇଥିଲେ ଆମେ ଏଠୁ ଠିକ୍ ତିନିଟାରେ ବାହାରିଗଲେ ଠିକ୍ ପାଞ୍ଚଟାରେ ପହଞ୍ଚିଯିବା ଚଉଦକୁଲାଟ କେନାଲ୍‌ବନ୍ଧ ମସ୍‌ଜିଦ୍ ପାଖରେ; ସେଇଠି କେନାଲ୍ ପାରି ହୋଇଗଲେ ବନ୍ଧଠୁ ମୋଟେ ଡାକେ ଛଡ଼ାରେ ଗାଁ; ଆପଣ ରାତି ନଅଟା ବେଳକୁ କିମ୍ବା ତା' ଆଗରୁ ସୁଦ୍ଧା ଘରେ ପହଞ୍ଚିଯାଇ ପାରିବେ। ମାତ୍ର ତୁମେ ଆସି ପହଞ୍ଚିଛ ସାଢ଼େ ପାଞ୍ଚଟାରେ। ମୋର କଣ୍ଠସ୍ୱରରେ ବିରକ୍ତିର ତୀକ୍ଷ୍ଣତା ଥିବା ବେଶ୍ ସୁସ୍ପଷ୍ଟ।

ଯୁବକ ଜଣକ ଅମ୍ଳାନ ଭାବରେ ସ୍ମିତ ହସି କହିଲା, "ମୋ ନାଁ ସାର୍ ଗୋବିନ୍ଦ ଚନ୍ଦ୍ର ରଥ।" ଗୌତମ ଗୋଟେ ଝାମେଲାରେ ପଡ଼ି ଆସିପାରିଲା ନାହିଁ। ନୋହିଲେ ତା'ର ହିଁ ଆସିବାର କଥା। ସିଏ ମା' ବନଦୁର୍ଗା ଯୁବକ ସଙ୍ଘର ସେକ୍ରେଟାରୀ। ସିଏ ନଆସିପାରିବାରୁ ମୁଁ ଆସିଲି। ବିରକ୍ତିର ମାତ୍ରାଟା ଆଉରି ବଢ଼ିଗଲା। କିନ୍ତୁ ନିର୍ବାଚନମଣ୍ଡଳୀ ପଡ଼ିଶା ଗାଁର ଯୁବକଙ୍କର ଉପରେ ବିରକ୍ତ ହେଲେ ତ ଚଳେ ନାହିଁ। ନଯିବାର ଉପାୟ ତ

ନାହିଁ। ଅଗତ୍ୟା ଉଠିବାପାଇଁ ବାହାରିବା ବେଳକୁ ଯୁବକ ଜଣକ କାନ୍ଥରେ ଡେରା ହୋଇଥିବା ଖଣ୍ଡେ ବେତ ବାଡ଼ିଟିଏ ଦେଖିପାରି ମୋତେ କହିଲା, "ସେ ବାଡ଼ିଖଣ୍ଡ ହାତରେ ଧରିଥାଆନ୍ତୁ ସାର୍।"

ମୁଁ ବିସ୍ମୟରେ ପଚାରିଲି, "ବାଡ଼ି ମୋର କ'ଣ ହେବ ? ଏ ବେତ ବାଡ଼ିଟାକୁ ମୋ ବାପା ବ୍ୟବହାର କରୁଥିଲେ। ଏଇଟା ତାଙ୍କରି ସ୍ମୃତିଚିହ୍ନ।" ଯୁବକ ଉତ୍ତର ଦେଲା, "ବାଡ଼ିଟା ହାତରେ ଧରିଲେ ଆପଣଙ୍କୁ ବେଶ୍ ମାନିବ। ଭାବିଲି ଇଏ ମଧ୍ୟ ଗୋଟିଏ କଥା। ହାତରେ ଏଇପରି ଗୋଟିଏ ବାଡ଼ି ଧରିଲେ ଚେହେରାଟା କିଛି ଗମ୍ଭୀର ଓ କିଛି ସିରିୟସ୍ ଦିଶିପାରେ। ଲୋକେ ମଧ୍ୟ ବେଶ୍ ଇମ୍ପ୍ରେସ୍‌ଡ୍ ହୋଇପାରିବେ। ମୁଁ ତେଣୁ ପୈତୃକ ବେତବାଡ଼ିଟିକୁ ହାତରେ ଧରି ଜିପ୍ ଭିତରକୁ ଉଠିଲି।

ପଟାମୁଣ୍ଡାଇ କେନାଲ୍‌ର ଦକ୍ଷିଣକୂଳରେ ଗୋଟିଏ ବେଶ୍ ବଡ଼ ଓ କେଉଁ ପୁରୁଣା କାଳର ମସ୍‌ଜିଦ୍ ପାଖରେ ପହଞ୍ଚିବା ବେଳକୁ ସନ୍ଧ୍ୟା ହୋଇଯାଇଥିଲା। ସନ୍ଧ୍ୟାର ସେଇ ନିଃଶବ୍ଦତା ଭିତରେ ମସ୍‌ଜିଦ୍‌ର ଅଜାନ୍‌ର "ଅଲ୍ଲା ହୋ ଆକ୍‌ବର" ଧ୍ୱନି ବେଶ୍ ଭାବଦ୍ୟୋତକ ଲାଗୁଥିଲା। ଯୁବକ ଜଣକ ଘାଟ ଡଙ୍ଗାରେ କାତମାରି ସେପାଖକୁ ପାରି କରାଇଦେଲା। କିନ୍ତୁ ବନ୍ଧ ତଳକୁ ଗଡ଼ିଲା ପରେ ଚାରିଆଡ଼େ ଏପ୍ରିଲ୍ ମାସର କେବଳ ହୁଡ଼ାମାଳ ଅପନ୍ତରା ଗହୀର ଆଉ ଅନ୍ଧାର। ତାରି ଭିତରେ ଗୋଟିଏ ଗୁଳା ଧରି ଯିବାବେଳେ ଯୁବକଟି ମୋତେ କହିଲା, "ବାଡ଼ିଟିକୁ ଠିକ୍ ଧରିଥିବେ ସାର୍। ଆପଣଙ୍କପାଇଁ ଅଚିହ୍ନା ବାଟ ତ... ପ୍ରାୟ ଦୁଇଘଣ୍ଟା ସେହି ହୁଡ଼ାମାଳ ଭିତରେ ଚାଲିବା ପରେ ମୁଁ କ୍ଳାନ୍ତକଣ୍ଠରେ ପଚାରିଲି, "ତୁମ ଗାଁ ଆଉ କେତେବାଟ। ଡାକେ ବାଟ ତ ଲମ୍ବି ଲମ୍ବି ଚାଲିଛି, ଅସରନ୍ତି !" ଯୁବକଜଣଙ୍କ କହିଲା, "ଏଇ ଆଗରେ ଦେଖାଯାଉଛି ସାର୍ !" ମୁଁ କିନ୍ତୁ କିଛି ଦେଖିପାରୁ ନଥିଲି। କେବଳ ଅନ୍ଧାର ଆଉ ଅନ୍ଧାର। ଆଉ ନୂଆ ହଳ ହୋଇଥିବା ବିଲମାଳ।

ପ୍ରାୟ ରାତି ନଅଟା ପରେ ସଭାସ୍ଥଳରେ ପହଞ୍ଚିବା ବେଳକୁ ବାଦୀପାଲା ଦେଖିବାପାଇଁ ଜନତାର ଅସମ୍ଭାଳ ଅବସ୍ଥା। ସମ୍ମାନିତ ଅତିଥି ବୋଧେ ଆଉ ଆସିଲେ ନାହିଁ। ତେଣୁ ବାଦୀପାଲା ଆରମ୍ଭ ହେଉ। ଏହିପରି ଦୁଇ ଦଳ ମଧ୍ୟରେ କଥା କଟାକଟି ମଧ୍ୟ ଆରମ୍ଭ ହୋଇଯାଇଥିଲା। ତା'ରି ଭିତରେ ଦେଖିଲି ଗୌତମ ରାଉତଙ୍କୁ। ସେ ମୋତେ ଦେଖିପାରି ଗୋଟିଏ ସମକୋଣୀ ଜୁହାର ପକାଇ ଗାଁ ଲୋକଙ୍କୁ କହିଲେ, "ମୁଁ କହୁଛି ପରା ସାର୍ ନିଶ୍ଚୟ ଆସିବେ। ସିଏ କ'ଣ ତମ ଆମ ପରି ହୋଇଛନ୍ତି, ବସିଲା ଜାଗାରୁ ସାଙ୍ଗେ ସାଙ୍ଗେ ଉଠି ଆସିବେ ? ଏମିତି ଡେରି ହୋଇଥାଏ !" ମୋ ଭିତରର ବିରକ୍ତି ଓ କ୍ରୋଧ ପଞ୍ଚମକୁ ଉଠିଥିଲା। କିନ୍ତୁ ନିରୁପାୟ। ଏ ଗୌତମ ରାଉତଟି ପୁଣି ମୋର ଜଣେ ବଡ଼ ସାକ୍ରେଦ୍। ମଞ୍ଚ ଉପରକୁ ଉଠି ମୁଁ ଆସନ ଗ୍ରହଣ ପରେ ପୁଷ୍ପମାଲ୍ୟ ପ୍ରଦାନ, ସେକ୍ରେଟାରୀଙ୍କ

ରିପୋର୍ଟ ପାଠ, ମୋର ପରିଚୟ ପ୍ରଦାନ ଇତ୍ୟାଦି ଯଥାବିଧି ସମାପ୍ତ ହେବା ପରେ ମୋତେ ପୁଣି ଗୋଟିଏ ଘଣ୍ଟା ଗଳଦଘର୍ମ ହୋଇ ବାଚାଳ ପରି ଭାଷଣ ଦେବାପାଇଁ ପଡ଼ିଲା । ପାଞ୍ଚ ମିନିଟ୍‌ରେ ଭାଷଣ ଶେଷ କରି ଦେଲେ ମୁଁ ଏଠି ଗାଁ ସଭାରେ ତ କହିପାରୁନାହିଁ ଆଉ ପାର୍ଲିଆମେଣ୍ଟରେ ଯାଇ କ'ଣ କହୁଥିବି । ଏହିପରି ଆଲୋଚନା ଓ ପ୍ରଚାର ପ୍ରତିପକ୍ଷ ଗୋଷ୍ଠୀ ଆରମ୍ଭ କରିଦେବେ, ତେଣୁ ପ୍ରାଣ ରଖିବାପାଇଁ ପ୍ରାଣାନ୍ତକ ଅବସ୍ଥା ! ମୋର ଭାଷଣ ଶେଷକଲି ଓ ବାଦୀପାଲାର ଆନୁଷ୍ଠାନିକ ଉଦ୍‌ଘାଟନ ଘୋଷଣା କଲି । ସେତେବେଳକୁ ଗୋଟିଏ ଦଳର ଗାୟକ ଶିରୋମଣି ଛାତିରେ ଗୁଡ଼ିଏ ମେଡାଲ୍ ଝୁଲେଇ ହାତରେ ଚଅଁରବେଣ୍ଟ ଧରି ପେଣ୍ଡାଲ୍ ଉପରକୁ ଲମ୍ଫ ଦେବାପାଇଁ ତିଆରି ହୋଇଯାଇଥିଲେ ।

ଚଉଦକୁଲାଟ ମସ୍‌ଜିଦ୍ ପାଖରେ ପହଞ୍ଚିବା ବେଳକୁ ରାତି ବାରଟା ହୋଇଯାଇଥିଲା । କୃଷ୍ଣାତିଥିର ବିଡ଼ମ୍ବିତ ଚନ୍ଦ୍ରର ମ୍ଳାନ ଜ୍ୟୋତ୍ସ୍ନାରେ ମସ୍‌ଜିଦ୍‌ର ଗମ୍ବୁଜ ଓ ମୀନାର ସବୁ ସ୍ୱପ୍ନାଞ୍ଚିତ ଓ ଭାବଗମ୍ଭୀର ଦିଶୁଥିଲେ । ମୁଁ ସେଇଠି ଦଣ୍ଡେ ଅଟକିଯାଇ, ୧୮.   । ପ୍ରଭୃତିଙ୍କୁ ବିଦାୟ ଦେଇ ଫେରିବାପାଇଁ ଜିପ୍ ଭିତରକୁ ଉଠିଲି । ସେଇଦିନ ମୁଁ ବୁଝିପାରିଥିଲି, ସାହିତ୍ୟରେ ମଣିଷ ଜଣେ ନିର୍ଲିପ୍ତ ଉଦାସ ଶିଳ୍ପୀ । କିନ୍ତୁ ରାଜନୀତିର ମଣିଷ ଘୋର ଆସକ୍ତ ପ୍ରମତ୍ତ ଓ ଆତ୍ମପ୍ରଚାର ବିପରୀତ ସ୍ୱଭାବର । ଏ ଦୁଇ ଧର୍ମ ବିପରୀତ ସ୍ୱଭାବର ମଣିଷଙ୍କୁ ଏକାଠି ଧରି ରଖିବା ପ୍ରକୃତରେ ଦୁଷ୍କର । ସେଇଦିନ ମୁଁ ମଧ୍ୟ ବୁଝିଥିଲି, ରାଜନୀତି ବୋଧହୁଏ ମୋର ସ୍ୱଧର୍ମ ନୁହେଁ ।

ସେତେବେଳେ ମୁଁ କେବଳ ଗୋଟିଏ କଥା ବାରମ୍ବାର ମନେ ହେଉଥିଲା ପୈତୃକ ବେତବାଡ଼ିଟି ଯୋଗୁଁ କେବଳ ମୁଁ ବୋଧହୁଏ ସେଇ ଅପନ୍ତରା ହୁଡ଼ାମାଳ ଭିତରୁ ଅକ୍ଷତ ଦେହରେ ଫେରିଆସିପାରିଲି ।

୧୨/୦୬/୮୮

# ମୃତ୍ୟୁର ରଙ୍ଗ

ଗୁଆହାଟୀରୁ ପ୍ରସାରିତ ଏକ ସମ୍ବାଦରେ ପଢିଲି, ସେଠାରେ ଗୋଟିଏ ସ୍ଥାନରେ- ଝାଙ୍କ ଝାଙ୍କ ହୋଇ ପକ୍ଷୀ, କୌଣସି ଆଲୋକ ଦେଖିପାରି ଶହଶହ ସଂଖ୍ୟାରେ ସେଠାକୁ ଉଡ଼ି ଆସୁଛନ୍ତି ! ତା'ପରେ ସେମାନଙ୍କର କାକଳୀ ନିରବ ହୋଇଯାଉଛି। ସେମାନେ ନଖାଇ ନପିଇ ତିଳେତିଳେ ଶୁଖିଶୁଖି ସେଇଠାରେ ମରୁଛନ୍ତି। ହଠାତ୍ ପକ୍ଷୀମାନେ କୌଣସି ଅବ୍ୟକ୍ତ କାରଣରୁ ଆତ୍ମହତ୍ୟା କରୁଛନ୍ତି। ସେମାନଙ୍କୁ ନିଶବ୍ଦ ମୃତ୍ୟୁମୁଖରୁ ରକ୍ଷା କରିବାପାଇଁ ଗୁଆହାଟୀରେ ଅନେକ ପକ୍ଷୀ-ସୁରକ୍ଷା ସମିତି ଇତିମଧ୍ୟରେ ଗଠିତ ହୋଇଗଲାଣି... ଏବେ ରବୀନ୍ଦ୍ରନାଥଙ୍କର 'ଭାନୁ ସିଂଘେର୍ ପଦାବଳୀ'ରେ ପଢ଼ିଥିଲି, "ମରଣରେ ତୁଁହୁଁ ମେରେ ଶ୍ୟାମ୍ ସମାନ୍"। ସେ ଦିନରୁ ମୋ' ମନରେ ଗୋଟିଏ ଧାରଣା ରହିଆସିଥିଲା, ମୃତ୍ୟୁର ରଙ୍ଗ ସୁ-ନୀଳ। କିନ୍ତୁ ଏବେ ଉପରୋକ୍ତ ଗୁଆହାଟୀ ସମ୍ବାଦ ପଢ଼ି ମୋର ମନେହେଉଛି ମୃତ୍ୟୁର ରଙ୍ଗ ଆଲୋକଶିଖା ପରି ଉଜ୍ଜ୍ୱଳ। ତେଣୁ ଗୁଆହାଟୀର ପକ୍ଷୀସମାଜ ଆଲୋକଶିଖା ଦେଖି ଆତ୍ମହତ୍ୟା କରୁଥିବାର ରହସ୍ୟ ମୁଁ ଏବେ ବୁଝିପାରୁଛି।

କିଛିଦିନ ତଳେ ମଧ୍ୟ ପଢ଼ିଥିଲି, ଓଡ଼ିଶାର ଗହୀରମଥା ସମୁଦ୍ରକୂଳରେ ଦଳଦଳ ଧଳାକଇଁଛ ମରି ପାଣିରେ ଭାସୁଥିଲେ। ସେଇପରି ଆଉଏକ ସମୁଦ୍ରକୂଳରେ ତିମିମାଛମାନେ ସମୁଦ୍ର ଭିତରୁ କୂଳକୁ ଉଠିଆସି ଶୁଖିଲାବାଲି ଉପରେ ପଡ଼ି ଶହଶହ ସଂଖ୍ୟାରେ ପ୍ରାଣତ୍ୟାଗ କରିଥିଲେ ! ସମୁଦ୍ରର ପାଣି ଆଜି ଦୂଷିତ ଓ ତାହାର ପରିବେଶ ପ୍ରଦୂଷିତ। ସେଥିପାଇଁ ତିମିମାଛ ଓ ଧଳାକଇଁଛମାନେ ସେଇ ଦୂଷିତ ପରିବେଶ ମଧ୍ୟରେ ଆଉ ବଞ୍ଚି ରହିବାକୁ ଏକ ଦୁଃସହ ଅଭିଶାପ ମନେକରି ଆତ୍ମହତ୍ୟା କରୁଛନ୍ତି। ମନୁଷ୍ୟର ଅତ୍ୟାଚାରରେ ଆକାଶ ଓ ପବନ ମଧ୍ୟ ଆଜି ବିଷାକ୍ତ ! ସେଥିରେ ପକ୍ଷୀମାନଙ୍କର କଣ୍ଠ ଶୁଖିଯାଉଛି। କାକଳୀ ଆଉ ଫିଟୁନାହିଁ। ଏହାପରେ ଗୁଆହାଟୀର ପକ୍ଷୀମାନେ ବଞ୍ଚି ରହିବାକୁ ଯଦି ଏକ ଅସହ୍ୟ ଯନ୍ତ୍ରଣା ମନେକରି ଆତ୍ମହତ୍ୟା କରୁଥାନ୍ତି। ତା'ହେଲେ ସେଥିରେ ବିସ୍ମିତ ହେବାର ବା କ'ଣ ଅଛି ? ମଣିଷ କେବଳ ଏକ ପ୍ରଦୂଷିତ ପରିବେଶ ମଧ୍ୟରେ ବଞ୍ଚିରହି ପାରୁଛି।

ପରିବେଶକୁ ତା'ର ଲାଭ ଓ ଲୋଭପାଇଁ ଆହୁରି ଅଧିକ ପ୍ରଦୂଷିତ ଓ ବିଷାକ୍ତ କରିବାରେ ଲାଗିଛି। ପରିଣାମରେ ମଣିଷ ଆଜି ହୋଇଛି ପ୍ରଦୂଷଣର ମୂର୍ତ୍ତିମନ୍ତ ବିଗ୍ରହ। ମନୁଷ୍ୟ ଆଜି ଯେପରି ମୌର୍ଯ୍ୟଯୁଗର ବିଷକନ୍ୟା, ଯାହାର ପ୍ରତି ଲୋମକୂପରେ ଭରି ରହିଛି ବିଷ ଆଉ ବିଷ। ଜୀବନ ଯେତେ ଦୁର୍ବିସହ ମନେହେଲେ ସୁଦ୍ଧା ସେ ତେଣୁ ଆତ୍ମହତ୍ୟା କରିପାରୁ ନାହିଁ। କାରଣ ସେ ପ୍ରଦୂଷଣର ସର୍ଜନା... କିନ୍ତୁ ଯେଉଁ ଦେଶର ଆଇନ୍ ଓ ସମାଜ କୋଟିକୋଟି ମନୁଷ୍ୟଙ୍କୁ ସୁସ୍ଥ ଭାବରେ ବଞ୍ଚିରହିବାର ସୁଯୋଗରୁ ବଞ୍ଚିତ ରଖେ; ସେଇ ଦେଶର ଆଇନ୍ ଓ ସମାଜ ଦୃଷ୍ଟିରେ ଆତ୍ମହତ୍ୟା ଏକ ଦଣ୍ଡନୀୟ ଅପରାଧ।

ଅଧ୍ୟାତ୍ମବାଦୀମାନେ କହନ୍ତି, ଆତ୍ମହତ୍ୟା ଏକ ଗର୍ହିତ ପାପ ! କାରଣ ଏ ଜୀବନ ତ ଆମର ସୃଷ୍ଟି ନୁହେଁ ! ଏହା ବିଧାତାଙ୍କର ସର୍ଜନା ! ତେଣୁ ଏ ଜୀବନକୁ ନିଜ ହାତରେ ହତ୍ୟା କରିବାର ଅଧିକାର ମଣିଷର ନାହିଁ, ମଣିଷ ନିୟତି ହାତରେ ଏକ କ୍ରୀଡନକ ! କିନ୍ତୁ ମନୁଷ୍ୟର ମୌଳିକ ସ୍ୱାଧିକାରବାଦୀମାନେ ତାହାର ଉତ୍ତରରେ କହନ୍ତି, ଜୀବନ ବିଧାତାର ସୃଷ୍ଟି ହୋଇପାରେ, କିନ୍ତୁ ବଞ୍ଚିବା ହେଉଛି ମନୁଷ୍ୟର ନିଜ ନିଷ୍ପତ୍ତି ! ସଂପୂର୍ଣ୍ଣ ଭାବରେ ବ୍ୟକ୍ତିର ଅନାପେକ୍ଷିକ ସିଦ୍ଧାନ୍ତ।

ଏ ଦୁଇ ମତବାଦ ମଧ୍ୟରେ କେଉଁଟି ଠିକ୍ ତାହା ମୁଁ ଏପର୍ଯ୍ୟନ୍ତ ସ୍ଥିରକରି ପାରିନାହିଁ, କିନ୍ତୁ ଆଜିର ପରିବେଶ ଜଣେ ସ୍ପର୍ଶକାତର ବ୍ୟକ୍ତି ପକ୍ଷରେ ଯେ ଅତ୍ୟନ୍ତ ଦୁଃସହ ଓ ଉତ୍ପୀଡ଼କ ସେଥିରେ ସନ୍ଦେହ ନାହିଁ। ନଦୀର ଜଳ, ଅରଣ୍ୟର ଛାୟା, ଆକାଶର ପବନ ସବୁ ଆଜି ବିଷାକ୍ତ। ମହାନଗରୀମାନ ପୋଡ଼ା ପେଟ୍ରୋଲ ଓ କୋଇଲା ଧୂଆଁରେ ଆଜି ଗୋଟିଏ ଗୋଟିଏ ଗ୍ୟାସ୍-ଚାମ୍ବର। ଏହା ଭିତରେ ମଣିଷ କିପରି ନିଜେ ତଥାପି ବଞ୍ଚି ରହିପାରୁଛି, ମୁଁ ଭାବୁଛି ତାହା ପୃଥିବୀର ଅଷ୍ଟମ ବିସ୍ମୟ !

ଏବେ ମୁଁ ବୁଝିପାରୁଛି ଗତ ଦୁଇବର୍ଷ ହେଲା ମୁଁ କାହିଁକି ଆଉ କାପ୍ତାମାନଙ୍କର ଘୁମୁରା ଶୁଣିପାରୁ ନାହିଁ। ହଳଦୀବସନ୍ତମାନେ କାହିଁକି ଆଉ କେଉଁଠି ଦିଶୁନାହାନ୍ତି। କଜଳପାତିମାନେ କାହିଁକି ଆଉ ରାବୁ ନାହାନ୍ତି, କୋଇଲିମାନଙ୍କର କଣ୍ଠରେ କାହିଁକି ଆଉ ପୂର୍ବର ସରାଗ ନାହିଁ। ପ୍ରଭାତ ଓ ସନ୍ଧ୍ୟା ସବୁ ଆଜି କାହିଁକି କାକଳିହୀନ... ଏମାନେ ସବୁ ତା'ହେଲେ କ'ଣ କେଉଁଠି ଆତ୍ମହତ୍ୟା କଲେଣି ?

୧୮/୦୬/୮୮

# ବନୀ ସୁଆରଙ୍କ ଡାଲି

ଦିନ ଦୁଇଟାପରେ ସମୁଦ୍ରବାଲି, ସନ୍ଧ୍ୟାବେଳେ ଢେଉମାନଙ୍କର ଗର୍ଜନ, କୋଳାହଳ ଓ ଝାଉଁଗଛମାନଙ୍କର ବିଷଣ୍ଣ ଦୀର୍ଘଶ୍ୱାସ ଚିଟା ଲାଗିଥିଲା। ବ୍ୟତିକ୍ରମପାଇଁ ଆମେ ସ୍ଥିର କରିଥିଲୁ, ସେଦିନ ସନ୍ଧ୍ୟାରେ ବଡ଼ଦେଉଳରେ ଆଳତି ଶେଷହେବା ପରେ ଆମେ ସ୍ନାନମଣ୍ଡପ ଉପରେ ଅଧାଆଲୁଅ ଓ ଅଧାଛାଇ ଭିତରେ ଚୁପ୍‌ଚାପ୍ ବସିବା ଆଉ ମହାପ୍ରସାଦ ଖାଇ ଫେରିବା। ସ୍ନାନମଣ୍ଡପ ଉପରେ ବସି ଆମେ ଅପେକ୍ଷା କରୁଥିଲୁ ବନମାଳୀ ସୁଆର ଓରଫ୍ ବନୀ ସୁଆରଙ୍କୁ- ତାଙ୍କ ଡାଲି, ଅନ୍ୟ ଡାଲିଠାରୁ ନିଆରା। ତା'ର ସ୍ୱାଦ ଅଲଗା। ସେ ଡାଲି, ଆମକୁ ଖୁଆଇବେ ବୋଲି ପୁରୀର ଜଣେ ବନ୍ଧୁ ଆମକୁ ଆମନ୍ତ୍ରଣ କରିଥିଲେ। ସେଦିନ ସନ୍ଧ୍ୟାଧୂପର ଅନ୍ନଡାଲି ଓ ବ୍ୟଞ୍ଜନ ପ୍ରଭୃତି ସହଳ ସହଳ ଆନନ୍ଦବଜାରକୁ ଆସିଯାଇଥିଲା। କିନ୍ତୁ ବନୀ ସୁଆର ସେପର୍ଯ୍ୟନ୍ତ ଆସିନଥିଲେ। ତାଙ୍କରି ଅପେକ୍ଷାରେ କିଛିସମୟ ବିତାଇବା ପରେ ଖବର ମିଳିଲା ବନୀ ସୁଆର ଆସିଗଲେଣି। ଆମେ ଅନ୍ନଡାଲି, ବ୍ୟଞ୍ଜନ ଆଉ ଛେନାତାଡିଆ ସଂଗ୍ରହ କରିବାପାଇଁ ଆନନ୍ଦବଜାରକୁ ଆସିଲୁ। ସେତେବେଳେକୁ ମହାପ୍ରସାଦ ବିକାକିଣାରେ, ଆନନ୍ଦବଜାର ବ୍ୟସ୍ତଚଞ୍ଚଳ ହୋଇଉଠିଥିଲା। ସେ ବିକାକିଣାର କର୍ମଚଞ୍ଚଳତା ଭିତରେ ବନୀ ସୁଆର ଗୋଟିଏ ମଝିଲା ଆକାରର ମାଟିକୁଡୁଆ ଆଗରେ ରଖି ଗୋଟିଏ ସିମେଣ୍ଟ ଖୁଣ୍ଟକୁ ଆଉଜି ମୁଣ୍ଡରେ ଖଣ୍ଡିଏ ଗାମୁଛା ପକାଇ ଚୁପ୍‌ଚାପ୍ ବସିରହିଥିଲେ। ତାଙ୍କ ଡାଲି କିଣିବାପାଇଁ ସେ ଅନ୍ୟମାନଙ୍କ ପରି କାହାକୁ ଡାକୁନଥିଲେ କିମ୍ବା ଅନ୍ୟମାନଙ୍କ ପରି ଅନ୍ନ, ଡାଲି ବିକ୍ରି କରିବାପାଇଁ ଯେପରି ଆଗ୍ରହ ପ୍ରକାଶ କରୁନଥିଲେ। କିନ୍ତୁ ଆମେ ତାଙ୍କ ପାଖକୁ ଯିବାବେଳକୁ ଦେଖିଲୁ, ସେତେବେଳକୁ କୁଡୁଆରୁ ପ୍ରାୟ ଚଉଠେ ଡାଲି ବିକ୍ରି ହୋଇ ସାରିଥିଲା।

ପୁରୀର ସେହି ବନ୍ଧୁ କହିଲେ, 'ଆମକୁ ଚାରିଟା ବଡ଼ଓଳିରେ ଡାଲି ଦିଅ।' ବନୀ ସୁଆର କଫମିଶା ଘଡ଼ଘଡ଼ିଆ କଣ୍ଠରେ ଖେଙ୍କାରି ଉଠିଲେ, "ନାଇ, ମୁଁ ତୁମକୁ ଡାଲି ଦେବିନାହିଁ।" ଆଶ୍ଚର୍ଯ୍ୟ କଥା, ଇଏ ଡାଲି ବିକିବାପାଇଁ ଏଠି ବସିଛନ୍ତି, ଆମେ

ପଇସା ଦେଇ ଡାଲି କିଣିବୁ, ଆମେ କିଛି ମାଗତା ନୋହୁ, ଇଏ ଆମକୁ ଡାଲି ଦେବେନାହିଁ କାହିଁକି ? ବନୀ ସୁଆରଙ୍କ ଆଚରଣ ମୋତେ କିମ୍ଭୁତ ଲାଗିଲା । ଜଣେ ବନ୍ଧୁ ସେଇକଥା କହିଲେ, "ଆମେ ତ ହକ୍ ପଇସା ଦେଇ ଡାଲି କିଣିବୁ, ତମେ ଆମକୁ ଡାଲି ଦେବନାହିଁ କାହିଁକି ?"

ବନୀ ସୁଆର ଲୋକଟି କୁଆଡ଼େ ଏହିପରି ଚିଡା ପ୍ରକୃତିର । ପୁରୀର ବନ୍ଧୁ ଅନୁନୟ କରିବାପରି କଣ୍ଠରେ କହିଲେ, "ହେଇଟି ମାଲିକେ ତମ ଡାଲି ଚାଖିବାପାଇଁ କଟକରୁ ଜଣେ ବାବୁ ଆସିଛନ୍ତି, ତମେ ଡାଲି ଦବନାହିଁ ।" ବନୀ ସୁଆର ଆମ ଆଡ଼କୁ ନୀରବରେ କଟକଟ କରି ଚାହିଁଲେ, ବୋଧହୁଏ କଟକିଆ ଲୋକଟିର ଚେହେରା ଦେଖିବାପାଇଁ । ତା'ପରେ କ'ଣ ଭାବିଲେ କେଜାଣି ଚାରିଟା ବଡ଼ଓଲିରେ ଡାଲି ଭର୍ତ୍ତିକରି ଆମ ଆଡ଼େ ବଢ଼ାଇଦେଲେ । ଆମେ ଅନ୍ନ, ବ୍ୟଞ୍ଜନ ଇତ୍ୟାଦି ସଂଗ୍ରହପାଇଁ ଅନ୍ୟଆଡ଼େ ବାହାରିଲୁ ।

ମୁଁ ପଚାରିଲି, "ସୁଆରେ ! ତମେ ତ ଆହୁରି ବେଶି ଡାଲି ଆଣିପାରନ୍ତ, ବେଶି ଗରାଖଙ୍କୁ ବିକ୍ରି କରିପାରନ୍ତ । ବେଶି ପଇସା ହୁଅନ୍ତା, ତମେ ଅଳ୍ପ ଡାଲି ଆଣୁଛ, ପୁଣି ସେଥିରେ ଗରାଖମାନଙ୍କୁ ତଡୁଛ... ଇଏ କି କଥା ।"

ବନୀ ସୁଆର ଘଡଘଡ଼ିଆ କଣ୍ଠରେ ଉତ୍ତରଦେଲେ, "ପଇସା ଆଉ ମୋତେ ଦେଖାନା ମହାର୍ଜେ । ବନୀ ସୁଆର କାଳିଆ ଦୟାରୁ ଢେରଢେର ପଇସା ଦେଖିଛି । ମୋର ଯାହାକୁ ଶରଧା ହେବ, ତାକୁ ଡାଲି ବିକିବି- ହାଁ । ଏହାପରେ ଆମେ ସେଠାରୁ ଚାଲିଆସିଲୁ ।

କିଣାବିକା ଏବଂ ସେଥିପାଇଁ ଏତେ ବିଜ୍ଞାପନ ପୁଣି ତୀବ୍ର ପ୍ରତିଦ୍ୱନ୍ଦିତାର ବଜାର-ସଂସ୍କୃତିର ଗହଳି ଭିତରେ ଏଇ ବନୀ ସୁଆର ମୋତେ ଭାରି ଅସ୍ୱାଭାବିକ ଲାଗିଲା । ବନୀ ସୁଆର ଯେପରି ଥିଲେ, ଏହି ବଜାରସଂସ୍କୃତିର ଏକ ପ୍ରତିବାଦ ।

୨୪/୦୬/୮୮

# ସ୍ୱପ୍ନ ଓ ହିସାବଖାତା

ଶାଳବୀଥି କେଉଁଠାରେ ଘଞ୍ଚ, ଛାୟାଘନ; ଆଉ କେଉଁଠି ପତଳା । ଗୋଟିଏ ସେକେଣ୍ଡ କ୍ଲାସ୍ କମ୍ପାଟମେଣ୍ଟର ଝରକା ବାଟେ ଆଖିରେ ପଡ଼େ ଲୋକାଳୟ, ଚାଳଛାଉଣୀ ମାଟିଘର... ଶାନ୍ତ ପଲ୍ଲୀଗ୍ରାମ । ହୁଡ଼ାମାଳ ବିଲରେ ଗୋରୁଗାଈମାନେ ଚରୁଛନ୍ତି । ଶାଳବୀଥି ଭିତରେ ଲମ୍ବିଯାଇଛି ରୂପ୍‌ସା-ବାଙ୍ଗିରିପୋଷି ସରୁ ରେଳପଥ । ଇଞ୍ଜିନ୍‌ରୁ କୋଇଲା ଧୂଆଁ କୁଣ୍ଡଳୀ ମୋଡ଼ି ଭାସିଯାଉଛି ପବନର ଗତି ଅନୁସାରେ। ଦୁଇପାଖରେ ବନଶୀର୍ଷ ଆଉ ଲୋକାଳୟମାନଙ୍କ ଉପରେ ସିଟି ବଜାଇ ବଜାଇ, କଣ୍ଢେଇ ଟ୍ରେନ୍ ପରି ଟ୍ରେନ୍‌ଟି ଚାଲିଛି । ରୂପ୍‌ସାଠାରୁ ବାରିପଦା ତା'ପରେ ବାଙ୍ଗିରିପୋଷି । ମୋତେ ଲାଗୁଥିଲା ଇଏ ଯେପରି କୌଣସି ରହସ୍ୟ ଲୋକର ସ୍ୱପ୍ନାଞ୍ଚିତ ପଥ ।

୧୯୪୪ ମସିହା । ମୁଁ ବାରିପଦା ଯାଉଥିଲି, ମୋର 'ପୃଥ୍ୱୀବଲ୍ଲଭ' ନାଟକ ପାଇଁ ମହାରାଜା-ଜନ୍ମୋତ୍ସବ ସମିତିଦ୍ୱାରା ପ୍ରଦତ୍ତ ପ୍ରଥମ ପୁରସ୍କାର ଗ୍ରହଣ କରିବାପାଇଁ । ସଙ୍ଗରେ ଥିଲେ ତିନିଜଣ ବନ୍ଧୁ । ରୂପ୍‌ସାଠାରୁ ଆମେ ଉଠିଥିଲୁ ଏଇ ଟ୍ରେନ୍‌ରେ ।

ଟ୍ରେନ୍‌ଟି କିନ୍ତୁ ପ୍ରତି ଦଶ ମିନିଟ୍ ବା ପନ୍ଦର ମିନିଟ୍‌ରେ ସ୍ଥାନେ ସ୍ଥାନେ ଅଟକି ଯାଉଥାଏ । ଲାଇନ୍ କଡ଼ରେ କେଉଁଠି ତାଜା ମୁଢ଼ି ବିକ୍ରି ହେଉଛି ତ କେଉଁଠି ବିକ୍ରି ହେଉଛି ଚୁଡ଼ା, ଆଉ କେଉଁଠି ବା ପରିବା । ଡ୍ରାଇଭର କେଉଁଠି ମୁଢ଼ି କିଣିବାପାଇଁ ଟ୍ରେନ୍ ଅଟକାଇଲାଣି ତ ଗାର୍ଡ଼ ସାହେବ କେଉଁଠି ଟ୍ରେନ୍ ଅଟକାଇଲାଣି, ପରିବା କିଣିବାପାଇଁ । କୌଣସି କୌଣସି ପାସେଞ୍ଜର ମଧ୍ୟ ଚୁଡ଼ା, ମୁଢ଼ି କିଣିବାପାଇଁ କେଉଁଠି କେଉଁଠି ଚେନ୍ ଟାଣି ଟ୍ରେନ୍ ଅଟକାଇବାରେ ଅସୁବିଧା ନଥିଲା । ଗାଡ଼ିର ଗତି ମନ୍ଥର ହୋଇ ଆସିଲେ ଗାଈ ରଖୁଆଳ ପିଲାମାନେ ଦଉଡ଼ି ଦଉଡ଼ି ଟ୍ରେନ୍ ସହିତ ପ୍ରତିଯୋଗିତା ଆରମ୍ଭ କରିଦେଉଥିଲେ । ବେଳେବେଳେ ଟ୍ରେନ୍‌କୁ ମଧ୍ୟ ସେମାନେ ଅତିକ୍ରମ କରିଯାଉଥିଲେ । ସେତେବେଳେ ସେମାନଙ୍କର କି ଉଲ୍ଲାସ । ମୁଁ ମନେମନେ ପ୍ରାର୍ଥନା କରୁଥିଲି, ଏଇ ଟ୍ରେନ୍ ଯାତ୍ରା ଅସରନ୍ତି ହେଉ ।

ଅତୀତ ୪୪ ବର୍ଷ ମଧ୍ୟରେ ଆଜି ନିଶ୍ଚୟ ସେ ଶାଳବୀଥି ଆଉ ନଥିବ । ସେଦିନ ଯେତେ ପାସେଞ୍ଜର ଏ ଲାଇନ୍‌ରେ ଯାଆସ କରୁଥିଲେ, ବସ୍‌ର ପ୍ରଚଳନ ଯୋଗୁଁ ସେତେ ସଂଖ୍ୟାରେ ଏ ଲାଇନ୍ ସେମାନେ ହୁଏତ ଆଉ ବ୍ୟବହାର କରୁନଥିବେ । ସେଦିନ ପରି ଏହାର ଡବାସବୁ ଆଉ ହୁଏତ ପରିଷ୍କାର, ପରିଚ୍ଛନ୍ନ, ଝକଝକ ନଥିବ । ଏ ଲାଇନ୍ ଆଜି ହୁଏତ ଦିଶୁଥିବ ଏକ ପ୍ରାଗୈତିହାସିକ ଡାଇନୋସାର୍‌ର କଙ୍କାଳ ପରି ! କାଳଗ୍ରାସରେ ସ୍ୱପ୍ନର ପ୍ରଲେପ ପୋଛି ହୋଇ ଯାଇଥିବ ! ତଥାପି ମୋର ସ୍ମୃତିର ମାନଚିତ୍ରରେ ଆଜି ସୁଦ୍ଧା ଘଞ୍ଚ ଶାଳବୀଥି ଭିତର ଦେଇ ଲମ୍ବିଯାଇଛି ଏଇ ସ୍ୱପ୍ନାଙ୍କିତ ରେଳପଥ ।

ବିଗତ ସପ୍ତମ ଦଶକଠାରୁ ଏଇ ରେଳପଥ "ଅନ୍-ଇକନମିକ୍" ବା ଲାଭପ୍ରଦ ନଥିବାରୁ ଏହାକୁ ବନ୍ଦ କରିଦେବା ପାଇଁ ପ୍ରତିବର୍ଷ ରେଳବଜେଟ୍‌ରେ ପ୍ରସ୍ତାବ ଆସୁଛି । କିନ୍ତୁ ଆଶ୍ଚର୍ଯ୍ୟ ଏହାର ପ୍ରାଣଶକ୍ତି ! ସବୁଥର ଏହା ରେଳ ମନ୍ତ୍ରଣାଳୟର ଦାଢ଼ରୁ ବର୍ତ୍ତି ଯାଉଥିଲା । ଏଇ ରେଳ ଲାଇନ୍ ସହିତ ମୋର ଏକ ସ୍ୱପ୍ନିଳ ସଂପର୍କ ଥିବାରୁ ମୁଁ ପାର୍ଲିଆମେଣ୍ଟରେ ସଦସ୍ୟ ଥିବାବେଳେ, ପ୍ରତିବର୍ଷ ରେଳବଜେଟ୍‌ର ଡିମାଣ୍ଡ ଆଲୋଚନାବେଳେ କଟ୍-ମୋସନ ଆଣୁଥିଲି, ଏ ଲାଇନ୍‌କୁ ବନ୍ଦ କରିଦେବା ପ୍ରସ୍ତାବ ବିରୁଦ୍ଧରେ । ତାହା ଅବଶ୍ୟ ଅଗ୍ରାହ୍ୟ ହୋଇଯାଉଥିଲା । କିନ୍ତୁ ରୂପସା-ବାଙ୍ଗିରିପୋଷି ରେଳପଥ ଆଶ୍ଚର୍ଯ୍ୟଜନକ ଭାବରେ ବର୍ତ୍ତି ଯାଉଥିଲା ।

ଥରେ ରେଳମନ୍ତ୍ରୀ ତାଙ୍କ ଭାଷଣ ପ୍ରସଙ୍ଗରେ କହିଥିଲେ: "ମାନ୍ୟବର ସଦସ୍ୟ କହୁଛନ୍ତି, ସ୍ୱପ୍ନର କଥା । କିନ୍ତୁ ମୁଁ ତାଙ୍କୁ କହି ଦେବାକୁ ଚାହୁଁଛି, ସ୍ୱପ୍ନ ସବୁ ଏବେ ବଞ୍ଚି ରହିଛି, କେବଳ ପରୀ କଥାମାନଙ୍କରେ । ଆଜି ଦୁନିଆ ଚାଲୁଛି, ପରୀ କଥାର ସ୍ୱପ୍ନରେ ନୁହେଁ, ଲାଭକ୍ଷତିର ହିସାବ ଫର୍ଦ୍ଦରେ !"

ଜୀବନ ଓ ପରିବେଶ ଆଜି ପ୍ରକୃତରେ ସ୍ୱପ୍ନହୀନ, ବିବର୍ଣ୍ଣ। ଜୀବନ ଆଜି ଏକ ଲାଭକ୍ଷତିର ହିସାବ ଫର୍ଦ୍ଦ । ସେଠି ସ୍ୱପ୍ନ ନାହିଁ, ଅଛି କେବଳ ହିସାବ ଆଉ ହିସାବ। ଏବେ ମଧ୍ୟ ଲାଭ କ୍ଷତିର ହିସାବ କଷି ପ୍ରତିବର୍ଷ ଏଇ ରେଳପଥକୁ ବନ୍ଦ କରିଦେବାପାଇଁ ରେଳ ମନ୍ତ୍ରଣାଳୟ ପ୍ରସ୍ତାବ କରୁଛନ୍ତି । କିନ୍ତୁ, ପ୍ରତିଥର ଏହା ଆଶ୍ଚର୍ଯ୍ୟଜନକ ଭାବରେ ବର୍ତ୍ତି ରହିପାରୁଛି । ମୋର ପ୍ରାର୍ଥନା, ଏଇ ରେଳପଥ ଦୀର୍ଘଜୀବୀ ହେଉ !

୦୨/୦୭/୮୮

# ପାର୍ବତୀ ମା' ଗୁଣ୍ଡି

ରାଉରକେଲା ସେଦିନକୁ ହାଉଡ଼ା-ବମ୍ବେ ମେନ୍ ଲାଇନ୍ କଡ଼ରେ ଗୋଟିଏ ଅଖ୍ୟାତ, ଅଜ୍ଞାତ ଷ୍ଟେସନ । ଅପ୍-ଡାଉନ୍ ପାସେଞ୍ଜର ଟ୍ରେନ୍‌ସବୁ ଏଠାରେ ଅଟକୁ ଥିଲା, ମାତ୍ର ଗୋଟିଏ ମିନିଟ୍ । ଗାଡ଼ିବେଳ ହୋଇଥିଲେ, ଷ୍ଟେସନର କୌଣସି ଜଣେ ଖଲାସୀ ଲହରିଆ ଘାଘଡ଼ା କଣ୍ଠରେ ଚିତ୍କାର କରୁଥିଲା, "ରାଉରକେଲା...ରାଉରକେଲା !" ପାଣି ପାଣ୍ଡେର ମଧ୍ୟ ଡାକ ଶୁଭେ... ପାଣି ପାଣ୍ଡେ... ପାଣି ପାଣ୍ଡେ ! ମିଞ୍ଜିମିଞ୍ଜି କରୁଥିବା ପ୍ଲାଟଫର୍ମର ଲଣ୍ଠନ ଆଲୋକ ଭିତରେ ଛାୟାମୂର୍ତ୍ତି ପରି ଜଣେ ଦୁଇ ଜଣ ପାସେଞ୍ଜର ଓହ୍ଲାଇ ଆସନ୍ତି । ଚଢ଼ନ୍ତି ମଧ୍ୟ ସେହିପରି ଜଣେ ବା ଦୁଇଜଣ । କମ୍ପାର୍ଟମେଣ୍ଟ ଭିତରୁ ଖପରଲି ଛାଉଣୀ ଷ୍ଟେସନ ଘର ଦେଖାଯାଏ, ନୂଆ ବର୍ଷ ଅଥବା କ୍ରୀସ୍‌ମସ୍ ଗ୍ରିଟିଙ୍ଗ୍‌ସ କାର୍ଡ଼ର ଗୋଟିଏ ଛବିପରି । ମେଲ୍, ଏକ୍ସପ୍ରେସ୍ ଟ୍ରେନ୍‌ସବୁ ପ୍ରଚଣ୍ଡ ଉପେକ୍ଷାରେ ରାଉରକେଲା ଷ୍ଟେସନ୍‌କୁ ଆଡ଼େଇ ଦେଇ ଆଗକୁ ମାଡ଼ି ଯାଉଥିଲେ ଝଡ଼ପରି ! ମେଲ୍ ଏକ୍ସପ୍ରେସ୍ ଏଠାରେ ଅଟକୁ ନଥିଲେ ! ଆଗ ଷ୍ଟେସନ ପାନପୋଷରେ ୱାଟରିଂ ଷ୍ଟେସନ । ମେଲ୍ ଏକ୍ସପ୍ରେସ୍ ଟ୍ରେନ୍‌ସବୁ କେବଳ ସେଇଠାରେ ଅଟକୁ ଥିଲେ । ତା'ପରେ ଝାରସୁଗୁଡ଼ା ।

କୋଏଲ୍ ନଦୀ କୂଳରେ ଘଞ୍ଚ ଶାଳ ଅରଣ୍ୟ ! ତା'ରି ଭିତରେ ସ୍ଥାନେ ସ୍ଥାନେ ମୁଣ୍ଡା ଆଦିବାସୀମାନଙ୍କର ପଲ୍ଲୀ । ଶାନ୍ତ, ସ୍ତବ୍ଧ ବନଭୂମି । ଏଇଠାରେ ଦିନେ ସ୍ଥିର ହେଲା ଗୋଟିଏ ରାଷ୍ଟ୍ରାୟତ୍ତ ଇସ୍ପାତ କାରଖାନା ସ୍ଥାପନ ପାଇଁ ! ପଞ୍ଚମ ଦଶକର ଦ୍ୱିତୀୟାର୍ଦ୍ଧ ! ପ୍ରଥମେ ଏଠାକୁ ପଞ୍ଜାବରୁ ଆସିଲେ, ଦଳ ଦଳ ହୋଇ ପଞ୍ଜାବୀ ଇଞ୍ଜିନିୟର ଓ ଇଲେକ୍‌ଟ୍ରିକ୍ ମିସ୍ତ୍ରୀ ! ଅଧିକାଂଶଙ୍କର କୌଣସି ବିଧିବଦ୍ଧ ସାର୍ଟିଫିକେଟ୍ ନଥିଲା । ପ୍ରାଗୈତିହାସିକ ଯୁଗର ଦାନବମାନଙ୍କ ପରି ଭାରି ଆର୍ଥ ମୁଭିଙ୍ଗ୍ କାଟର ପିଲର ମେସିନ୍ ଓ ବୁଲ୍‌ଡୋଜରମାନେ ଦିନ ସାରା ଜଙ୍ଗଲ ସବୁ ସଫା କରିବା ଆରମ୍ଭ କରିଦେଲେ । ଶାନ୍ତ ବନଭୂମି ସେମାନଙ୍କ ଆଘାତରେ କ୍ରମେ ପଦା ହୋଇଗଲା । ବନସ୍ପତି ସବୁ ଟଳି ପଡ଼ିଲେ । ବୁଲ୍‌ଡୋଜରମାନଙ୍କର ଚାପାତଳେ, ଆଦିବାସୀମାନଙ୍କର ପଲ୍ଲୀଗ୍ରାମ ସବୁ ମାଟିରେ

ମିଶିଗଲା... । ସ୍ୱାଧୀନୋତ୍ତର କାଳରେ ଓଡ଼ିଶାରେ ଆରମ୍ଭ ହୋଇଥିଲା ଶିଳ୍ପାୟନର ପର୍ବ । ସେଦିନର ବନସ୍ପତି ଓ ବନଭୂମି ଯନ୍ତ୍ରଶିଳ୍ପର ଗ୍ରାସରେ ନିଶ୍ଚିହ୍ନ ହୋଇ ପଡୁଥିଲେ । ଆଦିବାସୀମାନଙ୍କ ମଧ୍ୟରେ ଆର୍ତ୍ତନାଦ !

ସେତେବେଳେ ମୁଁ ଦ୍ୱିତୀୟ ଲୋକସଭାର ସଭ୍ୟ । ମୁଁ ଥରେ ରାଉରକେଲା ଆସିଥିଲି ଆଦିବାସୀମାନଙ୍କର ସମସ୍ୟା ଅନୁଧ୍ୟାନ କରି ପାର୍ଲିଆମେଣ୍ଟରେ ତାହା ଆଗତ କରିବାପାଇଁ । ସେତେବେଳେ ରାଉରକେଲାରେ ରହିବାପାଇଁ ସ୍ଥାନ ନଥିଲା । ବଣେଇ ରାଜାଙ୍କର ଗୋଟିଏ ଛୋଟିଆ ବଙ୍ଗଳା ଓଡ଼ିଶା ସରକାର କିଣି, ସେଇଠାରେ ଆରମ୍ଭ କରିଥିଲେ ଡାକବଙ୍ଗଳା । ମାତ୍ର ଦୁଇଟି ଛୋଟଛୋଟ କୋଠରି । ସେଇଠାରେ କୌଣସି ମତେ ମୁଣ୍ଡଗୁଞ୍ଜିବାକୁ ଟିକିଏ ଜାଗା ମିଳିଥିଲା ।

ରାଉରକେଲା, ସେଦିନ ମୋର ମନେ ହୋଇଥିଲା, ଇଏ ଯେପରି ଓଡ଼ିଶା ବାହାରର କୌଣସି ଅପରିଚିତ ସ୍ଥାନ । ଏଠାରେ ଓଡ଼ିଆରେ କଥାବାର୍ତ୍ତା ମୁଁ ଖୁବ୍ କମ୍ ଶୁଣି ପାରିଥିଲି, ସେଦିନ । ଦିନେ ସକାଳେ ପାଦରେ ଚାଲିଚାଲି ବୁଲୁଛି । ଏବେ ଯେଉଁଠାରେ ଆମ୍ବବାଗାନ୍ ରହିଛି, ସେଠାରେ ଦେଖିଥିଲି, ଗୋଟିଏ ମୋଟା ଆମ୍ବଗଛର ଗଣ୍ଡି ଦେହରେ ଆଲକାତରାରେ ବଙ୍କା, ତେଢ଼ା ଅକ୍ଷରରେ ଲେଖା ହୋଇଥିଲା, "ଏଠାରେ ପାର୍ବତୀ ମା' ଗୁଣ୍ଡି ମିଳେ ।" କିନ୍ତୁ ସେଠାରେ ପାର୍ବତୀ ମା' ଗୁଣ୍ଡିର କୌଣସି ସତ୍ତା ସେଦିନ ନଥିଲା । ଏହି ପାର୍ବତୀ ମା' ଗୁଣ୍ଡି କଥା, ଫକୀରମୋହନ ସେନାପତି 'ଉତ୍କଳ ଭ୍ରମଣ'ରେ ସୁଦ୍ଧା ଲେଖିଯାଇଛନ୍ତି । ବିଗତ ଶତାବ୍ଦୀରୁ ଯାଜପୁରର କୌଣସି ପାର୍ବତୀ ମା'ର ହାତ ତିଆରି ଗୁଣ୍ଡି ଏବେ ସୁଦ୍ଧା ପ୍ରସିଦ୍ଧି ରହିଆସିଛି । ଓଡ଼ିଆ ଓ ଗୁଣ୍ଡି ଏମାନେ ବୋଧହୁଏ ପରସ୍ପରଠାରୁ ଅବିଚ୍ଛେଦ୍ୟ । କଟକ ବା ଯାଜପୁର ଆଡ଼ର କେହି ଉଦ୍ୟମୀ ଲୋକଟିଏ ସେହି ପାର୍ବତୀ ଗୁଣ୍ଡିର ପସରା ଧରି ଏଠାକୁ ବେପାର ଭିଆଇବାପାଇଁ ଆସିଥିଲା । ମାତ୍ର ବେପାର ବୋଧହୁଏ ଜମିଲା ନାହିଁ । ଫେରିଗଲା । କିନ୍ତୁ ପଛରେ ଛାଡ଼ିଗଲା, ପାର୍ବତୀ ମା' ଗୁଣ୍ଡିର ଅଭିଲେଖ ।

ସେତେବେଳେ କଟକ ଆଡ଼ର ଜଣେ ଓଡ଼ିଆ ନନାଙ୍କର କାଳୀମାତା ହୋଟେଲରେ ମୋର ଦୁଇ ଓଳି ଖାଇବାର ବ୍ୟବସ୍ଥା ସେଦିନ ସେଠାରେ ହୋଇଥିଲା । ଏ ନନାଙ୍କ ସହିତ କଥାବାର୍ତ୍ତା କରି ବୁଝିଲି ସେ ଓଡ଼ିଶା ସରକାରଙ୍କ ପାଇଲଟ୍ ପ୍ରୋଜେକ୍ଟରେ ଏଠାରେ ଗୋଟିଏ ସ-ମିଲ୍ ବସାଇବାପାଇଁ ଅଗ୍ରୀମ ପୁଞ୍ଜି ଧରି ଆସିଥିଲେ । ମାତ୍ର ଏଠାକୁ ଆସି ଦେଖିଲେ ରାସ୍ତା କଡ଼ରେ ଭିଡ଼ । ମିଲ୍ ଗୋଟିଏ ଟଙ୍କାଟିଏ । ମିଲ୍ ବିକ୍ରି ହେଉଥିଲା ପ୍ରଚୁର । ତୃତୀୟ ଦିନ ମୁଁ ନନାଙ୍କୁ କହିଲି, "ନନା, ଡାଲିରେ ତିନି ଭାଗ ପେଜ ଦେବା କମାଇ ଦୁଇ ଭାଗ କରିଦେଲେ, ଡାଲି ଟିକିଏ ଖାଦ୍ୟ ଉପଯୋଗୀ ହୁଅନ୍ତା । ଆଉ ତୁମ ଲାଭର ଅଙ୍କ ମଧ୍ୟ କମନ୍ତା ନାହିଁ ।" ନନା ମୋ କଥାକୁ ଅବଜ୍ଞାରେ ଉଡ଼ାଇ ଦେଇ

କହିଥିଲେ, "ସେହି ଡାଲି ପାଇଁ ତ ଗରାଖମାନେ ଏଠି ବାଡ଼ାବାଡ଼ି !" ସେଇଦିନୁ ମୁଁ ଜାଣିଥିଲି, ଯେଉଁଦିନ ଏଠାରେ ପ୍ରତିଯୋଗିତା ଆରମ୍ଭ ହୋଇଯିବ, ସେଦିନ ଏଇ ନନା ତାଙ୍କ ପିତଳ ହଣ୍ଡା ଆଉ କରଚୁଲି ଧରି ଏଠାରୁ ବିଦାୟ ନେଇଯିବେ ।

ବର୍ଷ କେତେଟା ପରେ ଦେଖିଲି ମୋର ସେଦିନର ଆଶଙ୍କା ସତ୍ୟ ହୋଇଥିଲା ! କଟକୀ ନନାଙ୍କ କାଳୀମାତା ହୋଟେଲର ଚିହ୍ନବର୍ଣ୍ଣ ସେଠାରେ ଆଉ ନଥିଲା । ସେଠାରେ ଜଣେ ଦାଢ଼ୀବାଲା ପଞ୍ଜାବୀ ଖୋଲିଥିଲା, ଢାବା ପରି ଗୋଟିଏ ରେସ୍ତୁରାଁ । ସାଇନ୍‌ବୋର୍ଡ଼ ଲାଗିଥିଲା, ହୋଟେଲ୍ 'ଗେ-ଲର୍ଡ଼' । ତଡ଼କା ଆଉ ରୋଟି ପାଇଁ ସେଠାରେ ଜମିଯାଇଥିଲା ପ୍ରବଳ ଭିଡ଼ । କଟକୀ ନନା ଚିହ୍ନିଲେ ସହଜ ଲାଭକୁ । କିନ୍ତୁ ଗୁଣାତ୍ମକ ଉତ୍କର୍ଷ ନୁହେଁ । ଫଳରେ ପ୍ରତିଯୋଗିତା ଆରମ୍ଭ ହୋଇଯିବାମାତ୍ରେ ସେ ତଳିତଲ୍ପା ବାନ୍ଧି ସେଠାରୁ ବିଦାୟ ନେଇଗଲେ ।

କିନ୍ତୁ ସେଦିନକୁ ସୁଦ୍ଧା ଆମ୍ବ ଗଛରୁ ପାର୍ବତୀ ମା' ଗୁଣ୍ଡିର ଅଭିଲେଖ ନିଭି ନଥିଲା: ମାତ୍ର ଆମ୍ବ ଗଛ ଛାଇରେ ଜଣେ ପଞ୍ଜାବୀ ଯେଉଁ ବିଡ଼ି ସିଗାରେଟ ଦୋକାନ ଖୋଲିଥିଲା ସେଠାରେ ବିକ୍ରି ହେଉଥିଲା, ପାନ୍‌ବାହାର ବା ସେହିପରି କିଛି ପାନ ମସଲା !

ଆଜି ବି କୋଏଲ୍ ନଦୀ ଧୀରେ ଧୀରେ ବହିଯାଉଛି । ମାତ୍ର ସେଠାରେ ଗଢ଼ି ଉଠିଛି ଏକ ଅଶାନ୍ତ ଇସ୍ପାତ ନଗରୀ । ଆଉ ଚାରିପଟେ ମୁଣ୍ଡ ଟେକିଛି ଗଦା ଗଦା ଆବର୍ଜନା, ଆଉ ପୋଡା କୋଇଲାର ସ୍ତୂପ, ଆଉ ଗଦାଗଦା ଅକାମ୍ୟ ଲୁହାର ପାହାଡ଼ ! କାରଖାନାର ଧୂଆଁରେ ରାଉରକେଲାର ଆକାଶ ଧୂମାୟିତ । ରାଉରକେଲା ଷ୍ଟେସନ୍‌ରୁ ବାହାରକୁ ଆସିବା ମାତ୍ରେ ମୋତେ ଯେପରି ଲାଗେ ଓଡ଼ିଶା ଭିତରେ କୌଣସି ଏକ ଅଣଓଡ଼ିଆ ମୁଲକରେ ଆସି ପହଞ୍ଚିଯାଇଛି । ବହୁ ବର୍ଷ ଧରି ଝଡ଼ ବର୍ଷା ମଧ୍ୟରେ ଆମ୍‌ବାଗାନ୍‌ର ସେ ଆମ୍ବ ଗଛ ଦେହରୁ ପାର୍ବତୀ ମା' ଗୁଣ୍ଡିର ଅଭିଲେଖ ମଧ୍ୟ ଇତି ମଧ୍ୟରେ ଲୋପ ପାଇଯାଇଛି ।

୦୯/୦୭/୮୮

# ନଟବାବୁଙ୍କ ଭାଗବତଟୁଙ୍ଗୀ

ଆଜି ବି "ବଡ଼ଭାଇ, ବଡ଼ଭାଇ" କୁହାଟ ଛାଡ଼ି ନଟବାବୁ ଘର ଭିତରକୁ ପଶି ଆସିଲେ । ମୋ ଘରେ ସେ ଅବାରଣ, ତାଙ୍କପାଇଁ କୌଣସି ବାରଣ ନଥାଏ । ଏକା ସ୍କୁଲ୍‌ରେ ମାଟ୍ରିକ୍ ପଢୁଥିଲୁ; ଯଦ୍ୟପି ସେ ଥିଲେ ମୋଠାରୁ ତିନିବ୍ୟାଚ୍ ତଳେ । ସେଥିପାଇଁ ସେ ମୋତେ ଡାକୁଥିଲେ ବଡ଼ଭାଇ । ଦୀର୍ଘକାଳ ଚାକିରିରେ ରହି ଆଉ ମାସ ଦୁଇଟା ପରେ ସେ ଅବସର ନେବେ । ଏବେ ସମୟ ଅସମୟ ନବୁଝି ସେ ଏମିତି ମୋ ପାଖକୁ ଆସି ମୋତେ ବୋର୍ କରିବାରେ ଲାଗିଛନ୍ତି । ଚାକିରିରୁ ଅବସର ନେବାପରେ ସେ ଆଉ ସହରରେ ରହିବେ ନାହିଁ । ସିଧା ଗାଁକୁ ଯାଇ ସେଠାରେ ଗୋଟିଏ ବଡ଼ କାମରେ ହାତ ଦେବେ । କାମଟି ହେଲା, ଭାଗବତ ଟୁଙ୍ଗୀର ପୁନରୁଦ୍ଧାର । ଗାଁ ଗାଁରେ ଭାଗବତ ଟୁଙ୍ଗୀ ଖୋଲିବ । ଗାଁ ଲୋକେ ସଂଜବେଳେ ଅଧ୍ୟାୟେ ଭାଗବତ ଶୁଣିବେ ।

ଭାଗବତ ଟୁଙ୍ଗୀର ପୁନରୁଦ୍ଧାର ମଧ୍ୟରେ ଅଛି, ତାଙ୍କ ମତରେ କୁଆଡ଼େ, ଆଜି ସମାଜର ସବୁ ଆଧିଭୌତିକ ଓ ଆଧିଦୈବିକ ସମସ୍ୟା ଓ ସଂକଟରୁ ପରିତ୍ରାଣ । ଆଗେ ନିଜ ଗାଁରେ ଯେଉଁ କୋଠ ଭାଗବତ ଟୁଙ୍ଗୀଟି ବହୁବର୍ଷର ଉପେକ୍ଷା, ଅନାଦର ମଧ୍ୟରେ ଉଜୁଡ଼ି ପଡ଼ିଥିଲା, ଗାଁରେ ମଝିଆ ପୁଅ ଉମେଶ ପାଖକୁ ଚିଠି ଲେଖି ଓ ଟଙ୍କା ପଠାଇ ତାକୁ ସେ ଇତିମଧ୍ୟରେ ପୁଣି ଠିଆ କରାଇ ସାରିଲେଣି । ଭାଗବତ ଗାଦି ବର୍ତ୍ତମାନ ରହୁଛନ୍ତି, ତାଙ୍କ ମେଲା ଘରେ । ବ୍ରାହ୍ମଣଟିଏ ଆସି କୁଆଡ଼େ ପ୍ରତ୍ୟହ ସକାଳେ ଟିକିଏ ଚନ୍ଦନଛିଟା ଆଉ ପାଣି ଛିଞ୍ଚିଦେଇ ମୁଠାଏ ଖଇ ଭୋଗ ଲଗାଇ ଚାଲିଯାଉଛି । କିନ୍ତୁ ଏଥିରେ ତ କାମ ଚଳିବ ନାହିଁ । ପୋଥି ବୋଲା ନହେଲେ ଓ ଲୋକେ ତାହାକୁ ନଶୁଣିଲେ ଖାଲି ଗାଦିପୂଜାରୁ କ'ଣ ମିଳିବ ? ସିଏତ ଗୋଟିଏ ଉପଚାର ମାତ୍ର । ଭାଗବତ ଟୁଙ୍ଗୀର ପୁନରୁଦ୍ଧାର କରି, ପ୍ରତିଦିନ ସଂଧ୍ୟାବେଳେ ସେ ଭାଗବତବୋଲାର ବ୍ୟବସ୍ଥା କରିବେ । ପୋଥି ବୋଲାହେବ, ପୁଣି ଇଲେକ୍ଟ୍ରିକ୍ ଆଲୁଅରେ ନୁହେଁ; ରୀତିମତ ପୋଲାଙ୍ଗ ଦୀପ ଜାଳି ଆଗେ ନିଜ ଗାଁ ଭାଗବତ ଟୁଙ୍ଗୀ ସଜାଡ଼ି, ସେ ବାହାରିବେ ଅନ୍ୟଆଡ଼େ । ଏହିପରି

ଭାଗବତ ଟୁଙ୍ଗୀର ପ୍ରସାର କାର୍ଯ୍ୟ ଚାଲିବ । ଇଏ ଥିଲା ନଟବର ବାବୁଙ୍କ ଯୋଜନା । ଏହି ମହତ୍ ଲକ୍ଷ୍ୟରେ ଖବରକାଗଜରେ ଲେଖାଲେଖି ଦ୍ୱାରା ତାଙ୍କୁ ସାହାଯ୍ୟ କରିବାପାଇଁ ସେ ବରାବର ମୋ ପାଖକୁ ଆସି ମୋତେ ବୋର୍ କରୁଥିଲେ । ଏଇ କଥା ମୁଁ ପ୍ରାୟ ଶହେ ଥର ଶୁଣି ସାରିବିଣି । ସେଥିପାଇଁ ସେ ଯେତେବେଳେ ପ୍ରଗଲ୍‌ଭ ପରି ସେଇ କଥା ବକିଯାଆନ୍ତି, ମୁଁ ନିଶ୍ଚୟ, ନିଶ୍ଚୟ ! ଭଲ ପ୍ରସ୍ତାବ ଇତ୍ୟାଦି ଅନ୍ୟମନସ୍କ ଭାବରେ କହି, କେତେବେଳେ ଏ ବୋର୍‌ଡମ୍‌ରୁ ପରିତ୍ରାଣ ମିଳିବ, ସେଇକଥା ମନେମନେ ଚିନ୍ତା କରୁଥିଲି ।

ସେଦିନ ନଟବାବୁ ଆସିଥିଲେ, ସେ କାଲି ଗାଁକୁ ଯାଉଛନ୍ତି ବୋଲି ମୋତେ ଜଣାଇ ଦେବାକୁ । ତା'ହେଲେ କାଲିଠାରୁ ଅନ୍ତତଃ ମୁଁ ନିଶ୍ଚିତ ।

କିନ୍ତୁ ସପ୍ତାହେ ନ ବିତୁଣୁ ନଟବାବୁ ଗାଁରୁ ଫେରି ଭାରି ବିଷଣ୍ଣ ଭାବରେ ମୋ ପାଖକୁ ଦିନେ ପରେ ପୁଣି ଫେରି ଆସିଲେ। "ବ୍ୟାପାର କ'ଣ ?" ମୁଁ ପଚାରିଲି । ସେ କ୍ଳାନ୍ତ, ପରାଜିତ କଣ୍ଠରେ ଉତ୍ତର ଦେଲେ, "କିଛି ହେବ ନାହିଁ ବଡ଼ଭାଇ ? ମୁଁ ଗାଁକୁ ଯିବାବେଳକୁ, ରମେଶ ସେ ଘରେ ଗାଁ ଟୋକାଙ୍କର କ୍ଲବ୍ ଆରମ୍ଭ କରିଦେଇଛି । କହୁଛି, କ୍ଲବ୍ ଘରର ଗୋଟିଏ କୋଣରେ ଗାଦି ରହିବେ । ସେ ଘରେ ଚାଲିଚି, କ୍ୟାରେମ୍, ତାସ୍, ରେଡ଼ିଓରୁ ବିବିଧଭାରତୀ ଆଉ ଗଞ୍ଜେଇ, ନିଶା ସିଗାରେଟ୍ ବିଡ଼ି ଟଣାର ଆଡ଼୍‌ଡ଼ା । ଗାଁ ଟୋକାଏ ଭାଗବତ ଟୁଙ୍ଗୀ କଥା ଶୁଣି ହସୁଛନ୍ତି । କହୁଛନ୍ତି, ଏମ୍.ଏଲ୍.ଏ. ବାବୁଙ୍କୁ ଧରି କ୍ଲବ୍ ପାଇଁ ଗୋଟାଏ ଟି.ଭି. ଆଣିବେ । ବିବିଧଭାରତୀରେ 'ଚମ୍ପକମାଳା' ଆଉ ଟି.ଭି.ରେ ଚିତ୍ରହାର ଓ ସିରିଏଲ୍ ଛାଡ଼ି ଏ ଯୁଗରେ ଆଜି ତମ ଭାଗବତ ଶୁଣିବ କିଏ ? ଆଶ୍ଚର୍ଯ୍ୟ ! ଗାଁର ମୁରବୀ ଶ୍ରେଣୀର ଲୋକମାନେ ସୁଦ୍ଧା ଆଉ ଭାଗବତ ଶୁଣିବାରେ ଆଗ୍ରହୀ ନୁହନ୍ତି । ଗାଦି ପଡ଼ିରହିଛନ୍ତି, ସେଇ ମେଲାଘରେ । ଚନ୍ଦନଛିଟା ତଳେ ସେ ଗାଦିକୁ ବି ଘୁଣ ଆଉ ଉଇ ଚରିଗଲେଣି ।" ଏହା କହିବା ବେଳେ ନଟବାବୁ ଗଭୀର ଶୋକରେ ମୂହ୍ୟମାନ ହୋଇପଡ଼ିଥିବା ପରି ଦେଖାଯାଉଥିଲେ ।

ମୁଁ କହିଲି, "ଗାଁ ଟୋକାଏ ଯାହା କହିଛନ୍ତି, ତାହାହିଁ ହେଉଛି ପ୍ରକୃତ କଥା । ଆଜି ଭାଗବତ ଟୁଙ୍ଗୀର ଯୁଗ ଆଉ ନାହିଁ ।" ନଟବାବୁ ଭାରୀ କରୁଣ କଣ୍ଠରେ ପଚାରିଲେ, "ଆପଣ ବି ସେଇକଥା କହୁଛନ୍ତି ବଡ଼ଭାଇ ?" ମୁଁ ତାଙ୍କୁ ବୁଝାଇଲି, "ଭାଗବତ ଟୁଙ୍ଗୀ, ଆଉ ପୁରାଣ ବୋଲା ଥିଲା ଏକ କୃଷିଭିତ୍ତିକ ସଭ୍ୟତା ଓ ସଂସ୍କୃତିର ଗୋଟିଏ ଅନୁଷ୍ଠାନ ଓ ଉପଚାର । ଆଜି ଦେଶର ଅର୍ଥନୀତି ତଥାପି କୃଷିଭିତ୍ତିକ ରହିପାରିଥାଏ । ମାତ୍ର କୃଷିଭିତ୍ତିକ ଅର୍ଥନୀତି ବିଦାୟ ନହେଉଣୁ, ଏ ଦେଶକୁ ମାଡ଼ିଆସିଲା, ଶିଳ୍ପ ସଭ୍ୟତା ଓ ତାକୁ ଆଶ୍ରୟ କରି ଗଢ଼ିଉଠିଥିବା ଏକ ଅପସଂସ୍କୃତି । ସିଏ ଅଣସଂସ୍କୃତି, ପୁଣି ସଂସ୍କୃତ ବା ମାର୍ଜିତ

ନହେଉଣୁ ଏ ମାଟିକୁ ଆସିଗଲାଣି, ଶିଳ୍ପୋତ୍ତର ଯୁଗର ସଂସ୍କୃତି, ଆଚରଣ ଓ ଉପଚାର; ଯଦ୍ୟପି ଆମ ଦେଶରେ ଶିଳ୍ପାୟନ ସୁଦ୍ଧା ଏ ପର୍ଯ୍ୟନ୍ତ ଚୂଡ଼ାନ୍ତ ସୀମାକୁ ସ୍ପର୍ଶ କରିପାରି ନାହିଁ । ଅର୍ଥନୀତି ଓ ସମାଜ ତଥାପି କୃଷିଭିତ୍ତିକ ଥିବାବେଳେ ପାଶ୍ଚାତ୍ୟରୁ ଆମଦାନୀ ଶିଳ୍ପୋତ୍ତର ଯୁଗର ସଂସ୍କୃତି ଓ ମୂଲ୍ୟବୋଧ ବର୍ତ୍ତମାନ ଆମକୁ ଗ୍ରାସ କରିଗଲାଣି । ଆମେ ସେଦିନର ସଂସ୍କୃତି ଓ ମୂଲ୍ୟବୋଧକୁ ଏଇ ବିଭ୍ରାନ୍ତି ମଧ୍ୟରେ ଉଣ୍ଡାଳି ହେବା ବେଳେ, ଭୁଲିଯାଉଛୁ ଯୁଗ ଓ କାଳର ପୃଷ୍ଠଭୂମି । ଭାଗବତ ଟୁଙ୍ଗୀର ଯୁଗ ଗଲାଣି ।”

ନଟବର ମୋ କଥା ଶୁଣି କୌଣସି ପ୍ରତିବାଦ କଲେ ନାହିଁ । ନିରବରେ ଉଠି ଚାଲିଗଲେ । କପେ ଚା’ ପାଇଁ ସୁଦ୍ଧା ଅପେକ୍ଷା କଲେ ନାହିଁ । ସେ ଉଠି ଚାଲିଯିବା ବେଳେ ତାଙ୍କର ଚନ୍ଦାମୁଣ୍ଡ ଓ କ୍ଲାନ୍ତ ପାଦର ଚାଲିରେ ସ୍ପଷ୍ଟ ଫୁଟି ଉଠୁଥିଲା, ସେ ଯେପରି ପରାଜିତ ହୋଇଯାଇଛନ୍ତି ।

୨୩/୦୭/୮୮

# ମାଷ୍ଟର ଗୁଡ୍‌ଡୁ

ମାଷ୍ଟର ଗୁଡ୍‌ଡୁ (ବୟସ ୧୩, ଉଚ୍ଚତା ୫ଫୁଟ ୭ ଇଞ୍ଚ) ଗୋଟିଏ ପବ୍ଲିକ୍ ସ୍କୁଲ୍‌ରେ ଅଷ୍ଟମ ଶ୍ରେଣୀର ଛାତ୍ର । ସେଇ ସ୍କୁଲ୍‌ରେ ଦେଶର ବିଭିନ୍ନ ଅଞ୍ଚଳରୁ ଅଧିକାଂଶତଃ ହିନ୍ଦୀଭାଷୀ ଓ ଅନ୍ୟ ଅଣଓଡ଼ିଆ ଛାତ୍ରମାନଙ୍କର ଭିଡ଼ । ସେଥିପାଇଁ ସେ ଓଡ଼ିଆରେ ଭାରି ଦୁର୍ବଳ । ତା' ଓଡ଼ିଆର ନମୁନା: "ପେଡ୍ ଡାଳରେ ଚିଡ଼ିଆ ବସିଛି"..., ଜନତା ଶବ୍ଦ ଲଗାଇ ବାକ୍ୟ ଗଠନ କରେ "ରାମ- ଗୋଟିଏ ଜନତା" ଇତ୍ୟାଦି । ସେଥିପାଇଁ ମାଷ୍ଟର ଗୁଡ୍‌ଡୁଙ୍କର ପିତାମାତା ପୁତ୍ରର ଓଡ଼ିଆ ଭାଷା ଓ ସାହିତ୍ୟ ସଂପର୍କରେ ସଂପୂର୍ଣ୍ଣ ଆଶା ହରାଇ ବସିଥିଲେ । ଏହିପରି ଅବସ୍ଥାରେ ଯେଉଁଦିନ ମାଷ୍ଟର ଗୁଡ୍‌ଡୁ ମାସିକିଆ କ୍ଲାସ୍ ପରୀକ୍ଷାରେ ଓଡ଼ିଆରେ ଫୁଲ୍‌ମାର୍କ ୨୫ରୁ ୨୫ ପାଇଲା, ସେଦିନ ତାଙ୍କ ପରିବାରରେ ଯେ ଏକ ଆଲୋଡ଼ନ ସୃଷ୍ଟି ହୋଇଗଲା, ସେଥିରେ ବିସ୍ମିତ ହେବା ଭଳି କିଛି ନଥିଲା । ଗୁଡ୍‌ଡୁଙ୍କର ପିତା ଟିକିଏ ସଂଶୟବାଦୀ । ସେ କହିଲେ, "ଗୁଡ୍‌ଡୁ ତୁମେ ନିଶ୍ଚୟ ହେରାଫେରି କରିଛ । ତା' ନହେଲେ ଓଡ଼ିଆରେ ୨୫ରୁ ୨୫ ରଖନ୍ତ କିପରି ? ମାଷ୍ଟର ଗୁଡ୍‌ଡୁ ନିରୀହ ମେଷ ଶାବକ ପରି କଣ୍ଠରେ ଉତ୍ତର ଦେଲା, "ନାଇଁ ଡ୍ୟାଡ୍; ହେରାଫେରି କରିନାହିଁ । ୧୫ଟା ଓଡ଼ିଆ ୱାର୍ଡ଼ର ଇଂରାଜୀ ଠିକ୍ ସେ ଲେଖିଦେଲି । ୧୫ରୁ ୧୫ ମିଳିଗଲା । ବାକି ଯେଉଁ କେତେଟା କ୍ୱେଶ୍‌ଚିନ୍‌ର ଆନ୍‌ସର ମୁଖସ୍ଥ କରି ଯାଇଥିଲି, ସେଥିରୁ ଦୁଇଟା ପଡ଼ିଥିଲା । ଠପ୍ ହେଇଗଲା ।" ପିତୃଦେବ ବିଶେଷ ଆଶ୍ୱସ୍ତ ହୋଇପାରିଲେ ନାହିଁ । ମାଷ୍ଟର ଗୁଡ୍‌ଡୁଙ୍କଠାରେ କିନ୍ତୁ ଏଇ ଦିନୁ କବିତ୍ୱର ପ୍ରତିଭା ବିକଶି ଉଠିଲାଣି । ତାଙ୍କ ଲାଇନ୍ ଅର୍ଥାତ୍ ପଡ଼ାରେ ହିନ୍ଦୀରେ ସେ ଜଣେ ଶାୟର ରୂପେ ପରିଚିତ । ତାହାର ବନ୍ଧୁମାନଙ୍କ ମଧ୍ୟରେ ମାଷ୍ଟର ଗୁଡ୍‌ଡୁଙ୍କର ଶାୟର ରୂପେ ବେଶ୍ ପ୍ରତିଷ୍ଠା ଅଛି । ଦିନେ ଦିନେ ସେମାନଙ୍କର ମୁସାୟାରା ହୁଏ, ରାସ୍ତାକଡ଼ ହେଉ, ପାର୍କ ହେଉ ଅଥବା କାହା ଘରେ ହେଉ, ଯେକୌଣସି ଗୋଟାଏ ସ୍ଥାନରେ । ଶାୟର ଗୁଡ୍‌ଡୁଙ୍କର ଏପରି ମୁସାୟାରାମାନଙ୍କରେ ବେଶ୍ ଖାତିର୍ । ତାଙ୍କର ଶେର୍ ସବୁ ଏହିପରି-

"ଉସ୍‌କୋ ମେନେ ଦିଲ୍ ଦିଆ
ତୋଫା ସମଝ୍‌କର
ଓ ଉସ୍ ପର
ବଏଠ୍ ଗେୟି
ସୋଫା ସମଝକର୍ ।"

ତା'ପରେ ଅନ୍ୟ ଶାୟରମାନଙ୍କର ୱ୍ୱା...ୱ୍ୱାହା ଚିତ୍କାରରେ ମୁସାୟାରା ଫାଟି ପଡ଼େ । ମାଷ୍ଟର ଗୁଡ୍‌ଡୁ ପୁଣି ଶେର୍ ବୋଲନ୍ତି:

"ମୈନେ ଉସ୍‌କୋ ଦେଖା
ଆଙ୍ଗଲ୍ ବଦଲ୍ ବଦଲ୍‌କର
ଓ ମୁଝେ ପିଟ୍‌ନେ ଲଗୀ
ସାଣ୍ଡଲ ବଦଲ୍ ବଦଲ୍ କର ।"

ଏହାପରେ ଶାୟରମାନେ ସଂକୀର୍ତ୍ତନୀୟାମାନଙ୍କ ପରି ଦୁଇହାତ ଟେକି, କେହି କେହି ବା ଡିସ୍କୋ ନାଚ ଯେପରି ୱ୍ୱା...ୱ୍ୱାହା-କିୟା ବାତ୍ କରନ୍ତି, ସେଥିରେ ଖଣ୍ଡମଣ୍ଡଳଟା ଫାଟିପଡ଼େ । ମାଷ୍ଟର ଗୁଡ୍‌ଡୁ ପରିବାରରେ ଭାରୀ ନିରୀହ । ଶାୟରମାନଙ୍କ ମେଳରେ ମିଷ୍ଟଭାଷୀ ଓ ହାମ୍‌ଦର୍ଦ୍ଦୀ ହେଲେ ହେଁ କ୍ଲାସ୍ ଏପରିକି ସ୍କୁଲ୍‌ରେ ଏକ ଆତଙ୍କ । ସେଥିପାଇଁ ସ୍କୁଲ୍‌ରେ ତାଙ୍କ ଉପର କ୍ଲାସ୍‌ର ଛାତ୍ରମାନେ ସୁଦ୍ଧା ତାଙ୍କୁ ମନେମନେ ଭୟ କରନ୍ତି ଓ ଗୁଡ୍‌ଡୁ ଦାଦା ବୋଲି ଡାକନ୍ତି । ସେ ଜଣେ ଦାଦା, ତାଙ୍କ କ୍ଲାସ୍‌ଟିଚର ସୁଦ୍ଧା ମାଷ୍ଟର ଗୁଡ୍‌ଡୁଙ୍କୁ ମନେମନେ ଭୟ କରନ୍ତି । କ୍ଲାସ୍‌ଟିଚରଙ୍କ ପରିଧାନ ପରିପାଟୀ ବିଚିତ୍ର । ମୁଣ୍ଡରେ ଲମ୍ୱା ବାଳ । ଯେଉଁ ସାର୍ଟ ପିନ୍ଧନ୍ତି, ତା'ର ଅଧେ ସାବ୍‌ଜା ଓ ଅଧେ ଲାଲି । ସେଥିପାଇଁ ମାଷ୍ଟର ଗୁଡ୍‌ଡୁ କ୍ଲାସ୍ ଶିକ୍ଷକଙ୍କ ମୁହଁ ଉପରେ ତାଙ୍କ ବିଚିତ୍ର ରୁଚି ସଂପର୍କରେ ସିଧା କହିଦେବାପାଇଁ କେବେ ଭୟ କରେ ନାହିଁ ଓ ତାଙ୍କୁ ଚିଡ଼େଇବା ପାଇଁ ଡାକେ 'ଜିତେନ୍ଦ୍ର' । ଏଇ ଜିତେନ୍ଦ୍ର କୁଆଡ଼େ ଜଣେ ସିନେମା ଅଭିନେତା ଓ ସେ ଏହି ପ୍ରକାର ପୋଷାକ ପିନ୍ଧନ୍ତି । ମାଷ୍ଟର ଗୁଡ୍‌ଡୁ ନାଁରେ କ୍ଲାସ୍‌ଟିଚର ଦିନେ ହେଡ୍‌ମାଷ୍ଟରଙ୍କ ପାଖରେ ଫେରାଦ ହେଲେ ଯେ ଗୁଡ୍‌ଡୁ ତାଙ୍କୁ ରାସ୍ତାରେ ଦେଖିନବ ବୋଲି ଧମକ ଦେଇଛି । ହେଡ୍‌ମାଷ୍ଟର ସଙ୍ଗେ ସଙ୍ଗେ କ୍ଲାସ୍ ପିଲାମାନଙ୍କୁ ଡକାଇ ଗୁଡ୍‌ଡୁ ଏପରି କଥା ତା'ର କ୍ଲାସ୍‌ଟିଚରଙ୍କୁ କ୍ଲାସ୍‌ରେ କହିଥିଲା କି ନାହିଁ ବୋଲି ପ୍ରତି ପିଲାଙ୍କୁ ଗୋଟିଗୋଟି କରି ପଚାରିଲେ । କିଏ ବା ଗୁଡ୍‌ଡୁ ଦାଦା ବିରୁଦ୍ଧରେ ସାକ୍ଷ୍ୟ ଦେବାକୁ ଭରସିବ । ପୁଣି ସେମାନଙ୍କ ବିପଦ ଆପଦରେ କେହି ଯଦି ପ୍ରକୃତ ବନ୍ଧୁ ଥାଏ, ତା' ହେଲେ ସେ ଗୁଡ୍‌ଡୁ ଦାଦା । ତେଣୁ ସେମାନେ ଏପରି କଥା ଗୁଡ୍‌ଡୁ କହିଥିବା ଶୁଣି ନାହାନ୍ତି ବୋଲି କହିଲେ । କ୍ଲାସ୍‌ଶିକ୍ଷକ ହେଡ୍‌ମାଷ୍ଟରଙ୍କ ଅଫିସ୍‌ରୁ

ବାହାରକୁ ଆସିବା ମାତ୍ରେ ଗୁଡ୍‌ଡୁ କଟାଘା'ରେ ଲୁଣଛିଟା ଦେବାପରି କହିଲା, "ଦେଖ !" ଶିକ୍ଷକ ବିଚାରା କ'ଣ ଆଉ କହିବେ ?

ହେଡ୍‌ମାଷ୍ଟର ଗୁଡ୍‌ଡୁକୁ ପଛରୁ ଡକାଇ ପଠାଇଲେ । ଗୁଡ୍‌ଡୁ କେବେ ଟାଇଟାକୁ ଛାତି ଉପରେ ଝୁଲାଏ ନାହିଁ । ସେ ବେକ ଚାରିପଟେ ଟାଇଟା ଗୁଡ଼ାଇ ଥାଏ ଦାଦାମାନଙ୍କ ପରି । ଇଏ ତା'ର ଦାଦାଗିରି ଆଦୌ ନୁହେଁ । ବେକରେ ବାଧ୍ୟତାମୂଳକ ଭାବରେ ଟାଇ ବାନ୍ଧିବାର ବିରୁଦ୍ଧରେ, ଇଏ ତା'ର ପ୍ରତିବାଦ । ହେଡ୍‌ମାଷ୍ଟର ହିନ୍ଦୀରେ ପଚାରିଲେ, 'ଗଳାରେ ଇଏ ତୁମେ କ'ଣ ପକାଇଛ ଗୁଡ୍‌ଡୁ ?' ଗୁଡ୍‌ଡୁ ନିରୀହ କଣ୍ଠରେ ଉତ୍ତର ଦେଲା ଇଏ "ଜୟମାଳା..." । ହେଡ୍‌ମାଷ୍ଟର ପଚାରିଲେ, "ତୁମ୍‌କୋ କୋନ୍ ଦିଆ ଜୟମାଳା ?" ଗୁଡ୍‌ଡୁ ଅପ୍ରତିଭ କଣ୍ଠରେ ଉତ୍ତର ଦେଲା, "You should know it better" ହେଡ୍‌ମାଷ୍ଟର ରୁକ୍ଷ କଣ୍ଠରେ କହିଲେ, "Get-out" । ଗୁରୁଆଜ୍ଞା ଶିରୋଧାର୍ଯ୍ୟ କରି ମାଷ୍ଟର ଗୁଡ୍‌ଡୁ ଏକାଥରେ ସ୍କୁଲ୍‌ରୁ ଚାଲି ଆସିଲା ।

ତା'ପରେ ମାଷ୍ଟର ଗୁଡ୍‌ଡୁ ପୂରାଦମ୍‌ରେ ଲୁନା ମୋପେଡ୍ ଛୁଟାଇ ଚାଲିଲା ରାସ୍ତାରେ । ପଛରେ ବସିଥିଲେ ତିନିଜଣ ସହପାଠୀ ବନ୍ଧୁ । ପ୍ରତ୍ୟେକ କ'ଣ ଯେପରି ସବୁ ଏକା ସଙ୍ଗରେ କହୁଥିଲେ ଆଉ ହସୁଥିଲେ । ଏମାନେ ଶିକ୍ଷକମାନଙ୍କୁ ବୁଝିପାରୁ ନାହାନ୍ତି, କିମ୍ବା ଶିକ୍ଷକମାନେ ଏମାନଙ୍କୁ ବୁଝିପାରୁ ନାହନ୍ତି... କେଉଁ ଉତ୍ତେଜନା, କେଉଁ ଆଗ୍ରହ ଏମାନଙ୍କୁ କେଉଁ ଅନିର୍ଦ୍ଦିଷ୍ଟ ପଥରେ କେଉଁଆଡ଼େ ଟାଣି ନେଉଛି, କିଏ ଜାଣେ ?

୩୦/୦୭/୮୮

# ବୁବୁନ୍ ଓ ମାଇକ୍ ଟାଇସନ୍

ନିଭୃତ ଷଡ଼ିର ନିର୍ଜନତା ଭାରି ଚିଟା ଲାଗି ଆସୁଥିବା ବେଳେ, ହଠାତ୍ ଷଡ଼ି ଭିତରକୁ ଧାଇଁ ଧାଇଁ ପଶି ଆସିଲା ବୁବୁନ୍ । କୌଣସି ଗୋଟାଏ ବିଶେଷ ସମ୍ବାଦ ମୋତେ ଦେବାପାଇଁ ଥିଲେ, ସେ ଏହିପରି ଆସିଥାଏ । ସେ କିନ୍ତୁ ମୋ[illegible]ଛି କହିଲା ନାହିଁ । କୌଣସି ଜଣେ ଅଦୃଶ୍ୟ ପ୍ରତିପକ୍ଷ ସହିତ ମୁଷ୍ଟିଯୁଦ୍ଧ କରିବା ପରି, ଶୂନ୍ୟରେ ସେ କେତେଟା ଘୁଷି ମାରିଲା । ତା'ପରେ ସେଥିରେ ଆଗ୍ରହ କମିଯିବାରୁ ସେ ଚଟାଣ ଉପରେ ଦଣ୍ଡ କସରତ କରିବା ପରି ଦୁଇ ତିନି ଥର ଦଣ୍ଡମାରି ଶେଷକୁ ମୋ ପାଖକୁ ଆସିଲା । ମୁଁ ପଚାରିଲି, "ଖବର କ'ଣ ବୁବୁନ୍ ? କାହାକୁ ଘୁଷି ମାରୁଥିଲ ?"

ସେ କହିଲା, ସେ ହେବ ମାଇକ୍ ଟାଇସନ୍ । ଏପରି ନାଁ ମୁଁ କେବେ ଶୁଣି ନଥିଲି କିମ୍ବା ଜାଣି ନଥିଲି । ପଚାରିଲି, "ଏ ମହାପୁରୁଷ କିଏ ?" କ୍ରିକେଟ୍ ଖେଳାଳୀ ନା ଫିଲ୍ମ ଷ୍ଟାର୍ ?" ବୁବୁନ୍ କୃପାପୂର୍ଣ୍ଣ ଦୃଷ୍ଟିରେ ମୋ ଆଡ଼େ ଚାହିଁଲା । ମୁଁ ଏଡ଼େ ବଡ଼ ମଣିଷଟାଏ ହୋଇ ମାଇକ୍ ଟାଇସନ୍ କିଏ ଜାଣିନାହିଁ । ସେ କହିଲା, "ମାଇକ୍ ଟାଇସନ୍ ଦୁନିଆର ସବୁଠାରୁ ରିଚ୍ ମ୍ୟାନ୍ । କୁସ୍ତିକରି ସେ ପ୍ରତି ସେକେଣ୍ଡକୁ ଉଣେଇଶ ଲକ୍ଷ ଡଲାର ପାଏ । ତା' ଖେଳ ଦୁଇମିନିଟ୍ । ସେଇ ଦୁଇମିନିଟ୍‌ରେ ସେ ରୋଜଗାର କରେ ଦୁଇ କୋଟି ଟଙ୍କା । ଅନେକ ଟଙ୍କା ନୁହେଁ ?"

ମୁଁ ପଚାରିଲି, "ତୁମେ ପରା ସୁନୀଲ୍ ଗାଭାସ୍କର, ଭେଙ୍ଗ୍‌ସରକାର ହେଉଥିଲ ?" ଗତବର୍ଷ ଶୀତଋତୁରେ ମୁଁ ତା'ଠାରୁ ଶୁଣିଥିଲି, ସେ ହେବାକୁ ଚାହେଁ ସୁନୀଲ୍ ଗାଭାସ୍କର ପରି କ୍ରିକେଟିୟର । କିନ୍ତୁ ଗାଭାସ୍କର ଆଉ କ୍ୟାପ୍‌ଟେନ୍ ନହେବାରୁ ନୂଆ କ୍ୟାପ୍‌ଟେନ୍ ଭେଙ୍ଗ୍‌ସରକାର ହେବାପାଇଁ ତା'ର ବଳିଥିଲା ଆଗ୍ରହ ।

ତା'ପରେ ଦିନେ ଆସି ସେ ମୋତେ କହିଲା, ସେ ହେବ ଫିଲ୍ମଷ୍ଟାର୍ ମିଥୁନ୍ । ଆଜି କିନ୍ତୁ ସେ ଆଉ କ୍ରିକେଟ୍ ଖେଳାଳି ବା ଫିଲ୍ମ ଷ୍ଟାର ହେବାକୁ ଚାହେଁ ନାହିଁ, ସେ ହେବ ମାଇକ୍ ଟାଇସନ୍ ।

ହଠାତ୍ ସେ କାହିଁକି କେଜାଣି ହସିଉଠିଲା । ତା' ପରେ କହିଲା, "ଜାଣିଚ, ମାଇକ୍ ଟାଇସନ୍ ଦିନେ ତା'ର ସ୍ତ୍ରୀକୁ ଆସ୍ତେ କରି ଗୋଟାଏ ଘୁଷି ମାରିଲା ଯେ, ସେ ତଳେ ପଡ଼ି ବେହୋସ ହୋଇଗଲା ।" ଟାଇସନ୍‌ର ଏପରି ବୀରତ୍ୱ ଥିଲା ବୋଧହୁଏ ତା'ର ହସର କାରଣ ।

ମୁଁ ପଚାରିଲି, "ମାଇକ୍ ଟାଇସନ୍ ତା' ସ୍ତ୍ରୀକୁ ପିଟେ ନା କ'ଣ ? ସେ ତା' ସ୍ତ୍ରୀକୁ ଘୁଷି ମାରିଲା କାହିଁକି ? ଇଏତ ଠିକ୍ କଥା ନୁହେଁ ।" ସେ ଦୁଇ ଆଖି ବଡ଼ ବଡ଼ କରି ଉତ୍ତର ଦେଲା, "ଟାଇସନ୍ ସ୍ତ୍ରୀର ପିଲାଜନ୍ମ ହେବାର ଥିଲା । ଟାଇସନ୍ କହିଲା, ତୁ ପିଲାଜନ୍ମ କରିପାରିବୁ ନାହିଁ । ଟାଇସନ୍‌ର ସ୍ତ୍ରୀ କହିଲା, ସେ ଅଲବତ୍ ପିଲା ଜନ୍ମ ଦେବ । ସେଇଠୁ ଟାଇସନ୍ ରାଗରେ ତାକୁ ଆସ୍ତେକରି ମାରିଲା ଗୋଟାଏ ଘୁଷି । ସେଇଥିରେ ସେ ବୋହାସ ।" ବୁବୁନ୍ ପୁଣି ଖିଲିଖିଲି ହସି ଉଠିଲା; ଯେପରି ଟାଇସନ୍ ତା' ସ୍ତ୍ରୀକୁ ଘୁଷିମାରିବା କଥାଟା ତାକୁ ଭାରି ମଜା ଲାଗୁଥିଲା । ମୁଁ ପଚାରିଲି, "ତୁମେ ଗାଭାସ୍କର ନହୋଇ, ମିଥୁନ୍ ନହୋଇ ମାଇକ୍ ଟାଇସନ୍ ପରି ସ୍ତ୍ରୀକୁ ଘୁଷି ମାରୁଥିବା ଗୋଟାଏ ପହିଲମାନ ହେବ କାହିଁକି ? ସେ କହିଲା, ମାଇକ୍ ଟାଇସନ୍‌ର ଅନେକ ଟଙ୍କା ।"

ମୁଁ ପଚାରିଲି, "ତୁମେ ମାଇକ୍ ଟାଇସନ୍ କଥା ଜାଣିଲ କିପରି, କେଉଁଠୁ ? ସେ ଉତ୍ତର ଦେଲା ଟି.ଭି.ରେ ମାଇକ୍ ଟାଇସନ୍‌କୁ ଦେଖିଲି । ଟି.ଭି.ରେ ତା' କଥା କହୁଥିଲା ।" ଟି.ଭି. ବୁବୁନ୍ ପରି ଶିଶୁମାନଙ୍କର ମନରେ ଆଣିପାରିଲା ନାହିଁ, ଜଣେ ବଡ଼ ଲେଖକ, ଶିଳ୍ପୀ, ସଂଗୀତଜ୍ଞ ଅଥବା ଜନନେତା ହେବାର ଅଭିଳାଷ ଓ ଆକାଂକ୍ଷା । କ୍ରିକେଟ୍ ଖେଳାଳି ଫିଲ୍ମଷ୍ଟାର୍ ଅଥବା ଟାଇସନ୍ ପରି ମୁଷ୍ଟି ଯୋଦ୍ଧା ହେବା ନିଶ୍ଚୟ ଭଲ । କିନ୍ତୁ ଜାତି ନିର୍ମାଣ ଓ ଦେଶର ଅଭ୍ୟୁତ୍ଥାନ ଏମାନଙ୍କଦ୍ୱାରା ତ ସମ୍ଭବ ନୁହେଁ । ଅଥଚ ଟି.ଭି. ଆଜି ବୁବୁନ୍ ପରି ଶିଶୁମାନଙ୍କ ମନରେ ଏହିସବୁ ଜଡ଼ବାଦୀ ଭୌତିକ ଧାରଣା, ଅଭିଳାଷ ଓ ଆକାଂକ୍ଷା ଏହିଦିନୁ ସୃଷ୍ଟି କରିବାରେ ଲାଗିଛି । ଏମାନେ ବଡ଼ ହେଲେ ଦେଶର ସାଂସ୍କୃତିକ ଐତିହ୍ୟଠାରୁ ବିଚ୍ଛିନ୍ନ ହୋଇ ଯେ ଛିନ୍ନମୂଳ ହୋଇ ପଡ଼ିବେ, ସେଥିରେ କ'ଣ ସନ୍ଦେହ ଅଛି ? ବୁବୁନ୍ ମୋତେ କେବେହେଲେ ଏମାନଙ୍କ କଥା କହିନାହିଁ । ଥରେ ଏଇକଥା ମୁଁ ବୁବୁନ୍‌କୁ ପଚାରିଥିଲି । ସେ ଉତ୍ତର ଦେଇଥିଲା, "ଏମାନେ ସବୁ ଭାରି ଡଲ୍ । ସେ ସେପରି କିଛି ହେବାକୁ ଚାହେଁ ନାହିଁ ।" ମୁଁ ପଚାରିଲି, "ଆଚ୍ଛା ତୁମେ ଟି.ଭି.ରେ ପ୍ରାଇମ୍‌ମିନିଷ୍ଟରଙ୍କୁ ଏତେ ଦେଖୁଛ, ତୁମେ ପ୍ରାଇମ୍‌ମିନିଷ୍ଟର ହେବ ନାହିଁ... ?" ବୁବୁନ୍ କ'ଣ ଭାବିଲା, ତା' ପରେ ଉତ୍ତର ଦେଲା, "ପ୍ରାଇମ୍‌ମିନିଷ୍ଟର ହେବା ଅନ୍ ଇଣ୍ଟରେଷ୍ଟିଙ୍ଗ୍ ।"

ତା'ପରେ ସେ ପୁଣି ଦଉଡ଼ି ଦଉଡ଼ି ମୋ ଷଡ଼ି ଭିତରୁ ବାହାରକୁ ପଳାଇଗଲା ।

୦୬/୦୮/୮୮

# ବିଡ଼ାନାସୀର ଖୁଆପେଡ଼ାବାଲା

ଅପରାହ୍ଣର ଆକାଶ ସେତେବେଳକୁ କେଉଁଦିନ ନାଲିଚା ଅଥବା ଅନ୍ୟ କେଉଁଦିନ ମହଳ ପଡ଼ି ଆସିଥାଏ । ମୋର ଘର ସାମନା ରାସ୍ତାରେ ଗୋଟିଏ ଖୁଆପେଡ଼ା ବିକାଳିର ଡାକ ଶୁଭେ... 'ସରିଗଲା ଖୁଆପେଡ଼ା' । ଘଣ୍ଟାକଣ୍ଟା ପରି ଗ୍ରୀଷ୍ମ, ବର୍ଷା, ଶୀତ ପ୍ରାୟ ସବୁଦିନ, ଏହା ନିୟମିତ । ବିଡ଼ାନାସୀ ଆଡୁ ସେ ପ୍ରତିଦିନ ଗୋଟାଏ ବାଉଙ୍ଗାରେ ଆଲୁମିନିୟମ୍ ଡେକିଚିଟାଏ ଝୁଲାଇ ଖୁଆପେଡ଼ା ଧରି ଡାକି ଡାକି ଆସେ... 'ସରିଗଲା ଖୁଆପେଡ଼ା' ।

ଲୋକଟିର ବୟସ ନିଶ୍ଚୟ ଷାଠିଏ ଡେଇଁଥିବ । ମୁଣ୍ଡବାଳ ଚନ୍ଦା ପଡ଼ି ପାଚି ଯାଇଛି । ଚେହେରା କିନ୍ତୁ ହୃଷ୍ଟପୁଷ୍ଟ । ଆଣ୍ଠୁ ପର୍ଯ୍ୟନ୍ତ କୁଞ୍ଚ ଭାଙ୍ଗି ସେ ପିନ୍ଧିଥାଏ ଖଣ୍ଡେ ଅଧା ମଇଳା ଧୋତି ଆଉ କାନ୍ଧ ଉପରେ ଖଣ୍ଡେ ପାଚିଲା ଗାମୁଛା । ଇଏ ତା'ର ନୈମିତ୍ତିକ ପରିଧାନ । ଶୀତଦିନେ କେବଳ ଦେହରେ ସେ ପିନ୍ଧିଥାଏ ଖଣ୍ଡେ ଗେଞ୍ଜି, ଆମ ପଡ଼ାରେ ତା'ଠାରୁ କେହି ଖୁଆପେଡ଼ା, ଦହିବରା, ଅଥବା ଘୁଗୁନି ଆଉ ଆଳୁଦମ୍ କିଣିବା ମୁଁ ଦେଖିନାହିଁ । ତଥାପି ସେ ଏଇବାଟେ କାହିଁକି ଯେ ତାହାର ପଣ୍ୟସମ୍ଭାର ଧରି 'ସରିଗଲା ଖୁଆପେଡ଼ା' 'ସରିଗଲା ଖୁଆପେଡ଼ା' ଡାକି ଡାକି ଯାଏ ତାହାର ରହସ୍ୟ ମୁଁ ତଥାପି ବୁଝିପାରିଲି ନାହିଁ । ଇଏ ବୋଧହୁଏ ତାହାର ଗୋଟିଏ ଅଭ୍ୟାସରେ ପଡ଼ିଯାଇଛି ।

ଏଇପରି ପୁରୁଣା ପ୍ରାଦେଶିକ ସହରମାନଙ୍କରେ ବୁଲାବିକାଳି ହକ୍‌ରମାନଙ୍କର ଡାକରେ ଗୋଟିଏ ସ୍ୱକୀୟ ବୈଶିଷ୍ଟ୍ୟ ରହିଥାଏ । ପ୍ରତ୍ୟେକର ଡାକ ପୁଣି ଅନ୍ୟର ଡାକଠାରୁ ନିଆରା । ଏଇ ପେଡ଼ାବାଲା ଜଣକର ଡାକରେ ଥାଏ ଏପରି ବିଷାଦ, ଯାହା ଶୁଣିଲେ, ମନେହୁଏ, ପେଡ଼ାବାଲା ଜଣକ ସୃଷ୍ଟିର ଶେଷ ଗୋଧୂଳିରେ ଉଦାସ କଣ୍ଠରେ ଯେପରି ଘୋଷଣା କରିକରି ଚାଲିଛି... 'ସରିଗଲା ଖୁଆପେଡ଼ା' । ପ୍ରକୃତରେ ଖୁଆପେଡ଼ାର ଦିନ ସରିଯାଇଛି । ଆଜିକୁ ପଚାଶ ବର୍ଷ ପୂର୍ବେ ସେଇ ବିଡ଼ାନାସୀ ଖୁଆପେଡ଼ାର ଯେଉଁ ସ୍ୱାଦ ଓ ସୁଗନ୍ଧି ଥିଲା, ଆଜି ଆଉ ତାହା ନାହିଁ । ଖୁଆପେଡ଼ା କହିଲେ ଆଜି ଖୁଆମିଶା ମଇଦାର

ଗୋଟାଏ ଦ୍ୱିସ୍ୱାଦ ପିଣ୍ଡୁଳା । ତଥାପି ସେହି ଖୁଆପେଡ଼ା ବାଲାଟି ସେହିପରି ପେଡ଼ାର ସମ୍ଭାର ଧରି ନିର୍ଲିପ୍ତ ଭାବରେ ଡାକି ଡାକି ଚାଲିଯାଏ- 'ସରିଗଲା ଖୁଆପେଡ଼ା' ।

ଏଇ ଖୁଆପେଡ଼ାବାଲାଟିର ଡାକ ଶୁଣିଲେ ମୋ ସ୍ମୃତିରେ ଭାସିଉଠେ ୫୦ ବର୍ଷ ତଳର କଟକ ସହର । ସେଦିନ ଗଉଡ଼ ଗୋବିନ୍ଦ, ଭୂତିଆରୀ, ବିଲାତି ସିଙ୍କୁ ଆଉ ବାଉଁଶ ବଣରେ କଟକ ସହର ଥିଲା, ବୋଧହୁଏ ଏସିଆ ମହାଦେଶର ବୃହତ୍ତମ ଗ୍ରାମ । ଗଳିରାସ୍ତାମାନଙ୍କର ବିଲାତି ସବୁ ବାଡ଼ କଡ଼ରେ, ମ୍ୟୁନିସିପାଲିଟିର କାଠ ଖମ୍ବମାନଙ୍କରେ ସଞ୍ଜ ପରେ ପରେ କିରୋସିନି ଲ୍ୟାମ୍ପ୍ ସବୁ ଲିଭିଯିବା ପୂର୍ବରୁ ହିକା ମାରୁଥିଲା । କିରାସିନି ଲଣ୍ଠନର ଲମ୍ବା ଲମ୍ବା ଛାଇ, ସବୁ ଗଳିରାସ୍ତାମାନଙ୍କୁ ଆଲୋକିତ କରିବା ପରିବର୍ତ୍ତେ ଆଉରି ଅନ୍ଧକାର କରିଦେଉଥିଲା । ପ୍ରତିଦିନ ସନ୍ଧ୍ୟା ପୂର୍ବରୁ ବିଡ଼ାନାସୀ ଆଡୁ ଗୋଟିଏ ଖୁଆପେଡ଼ା ଆଉ ନଡ଼ିଆକୋରା ବୁଲାବିକାଳୀ ଆମ ମେସ୍ ସାମ୍ନା ଗଳି ରାସ୍ତାବାଟେ ବଜାର ଆଡ଼େ ପ୍ରତ୍ୟହ ଡାକିଡାକି ଯାଉଥିଲା । ସେ କିନ୍ତୁ ଖୁଆପେଡ଼ା ବା ନଡ଼ିଆକୋରା ଡାକୁ ନଥିଲା । ଘାଘଡ଼ା କଣ୍ଠରେ ରାଗିଣୀ ମେଲି ସେ ଗୋଟିଏ ରହସ୍ୟମୟ ପଦ ବୋଲୁଥିଲା ।

"ନବଦ୍ୱାରେ ଜଗିଛନ୍ତି ସିପାହୀ
ଚୋର ସିନ୍ଧିକାଟି ଗନ୍ତାଘରୁ ତୋର
ସବୁ ନେଲାଣି ବୋହି, ବାଇଆ ମନରେ ।"

ଏ ପଦର ଅର୍ଥ ମୁଁ ବୁଝିପାରେ ନାହିଁ । ତାହା ବୁଝିବା ଉଦ୍ଦେଶ୍ୟରେ ମୁଁ ଦିନେ ଆମ ମେସ୍ ଆଗରେ ପେଡ଼ା କୋରା କିଣିବାପାଇଁ ତାକୁ ଡାକିଲି । ଲୋକଟିର ବୟସ ଅନୁମାନ କରିବା କଠିନ ଥିଲା । କିନ୍ତୁ ସେ କହୁଥିଲା, ତା'ର ବୟସ ଚାରିକୋଡ଼ି । ଲୋକଟି ବାଙ୍ଗରା । ସବୁଦିନେ ପିନ୍ଧିଥାଏ ଆଣ୍ଠୁ ତଳକୁ ଖଣ୍ଡେ ଗେରୁଆ ଧୋତି ଆଉ ତା' ଉପରେ ଗେରୁ ରଙ୍ଗର ଗୋଟିଏ ଆଲ୍‌ଖାଲା । ସିଏ ବୋଧହୁଏ କିଛି ଗୋଟାଏ ଦୀକ୍ଷା ନେଇଥିଲା । ବାଁ କାନରେ ମେଞ୍ଚାଏ ଅତର ଭିଜା ତୁଳା ସେ ସବୁଦିନେ ଖୋସିଥାଏ । ଶସ୍ତା ଅତରର ଫୁଲୁରୀ ମହକରେ ସ୍ଥାନଟା ମହକି ଉଠେ । ତାକୁ ଦିନେ ପଚାରିଲି, ତା'ର ଏଇ ବିଚିତ୍ର ଗୀତର ଅର୍ଥ । ସିଏ କିଛି ସମୟ ଚୁପ୍ ରହି ଉତ୍ତର ଦେଇଥିଲା, "ଖୁଆ ଖାଅ । ସେ ଗୀତରୁ କ'ଣ ପାଇବ ?" ସେ କହିଲା, "ଇଏ କେଶରୀ ପେଡ଼ା । ଖାଇଲେ ଆତ୍ମାପୁରୁଷ ଶାନ୍ତି ହୋଇଯିବ ।" ପ୍ରକୃତରେ ତା'ର ପେଡ଼ା ଥିଲା ଭାରି ସୁସ୍ୱାଦୁ । ଖାଉ ଖାଉ ତା'ର ଡେକ୍‌ଚୀରେ ଥିବା ଅବଶିଷ୍ଟ ପେଡ଼ା କୋରା ସବୁ ସଫା ହୋଇଗଲା । ବୁଢ଼ା ସେହିପରି ନିର୍ଲିପ୍ତ ଭାବରେ ବସି କୋରା ଖାଇବା ଦେଖୁଥାଏ ଆଉ ଗୁଣୁଗୁଣୁ ହୋଇ ସେହି ରହସ୍ୟମୟ ପଦ ବୋଲୁଥାଏ... "ନବଦ୍ୱାରେ ଜଗିଛନ୍ତି ସିପାହୀ..." । ତା'ର ଡେକଚି ସଫା ହୋଇଯିବା

ପରେ, ମନରେ ଛନକା ପଶିଲା, ଡେକିଚିଟି ସଫା କରିଦେଲି, ବର୍ତ୍ତମାନ ଦାମ୍ କେତେ ଦେବାକୁ ପଡ଼ିବ କେଜାଣି ? ଶଙ୍କିତ କଣ୍ଠରେ ପଚାରିଲି, କେତେଦାମ୍ ହେଲା ? ସେ ଉତ୍ତର ଦେଲା, "ଏଇ ପାଞ୍ଚ ଟଙ୍କା ଖଣ୍ଡେ ହେଇଥିବ ।" ଇଏତ ଅନେକ ଗୁଡ଼ାଏ ଟଙ୍କା । ଏତେ ଟଙ୍କା ସେତେବେଳେ ମୋ ପାଖରେ ନଥିଲା । ମୁଁ କହିଲି, ଆଜି ତ ମୋ ପାଖରେ ଏତେ ଟଙ୍କା ନାହିଁ । ଦୁଇଟା ଟଙ୍କା ନିଅ । ବାକି ଟଙ୍କା କାଲି ଦେବି । ତୁମ ପେଡ଼ା କୋରା ଭାରି ଭଲ ହେଇଛି । ବୁଢ଼ା ନିର୍ଲିପ୍ତ କଣ୍ଠରେ କହିଲା, "ତୁମ ଆତ୍ମାପୁରୁଷ ଶାନ୍ତି ହେଲା ତ ! ଟଙ୍କା ଆଜି ନଦେଲେ କାଲି ଦେବ । କ'ଣ ହେଇଗଲା ?" ତା'ପରେ ବୁଢ଼ା ସେଠାରୁ ଉଠି ବାଉଙ୍ଗୀଟା କାନ୍ଧରେ ଝୁଲାଇ ସେହି ରହସ୍ୟ ଗୀତ ପଦକ ଗାଇ ଗାଇ ଅନ୍ଧାର ଭିତରେ ହଜିଗଲା ।

୧୩/୦୮/୮୮

# ଦୁଇବସ୍ତା ଚୁଡ଼ା

ଆକାଶରେ ଛିଣ୍ଡା ଛିଣ୍ଡା ବଉଦ ଗହଳି ଭିତରେ, ଜହ୍ନ ରୁଗ୍‌ଣ, ବିଷଣ୍ଣ ଦେଖାଯାଉଥିଲା । ମେଘୁଆ ଜହ୍ନ ଆଲୁଅ ଭିତରେ ଅଂଶୁଆ ନଦୀ ଦିଶୁଥିଲା, ଯେପରି ନିରୀହ ଶିଶୁଟିଏ ନିଘୋଡ଼ ନିଦରେ ଶୋଇ ପଡ଼ିଛି । ପ୍ରଳୟଙ୍କରୀ ଘୂର୍ଣ୍ଣିବାତ୍ୟା ପରେ ଇଲେକ୍‌ଟ୍ରିକ୍ ଖୁଣ୍ଟ ସବୁ ଉପୁଡ଼ି ପଡ଼ିଥିବାରୁ ବିଦ୍ୟୁତ୍ ସଂଯୋଗ କଟି ଯାଇଥିଲା । ନଦୀ ସେପାଖ ଅନ୍ଧାର । ଗଛ ପତ୍ରସବୁ ସ୍ୟାହିରେ ଲେସି ହେବା ପରି ଦେଖାଯାଉଥିଲା । ନିରୁଦ୍‌ବିଗ୍ନ ଶାନ୍ତିର ଯେପରି ଖଣ୍ଡେ ପଟ୍ଟଚିତ୍ର । କିନ୍ତୁ ଏହାର ନେପଥ୍ୟରେ ଏତେ କ୍ଷୁଧା ଓ ଏତେ କ୍ରୋଧ ଉଚ୍ଛୁଳି ପଡୁଥିଲା, ମୁଁ ସେତେବେଳେ ତାହାର କ୍ଷୀଣତମ ଆଭାସ ସୁଦ୍ଧା ପାଇ ପାରିନଥିଲି ।

୧୯୭୧ ମସିହାରେ ପ୍ରଳୟଙ୍କରୀ ବାତ୍ୟାର ପାଞ୍ଚ ଦିନ ପରେ ମୁଁ ମୋର ନିର୍ବାଚନମଣ୍ଡଳୀର ଗୋଟିଏ ଦୁର୍ଗମ ବ୍ଲକ୍ ଅଞ୍ଚଳକୁ ସେଦିନ ସଂଧ୍ୟାରେ ଆସିଥିଲି, ସେ ପର୍ଯ୍ୟନ୍ତ ସେଠାରେ କୌଣସି ରିଲିଫ୍ ସାହାଯ୍ୟ ପହଞ୍ଚି ନଥିବା ଖବରପାଇ । ଅଂଶୁଆଘାଟରେ ନାଉରିର ଦେଖା ନଥିଲା । ଜୀପ୍ ଡ୍ରାଇଭର ଅନେକ ଥର ଡକାଡକି କରିବା ପରେ, ନାଉରି ସେ ପାଖ ଘାଟରୁ ଡଙ୍ଗା ଫିଟାଇ ଆଣିଲା । ଡ୍ରାଇଭର ବିରକ୍ତ କଣ୍ଠରେ କହିଲା, "ଡାକି ଡାକି ତଣ୍ଟି ଶୁଖିଗଲାଣି ।" ନାଉରି କହିଲା, "ବ୍ଲକ୍ ଅଫିସ୍ ଆଗରେ ଆଜି ସବୁ ଲୋକ ଜମିଛନ୍ତି । ବାବୁ ତ ଆସିଲେଣି, ଦେଖାଯାଉ କ'ଣ ହେଉଛି" । ଘଟଣାଟା କ'ଣ ମୁଁ ତାକୁ ପଚାରିଲି ନାହିଁ । କିମ୍ବା ସେ ମଧ୍ୟ ଆଉ ବେଶୀ କିଛି ଫିଟାଇ କହିଲା ନାହିଁ । ମୁଁ ସେପାଖ ନଦୀଘାଟରେ ଓହ୍ଲାଇବା ମାତ୍ରେ କେତେଜଣ ମୁଖିଆ ଲୋକ ମୁଁ ଆସିଥିବା ଖବର କିପରି ପାଇଯାଇଥିଲେ କେଜାଣି, ମୋତେ କହିଲେ, "ଆପଣ ଆସି ପହଞ୍ଚିଗଲେ ଭଲ ହେଲା । ଲୋକେ ଯେପରି ଭୋକରେ ଆଉଟୁ ପାଉଟୁ ହୋଇ ବି.ଡି.ଓ.କୁ ସେଇ ଚାରିଟା ବେଳୁ ଘେରାଉ କରି ରଖିଛନ୍ତି, କେତେବେଳେ କ'ଣ ଯେ ଘଟିଯିବ ତାହାର ଠିକଣା ନାହିଁ ।" ଏମାନଙ୍କ ଭିତରେ ଥିଲେ ସ୍ଥାନୀୟ ଟୋଲ ପଣ୍ଡିତ । ସେ

ଟିପ୍ପଣୀ କଲେ, "ବୁଭୁକ୍ଷିତଂ କି ନକରୋତି ପାପମ୍ ।" ସେମାନଙ୍କ ଅସଂଲଗ୍ନ କଥାବାର୍ତ୍ତାରୁ ମୁଁ ଯାହା ବୁଝିଲି, ଦୀର୍ଘ ପାଞ୍ଚଦିନ ପରେ ଆଜି ଖରାବେଳେ ଜୀପ୍ ଗାଡ଼ିରେ ଛଅବସ୍ତା ଚୁଡ଼ା ଏଇ ପଞ୍ଚାୟତ ପାଇଁ ଆସି ପହଞ୍ଚିଥିଲା । ମାତ୍ର ବି.ଡି.ଓ. ଚାରିବସ୍ତା ଦେଉଛନ୍ତି । ବାକି ଦୁଇବସ୍ତା ଚୁଡ଼ା ଗଲା କୁଆଡ଼େ ? ବି.ଡି.ଓ. ତା'ର ଠିକଣା ଜବାବ ଦେଇପାରୁନାହାନ୍ତି । ଲୋକେ କହୁଛନ୍ତି, ସେ ଚୁଡ଼ା ଦୁଇବସ୍ତାକୁ ବି.ଡି.ଓ. ବିକ୍ରି କରିଦେଲା, ନୋହିଲେ ତାଙ୍କ ଆହାର ଛଡ଼ାଇ ଆଉ କାହାକୁ ଦେଇଦେଲା । ସେଥିପାଇଁ ପଞ୍ଚାୟତ ଲୋକେ ବି.ଡି.ଓ.କୁ ଘେରାଉ କରିବସିଛନ୍ତି । ଭୋକରେ ସେମାନଙ୍କର ମେଜାଜ୍ ଯୋଉ ଅବସ୍ଥାରେ ଅଛି, କେତେବେଳେ ଯେ କ'ଣ ଘଟିଯିବ, ତା'ର ଠିକଣା ନାହିଁ ।

ଛୋଟିଆ ବଜାର ମଝିରେ ଗୋଟିଏ ଦସ୍ତା ଛାଉଣୀ ଘର । ବି.ଡି.ଓ. ଅଫିସ୍ ଓ ସେହି ଅଫିସ୍ ଭିତରେ ବି.ଡି.ଓ.ଙ୍କ ରହିବା କ୍ୱାର୍ଟର । ମୁଁ ସେଠାକୁ ଆସି ଦେଖେ, ଅଫିସ୍ ଆଗରେ ସାତଶହ କି ଆଠଶହ ଲୋକ, ଅଫିସ୍ ଘେରାଉ କରି ବସିଥିଲେ । ବରଣ୍ଡା ଉପରେ ଗୋଟିଏ ପେଟ୍ରୋମାକ୍ସ ଆଲୁଅ ଜଳୁଥିଲା । ସେଇ ଆଲୁଅରେ ଏଇ କ୍ଷୁଧିତମାନଙ୍କର ନିଷ୍ପନ୍ଦ, ଶୀତଳ ଆଖି ଓ ପ୍ଲାଷ୍ଟିକ୍‌ର ମୁହଁ ପରି ମୁହଁ ସବୁ ଦେଖି, ମୁଁ ପ୍ରକୃତରେ ଚମକି ଉଠିଲି । ସେଇ ଆଖିମାନଙ୍କରେ ଉଷ୍ମାନାହିଁ, ଉଷ୍ମତା ନାହିଁ, କିନ୍ତୁ ଅଛି ଶୀତଳ ଶପଥ । ବହୁ ପ୍ରାକୃତିକ ଦୁର୍ବିପାକ ଓ ମନ୍ୱନ୍ତରରେ ମୁଁ କ୍ଷୁଧିତମାନଙ୍କ ଆଖି ଓ ଚେହେରା ଅନେକ ଦେଖିଛି । ସେ ଚେହେରାରେ ଥାଏ, ଅସହାୟ କାରୁଣ୍ୟ । ଆଖିରେ ଅନାହାର ମୃତ୍ୟୁ ଆଗରେ ନୀରବ ଆତ୍ମସମର୍ପଣର ଦୈନ୍ୟ । କିନ୍ତୁ ଏପରି ଶୀତଳ ଶପଥବଦ୍ଧ ଆଖି ମୁଁ ପ୍ରକୃତରେ ଏହା ପୂର୍ବରୁ ଆଉ କେବେ ଦେଖିନଥିଲି । ସେଇ ନିସ୍ପନ୍ଦ ଆଖିମାନଙ୍କର ଶୀତଳ ଦୃଷ୍ଟି ଆଗରେ ମୋତେ ପ୍ରକୃତରେ ଭାରି ସଂକୁଚିତ ଲାଗିଲା । ସେମାନେ ବି.ଡି.ଓ.ଙ୍କଠାରୁ ତାଙ୍କ ଭାଗ ଆଦାୟ କରିବେ । ନୋହିଲେ ତା'ର ପ୍ରାଣ ନେବେ, ତାର ରକ୍ତଚିତା କରିବେ । ସେଇପରି ଭୟଙ୍କର କଥା, ଧାରଣା ଦେଇଥିବା ଲୋକମାନଙ୍କ ମଧ୍ୟରୁ କେତେଜଣ ଚିତ୍କାର କରୁଥିଲେ । ମୁଁ କାହାକୁ କିଛି ନ କହି, ବି.ଡି.ଓ.ଙ୍କ ସାକ୍ଷାତ ପାଇଁ ତାଙ୍କ ଅଫିସ୍ ଘର ଭିତରକୁ ଚାଲିଗଲି ।

ସେ ଭୀତତ୍ରସ୍ତ ଭାବରେ ଟେବୁଲ୍ ଉପରେ ଗୋଟିଏ ଲଣ୍ଠନ ଆଗରେ ନିତାନ୍ତ ଅସହାୟ ପରି ବସିଥିଲେ । ବ୍ଲକର କୌଣସି କର୍ମଚାରୀ ସୁଦ୍ଧା ସେଠାରେ ସେତେବେଳେ ଦେଖାନଥିଲେ । ସେ ମୋତେ ଦେଖିବା ମାତ୍ରେ, ମୋର ଦୁଇ ହାତ ଧରିପକାଇଲେ, ବୁଡ଼ିଗଲା ଲୋକ କୁଟାଖିଅକୁ ଧରିବା ପରି ବଡ଼ ଅସହାୟ କଣ୍ଠରେ କହିଲେ, "ମୋତେ ରକ୍ଷା କରନ୍ତୁ ସାର୍ । ମୁଁ ସତ କହୁଛି, ଦୁଇ ବସ୍ତା ଚୁଡ଼ା ମୁଁ ବିକ୍ରି କରିନାହିଁ । ଅନ୍ୟ ଗୋଟିଏ ପଞ୍ଚାୟତର ଲୋକେ ମଧ୍ୟ କୌଣସି ରିଲିଫ୍ ପାଇନାହାନ୍ତି । ଛଅବସ୍ତା ଚୁଡ଼ା

ଆସି ପହଞ୍ଚିବା ମାତ୍ରେ ସେମାନେ ଦୁଇବସ୍ତା ଚୁଡ଼ା ଛଡ଼ାଇ ନେଇଗଲେ । ଏସ୍.ଡି.ଓ.ଙ୍କ ପାଖକୁ ଓୟାରଲେସ୍ ଆଜି ସକାଳୁ ଯାଇଛି । ସେ ଖବର ପଠାଇଛନ୍ତି, ଡଙ୍ଗାରେ ରିଲିଫ୍ ଜିନିଷ ଆସୁଛି ବୋଲି । ନିଶ୍ଚୟ ରାତିରେ ପହଞ୍ଚିଯିବ । କିନ୍ତୁ ବାହାରେ ଲୋକମାନେ ଯେପରି ହେଉଛନ୍ତି, ସେ ପର୍ଯ୍ୟନ୍ତ ମୁଁ ବଞ୍ଚି ରହିଲେ ହେଲା ।"

ବି.ଡି.ଓ.ଙ୍କ ପାଖରୁ ମୁଁ ବାହାର ବାରଣ୍ଡାକୁ ଆସିବା ମାତ୍ରେ, କେତେଜଣ ଲୋକ ଚିତ୍କାର କରି ଉଠିଲେ, "ଚୁଡ଼ା ଦିଅ, ଚୁଡ଼ା ଦିଅ" । ମୁଁ ବୁଝାଇଲି, "ଏଇ ଚାରିବସ୍ତା ଚୁଡ଼ା ବର୍ତ୍ତମାନ ବାଣ୍ଟିନିଅ । ଏସ୍.ଡି.ଓ. ଚୁଡ଼ା, ଚାଉଳ ଡଙ୍ଗାରେ ସକାଳୁ ପଠାଇଛନ୍ତି । ବୋଧହୁଏ ଘଣ୍ଟାଏ, ଦୁଇଘଣ୍ଟା ଭିତରେ ପହଞ୍ଚିଯିବ ।" ଏକା ସାଙ୍ଗରେ ଶୁଭିଲା, "ସେ ଚାରିବସ୍ତା ଚୁଡ଼ାରେ ଆମ କାମ ନାହିଁ । ଆମ ପଞ୍ଚାୟତପାଇଁ ଛଅବସ୍ତା ଚୁଡ଼ା ଆସିଥିଲା । ବାକି ଦୁଇବସ୍ତା ବି.ଡି.ଓ. ବିକ୍ରି କରିଦେଇଛି ।" ମୋ ପକେଟରେ ସେତେବେଳେ ମାତ୍ର ଶହେଟା ଟଙ୍କା ପଡ଼ିଥିଲା । ମୁଁ ଶହେ ଟଙ୍କିଆ ନୋଟ୍ ଖଣ୍ଡେ ସେମାନଙ୍କର ଜଣେ ମୁଖିଆଙ୍କୁ ଦେଇ କହିଲି, "ମୋ ପାଖରେ ଏତିକି ଅଛି । ବଜାରରେ ଯାହା ଚୁଡ଼ା, ମୁଢ଼ି ମିଳୁଛି, କିଣି ବାଣ୍ଟିନିଅ । ଅଳ୍ପ ସମୟ ପରେ ପୂରା ରିଲିଫ୍ ଜିନିଷ ଆସିଯାଉଛି ।"

ସେ ଲୋକଟି ଶହେ ଟଙ୍କିଆ ନୋଟ୍ ଖଣ୍ଡକ ତଳେ ଫିଙ୍ଗିଦେଇ ବଡ଼ ପାଟିରେ କହିଲା, "ଆମେ କ'ଣ ଏ ନୋଟ୍‌କୁ ଖାଇବୁ । ଆମକୁ ଚୁଡ଼ା ଦିଅ ।" ବଜାରରେ ଯେଉଁ କେତୋଟି ଖାଇବା ଦୋକାନ ଖୋଲାଥିଲା, ମୁଁ ବୁଲି ବୁଲି ଦେଖିଲି ପ୍ରକୃତରେ କେଉଁଠି କିଛି ନଥିଲା । ଶୂନ୍ୟ ଦୋକାନମାନଙ୍କରେ କେଉଁଠି ଡିବି ବା କେଉଁଠି ଧୂଆଁଳିଆ ଲଣ୍ଠନଟାଏ ଜଳୁଥିଲା । ଧାରଣା ଦେଇଥିବା ଲୋକମାନଙ୍କ ମଧ୍ୟରେ ଅସ୍ଥିରତା କ୍ରମେ ବୃଦ୍ଧିପାଉଥିବା ଲକ୍ଷ୍ୟକରି ମୁଁ ପ୍ରକୃତରେ ଆତଙ୍କିତ ହୋଇ ଉଠିଲି । ଉତ୍‌ଫେଣ ସର୍ପର ଆଖିପରି, ଧାରଣା ଦେଇଥିବା ଲୋକମାନଙ୍କର ଆଖିସବୁ କ୍ରମେ ଯେପରି ସ୍ଫୁଲିଙ୍ଗ ପରି ଦପ୍‌ଦପ୍ ହୋଇ ଉଠୁଥିଲା । ସେମାନେ ବି.ଡି.ଓ. ଉଦ୍ଦେଶ୍ୟରେ ଅଶ୍ରାବ୍ୟ ଗାଳି ଗୁଲଜ କରି ତା'ର ରକ୍ତଚିତା କରିବେ ବୋଲି ଚିତ୍କାର କରୁଥିଲେ ।

କ୍ଷୁଧାର ଅସହାୟ ଚେହେରା ମୁଁ ଅନେକ ଦେଖିଛି । କିନ୍ତୁ କ୍ଷୁଧାର ଏପରି ଉଗ୍ର ଭୟଙ୍କର ଚେହେରା ମୁଁ ଆଉ କେବେ ଦେଖି ନଥିଲି । ହଠାତ୍ କେତେବେଳେ କ'ଣ ଘଟିଯିବ । ଏଇ ଆଶଙ୍କାରେ ମୁଁ କ୍ରମେ ଅବସନ୍ନ ହୋଇଉଠିଥିଲି ।

ଏଇ ସମୟରେ ରାସ୍ତା ଉପରୁ କେତେଜଣ ପାଟି କରି ଉଠିଲେ, "ରିଲିଫ୍ ଜିନିଷ ଆସିଗଲା, ଆସିଗଲା ।" କେତେଜଣ ବସ୍ତା ବୁହାଳି ପିଠି ଉପରେ ବସ୍ତାସବୁ ଲଦି ଦେଇ ଭିଡ଼ ଭିତରେ ବ୍ଲକ୍ ଅଫିସ୍ ଆଡ଼େ ଆସୁଥିଲେ । ଉତ୍‌ଫେଣ ସର୍ପର ଆଖିସବୁ କ୍ରମେ ଶାନ୍ତ ହୋଇ ଉଠିଲା । ପ୍ଲାଷ୍ଟିକ୍ ମୁହଁର ରେଖାସବୁ କୋମଳ ହୋଇ ଆସିଲା ।

ଶୀଘ୍ର ଶୀଘ୍ର ରିଲିଫ୍ ବାଣ୍ଟିବାପାଇଁ ମୁଁ ସେତେବେଳକୁ ସେଠାରେ ପହଞ୍ଚିଯାଇଥିବା ବ୍ଲକ୍ କର୍ମଚାରୀମାନଙ୍କୁ ବି.ଡ଼ି.ଓ.ଙ୍କୁ ଡାକି ଆଣିବାପାଇଁ କହିଲି । ବି.ଡି.ଓ. ରିଲିଫ୍ ସାମଗ୍ରୀ ପାଖରେ ପହଞ୍ଚିବା ବେଳକୁ ଧାରଣା ଦେଇଥିବା ଲୋକମାନଙ୍କ ମଧ୍ୟରେ ରିଲିଫ୍ ପାଇଁ ହଠାତ୍ ଆରମ୍ଭ ହୋଇଯାଇଥିଲା ହିଂସ୍ର କୋଳାହଳ ଓ ଅନ୍ୟକୁ ପଛରେ ପକାଇ ଦେଇ ପ୍ରଥମେ ନିଜେ ରିଲିଫ୍ ପାଇବାପାଇଁ ଶ୍ୱାନଯୁଦ୍ଧ ।

୨୦/୦୮/୮୮

# ଓଡ଼ିଆ ବଜାରର ବରାମାଉସୀ

ବହୁବର୍ଷ ତଳେ ଛାତ୍ରାବସ୍ଥାରେ ମୁଁ କଟକ ସହରର ଓଡ଼ିଆ ବଜାରର ଗୋଟିଏ ମେସ୍‌ରେ ରହୁଥିଲି । ସେତେବେଳେ ଓଡ଼ିଆ ବଜାରର ନାମ ଓଡ଼ିଆ ବଜାର ଘେନି ମୋ ମନରେ ଅନେକ କୌତୂହଳ ଓ ସଂଶୟ ଜାତ ହୋଇଥିଲା । ସେତେବେଳେ ମୁଁ ଲକ୍ଷ୍ୟ କରିଥିଲି, ଓଡ଼ିଆ ବଜାର ଅଞ୍ଚଳରେ ଓଡ଼ିଆ ଭାଷୀ ହିନ୍ଦୁଙ୍କ ଅପେକ୍ଷା ଉର୍ଦ୍ଦୁଭାଷୀ ମୁସଲମାନଙ୍କ ସଂଖ୍ୟା ଥିଲା ବେଶି । ଯେଉଁ ଘରେ ଆମର ମେସ୍ ଥିଲା, ତାହା ଥିଲା ମଧ୍ୟ ଏକ ମୁସଲମାନ ଭଦ୍ରଲୋକଙ୍କର । ଆମର ପ୍ରତିବେଶୀମାନେ ଥିଲେ ମୁସଲମାନ । ତଥାପି ବଜାରର ନାମ କାହିଁକି ଓଡ଼ିଆ ବଜାର ହେଲା, ସେ ପ୍ରଶ୍ନ ଅନେକଙ୍କୁ ପଚାରି ମୁଁ ତାହାର କୌଣସି ସଦୁତ୍ତର ପାଇପାରି ନଥିଲି । ଏହି ବଜାରର ଏକ ମୁଣ୍ଡରେ ଥିଲା ଗୋଟିଏ ମଧ୍ୟମ ଆକାରର ପୁରୁଣା ମସ୍‌ଜିଦ୍ । ପ୍ରତିଦିନ ସକାଳ ଓ ସନ୍ଧ୍ୟାରେ ସେ ମସ୍‌ଜିଦ୍‌ର ମୀନାର୍‌ର ଆଜାନ୍‌ର ଧ୍ୱନି ବେଶ୍ ଭାବଗମ୍ଭୀର ଶୁଭୁଥିଲା । ବଜାରର ଅନ୍ୟ ମୁଣ୍ଡରେ ଥିଲା କୌଣସି ପୀରବାବାଙ୍କ ସମାଧି । ସକାଳ ଓ ସନ୍ଧ୍ୟାରେ ସେ ସମାଧି ପାଖରେ କେତୋଟି ଅଗରବତୀ, କିଏ ଜାଳିଦେଇ ଯାଉଥିଲା କେଜାଣି ? ବଜାର କହିଲେ, ରାସ୍ତାର ଦୁଇପାଖରେ ଅନେକ ଗୁଡ଼ିଏ ବରା, ଗୁଲୁଗୁଲା ଦୋକାନ । ଗୋଟାଏ ଦୁଇଟା ତେଲ୍ଲରାତି ଦୋକାନ ଆଉ ସେହିପରି ଗୋଟାଏ ଦୁଇଟା ପାନବିଡ଼ି ଦୋକାନ । ଓଡ଼ିଆ ବଜାର ଭିତରେ ପଶିଗଲେ ସବୁବେଳେ ଭାସିଆସୁଥିଲା ବାଦାମ ତେଲରେ ବରା ଛଣା ହେବାର କଡ଼ା ବାସନା ।

କିନ୍ତୁ ଓଡ଼ିଆ ବଜାର ବରାର ସେତେବେଳେ ଖୁବ୍ ନାମ ଡାକ ରହିଥିଲା । ଏଇ ବଜାରଠାରୁ ଖୁବ୍ ଅଳ୍ପ ଛଡ଼ାରେ ରାସ୍ତା କଡ଼ରେ ଥିଲା ପ୍ରସିଦ୍ଧ ଓକିଲ ଜାନକୀନାଥ ବୋଷଙ୍କ ପ୍ରକାଣ୍ଡ ବାସଭବନ । ସେଇ କୋଠା ସାମନାରେ ଗୋଟିଏ ବୁଢ଼ୀର ବରା ଦୋକାନଟିଏ ଥିଲା । ତା'ର ବରା ଓଡ଼ିଆ ବଜାରରେ ଅନ୍ୟ ଦୋକାନର ବରାମାନଙ୍କ ତୁଳନାରେ ଥିଲା ଅଧିକ ସୁସ୍ୱାଦୁ । ମୁଁ ଯେବେଠାରୁ ଶୁଣିଲି ଯେ ନେତାଜୀ ବୋଷ

ପିଲାଦିନେ ସେଇ ବରା ଦୋକାନରୁ ବରାବର ବରା କିଣୁଥିଲେ, ସେବେଠାରୁ ସେଇ ବରା ଦୋକାନୀ ବୁଢ଼ୀଟି ପ୍ରତି ମୋ ମନରେ ଗୋଟାଏ ସଂଭ୍ରମ ଜନ୍ମିଥିଲା । ମୁଁ ଅଧିକାଂଶ ଦିନ ବରା ଖାଇବାକୁ ଇଚ୍ଛା ହେଲେ ସେ ବୁଢ଼ୀ ପାଖରୁ ବରା କିଣି ଖାଉଥିଲି । ଦିନେ ବୁଢ଼ୀକୁ ନିରୋଳାରେ ପାଇ ପଚାରିଲି, "ମାଉସୀ, ତମ ଦୋକାନରୁ ସୁଭାଷ ବୋଷ କୁଆଡ଼େ ପ୍ରତିଦିନ ବରା କିଣୁଥିଲେ ?" ବୁଢ଼ୀ ମୋ ମୁହଁକୁ ଆବାକାବା ହୋଇ ଚାହିଁ ପଚାରିଲା, "କେତେ ତ ବରା କିଣନ୍ତି ! ସିଏ କୋଉ ସୁଭାଷ ମ !" ମୁଁ ବୁଢ଼ୀକୁ ବୁଝାଇଦେଲି, "ସେଇ ଯେଉଁ ଜାନକୀବାବୁ ଓକିଲଙ୍କ ବଡ଼ କୋଠା, ସେଇ ଘରେ ପିଲାଦିନେ ରହୁଥିଲେ ସୁବାଷ ବୋଷ । ତାଙ୍କ କଥା ତୁମର ମନେପଡୁଛି ?" ବୁଢ଼ୀ ବରା ଛାଣୁଛାଣୁ ଉତ୍ତର ଦେଲା, ଆଲୋ ହଁ, ହଁ ! ସେଇ ସୁଭାଷ । ଭାରି ସୁଧାର ପିଲା । ସବୁଦିନେ ଇସ୍କୁଲ୍‌ରୁ ଫେରିଆସେ, ଆଉ ମୋରି ପାଖରୁ ବରା କିଣି ନେଇଯାଏ । ସିଏ ଏବେ ବଡ଼ ହାକିମ ହେବଣି, ନୁହେଁ; ସିଏ କ'ଣ ମୋ କଥା ତୁମକୁ କହୁଥିଲା କି ? ମୁଁ ଉତ୍ତର ଦେଲି, "ସିଏ ବଡ଼ ହାକିମ ହୋଇଥାନ୍ତେ ଯେ ଚାକିରି କଲେ ନାହିଁ । ଦେଶ ସେବାରେ ଲାଗିଲେ ।" ଦେଶସେବା କଥାଟା ବୁଢ଼ୀ ବୁଝିପାରିଲା ନାହିଁ । ତା'ର ସରଳ ବୁଦ୍ଧିରେ ପଚାରିଲା, "ସିଏ ପୁଣି କ'ଣ ବାପା ?" ମୁଁ ତାକୁ ବୁଝାଇ ଦେଲି, "ଏ ଦେଶରୁ ଗୋରାଙ୍କୁ ତଡ଼ି, ଦେଶକୁ ସ୍ୱାଧୀନ କରିବା ପାଇଁ ସୁଭାଷ ବୋଷ ଲଢୁଛନ୍ତି । ଭାରି ବଡ଼ ମଣିଷ ।" ବୁଢ଼ୀ ସେହିପରି ନିସ୍ପୃହ କଣ୍ଠରେ ଟିପ୍ପଣୀ କଲା, "ହଁ ଗୋରା ଯିବେ । କଳା ଆସିବେ । ହେଲେ ଆମ ଦୁଃଖ ଯିବ ନାହିଁ । କାହିଁକି ମିଛରେ ବଡ଼ ହାକିମ ଚାକିରି ଛାଡ଼ି ଦେଲାଟି ସିଏ । ବୁଢ଼ୀର ନିର୍ବୋଧ ସରଳତାରେ ମୁଁ ମନେମନେ ଆହତ ହୋଇ ସେଠାରୁ ଚାଲିଆସିଲି ।

ମୁଁ କିଛିଦିନ ପରେ ସେତେବେଳକୁ ଓଡ଼ିଆ ବଜାର ଛାଡ଼ି ଗଙ୍ଗାମନ୍ଦିରରେ ଆଉ ଗୋଟିଏ ସ୍ଥାନରେ ଆସି ରହିଲିଣି । କିନ୍ତୁ ବରା ଖାଇବାକୁ ଇଚ୍ଛା ହେଲେ ଓଡ଼ିଆ ବଜାରର ସେଇ ବୁଢ଼ୀ ଦୋକାନକୁ ଇ ଯାଏ । ଦିନେ ଖବରକାଗଜରେ ପଢ଼ିଲି, ନେତାଜୀ ସୁଭାଷ କଲିକତାରେ ତାଙ୍କ ବାସଭବନରେ ନଜରବନ୍ଦୀ ଥିବା ଅବସ୍ଥାରେ ହଠାତ୍ କେଉଁଆଡ଼େ ଅନ୍ତର୍ଦ୍ଧାନ ହେଇଯାଇଛନ୍ତି । ପୋଲିସ୍ ତାଙ୍କ ପତ୍ତା ପାଉନାହିଁ । ଏହା ପଢ଼ିବା ପରେ କେଜାଣି କାହିଁକି ପ୍ରଥମେ ସେହି ବରାବାଲୀ ବୁଢ଼ୀକୁ ଏ ଖବରଟା ଜଣାଇଦେବା ପାଇଁ ମୋର ଭାରି ଇଚ୍ଛା ହେଲା । କିନ୍ତୁ ସେଇ ବରା ଦୋକାନୀକୁ ଆସି ଦେଖେ, ବୁଢ଼ୀ ସେଠାରେ ନଥିଲା । ମଧ୍ୟ ବୟସୀ ପେଟୁଆ ଲୋକଟାଏ ଦୋକାନରେ ବରା ଛାଣୁଥିଲା । ମୁଁ ପଚାରିଲି, 'ମାଉସୀ ନାହାନ୍ତି କି ?" ଲୋକଟି ବିସ୍ମିତ ଦୃଷ୍ଟିରେ ମୋ ଆଡ଼େ ଚାହିଁ ପଚାରିଲା, "ତାକୁ କାହିଁକି ଖୋଜୁଛ । ତା ଦିହ ଅତିଶୟ ହୋଇଛି । ସିଏ ଦୋକାନକୁ

ଆସୁନାହିଁ । ତା'ଠି କି କାମ ଥିଲା ତୁମର ?" ମୁଁ ଉତ୍ତର ଦେଲି, "ତାଙ୍କୁ ଗୋଟିଏ ଖବର ଦେବ । ସୁଭାଷ ବୋଷ କଲିକତାରେ ହଠାତ୍ କୁଆଡ଼େ ପୋଲିସ୍ ଘେର ଭିତର ଅନ୍ତର୍ଦ୍ଧାନ ହୋଇଯାଇଛନ୍ତି । ତାଙ୍କ ପତ୍ତା ଆଉ ମିଳୁନାହିଁ । ଲୋକଟି ନିତାନ୍ତ ନିସ୍ପୃହ କଣ୍ଠରେ ପଚାରିଲା, "ସେ ସୁଭାଷ ବୋଷ କିଏ ? ଯୋଉ ବୁଢ଼ୀ ସବୁଦିନେ ଏଠି ବରା ଛାଣନ୍ତି ତମେ ତାଙ୍କୁ ଖୋଜୁଚ ଟି ?"

ଗୋଟାଏ ଅକଥନୀୟ ବିରକ୍ତିରେ ହଠାତ୍ ମୋର ମନଟା ତିକ୍ତ ହୋଇ ଉଠିଲା । ଦଧୀଚି ପରି ଯେଉଁମାନେ ଏହି ସାଧାରଣ ମଣିଷମାନଙ୍କର କଲ୍ୟାଣପାଇଁ ଅସ୍ଥି ଦାନ କରନ୍ତି, ସେମାନେ କେତେଜଣ ବା ସେମାନଙ୍କୁ ଜାଣନ୍ତି ? ସେମାନଙ୍କୁ ମନେ ରଖନ୍ତି । ସେଇ ଦଧୀଚିମାନେ କେବଳ ରହିଯାଆନ୍ତି, ଗୋଟିଏ ଗୋଟିଏ ନାମ ତାଲିକାରେ ।

୨୭/୦୮/୮୮

# ଆଦିମ ଅରଣ୍ୟ

ପଚାଶ ବର୍ଷ ତଳର କଟକ ସହରର ସ୍ମୃତି କେବେକେବେ ମନେପଡ଼ିଗଲେ ମୋ ଆଖି ଆଗରେ ଭାସିଉଠେ, ରାଣୀହାଟଠାରୁ ଦୋଳମୁଣ୍ଡାଇ ପର୍ଯ୍ୟନ୍ତ ଲମ୍ୱି ଯାଇଥିବା ଖଣ୍ଡେ କଳା ସରୁ ରିବନ ପରି ଅଣଓସାରିଆ ଗୋଟିଏ ନିଛାଟିଆ ପିଚୁ ରାସ୍ତା ଆଉ ତା'ର ଦୁଇ ପାଖରେ ଧାନକ୍ଷେତ କିଆବଣ ଇତ୍ୟାଦି । ପ୍ରତ୍ୟହ ଏଇବାଟ ଦେଇ ସାଇକେଲ୍‌ରେ ରେଭେନ୍‌ସା କଲେଜ ଯିବାବେଳେ ମୁଁ ପାଇଥାଏ ପଲ୍ଲୀମାଟିର ସ୍ପର୍ଶ ଆଉ ଧାନକ୍ଷେତର ବାସନା । ସେଥିପାଇଁ ଏଇ ରାସ୍ତାଟି ପ୍ରତି ମୋର ଏକ ବିଶେଷ ଆକର୍ଷଣ ଥିଲା । ଯଦ୍ୟପି ବଜରକବାଟୀ କଲ୍‌ଭର୍ଟ ପାଖରେ ଗୋଟାଏ ଝଙ୍କାଳିଆ ଆମ୍ବଗଛ ତଳେ ଜଣେ ଭୟଙ୍କର ଦିଶୁଥିବା ଲୁଙ୍ଗିପିନ୍ଧା ସେଇ ଦାଢ଼ିଆ ମୋଟାସୋଟ ଲୋକଟା ଆଉ ଅଣ୍ଟାଏ ଉଚ୍ଚର ଦାଢ଼ିଆ ବୋଦାକୁ ସେଇ ନିଛାଟିଆ ରାସ୍ତାରେ ଦେଖିଲେ ସବୁଦିନେ ସେଇ ବାଟ ଦେଇ ଯିବାବେଳେ ମୋର ଛାତି ଭୟରେ ଛମ୍‌ଛମ୍ ହୋଇଉଠେ । ଆମ୍ବଗଛ ମୂଳେ ଥିଲ ଗୋଟିଏ ନୂଆଣିଆଁ ଚାଳ କୁଡ଼ିଆ । ସେଇ କୁଡ଼ିଆ ପାଖରେ ସେଇ ଲୋକଟା ସବୁଦିନେ ଖଣ୍ଡେ ଟୁଲ୍ ପକାଇ ବସିଥାଏ, ଗୋଟିଏ ନିଶ୍ଚଳ ମୂର୍ତ୍ତି ପରି । ଆଉ ଦାଢ଼ିଆ ତାର ବୋଦା ଦୁଇ ଆଖି ବୁଜି ତା' ପାଖରେ ଠିଆ ହୋଇଥାଏ । ଗୋଟିଏ ଖୁଣ୍ଟରେ ବନ୍ଧାହୋଇ । କେବେକେବେ ହାତ ଟଣା ରିକ୍ସାବାଲାଟିଏ ସେଇ କୁଡ଼ିଆ ଭିତରୁ ହାକୁଡ଼ି ମାରିମାରି ବାହାରି ଆସେ । ମୁଁ ସେଇଥିରୁ ଅନୁମାନ କରିନେଲି, କୁଡ଼ିଆଟା ବୋଧହୁଏ ଗୋଟିଏ ମଦଭାଟି । ତା'ପରଠାରୁ ମୋ ଭୟର ପରିମାଣ ବଢ଼ିଯାଇଥିଲା । ସେ ଭୟଙ୍କର ଲୋକଟା ମୁଁ ସେବାଟେ ଗଲାବେଳେ ମୋ ଆଡ଼େ ଯେପରି ଗାରେଡେଇ ଗାରେଡେଇ ଚାହେଁ, କାଳେ ଯଦି ସେଇ ନିଛାଟିଆ ରାସ୍ତାରେ, ମୋତେ ଛୁରୀରେ ଭୁଷିଦିଏ, ତା'ହେଲେ ଆହା ପଦଟିଏ କହିବାପାଇଁ ସୁଦ୍ଧା କେହି ସେଠାରେ ନଥିବେ । ତଥାପି ସେଇ ରାସ୍ତାଦେଇ ପ୍ରତ୍ୟହ କଲେଜ ଯିବାପାଇଁ ମୋ ଯେପରି ଥିଲା, ଗୋଟାଏ ବ୍ୟାଧିତ ଆକର୍ଷଣ ।

ସେଦିନ କଟକ ସହରର ରାସ୍ତାମାନଙ୍କରେ ବଗିଗାଡ଼ିମାନଙ୍କର ଯେପରି ଥିଲା ଏକ ଆଧିପତ୍ୟ । ମୋଟର କାର୍ କହିଲେ, ସଂଖ୍ୟା ଯେତେବେଳେ ଥିଲା ଆଙ୍ଗୁଠିରେ କେତୋଟି ଗଣିହେବା ଭଳି । ଯାନବାହନ କହିଲେ, ଶଗଡ଼, ହାତଟଣା ରିକ୍ସା ଆଉ ଘୋଡ଼ାଗାଡ଼ି । କଚୁଆନ୍‌ମାନେ ଏଇପରି ରାସ୍ତାଉପରେ ବେପରୁଆ ଭାବରେ ଗାଡ଼ି ଚଳାଇବାବେଳେ ଚାବୁକ୍ ବୁଲାଇ ପଥଚାରୀ ପଦଯାତ୍ରୀ, ସାଇକେଲ୍ ଆରୋହୀ ଆଉ ହାତଟଣା ରିକ୍ସାବାଲାମାନଙ୍କୁ ଚିତ୍କାର କରୁଥିଲେ 'ହଟୋ ହଟୋ' । ଚିତ୍କାର ଶୁଣି ସେମାନେ କୁଙ୍କୁଡ଼ି କାଙ୍କୋଡ଼ି ହୋଇ ରାସ୍ତାକଡ଼କୁ ଚାଲିଯାଉଥିଲେ । ନୋଇଲେ ଚାବୁକଟା ସେମାନଙ୍କ ଦେହରେ ଲାଗିଯିବା ଅସମ୍ଭବ ନଥିଲା । ଦିନେ ଖରାବେଳେ ସେଇ ଦୋଳମୁଣ୍ଡାଇ ରାସ୍ତାରେ ମୁଁ କଲେଜରୁ ଫେରୁଛି । ଶୀତଦିନର ନିର୍ଜନ ମଧ୍ୟାହ୍ନ ରାସ୍ତା ଦୁଇକଡ଼ର ପାଚିଲା ଧାନକ୍ଷେତମାନଙ୍କ ଉପରେ ନାରଙ୍ଗୀ ରଙ୍ଗର ଖରା, ମୋତେ ଅନ୍ୟମନସ୍କ କରିଦେଇଥିଲା । ବଙ୍ଗରକବାଟୀ ପାଖରେ ସେଇ ଭୟଙ୍କର ଲୋକଟା ମୋ ଆଡ଼େ ଗାରେଡେଇ ଗାରେଡେଇ ଚାହିଁ ଦେଖୁଥିବା ସତ୍ତ୍ୱେ ଅନ୍ୟ ଦିନମାନଙ୍କ ପରି ମୁଁ ସେଦିନ ଆଦୌ ଭୟ ପାଇନଥିଲି । ହଠାତ୍ ଗୋଟାଏ ଘୋଡ଼ାଗାଡ଼ି ମୋ ଆଡ଼େ ପଛରୁ ମାଡ଼ି ଆସିଲା, ଆଉ ତା ସହିତ ଘାଘଡ଼ା ଗଳାରେ ହଟୋ ହଟୋ ଚିତ୍କାର । ମୁଁ ଘାବରେଇ ଯାଇ ରାସ୍ତା କଡ଼କୁ ସାଇକଲ ବୁଲାଇ ଦେଉ ଦେଉ ତଳେ ପଡ଼ିଗଲି । ମୋର ଆଣ୍ଠୁ ଓ କହୁଣୀ ଛିଣ୍ଡି କିଛି ରକ୍ତ ଝରିଲା । କଚୁଆନ୍ ନିର୍ବିକାର ଭାବରେ ଗାଡ଼ିନେଇ ସେଠାରୁ ହଟୋ ହଟୋ ଚିତ୍କାର କରି ଚାଲି ଯାଉଥିଲା । ଦେଖିଲି, ସେଇ ଗୁଣ୍ଡା ପରି ଲୋକଟା ପଛରୁ ଦଉଡ଼ି ଯାଇ ରାସ୍ତା ଉପରେ ଘୋଡ଼ାଗାଡ଼ିକୁ ଅଟକାଇଲା । ତା'ପରେ ତାକୁ ନାନା ବଛାବଛା କଟ୍‌କୀ ଗାଳିଗୁଲଜ କରି ଗାଡ଼ିକୁ ଫେରାଇ ଆଣିଲା, ଯେଉଁଠାରେ ମୁଁ ସାଇକେଲ୍‌ରୁ ତଳେ ପଡ଼ି ଯାଇଥିଲି। ତା' ପରେ ଚିତ୍କାର କଲା, "ଶାଳା ଭୋଷଡିକା ! ରାସ୍ତାକୁ ବୋପା ଜମିଦାରୀ ପାଇଛି । ଉଠା ଶଳା ବାବୁକୁ । ନେ ଡାକ୍ତରଖାନା ! ନୋଇଲେ ଶାଳା..."

କଚୁଆନ୍ ଜଣକ କରପତ୍ର ଯୋଡ଼ି ତା'ର ଭୁଲ୍ ପାଇଁ ତାକୁ ଅନେକ ମାଫି ମାଗିଲା । ତା' ପରେ ସେ ମୋତେ ଧରି ବଗି ଗାଡ଼ି ଭିତରକୁ ଉଠାଇ ଆଣିଲା । ମୋ ସାଇକେଲ୍‌ଟାକୁ ମଧ୍ୟ ଝୁଲାଇ ଦେଲା ଗାଡ଼ି ପଛରେ । ଗୌରୀଶଙ୍କର ପାର୍କ ପାଖ ମ୍ୟୁନିସିପାଲିଟି ଡାକ୍ତରଖାନାରୁ ଫାଷ୍ଟଏଡ୍ ଦେଇ ମୋତେ ଛାଡ଼ିଦେଲା ।

ମୁଁ ଘୋଡ଼ାଗାଡ଼ିବାଲାକୁ କହିଲି, "ସାଇକେଲ୍‌ଟା ଓହ୍ଲାଇ ଦିଅ। । ମୋ ମେସ୍‌ଟା ଏଠାରୁ ଅଳ୍ପବାଟ । ଚାଲିଯାଇ ପାରିବି ।" ଗାଡ଼ିବାଲା କିନ୍ତୁ କାକୁତି ମିନତି ହେଇ କହିଲା, "ନାଇ ହଜୁର, ମୋର ତ ଗଲ୍‌ତି ହୋଇଯାଇଛି। ମୁଁ ହଜୁରଙ୍କୁ ନେଇ ମେସ୍‌ରେ ଛାଡ଼ିଦେଇ ଆସିବି । ନୋଇଲେ ସେ ବାବୁମିଆଁ ଯଦି ଶୁଣିବ ମୁଁ ହଜୁରଙ୍କୁ ଅଧାରାସ୍ତାରେ ଛାଡ଼ିଦେଲି

ବୋଲି, ତ'ହେଲେ ମୋର ଜାନ୍ ଖତରାରେ ପଡ଼ିଯିବ ।" କଚୁଆନ୍‌ର କଥାଶୁଣି ସେତେବେଳେ ଟିକିଏ ବିସ୍ମିତ ହୋଇଥିଲି।

ବଜରକବାଟୀ ଉପରେ ସେଇ ଲୋକଟାର ନାଁ ବୋଧହୁଏ ବାବୁମିଆଁ । ମୁଁ ତାକୁ ଧରିନେଇଥିଲି ଗୋଟିଏ ଗୁଣ୍ଡା ବୋଲି; ଜଣଙ୍କୁ ଛୁରୀରେ ଭୁସିଦେବାପାଇଁ ଯାହାର ହାତ କମ୍ପେ ନାହିଁ । ଅଥଚ ସେଇ ଲୋକଟି ସେଦିନ ମୁଁ ରାସ୍ତା କଡ଼ରେ ସାଇକେଲ୍‌ରୁ ପଡ଼ିଯାଇଥିବା ବେଳେ ମୋର ସହାୟକ ହୋଇଥିଲା ।

ପଚାଶ ବର୍ଷ ତଳର ସେଇ ସ୍ମୃତି ଏବେ କେବେ ମନେ ପଡ଼ିଗଲେ ମୋର ମନେହୁଏ, ସବୁ ମନୁଷ୍ୟ ଗୋଟିଏ ଗୋଟିଏ ଆଦିମ ଅରଣ୍ୟ । ଆମେ କେବଳ ଅରଣ୍ୟକୁ ହିଁ ଦେଖିଥାଉ, କିନ୍ତୁ ସେଇ ଅଗ୍ନାଅଗ୍ନି ବନସ୍ତ ଭିତରେ ଯେଉଁ ରହସ୍ୟାଲୋକ ଛପି ରହିଛି, ତାହାର ସନ୍ଧାନ କ'ଣ ପାଇଥାଉ କେବେ ?

୦୩/୦୯/୮୮

# ବଇଁଶୀବାଲା ଓ ଜହ୍ନରାତି

କେତେ ଦିନର ନିରବତା ପରେ, ଆଜି ପୁଣି ସେଇ ବଇଁଶୀବାଲାର ବଇଁଶୀ ରାତିର ନିଶୁତି ଭିତରେ ବାଜି ଉଠିଲା । ବିଛଣାରେ ପଡ଼ି ମୁଁ ଘଡ଼ିକୁ ଚାହିଁ ଦେଖିଲି ରାତି ଠିକ୍ ସାଢ଼େ ଏଗାରଟା । ରାସ୍ତାରେ ଟ୍ରାଫିକ୍‌ର କୋଳାହଳ ନିରବ ହୋଇଗଲାଣି । ଠିକ୍ ଏହି ସମୟରେ ସେଇ ବଇଁଶୀବାଲା, ତା'ର ଖିଆଲ ହେଲେ ଏଇ ପାଖରେ କେଉଁଠି ବଇଁଶୀ ବଜାଏ । ଆଜି ମଧ୍ୟ ବଜାଉଛି ।

ଏପ୍ରିଲ୍ ମାସର ଶୁକ୍ଳପକ୍ଷ ଜହ୍ନରାତି, ଠିକ୍ ଯେପରି ବଇଁଶୀର ସୁର ଓ ଲହରରେ ଚେଇଁ ଉଠିଲା । ଜହ୍ନ ଆଲୁଅ ଓ ଉତଳା ପବନର କୋଳାହଳ ସାଙ୍ଗକୁ ସିଏ ଯେପରି ତା'ର କୋଳାହଳକୁ ମିଶାଇ ଦେଇଛି । କେଉଁ ରାଗ ରାଗିଣୀରେ ସେ ବଇଁଶୀବାଲା ବଇଁଶୀ ବଜାଉଛି, ଜାଣେ ନାହିଁ, କିନ୍ତୁ ମୋର ଆଖି ଆଗରେ ଭାସିଉଠୁଛି, ନିଛାଟିଆ ଖରାବେଳେ ଏକ ଦିଗହଜା ପ୍ରାନ୍ତର । ଭାରି ଅସ୍ୱସ୍ତିକର ଲାଗିଲା, ସେଇ ଅସୀମତା ଆଉ ନିର୍ଜନତା । ମୋତେ ଲାଗିଲା, ସର୍ବଂସହା ବସୁନ୍ଧରା ଦିନସାରା ବହୁ ଉତାପ, ବହୁ ଅତ୍ୟାଚାର, ବହୁ କ୍ଳେଶ ସହି, ରାତିର ଏଇ ନିଶୁତି ପହରରେ ତା'ର ମର୍ମବେଦନା ଆକାଶକୁ ଶୁଣାଉଛି । ବଇଁଶୀବାଲାର ବଇଁଶୀରୁ ବସୁନ୍ଧରାର ସେହି କାରୁଣ୍ୟ ଯେପରି ଫୁଟି ଉଠିଛି । ତା'ର ଲହରରେ ବିରାମ ନାହିଁ ।

ପାଖ ଘରେ ଟେଲିଭିଜନ୍‌ରେ କୌଣସ ହିନ୍ଦୀ ଫିଲ୍ମ ଚାଲିଛି । ତା'ର ଶବ୍ଦ ଭାରି ଖାପ୍‌ଛଡ଼ା, ବିରକ୍ତିକର ଲାଗୁଛି । ଭାବିଲି, ଆଜି ବଇଁଶୀବାଲାକୁ ଆବିଷ୍କାର କରିବାପାଇଁ ପଡ଼ିବ । ସହର ପିଚୁ ରାସ୍ତାରୁ ଗୋଟାଏ ଗଳି ଯେଉଁଠି ମୋଡ଼ିଯାଇଛି, ସେଇ ବୁଲାଣିଠାରୁ ଅଳ୍ପ ଛଡ଼ାରେ ଗୋଟିଏ କଲ୍‌ଭର୍ଟ ଉପରେ ବଇଁଶୀବାଲାଟି ବସି ବଇଁଶୀ ବଜାଉଛି । ଜହ୍ନ ଆଲୁଅ ତା' ଉପରେ ମୁଠାମୁଠା ମଉଳା ମଲ୍ଲୀଫୁଲ ପରି ଝରିପଡ଼ିଛି । ମୁଁ ସେଠାକୁ ଯାଇ ତା'ଠାରୁ ଅଳ୍ପ ଛଡ଼ାରେ ସେଇ କଲଭର୍ଟ ବାଡ଼ା ଉପରେ ବସିଲି । ସେ କିଛି କ୍ଷଣ ପରେ ହଠାତ୍ ବଇଁଶୀ ବଜାଇବା ବନ୍ଦ କରିଦେଇ ପଚାରିଲା, "କିଏ ?"

ଜହ୍ନ ଆଲୁଅରେ ଦେଖିପାରିଲି ବଇଁଶୀବାଲାଟି ଅନ୍ଧ । କିନ୍ତୁ ମୁଁ ତ ଆସିଥିଲି ନିଃଶବ୍ଦରେ, ସେ ମୋର ଉପସ୍ଥିତି ଜାଣିପାରିଲା କିପରି ? ବୋଧହୁଏ ମୋର ଉପସ୍ଥିତି ତା'ର ଅତୀନ୍ଦ୍ରିୟ ସଂଗୀତର ତାଳଭଙ୍ଗ କରିଥିଲା ।

ମୁଁ ଉତ୍ତର ଦେଲି, "ତୁମେ ମୋତେ ଜାଣି ପାରିବନି । ବଇଁଶୀ ବନ୍ଦ କଲ କାହିଁକି ?"

ସେ ମୋ ପ୍ରଶ୍ନର କୌଣସି ଉତ୍ତର ନ ଦେଇ ମୋତେ ପଚାରିଲା, "ଆଜି ରଣିଫୁଲ ପରି ଜହ୍ନ ପଡ଼ିଛି, ନୁହେଁ ?

ମୁଁ ଈଷତ୍ ବିସ୍ମିତ କଣ୍ଠରେ ଉତ୍ତର ଦେଲି, "ତୁମେ କ'ଣ ଜହ୍ନ ଆଲୁଅ ଦେଖି ପାରୁଛ ?"

ବଇଁଶୀବାଲା ମୋତେ ଉତ୍ତର ଦେଲା, "ଜହ୍ନ ଆଲୁଅ ଦେଖିବା ପାଇଁ କ'ଣ ଆଖି ଦରକାର ?"

ଏ ବିଚିତ୍ର ପ୍ରଶ୍ନର ମୁଁ କି ଉତ୍ତର ଦେବି ସ୍ଥିର କରିପାରିଲି ; ନିରବ ରହିଲି ।

କିଛିକ୍ଷଣ ନିରବ ରହି ଉତ୍ତର ଦେଲା, "ଏ ମନ ଭାରି ମନୁଆ । ତା'ର ସବୁ ଖିଆଲର ଉତ୍ତର କେବେ କ'ଣ ଦେଇ ହୁଏ ବାବୁ ?"

ବଇଁଶୀବାଲା ହଠାତ୍ କଲଭର୍ଟ ଉପରୁ ଉଠି ଧୀରେଧୀରେ ଗଳିର ଛାଇ ଆଲୁଅ ଭିତରେ ମିଳାଇଗଲା । ମୁଁ ସେଇଠାରେ ସମ୍ମୋହିତ ପରି କିଛିକ୍ଷଣ ବସି ରହିଲି ।

ବଇଁଶୀର ଆଳାପ ହଠାତ୍ ବନ୍ଦ ହୋଇଯିବା ପରେ ଚାରିଆଡ଼େ ଖାଁ ଖାଁ ଲାଗୁଥିଲା । ଆକାଶରେ ଶୁକ୍ଳ ତିଥିର ଜହ୍ନ ଆଉ ଏପ୍ରିଲ୍ ରାତିର ଉତ୍ତଳା ପବନ ସେଇ ନିର୍ଜନତା, ସେଇ ନିରବତାକୁ ଭାଙ୍ଗିପାରୁ ନଥିଲା । ପ୍ରକୃତରେ ସବୁ କଥାର ତ ଉତ୍ତର ନ ଥାଏ ।

୧୦/୦୯/୮୮

# ଦୁଇଧାର ଲୁହ

ଆଜିକୁ ୪୦/୫୦ ବର୍ଷ ତଳେ ଅମୁ ଡକାୟତ ଥିଲା, କଟକ ସହରର ଏକ ଉପକଥା । ବହୁ ଦୁର୍ଦ୍ଧର୍ଷ ଡକାୟତି ସହିତ ସେ ସଂପୃକ୍ତ ଥିଲେ ହେଁ ପୋଲିସ୍ ତାକୁ ଧରିପାରୁ ନଥିଲା । ଡକାୟତି କରିବା ପୂର୍ବରୁ ସେ କୁଆଡ଼େ ମନ୍ତୁରା ଧୂଳି ପକାଇ ଘରେ ସମସ୍ତଙ୍କୁ ଅଚେତ କରି ଦେଉଥିଲା । ଏଇପରି ଥିଲା ଉପକଥାର ଲଥା । ସେ ରହୁଥିଲା ମେହେନ୍ଦୀପୀର ଅଞ୍ଚଳର ଗୋଟାଏ ବସ୍ତିରେ । ଘଟଣାକ୍ରମେ ୧୯୪୬ ମସିହାରେ ମୁଁ ମୋର ନବ ବିବାହିତା ସ୍ତ୍ରୀଙ୍କୁ ଧରି ସେହି ମେହେନ୍ଦିପୀରରେ ଗୋଟିଏ ପକ୍କା ଘର ଭଡ଼ା ନେଇ ରହିଥିଲି । ଘରଟି ଥିଲା ଠିକ୍ ପୀରଙ୍କ ଆସ୍ଥାନକୁ ଲାଗି । ଆସ୍ଥାନ ଚକଡ଼ାରେ କେଉଁକାଳରୁ ଗୋଟାଏ ପୁରୁଣା ବରଗଛର ଓହଳ ସବୁ ଲମ୍ବିଥିଲା ଦକ୍ଷିଣପଟ ପାଚେରୀକୁ ଲାଗି । ସେଦିନ କାର୍ତ୍ତିକପୂର୍ଣ୍ଣିମା ରାତି । ଆମେ ରାତିରେ ତାସ୍ ଖେଳୁଥିଲୁ, ରାତି ପ୍ରାୟ ଗୋଟାଏ ପର୍ଯ୍ୟନ୍ତ । ତା'ପରେ ଶୋଇ ପଡ଼ିଥିଲୁ ନିଘୋଡ଼ ନିଦରେ । ଅମୁ ସେଦିନ ରାତିରେ, ଆମେ ଶୋଇପଡ଼ିବା ପରେ କେତେବେଳେ ସେଇ ବର ଓହଳ ବାଟେ ଅଗଣା ଭିତରକୁ ଆସି ସବୁ ସଫା କରିଦେଇଥିଲା । ଚାରିଟା ବଡ଼ବଡ଼ ଟ୍ରଙ୍କ୍‌ରେ ଭର୍ତ୍ତି ହୋଇରହିଥିଲା ବିବାହ ବେଳର ଅନେକ ଦାମିକା ଶାଢ଼ି, କିଛି ସୁନା ଅଳଙ୍କାର ଓ ଅନ୍ୟାନ୍ୟ ଉପଢ଼ୌକନ । ସେଥିରେ ମଧ୍ୟ ଗୋଟାଏ ଟ୍ରଙ୍କ୍‌ରେ ଥିଲା କିଛି ଟଙ୍କା । ସକାଳେ ଉଠି ଦେଖିବା ବେଳକୁ ସବୁ ସଫା ! ଟ୍ରଙ୍କ୍ ସବୁ ଭଙ୍ଗା ହୋଇ ପୂର୍ବ ପଟେ ଧୋବା ସାହିର ଗୋଟାଏ ଅରମା ପଡ଼ିଆ ଭିତରେ ପଡ଼ିରହିଥିଲା । ଆଉ ଚାରିଆଡ଼େ ଖେଳେଇ ହୋଇ ପଡ଼ିଥିଲା, ପୁରୁଣା ଲୁଗା ଓ ଆଉ କେତେକ ସାମାନ୍ୟ ଜିନିଷ । ସକାଳକୁ ମୋ ପାଖରେ କପର୍ଦ୍ଦକଟିଏ ସୁଦ୍ଧା ନ ଥିଲା । ଗୁଜୁରାଣ ମେଣ୍ଟାଇବା ପାଇଁ ମୋତେ ବନ୍ଧୁବାନ୍ଧବଙ୍କଠାରୁ ସେ ଦିନ କିଛି ଧାର ଉଧାର ସଂଗ୍ରହ କରିବାକୁ ପଡ଼ିଲା । ପୋଲିସ ଖବର ପାଇ ଯଥାବିଧି ଦଳବଳ ଧରି ଆସିଲେ । କହିଲେ, ଇଏ ଅମୁ ଡକାୟତର କାଣ୍ଡ; ମାତ୍ର ଅମୁ ଧରାପଡ଼ିଲା ନାହିଁ, କିମ୍ବା ଚୋରିମାଲ୍ ବରାମତ ହୋଇ ପାରିଲା ନାହିଁ ।

ଏହାର ଦଶବର୍ଷ ପରେ ସୀମା ଆନ୍ଦୋଳନ ସଂକ୍ରାନ୍ତରେ ମୁଁ କଟକ ଜେଲରେ ପ୍ରାୟ ଦୁଇମାସ ରହିଥିଲି । ଦିନେ ସକାଳ ନଅଟା ବେଳେ ୧୭ ନମ୍ବର ୱାର୍ଡ଼ ହତାରେ ବୁଲୁଛି, ଦେଖିଲି, ଜଣେ କୟଦୀ ଜଂଘିଆ ପିନ୍ଧି ପାଣିକଳ ପାଖରେ ବସି ଲୁଗା ବା ଗାମୁଛାରେ ସାବୁନ୍ ଦେଉଛି । ଦୁଇପାଦରେ ତା'ର ଲୁହାଶିକୁଳି ଆଉ ଦୁଇ ଗୋଡ଼ରେ ଦଣ୍ଡା ବେଡ଼ି ! କଳା ମଣିଷଟା ବେଶ୍ ଲମ୍ବା ଚଉଡ଼ା ! ମୁଁ ତା'ର ନିକଟବର୍ତ୍ତୀ ହେବାରୁ ସେ ମୋ ଆଡ଼େ ଯେପରି କଟମଟ କରି ଚାହିଁଲା । ସେଥିରେ ପ୍ରକୃତରେ ମୁଁ ମନେ ମନେ ଶଙ୍କିଗଲି । ଜେଲ୍‌ରେ ଖାଦ୍ୟାଭାବ ଯୋଗୁଁ ତା'ର ଦେହ ଅବଶ୍ୟ ଅନେକ ଝଡ଼ିଯାଇଥିଲା । ମୁହଁରେ ହନୁହାଡ଼ ବାହାରି ପଡ଼ଥିଲା ! ଛାତିର ପଞ୍ଜରାହାଡ଼ ମଧ୍ୟ ବାରି ହେଇ ପଡୁଥିଲା । କିନ୍ତୁ ତା'ର ବଡ଼ବଡ଼ ଆଖି ଦୁଇଟା ଦିଶୁଥିଲା, ବହୁ ଦିନରୁ ଗୋଟାଏ ଭୋକିଲା ବାଘର ଆଖି ପରି । ସେଠାରୁ କିଛିବାଟ ଯାଇ ଜଣେ ୱାର୍ଡ଼ରକୁ ସେ କୟଦୀ ସଂପର୍କରେ ପଚାରିବାରୁ ସେ କହିଲା, ସିଏ ଅମୁ ଚୋର । ଦଣ୍ଡା ବେଡ଼ି ସଜା ଭୋଗୁଛି ।

ତା'ପରଦିନ ମୁଁ ପୁଣି ସେଇ ବାଟେ ଗଲାବେଳେ ପାଣି କଳ ପାଖରେ ବସି ସେ ସେହିପରି ସାବୁନ୍‌ରେ ଗାମୁଛା ସଫା କରୁଥିଲା । ଏଇପରି ସଜା ପାଉଥିବା କୟଦୀମାନଙ୍କୁ ଘଣ୍ଟାଏ ଘଣ୍ଟାଏ ବାହାରକୁ ଛଡ଼ାଯାଉଥିଲା, ଗାଧୋଇବା ଇତ୍ୟାଦି ନିତ୍ୟକର୍ମ କରିବାପାଇଁ । ସେ ମଧ୍ୟ ମୋ ଆଡ଼େ ପୂର୍ବପରି ଚାହିଁଲା । ମୁଁ ତା' ପାଖକୁ ଆସି ପଚାରିଲି, "ତୁମେ ଅମୁ ଡକାୟତ ନା !" ସେ କୌଣସି ଉତ୍ତର ନଦେଇ ତଳକୁ ଆଖି ନୁଆଁଇ ନେଲା । ତା'ପରେ ମୁଁ ପଚାରିଲି, "ତୁମର ଚେହେରା ଏପରି କାହିଁକି ହୋଇଛି ?" ସେ କହିଲା, "ମୋତେ ଏଠି ଠିକ୍ ଖୋରାକ୍ ମିଳୁ ନାହିଁ ।" ତା'ର କଣ୍ଠସ୍ୱରରେ ଥିଲା ଅସହାୟତା ଓ ପରାଜୟ ! ଜେଲ୍‌ରେ ମୁଁ ଦ୍ୱିତୀୟ ଶ୍ରେଣୀରେ ବନ୍ଦୀ ଥିବାରୁ ସେତେବେଳର ବ୍ୟବସ୍ଥା ଅନୁସାରେ ମୋତେ ଖାଇବାକୁ ମିଳୁନଥିଲା ପ୍ରଚୁର । ସକାଳ ବ୍ରେକ୍‌ଫାଷ୍ଟ୍ ପାଇଁ ମୋଟା ମୋଟା ତିନି ସ୍ଲାଇସ୍ ପାଉଁରୁଟି । ଗୋଟାଏ ବଡ଼ ଗ୍ଲାସ୍‌ରେ ପାଏରୁ ବେଶି କ୍ଷୀର ଆଉ ଦୁଇଟା ସିଝା ଅଣ୍ଡା ! ମୁଁ ଏତେ ଖାଇପାରେ ନାହିଁ ! ଗୋଟାଏ ସିଝା ଅଣ୍ଡା ମୋ ପାଇଁ ଯଥେଷ୍ଟ ହୋଇଯାଏ । ଅବଶିଷ୍ଟତକ ଜଣେ ନେଇଯାଏ ଆଜୀବନ ଖୁନୀ କୟଦୀ, ଯିଏ ଜେଲ୍‌ରେ ମୋର ପରିଚର୍ଯ୍ୟା କରୁଥିଲା । ଖରାବେଳେ ଘରୁ ଆସୁଥିବା ମୋର ଖାଇବା ମଧ୍ୟ ନେଉଥିଲା, ସେଇ କୟଦୀ ! ରାତିର ଖାଇବା ମଧ୍ୟ ଅଧେରୁ ବେଶୀ ନେଉଥିଲା ସିଏ ! ଅମୁ ଯଥେଷ୍ଟ ଖୋରାକ୍ ପାଉନାହିଁ ବୋଲି ଜାଣିବା ପରଠାରୁ ମୋ ବଳକା ଖାଇବାରୁ ଅଧେ ଅମୁକୁ ଦେବାପାଇଁ ମୁଁ ୱାଡ଼ରକୁ ଅନୁରୋଧ କଲି । ସେଇ ଅନୁସାରେ ମଧ୍ୟ ମୋ ଡାଏଟର ଗୋଟାଏ ବିଶିଷ୍ଟ ଅଂଶ ଅମୁକୁ ମିଳିଲା ।

ତା'ପରେ ମୁଁ ୧୭ ନମ୍ବର ୱାର୍ଡ଼ ଛାଡ଼ି ଏକୁଟିଆ ରହିବା ପାଇଁ ସେଲ୍‌କୁ ଚାଲିଆସିଲି । ତା'ପରଠାରୁ ଅମ୍ବୁ ସହିତ ମୋର ଆଉ ସାକ୍ଷାତ ହୋଇ ନଥିଲା ।

ଏ ଘଟଣାର ଆଉରି ଦଶ ବର୍ଷ ପରେ ଅମ୍ବୁ ଡକାୟତ ସହିତ ମୋର ଦେଖାହୁଏ 'କଳିଙ୍ଗ'ର ସଂପାଦକ ଥିବା ବେଳେ । ଇତିମଧ୍ୟରେ ଅମ୍ବୁ ଜେଲ୍‌ରୁ ଖଲାସ୍ ହୋଇ, ଗୋଟାଏ ଅସ୍ଥାୟୀ ସିନେମା ହାଉସ୍‌ରେ ୱାଚର୍ ଚାକିରି କରୁଥିଲା । ସପ୍ତାହରେ ଦିନେ ଦିନେ ସେ ସିନେମାର ବିଜ୍ଞାପନ ନେଇ ପ୍ରେସ୍‌କୁ ଆସୁଥିଲା । ମୋତେ ଦିନେ ଦୂରରୁ ଦେଖିପାରି ସେ ସଲାମ କରିବାରୁ ମୁଁ ତାକୁ ପାଖକୁ ଡାକିଲି ଓ ସେ ଏବେ କ'ଣ କରୁଛି ବୋଲି ପଚାରିଲି । ଇତିମଧ୍ୟରେ ତା'ଦେହର ପୂର୍ବ ଅବସ୍ଥା ଅନେକ ଭାଙ୍ଗି ପଡ଼ିଥିଲା ଓ ସେ ଦୁର୍ବଳ ଦିଶୁଥିଲା । ସେ କହିଲା, "ଜେଲ୍‌ରୁ ଖଲାସ୍ ପାଇବା ପରେ ସେ ଡକାୟତି ଛାଡ଼ିଦେଇଛି । ମ୍ୟୁନିସିପାଲିଟି ହତାରେ ଗୋଟାଏ ଉଠା ସିନେମା ହାଉସ୍‌ରେ ସେ ୱାଚ୍‌ମ୍ୟାନ୍ କାମ କରୁଛି । ଇତ୍ୟାଦି... ।

ତା'ର ପ୍ରାୟ ଆଉ ସାତଆଠ ବର୍ଷ ପରେ ମୁଁ ଦିନେ ସକାଳେ ମୋ ଘର ବାରଣ୍ଡାରେ ବସି ଖବରକାଗଜ ପଢୁଛି । କୃଷ୍ଣଚୂଡ଼ା ଗଛମୂଳେ ପାଚେରୀ ସେପଟେ ଦେଖିଲି, ଅମ୍ବୁ ଚୁପ୍‌ଚାପ୍ ଠିଆହୋଇଛି । ମୁଁ ତାକୁ ଇସାରାରେ ପାଖକୁ ଡାକି ସେ କାହିଁକି ସେଠାରେ ଠିଆହୋଇଛି ବୋଲି ପଚାରିବାରୁ ସେ ଭାରୀ କୁଣ୍ଠିତ ଭାବରେ କହିଲା, ସେ କିଛି ସାହାଯ୍ୟ ଚାହୁଁଛି । ସିନେମା ହାଉସ୍ ବନ୍ଦ ହୋଇଗଲା । ସେ ବେଳର ତା'କୁ ଖଣ୍ଡେ ପାଞ୍ଚ ଟଙ୍କିଆ ନୋଟ୍ ଦେଇଥିଲି । ସେ ନିରବରେ ଗୋଟାଏ ସଲାମ ପକାଇ ଚାଲିଯାଇଥିଲା । ତା' ପରଠାରୁ ସେ ଏଇପରି ଆସି ଥରେ ଥରେ କୃଷ୍ଣଚୂଡ଼ା ଗଛମୂଳେ ଠିଆହୁଏ ଓ ମୋଠାରୁ ପାଞ୍ଚ ଟଙ୍କା ବା କେବେ ତା'ଠାରୁ କମ୍ ଟଙ୍କା ସୁଦ୍ଧା ନେଇ ଚାଲିଯାଏ ।

ଅନେକ ଦିନ ପରେ ଥରେ ଆସିଲା ସେ । ଇତି ମଧ୍ୟରେ ତା'ର ସ୍ୱାସ୍ଥ୍ୟ ପୂର୍ବ ଅପେକ୍ଷା ଅନେକ ଖରାପ ହୋଇଯାଇଥିଲା । ଠିଆ ହୋଇଥିଲା ସେଇ କୃଷ୍ଣଚୂଡ଼ା ଗଛମୂଳେ ସେଇ ଗୋଟାଏ ସ୍ଥାନରେ । ମୁଁ ତାକୁ ପୂର୍ବଥରମାନଙ୍କ ପରି ପାଞ୍ଚ ଟଙ୍କିଆ ନୋଟ୍ ଖଣ୍ଡେ ଦେଲି । କିନ୍ତୁ ନୋଟ୍‌ଟାକୁ ନ ନେଇ ସେ କଇଁ କଇଁ ହୋଇ କାନ୍ଦି ଉଠିଲା । ହଠାତ୍ ସେ କାହିଁକି କାନ୍ଦୁଛି ବୋଲି ପଚାରିବାରୁ କୋହ ଚାପି ସେ କହିଲା, "କାଲି ମୋର ଝିଅର ସାଦି । ସେ ଶାଶୂଘରକୁ ଯିବ । ପାଖରେ ଟଙ୍କା ନାହିଁ । ଝିଅକୁ ଖଣ୍ଡେ ଶାଢ଼ି ଦେଇପାରୁ ନାହିଁ । ଶାଶୂ ଘରକୁ ପିନ୍ଧିଯିବାପାଇଁ, ମା'ଙ୍କୁ କୁହ ଯଦି ଖଣ୍ଡେ ଶାଢ଼ି ଦେଇପାରନ୍ତି । ମୁଁ କହିଲି, "ତୁମେ ଯାଅ ଅମ୍ବୁ, ସନ୍ଧ୍ୟାବେଳକୁ ଆସିବ, ଚେଷ୍ଟା କରି ଦେଖିବି ।" ମୁଁ ସେଦିନ କୃଷ୍ଣଚୂଡ଼ା ଗଛମୂଳେ ଅମ୍ବୁ ଡକାୟତକୁ ଦେଖି ନଥିଲି, ଦେଖିଥିଲି ଗୋଟିଏ

ଦୁଃଖୀ ବାପର ଅନ୍ତରାତ୍ମାକୁ । ତାର ପ୍ରାଣକୁ । ତା'ର ବେଦନାକୁ । ସେଦିନ ଅପରାହ୍ଣ ପ୍ରାୟ ପାଞ୍ଚଟା ବେଳେ ଅମ୍ମୁ ଆସିଲା । ମୋର ସ୍ତ୍ରୀ ତା'ର ଝିଅ ପାଇଁ ଗୋଟାଏ ଚଳନ୍ତସହି ଲାଲ ରଙ୍ଗର ଶାଢ଼ି ବଜାରରୁ କିଣି ଆଣିଥିଲେ । ମୁଁ ସେହି ଶାଢ଼ି ଖଣ୍ଡକ ଅମ୍ମୁ ହାତରେ ଦେବା ମାତ୍ରେ, ସେ ଭୋ ଭୋ ହୋଇ କାନ୍ଦି ଉଠିଲା; ଯଦ୍ୟପି ମୁଁ ତା'ର କାନ୍ଦିବାର କାରଣ ବୁଝି ପାରି ନଥିଲି ତା' ପରେ ଲୁହ ଭିଜା ନିର୍ବାକ୍ ଆଖିରେ ସେ କେବଳ ନିରବରେ ମୋ ଆଡ଼େ ଚାହିଁ ଠିଆ ହୋଇ ରହିଲା ।

ମୁଁ କହିଲି, "ତୁମେ ଯାଅ ଏଥର ଅମ୍ମୁ !" ଅମ୍ମୁ ଚାଲିଗଲା । ନିର୍ବାକ୍ ଆଖିରେ ଦୁଇଧାର ଲୁହ ପୁଣି ଏତେ ମୁଖର ହୋଇପାରେ, ଏତେ କଥା କହିପାରେ, ଏଇ ଅଭିଜ୍ଞତା ଆଗରୁ ମୋର କେବେ ନଥିଲା । ଦୁଇ ଧାର ଲୁହ ପୁଣି ମଣିଷର ଚେହେରାକୁ ଏପରି ସମ୍ବେଦନଶୀଳ କରିଦେଇପାରେ, ତାହା ମଧ୍ୟ ଇତିପୂର୍ବରୁ ମୁଁ ଜାଣିନଥିଲି ।

୨୪/୦୯/୮୮

# ଝଡ଼ ଓ ଆକାଶ

କଟକ ଜେଲ୍‌ର ସେଲ୍‌-ୱାର୍ଡ଼... ଏଠାରେ ମୋର ପାଖ ସେଲ୍‌ରେ ସେତେବେଳେ ରହିଥିଲେ ଜଣେ ପ୍ରସିଦ୍ଧ ବାବା । ଥରେ ପୋଲିସ୍ ସହିତ ତାଙ୍କ ଶିଷ୍ୟମାନଙ୍କର ରକ୍ତାକ୍ତ ସଂଘର୍ଷ ଘଟିଥିଲା । ସେଥିରେ ଉଭୟ ପକ୍ଷରୁ ମୃତାହତ ହୋଇଥିଲେ । ସେହି ସଂକ୍ରାନ୍ତରେ ପୋଲିସ୍ ପକ୍ଷରୁ ଯେଉଁ ଫୌଜଦାରୀ ମୋକଦ୍ଦମା ହୋଇଥିଲା, ସେଥିରେ ଏଇ ନିରୀହ ବାବା ଜଣକ କାରାଦଣ୍ଡ ସଜା ଭୋଗୁଥିଲେ ।

କାଳେକାଳେ ଶିଷ୍ୟ ଓ ଭକ୍ତମାନଙ୍କର ଦୁଷ୍କୃତ ପାଇଁ ଗୁରୁ ଓ ବାବାମାନେ ଏହିପରି ଦୁର୍ଭୋଗ ଭୋଗି ଥାଆନ୍ତି । ଏହା ପୂର୍ବରୁ ବାବାଙ୍କୁ ମୁଁ କେବେ ଦେଖିନଥିଲି । କିନ୍ତୁ ତାଙ୍କର ଅଲୌକିକ ସାଧନା ଓ ସିଦ୍ଧି ସଂପର୍କରେ ବହୁ କାହାଣୀ ତାଙ୍କୁ ସେତେବେଳେ ଗୋଟିଏ କିଂବଦନ୍ତିରେ ପରିଣତ କରିଦେଇଥିଲା । ସେ ଜଣେ ଅଦ୍ଭୁତକର୍ମା ତାନ୍ତ୍ରିକ ଓ ଅଲୌକିକ ଶକ୍ତିସଂପନ୍ନ ହଠଯୋଗୀ ରୂପେ ପରିଚିତ ଥିଲେ । କିନ୍ତୁ ମୁଁ ପ୍ରଥମେ ତାଙ୍କୁ ସେଲ୍‌-ୱାର୍ଡ଼ ବାହାରେ ଦେଖି, ଖୁବ୍ ବିସ୍ମିତ ହୋଇ ଉଠିଥିଲି । ପ୍ରାୟ ପାଞ୍ଚଫୁଟ ଉଚ୍ଚତାର ଶୀର୍ଣ୍ଣକାୟ ବୃଦ୍ଧଟିଏ, ଯଦ୍ୟପି ବୟସ ଅନୁମାନ କରିବା କଠିନ ଥିଲା । ମୁଣ୍ଡରେ ଗୋଛାଏ ଅଲରା ବାଳ, ଦୁଇ କାନ୍ଧ ପର୍ଯ୍ୟନ୍ତ ଲମ୍ବି ଆସିଥିଲା । ମୁହଁରେ ନିଶ କିମ୍ବା ଦାଢ଼ିର ଲେଶ ମାତ୍ର ନଥିଲା । ବଳୀ ରେଖାଙ୍କିତ ଶୀର୍ଣ୍ଣ ମୁହଁଟିକୁ ଦେଖିଲେ ସିଏ ପୁରୁଷ କି ନାରୀ ସେ ସଂପର୍କରେ ସଂଶୟ ଜନ୍ମିବା ଅସମ୍ଭବ ନଥିଲା । ତାଙ୍କ ଅପ୍ରଶସ୍ତ ଛାତିର ଦୁଇ ମାଂସପେଶୀ କିନ୍ତୁ ଈଷତ୍ ସୁସ୍ପଷ୍ଟ ଥିଲା । କଣ୍ଠସ୍ୱର ଭାରି ନମ୍ର ଓ ଅନୁଚ୍ଚ । ସେ ତାଙ୍କ ପରିଚର୍ଯ୍ୟା ପାଇଁ ନିଯୁକ୍ତ ଥିବା ଲାଇଫର କୟଦୀକୁ କିଛି କହିବା ବେଳେ, ତାହା ଏ କାନରୁ ସେକାନକୁ ସୁଦ୍ଧା ଜଣାଯାଉ ନଥିଲା । ତାଙ୍କ ସହିତ କେତେଥର କଥାବାର୍ତ୍ତା ହେବାପାଇଁ ଚେଷ୍ଟା କରିଥିଲି । ମାତ୍ର ସେ ସବୁବେଳେ ନିରବ ରହୁଥିଲେ । ତାଙ୍କ ସେଲ୍ ଭିତରେ ଦିନସାରା ସିଏ କ'ଣ କରନ୍ତି, ଜାଣିବାର ମଧ୍ୟ ଉପାୟ ନଥିଲା । ଅଧିକାଂଶ ସମୟରେ ସେ ସେଲ୍ ଭିତରେ ଲୁହା ଗାରଦ ଆଉଜାଇ ଦେଇ ତା' ଭିତରେ ରହିଥାନ୍ତି । ନିଜର ଶରୀର ରକ୍ଷା

ବ୍ୟତୀତ ତାଙ୍କର ଅନ୍ୟ କାର୍ଯ୍ୟ ନଥିଲା । ନିଜ ହାତରେ ସେ ତାଙ୍କ ସେଲ୍ ଭିତର ଓଳାଇ ପରିଷ୍କାର କରନ୍ତି । ସେଲ୍ ଖଞ୍ଜା ଭିତରେ କୂଅରୁ ନିଜ ହାତରେ ବାଲ୍‌ତି ବାଲ୍‌ତି ପାଣି କାଢ଼ି ଗାଧାନ୍ତି । ଦିନେ ଦିନେ କୂଅ ମୂଳେ ବସି ନିଜ ଗେରୁଆ ବେଢ଼ଣ ସାବୁନ ଦେଇ କାଚନ୍ତି । ଏସବୁ କାର୍ଯ୍ୟପାଇଁ ସେ ଲାଇଫର୍ କାୟଦୀକୁ କେବେ କହୁନଥିଲେ । ଆଉ ଦିନେଦିନେ ଖରାବେଳେ ସେଲ୍ ୱାର୍ଡ଼ ଅଗଣାରେ ଗୋଟାଏ ବୁଢ଼ା ନିମ୍ବଗଛ ମୂଳେ ଖରାରେ ବସି, ସତରଞ୍ଜି ବିଛାଇ ତା' ଉପରେ ଗୁଡ଼ାଏ ନିମପତ୍ର ଶୁଖାନ୍ତି । ସେତେବେଳେ ତାଙ୍କ ପାଖରେ ପଡ଼ିଥାଏ ଖଣ୍ଡେ ଦଶମସ୍କନ୍ଧ ଭାଗବତ ବହି । ବେଳେବେଳେ ସେଥିରୁ କେଇ ପୃଷ୍ଠା ମଧ୍ୟ ସେ ପଢ଼ନ୍ତି ତଳକୁ ମୁଣ୍ଡ ନୁଆଁଇ । ତାଙ୍କ ଚାରିପାଖେ ଘେରି ରହିଥିଲା ରହସ୍ୟମୟ ଶାନ୍ତ ନିରବତା । ସେଲ୍- ୱାର୍ଡ଼ର ନିର୍ଜନତାକୁ ମୋ ପାଇଁ ସେ ଆହୁରି ବଢ଼ାଇ ଦେଇଥିଲେ ।

ଦିନେ ସନ୍ଧ୍ୟା ୬ଟା ପରେ ୱାର୍ଡ଼ମାନଙ୍କରେ ଲୁହାଗାରଦ ସବୁ ବନ୍ଦ ହୋଇଯାଇଥିଲା । ବନ୍ଦୀମାନଙ୍କର ରାତି ଖାଇବା ସେଲ୍ ଭିତରେ ଦିଆଯାଇ ସରିଥିଲା । ମିଞ୍ଜି ମିଞ୍ଜିକା ଇଲେକ୍‌ଟ୍ରିକ୍ ବଲ୍‌ବ ସବୁ ଜଳି ଉଠିଥିଲା । ବାବାଙ୍କ ସେଲ୍ ଭିତରୁ ହଠାତ୍ ଗୋଟିଏ ଭୀଷଣ ଚିତ୍କାରରେ ମୁଁ ଚମକି ଉଠିଲି । ତାହା ଯେପରି ମଣିଷ କଣ୍ଠର ଚିତ୍କାର ନଥିଲା । ଗୋଟାଏ ବାଘର ହେଣ୍ଟାଳ ସେଲ୍‌ୱାର୍ଡ଼ର ନିଶୁତି ଯେପରି ଥରାଇ କମ୍ପାଇ ଦେଉଥିଲା । ସେଲ୍ ଚଟାଣ ଉପରେ ଥାଳି, ଡାଟିଆ ଓ ଗିଲାସ ପ୍ରଭୃତି ବାସନ ଫିଙ୍ଗାଯିବା ବେଳେ ଚଡ଼ଚଡ଼ି ପରି ସେ ଶବ୍ଦ ପ୍ରତିଧ୍ୱନିତ ହୋଇ କଡ଼୍‌କଡ଼୍ କରି ଉଠୁଥିଲା । ତା'ରି ଭିତରେ ଗର୍ଜନ ଶୁଣାଯାଉଥିଲା, "ନା ବାବା ଖାଇବା ନାହିଁ ।" ବ୍ୟାପାର କ'ଣ, ସ୍ଥିର କରି ନପାରି ମୁଁ ଘୋର ଚକିତ ହୋଇଉଠିଥିଲି । ସେଲ୍ ଭିତରେ ଇଏତ କଦାପି ସେଇ ଶାନ୍ତ, ନିରବ ପ୍ରଭୃତିର ବାବାଙ୍କ ବିସ୍ଫୋରଣ ହୋଇ ନପାରେ । ତା' ହେଲେ କିଏ ସେପରି ତର୍ଜନ ଗର୍ଜନ କରୁଛି...ନା, ବାବା ଖାଇବ ନାହିଁ ?

ହଠାତ୍ ଆଲାର୍ମ ହୁିସିଲ୍ ବାଜିଲା । ତା'ପରେ ୱାର୍ଡ଼ ବାରନ୍ଦାରେ ଅନେକ ଭାରି ବୁଟ୍ ଯୋତାର ମଚ୍‌ମଚ୍ ଶବ୍ଦ ଓ କୋଳାହଳ । ବୋଧହୁଏ ଜେଲ୍‌ର ସୁପରିଣ୍ଟେଣ୍ଡେଣ୍ଟ ଓ ଅନ୍ୟମାନେ, ସେଠାକୁ ଆସିଥିଲେ । କିଛି ସମୟ ଧରି ସେମାନେ ସେଲ୍ ଭିତରେ ବାବାଙ୍କୁ କ'ଣ ଯେପରି ବୁଝାବୁଝି କଲେ । ପ୍ରାୟ ଅଧଘଣ୍ଟା ପରେ ବାବାଙ୍କ ସେଲ୍‌ର ଲୁହା ଗାରଦ ପୁଣି ଶବ୍ଦ କରି ବନ୍ଦ ହୋଇଗଲା । ତା'ପରେ ପୁଣି ସବୁ ଚୁପ୍‌ଚାପ୍ । ନିଷ୍ଫଳ ନିରବତା । କେତେବେଳେ ପରେ ମୁଁ ସେଇ ବାରନ୍ଦାରେ ରାତି ୱାର୍ଡ଼ରକୁ ଦେଖି, ଘଟଣା କ'ଣ ବୋଲି ପଚାରିଲି । ସେ କହିଲା, "ଇଏ ପ୍ରଥମ ଥର ନୁହେଁ, ଏହା ଆଗରୁ କେତେଥର ଏହିପରି କାଣ୍ଡ ଘଟି ଯାଇଛି । ସେ ବାବା କହନ୍ତି, ତାଙ୍କ ରାତି ଖାଇବା ସୂର୍ଯ୍ୟାସ୍ତ ପୂର୍ବରୁ

ଦିଆଯିବା ଦରକାର । ଯେଉଁଦିନ ସୂର୍ଯ୍ୟାସ୍ତ ପରେ, ତାଙ୍କୁ ରାତି ଖାଇବା ଦିଆଯାଏ ସେଇଦିନ ସେ ଏହିପରି କାଣ୍ଡ ଭିଆଇ ଥାଆନ୍ତି । କିନ୍ତୁ ସେଇ ବାବା ଯିଏ କଥା କହିଲେ, ଏକାନରୁ ସେ କାନକୁ ଶୁଭେ ନାହିଁ । ଯିଏ ଏପରି ମୌନ ଓ ନିରବ, ତାଙ୍କ କଣ୍ଠରେ ବାଘର ହେଣ୍ଟାଳ ପରି କ୍ରୁଦ୍ଧ ଗର୍ଜନ କିପରି ସମ୍ଭବ ହୋଇପାରେ, ତାହା ମୋତେ ଘୋର ବିସ୍ମିତ କରିଦେଇଥିଲା ।

ତା' ପରଦିନ ସକାଳ ଆଠଟା ବେଳେ ମୁଁ ସେଇ ୱାର୍ଡ଼ ବାହାରକୁ ବୁଲିଯିବା ପାଇଁ ବାହାରିବା ବେଳେ, ଦେଖିଲି ବାବା ଗାଧୋଇ ପାଧୋଇ, ସେଇ ଅଗଣାରେ ବୁଢ଼ା ନିମଗଛ ତଳେ ବସି ନିମପତ୍ର ଶୁଖାଉଛନ୍ତି । ପାଖରେ ପଡ଼ିଛି ଦଶମସ୍କନ୍ଧ । ଆଉ ଚାରିପଟେ ଘେରି ତାଙ୍କର ଶାନ୍ତ ନିରବତା । ତାଙ୍କର ପାଖରେ କେତେ ମିନିଟ୍ ମୁଁ ଛିଡ଼ା ହେବା ସତ୍ତ୍ୱେ ସେ ମୋ ଆଡ଼େ ଚାହିଁଲେ ସୁଦ୍ଧା ନାହିଁ । ଗତ ରାତିରେ ଏଇ ଶାନ୍ତ ମୌନ ନିରବ ମଣିଷଟି କିପରି ପ୍ରଚଣ୍ଡ କ୍ରୋଧରେ ବାଘପରି ହେଣ୍ଟାଳୁ ଥିଲା, ତାହା ପ୍ରକୃତରେ ମୁଁ ଚିନ୍ତା ସୁଦ୍ଧା କରିପାରୁ ନଥିଲି... ଆଜି ସୁଦ୍ଧା ସେ ରହସ୍ୟ ମୋ ନିକଟରେ ଅସମାଧିତ ହୋଇ ରହିଛି । ଆକାଶରେ ଝଡ଼ ଥାଏ ନିଶ୍ଚୟ, କିନ୍ତୁ ଝଡ଼ ଭିତରେ ତ ଆଉ ଆକାଶ ନଥାଏ, ବାବାଙ୍କ ଭିତରେ ନିଶ୍ଚୟ ଥିଲା ପ୍ରଚଣ୍ଡ କ୍ରୋଧ ଓ ବାଘର ହେଣ୍ଟାଳ । କିନ୍ତୁ ସେଇ କ୍ରୋଧ ଓ ହେଣ୍ଟାଳ ଭିତରେ ବାବା ତ ନଥିଲେ !

୦୧/୧୦/୮୮

# ପାଇକା କୂଳରେ ଷେଣ୍ଢ

ତିର୍ତ୍ତୋଲ୍-ପାଟକୁରା ଦୋସମାଳିରେ ପାଇକା ନଦୀବନ୍ଧ ଉପରେ ଜିପ୍‌ରେ ଯାଉଯାଉ ଗୋଟାଏ କିମ୍ଭୂତ ଦୃଶ୍ୟ ଦେଖି, ବନ୍ଧକଡ଼ରେ ଗୋଟାଏ ଗଛମୂଳେ ମୁଁ ଅଟକି ଯାଇଥିଲି। ଭାଦ୍ରବ ଅପରାହ୍ଣର ଖରା ବନ୍ଧ ତଳେ ଧାନ ବିଲଗହୀର ଉପରେ ତଥାପି ମହଳ ପଡ଼ିନଥିଲା। ବିଲ ଗହୀରରେ ବର୍ଷାପୁଷ୍ଟ ଧାନଗଛ ସବୁ ଭାଦ୍ରବ ଖରାକୁ ଯେପରି ଆକଣ୍ଠ ପିଇଯାଉଥିଲେ। ସେହି ଗହୀର ଭିତରେ ଗୋଟିଏ ଷେଣ୍ଢ ପଶି ଫସଲ ଉଜାଡୁ ଥିବାବେଳେ ଦଳେ ଲୋକ ହାତରେ ଠେଙ୍ଗାବାଡ଼ି ଧରି ଷେଣ୍ଢକୁ ପିଟିପାଟି ତଡ଼ିବାପାଇଁ ତା' ପଛରେ ଚିତ୍କାର କରି ଛୁଟିଥିଲେ। ଷେଣ୍ଢଟି ସେମାନଙ୍କ ପ୍ରହାରରୁ ନିଷ୍କୃତି ପାଇବାପାଇଁ ଚକ୍ରୀ କାଟି ଦଉଡୁଥିଲା। ଆଉ ବେଳେବେଳେ ସୁଯୋଗ ପାଇଲେ ଧାନଗଛ ସବୁ ଚାକୁଲେଇ ଯାଉଥିଲା। ଲିଲିପୁଟମାନଙ୍କ ପରି ଦେଖାଯାଉଥିବା ସେ ମଣିଷମାନେ ଷେଣ୍ଢ ପଛରେ ଯେତିକି ଗୋଡ଼ାଉଥିଲେ, ଷେଣ୍ଢ ସେତିକି ଚକ୍ରୀକାଟି ସେମାନଙ୍କୁ ଫାଙ୍କି ଦେଉଥିଲା। ବେଳେବେଳେ ଗୋଟାଏ ଦୁଇଟା ପ୍ରହାର ତା' ପିଠି ଉପରେ ଅବଶ୍ୟ ପଡ଼ିଯାଉଥିଲା। ମାତ୍ର ସେଥିପ୍ରତି ସେ ଥିଲା ସଂପୂର୍ଣ୍ଣ ନିର୍ଲିପ୍ତ। ଧାନଗଛ ଚାକୁଲେଇବା ବେଳେ ମଧ୍ୟ ସେ ନିତାନ୍ତ ନିର୍ଲିପ୍ତ ଦିଶୁଥିଲା।

କିଛିକ୍ଷଣ ପରେ ଷେଣ୍ଢଟା ହଠାତ୍ ଏକ ମୁହାଁ ଉର୍ଦ୍ଧ୍ୱପୁଚ୍ଛ ହୋଇ ଦଉଡ଼ି ଦଉଡ଼ି ଗହୀର ଭିତରୁ ଅନ୍ୟଆଡ଼େ ବାହାରିଗଲା। ଲିଲିପୁଟୀଆନ୍ ଚେହେରାର ସେଇ ମଣିଷମାନେ ଷେଣ୍ଢ ଉଦ୍ଦେଶ୍ୟରେ ଗାଳିଗୁଲଜ କରିକରି ଗାଁକୁ ଫେରିବାପାଇଁ ନଦୀବନ୍ଧକୁ ଉଠିଲେ। ସେମାନେ ମୋର ପାଖ ହୋଇଯିବାରୁ ସେମାନଙ୍କ ଭିତରୁ ଜଣକୁ ମୁଁ ପଚାରିଲି, "ଏ ଷେଣ୍ଢ ମହାଦେବଙ୍କର ଷେଣ୍ଢ ନୁହେଁ କିହୋ ? ଏହାକୁ ଗୋଡ଼େଇଗୋଡେଇ ନିର୍ଘାତ ପିଟୁଛ !" ସେ ଲୋକଟି ଉତ୍ତର ଦେଲା, "ଏହା ଭେଟରନାରୀ ଷେଣ୍ଢ। ଷ୍ଟକ୍‌ମ୍ୟାନ୍ ସେଣ୍ଟରରେ ରହେ। ଷ୍ଟକ୍‌ମ୍ୟାନ୍ ତା ଖୋରାକ ମାରୁଛି। ଷେଣ୍ଢ ଖାଇବାକୁ ନପାଇ ଆମ ଫସଲ ଏମିତି ଉଜାଡୁଛି। ତାକୁ ନ ପିଟି ଆମେ ଆଉ କ'ଣ କରନ୍ତୁ ?" ମୁଁ କହିଲି, "ଷ୍ଟକ୍‌ମ୍ୟାନ୍ ଯଦି

କ୍ଷେତ୍ରର ଖୋରାକ ଲୁଟିଲା ତା' ହେଲେ ପେଟ ବିକଳରେ ସିଏ ତମ କ୍ଷେତ ନଉଜାଡ଼ି ଆଉ କ'ଣ କରନ୍ତା ? ତୁମେ ଯାଇ ଷକ୍‌ମାନ୍‌କୁ ଧରୁନାହଁ ! ଷେଣ୍ଢ ଦାନା ସିଏ ମାରୁଛି କାହିଁକି ? ଷେଣ୍ଢ ଖାଇବାକୁ ଦେଉନାହିଁ କାହିଁକି ? ଷେଣ୍ଢକୁ ଯେତେ ପିଟିଲେ ବି ସିଏ ତ ତମ କ୍ଷେତ ଉଜାଡ଼ିବ।" ସେମାନଙ୍କ ଭିତରୁ ବୁଢ଼ା ବୟସର ଜଣେ ଲୋକ କହିଲା, "ସିଏ ସରକାରୀ ଷେଣ୍ଢ। ଷକ୍‌ମାନ୍ ତାକୁ ଖାଇବାକୁ ଦେଲା କି ନ ଦେଲା ସରକାର ବୁଝିବା କଥା। ଆମ ବିଲରେ ଷେଣ୍ଢ ପଶିଲେ, ଆମେ ତାକୁ ପିଟିବୁ !" ସେ ଲୋକମାନେ ସେମାନଙ୍କ ବାଟରେ ଚାଲିଗଲେ। ମୁଁ ମଧ୍ୟ ମୋ ବାଟରେ ଚାଲିଆସିଲି।

ତା' ପରଦିନ ସେଇ ରାସ୍ତାରେ ମୁଁ ଜୀପ୍‌ରେ ଫେରୁଛି। ଖରାବେଳ। ବିଲ ଗହୀର ସବୁ ଖରାରେ ଝାଇଁଝାଇଁ କରୁଛି। ଚାରିଆଡ଼ ନିର୍ଜନ। ହଠାତ୍ ଦେଖିଲି ଗଲାକାଲିର ସେଇ ଷେଣ୍ଢଟି ଅନ୍ୟ ଏକ ଗହୀରରେ, ବନ୍ଧ କଡ଼ରେ ଗୋଟାଏ ଧାନ ବିଲ ଭିତରେ ପଶି ବେଶ୍ ନିର୍ଲିପ୍ତ ଭାବରେ ଧାନଗଛ ସବୁ ଚାକୁଳେଇ ଯାଉଛି। ଜିପ୍ ଅଟକାଇ ଷେଣ୍ଢଟିକୁ ଦେଖିବାର ଆଗ୍ରହ ଏଡ଼ାଇ ପାରିଲି ନାହିଁ। ଷେଣ୍ଢ ଧାନଗଛ ସବୁ ଚାକୁଳେଇ ଯିବାବେଳେ ସଂପୂର୍ଣ୍ଣ ନିର୍ଲିପ୍ତ ଦିଶୁଥିଲା। ସେ ଯେପରି କେବଳ ଉଦର ତାଡ଼ନାରେ ଧାନଗଛ ସବୁ ଗୋଗ୍ରାସରେ ଗିଳିଯାଉଥିଲା ସିନା, ନୋଇଲେ ଏଥିରେ ତା'ର ଆନନ୍ଦ ବା ଉଲ୍ଲାସ ନଥିଲା। ଅଥବା ପ୍ରହାରରେ ତାହାର ଗ୍ଲାନି ନଥିଲା। ସୁଖ, ଦୁଃଖ, ଆନନ୍ଦ, ବିଷାଦ ପ୍ରତି ସେ ଯେପରି ଥିଲା ବିଗତମନା। ଷେଣ୍ଢ ଆଡ଼େ ଚାହିଁ ଭାବୁଥିଲି ମୁଁ ଯଦି ଏଇ ଭେଟରନାରୀ ଷେଣ୍ଢଟି ପରି ନିର୍ଲିପ୍ତ ହୋଇ ପାରନ୍ତି। କିନ୍ତୁ ମୋ ଭିତରର ମଣିଷଟି ମୋତେ ଉପହାସ କରୁଥିଲା। "ତା'ହେଲେ ତୁ ତ ଗୋଟାଏ ମହାଯୋଗୀ ହୋଇ ଯାଆନ୍ତୁରେ !" ଜୀପ୍‌ରେ ଫେରିବାବେଳେ ମୋର ମନେହେଉଥିଲା, କେଜାଣି ଯୋଗୀ ହୋଇପାରିବା ହୁଏତ ସମ୍ଭବ ହୋଇପାରେ; କିନ୍ତୁ ସେଇ ଷେଣ୍ଢଟି ପରି ମହାଯୋଗୀ ହୋଇପାରିବା କସ୍ମିନ୍‌କାଳେ ନୁହେଁ।

୦୮/୧୦/୮୮

# କବିର ଉତ୍ତରାଧିକାର

ଗାଁ ଗହଳରେ ସଭା କରିବାକୁ ଯିବାରେ ଗୋଟାଏ ବିପଦ ଥାଏ । ନିର୍ଦ୍ଧାରିତ ସମୟରେ ପହଞ୍ଚିଲେ, ଉଦ୍ୟୋକ୍ତା କହନ୍ତି, ଲୋକେ ବିଲ ବାଡ଼ିରୁ ଫେରି ନାହାନ୍ତି ସଭା ପାଇଁ ଡେରି ହେବ । ଆଉ ଡେରିରେ ପହଞ୍ଚିଲେ ଉଦ୍ୟୋକ୍ତା ଅଭିଯୋଗ କରନ୍ତି, ଲୋକେ ଅପେକ୍ଷାରେ ବସି ବସି ଏଇ ପଳେଇଗଲେ । ସେଥର କୋଠାପଦାରେ ସଭା ପାଇଁ ନିର୍ଦ୍ଧାରିତ ସମୟରେ ପହଞ୍ଚି ଉଦ୍ୟୋକ୍ତାଙ୍କ ପାଖରୁ ଶୁଣିଲି "ଭୋଦୁଅ ମାସ ବିଲ ବଛା କାମ ଚାଲିଛି । ଲୋକେ ବିଲବାଡ଼ିରୁ ଫେରି ନାହାନ୍ତି ।" ମୁଁ ତେଣୁ ନିର୍ଜନ ସଭା ମଣ୍ଡପରେ ମୁହଁ ଫୁଲାଇ ବସି ରହିବା ପରିବର୍ତ୍ତେ, ପାଖର ମାଳିହତା ଗାଁକୁ ଆସିଲି । ଗଣକବି ବୈଷ୍ଣବ ପାଣିଙ୍କ ବାସଗୃହ ଦେଖି ଆସିବାପାଇଁ।

ଗାଁ ମୁଣ୍ଡରେ ଗଣକବିଙ୍କ ବାସଗୃହ କହିଲେ, ସାମନା ପଟକୁ ପ୍ରାୟ ଦୁଇ ବଖରା ଚାଳଘର । ଦାଣ୍ଡପଟେ ପ୍ରାୟ ଆଠଗୁଣ୍ଠ ଜମି । ଏକଦା ଯେଉଁ ବାଡ଼ାବନ୍ଦୀ ହୋଇଥିଲା, ଅନେକ ସ୍ଥାନରେ ତାହା ଭାଙ୍ଗି ଯାଇଥିଲା । ଦାଣ୍ଡରେ ପୂର୍ବପଟକୁ ପ୍ରାୟ ଦୁଇଗୁଣ୍ଠ ଜମିରେ ଛନଛନିଆ ବାଇଗଣ କିଆରି । ଜିପ୍ ଶବ୍ଦ ଶୁଣି ଘରଭିତରୁ ପ୍ରାୟ ଷାଠିଏ ବର୍ଷର ଜଣେ ବୃଦ୍ଧ ବାହାରି ଆସି, ଆମକୁ ଦାଣ୍ଡଘର ଭିତରକୁ ଡାକିନେଲେ । ଘରର ଗୋଟାଏ କୋଣରେ ବିମାନ ଭିତରେ ରାଧାକୃଷ୍ଣଙ୍କର ବିଗ୍ରହ । ଗଣକବି ଏଇ ବିଗ୍ରହଙ୍କ ସେବା, ଆରାଧନା କରୁଥିଲେ ବୋଲି ସେ କହିଲେ ଓ ଆମକୁ ତୁଳସୀପତ୍ର ପାଦୁକ ଦେଲେ । ମୁଁ ବାହାରକୁ ଆସିବା ପରେ ସେ କହିଲେ, ସେ ହେଉଛନ୍ତି ଗଣକବିଙ୍କର କକେଇପୁଅ ଭାଇ । କବିଙ୍କ ମୃତ୍ୟୁପରେ ସେ ତାଙ୍କ ଘରବାଡ଼ି ସମ୍ଭାଳୁଛନ୍ତି ଓ ଠାକୁରସେବା କରୁଛନ୍ତି ଇତ୍ୟାଦି । ଏହି ସମୟରେ ଖଣ୍ଡେ ମଇଳା ଧୋତି ଆଉ ହାଫ୍ ସାର୍ଟ ପିନ୍ଧା ଜଣେ ଯୁବକ କାନ୍ଧରେ ଝୁଲାମୁଣିଟିଏ ଝୁଲାଇ କେଉଁଆଡୁ ଆସି ସେଠାରେ ଠିଆ ହୋଇଥିଲେ, ତାହା ମୁଁ ଲକ୍ଷ୍ୟ କରିନଥିଲି । ଯୁବକଟି ଝୁଲାମୁଣି ଭିତରୁ ଗଣକବିଙ୍କର ଖଣ୍ଡିଏ ଆତ୍ମଚରିତ ବହି କାଢ଼ି କହିଲେ, ଗଣକବିଙ୍କର ପିଉସା ଘର ଲେଖାରେ ସେ ଗଣକବିଙ୍କର ନାତି । ଗଣକବି

କଟକ ବଡ଼ ଡାକ୍ତରଖାନାରେ ପଡ଼ିଥିବାବେଳେ, ସେ ଏକୁଟିଆ ତାଙ୍କର ସବୁ ସେବା କରୁଥିଲେ । ଏକଥା ଗଣକବି ଆତ୍ମଚରିତର ଏତେ ନମ୍ବର ପୃଷ୍ଠାରେ ଲେଖି ଯାଇଛନ୍ତି । ଏତକ କହି ସେ ମୋ ନାକ ଆଗରେ ବହିର ପୃଷ୍ଠାଟି କାଢ଼ି ଦେଖାଇବାକୁ ଯାଉଥିଲେ । ମୁଁ ପଚାରିଲି, "କ'ଣ ହେଲା ସେଇଠୁ ?"

ସେ ଉତ୍ତର ଦେଲେ, "ନାତି ହିସାବରେ ଏ ଘରଡିହ ଉପରେ ତାଙ୍କର ଅଧିକାର ପାବୁଛି । ହେଲେ ଇଏ ଜବରାଣୀ ଦଖଲକରି ଯାଉଛନ୍ତି ।" ଯୁବକଟି ହୁଏତ ଭାବିଥିଲା ମୁଁ ଜଣେ ନେତା ମଣିଷ । ଉପରବାଲାଙ୍କ ଧରାଧରି କରି, ମୁଁ ତାକୁ ହୁଏତ ସାହାଯ୍ୟ କରିପାରିବି । ମୁଁ ଘୋର ବିରକ୍ତିରେ କହିଲି, "ଇଏ କୋର୍ଟ କଚେରି ମାମଲା । ମୁଁ ଏଥିରେ କ'ଣ କରିପାରିବି ?"

ବୁଢ଼ା ଜଣକ କହିଲେ, "ବାବୁ ଯେ ଖାସା କଥା କହିଲେ, କିରେ ତୋର ପାବୁଛି ତ ତୁ ଯାଇ କଚେରିରେ ମୋକଦ୍ଦମା କର । ମୁଁ ଗଣକବିଙ୍କ କକେଇ ପୁଅ ଭାଇ । ତାଙ୍କ ସଂପତ୍ତି ତାଙ୍କ ଅନ୍ତେ ମୁଁ ନ ପାଇ ଆଉ କ'ଣ ତୁ ପାଇବୁ ?" ଗଣକବିଙ୍କ ଉତ୍ତରାଧିକାର ଘେନି ଏ ତୁଚ୍ଛ ବିବାଦ ମଧ୍ୟରେ ମୋ ମନଟା ତିକ୍ତ ହୋଇ ଉଠିଲା । ମୁଁ ଉଭୟ ପକ୍ଷଙ୍କୁ କହିଲି, "ତୁମେ ଏଇ ସାମାନ୍ୟ ବାଇଗଣ ବାଡ଼ିପାଇଁ ଝଗଡ଼ା କରୁଛ । ଗଣକବିଙ୍କର କେତେ ଗୀତାଭିନୟ ବହି, କଟକରେ ଜଣେ ବହିଦୋକାନୀ ବିକ୍ରି କରୁଛି । ସିଏ ବି ତ ଗୋଟାଏ ବଡ଼ ସଂପତ୍ତି । ତମ ଭିତରୁ କେହି ଜଣେ ସେ ବହି ସବୁର ସତ୍ତ୍ୱ ନେଇ ଯାଆନ୍ତୁ । ଆଉ ଅନ୍ୟ ଜଣକ ନିଅନ୍ତୁ ଏଇ ବାଇଗଣ କିଆରୀ ।" ବୁଢ଼ା ଜଣକ କହିଲେ, "ବାବୁ ଯେମିତି କହୁଛନ୍ତି, ତୁ ସେ ବହିଗୁଡ଼ାକ ନଉନୁ ଯୋଗୀ ।" ଘୋର ବିରକ୍ତିରେ ଉତ୍ତର ଦେଲା, "କାହିଁକି ତୁମେ ସେ ସବୁ ନଉନା ଅଜା । ଏ ଘରର ଡିହ ମୋତେ ପାବୁଛି ।"

ଏଠାକୁ ଆସିଥିଲି ଗୋଟାଏ ଆବେଗରେ । କିନ୍ତୁ ଗଣକବିଙ୍କର ଉତ୍ତରାଧିକାରୀ ଘେନି ତୁଚ୍ଛ କଳହ ମଧ୍ୟରେ ସେ ଆବେଗର ଆଉ ଲେଶ ମାତ୍ର ନଥିଲା । ବରଂ ଗୋଟାଏ ଅକଥନୀୟ ବିଷାଦ ଓ ଗ୍ଳାନିରେ ମୋର ମନ ଭାରି ହୋଇ ଉଠିଲା । ପର ମୁହୂର୍ତ୍ତରେ ମନେ ହେଲା, ଜଣେ ଲେଖକ ବା କବିର ତା'ର ନାମ ବ୍ୟତୀତ ଅନ୍ୟ କିଛି ତ ଉତ୍ତରାଧିକାର ନଥାଏ । କିନ୍ତୁ ଉତ୍ତରାଧିକାରୀମାନେ ସେ ନାମରୁ ପାଇବେ ବା କ'ଣ ? ତାହା ତ ଆଉ ଛନଛନିଆ ବାଇଗଣ କିଆରୀ ହୋଇଯିବ ନାହିଁ ।

୧୫/୧୦/୮୮

# ପୃଥିବୀର ମନ୍ଥରତମ ମଣିଷ

ପାଖ ଘରେ ଟେଲିଭିଜନରେ ସିଓଲ ଅଲମ୍ପିକ୍‌ର ଛବି ଚାଲିଛି । ଆମ ଘର ଲୋକେ ହଠାତ୍ କ୍ରୀଡ଼ା ସଚେତନ ହୋଇ ଉଠିଛନ୍ତି । ନିଜ ନିଜର ଚାଞ୍ଚଲ୍ୟହୀନ, ଘଟଣା ବିହୀନ ଜୀବନରେ ସିଓଲ ଅଲମ୍ପିକ୍ ସର୍କସର ଛବି, ସେମାନଙ୍କର ଏକ ବିକଳ୍ପ ପରିତୃପ୍ତି । ମାତ୍ର ମୁଁ ଛାତକୁ ଚାହିଁ ଶୋଇଛି । ହଠାତ୍ ବୁବୁନ୍ ମୋ ପାଖକୁ ଦଉଡ଼ି ଆସି କ୍ୱିଜ୍ ମାଷ୍ଟର ଠାଣିରେ ମୋତେ ପଚାରିଲା, "ଆର୍ଥର ଫାଷ୍ଟେଷ୍ଟ୍ ମ୍ୟାନ୍ କିଏ ?" ଟି.ଭି.ରୁ ସେ ବୋଧହୁଏ କିଛି ଗୋଟାଏ ନୂଆ ତଥ୍ୟ ପାଇଛି ଓ ତା' ତୁଳନାରେ ମୁଁ କିପରି ଗୁଆଁର ତାହାର ପ୍ରମାଣ ଦେବାକୁ ଚାହୁଁଛି । ମୁଁ ଓଲଟି ପଚାରିଲି ପୃଥିବୀରେ ସବୁଠାରୁ ମନ୍ଥର, ମାନେ ବେଶି ସ୍ଲୋ ମାନେ କଇଁଛଠାରୁ ସୁଦ୍ଧା, ତୁମେ ଜାଣିଛ ? ସିଏ ମୋଠାରେ ଆଗ୍ରହ ଲକ୍ଷ୍ୟ ନକରି କହିଲା, "ବେନ୍ ଜନସନ୍ ଆର୍ଥର ଫାଷ୍ଟେଷ୍ଟ୍ ମ୍ୟାନ୍ ।" ଶହେ ମିଟର ସେ ଦୌଡ଼ିଲା ନଅ ଦଶମିକ ଚଉବନ ସେକେଣ୍ଡରେ । ଫାଷ୍ଟେଟ୍ ମ୍ୟାନ୍ । ବୁବୁନ୍ ପୁଣି ଦଉଡ଼ି ଦଉଡ଼ି ପଳାଇଲା । ମୁଁ ପୃଥିବୀର ମନ୍ଥରତମ ମଣିଷଟିର କଥା ଭାବି, ହୋ ହୋ ହସି ଉଠିଲି ।

ଏହାପରେ ଭାବୁଥିଲି, ବୁବୁନ୍ ବୋଧେ ଏହା ଭିତରେ ଦିନେ ଆସି ଘୋଷଣା କରିବ, ସେ ହେବ ବେନ୍ ଜନ୍‌ସନ୍ । କିନ୍ତୁ ଦୁଇ ତିନି ଦିନ ପରେ ସେ ମୋ ପାଖକୁ ମୁହଁ ଶୁଖାଇ ଆସି କହିଲା, "ବେନ୍ ଜନ୍‌ସନ୍ ପାଖରୁ ଗୋଲ୍ଡ଼ କାଢ଼ି ନେଲେ ।" ଆରେ କାହିଁକି ? ସେ ବିଚରା ତା'ର କୌଣସି ଉତ୍ତର ଦେଇପାରିଲା ନାହିଁ ।

ସେ ଇତିମଧ୍ୟରେ ପୃଥିବୀର ଦ୍ରୁତତମ ମଣିଷ ବେନ୍ ଜନ୍‌ସନ୍‌ର ଜଣେ ଫ୍ୟାନ୍ ହୋଇ ଉଠିଥିଲା । ସେଥିପାଇଁ ଅଲମ୍ପିକ୍‌ରେ ବେନ୍ ଜନ୍‌ସନକୁ ପ୍ରଥମେ ସେମାନେ ଗୋଲ୍ଡ଼ ଦେବାପରେ ପୁଣି ଯେପରି ତା'ଠାରୁ କାଢ଼ିନେଲେ, ତାହା ତା'ର ଭାବପ୍ରବଣତାକୁ ଆହତ କରିଥିଲା । ମୁଁ ମଧ୍ୟ ବେନ୍ ଜନ୍‌ସନ୍ ପାଇଁ ଚିନ୍ତିତ ହୋଇ ଉଠିଲି । କିନ୍ତୁ ବେନ୍ ଜନ୍‌ସନ୍‌ଠାରୁ ଗୋଲ୍ଡ଼ କାଢ଼ି ନେବାର କାରଣଟା ଠିକ୍ ଜାଣିପାରିଲି ନାହିଁ । ଘରେ ଅନ୍ୟ ୱାକବ୍‌ବାହଲମାନଙ୍କଠାରୁ ପଚାରିବୁଝିଲି, ବେନ୍ ଜନ୍‌ସନ୍ କୁଆଡ଼େ ଦଉଡ଼ିବା ଆଗରୁ

ଡ୍ରଗ୍ ଖାଇଥିଲା । ଅଲମ୍ପିକ୍ ଅନୁଶାସନରେ ଏହା ନିଷିଦ୍ଧ । ବେନ୍ ଜନ୍‌ସନ୍ ସେହି ଅନୁଶାସନ ଭଙ୍ଗ କରିଥିଲା, ନିଜର ପୂର୍ବ ରେକର୍ଡ଼ ଭଙ୍ଗ କରିବାପାଇଁ । ଯଦ୍ୟପି ତା'ର ପୂର୍ବ ରେକର୍ଡ଼ ଏ ପର୍ଯ୍ୟନ୍ତ ତଥାପି ବିଶ୍ୱରେକର୍ଡ଼ ହୋଇ ରହିଛି ।

କିନ୍ତୁ ସିଓଲ ଅଲମ୍ପିକ୍‌ରେ କୀର୍ତ୍ତିର ତୁଙ୍ଗ ଚୂଡ଼ାରୁ ଖସି ହଠାତ୍ ତଳେ ପଡ଼ିବାର ଲାଞ୍ଛନା ଭୋଗିବା ପରେ, ବେନ୍ ଜନ୍‌ସନ୍ କିପରି ସିଓ୍ୱଲ୍‌ରୁ ପୁଣି ସ୍ୱଦେଶକୁ ଫେରିଥିବ, ସେଇ କଥା ମୋର ଭାବନାକୁ କ୍ରମେ ଆଚ୍ଛନ୍ନ କରିଦେଲା । ମୁଁ ମୋର ମାନସ ଦୃଷ୍ଟିରେ ଦେଖି ପାରିଲି, ବିଚରା ବେନ୍ ଜନ୍‌ସନ୍ ଭାରି ନିସ୍ତେଜ ଭାବରେ ଉଡ଼ାଜାହାଜର ସିଡ଼ି ଉପରେ ଧାପେ ଧାପେ ଉଠୁଛି । ପୂର୍ବର ଫୂର୍ତ୍ତି ନାହିଁ । ଆସିବା ବେଳେ ସେ ଯେପରି ଗୋଟାଏ ଲମ୍ଫରେ ଦୁଇ ତିନିଟା ପାହାଚ ଏକାଥରେ ଅତିକ୍ରମ କରିଯାଉଥିଲା, ଏବେ ସେ ବେଗ ତା'ର ଆଉ ନଥିଲା । ତା'ର ଦୁଇ ପାଦରେ କିଏ ଯେପରି ବେଢ଼ାଇ ଦେଇଥିଲା, ଦୁଇଟା ଲୁହା ଶିକୁଳୀ ! ସେ ଯେପରି ହଠାତ୍ ରୂପାନ୍ତରିତ ହୋଇ ପଡ଼ିଥିଲା, ପୃଥିବୀର ମନ୍ଥରତମ ମଣିଷରେ ! ରେକର୍ଡ଼ ନିଜେ ଭାଙ୍ଗିବାକୁ ଯାଇ ସେ ଶେଷରେ କେବଳ ଯେ ଅପମାନିତ ହେଲା, ତା' ନୁହେଁ, ସ୍ୱଦେଶ କାନାଡ଼ାରେ ମଧ୍ୟ କ୍ରୀଡ଼ାଜଗତରୁ ନିର୍ବାସିତ ହୋଇଗଲା । କାନାଡ଼ାର ନାଗରିକତ୍ୱ ମଧ୍ୟ ବିଚରା ହରାଇ ବସିଲା । କିନ୍ତୁ ନିଜ ରେକର୍ଡ଼କୁ ନିଜେ ଭଙ୍ଗ କରିବାର ଏହି ଅନ୍ଧ ଟ୍ରାଜିକ୍ ମୋହ, ତା'ଠାରେ ପ୍ରକାଶ ପାଇଲା କାହିଁକି ? ନିଜକୁ ନିଜେ ଅତିକ୍ରମ କରିବାର ଅନ୍ୟ ନାମତ ହେଉଛି ମୃତ୍ୟୁ । ଆତ୍ମହତ୍ୟା । ବେନ୍ ଜନ୍‌ସନ୍ ସେ ରାସ୍ତାରେ ପାଦ ଦେଲା କାହିଁକି ?"

୨୯/୧୦/୮୮

# ହରି ଧ୍ୱନି

ବଇରୀ ଷ୍ଟେସନ୍‌ଠାରୁ ଅଳ୍ପ ଛଡ଼ାରେ, ଷ୍ଟେସନ୍ ବସ୍ତି ଶେଷରେ ଧୂଳିଆ ସଡ଼କର ଚଉମୁହାଣ । ତା' କଡ଼ରେ ଗୋଟିଏ ଗୁଡ଼ିଆ ଦୋକାନ । ଗୁଡ଼ିଆ ଦୋକାନ ପିଣ୍ଡାରେ ଖଣ୍ଡେ ଚିକିଟାଧରା ବେଞ୍ଚ ଉପରେ ଗତ ରାତିଟା କଟାଇବାକୁ [illegible]ଲା ମୋତେ ।

ଦ୍ୱିତୀୟ ମହାଯୁଦ୍ଧ ବେଳ । ବଇରୀ ଷ୍ଟେସନ୍ ଦେଇ ଦିନବେଳା ପୁରୀ-ହାଉଡ଼ା ପାସେଞ୍ଜର୍ ଟ୍ରେନ୍‌ଟି କଟକ ଯିବାପାଇଁ ଏକମାତ୍ର ଟ୍ରେନ୍ । ରାତିରେ ପୁରୀ ଏକ୍ସପ୍ରେସ୍ ଓ ମାଡ୍ରାସ୍ ମେଲ୍ ଅଟକେ ନାହିଁ । ସେଠି ପାସେଞ୍ଜର ଟ୍ରେନ୍‌ରେ ଅସମ୍ଭବ ଭିଡ଼ । ନିର୍ବେଦଗ୍ରସ୍ତ ହୋଇ ପଡ଼ି ରହିଥିବା ଜନଜୀବନରେ ମହାଯୁଦ୍ଧ ହଠାତ୍ ଆରମ୍ଭ କରିଦେଇଥିଲା ଚହଲପହଲ । ମେଳାମେଳା ପିମ୍ପୁଡ଼ି ପରି ଏତେ ଲୋକ କୁଆଡ଼େ ହଠାତ୍ ଟ୍ରେନ୍‌ରେ ଯିବଆସିବା ଆରମ୍ଭ କରିଦେଇଥିଲେ, ଭାବିଲେ ଅବାକ ଲାଗୁଥିଲା । ତାହା ଉପରେ ପୁଣି ଲାଗି ରହିଥିଲା, ଫୌଜି ସିପାହୀମାନଙ୍କର ପାସେଞ୍ଜର ଗାଡ଼ିରେ ଯିବାଆସିବା । ସେଥିପାଇଁ ଅଧିକାଂଶ ଦିନ ଟିକେଟ ବୁକିଂ ବନ୍ଦ ହୋଇଯାଉଥିଲା । ଆଉ ବିନା ଟିକେଟ୍‌ରେ ଟ୍ରେନ୍‌ରେ ଚଢ଼ିବାର ତ ଉପାୟ ନଥିଲା । ସେଠାରୁ ସେଦିନ, ଦଶ ମାଇଲ ଦୂରରେ ବନ୍ଧୁଘର ଗାଁରୁ ଶଗଡ଼ରେ ମୁଁ ବଇରୀ ଆସିଥିଲି, କଟକ ଫେରିବା ପାଇଁ, ମାତ୍ର ଟିକେଟ ମିଳିଲା ନାହିଁ । ଟିକେଟ୍ କାଉଣ୍ଟର ବନ୍ଦ । ନୋ ବୁକିଂ । ଶଗଡ଼ ମୋତେ ଷ୍ଟେସନ୍‌ରେ ଛାଡ଼ି ଦେଇ ଫେରିଯାଇଥିଲା । ପାଦରେ ଚାଲିଚାଲି ପୁଣି ଦଶ ମାଇଲ ବାଟ ଫେରିଯିବାପାଇଁ ଇଚ୍ଛା ନଥିଲା । ଏ ଅପନ୍ତରା ଷ୍ଟେସନ୍‌ରେ ୱେଟିଂ-ସେଡ୍‌ଟି ଯାତ୍ରୀମାନଙ୍କ ପାଇଁ ଯେତେ ଉଦ୍ଦିଷ୍ଟ ନଥିଲା, ସେତେ ବେଶି ଉଦ୍ଦିଷ୍ଟ ଥିଲା, ବୁଲା ଗୋରୁଗାଈ ଓ ଭିକାରୀମାନଙ୍କ ପାଇଁ । ଅଗତ୍ୟା ତେଣୁ ମୁଁ ଆଶ୍ରୟ ନେଇଥିଲି, ଚଉମୁହାଣୀର ଧୂଳିଆ ରାସ୍ତା କଡ଼ରେ, ସେଇ ଗୁଡ଼ିଆ ଦୋକାନ ପିଣ୍ଡାରେ; ପରଦିନ ଟ୍ରେନ୍ ଧରିବାପାଇଁ ।

ମାର୍ଚ୍ଚ ମାସର ଶେଷ । ରାତି ସବୁ ହଠାତ୍ କ୍ରମେ ଗରମ ହୋଇ ଉଠୁଥିଲା । ତା' ଉପରେ ପୁଣି ଟିକେଟ୍ ମିଳିବା ନମିଳିବା ଘେନି ଉଦ୍‌ବେଗ ଓ ଉତ୍କଣ୍ଠା । ବେଞ୍ଚ ଉପରେ

ପଡ଼ି ସାରା ରାତିଟା କଟିଥିଲା, ଅସ୍ୱସ୍ତିରେ । ରାତି ପାହାନ୍ତା ପାହାନ୍ତା ବେଳକୁ ଆମ୍ବ ବଉଳର ବାସନା ମିଶା ହେମାଳିଆ ପବନରେ ଆଖିରେ ଛାଇ ନିଦ ଲାଗି ଆସୁଥିଲା । ହଠାତ୍ ମୋର ତନ୍ଦ୍ରା ଭାଙ୍ଗିଗଲା । ଅଦୂରରୁ ଭାସି ଆସୁଥିବା କାହାର ମନ୍ଦ୍ର ଗମ୍ଭୀର କଣ୍ଠରେ ହରିବୋଲ ଧ୍ୱନି ଶୁଣି, ଭୋର୍‌ର ଆଲୁଅ ସେତେବେଳକୁ ଧୀରେଧୀରେ ଫିଟି ଆସୁଥିଲା । ମାତ୍ର ବଉଳ କୁହୁଡ଼ିର ପରଦା ଆଢୁଆଳରେ ତାହା ଯେପରି ଲୁଚି ଯାଇଥିଲା । ଭୋର୍ ସକାଳର ରଂଗ ଦିଶୁଥିଲା ସୁନୀଳ । କ୍ରମେ ବହଳ କୁହୁଡ଼ି ଧୀରେଧୀରେ କଟି ଆସିଥିଲା । ସେଇ ପରିବେଶରେ କାହା କଣ୍ଠର ହରିଧ୍ୱନି ଭାରି ଅବାସ୍ତବ ଲାଗୁଥିଲା । ମୁଁ ବେଞ୍ଚ୍ ଉପରେ ବସିପଡ଼ିଲି । ହରିବୋଲ ଧ୍ୱନି ତରଙ୍ଗ ପରେ ତରଙ୍ଗ ପରି ମୂର୍ଚ୍ଛିତ ସକାଳକୁ କୁହୁଡ଼ିର କମ୍ବଳ ତଳୁ ଧୀରେଧୀରେ ଉଠାଇ ଦେଉଥିଲା । ସେଇ ହରିଧ୍ୱନି ମଧ୍ୟରେ ମୁଁ ସେତେବେଳେ ଅନୁଭବ କରିପାରୁଥିଲି, ଯେପରି କେଉଁ ଦିଗହଜା ପାରାବାରର ସେପାଖ କୂଳରୁ କିଏ ଜଣେ କାଣ୍ଡାରୀ ଡାକୁଥିଲା, ସବୁ ତୁଚ୍ଛ ଅବସାଦ ଆଉ ଉତ୍କଣ୍ଠା ଫିଙ୍ଗିଦେଇ ପାରାବାର ଭିତରକୁ ଲମ୍ଫ ଦେବାପାଇଁ । ହରିବୋଲ ଧ୍ୱନିରେ ସମଗ୍ର ଷ୍ଟେସନ ଅଞ୍ଚଳଟି ପ୍ରତିଧ୍ୱନିତ ହୋଇ ଉଠିଥିଲା । ଯେଉଁଆଡୁ ସେଇ ଧ୍ୱନି ଆସୁଥିଲା, ତାହା ବାରିବାରି ମୁଁ ସେଇଆଡ଼େ ତନ୍ଦ୍ରା ଚାଳିତ ପରି ଚାଲିଚାଲି ବାହାରିଗଲି ।

ଉତ୍ତରପଟ ସିଗ୍‌ନାଲ୍ ପୋଷ୍ଟ ପାଖରେ ଲାଇନ୍ କଡ଼ରେ ଗୋଟିଏ ଛୋଟ ବସତି... ମାତ୍ର କେତେଗୋଟି ଚାଳଘର । ସେଇ ଆଡ଼େ ଯାଇ ଦେଖିଲି, ଗୋଟିଏ ଘର ଦାଣ୍ଡରେ ବୁଢ଼ା ବୟସର ଜଣେ ପାତଳା ଲୋକଟିଏ, ଖଣ୍ଡେ ଗେରୁଆ ଗାମୁଛା ପିନ୍ଧି, ଦେହ ଉପରେ ଆଉ ଖଣ୍ଡେ ସେହିପରି ଗାମୁଛା ଢାଙ୍କି ଠିଆହୋଇ ହରିବୋଲ ଧ୍ୱନି ଦେଉଥିଲା । ତା'ର ହରିବୋଲ ଧ୍ୱନିରେ ମଲା ଅଜଗର ପରି ପଡ଼ିଥିବା ରେଳଲାଇନ୍ ଓ ପ୍ରାଗୈତିହାସିକ ଦାନବଙ୍କ ପରି ଠିଆ ହୋଇଥିବା ସିଗ୍‌ନାଲ୍ ପୋଷ୍ଟଟା ସୁଦ୍ଧା ଯେପରି ଚେଇଁ ଉଠିଥିଲା । ହରିବୋଲ ଧ୍ୱନି ନିରବ ହୋଇଗଲା । ମୁଁ ସେଠାରୁ ଫେରି ଆସିଲି । ଗୁଡ଼ିଆ ଦୋକାନୀ ନନା ଚା' ତିଆରି କଲାବେଳେ ସେଇ ହରିବୋଲ ଧ୍ୱନିର କଥା ତାକୁ ପଚାରିଲି । ଦୋକାନୀ ଉତ୍ତର ଦେଲା, "ସପନା ଗୁଡ଼ିଆ କୋଉ ଗୁରୁ ପାଖରୁ ନାମ ନେବା ଦିନରୁ ସବୁ ଦିନ ପାହାନ୍ତାରୁ ଏମିତି ହରିବୋଲ କୁହାଟେ ।" ମୋର ମନେହେଲା ଗୁଡ଼ିଆ ଦୋକାନୀ ଯେପରି ସପନା ଗୁଡ଼ିଆ ଉପରେ ବିରକ୍ତ । ନନା କହିଲା, ସିଏ ଟେସନ୍ ପ୍ଲାଟ୍‌ଫର୍ମରେ ବୁଲିବୁଲି ବରା ବିକ୍ରୀ କରେ । ଆଉ ଏମିତି ହରିବୋଲ କୁହାଟ ଛାଡ଼େ । ନନାର ବିରକ୍ତିର କାରଣ ଅନୁମାନ କଲି । ସପନା ଗୁଡ଼ିଆ ବୋଧହୁଏ ନନାର ବେଉସାରେ ବାଧା ସୃଷ୍ଟି କରୁଛି ।

ଖରାବେଳେ ଅପ୍-ହାଓଡ଼ା-ପୁରୀ ପାସେଞ୍ଜରରେ ବହୁ କଷ୍ଟରେ ଟିକେଟ୍ ମିଳିଲା, ତା' ଅପେକ୍ଷା ଆଉରି କଷ୍ଟରେ ଭିଡ଼ ଠେଲି ଗାଡ଼ି ଭିତରକୁ ଉଠିଲି । ସପନା ଗୁଡ଼ିଆ ଗୋଟାଏ ବଡ଼ ଡାଲା ଧରି ପ୍ଲାଟଫର୍ମ ଉପରେ ବରା ବିକ୍ରି କରୁଥିଲା । ସେ କିନ୍ତୁ ଅନ୍ୟ ବୁଲା ବିକାଳୀମାନଙ୍କ ପରି ବୁଲିବୁଲି ବରା ବିକ୍ରି କରୁ ନଥିଲା । ସେ ବସିଥିଲା, ଗୋଟାଏ ସିମେଣ୍ଟ ବେଞ୍ଚ୍ ଉପରେ ତା'ର ପସରା ଧରି । ଗରାଖମାନେ ତା' ଚାରିପଟେ ଭିଡ଼ ବାନ୍ଧି ବରା କିଣୁଥିଲେ । ତା' ବରାର ବୋଧହୁଏ ଖୁବ୍ ନାମ ଡାକ ଥିଲା । ଚାହୁଁ ଚାହୁଁ ତା'ର ପସରା ଶେଷ୍ଟ ହୋଇଗଲା । ଯାତ୍ରୀମାନେ ବରାଖାଇ ଟ୍ରେନ୍ ଭିତରକୁ ଫେରି ଆସିଲେ । ସପନା ଗୁଡ଼ିଆ ଖାଲି ଡାଲାଟିକୁ ଉଗୁଡ଼ାଇ ଦେଇ ସିମେଣ୍ଟ ବେଞ୍ଚର ପଛ ବାଡ଼ାକୁ ଆଉଜି ଉଦାସ ଭାବରେ ବସି ରହିଥିଲା, କେଉଁଥିପାଇଁ କେଜାଣି ? ସେ ଯେପରି ନିର୍ଲିପ୍ତ ଦୃଷ୍ଟିରେ ଚାହିଁ ଦେଖୁଥିଲା ଯିବା ଆସିବାର ଅକାରଣ ଉତ୍ତେଜନା ଆଉ ଭିଡ଼ ।

ଇଏ ବହୁ ବର୍ଷ ତଳର ଘଟଣା । ମାତ୍ର ଏଇ ବୟସରେ ଦୁ    କ୍ଳାନ୍ତି ଓ ଉଦ୍‌ବେଗ ଜର୍ଜରିତ ମୁହୂର୍ତ୍ତମାନଙ୍କରେ ମୁଁ ଶୁଣିପାରେ, ସପନା ଗୁଡ଼ିଆର ସେହି ଉତ୍ତୋରଳ ହରିବୋଲ ଧ୍ୱନି । କୁହୁଡ଼ି ବୋଲା ମୋର ଅବସନ୍ନ ମୁହୂର୍ତ୍ତ ସବୁ ହଠାତ୍ ପୁଣି ଯେପରି ଚଞ୍ଚଳ, ଚମକିତ ହୋଇଉଠେ ।

୧୨/୧୧/୮୮

# ଏ ଫୁଲରେ ନାହିଁ ସେ ବାସ

"ମନ ଭୃଙ୍ଗରେ ଏ ଫୁଲରେ ନାହିଁ ସେ ବାସ" । ବହୁ ବର୍ଷ ତଳେ, ଥରେ ରାତି ପାହାନ୍ତା ପାହାନ୍ତାକୁ ରେଢ଼ାଖୋଲ ବସ୍‌ଷ୍ଟାଣ୍ଡରେ ଏ ଗୀତଟି ଶୁଣିଥିଲି, ଗୀତ ଗାଇ ଭିକ୍ଷା କରୁଥିବା, ଜଣେ ଲୋକଠାରୁ କଟକ-ସମ୍ବଲପୁର ବସ୍ ସେ ଦିନ ରେଢ଼ାଖୋଲ ବସ୍‌ଷ୍ଟାଣ୍ଡରେ ପହଞ୍ଚିବା ବେଳକୁ ରାତି ତିନିଟା ଗଡ଼ି ଯାଇଥିଲା । କପେ ଚା' ପାଇଁ ରାସ୍ତାକଡ଼ରେ ଗୋଟାଏ ଚା' ଦୋକାନ ଭିତରକୁ ଯାଉଛି, ଦେଖିଲି ବତିଖୁଣ୍ଟ ତଳେ ଅରାଏ ମଇଳା ଆଲୁଅ ଭିତରେ ବସି, ସେ ଲୋକଟି ଏକତାରା ପରି ଗୋଟାଏ ବାଦ୍ୟଯନ୍ତ୍ର ବଜାଇ ଗାଉଥିଲା, "ମନ ଭୃଙ୍ଗରେ ଏ ଫୁଲରେ ନାହିଁ ସେ ବାସ" ।

ଲୋକଟି ସାଧାରଣ ଭିକାରୀ ଶ୍ରେଣୀର ବୋଲି ମନେହେଉନଥିଲା । କିନ୍ତୁ ତା'ର ଗୀତ ଶୁଣି କେହି ତା' ଆଗରେ ପଡ଼ିଥିବା ଗାମୁଛା ଉପରେ ପଇସା ଦେଲେ, ସେ ମନା କରୁ ନଥିଲା । ଇଏ ହୁଏତ ଥିଲା ତା'ର ଜୀବିକା । କିନ୍ତୁ ଏହା ତା'ର ଜୀବନ ନଥିଲା । ତା' କଣ୍ଠସ୍ୱରରେ ଥିଲା ଏପରି ଏକ ଉଦାସ, ଗୈରିକ ବୈରାଗ୍ୟ, ଯାହା ତାକୁ ସାଧାରଣ ଭିକାରୀମାନଙ୍କଠାରୁ ବାରି ହେଉଥିଲା । ମୁଁ ଚା' ଦୋକାନ ଭିତରକୁ ଯିବା ଭୁଲି ସମ୍ମୋହିତ ପରି ତା'ର ଗୀତ ଶୁଣିବା ପାଇଁ ସେଇଠାରେ ଠିଆହୋଇଯାଇଥିଲି । ସେ ପୁଣି ଗାଉଥିଲା, ମଲ୍ଲୀ, ଚମ୍ପା, ସବୁ ଚହଟି ସାରିଲେଣି । ପର୍ବତ ଶିଖରରେ ପଦ୍ମ ଫୁଟିଛି । ସେ ପଦ୍ମର ମୁହଁ ତଳକୁ ଝୁଲିଛି । ସେଇଠାରେ ପହଞ୍ଚି ପାରିଲେ, ତୁ ସୁବାସ ପାଇବୁ । କିନ୍ତୁ ଏ ଫୁଲରେ ସେ ବାସ ନାହିଁ । "ମନ ଭୃଙ୍ଗରେ ଏ ଫୁଲରେ ନାହିଁ ବାସ ।"

କିଛି ରେଜା ପଇସା ମୁଁ ସେଠାରେ ଦେଇ ଚା' ପିଇବା ପାଇଁ ଚାଲିଆସିଲି । କିନ୍ତୁ ତା' କଣ୍ଠର ଉଦାସ ଗୈରିକତା ଓ ପଦବିନ୍ୟାସର ରହସ୍ୟ ମଧ୍ୟ ମୋତେ କିଛି ସମୟ ପ୍ରାୟ ଆଚ୍ଛନ୍ନ କରି ଦେଇଥିଲା । ମୋର ମନେ ହୋଇଥିଲା, ପ୍ରକୃତରେ ଇଏ ଏକ ଗନ୍ଧହୀନ ଫୁଲର ଉଦ୍ୟାନ । ଏଥିରେ ସୁବାସ ନାହିଁ, ସୌରଭ ନାହିଁ; ଅଛି କେତେକ ଫୁଲ ପାଖୁଡ଼ାମାନଙ୍କରେ ସୌରଭହୀନ ରଙ୍ଗିନ ବର୍ଣ୍ଣାଢ୍ୟତା । ଭାରି ଅସ୍ୱସ୍ତି ଅନୁଭବ

କରିଥିଲି ମୁଁ । ସେଠାରୁ ବସରେ ଅନେକ ବାଟ ସେଇ କଥା ଭାବି ଭାବି ଯିବା ପରେ ହଠାତ୍, ମୋର ମନେ ହୋଇଥିଲା, ଏ ଗୀତଟା ବୋଧହୁଏ ହଠଯୋଗୀମାନଙ୍କର ଏକ ଚର୍ଯ୍ୟାପଦ । ଏଥିରେ ଯୋଗର ପ୍ରଣାଳୀ ସୂଚିତ ହୋଇଛି । କିନ୍ତୁ ଏହାର ପ୍ରତୀକ ପ୍ରୟୋଗ ମୋର ତାର୍କିକ ମନକୁ ଖାପଛଡ଼ା ବିଷଦୃଶ ଲାଗିଲା । ଫୁଲରେ ଯଦି ବାସ ନାହିଁ, ତା'ହେଲେ ଭୃଙ୍ଗ ସେଥିପ୍ରତି ଅନ୍ଧମୋହରେ ଆକୃଷ୍ଟ ହୋଇ ତା' ଚାରିପଟେ ଉଡ଼ିବୁଲିବ କାହିଁକି ? ଫୁଲରେ ତେଣୁ ନିଶ୍ଚୟ ସୁବାସ ରହିଛି । ସୁବାସ ବାରିଲା ଲୋକଟା କେବଳ ତାହାକୁ ବାରିପାରୁ ନାହିଁ । କେତେ ଘଣ୍ଟା ପୂର୍ବର ସେଇ ସମ୍ମୋହିତ ଅବସ୍ଥା ସକାଳର ପ୍ରଥମ ପାଉଁଶିଆ ଆଲୁଅରେ ଅନ୍ଧାର କଟିଯିବା ପରି ଧୀରେଧୀରେ କଟି ଯାଇଥିଲା ।

କିନ୍ତୁ ବହୁ ବର୍ଷ ବ୍ୟବଧାନ ପରେ ସୁଦ୍ଧା ମୁଁ ସେ ଗୀତ ପଦକ ତଥାପି ଭୁଲି ନାହିଁ । କର୍ମହୀନ, ଉଦାସ, ମୁହୂର୍ତ୍ତମାନଙ୍କରେ ଅଜ୍ଞାତସାରରେ ମୋ ଓଠରେ ସେ ଗୀତ ପଦକ ଗୁଣୁଗୁଣୁ ହୋଇ ଉଠେ । "ମନ ଭୃଙ୍ଗରେ ଏ ଫୁଲରେ ନାହିଁ ସେ ବାସ !" କ୍ରମେ ମୋର ମନେ ହୋଇଛି, ପ୍ରକୃତରେ ଏ ଫୁଲରେ ଆଉ ସେ ବାସ ନାହିଁ । ଶୁଷ୍କ ବିଷଣ୍ଣ ପାଖୁଡ଼ାମାନଙ୍କରେ ଆଉ ଗନ୍ଧ ନାହିଁ । ମହକର ମହୋତ୍ସବ କେବେଠାରୁ ଶେଷ ହୋଇଯାଇଛି, ଇଏ ଏକ ଗନ୍ଧହୀନ ଉଦ୍ୟାନ । ତଥାପି ମନଭୃଙ୍ଗ କାହିଁକି ଯେ ଏ ଶୁଷ୍କ ଉଦ୍ୟାନ ଛାଡ଼ି ପର୍ବତ ଶିଖରରେ ସେହି ଓଲଟ ପଦ୍ମର ସନ୍ଧାନରେ ଉଡ଼ି ଯାଉନାହିଁ, ତାହହିଁ ମୋତେ ବିସ୍ମିତ କରୁଛି । କାହିଁକି ମନଭୃଙ୍ଗ ତଥାପି, କେଉଁ ଆଶାରେ, ଆଉ କେଉଁ ସୁରଭି ମୋହରେ ଏଇ ଶୁଖିଲା ବଗିଚାରେ ତଥାପି ଉଡ଼ିବୁଲୁଚି ଏକ ଅନ୍ଧ ମୋହରେ ? ବୋଧହୁଏ ସେ ତ୍ରିକୋଣୀ ତଟରେ ପର୍ବତ ଶିଖର ଉପରେ ସେଇ ଓଲଟ ପଦ୍ମର ସନ୍ଧାନ ପାଇଲା ନାହିଁ । ସାରା ଜୀବନ ଏଇପରି ଉଡ଼ି ବୁଲିଲେ ସୁଦ୍ଧା ସେ ଆଉ ତାର ସନ୍ଧାନ ପାଇବ ନାହିଁ ।

୧୯/୧୧/୮୮

# ବସୁଧୈବ କୁଟୁମ୍ବକମ୍

ଗୁଳ୍ମାକୀର୍ଣ୍ଣ ମହାନଦୀ ପଠା ଉପରେ ଅପରାହ୍ଣର ଆଲୋକ ଧୀରେଧୀରେ ପାଟଳୀ ରଙ୍ଗ ଧରି ଆସୁଥିଲା । ଦଳଦଳ ପକ୍ଷୀ ପୂର୍ବମୁହାଁ ହୋଇ ଉଡ଼ିଯିବା ଆରମ୍ଭ କରିଥିଲେ । ଯୋବ୍ରା ଆନିକଟ ବନ୍ଧ ଉପରେ ଏକୁଟିଆ ବସି ମୁଁ ସେ ଦୃଶ୍ୟ ଶୂନ୍ୟ ଦୃଷ୍ଟିରେ ଚାହିଁ ଦେଖୁଥିଲି । ହଠାତ୍ କଲେଜ ସହପାଠୀ ରମାନାଥ ସାଇକେଲ୍‌ରେ ଆସି ମୋ କାନ୍ଧ ଉପରେ ଗୋଟାଏ ଚାପଡ଼ା ମାରି କହିଲା, "ତୁ ଏଠି ବସିଛୁ । ମୁଁ ତୋ ମେସ୍‌ରୁ ତୋତେ ଖୋଜି ଖୋଜି ବୁଲୁଛି । ରମାନାଥ ସାଇକେଲ୍‌ରୁ ନ ଓହ୍ଲାଇ ଗୋଟାଏ ପାଦ ଆନିକଟ ବନ୍ଧ ଦାଢ଼ରେ ଓ ଆଉ ଗୋଟିଏ ପାଦ ରାସ୍ତା ଉପରେ ରଖି ମୋ ସହିତ କଥାବାର୍ତ୍ତା କରୁଥିଲା । ମୁଁ ପଚାରିଲି, "କି କାମ ଥିଲା ?" ରମାନାଥ କହିଲା, "ଆଜି ପଞ୍ଚୁଦୋଳରେ ଛତିଆ ମେଲଣ ଦେଖିଯିବା । ମୋଟେ ତ କୋଡ଼ିଏ ମାଇଲ ରାସ୍ତା । ଦକ୍ଷିଣା ପବନ ଦେଉଛି । ମନକଲେ ଘଣ୍ଟାଏ ଦେଢ଼ ଘଣ୍ଟାରେ ଛତିଆ ପହଞ୍ଚି ଯିବା । ଜହ୍ନ ତ ଉଠିବ ଅଳ୍ପ ପରେ । ସେତେବେଳେ ମୋତେ ଯେପରି ଚିଟା ଲାଗୁଥିଲା । ମୁଁ ଚାହୁଁଥିଲି ଏହିପରି କିଛି ଗୋଟାଏ ହୁଜୁଗ୍ । ତେଣୁ ଆମେ ଦୁହେଁ ସାଙ୍ଗେ ସାଙ୍ଗେ ସାଇକେଲ୍ ଧରି ଫେୟାର୍ ୱେଦର ରାସ୍ତାରେ ଓହ୍ଲାଇ ପଡ଼ିଲୁ । ଜଗତପୁର ପାଖରେ ନାଲିମାଟିର ଶଡ଼କ ଧରିବା ବେଳକୁ ପ୍ରତିପଦ ତିଥିର ଚନ୍ଦ୍ର ଗୋଟାଏ ହଳଦିଆ ବେଲୁନ୍ ପରି ଆକାଶରେ ଉଙ୍କିମାରି ଉଠିଥିଲା ।

କିନ୍ତୁ ବିରୂପା ଡେଇଁ ପୁଣି ରାସ୍ତା ଉପରକୁ ଆସିବା ମାତ୍ରେ ରମାନାଥ କହିଲା, "ଜଗତପୁର ବଜାରରେ କିଛି ଖାଇ ଆସିଥିଲେ ଭଲ ହୋଇଥାନ୍ତା । ଭୋକରେ ମୋ ପେଟ ଜଳିଯାଉଛି । କିଛି ନଖାଇଲେ ମୁଁ ଆଉ ପାଦେ ଯାଇ ପାରିବି ନାହିଁ ।" ରମାନାଥ ଗୋଟାଏ ଗଛ ଦେହରେ ସାଇକେଲ୍ ଆଉଜାଇ ଅନଶନ ଧର୍ମଘଟ କରିବା ପରି ସେଇଠାରେ ବସି ପଡ଼ିଲା । ମୋତେ ମଧ୍ୟ ହଠାତ୍ ଭୋକ ଲାଗିବା ଆରମ୍ଭ କରିଥିଲା । କିନ୍ତୁ ସେଠାରେ ଦୋକାନ ବଜାର ଆଉ କାହିଁ ? ଟାଙ୍ଗୀ ସେଠାରୁ ତଥାପି ଅନେକ

ବାଟ । ଡାହାଣ ହାତ ବିରୂପା ବନ୍ଧ ସେଠାରୁ କେଉଁ ସବୁ ଅଜଣା ଗାଁ ଗଣ୍ଡା ଆଡ଼େ ଲମ୍ବି ଯାଇଛି । ମୁଁ କିମ୍ବା ରମାନାଥ କେହି ତା'ର ଭୂଗୋଳ ଜାଣି ନଥିଲୁ । କିନ୍ତୁ ସେଠାରୁ ଅଳ୍ପ ବାଟରେ ବନ୍ଧ କଡ଼ରେ ଗୋଟାଏ ଅଜଣା ଗାଁର ବାଉଁଶ ବଣ ଓ ଚାଳଘର ଜହ୍ନ ଆଲୁଅରେ ଉଙ୍କିମାରି ଉଠୁଥିଲା । ମୁଁ କହିଲି, "ହଉ ତା'ହେଲେ ସେଇ ଗାଁ ପର୍ଯ୍ୟନ୍ତ ଚାଲ । ସେଇଠି ଖାଇବାକୁ ମିଳିପାରେ ।" ରମାନାଥ ବିସ୍ମିତ କଣ୍ଠରେ ପଚାରିଲା, "କିରେ ସେ କୋଉ ଗାଁ ? କାହାଘରେ ଖାଇବା ?" ମୁଁ ଉତ୍ତର ଦେଲି, "ଭୋକିଲା ଲୋକର ଏତେ ସବୁ ବୁଝିବାର କ'ଣ ଦରକାର ? ତାକୁ ଭୋକ କରୁଚି, ସେଇ ହେଲା ତା'ର ବଡ଼ ପରିଚୟ । ସେଇ ଅଜଣା ଗାଁ ମୁଣ୍ଡରେ ବାଉଁଶ ବଣ ଡେଇଁ ପ୍ରଥମେ ଯେଉଁ ଘରଟି ପଡ଼ିଲା, ଆମେ ସେଇ ଘର ଆଗରେ ସାଇକେଲ୍‌ରୁ ଓହ୍ଲାଇ ପଡ଼ି ଘନଘନ ଘଣ୍ଟି ବଜାଇଲୁ । ସହଜେ ମହାଯୁଦ୍ଧ ବେଳ । କିରୋସିନି ଦୁଷ୍ପ୍ରାପ୍ୟ । ସାରା ଗାଁଟା ସେତେବେଳକୁ ଯେପରି ନିଦରେ ଧିମେଇ ପଡ଼ିଥିଲା । କିଛି ସମୟ ପରେ ମଧ୍ୟ ବୟସୀ ଚଷାଭୂଷା ଶ୍ରେଣୀର ଲୋକଟିଏ, କବାଟ ଫିଟାଇ ବାହାରକୁ ଆସି ଆମେ କିଏ, ଆମର କ'ଣ ଦରକାର ବୋଲି ପଚାରିଲା । ତା'ର କଣ୍ଠସ୍ୱରରୁ ମନେ ହେଉଥିଲା, ଆମ ପରି ସହରିଆ ଚେହେରାର ଦୁଇଜଣ ଟୋକାଙ୍କୁ ସେତେବେଳେ ସେଠାରେ ଦେଖି, ସେ ଯେପରି ବିସ୍ମିତ ହୋଇ ଉଠିଥିଲା । ମୁଁ କହିଲି, "ଆମେ ଦୁଇଜଣ କଲେଜ ପିଲା । ଛତିଆ ମେଲଣ ଦେଖି ବାହାରିଛୁ । ବାଟରେ ଭାରି ଭୋକ ଲାଗିଲା । ଆମକୁ ଖାଇବାକୁ ଦିଅ ।" ଲୋକଟି କିଛି ନକହି ଭିତରକୁ ଚାଲିଗଲା ଓ କିଛି ସମୟ ପରେ ଆସି ଆମକୁ ଭିତରକୁ ଯିବାପାଇଁ ଡାକିଲା । ବୁଢ଼ୀଟିଏ ସେତେବେଳକୁ ଆମ ପାଇଁ ଦୁଇଟି ବେଲାରେ ଦୁଇବେଲା ପଖାଳ ଆଉ ଦୁଇଟା କଂସା ଥାଳିଆରେ ପିଆଜ ତରକାରୀ ବାଢ଼ି ରଖି ସେହିଠାରେ ବସିଥିଲା । ଆମେ ପଖାଳ ବେଲା ଉପରେ ଲମ୍ଫ ଦେବା ମାତ୍ରେ ବୁଢ଼ୀ ପଚାରିଲା, "ତମେ ସବୁ କି ଘର ପୁଅ ।" ରମାନାଥ ଉତ୍ତର ଦେଲା, ସିଏ ମାହାନ୍ତି, ମୁଁ ଗୁଡ଼ିଆ ।" ବୁଢ଼ୀ କିଛି କହିଲା ନାହିଁ । ଆମେ ଚୁପ୍‌ଚାପ୍ ଖାଇସାରି ବାହାରିଲା ବେଳେ, ସେ ଲୋକଟିକୁ କିମ୍ବା ସେ ବୁଢ଼ୀକୁ କିପରି କ'ଣ କହି ଧନ୍ୟବାଦ ଦେବୁ ବୁଝିପାରିଲୁ ନାହିଁ । ସେଠାରୁ ନିରବରେ ଚାଲିଆସିଲୁ ।

ରାତିସାରା ଛତିଆରେ ମେଲଣ ଆଉ ନାଚ ଦେଖି ଫେରିବା ବେଳକୁ ସକାଳର କୁହୁଡ଼ିଆ ଖରା କ୍ରମେ ଫିଟି ଆସୁଥିଲା । ମେଲଣରୁ ମୁଁ ଗୋଟାଏ ଖିଆଲରେ କିଣିଥିଲି ରଙ୍ଗ ବେରଙ୍ଗ ଗ୍ୟାସ୍ ବେଲୁନ୍‌ରୁ କେତେଟା, ଆଉ ଗୋଟିଏ ବେଙ୍ଗ ବାଇଦ ଓ ସୁସୁରୀ । ବେଲୁନ୍ ସବୁ ଖଣ୍ଡେ ବାଡ଼ିରେ ବନ୍ଧା ହୋଇ ପବନରେ ଉଡୁଥିଲା । ଏସବୁ କିଣିବା ବେଳେ ରମାନାଥ ବାରମ୍ବାର ପଚାରିଥିଲା, "କିରେ ଏଗୁଡ଼ା କ'ଣ କରିବୁ ?" ମୁଁ ତାକୁ

କୌଣସି ଉତ୍ତର ଦେଇ ନଥିଲି । ପ୍ରକୃତରେ ମୁଁ କୌଣସି ଉଦ୍ଦେଶ୍ୟରେ ଯେ ଏ ରଙ୍ଗିନ ବେଲୁନ୍ ଆଉ ବେଙ୍ଗ ବାଇଦ କିଣିଥିଲି, ତା' ଆଦୌ ନୁହେଁ । ମୋର କୌଣସି ଉଦ୍ଦେଶ୍ୟ ନଥିଲା । ବୋଧହୁଏ ଏଇ ବେଲୁନ୍ ଆଉ ବେଙ୍ଗ ବାଇଦ ଭିତରେ ମୋର ହଜିଲା ଶୈଶବ ସହିତ ମୁଁ ଚେଷ୍ଟା କରୁଥିଲି, ସଂପର୍କ ସ୍ଥାପନ ପାଇଁ । ସେ କଥା ରମାନାଥକୁ ବୁଝାନ୍ତି ବା କିପରି ? ଫେରିବା ବାଟରେ ଗତ ରାତିର ସେଇ ଗାଁ ପାଖ ହେବାମାତ୍ରେ ମୁଁ ବିରୂପା ବନ୍ଧ ଉପରକୁ ମୋର ସାଇକେଲ୍ ମୋଡ଼ାଇ ନେଲି । ରମାନାଥ ପଚାରିବାରୁ କହିଲି, "କାଲି ରାତିରେ ଆମକୁ ବେଳାଏ ବେଳାଏ ପଖାଳ ଆଉ ପିଆଜ ତରକାରୀ ଦେଇ ସେ ଲୋକଟି ଆମ ପ୍ରାଣ ବଞ୍ଚାଇଲା । ତାକୁ ଧନ୍ୟବାଦ ସୁଦ୍ଧା ନଦେଇ ଆମେ ମୂଢ଼ ପରି ବାହାରି ଆସିଲେ । ତାକୁ ଥରେ ଶଙ୍ଖୋଳି ଯିବା ନାହିଁ ?

ପୁଣି ସେଇ ଘର ପାଖରେ ପହଞ୍ଚିବା ବେଳକୁ ସେଇ ଲୋକଟି ଗୁହାଳରୁ ତା'ର ଦୁଇଟା ଗାଈ ବାଛୁରୀ ଫିଟାଇ ଦାଣ୍ଡରେ ଖୁଣ୍ଟ ଦେହରେ ବାନ୍ଧୁଥିଲା । ଆମକୁ ଦେଖିବା ମାତ୍ରେ, ତା ମୁହଁର ଭାବ ଯେପରି ଲକ୍ଷ୍ୟକଲି ଅପ୍ରସନ୍ନ ଦିଶିଲା । ସେ ହୁଏତ ଆଶା କରୁଥିଲା, ଆମେ ତାକୁ ପୁଣି ଖାଇବାକୁ ମାଗିବୁ । କିନ୍ତୁ ହାଣ୍ଡିରେ ଯାହା ପଖାଳ ଥିଲା, କାଲି ରାତିରେ ସେ ତ ଆମକୁ ଦେଇସାରିଛି । ଆଉ ଏବେ ଅଛି କ'ଣ ? ପିଣ୍ଡାରେ ପ୍ରାୟ ଚାରିପାଞ୍ଚ ବର୍ଷର ଲଙ୍ଗଳା ପିଲାଟିଏ ଠିଆ ହୋଇ ଗାଈ ବାଛୁରୀ ବନ୍ଧା ଦେଖୁଥିଲା । ମୁଁ ସାଇକେଲ୍‌ରୁ ଓହ୍ଲାଇ ପଡ଼ି ସେଇ ସବୁ ରଙ୍ଗିନ ବେଲୁନ୍ ଆଉ ବେଙ୍ଗ ବାଇଦଟି ତାକୁ ଦେଇଦେଲି ।

ପିଲାଟି ଏ ସବୁ ସମ୍ଭାର ନେଇ ହଠାତ୍ କ'ଣ କରିବ, ବୁଝି ପାରୁ ନଥିଲା । ସେ ଲୋକଟିର ଆଖିରେ ମଧ୍ୟ ଫୁଟି ଉଠିଥିଲା ବିସ୍ମୟ । କିନ୍ତୁ ଏଇ ଅପ୍ରତ୍ୟାଶିତ ରଙ୍ଗିନ ବେଲୁନ୍ ଆଉ ବେଙ୍ଗ ବାଇଦ ପାଇ ପିଲାଟିର ଆଖି ଦୁଇଟି ଆନନ୍ଦରେ ଉଜ୍ଜ୍ୱଳ ହୋଇ ଉଠୁଥିଲା । ତା'ର ଆଖିରେ ଆନନ୍ଦର ସେଇ ଉଜ୍ଜ୍ୱଳତା ଭିତରେ ମୁଁ ମୋର ଅନିଦ୍ରା ଆଉ ପଥଶ୍ରମର କ୍ଳାନ୍ତି ଭୁଲି ଯାଇଥିଲି ।

ରମାନାଥ ସେ ଲୋକଟିକୁ କହିଲା, "ଏମିତି ଟିକିଏ ଶଙ୍ଖୋଳି ଯିବାକୁ ଆସିଥିଲୁ । କାଲି ରାତିରେ ତୁମ ଆମ ପ୍ରାଣ ବଞ୍ଚାଇ ଦେଲ ।" ଆସିଥିଲୁ ତ ଅପରିଚିତଙ୍କ ପରି । କିନ୍ତୁ ଏବେ ସେ ଲୋକଟି ଯେପରି ତାର ଦୁଇଜଣ ପ୍ରିୟ ଆତ୍ମୀୟଙ୍କୁ ବିଦାୟ ଦେଇଥିଲା ଓ ସେ ଶିଶୁଟି ମଧ୍ୟ ।

*୨୬/୧୧/୮୮*

# ତ୍ରାଟକ ଯୋଗୀ

ତ୍ରାଟକ ଯୋଗୀମାନଙ୍କର କଥା ମୁଁ ଅନେକ ଶୁଣିଥିଲି; କିନ୍ତୁ ସେ ପର୍ଯ୍ୟନ୍ତ ଜଣେ ତ୍ରାଟକ ଯୋଗୀଙ୍କୁ କେବେ ଦେଖି ନଥିଲି । ଏମାନଙ୍କର କୃଚ୍ଛ୍ରସାଧନା ଯେପରି ଅଦ୍‌ଭୂତ, ସେହିପରି ବିସ୍ମୟୋଦ୍ଦୀପକ । ଏମାନେ ମଧ୍ୟାହ୍ନ ସୂର୍ଯ୍ୟ ଆଡ଼େ ଚାହିଁ ଘଣ୍ଟା ଘଣ୍ଟା ଧରି ଧ୍ୟାନରେ ବସି ପାରନ୍ତି... ଅନେକ ବର୍ଷ ତଳେ ଥରେ ଦିଲ୍ଲୀରେ ଜୁନ୍ ମାସର ଉତ୍ତପ୍ତ ମଧ୍ୟାହ୍ନରେ ମୁଁ ନର୍ଥ ଆଭିନ୍ୟୁ ଫ୍ଲାଟ୍‌କୁ ଟ୍ୟାକ୍ସିରେ ଫେରୁଛି, ଦେଖିଲି ରାସ୍ତା ସେପଟ ଲନ୍ ଉପରେ ଜଣେ ଡେଙ୍ଗା ପତଳା ଲୋକ, ସୂର୍ଯ୍ୟଦଗ୍ଧ ଘାସ ଲନ୍ ଉପରେ ଯୋଗାସନରେ ମଧ୍ୟାହ୍ନ ସୂର୍ଯ୍ୟ ଆଡ଼େ ଚାହିଁ ବସିଛି । ଦିନର ଉତ୍ତାପ ସେତେବେଳେ ୧୧୦ ଡିଗ୍ରୀରୁ କଦାପି କମ୍ ହୋଇ ନଥିବ । ଲୁ ବହୁଛି । ଖରାରେ ପଦାକୁ ବାହାରିଲେ ସନ୍‌ଷ୍ଟ୍ରୋକ୍‌ର ଆଶଙ୍କା ପଦେପଦେ ରହିଛି । ଅଥଚ ସେହିପରି ଖରା ଓ ଉତ୍ତାପକୁ ଉପେକ୍ଷା କରି ଏ ଯୋଗୀଟି ଆଉଟା ତମ୍ବା ପରି ଦିଶୁଥିବା ମଧ୍ୟାହ୍ନର ଆକାଶ ଆଉ ସୂର୍ଯ୍ୟଙ୍କ ଆଡ଼େ ଚାହିଁ ଧ୍ୟାନରେ ବସିଛି । ମୁଁ ବୁଝିଗଲି, ଏ ଜଣେ ତ୍ରାଟକ ଯୋଗୀ । ଅପରାହ୍‌ଣର ସୂର୍ଯ୍ୟ ପଶ୍ଚିମ ଆକାଶରେ ଢଳିବା ବେଳକୁ ତାଙ୍କର ଯୋଗ, ଧ୍ୟାନ ଶେଷ ହେବ ।

ଫ୍ଲାଟ୍ ବାରଣ୍ଡାରୁ ଚାହିଁଲି, ଦେଖା ଯାଉଥିଲା ପାଖ ରାଷ୍ଟ୍ରପତି ଭବନରୁ ଦଳଦଳ ହୋଇ ମାଳି ଓ ଅନ୍ୟ ଚତୁର୍ଥ ଶ୍ରେଣୀ କର୍ମଚାରୀମାନେ ସେମାନଙ୍କ ପରିବାର ଧରି ସେ ଯୋଗୀଙ୍କ ପାଖକୁ ଦର୍ଶନ ପାଇଁ ଆସୁଥିଲେ । ତାଙ୍କ ଚାରିପଟେ ସେମାନେ ଲନ୍ ଉପରେ ମେଳା ବାନ୍ଧି ବସୁଥିଲେ । ଯୋଗୀଙ୍କ ହାତର ଭଙ୍ଗୀରୁ ମନେ ହେଉଥିଲା, ସେ ଯେପରି ସେମାନଙ୍କୁ ସଂକ୍ଷିପ୍ତ ପ୍ରବଚନ ବା ସେହିପରି କିଛି ଶୁଣାଉଥିଲେ । ତା'ପରେ ସେମାନେ ତଳେ ମୁଣ୍ଡିଆ ମାରି ବିଦାୟ ନେଇ ନିଃଶବ୍ଦରେ ଚାଲି ଯାଉଥିଲେ ।

ଏହିପରି ସମୟରେ ଦିନେ ମୁଁ ଯୋଗୀଙ୍କ ପାଖକୁ ଆସିଲି, ତାଙ୍କଠାରୁ କିଛି ଶୁଣିବାପାଇଁ । ଭାବୁଥିଲି, ତାଙ୍କଠାରୁ ସାକ୍ଷାତରେ କିଛି ଗୂଢ଼ ଆଧ୍ୟାତ୍ମିକ ତତ୍ତ୍ୱ ଶୁଣିପାରିବି ବା ସେ ମୋତେ କୌଣସି ସାଧନମାର୍ଗ ବତାଇ ଦେବେ । ତାଙ୍କ ପାଖରେ ଦଣ୍ଡବତ

ହେବା ମାତ୍ରେ ସେ କ୍ଷୀଣ କଣ୍ଠରେ କହିଲେ, "ଜୀତେ ରହୋ" ତା'ପରେ ଗୋଟାଏ ପତ୍ରଦନା ଭିତରୁ ପ୍ରସାଦ ରୂପେ ସେ ମୋତେ କେତେଟା ଖଇ ଧରାଇ ଦେଲେ । ମୁଁ ସେ ପ୍ରସାଦ ପାଇସାରି ନିରବରେ କିଛି ସମୟ ସେହିଠାରେ ବସି ରହିଲି । ଯୋଗୀ ମଧ୍ୟ ନିରବ, ନିଶ୍ଚଳ । ମୁଁ ଅବଶେଷରେ ଆକୁଳ କଣ୍ଠରେ ନିବେଦନ କଲି, "ମହାରାଜ ! ମତେ କିଛି ଗୂଢ଼ ଆଧ୍ୟାତ୍ମିକ ତତ୍ତ୍ୱ କହନ୍ତୁ, ଯାହା ମୋ ଜୀବନକୁ ଧନ୍ୟ କରିଦେବ ।" ଯୋଗୀ ମହାରାଜ କିଛି ସମୟ ନିରବ ରହି କ୍ଷୀଣ କଣ୍ଠରେ ଧୀରେଧୀରେ ଯାହା ସବୁ ମୋତେ କହିଲେ, ସେ ସବୁ ସ୍କୁଲ୍ ପାଠ୍ୟବହିର କାନମୋଡ଼ା ପୁରୁଣା ପୃଷ୍ଠା ପରି ଅତି ମାମୁଲି ଓ ବୈଚିତ୍ର୍ୟହୀନ ! ସତ କହିବ, କାହାରି ଅନିଷ୍ଟ ଚିନ୍ତା କରିବ ନାହିଁ, ଦୁଃଖୀମାନଙ୍କର ସେବା କରିବ । ଏହିପରି କେତୋଟି ମାମୁଲି କଥା । ଆଶ୍ଚର୍ଯ୍ୟ ଓ ବିରକ୍ତି ଲାଗିଲା । ଏଇ ସବୁ ମାମୁଲି କଥା ଯାହା ସ୍କୁଲରେ ପାଠ ପଢ଼ିବା ଦିନ ଶିକ୍ଷକମାନଙ୍କଠାରୁ ସମସ୍ତେ ଶୁଣି ଆସି ଥାଆନ୍ତି, ସେଇ କଥା କହୁଛନ୍ତି ଏଇ ତ୍ରାଟକ ଯୋଗୀ ! କିନ୍ତୁ ଏତିକି କଥାର ଉପଲବ୍ଧି ପାଇଁ ମଧ୍ୟାହ୍ନ ସୂର୍ଯ୍ୟ ଆଡ଼େ ଚାହିଁ ଯୋଗାସନରେ ବସିବାର କି ପ୍ରୟୋଜନ ଥିଲା । ଅକାରଣରେ ମୋର ସମୟ ବରବାଦ୍ କଲି ବୋଲି ଭାବି, ସେଠାରୁ ଉଠିଆସିଲି ।

ତା'ପରେ ଅନେକ ଭାବିଛି, ସେଇ ତ୍ରାଟକ ଯୋଗୀଙ୍କ କଥା ଓ ତାଙ୍କ ସଂପର୍କରେ ସେଦିନର ମୋର ସେଇ ଅନୁଚ୍ଚାରିତ ପ୍ରଶ୍ନ । ପରେ କିନ୍ତୁ ମୋର ମନେ ହୋଇଛି, ଗୌତମ ବୁଦ୍ଧ ବୋଧିବୃକ୍ଷ ତଳେ ଦୀର୍ଘ ୧୨ ବର୍ଷ କାଳ ତପସ୍ୟାରତ ରହିବା ପରେ କ'ଣ ବା ଶେଷକୁ କହିଲେ । ଦୀର୍ଘ ୧୨ ବର୍ଷ କାଳ ବ୍ୟାପୀ କୃଚ୍ଛ୍ର ସାଧନା ପରେ ତାଙ୍କର ଉପଲବ୍ଧି ହେଲା, ଜୀବନ ଦୁଃଖମୟ ! କିନ୍ତୁ ପ୍ରତ୍ୟେକ ଦୁଃଖର କାରଣ ରହିଛି ଓ ଦୁଃଖର ନିଦାନ ମଧ୍ୟ ରହିଛି । ତା' ହେଲା କାମନାର ବିନାଶରେ ଦୁଃଖର ବିନାଶ, ଇତ୍ୟାଦି । କିନ୍ତୁ ଇଏ ବି ଥିଲା କେଉଁ ନୂଆ କଥା । ଏଥିପାଇଁ ଗୌତମବୁଦ୍ଧ ଦୀର୍ଘ ୧୨ ବର୍ଷ କାଳ ନ ଖାଇ ନ ପିଇ ତପସ୍ୟାରେ ବସିଥିଲେ ବା କାହିଁକି; ବସ୍ତୁତଃ ଯେତେ ପୀର ପୟଗମ୍ବର ଯେତେ ହୋଲି ସେଣ୍ଟ, ଯେତେ ସନ୍ଥ ପୁରୁଷ, ଯେତେ ମହାତ୍ମା, ଯେତେ ମହାମାନବ ଜୀବନବ୍ୟାପୀ କୃଚ୍ଛ୍ର ସାଧନା ପରେ ସେମାନେ ମନୁଷ୍ୟ ସମାଜକୁ ଏଇପରି ସବୁ ମାମୁଲି କଥା ଛଡ଼ା ଆଉ ଶୁଣାଇଛନ୍ତି ବା କ'ଣ ? କିନ୍ତୁ ତମେ ବା ମୁଁ ଏଇପରି କଥା ସବୁ ଯୁଗଯୁଗ ଧରି କହି ଚାଲିଲେ ସୁଦ୍ଧା, କେହି ତ ଆମ ପାଖରୁ ଏସବୁ ଶୁଣିବା ପାଇଁ ଭୁଲରେ ଥରେ ସୁଦ୍ଧା ଆସିବେ ନାହିଁ । ଲୋକସଂଗ୍ରହ ପାଇଁ ସେମାନଙ୍କୁ ଏହିପରି କୃଚ୍ଛ୍ର ସାଧନା କରିବାପାଇଁ ପଡ଼ିଥାଏ । ଏଇ କୃଚ୍ଛ୍ରସାଧନା ସଂପୂର୍ଣ୍ଣ ଭାବରେ ସେମାନଙ୍କ ନିଜ ପାଇଁ, ଜଗତପାଇଁ ନୁହେଁ । କିନ୍ତୁ ସେମାନଙ୍କର ଉପଲବ୍ଧି ସବୁ ଅତି ମାମୁଲି ! ଘଷରା ପଇସା ପରି ଅତି ପୁରୁଣା ।

ସେଇ ତ୍ରାଟକ ଯୋଗୀ ମଧ୍ୟାହ୍ନର ସୂର୍ଯ୍ୟ ଆଡ଼େ ଚାହିଁ, ଯୋଗାସନରେ ବସି, କୌଣସି ନୂତନ ସତ୍ୟର ସନ୍ଧାନ କରୁ ନ ଥିଲେ ! ସନାତନ ସେଇ କାଳର ସେଇସବୁ ପୁରୁଣା କଥା ଶୁଣେଇବା ପାଇଁ ସେ କେବଳ ଲୋକସଂଗ୍ରହ କରୁଥିଲେ ।

ସେଇ ତ୍ରାଟକ ଯୋଗୀ ଏବେ ବଞ୍ଚିଥିଲେ, ହୁଏତ ସୂର୍ଯ୍ୟଙ୍କ ଆଡ଼େ ଚାହିଁ ଚାହିଁ ଅନ୍ଧ ହୋଇ ଯିବେଣି । କିନ୍ତୁ ସତ୍ୟ, କରୁଣା ଓ ମୈତ୍ରୀ ପ୍ରଭୃତି ଗୁଣ ଆଚରଣ ପାଇଁ ଯେଉଁ ଭକ୍ତ ଓ ବିଶ୍ୱାସୀମାନଙ୍କୁ ସେ ଏତେ ପ୍ରବଚନ ଶୁଣାଇ ଆସିଥିଲେ, ସେମାନଙ୍କ ଜୀବନରେ ସେସବୁ ତ କ୍ଷୀଣତମ ରେଖାପାତ କରିନଥିବ । ଅପର ପକ୍ଷରେ ସେମାନେ ଅସତ୍ୟ, ଈର୍ଷା, ମାତ୍ସର୍ଯ୍ୟ ଓ କ୍ରୂରତା ପ୍ରଭୃତି କର୍ଦ୍ଦମ ପଙ୍କ ଭିତରକୁ ସେତିକି ସେତିକି ଖସି ଯାଇଥିବେ ।

ଏଇ ତ୍ରାଟକ ଯୋଗୀଙ୍କ ପରି ସନ୍ଥ ଓ ସାଧକମାନେ ପ୍ରକୃତରେ ବ୍ୟର୍ଥତା ଓ ବିଫଳତାର ଗୋଟିଏ ଗୋଟିଏ ବିସ୍ମୟୋଦ୍ଦୀପକ ପ୍ରତିରୂପ ! ଇତିହାସରେ କେଉଁ ମହାତ୍ମା ବା ମହାପୁରୁଷ କେବେ ବା ସଫଳ ହୋଇଛନ୍ତି, ସେମାନେ ଘନ ମେଘାଚ୍ଛନ୍ନ ଆକାଶରେ ବାରମ୍ବାର ଲଟା ବିଜୁଳି ପରି ଚମକି ଉଠିଛନ୍ତି । ତାହା କିନ୍ତୁ ଆଲୋକିତ କରିବା ପାଇଁ ଯେତେ ନୁହେଁ, ସେତେ ଚେତେଇ ଦେବାପାଇଁ । ଏ ରାତ୍ରିର ଅନ୍ଧକାର କେତେ ସୂଚୀଭେଦ୍ୟ, କେତେ ନିରନ୍ଧ୍ର !

୦୩/୧୨/୮୮

# ଜଗନ୍ନାଥ-ଜଣାଣ

ସପ୍ତାହରେ ପ୍ରତି ଶନିବାର ଦିନ ସକାଳେ, ସଦର ରାସ୍ତାରୁ ଆମ ପଡ଼ାର ନିଛାଟିଆ ଗଳିରାସ୍ତା ଉପରକୁ ଗଡ଼ିଆସେ ଗୋଟିଏ ବିଷର୍ଣ୍ଣ ପଟୁଆର । ଦଳେ କୁଷ୍ଠରୋଗୀ ବାହାରି ଥାଆନ୍ତି ଭିକ୍ଷା ସଂଗ୍ରହ ପାଇଁ । ଦାରିଦ୍ର୍ୟ, ବ୍ୟାଧି, ଅପରିଚ୍ଛନ୍ନତା ଓ କ୍ଷୁଧାର ପଟୁଆର ! ଏମାନଙ୍କ ଭିତରେ ଥାଆନ୍ତି ପୁରୁଷ ଓ ସ୍ତ୍ରୀ ଏପରିକି ଶିଶୁ ସୁଦ୍ଧା । ସମସ୍ତଙ୍କ ଦେହ ଉପରେ କୁଷ୍ଠ ବ୍ୟାଧିର ଦନ୍ତଚିହ୍ନ । କେତେକାଂଶରେ ବିକୃତ ଓ ଅପଙ୍ଗ । ଆମ ପଡ଼ାରେ କେତେକ ଗୃହସ୍ଥ ଗ୍ରହରିଷ୍ଟ ନିବାରଣ ପାଇଁ ପ୍ରତି ଶନିବାର ଦିନ ସେମାନଙ୍କୁ ଭିକ୍ଷା ଦେଇ ଥାଆନ୍ତି । ଆମ ପଡ଼ାଟା ବୋଧେ ସେଇମାନଙ୍କ ଇଲାକା । କାରଣ ଏଇ ଦଳଟିକୁ ମୁଁ ପ୍ରାୟ ଦେଖିଆସୁଛି, ଗତ କେତେ ବର୍ଷ ଧରି । ଏ ଦଳରେ ସମସ୍ତେ ଭିକ୍ଷା ମାଗିବାବେଳେ ବାହାର ଫାଟକ ପାଖରେ ଠିଆହୋଇ 'ଭିକ୍ଷା ମିଳୁ', ଦୟାକରି ମା' ବା ସେହିପରି ବିଭିନ୍ନ ପ୍ରକାର କଣ୍ଠରେ ଆର୍ତ୍ତ ଚିତ୍କାର କରିଥାଆନ୍ତି ।

କିନ୍ତୁ ପଟୁଆର ଆଗରେ ଯେଉଁ କୁଷ୍ଠୀଟି ଚାଲିଥାଏ, ସେ ଅନ୍ୟମାନଙ୍କ ପରି ଆର୍ତ୍ତନାଦ କରି ଭିକ୍ଷା ମାଗେ ନାହିଁ । କିମ୍ବା ତା' ହାତରେ ଆଲୁମିନିୟମ୍ ବାଟି ବା ଟିଣ ପାତ୍ର ନଥାଏ । ଗୋଟିଏ ଅନ୍ଧୁଣୀକୁ ଚକଲଗା ଗୋଟିଏ ଡାବଲରେ ବସାଇ, ହାତ ଠେଲା ଗାଡ଼ିପରି ଠେଲିଠେଲି ସେ ତାକୁ ନେଇ ଚାଲେ ଆଉ ଗାଏ ଜଗନ୍ନାଥଙ୍କ ଜଣାଣ । ତା'ର କଣ୍ଠରେ ମୁଁ ଶୁଣିଛି, "ମଣିମା ଶୁଣିମା ହେଉ ଗରିବ ଡାକ," "ଦୀନବନ୍ଧୁ ଦଇତାରି, ଦୁଃଖ ନଗଲା ମୋହରି," ଏପରିକି "ଆହେ ନୀଳଶୈଳ ପ୍ରବଳ ମତ୍ତ ବାରଣ" ଭଜନ ! କିନ୍ତୁ ସେ ଯେତେବେଳେ ଗାଏ "ଦୀନ ବାନ୍ଧବ ହେ କେ କି ଦେଲା, ମୁଁ ନଦେଲି" । ଭାରି ସତ୍ୟ ନିଷ୍ଠ ଲାଗେ ତାର କଣ୍ଠ ସ୍ୱର ଓ ଜଣାଣ । ମନେହୁଏ ଯେପରି, ତା'ର ଅନ୍ତରର ଗଭୀରତମ ଅନ୍ତଃସ୍ଥଳ ଭିତରୁ ଏହା ନିଗିଡ଼ି ପଡୁଛି । ଏଥିରେ ଅନ୍ୟର ଦୟା ବା ସହାନୁଭୂତି ଆକର୍ଷଣ କରିବା ପାଇଁ ଉଦ୍ୟମ ନାହିଁ । ଅଭିନୟ ନାହିଁ, ଅଛି ଗଭୀର ଉପଲବ୍ଧି ଓ ଆନ୍ତରିକତା । ସେ ଯାହା ଗାଉଛି, ତାହା ଯେପରି ତା'ର ଅନ୍ତରର ଉପଲବ୍ଧ । କିନ୍ତୁ

କାଠ ଢାବଲ ଭିତରେ ଯେଉଁ ଅନ୍ଧୁଣୀଟି ମକଚି ଯାଇଥିବା ଗୋଟାଏ ଠୁଙ୍ଗା ପରି ହାତରେ ଆଲୁମିନିୟମ୍ ବାଟି ଧରି ବସିଥାଏ, ସେଇ ବାଟି ଭିତରକୁ ଠକ୍‌ଠାକ୍ ହୋଇ ପଡ଼େ ଅନେକ ପଇସା । ତା'ର ଗଭୀର ଆନ୍ତରିକତା ପାଇଁ କେଉଁଦିନୁ ଅଳକ୍ଷିତରେ ସେଇ କୁଷ୍ଠୀଟି ପ୍ରତି ମୋ ମନରେ ଗଭୀର ସହାନୁଭୂତି ଅଙ୍କୁରିତ ହୋଇ ଉଠିଥିଲା । ପ୍ରତି ଶନିବାର ସକାଳେ ମୁଁ ତାକୁ ଅପେକ୍ଷା କରୁଥିଲି କହିଲେ ଚଳେ ।

ଥରେ ପୂର୍ବ ରାତିରେ ଚନ୍ଦ୍ରଗ୍ରହଣ ଲାଗିଥିଲା । ସକାଳେ ସର୍ବମୋକ୍ଷ ପରେ ଗୋଟାଏ ଦେବୀମନ୍ଦିରରେ ଦର୍ଶନାର୍ଥୀମାନଙ୍କର ପ୍ରବଳ ସମାଗମ ଆରମ୍ଭ ହୋଇଯାଇଥିଲା । ସେଇ ଅଞ୍ଚଳର କୁଷ୍ଠରୋଗୀମାନେ ମନ୍ଦିର ସାମନାରେ ଧାଡ଼ିବାନ୍ଧି ବସି ଯାଇଥିଲେ ଦର୍ଶନାର୍ଥୀମାନଙ୍କ ଠାରୁ ଭିକ୍ଷା ସଂଗ୍ରହ ପାଇଁ, ଏପରି ଦିନମାନଙ୍କରେ ସେମାନଙ୍କୁ ବେଶ୍ ଭିକ୍ଷା ଓ ପ୍ରସାଦ ମଧ୍ୟ ସହଜରେ ମିଳିଯାଇଥାଏ । ସେଥିପାଇଁ ସେମାନଙ୍କ ଭିତରେ ଠେଲାଠେଲି ଓ ଛଡ଼ାଛଡ଼ି ମଧ୍ୟ ଲାଗିଯାଏ । କେହି ପ୍ରସାଦ ବାଣ୍ଟିବା ବେଳେ ସେଇମାନଙ୍କ ମେଳରେ ମୁଁ ହଠାତ୍ ଲକ୍ଷ୍ୟ କଲି ସେଇ ଜଣାଣ ବୋଲାଳି କୁଷ୍ଠୀଟିକୁ । ଯିଏ ବୋଧହୁଏ ଏ ଦଳର ଲିଡ଼ର ବା ମସ୍ତାନ । କେମ୍ପା ହାତରେ ଗୋଟାଏ ଟିଣ ଆଉ ବାଡ଼ି ଧରି ଭିକାରୀମାନଙ୍କ ମେଳରେ ସେ ଏପାଖ ସେପାଖ ହେଉଥିଲା । ଆଉ ଭିକାରୀ ଦଳରେ ଛଡ଼ାଛଡ଼ି ଭିଡ଼ାଓଟରା ଲାଗିଲେ ବା କେହି ଧାଡ଼ି ଭାଙ୍ଗି ଭିକ୍ଷା ପାଇଁ ଆଗକୁ ମାଡ଼ି ଆସିଲେ ସେ ଗାଳି ଗୁଲଜ କରି ସେମାନଙ୍କୁ ଚୁପ୍ କରାଉଥିଲା । ସେମାନଙ୍କୁ ନିଜ ନିଜ ସ୍ଥାନରେ ବସାଉଥିଲା ଆଉ ଅନ୍ୟ ଇଲାକାରୁ କେଉଁ କୁଷ୍ଠରୋଗୀ ବା ରୋଗିଣୀଟାଏ ସେଠାକୁ ଚାଲିଆସିଥିଲେ ବାଡ଼ି ଉଞ୍ଚାଇ ସେମାନଙ୍କୁ ସେଠାରୁ ତଡ଼ି ଦେଉଥିଲା । କାଠ ଢାବଲ ଭିତରେ ଯେଉଁ ଅନ୍ଧୁଣୀକୁ ବସାଇ ସେ ଭିକ୍ଷାମାଗି ବୁଲେ ସେ ମଧ୍ୟ ବସି ରହିଥିଲା । ସେଇ ଭିକାରୀ ମେଳରେ, ସେଇ କାଠ ଢାବଲ ଭିତରେ ମନ୍ଦିରରୁ ବାହାରି ଏ ଦୃଶ୍ୟ ଦେଖିବା ପାଇଁ ମୁଁ ଅଟକି ଯାଇଥିଲି । ମୋତେ ଆଶ୍ଚର୍ଯ୍ୟ ଲାଗୁଥିଲା, କୁଷ୍ଠୀମାନଙ୍କର ସୁଦ୍ଧା ଜଣେ ଲିଡ଼ର ପ୍ରୟୋଜନ । ବିନା ଲିଡ଼ରରେ ଭିକ୍ଷା ମାଗିବା ସୁଦ୍ଧା ସମ୍ଭବ ନୁହେଁ ।

ହଠାତ୍ ଲକ୍ଷ୍ୟ କଲି, ସେଇ କୁଷ୍ଠୀ ମସ୍ତାନ ଲମ୍ବା ଲମ୍ବା ପାହୁଲ ପକାଇ ଚାଲିଗଲା, ମନ୍ଦିରଠାରୁ ପ୍ରାୟ ୩୦ ଫୁଟ୍ ଛଡ଼ାରେ ଗୋଟାଏ ଗଛ ତଳେ ଗୋଟାଏ ପାନ ସିଗାରେଟ କ୍ୟାବିନ୍ ପାଖକୁ । ମୋ କାର୍‌ଟା ମଧ୍ୟ ସେହିଠାରେ ପାର୍କ କରି ରହିଥିଲା । କାର୍ ଭିତରେ ବସି ମୁଁ ସେ ଲୋକଟାର ଗତିବିଧି ଲକ୍ଷ୍ୟ କରିବାକୁ ଲାଗିଲି । କ୍ୟାବିନ୍ ଆଢୁଆଳରେ ଗୋଟାଏ ପ୍ରାୟ ୪୦ ବର୍ଷର ହୃଷ୍ଟପୁଷ୍ଟ ମହିଳା। ସାବ୍‌ନା। କସ୍ତା ଶାଢ଼ି ପିନ୍ଧା ଚେହେରାରୁ ମନେ ହେଉଥିଲା, ସେ ଯେପରି ଆସିଥିଲା କେଉଁ ମଫସଲ ଗାଁରୁ । କୁଷ୍ଠୀ ମସ୍ତାନ୍ ତା' ପାଖକୁ ଯାଇ ତା' ସହିତ ଦୁଇ ତିନି ମିନିଟ୍ କ'ଣ କଥାବାର୍ତ୍ତା କଲା । କିନ୍ତୁ

କୁଷ୍ଠୀର ଯେପରି କଥାବାର୍ତ୍ତା ପାଇଁ ସେତେବେଳେ ସମୟ ନଥିଲା । ତା' ପରେ ସେ ପିନ୍ଧିଥିବା ହାପ୍‌ସାର୍ଟ ପକେଟ ଭିତରୁ ଓ ଅଣ୍ଟା ଖୋସଣିରୁ କିଛି ଟଙ୍କା ପଇସା କାଢ଼ି ସେଇ ସ୍ତ୍ରୀ ଲୋକଟିର ଶାଢ଼ି କାନି ଭିତରକୁ ଢାଳିଦେଇ କହିଲା, "ପଳା ଏଥର । ମୋତେ ଆଜି ବେଳ ନାହିଁ ।"

ସେ ସ୍ତ୍ରୀ ଲୋକଟି ଚାଲିଯିବା ପରେ ମୁଁ ସେଇ କୁଷ୍ଠୀକୁ ମୋ ଗାଡ଼ି ପାଖକୁ ଡାକିଲି । ସେ ମୋତେ ଚିହ୍ନିପାରି ନମସ୍କାର କଲା ଓ ଟଙ୍କାଏ ବା ଆଠଣିଟାଏ ମିଳିଯିବା ଆଶାରେ ମୋ କାର୍ ପାଖକୁ ଆସିଲା । ମୁଁ ପଚାରିଲି, "ସେ ସ୍ତ୍ରୀ ଲୋକଟି କିଏ ? ଯାହା ଶାଢ଼ି କାନିରେ ତୁ ପଇସା ଢାଳିଲୁ ।"

ସେ ମ୍ଳାନ ହସି ଲାଜୁରା କଣ୍ଠରେ କହିଲା, "ସେ ମୋ ଭାରିଜା । ଫି ମାସରେ ଥରେ ଦୁଇଥର ଗାଁରୁ ଏଇଠିକି ମୋ ପାଖକୁ ଆସେ ଟଙ୍କା ପଇସା ପାଇଁ ।" ମୁଁ ପଚାରିଲି, "ତୁ ଗାଁକୁ ଯାଇ ଦେଇ ଆସୁନାହୁଁ କାହିଁକି ?" ସେ ଉତ୍ତର ଦେଲା, "ତା ସ୍ତ୍ରୀ ଆଉ ସାଇ ଲୋକେ ତାକୁ ଗାଁରୁ ତଡ଼ିଦେଇଛନ୍ତି ।" ତଥାପି ସେ ତା' ଭାରିଜାକୁ ପଇସା ଦେବାରେ ହେଳା କରୁ ନାହିଁ । ଯେଉଁ ଅନ୍ଧୁଣୀକୁ ତୁ କାଠ ଢାବଲରେ ବସାଇ ଆମ ପଡ଼ାକୁ ଭିକ୍ଷା ମାଗି ଆସୁ, ସେ କିଏ ? ସେ କ'ଣ ତୋ ଭାରିଜା ନୁହେଁ ?" ସେ ଲୋକଟା ତାଚ୍ଛଲ୍ୟ ମିଶା କଣ୍ଠରେ ଉତ୍ତର ଦେଲା, ସେଇଟା ଅନ୍ଧୁଣୀ ଭିକାରୁଣୀଟିଏ । ତାକୁ ସେମିତି ବୁଲାଇଲେ ଭଲ ଦି' ପଇସା ମିଳିଥାଏ, ସେଇଥିପାଇଁ ।

ଅବାକ୍ ଲାଗିଲା । କୁଷ୍ଠୀର ଦୁନିଆରେ ଯେପରି ଲିଡ଼ର ରହିଛି, ସେହିପରି ମଧ୍ୟ ରହିଛି ଶୋଷଣ ଓ ଲୁଣ୍ଠନ । ସେହିପରି ଘରସଂସାର ପାଇଁ ମଧ୍ୟ ମାୟା ଓ ଛଳନା । କୁଷ୍ଠୀର ଜଗନ୍ନାଥ ଙ୍କଣାଣରେ ତା' ହେଲେ ଆନ୍ତରିକ ଉପଲବ୍ଧ ନଥିଲା । ଏହା ଥିଲା କେବଳ ଏକ ପେସାଦାରୀ କୌଶଳ ।

୧୦/୧୨/୮୮

# କକ୍‌ଟେଲ୍ ପାର୍ଟି

ସର୍ଦ୍ଦାର ଆଙ୍ଗ୍ରେଙ୍କର କାର୍ଯ୍ୟକାଳ କାଉନ୍‌ସିଲ୍ ଅଫ୍ ଷ୍ଟେଟସ୍‌ର ଶେଷ ହୋଇଯିବା ପରେ, ସେ ବିଦାୟ ନେବା ପୂର୍ବରୁ, ତାଙ୍କ ଫ୍ଲାଟ୍‌ରେ ଗୋଟିଏ କକ୍‌ଟେଲ୍ ପାର୍ଟିର ଆୟୋଜନ କରିଥିଲେ । ତାଙ୍କର କେତେଜଣ ଘନିଷ୍ଠ ବନ୍ଧୁ ଓ ସହକର୍ମୀ ଏହି କକ୍‌ଟେଲ୍ ପାର୍ଟିକୁ ଆମନ୍ତ୍ରିତ ହୋଇଥିଲେ । ସେମାନଙ୍କ ମଧ୍ୟରେ ଥିଲି ମୁଁ ଓ ରାଜସ୍ଥାନ ଉଦୟପୁରର ଶ୍ରୀ ମହେନ୍ଦ୍ର ସିଂ ରାଣାବତ୍ । ରାଣାବତ୍ ଥିଲେ ଉଦୟପୁର ରାଣାବଂଶର ଜଣେ ବିରାଦାର୍ । ସର୍ଦ୍ଦାର ଆଙ୍ଗ୍ରେ ସେହିପରି ଥିଲେ । ଗୋଟିଏ ଐତିହାସିକ ମରହଟ୍ଟା ରାଜବଂଶର ଜଣେ ଆତ୍ମୀୟ ଉଭୟଙ୍କ ଚେହେରାରେ ମଧ୍ୟଯୁଗୀୟତାର ଛାପ । ଆଚରଣରେ ସେହିପରି ଶିଷ୍ଟତା, ସୌଜନ୍ୟ ଓ ଆଭିଜାତ୍ୟର ମୁଦ୍ରା । ସର୍ଦ୍ଦାର ଆଙ୍ଗ୍ରେଙ୍କ କକ୍‌ଟେଲ୍ ପାର୍ଟି ଥିଲା ଏକ ଇଲାହୀ କାରବାର । କାର୍‌ପେଟ୍ ବିଛା ପ୍ରଶସ୍ତ ଡାଇନିଙ୍ଗ୍ ହଲ୍‌ର ଗୋଟିଏ ପାଖକୁ ଲାଗି ବାର୍‌ର ବ୍ୟବସ୍ଥା ହୋଇଥିଲା । ସାମ୍ପେନ୍, ସେରୀ, ପୋର୍ଟ, ମଦିରା, ଡ୍ରାଇମାର୍ଟିନୀ ସାଙ୍ଗକୁ ହୁଇସ୍କି, ରମ୍ ଓ ବ୍ରାଣ୍ଡି ପ୍ରଭୃତି ଡ୍ରିଙ୍କ୍‌ସମାନଙ୍କର ବୋତଲ ସବୁ ବେଶ ମେହେଗାନୀ କାଠର ବାର କାଉଣ୍ଟର ଉପରେ ବର୍ଣ୍ଣାଢ୍ୟ ଦେଖାଯାଉଥିଲା । କାଉଣ୍ଟର ପଛରେ ଉର୍ଦ୍ଦୀ ପିନ୍ଧା ଦୁଇଜଣ ୱେଟର ଠିଆ ହୋଇଥିଲେ, ଚିତ୍ର ପୁତଳୀ ପରି ଓ ଅଦୂରରେ ବସିଥିବା ଅତିଥିମାନଙ୍କ ମଧ୍ୟରେ ସେମାନଙ୍କ ଅର୍ଡ଼ର ମୁତାବକ ଡ୍ରିଙ୍କ୍‌ସ ପରିବେଷଣ କରୁଥିଲେ । ଅନ୍ୟ ପାଖରେ ଆଉ ଗୋଟାଏ କାଉଣ୍ଟର ଉପରେ ହଟ୍‌କେଶ୍‌ମାନଙ୍କରେ ଡିନର ପାଇଁ ଖାଦ୍ୟ ସବୁ ପ୍ରସ୍ତୁତ ହୋଇ ରହିଥିଲା । ମାତ୍ର ଖାଦ୍ୟ ପାଇଁ କାହାରି ଆଗ୍ରହ ନଥିଲା ।

ହଲ୍ ଭିତରେ ସିଗାରେଟ୍ ଧୂଆଁର କୁହୁଡ଼ି, ଗ୍ଲାସ୍‌ମାନଙ୍କର ଟୁଙ୍ଗ୍‌ଟାଙ୍ଗ୍ ଶବ୍ଦ, ଅତିଥିମାନଙ୍କର ଗୁଞ୍ଜରଣ, ଆଉ ତା'ରି ଭିତରେ ବେଳେ ବେଳେ ଅଟ୍ଟହାସ ମଧ୍ୟରେ ରାତ୍ରିର ପ୍ରହର ସବୁ କ୍ରମେ ହଜି ଯାଉଥିଲା । ସର୍ଦ୍ଦାର ଆଙ୍ଗ୍ରେ କିନ୍ତୁ ଅତିଥିମାନଙ୍କର ପରିଚର୍ଯ୍ୟା ତଦାରଖ କରୁଥିଲେ; କେଉଁଠି ଯେପରି କୌଣସି ତ୍ରୁଟି ବିଚ୍ୟୁତି ନ ଘଟେ । ସର୍ଦ୍ଦାର ଆଙ୍ଗ୍ରେ ଥିଲେ ଟୀ ଟୋଟାଲର । ଅର୍ଥାତ୍ ସେ କୌଣସି ପ୍ରକାର ମଦ୍ୟ ସ୍ପର୍ଶ କରୁ

ନଥିଲେ । କିନ୍ତୁ କକ୍‌ଟେଲ୍ ତିଆରି କରିବାରେ ସେ ଥିଲେ ଧୁରନ୍ଧର । କକ୍‌ଟେଲ୍‌ର ଅନେକ ପ୍ରକାର 'ରେସିପୀ' ମାଲୁମ୍ ଥିଲା ତାଙ୍କୁ । ସେହିସବୁ 'ରେସିପୀ' ଅନୁସାରେ ବେଳେବେଳେ ସେ ବିଭିନ୍ନ ପ୍ରକାରର କକ୍‌ଟେଲ୍ ତିଆରି କରାଇ କୌଣସି କୌଣସି ଅତିଥିଙ୍କ ପାଖକୁ ପଠାଇ ଦେଉଥିଲେ । ମଧ୍ୟଯୁଗୀୟ ଦିଲଦରାଜ ଆତିଥେୟତା ଓ ଉଦାରତାର ସେ ଥିଲେ ଯେପରି ଏକ ପ୍ରତିରୂପ । କିନ୍ତୁ ତାଙ୍କ ଚନ୍ଦା ମୁଣ୍ଡ ପ୍ରଶସ୍ତ କପାଳରେ ସିନ୍ଦୂର କଲି, ଗହଳ ଭୂଲତା ତଳେ ଦୁଇଟା ବଡ଼ ବଡ଼ ଆଖି ଓ ଦୁଇପଟ ବାଘୁଆ ନିଶ ଦେଖିଲେ, ମୋର ବରାବର ମନେପଡ଼ିଯାଏ, ମରହଟ୍ଟା ନୌ-ବାହିନୀର କୌଣସି ଦୁର୍ଦ୍ଧର୍ଷ ସର୍ଦ୍ଦାର ବା ପାଇରେଟ୍‌ର କଥା । ସେହିପରି ଥିଲା ତାଙ୍କର ଚେହେରା । କିନ୍ତୁ ଆପାତ କଠୋରତା ତଳେ ଥିଲା, ବନ୍ଧୁ ବତ୍ସଳତା, ଆଭିଜାତ୍ୟ, ଉଦାର ଆତିଥେୟତା ପ୍ରଭୃତି ବହୁ ମଧ୍ୟଯୁଗୀୟ ସଦ୍‌ଗୁଣ ।

ରାତି ସେତେବେଳକୁ ବାରଟା ବାଜି ଯାଇଥିଲା । ମୋ ପାଖରେ ମହେନ୍ଦ୍ର ସିଂ ରାଣାବତ୍ ଚୁପ୍‌ଚାପ୍ ବସି ଗ୍ଲାସ୍ ପରେ ଗ୍ଲାସ୍ ହୁଇସ୍କି ପିଉଥିଲେ, ଆଉ ବେଳେବେଳେ ଗମ୍ଭୀର ଭାବରେ ସର୍ଦ୍ଦାର ଆଙ୍ଗ୍ରେଙ୍କ ଆଡ଼େ ଚାହୁଁଥିଲେ । ତାଙ୍କ ସହିତ କଥାବାର୍ତ୍ତା ଆରମ୍ଭ କଲେ ସେ ସଂକ୍ଷେପରେ, "ହଁ, ବାନା" ଏହିପରି କିଛି ଗୋଟାଏ କହି ଚୁପ୍ ହୋଇ ଯାଉଥିଲେ । ତାଙ୍କଠାରେ ଏପରି ଆଚରଣ ମୁଁ ଆଉ କେବେ ଲକ୍ଷ୍ୟ କରିନଥିବାରୁ ମନେମନେ ବିସ୍ମିତ ହେଉଥିଲି । ଏପରି ଏକ କକ୍‌ଟେଲ୍ ପାର୍ଟିରେ ରାଣାବତ୍‌ଙ୍କର କ'ଣ ହୋଇଗଲା ଆଜି ? ଭାବିପାରୁ ନଥିଲି । ହଠାତ୍ ଘଟିଗଲା ଗୋଟାଏ ଅଦ୍ଭୁତ କାଣ୍ଡ । ରାଣାବତ ଅଳ୍ପ ଟଳିଟଳି ଲମ୍ବା ଲମ୍ବା ପାହୁଲ ପକାଇ ବାର୍-କାଉଣ୍ଟର ପାଖକୁ କାହିଁକି ମାଡ଼ି ଯାଇଥିଲେ, ମୁଁ ବୁଝିପାରୁ ନଥିଲି । ସେ ହଠାତ୍ ସର୍ଦ୍ଦାର ଆଙ୍ଗ୍ରେଙ୍କ ତଣ୍ଟି ଦୁଇପଟେ ଦୁଇ ହାତରେ ଯାବ ପକାଇ ଚିତ୍କାର କରି ଉଠିଲେ, "ୟୁ କ୍ରାଫ୍‌ଟୀ ମରହଟ୍ଟା ଚିଫ୍‌ଟେନ୍ ! ୟୁ ହାଡ୍ ବିଟ୍ରେଡ୍ ଅସ୍ !" କଥା କ'ଣ ? ସର୍ଦ୍ଦାର ଆଙ୍ଗ୍ରେ ତ ସେଇ ରାତି ନଅଟାବେଳୁ, ଏ ପର୍ଯ୍ୟନ୍ତ ବାର କାଉଣ୍ଟର ପାଖରେ ଠିଆ ହୋଇ ଅତିଥିମାନଙ୍କର ପରିଚର୍ଯ୍ୟା କରୁଛନ୍ତି । ବେଳେବେଳେ ଅତିଥିମାନଙ୍କର ମେଳରେ ବୁଲି ସେମାନଙ୍କ ନୂଆ 'ରେସିପି'ର କକ୍‌ଟେଲ୍ ପଠାଇବେ କି ବୋଲି ସୁଦ୍ଧା ପଚାରି ବୁଝୁଛନ୍ତି । କାହା ଗ୍ଲାସ୍‌ରୁ ଡ୍ରିଙ୍କ୍‌ସ ଶେଷ ହୋଇଗଲା । ପୁଣି ନୂଆ ଗ୍ଲାସ୍ ଆଣିବା ପାଇଁ ସେ ୱେଟରମାନଙ୍କୁ କହୁଛନ୍ତି । ରାଣାବତ୍‌ଙ୍କ ପାଖକୁ ସେ ଅଳ୍ପ ପୂର୍ବେ ଆସି ନିଜ ହାତରେ ହୁଇସ୍କି ପରିବେଷଣ କରିଯାଇଥିଲେ । ସେ ଆଉ ବିଟ୍ରେ କଲେ କାହାକୁ କେତେବେଳେ ? ଆମେ କେତେଜଣ ରାଣାବତ୍‌ଙ୍କୁ ଛଡ଼ାଇ ଆଣି ତାଙ୍କୁ ଗୋଟାଏ ସୋଫା ଉପରେ ବସାଇ ଦେଲୁ । ସର୍ଦ୍ଦାର ଆଙ୍ଗ୍ରେ କିନ୍ତୁ ମୃଦୁ ମୃଦୁ ହସୁଥାଆନ୍ତି । ଯେପରି କେଉଁଠି କିଛି ଘଟିନାହିଁ । ମାତ୍ର ତା' ଉପରେ କକ୍‌ଟେଲ୍ ପାର୍ଟିର ସବୁ ଆମୋଦ

ମଉଳି ଗଲା । ଆମେ କିଛି କିଛି ଖାଦ୍ୟ ପ୍ଲେଟ୍‌ରେ ନେଇ ଶୀଘ୍ର ଶୀଘ୍ର ରାତ୍ରି ଭୋଜନ ଶେଷ କରି ସର୍ଦ୍ଦାର ଆଙ୍ଗ୍ରେଙ୍କ ପାଖରୁ ବିଦାୟ ନେଇ ଚାଲିଆସିଲୁ । ରାଣାବତ୍ ସୁଦ୍ଧା ସର୍ଦ୍ଦାର ଆଙ୍ଗ୍ରେଙ୍କ ଦୁଇହାତ ଦୀର୍ଘ ସମୟ ପର୍ଯ୍ୟନ୍ତ ଧରି ବିଦାୟ ନେଇ ଆସିବା ବେଳେ କହିଲେ, "ଗୁଡ୍ ନାଇଟ୍" । ସର୍ଦ୍ଦାର ଆଙ୍ଗ୍ରେ ଉତ୍ତର ଦେଲେ, "ଗୁଡ୍ ମର୍ଣ୍ଣିଙ୍ଗ୍" । ରାତି ସେତେବେଳକୁ ଗୋଟାଏ ପାଖାପାଖି ।

ଟ୍ୟାକ୍ସିରେ ଫେରିବାବେଳେ ରାଣାବତ୍‌ଙ୍କୁ କକ୍‌ଟେଲ୍ ପାର୍ଟିରେ ତାଙ୍କ ଅଦ୍‌ଭୂତ ଆଚରଣର କଥା ପଚାରିଲି । ସେ ମୋତେ ଯାହା କହିଲେ, ତା'ର ଅର୍ଥ ହେଉଛି, ରାଜପୁତ୍‌ମାନେ ଅଷ୍ଟାଦଶ ଶତାବ୍ଦୀରେ ମୋଗଲ ଶକ୍ତି ବିରୁଦ୍ଧରେ ମରହଟ୍ଟାମାନଙ୍କ ସହିତ ମିଶି ଲଢ଼ାଇ ଲଢୁଥିବାବେଳେ ଏଇ ମରହଟ୍ଟାମାନେ ବିଶ୍ୱାସଘାତକତା କରିଥିଲେ; ଯାହା ଫଳରେ ରାଜ୍‌ପୁତ୍ ଶକ୍ତି ବିପର୍ଯ୍ୟସ୍ତ ହୋଇଗଲା, "କିନ୍ତୁ ସେ ଇତିହାସର ଦୁଇଶହ ବର୍ଷ ପରେ ତୁମେ ଆଜି ବିଚରା ସର୍ଦ୍ଦାର ଆଙ୍ଗ୍ରେଙ୍କ ଉପରେ ଏପରି [illegible]ଣ କଲ କାହିଁକି ? କଥାଟା ତ ସୁନ୍ଦର ହେଲା ନାହିଁ ।" ରାଣାବତ୍ କୌଣସି ଉତ୍ତର ଦେଲେ ନାହିଁ । ମରହଟ୍ଟାମାନଙ୍କର ବିଶ୍ୱାସଘାତକତା ଫଳରେ ଦୁଇଶହ ବର୍ଷ ତଳେ ରାଜପୁତ୍ ଶକ୍ତିର ଯେଉଁ ବିପର୍ଯ୍ୟୟ ଘଟିଥିଲା, ଉଦୟପୁର ରାଣାବଂଶର ମହେନ୍ଦ୍ର ସିଂ ରାଣାବତ୍‌ଙ୍କର ପ୍ରାଣରେ ତାହାର ସ୍ମୃତି ତଥାପି ଦିକ୍ ଦିକ୍ ହୋଇ ପାଉଁଶ ତଳେ ରଡ଼ନିଆଁ ପରି ଜଳୁଥିଲା । ଆଜି ତାଙ୍କର ଚେତନ ମନ, କେତେ ଗ୍ଲାସ୍ ହୁଇସ୍କି ପିଇବା ପରେ ମଗ୍ନ ହୋଇ ପଡ଼ିଥିବା ବେଳେ ଅବଚେତନରେ ଜଳୁଥିବା ସେଇ ଦିକ୍ ଦିକ୍ ରଡ଼ନିଆଁ ହଠାତ୍ ଲମ୍ଫ ଦେଇ ଜଳି ଉଠିଥିଲା !

ସେଇଦିନୁ ମୁଁ ବୁଝିଛି, ଆମର ଚେତନ ମନ ଅପେକ୍ଷା ଅବଚେତନ ହିଁ ବର୍ତ୍ତମାନର ଇତିହାସକୁ ପ୍ରଭାବିତ କରିଥାଏ । ହେତୁବାଦୀ ଚିନ୍ତାରେ ବର୍ତ୍ତମାନକୁ ଆମେ ଯେତେ ବୁଝିବାପାଇଁ ଚେଷ୍ଟା କଲେ ସୁଦ୍ଧା ଐତିହାସିକ ଅବଚେତନ ସବୁବେଳେ ସେଥିରେ ସୃଷ୍ଟି କରିଥାଏ ପ୍ରତିବନ୍ଧକ ।

*୧୭/୧୨/୮୮*

# ମଣିଷର ସ୍ମୃତି

ହାରିସନ୍ ରୋଡ୍ ଆଉ କଲେଜ ଷ୍ଟ୍ରୀଟ୍ ଛକ ଉପରେ ଆଲବର୍ଟ ହଲ୍... ସ୍ୱାଧୀନତାର ପୂର୍ବବର୍ତ୍ତୀ କଲିକତା ସହରରେ ଥିଲା ଏକ ଲାଣ୍ଡମାର୍କ । ବିଶେଷତଃ ଏହାର ପ୍ରଥମ ମହଲାରେ ଅବସ୍ଥିତ 'ଇଣ୍ଡିଆ କଫି ହାଉସ୍' ସେଦିନ କଲିକତାର ତରୁଣ ସାହିତ୍ୟିକ, ସାମ୍ବାଦିକ, ଫିଲମ୍ ଦୁନିଆର ନରନାରୀ ପୁଣି ବାମପନ୍ଥୀ ନେତା ଓ କର୍ମୀମାନଙ୍କର ଥିଲା ଏକ ପ୍ରାତ୍ୟହିକ ଆଡ୍‌ଡ଼ା । ସାଧାରଣ ଟ୍ୟାକ୍ସି ବାଲାଙ୍କୁ ଆଲବର୍ଟ ହଲ୍‌ର ଠିକଣା ଦେଲେ ସେ ଠିକ୍ ପହଞ୍ଚାଇ ଦେଉଥିଲା ସେଠାରେ; ଟ୍ରାମ୍‌ବାଲା ବି ସେଇ ପାଖରେ ଟ୍ରାମ୍ ଅଟକାଇ ଦେଉଥିଲା ।

ଏହି ପ୍ରକାଣ୍ଡ କୋଠାର ଦୋ-ମହଲାରେ ରହିଥିଲା, ରାଡ଼ିକଲ୍ ଡେମୋକ୍ରାଟିକ୍ ପାର୍ଟି ଓ ଏହାର ମୁଖପତ୍ର ରାଡ଼ିକାଲ୍ ହ୍ୟୁମାନିଷ୍ଟ ସାପ୍ତାହିକର ଅଫିସ୍ । ମୁଁ କଲିକତା ଆସିଲେ, ଏହି ରାଡ଼ିକାଲ ହ୍ୟୁମାନିଷ୍ଟ ଅଫିସ୍‌ରେ ମୋର ଆସ୍ଥାନ ବାନ୍ଧୁଥିଲି । ଏହିଠାରେ ପତ୍ରିକାର ସଞ୍ଚାଳକ ପ୍ରବୋଧ ବାନାର୍ଜୀ ନାମକ ଜଣେ ଯୁବକ ପ୍ରାୟ ସବୁବେଳେ ବସା କରି ରହିଥିଲେ । ଆଉ ଅମ୍‌ଜାଦ୍, ଜଣେ ତେର ଚଉଦ ବର୍ଷର ମୁସଲମାନ ପିଲା ଏଠାରେ ଥିଲା କଫି ବୟ । ପ୍ରତିଦିନ ଏପରିକି ରବିବାର ଦିନ ସୁଦ୍ଧା ସେ ସକାଳ ଆଠଟା ବେଳକୁ ଅଫିସ୍‌ରେ ଆସି ପହଞ୍ଚି ଯାଉଥିଲା । ଅଫିସ୍‌ରେ ଫାଇ ଫର୍ମାସ୍ ଖଟିବା, ତଳମହଲା କଫି ହାଉସ୍‌ରୁ ଆଗନ୍ତୁକମାନଙ୍କ ପାଇଁ କଫି ଆଉ ଟୋଷ୍ଟ ଆଣିଦେବା, ଫୁଟ୍‌ପାଥ୍ କଡ଼ ପାନ ସିଗ୍ରେଟ୍ ଦୋକାନରୁ ପାନ ସିଗ୍ରେଟ୍ ଆଣି ଯୋଗାଇବା ଥିଲା ତା'ର କାମ । ପିଲାଟା ସାରାଦିନ ଚକ୍ରି ପରି କାମରେ ଲାଗିଥାଏ । ଲଞ୍ଚ୍ ଟାଇମ୍‌ରେ କେବଳ ଟ୍ରାମ୍ ଲାଇନ୍ ସେପଟେ ପାଇସ୍ ହୋଟେଲ୍‌କୁ ଚାଲିଯାଏ ମୁଠାଏ କ'ଣ ଖାଇ ଆସିବାପାଇଁ । ତା' ପରେ ପୁଣି ସେଇ ଅଫିସ୍ ।

ଅମ୍‌ଜାଦର ମୁହଁ ସବୁବେଳେ ହସ ହସ । କେତେବେଳେ ସୁଦ୍ଧା କ୍ଳାନ୍ତି କିମ୍ବା ବିରକ୍ତିର ଚିହ୍ନ, ବର୍ଣ୍ଣ ନଥାଏ । ଖାଲି ଆମ ଅଫିସ୍ କାହିଁକି, ରାଡ଼ିକଲ ଡେମୋକ୍ରାଟିକ୍

ପାର୍ଟି ଅଫିସ୍‌ରେ କେହି ତାକୁ କଫି, ପାନ ବା ସିଗ୍ରେଟ୍ ଆଣିଦେବାକୁ କହିଲେ, ସେ ସଙ୍ଗେସଙ୍ଗେ ଆଣି ଯୋଗାଇ ଦେଉଥିଲା । ଏପରିକି ଆଲବର୍ଟ ହଲର ବିହାର ଦରଓ୍ୱାନ୍ ତାକୁ କହିଲେ ସେ ଆଣିଦେଉଥିଲା ଖଇନୀ, ଚାହା କିମ୍ବା ପାନ । ଏଇ କାରଣରୁ ଆଲବର୍ଟ ହଲ୍‌ରେ ସମସ୍ତଙ୍କର ପ୍ରିୟପାତ୍ର ଥିଲା ଅମ୍‌ଜାଦ୍ ।

୧୯୪୬ ମସିହା ଜୁଲାଇ ମାସ । ମୁଁ କେତେକ କାର୍ଯ୍ୟରେ କଲିକତା ଆସି ରାଡ଼ିକାଲ ହ୍ୟୁମାନିଷ୍ଟ ଅଫିସ୍‌ରେ ରହୁଥିଲି । କ୍ୟାବିନେଟ୍ ମିଶନ ପ୍ଲାନକୁ ଉଭୟ କଂଗ୍ରେସ ଓ ମୁସଲିମଲିଗ୍ ସେତେବେଳକୁ ଅଗ୍ରାହ୍ୟ କରି ଦେଇଥିଲେ । କଲିକତାରେ ସେତେବେଳେ ସୁରାର୍ଦ୍ଦୀଙ୍କ ସରକାର । ସେତେବେଳେ କଲିକତାରେ ଲକ୍ଷ୍ୟ କରିଥିଲି ହଠାତ୍ ନଇଁ ଆସିଥିଲା, ଅଶରୀରୀ ଆଶଙ୍କା ଓ ଉଦ୍‌ବେଗର ସ୍ତବ୍ଧତା । ଇଏ ଥିଲା ଯେପରି ଝଡ଼ପୂର୍ବର ନୀରବତା । କଫି ହାଉସ୍‌ରେ ସୁଦ୍ଧା ଭିଡ଼ କମିଯାଇଥିଲା । ସମସ୍ତେ ଯେପରି ବ୍ୟସ୍ତ, ଯିଏ ଯିଏ ଯେତେଶୀଘ୍ର ପାରେ ...କୁ ବା ଦପ୍ତରକୁ ପଳାଇ ଯିବାପାଇଁ । କଫି ହାଉସ୍‌ରେ ପ୍ରାତ୍ୟହିକ ଆଡ୍‌ଡ଼ା ଆଉ ସେପରି ଜମୁନଥିଲା । କ୍ରମେ ରାଡ଼ିକାଲ ଡେମୋକ୍ରାଟିକ୍ ପାର୍ଟି ଅଫିସ୍‌କୁ ସୁଦ୍ଧା କର୍ମକର୍ତ୍ତା ଓ ଅନ୍ୟ ଆଗନ୍ତୁକମାନଙ୍କର ଯିବା ଆସିବା ବନ୍ଦ ହୋଇଯାଇଥିଲା । ପ୍ରବୋଧ ମୋତେ ବାରମ୍ବାର ଚେତାଇ ଦେଉଥିଲା, କିଛି ଗୋଟାଏ ଭୟଙ୍କର ଘଟଣା ଲାଗିଯାଇପାରେ । ତା' ମୁହଁରେ ମଧ୍ୟ ଉଦ୍‌ବେଗର ମଳିନତା ।

କିନ୍ତୁ ଅମ୍‌ଜାଦ୍‌ର ମୁହଁ ସେହିପରି ହସହସ ଓ ସେ ସେହିପରି ବେପରୁଆ । ଦିନେ ହଠାତ୍ ଅପରାହ୍ଣରେ ସେଇ କଲେଜ ଷ୍ଟ୍ରୀଟ୍ ଅଞ୍ଚଳରେ ଆରମ୍ଭ ହୋଇଗଲା, 'ଦି ଗ୍ରେଟ୍ କାଲ୍‌କାଟା କିଲିଙ୍ଗ"ର ବହ୍ନ୍ୟୁତ୍ସବ । ଆଖି ଆଗରେ ଚାହୁଁ ଚାହୁଁ ହାରିସନ୍ ରୋଡ଼୍‌ରେ ଗୋଟିଏ ବଡ଼ ଡିପାର୍ଟମେଣ୍ଟାଲ୍ ଷ୍ଟୋର ପୋଡ଼ି ଛାରଖାର ହୋଇଗଲା । ପାଖ ମୀର୍ଜାପୁର ଷ୍ଟ୍ରୀଟ୍‌ରୁ ବମ୍‌ବମ୍ ମହାଦେବ ଓ ବଜରଙ୍ଗବାଲୀକି ଜୟ ସାଙ୍ଗକୁ ଆଲ୍ଲା ହୋ ଆକବର୍‌ର ନିର୍ଘୋଷରେ କାନ ଅତଡ଼ା ପଡ଼ିଗଲା । ସେଦିନ ଅମ୍‌ଜାଦ୍ ଚିତ୍‌ପୁର ରୋଡ୍‌ର କେଉଁ ବସ୍ତି ଅଞ୍ଚଳରେ ତା' ଘରକୁ ଆଉ ଫେରି ଯାଇପାରିଲା ନାହିଁ । ପ୍ରବୋଧ ତାକୁ ଅଫିସ୍‌ରେ ଅଟକାଇ ରଖିଲା । ଆମେ ଦୋମହଲାର ସଦର ଦରଜା ସଙ୍ଗେସଙ୍ଗେ ଭିତରୁ ବନ୍ଦ କରିଦେଇ ଭିତରେ ରହିଗଲୁ ।

ସନ୍ଧ୍ୟାବେଳକୁ ଅଗ୍ନିକାଣ୍ଡ ଓ ରାସ୍ତା ଉପରେ ସଂଘର୍ଷ ଆଉରି ତେଜି ଉଠିଲା । ହଠାତ୍ କବାଟ ଉପରେ ପଡ଼ିଲା ଧକ୍‌କା ପରେ ଧକ୍‌କା ଆଉ ତା ସାଙ୍ଗରେ ଜଲ୍‌ଦି ଦରଜା ଖୋଲିବା ପାଇଁ ଚିତ୍କାର । ପ୍ରବୋଧ ଆଉ ମୁଁ ଦରଜାପାଖକୁ ଦଉଡ଼ିଯାଇ ଜଳାବାଟେ ଚାହିଁ ଦେଖିଲୁ, ଆଲବର୍ଟ ହଲ୍‌ର ସେଇ ବିହାରୀ ଦରଓ୍ୱାନ୍ ସଙ୍ଗରେ ଜଣେ ଗୁଣ୍ଡାପରି

ଦିଶୁଥିବା ଲୋକକୁ ଧରି କବାଟରେ ଧକ୍‌କା ମାରି କବାଟ ଖୋଲିବାପାଇଁ ଚିତ୍କାର କରୁଛି । ପ୍ରବୋଧ ସେଇ ଢଳା ବାଟେ ହିନ୍ଦୀରେ ପଚାରିଲା, "କାହିଁକି ଧକ୍‌କା ମାରୁଛ ?"

ଦରୱାନ୍ ଭୋଜ୍‌ପୁରୀ ହିନ୍ଦୀରେ ଚିତ୍କାର କଲା, "ସେ ଅମ୍‌ଜାଦ୍‌କୁ ଆମକୁ ଭଲ ଭାବରେ ଦେଇଦିଅ । ସେ ଏଠି ଲୁଚି ରହିଛି ।" ସେମାନଙ୍କ ଆଖିରେ, ମୁହଁରେ ଭୋକିଲା ବାଘର ହିଂସ୍ରତା । ଆଶଙ୍କା ଓ ଆତଙ୍କରେ ମୁଁ ପ୍ରକୃତରେ ଜଡ଼ ପାଲଟିଗଲି । ପ୍ରବୋଧ ମୋତେ କହିଲା, "କବାଟର କିଳିଣୀ ଭିତରୁ ଦେଇ ସେଇ ଢଳାବାଟେ ସେମାନଙ୍କ ସହିତ କଥା କଟାକଟିକରି କେତେ ମିନିଟ୍ ସେମାନଙ୍କୁ ଅଟକାଇ ରଖିବାପାଇଁ। ଏଇ ବିହାରୀ ଦରୱାନ୍‌ର ଅନେକ ଫରମାଏସ୍ ହସିହସି ଖଟିଛି ଅମ୍‌ଜାଦ୍ । ଅନେକ ଖଇନୀ, ଦୋକ୍ତା ଓ ଚା ଗିଲାସ ଆଣି ଦେଇଛି ତାକୁ । ଅଥଚ ସେଇ ଦରୁୱାନ୍ ଆଜି ସାଂପ୍ରଦାୟିକ ହିଂସାରେ ଚାହୁଁଚି, ଅମ୍‌ଜାଦ୍‌ର ରକ୍ତ ।

ସେଇ ସମୟ ମଧ୍ୟରେ ପ୍ରବୋଧ ଅଫିସ୍ ଟେଲିଫୋନ୍‌ରେ ଲାଲବଜାର ପୋଲିସ୍ ହେଡ୍‌କ୍ୱାଟରକୁ ଟେଲିଫୋନ୍‌ରେ ଜଣାଇ ଦେଇଥିଲା, ଗୋଟିଏ ମୁସଲମାନ ପିଲା ଏଠାରେ ଖୁବ୍ ବିପଦରେ ପଡ଼ିଯାଇଛି । ପୋଲିସ୍ ସଙ୍ଗେ ସଙ୍ଗେ ଆସି ତାକୁ ଉଦ୍ଧାର ନକଲେ, ତା'ର ପ୍ରାଣନାଶ ଅବଧାରିତ । ବଙ୍ଗଳାରେ ସେତେବେଳେ ଲୀଗ୍ ସରକାର । ଜଣେ ମୁସଲମାନ୍ ପିଲାର ପ୍ରାଣରକ୍ଷା ପାଇଁ ପୋଲିସ ବିଳମ୍ୱ କରିବାର କଥାଇ ନଥିଲା । ପ୍ରାୟ ପାଞ୍ଚ ସାତ ମିନିଟ୍ ମଧ୍ୟରେ ଦଳେ ଶସସ୍ତ୍ର ପୋଲିସ୍ ଗୋଟିଏ ଭ୍ୟାନ୍‌ରେ ଆସି ଅମ୍‌ଜାଦ୍‌କୁ ସେଠାରୁ ମୁକୁଳାଇ ନେଇଗଲେ । ଆମେ ପୁଣି ଭିତରୁ କବାଟ ବନ୍ଦ କରି ରହିଲୁ ।

ଏହାର କେତେମାସ ପରେ କଲିକତା ଶାନ୍ତ ପଡ଼ିଯିବାରୁ ମୁଁ ପୁଣି କଲିକତା ଆସିଥିଲି । ଆଲ୍‌ବର୍ଟ ହଲ୍ ଆଗରେ ଟ୍ୟାକ୍ସିରୁ ଓହ୍ଲାଇ ପେଭମେଣ୍ଟ ଉପରୁ ଅମ୍‌ଜାଦ୍‌କୁ ପାଟିକରି ଡାକିଲି । ମୋର ହୋଲ୍‌ଡଲ୍ ଓ ସୁଟକେଶ୍ ଟ୍ୟାକ୍ସିରୁ ନେବାପାଇଁ ସବୁଥର ଗୋଟାଏ ଦୁଇଟା ଡାକରେ ଅମ୍‌ଜାଦ ଧାଇଁ ଧାଇଁ ଖାକି ହାପ୍‌ପ୍ୟାଣ୍ଟ୍ ଉପରେ ଗୋଟାଏ ନାଲିଆ ଗାମୁଛା ବାନ୍ଧି ତଳକୁ ଚାଲି ଆସେ; ମାତ୍ର ଏଥର ଅନେକ ବାର ଡାକିଲେ ସୁଦ୍ଧା ତା'ର ଦେଖା ନଥିଲା । ପେଭେମେଣ୍ଟ୍ ଉପରେ ଖଣ୍ଡେ ଟୁଲ୍ ପକାଇ ବସିଥିଲା ସେଇ ବିହାରୀ ଦରୱାନ୍ । ସେ ବିଷଣ୍ଣ କଣ୍ଠରେ କହିଲା, "ସେଇ ଦଙ୍ଗାଦିନୁ ଅମ୍‌ଜାଦ୍ ଆଉ ଏଠାକୁ ଆସୁନାହିଁ । ସେ କଲିକତା ଛାଡ଼ି ତା' ବାପା ମା'ଙ୍କ ସଙ୍ଗରେ ଅନ୍ୟ କୁଆଡ଼େ ପଳାଇଛି ।"

ଅମ୍‌ଜାଦ୍‌ର ଅନୁପସ୍ଥିତି ଓ ତା'ର ନିରୁଦ୍ଦିଷ୍ଟ ପଳାୟନ ସେଇ ବିହାରୀ ଦରୱାନ୍‌କୁ ଯେପରି ମନେମନେ ପୀଡ଼ା ଦେଉଥିଲା । ତା'ର କଣ୍ଠସ୍ୱର ଓ ମୁହଁର ଭାବଭଙ୍ଗୀରେ ତାହା ଥିଲା ସୁସ୍ପଷ୍ଟ । ମୁଁ ଆଶ୍ଚର୍ଯ୍ୟ ହେଲି, ସେଦିନ ଏଇ ବିହାରୀ ଦରୱାନ୍ ଅମ୍‌ଜାଦ୍‌ର ଖୁନ୍ ଚାହୁଁଥିଲା, ସଙ୍ଗରେ ଗୋଟାଏ ଗୁଣ୍ଡା ଧରି । ବିଚରା ଆଜି ଅମ୍‌ଜାଦ୍ ପାଇଁ ତା'ର କେତେ

ଦରଦ । ସେଦିନର ସେଇ ଦୃଶ୍ୟ ମୋ ଆଖି ଆଗରେ ସିନେମା ପରଦାର ଚିତ୍ର ପରି ଭାସି ଉଠୁଥିଲା ।

ମନୁଷ୍ୟ ନିଜର ସ୍ୱାଧୀନତା ଓ ସ୍ୱାଧିକାର ସଂପର୍କରେ ଯେତେ ବଡ଼ାଇ କରୁ ପଛେ, ପରିସ୍ଥିତି ତାକୁ କେତେ ଅସହାୟ କେତେ ଦୁର୍ବଳ କରିଦିଏ ସତେ । ସେଦିନ ସାଂପ୍ରଦାୟିକ ଜିଘାଂସାପ୍ରମତ୍ତ ମୁହୂର୍ତ୍ତରେ ଏଇ ବିହାରୀ ଦରୱାନ୍ ଖୋଜୁଥିଲା ଅମ୍‌ଜାଦ୍‌ର ରକ୍ତ । ଆଜି କିନ୍ତୁ ସେଇ ଅମ୍‌ଜାଦ୍ କଲିକତା ଛାଡ଼ି କୁଆଡ଼େ ପଳାଇଲା ବୋଲି ତା' ମନରେ କେତେ ଦୁଃଖ, କେତେ ଅବସୋସ !

୨୪/୧୨/୮୮

# ଖଣ୍ଡେ ନୂଆ କ୍ୟାଲେଣ୍ଡର

ବିଗତ ଷଷ୍ଠ ଦଶକ, ଆଧୁନିକ ଓଡ଼ିଆ ସାହିତ୍ୟର ଇତିହାସରେ ଥିଲା କୋଳାହଳ ମୁଖର ତାରୁଣ୍ୟର ଫେନାୟିତ କାଳ । ସାହିତ୍ୟରେ ନୂଆ କିଛି ସୃଷ୍ଟି କରିବାର ସ୍ୱପ୍ନରେ ତରୁଣ ଲେଖକ ଲେଖିକାମାନେ ଉଦ୍‌ବେଳିତ ହୋଇ ଉଠିଥିଲେ । ଓଡ଼ିଶାର ପ୍ରତି ସହରରେ ପ୍ରତ୍ୟହ ଗଢ଼ିଉଠୁଥିଲା, ବିଭିନ୍ନ ସାହିତ୍ୟ-ଗୋଷ୍ଠୀ । ପ୍ରତି ଗୋଷ୍ଠୀ ପୁଣି ପ୍ରକାଶ କରୁଥିଲେ, ଗୋଟିଏ ଗୋଟିଏ ମିନି ପତ୍ରିକା । ଓଡ଼ିଆ ସାହିତ୍ୟର ବିବର୍ଣ୍ଣ ଉଦ୍ୟାନରେ ହଠାତ୍ ଉଡ଼ି ବୁଲୁଥିଲେ ଅସୁମାରୀ ରଙ୍ଗିନ ପ୍ରଜାପତି । ଏ ସବୁଥିରେ କିନ୍ତୁ ଥିଲା ଅନେକ ହୁଜୁଗ୍ । ଆନ୍ତରିକତା ତ ନିଶ୍ଚୟ ରହିଥିଲା, ମାତ୍ର ସିଦ୍ଧି ଓ ସଫଳତା ପାଇଁ ଯେଉଁ ନିଷ୍ଠା ଓ ସଂକଳ୍ପର ପ୍ରୟୋଜନ, ତାହା ହୁଏତ ନଥିଲା । ସେଥିପାଇଁ ଏ ଗୋଷ୍ଠୀ ସବୁ ଅଳ୍ପକାଳ ମଧ୍ୟରେ ସାହିତ୍ୟ ଜଗତରୁ ଗୋଟି ଗୋଟି କରି ବିଦାୟ ନେଇ ଯାଇଥିଲେ ।

ସେତେବେଳେ ଏଇପରି ଏକ ଗୋଷ୍ଠୀ ମୋତେ ଆମନ୍ତ୍ରଣ କରିଥିଲେ । ନବବର୍ଷର ପ୍ରଥମ ସୂର୍ଯ୍ୟୋଦୟକୁ ପୁରୀ ବେଳାଭୂମିର ଏକ ଝାଉଁବଣରେ ସ୍ୱାଗତ ଜଣାଇବା ପାଇଁ ସୂର୍ଯ୍ୟୋଦୟର ପ୍ରଥମ ଆଲୋକରେ ସେଠାରେ କବିତାପାଠୋତ୍ସବ ପାଇଁ କାର୍ଯ୍ୟକ୍ରମ ମଧ୍ୟ ରହିଥିଲା । ସେଥିରେ ମୁଁ ହୋଇଥାଆନ୍ତି ମୁଖ୍ୟ ଅତିଥି । ଆଇଡ଼ିଆଟି ଥିଲା ବେଶ୍ ରୋମାଣ୍ଟିକ୍ । ମୁଁ ତେଣୁ ଜିପ୍ ଧରି ୩୧ ତାରିଖ ଡିସେମ୍ବର ରାତି ବାରଟା ପରେ ପୂର୍ବ ନିର୍ଦ୍ଦିଷ୍ଟ ବ୍ୟବସ୍ଥା ଅନୁସାରେ ପୁରୀଠାରେ ପହଞ୍ଚି ଯାଇଥିଲି ।

ବଡ଼ଦାଣ୍ଡ କଡ଼ର ଗୋଟାଏ ଧର୍ମଶାଳାର ପ୍ରଥମ ମହଲାରେ ଗୋଷ୍ଠୀର ସଭ୍ୟମାନେ ପ୍ରଥମେ ଏକାଠି ହେବାର କାର୍ଯ୍ୟକ୍ରମ ଥିଲା । ଏଇଠାରେ ଆମେ ଦେଇଥାନ୍ତୁ ବିଦାୟୀ ବର୍ଷକୁ ସମ୍ବର୍ଦ୍ଧନା । ତା'ପରେ ସେଠାରୁ ବାହାରି ଥାଆନ୍ତୁ ନବବର୍ଷର ସୂର୍ଯ୍ୟୋଦୟକୁ ଅଭିନନ୍ଦନ ଜଣାଇବାପାଇଁ ।

ଜୀବନରେ 'ଆଇରନୀ'ର ତ ଅଭାବ ନାହିଁ । ମୁଁ ସେଠାରେ ପହଞ୍ଚି ଦେଖେ ଧର୍ମଶାଳା କୋଠରି ଶୂନ୍ୟ । ଉଦ୍ୟୋକ୍ତାମାନେ ନିଃପତ । ବଡ଼ ଦରୀଟିଏ କିନ୍ତୁ ବିଛା

ହୋଇଥିଲା । ଠିକ୍ ଗାଉଁଲୀ ଚେହେରାର ଲୋକଟିଏ କେବଳ ସେଠାରେ ବସି ରହିଥିଲା, ମୋତେ ଅଭ୍ୟର୍ଥନା ଜଣାଇବାପାଇଁ । ସେ କହିଲା, "ସେମାନେ ମୋତେ ଏଇଠି ବସାଇ ଯାଇଛନ୍ତି । ତାଙ୍କର ଗୋଟିଏ ଢେଗାଘରେ ପଙ୍ଗତ ଅଛି । ସେଠୁ ଆସିବେ ।"

କିନ୍ତୁ ସମୟ ଗଡ଼ି ଚାଲିଲା । ସେମାନଙ୍କର କାହାରି ଦେଖା ନଥିଲା । ଫୁଙ୍ଗୁଳା ଇଲେକ୍‌ଟ୍ରିକ୍ ବଲ୍‌ବର ମହଳ ଆଲୁଅ ମୋର ପ୍ରତୀକ୍ଷାକୁ କ୍ରମେ ଭାରି କ୍ଳାନ୍ତିକର କରିଦେଲା । ମୁଁ ବୋର୍‌ଡ୍ରମ୍ ଭାଙ୍ଗିବା ପାଇଁ ସେଇ ଦରୀ ଉପରେ ଶୋଇପଡ଼ିଲି । କେତେବେଳେ ନିଦ ଲାଗିଯାଇଥିଲା । ନିଦ ଭାଙ୍ଗିବା ବେଳକୁ ଦେଖେ ବାହାରେ ଝୁଲୁଛି, ଗୋଟିଏ କୁହୁଡ଼ିଆ ସକାଳ । ସେ ଗାଉଁଲୀ ଲୋକଟା ମଧ୍ୟ ସେଠାରେ ନଥିଲା । ହାତ ଘଡ଼ିକୁ ଚାହିଁ ଦେଖିଲି, ସକାଳ ସାତଟା ବାଜିବା ଉପରେ । ସୂର୍ଯ୍ୟୋଦୟ ଅନେକ ପୂର୍ବରୁ ହୋଇସାରିଥିଲା । ବ୍ୟର୍ଥତା ଓ ବିରକ୍ତିରେ ମୋର ମନ ତିକ୍ତ ହୋଇ ଉଠିଲା । ମୁଁ ଅଘୋରୀ ପରି ଅଧୁଆ ମୁହଁରେ ସେଠାରୁ ଜଗନ୍ନାଥଙ୍କୁ ଦର୍ଶନ ପାଇଁ ମନ୍ଦିରକୁ ଚାଲିଆସିଲି ।

ମନ୍ଦିର ନିର୍ଜନ ଓ ନିସ୍ତବ୍ଧ । ବାଇଶି ପାହାଚରେ ଦର୍ଶନାର୍ଥୀଟିଏ ସୁଦ୍ଧା ଦେଖା ନଥିଲେ । ସେଇ ନିର୍ଜନତା ଭିତରେ ମୋତେ ଲାଗିଲା କାଳର ଗତି ଯେପରି ହଠାତ୍ ସ୍ତବ୍ଧ ହୋଇ ପଡ଼ିଛି । ମହାକାଳର ସବୁ ଗାମ୍ଭୀର୍ଯ୍ୟ ଯେପରି ନିର୍ଜନ ବାଇଶି ପାହାଚ ଉପରେ ଉକୁଟି ଉଠିଥିଲା । ମହାକାଳ ଯେପରି ଆମର ସବୁ ଚପଳତାକୁ ଉପହାସ କରୁଥିଲା । ଦେଉଳ ଭିତରେ ଦିଅଁମାନଙ୍କର ମଙ୍ଗଳାର୍ପଣ ବଡ଼ି ସକାଳୁ ବଢ଼ି ସାରିଥିଲା ।

କିନ୍ତୁ ଜଗମୋହନ ନିର୍ଜନ, ଦର୍ଶନାର୍ଥୀ ନଥିଲେ । କେବଳ ଚୁନରାଟିଏ ଗରୁଡ଼ସ୍ତମ୍ଭ ଉପରେ ଚଢ଼ି ଗରୁଡ଼କୁ ନୂଆ ମାଜଣା କରୁଥିଲା । ମାତ୍ର ସେ ଦେଖାଯାଉଥିଲା, ମନ୍ଦିର ଦେହରେ ପଥର ଖୋଳା ଗୋଟିଏ ମୂର୍ତ୍ତି ପରି । ଜଗନ୍ନାଥଙ୍କର ଚକାଡୋଳାରେ ମଧ୍ୟ ଦେଖିଲି ନିଷ୍ପଲକ ସ୍ତବ୍ଧତା । କାଳ ଓ ସମୟର ଗତି ହଠାତ୍ ଯେପରି ସ୍ତବ୍ଧ ହୋଇଯାଇଛି । ଦର୍ଶନ ଶେଷ କରି ମନ୍ଦିର ବାହାରକୁ ଆସି ଦେଖେ, ମୋତେ ଆମନ୍ତ୍ରଣ କରିଥିବା ସେଇ ଗୋଷ୍ଠୀର ଦୁଇଜଣ ତରୁଣ କବି ଅଧୁଆ ମୁହଁରେ ବିଷଣ୍ଣ ଭାବରେ ଚାଲିଚାଲି କେଉଁଆଡ଼େ ଯାଉଛନ୍ତି । ମୁଁ ସେମାନଙ୍କୁ ଡାକି କହିଲି, "କୁହୁଡ଼ି ଭିତରେ ସୂର୍ଯ୍ୟୋଦୟ ଆଜି ଆଉ ଜଣା ପଡ଼ିଲା ନାହିଁ । ଯାଉଛ କୁଆଡ଼େ ?"

ସେମାନେ ଲଜ୍ଜିତ ହେବା ପରି କଣ୍ଠରେ କହିଲେ, "କାଲି ଗୋଟାଏ ପଙ୍ଗତରେ ବସି ସକାଳ କଥା ଆଉ ମନେ ରହିଲା ନାହିଁ ।" ଇଏ ବୋଧହୁଏ ମରିଚ ପାଣିର କରାମତି । ମୁଁ କିନ୍ତୁ କିଛି କହିଲି ନାହିଁ । ସେମାନେ ବ୍ୟଥିତ କଣ୍ଠରେ କହିଲେ, "ନୂଆ ବର୍ଷର ସୂର୍ଯ୍ୟୋଦୟକୁ ଆମେ ଅଭିନନ୍ଦନ ଜଣାଇପାରିଲୁ ନାହିଁ । ଆପଣ ଆମକୁ ମାଫ୍

କରିବେ ।" ମୁଁ ଉତ୍ତର ଦେଲି "You have missed nothing" ପୁରୁଣା ବର୍ଷ ଯାଏ ନାହିଁ, କିମ୍ବା ନୂଆ ବର୍ଷ ଆସେ ନାହିଁ । ଅନନ୍ତ ମହାକାଳରେ ପୁରୁଣାବର୍ଷ, ନୂଆବର୍ଷ କ'ଣ ? କାଳ ନିରବଧି ! କାନ୍ଥରେ କେବଳ ଗୋଟାଏ କ୍ୟାଲେଣ୍ଡର ବଦଳେ ମାତ୍ର ।"

ତା'ପରେ ସେ ଦୁଇଜଣଙ୍କୁ ସଙ୍ଗରେ ଧରି ମୁଁ ବାହାରିଗଲି ସମୁଦ୍ର ଆଡ଼େ ।

୩୧/୧୨/୮୮

# ଦି ଅଗ୍ଲୀ ଆମେରିକାନ୍

(ପଞ୍ଚମ ଦଶକର ଗୋଟିଏ ବେଷ୍ଟ୍ ସେଲ୍ର ଉପନ୍ୟାସର ଶିରୋନାମାରେ ଲିଖିତ)

ବୁବୁନ୍ ଗୋଟିଏ ବ୍ୟାଡ୍‌ମିଣ୍ଟନ୍ ର୍ୟାକେଟ୍ ହାତରେ ଧରି ଶୂନ୍ୟରେ ଷ୍ଟ୍ରୋକ୍ ମାରି ମାରି ବାହାରକୁ ଦଉଡ଼ି ଯାଉଥିଲା । ଇଦାନିଂ ବ୍ୟାଡ୍‌ମିଣ୍ଟନ୍ ଚମ୍ପିଆନ୍ ହେବାପାଇଁ ପଡ଼ିଛି । ମୁଁ ତାକୁ ଦୁଇ ତିନିଥର ଡାକିବା ପରେ ସେ ଭାରି ଅସ୍ତବ୍ୟସ୍ତ ଭାବରେ ମୋ ପାଖକୁ ଆସିଲା- ଯେପରି ଗୋଟିଏ ମିନିଟ୍‌ର ଅପଚୟ ସୁଦ୍ଧା, ତା' ପକ୍ଷରେ ସମ୍ଭବ ନୁହେଁ । ସେ ମୋ ପାଖକୁ ଆସିବାରୁ ମୁଁ ପଚାରିଲି, ମାଇକ୍ ଟାଇସନ୍ ଦିନେ ଥିଲା ତା'ର ହୀରୋ । ସେ ତାକୁ ଠିକ୍ ମନେ ରଖିଛି ।

ବୁବୁନ୍ କହିଲା, "ମାଇକ୍ ଟାଇସନ୍ ହେଭୀ ୱେଟ୍ ବକ୍‌ସର । ରିଚେଷ୍ଟ ମ୍ୟାନ୍ ।" କିନ୍ତୁ ତା'ର ବିପୁଳ ଉପାର୍ଜନ ଓ ଆମେରିକାର ସବୁଠାରୁ ବଡ଼ ଧନୀଲୋକ ହେବା ମାଇକ୍ ଟାଇସନ୍ ପାଇଁ ଯେଉଁ ସମସ୍ୟା ସୃଷ୍ଟି କରିଛି, ସେ କଥା ବୁବୁନ୍ ଜାଣି ନଥିଲା । ତା'ର ହୀରୋର ଦୁରବସ୍ଥା ସଂପର୍କରେ ତାକୁ କହିବା ପୂର୍ବରୁ ସେ ଯେପରି ଦଉଡ଼ି ଦଉଡ଼ି ଆସିଥିଲା, ସେହିପରି ଦଉଡ଼ି ଦଉଡ଼ି ଚାଲିଗଲା ।

ମାଇକ୍ ଟାଇସନ୍ ପ୍ରକୃତରେ ବର୍ତ୍ତମାନ ବଡ଼ ଦୁର୍ଯୋଗରେ ପଡ଼ିଛି । ପୋଲିସ୍ ତା'ର ପିଛା କରିଥିବାରୁ ସେ ଏବେ ନିପତ୍ତା । ପ୍ରତିଦିନ ଖବରକାଗଜ ପୃଷ୍ଠାରେ ତା' ନାଁ ଅବଶ୍ୟ ବାହାରୁଛି । ସେ ସବୁ କିନ୍ତୁ ବକ୍ସିଂ ଇଭେଣ୍ଟମାନଙ୍କରେ ତା'ର କୃତିତ୍ୱପାଇଁ ନୁହେଁ, ତା'ର ନାନା ଉଦ୍ଭଟ କାଣ୍ଡ ଯୋଗୁଁ ତାର ଅପଖ୍ୟାତି ଆମେରିକାରେ ଖୁବ୍ ବୃଦ୍ଧି ପାଇଛି । ତା'ର ସ୍ତ୍ରୀ ଟି.ଭି. ଅଭିନେତ୍ରୀ ରିବିନ୍ ଗିଭେସ୍‌ଙ୍କୁ ଦିନେ ସକାଳୁ ଉଠି ହଠାତ୍ ମୁଥ ମାରିବାରୁ ସ୍ତ୍ରୀ ଡାଇଭର୍ସ ପାଇଁ ମକଦ୍ଦମା ଦାୟର କରିଛି । ତେଣୁ ମାଇକ୍ ଟାଇସନ୍ ତା'ର ବିଶାଳ ମାର୍ବଲ ପ୍ରାସାଦରେ ବର୍ତ୍ତମାନ ନିଃସଙ୍ଗ ଓ ଏକାକୀ । ନିଶାଗ୍ରସ୍ତ ଅବସ୍ଥାରେ ବେପରୁଆ ଭାବରେ ଗାଡ଼ି ଚଳାଇ ସେ ଦୁର୍ଘଟଣା ପରେ ଦୁର୍ଘଟଣା ଘଟାଇ ଚାଲିଛି । ଦିନେ ବେଣ୍ଟଲୀ ସହରର ମିଡ୍-ଟାଉନ୍ କ୍ଲବ୍‌ରେ ସେ ହଠାତ୍ ଜଣେ ମହିଳାଙ୍କୁ ଟଣାଟଣି କରି, ତା' ସହିତ

ରାତ୍ରିଯାପନ କରିବାକୁ ଭଦ୍ରମହିଳାଙ୍କୁ ବାଧ୍ୟ କଲା । ସଙ୍ଗେ ସଙ୍ଗେ ମାଇକ୍ ଟାଇସନ୍ ନାମରେ ରୁଜ୍ଜୁ ହୋଇଗଲା ପୋଲିସ ମାମଲା । ସେ ସ୍କାଣ୍ଡାଲ୍‌ର ପ୍ରତିଧ୍ୱନି ନିରବ ନହେଉଣୁ, ଟାଇସନ୍ ଦିନେ ରାତି ଅଧରେ ଗୋଟିଏ ବାର୍ ଭିତରକୁ ଯାଇ ସେଠାରେ ଜଣେ ଭଦ୍ରମହିଳା ତାଙ୍କ ବାନ୍ଧବୀଙ୍କ ସହିତ ବସି କଥାବାର୍ତ୍ତା ହେଉଥିବା ବେଳେ ତାଙ୍କୁ ମଧ୍ୟ ମୁଥ ଦେଖାଇ ଟଣାଓଟରା କଲା; ତା' ସହିତ ରାତ୍ରିଯାପନ ପାଇଁ । ଭଦ୍ରମହିଳା ପୋଲିସ୍‌ରେ ଏତଲା ଦେବାରୁ ପୋଲିସ୍ ବର୍ତ୍ତମାନ ଟାଇସନ୍‌ର ପିଛା ଧରିଛି । ମାତ୍ର ମାଇକ୍ ଟାଇସନ୍ ନିପତ୍ତା । ମୋଟ କଥା ମାଇକ୍ ଟାଇସନ୍ ନିଜ ପାଇଁ ନିଜେ ହୋଇଛି ବର୍ତ୍ତମାନ ସଂକଟ ।

ପ୍ରଚୁର ଅର୍ଥ ଓ ଦେହରେ ପ୍ରଚୁର ଶକ୍ତିର ଏ ବିକୃତି ଆଜି କେବଳ ମାଇକ୍ ଟାଇସନ୍‌ର ନୁହେଁ, ଏହା ଏକ ଧନବାଦୀ ସମାଜର ଦୁର୍ଭାଗ୍ୟଜନକ ପରିଣତି । ମାଇକ୍ ଟାଇସନ୍ ତାହାର କେବଳ ଏକ ଶୋଚନୀୟ ପ୍ରତୀକ ମାତ୍ର । ଗୋଟିଏ ଗୋଟିଏ ମିନିଟ୍ ବକ୍ସିଂରେ କୋଟିଏରୁ ଊର୍ଦ୍ଧ୍ୱ ଟଙ୍କା ମାଇକ୍ ଟାଇସନ୍‌କୁ ମିଳିଯାଇ ପାରୁଛି । ସେ ହୋଇପାରୁଛି, ଆମେରିକାର ଶ୍ରେଷ୍ଠ ହେଭୀୱେଟ୍ ବକ୍‌ସିଂ ଚମ୍ପିଆନ୍ । ଦେହରେ ପ୍ରଚଣ୍ଡ ମାଂସଳ ଶକ୍ତି । ଗ୍ୟାରେଜ୍‌ରେ ଅନେକ ଦାମୀ ମୋଟର କାର୍ । ରହିବା ପାଇଁ ନ୍ୟୁୟର୍କରେ ତିଆରି କରିଛି ବିଶାଳ ମାର୍ବଲ ପ୍ରାସାଦ । ମାର୍ବଲର ନିଷ୍ପ୍ରାଣ ନିର୍ଜନତା ଭିତରେ ସେ ଖୋଜୁଛି ସାଥୀ । କିନ୍ତୁ କୌଣସି ନାରୀକୁ ସେ ତୃପ୍ତି ଦେଇ ପାରୁନାହିଁ, କିମ୍ବା ସେ ନିଜେ ତୃପ୍ତ ହୋଇପାରୁ ନାହିଁ । ସେଥିପାଇଁ ସେ କ୍ଲବ୍ ଓ ବାର୍‌ମାନଙ୍କରେ ପଶି ମୁଥ ଦେଖାଇ, ନାରୀମାନଙ୍କ ଉପରେ ବଳାତ୍କାର କରିବାପାଇଁ ସୁଦ୍ଧା ପଛାଉ ନାହିଁ ।

ଅର୍ଥ ଓ ମେଦ ପ୍ରାଚୁର୍ଯ୍ୟ ମାଇକ୍ ଟାଇସନ୍‌କୁ କେବଳ ଆଜି ପାଗଳ କରିନାହିଁ; ଆଜିର ମଣିଷକୁ ମଧ୍ୟ ପ୍ରମତ୍ତ କରିଦେଇଛି । ମାଇକ୍ ଟାଇସନ୍ ଆଜିର ଆମେରିକାନ୍ ସଭ୍ୟତା ଓ ଅପସଂସ୍କୃତିର ପ୍ରତୀକରେ ପରିଣତ ହୋଇଛି । କିନ୍ତୁ ଆମେ ଆଜି ଏଇ ମାଇକ୍ ଟାଇସନ୍‌ମାନଙ୍କୁ ଈର୍ଷା କରୁଛୁ ଓ ତା'ରି ପରି ହେବାପାଇଁ ଆମେ ମଧ୍ୟ ଚେଷ୍ଟା କରୁଛୁ ।

୦୭/୦୧/୮୯

# ମାଘସପ୍ତମୀ

ପ୍ରତିବର୍ଷ ମାଘ ସପ୍ତମୀ ତିଥିରେ ଆଦିକବି ସାରଳା ଦାସଙ୍କର ଶ୍ରାଦ୍ଧୋତ୍ସବ ଝଙ୍କଡ଼ ଅଞ୍ଚଳର ଜନସାଧାରଣ ସ୍ୱତଃ ପ୍ରଣୋଦିତ ଭାବରେ ଏକ ପାର୍ବଣ ରୂପେ ପାଳନ କରିଥାଆନ୍ତି । ଗତ କିଛିବର୍ଷ ପର୍ଯ୍ୟନ୍ତ ମୁଁ ଏହି ଦିନ ବାକ୍‌ଦେବୀ ସାରଳାଙ୍କର ଦର୍ଶନକୁ ଯାଉଥିଲି ଓ ସେଠାରେ ସାରଳା ଦାସଙ୍କର ସ୍ମୃତିତର୍ପଣ ଉଦ୍ଦେଶ୍ୟରେ ଆୟୋଜିତ ସାହିତ୍ୟ ସଭାରେ ମଧ୍ୟ ଯୋଗ ଦେଉଥିଲି ।

ସେଦିନ ବାକ୍‌ଦେବୀ ସାରଳାଙ୍କର ଦର୍ଶନ ବ୍ୟତୀତ ମୋର ଅନ୍ୟ ପ୍ରଧାନ ଆକର୍ଷଣ ଥିଲା ମନ୍ଦିରର ନାଟମଣ୍ଡପରେ ସାରଳା ମହାଭାରତର ଦାଣ୍ଡିବୃତ୍ତରେ ଆବୃତ୍ତି । ମନ୍ଦିରର ପୁରାଣ ପଣ୍ଡା ଅତ୍ୟନ୍ତ ବୃଦ୍ଧ । ବୟସ ପ୍ରାୟ ଅଶୀ ପାଖାପାଖି । ଦେଖିବାକୁ ଜରାଜୀର୍ଣ୍ଣ ଓ ଦୁର୍ବଳ । ଦୁଇ ଆଖିରେ ଟିଣ ଫ୍ରେମ୍ ବନ୍ଧା ଚଷମା । ତାହା କିନ୍ତୁ ପୋଥି ବୋଲିବା ବେଳେ ତାଙ୍କ ନାକ ଆଗରେ ଝୁଲୁଥାଏ । ଦୃଷ୍ଟିଶକ୍ତି ବଢ଼ାଇବାରେ ତାହା ବୋଧହୁଏ ଆଦୌ ସହାୟକ ହୁଏ ନାହିଁ । ସେ ଠୁଙ୍କା ହୋଇ ବସି ଦୁଇ ଆଣ୍ଠୁ ଉପରେ ପ୍ରାୟ ଦେଢ଼ ହାତ ଲମ୍ବର ଖଣ୍ଡେ ବହୁକାଳର ମହାଭାରତ ପୋଥି ରଖି ଉଚ୍ଚ କଣ୍ଠରେ ଦାଣ୍ଡିବୃତ୍ତରେ ଆବୃତ୍ତି କଲାବେଳେ ମନେହୁଏ ତାଙ୍କର ପ୍ରକୃତ ବୟସ ଯେପରି ବହୁବର୍ଷ ପଛେଇ ଯାଇଛି । ପୁରାଣ ବୋଲା କିଏ ଶୁଣୁଛନ୍ତି କି ନାହିଁ, ସେଥିପ୍ରତି ସେ ଯେପରି ସଂପୂର୍ଣ୍ଣ ଉଦାସୀନ ।

କିନ୍ତୁ ତାଙ୍କଠାରୁ ଅଳ୍ପ ଦୂର ଛଡ଼ାରେ ଯାତ୍ରୀମାନେ ଠିଆହୋଇ ଭାରି ନିବିଷ୍ଟ ଭାବରେ ପୁରାଣ ବୋଲା ଶୁଣନ୍ତି । ମହାଭାରତ ବୋଲିବା ବେଳେ, କୌଣସିଠାରେ ଯୁଦ୍ଧ ବର୍ଣ୍ଣନା ଆସିଗଲେ, ବୃଦ୍ଧ ପୁରାଣପଣ୍ଡା ସେହିପରି ଠୁଙ୍କା ବସି ଯେପରି ଚଟାଣ ଉପରେ ନାଟ ମନ୍ଦିରର ଗୋଟିଏ ସ୍ତମ୍ଭ ପାଖରୁ ଅନ୍ୟ ସ୍ତମ୍ଭ ପାଖକୁ ନିଜର ଅଜ୍ଞାତସାରରେ ଘୁଷୁଡ଼ି ଘୁଷୁଡ଼ି ଯାଆନ୍ତି, ପୁଣି ପୋଥି ସହିତ ଦୁଇହାତ ଉପରକୁ ଉଠାଇ ଶୂନ୍ୟରେ ଗଦା ଚଳାଇବା ପରି ପୋଥିକୁ ଚଳାନ୍ତି, ତାହା ପ୍ରକୃତରେ ଦେଖିବାର କଥା ।

ସେ ନିଜେ ଯେପରି ମହାଭାରତ ବର୍ଣ୍ଣିତ ଗଦାଯୁଦ୍ଧରେ ହଠାତ୍ ଜଣେ ମଲ୍ଲ ହୋଇ ଉଠିଛନ୍ତି । ଯାତ୍ରୀମାନଙ୍କ ମେଳରେ ଠିଆହୋଇ ପୁରାଣ ପଣ୍ଡାଙ୍କର ପୋଥିବାଲା ଶୁଣିବା ବେଳେ ମୁଁ ଯେପରି ପଞ୍ଚଦଶ ଶତାବ୍ଦୀ ବେଳର ଗୋଟିଏ ନିଭୃତ ସଂଧ୍ୟା ଭିତରକୁ ଫେରିଆସେ । କଥିତ ଅଛି, ବାକ୍‌ଦେବୀ ସାରଳାଙ୍କର ପ୍ରେରଣାରେ ସାରଳା ଦାସ ଓଡ଼ିଆ ମହାଭାରତ ରଚନା କରିବା ପରଠାରୁ, ସମ୍ରାଟ କପିଳେନ୍ଦ୍ର ଦେବଙ୍କ ଆଜ୍ଞାରେ ତାହା ପ୍ରତ୍ୟହ ସାରଳାଙ୍କ ମନ୍ଦିରର ପାଠ ହେଉଥିଲା । ଶତାବ୍ଦୀ ପରେ ଶତାବ୍ଦୀ ଧରି, ଇତିହାସର ବହୁ ଉତ୍‌ଥାନ ପତନ ଓ ମୋଡ଼ବୁଲାଣି ମଧ୍ୟରେ ଏହି ପ୍ରଥାଟି ସେହିଦିନୁ ତଥାପି ଅନାହତ ଓ ଅପରିବର୍ତ୍ତିତ ରହିଆସିଅଛି ।

ବସ୍ତୁତଃ ପୁରାଣ ପଣ୍ଡାଙ୍କ ମହାଭାରତ ବୋଲା ଶୁଣିବା ବେଳେ ମୋର ମନେହୁଏ, ମୁଁ କାଳସ୍ରୋତରେ ମୁହୂର୍ତ୍ତକର ବୁଦ୍‌ବୁଦ୍ ନୁହେଁ । ମୁଁ ମଧ୍ୟ ଯେପରି ସେହି କାଳସ୍ରୋତର ଗୋଟିଏ ଅନାହତ ଧାରା । ଯେଉଁମାନେ କହନ୍ତି, ଅତୀତ ସଂପୂର୍ଣ୍ଣ ଅର୍ଥହୀନ, ଭବିଷ୍ୟତ ଅନ୍ଧକାର ଓ ବର୍ତ୍ତମାନ ହେଉଛି ଏକମାତ୍ର ନିଶ୍ଚିତ ସତ୍ୟ । ସେମାନଙ୍କ ସହିତ ମୁଁ ସଂପୂର୍ଣ୍ଣ ଏକମତ ନୁହେଁ । ମୋର ମନେହୁଏ, ବର୍ତ୍ତମାନ ହେଉଛି ସବୁଠାରୁ ଅନିଶ୍ଚିତ । କେତେବେଳେ ଚାହୁଁ ଚାହୁଁ କ'ଣ ଘଟିଯିବ, ତାର ଠିକଣା ନାହିଁ । ଭବିଷ୍ୟତ ଅଦୃଷ୍ଟ, ସେଥିପାଇଁ ଅନ୍ଧକାର । ଏକମାତ୍ର ସତ୍ୟ ହେଛି ଆମର ଅତୀତ ଯାହା ଘଟିଯାଇଛି ଓ ଯାହା ଇତିହାସ ପରି ଅଭ୍ରାନ୍ତ, ସେଥିପାଇଁ ବୃଦ୍ଧ ପୁରାଣ ପଣ୍ଡାଙ୍କ ପୋଥିବାଲା ଶୁଣିବା ବେଳେ, ମୋତେ ଲାଗେ ମୁଁ ଯେପରି ପଞ୍ଚଦଶ ଶତାବ୍ଦୀର ଏକ ନିବିଡ଼ ସଂଧ୍ୟାର ଅନ୍ଧକାର ଭିତରେ, କ୍ଷୀଣ ଦୀପାଲୋକରେ ମହାଭାରତର ଦାଣ୍ଡିବୃତ୍ତରେ ଆବୃତ୍ତି ଶୁଣୁଛି । ମନ ଭିତରେ ମୁଁ ଅନେକ ପ୍ରତ୍ୟୟ ଫେରିପାଏ ।

କିନ୍ତୁ ବର୍ଷେ ମାଘ ସପ୍ତମୀ ଦିନ ମନ୍ଦିରକୁ ଯାଇ ଦେଖିଲି, ସେଇ ବୃଦ୍ଧ ପୁରାଣ ପଣ୍ଡାଙ୍କ ସ୍ଥାନରେ ଜଣେ ଯୁବକ ବସି ଖଣ୍ଡେ ଛାପା ମହାଭାରତ ବହିରୁ ଗୁଣୁଗୁଣୁ ହୋଇ ଅନୁଚ୍ଚ କଣ୍ଠରେ ମହାଭାରତ ଆବୃତ୍ତି କରୁଛନ୍ତି । ହାତରେ ବାନ୍ଧିଛନ୍ତି ଘଡ଼ି । ପରିପାଟୀ ପରିଧାନ ଆଧୁନିକ । ଚେହେରା ମଧ୍ୟ ସୁସ୍ଥସବଳ । କିନ୍ତୁ ବୃଦ୍ଧଙ୍କ ଆବୃତ୍ତିରେ ମନ୍ଦିର ଯେପରି ଧ୍ୱନିତ ହୋଇ ଉଠୁଥିଲା, ଏଇ ନୂତନ ପୁରାଣ ପଣ୍ଡାଙ୍କର ଆବୃତ୍ତିରେ ତାହା ସେପରି ଧ୍ୱନିତ ହେଉନାହିଁ । ଉଚ୍ଚକଣ୍ଠରେ ଆବୃତ୍ତି କରିବା ପାଇଁ ତାଙ୍କୁ ବୋଧହୁଏ ସଙ୍କୋଚ ଲାଗୁଛି । କିନ୍ତୁ ମହାଭାରତ ବୋଲିବା ବେଳେ ବୃଦ୍ଧଙ୍କଠାରେ ଯେଉଁ ପ୍ରାଣପ୍ରାଚୁର୍ଯ୍ୟ ଓ ଆବେଗ ମୋତେ ସେଦିନ ସମ୍ମୋହିତ କରିଦେଉଥିଲା, ଏହାଙ୍କଠାରେ ମୁଁ ତାହା ଲକ୍ଷ୍ୟ କରିପାରିଲି ନାହିଁ । ବୃଦ୍ଧଙ୍କ ପକ୍ଷରେ ଏ ଦିନ ମହାଭାରତ ଦାଣ୍ଡିବୃତ୍ତରେ ବୋଲିବା ଥିଲା, ବାକ୍‌ଦେବୀ ସାରଳାଙ୍କର ଏକ ପବିତ୍ର ସେବା; ମାତ୍ର ଏ ଯୁବକ ପୁରାଣ ପଣ୍ଡାଙ୍କ ପକ୍ଷରେ

ତାହା ଥିଲା ଏକ ପ୍ରାଣହୀନ ଉପଚାର । ସେଥିପାଇଁ ସେଥିରେ ପ୍ରାଣଶକ୍ତି ନଥିଲା, କିମ୍ବା ଆବେଗର ସ୍ପନ୍ଦନ ନଥିଲା ।

ସେଠାରେ କେତେ ମିନିଟ୍ ଠିଆହେବା ପରେ ମୋତେ ଲାଗିଲା, ମୋର ପରିଚିତ ପୃଥିବୀ ହଠାତ୍ ଯେପରି ହଜିଯାଇଛି । ମୁଁ ଯେପରି ଜଣେ ଆଗନ୍ତୁକ ପରି ଏହି ଅନିଶ୍ଚିତ ବର୍ତ୍ତମାନ ଭିତରକୁ ଭୁଲରେ ଚାଲିଆସିଛି । ମୋର କୌଣସି ଅତୀତ ନାହିଁ । ମୁଁ ଯେପରି ଗୋଟିଏ ମୁହୂର୍ତ୍ତର ବୁଦ୍‌ବୁଦ୍ ମାତ୍ର ।

ପଚାରି ବୁଝିଲି, ସେଇ ବୃଦ୍ଧ ପୁରାଣ ପଣ୍ଡାଙ୍କ ପରଲୋକ ହୋଇଯାଇଛି । ତାଙ୍କ ସ୍ଥାନରେ ଏଇ ଯୁବକ ପୁରାଣ ପଣ୍ଡା ଜଣକ ମହାଭାରତ ଏବେ ବୋଲୁଛନ୍ତି । କିନ୍ତୁ ଇଏ ଆଉ ସେପରି ବୋଲି ପାରୁନାହାନ୍ତି । ସେ ପୋଥି ପଢ଼ିପାରିବେ ନାହିଁ ବୋଲି ଛାପା ମହାଭାରତ ବହି ବୋଲୁଛନ୍ତି । କିନ୍ତୁ ସେ ପୋଥି କୁଆଡ଼େ ଗଲା ବୋଲି ପଚାରିବାରୁ, ମନ୍ଦିରର ଜଣେ ସେବକ ମୋତେ ଉତ୍ତର ଦେଲେ, "ବୁଢ଼ାଙ୍କ ସଙ୍ଗେ ସେ ପୋଥି ମଧ୍ୟ ଗଲାଣି ।" ମୋ ପାଇଁ ଓଡ଼ିଶା ଇତିହାସର ଅତୀତର ପାଞ୍ଚଗୋଟି ଶତାବ୍ଦୀ ସେହି ଦିନ ସେତିକି ବେଳେ କାଳସ୍ରୋତରେ ହଠାତ୍ ଗୋଟଟିଏ ବୁଦ୍‌ବୁଦ୍ ପରି ମିଳାଇ ଯାଇଥିଲା । ମାତ୍ର ବୁଝି ପାରିଲି ନାହିଁ ଆଧୁନିକ ଏପରି ଅନ୍ତଃସାରଶୂନ୍ୟ କାହିଁକି ? ଆଧୁନିକ ମଣିଷର କାହିଁକି ଆତ୍ମପ୍ରତ୍ୟୟ ନାହିଁ? ସେ କାହିଁକି ନିଜକୁ ନିଜେ ବିଶ୍ୱାସ କରିପାରୁ ନାହିଁ ?

୧୪/୦୧/୮୯

# ଅପରାଧ ଓ ଶାସ୍ତି

ଆମ ଦେଶର ନ୍ୟାୟଶାସ୍ତ୍ରୀମାନେ ବ୍ରିଟିଶ୍ ନ୍ୟାୟଶାସ୍ତ୍ରର ଗୋଟିଏ ସୂତ୍ର ବ୍ୟାଖ୍ୟାନ କରିଥାଆନ୍ତି । ଦଶଜଣ ଦୋଷୀ ପଛେ ଖଲାସ ହୋଇଯାଆନ୍ତୁ, ଜଣେ ହେଲେ ନିର୍ଦ୍ଦୋଷ କିନ୍ତୁ ଶାସ୍ତି ନପାଉ । ଦୋଷୀମାନେ ନିର୍ଦ୍ଦୋଷ ବୋଲି ହଲପନାମା କରିଦେଲେ ଯେ, ନିର୍ଦ୍ଦୋଷ ବୋଲି ସାବ୍ୟସ୍ତ ହୋଇ ଯାଆନ୍ତି, ତା' ନୁହେଁ । ଏହା ପଛରେ ଥାଏ ଆଇନର ଅନେକ କାରସାଦି । ଓକିଲମାନଙ୍କର ବାହାଦୂରୀ ମଧ୍ୟ ସେଇଠି । ଏହାର ଫଳଶ୍ରୁତି ହେଉଛି, ଯେଉଁମାନଙ୍କର ଧନବଳ ଅଛି ବା ଜନବଳ ଅଛି, ସେମାନେ ଓକିଲ ଲଗାଇ ଜଘନ୍ୟ ଅପରାଧ କରିସୁଦ୍ଧା ନିର୍ଦ୍ଦୋଷରେ ଖଲାସ ହୋଇଯାଇପାରନ୍ତି । ଅଥଚ ଯାହାର ଧନବଳ ନାହିଁ କି ଜନବଳ ନାହିଁ, ସେ ନିର୍ଦ୍ଦୋଷ ହୋଇ ସୁଦ୍ଧା ଅନେକ ସମୟରେ ସଜା ଭୋଗିଥାଏ । ସେଥିପାଇଁ କୋର୍ଟ କଚେରୀର ନ୍ୟାୟବିଧାନ ମୋ ଦୃଷ୍ଟିରେ ସବୁବେଳେ ମନୁଷ୍ୟକୃତ ନ୍ୟାୟବିଧାନ; ତାହା ବହୁ କ୍ଷେତ୍ରରେ ପ୍ରାକୃତିକ ନ୍ୟାୟବିଧାନ ନୁହେଁ । ଧନୀ ରଣାର ପିତୃହତ୍ୟା ମୋକଦ୍ଦମା ଯେପରି ନଟବର ଗତିରେ କୋର୍ଟ କଚେରିମାନଙ୍କରେ ପାଞ୍ଚବର୍ଷ କାଳ ଚାଲିଲା । ଖବରକାଗଜରେ ତାହାର ବିବରଣୀ ପଢ଼ିବାବେଳେ, ଉପରୋକ୍ତ ନ୍ୟାୟସୂତ୍ର ସଂପର୍କରେ ମୋର ଧାରଣା କ୍ରମେ ଆଉରି ଦୃଢ଼ୀଭୂତ ହେଉଥିଲା । ପାଟ ସୁନ୍ଦରପୁର ଗାଁର ଏଇ ଧନୀରଣା ଜଣେ ଗଞ୍ଜୋଡ଼ ଓ ଜୁଆଡ଼ି ଭାବରେ କୁଖ୍ୟାତ । ତା' ବାପା ବୃଦ୍ଧ ନିଧି ରଣାଙ୍କୁ ମୁଁ ଭଲ ଭାବରେ ଜାଣିଥିଲି । ସିଏ ଜଣେ ମଧ୍ୟମବର୍ଗର ଚାଷୀ- ନିଜ ପରିଶ୍ରମରେ ସାମାନ୍ୟ ପୈତୃକ ଭୂ-ସମ୍ପତ୍ତିକୁ ସେ ବଢ଼ାଇ ବଢ଼ାଇ ପ୍ରାୟ ବାଟିଏ କରିପାରିଥିଲେ । ଧନୀ ରଣା ଜିଦ୍ କଲା, ସିଏ କିଛି ଜମି ବିକ୍ରୀ କରି ବେପାର କରିବ । ନିଧି ରଣା କିନ୍ତୁ ସ୍ପଷ୍ଟ ଶୁଣାଇଦେଲେ, ସେ ବଞ୍ଚିଥିବା ପର୍ଯ୍ୟନ୍ତ ଗୋଟେ ଜମି ସୁଦ୍ଧା ବିକ୍ରି ହୋଇପାରିବ ନାହିଁ ।

ଏଥିପାଇଁ ବାପ ପୁଅଙ୍କ ଭିତରେ ଖୁବ୍ ରେଷାରେଷି ଚାଲିଥିଲା । ଦିନେ ଦିପହରେ ନିଧି ରଣା ଖାଇବାକୁ ବସିଥିବା ବେଳେ ଧନୀ ରଣା ପଛରୁ ଆସି ଗୋଟାଏ ଫାର୍ସାରେ

ତାକୁ ଦି'ଗଡ଼ କରିଦେଲା । ବାପ ଖାଇବାକୁ ବସିଥିବା ବେଳେ ପୁଅ ଜହ୍ଲାଦ ପରି ବାପକୁ ହତ୍ୟା କରିବା ଘଟଣା ସେତେବେଳେ ସେ ଅଞ୍ଚଳରେ ସବୁଆଡ଼େ କ୍ରୋଧ ଓ ବିରକ୍ତିର ଗୋଟାଏ ପ୍ରବଳ ତରଙ୍ଗ ଖେଳାଇ ଦେଇଥିଲା । ପୋଲିସ୍ ଯଥାବିଧି ଆସି ରକ୍ତାକ୍ତ ଫାର୍ସା ସହିତ ଧନୀରଣାକୁ ଗିରଫ କଲେ । ପ୍ରତ୍ୟକ୍ଷ ସାକ୍ଷ୍ୟ ପ୍ରମାଣର ଅଭାବ ନଥିଲା । ଧନୀ ରଣା ମଧ୍ୟ ପୋଲିସ୍ ପାଖରେ ନିଜେ ହତ୍ୟା କରିଥିବା ପ୍ରଥମେ ସ୍ୱୀକାର କରିଥିଲା । କିନ୍ତୁ ପରେ କୋର୍ଟରେ ତାହା ଅସ୍ୱୀକାର କଲା ଓ ତା'ପରେ ତଳ କୋର୍ଟଠାରୁ ସର୍ବୋଚ୍ଚ କୋର୍ଟ ପର୍ଯ୍ୟନ୍ତ ଆଇନର 'ଘୁଲ୍‌ଘୁଲିଆ' ଭିତରେ ସତ୍ୟ ଓ ନ୍ୟାୟ ବିଧାନ ସହିତ ଲୁଚକାଳି ଖେଳ ଚାଲିଲା । ଅବଶେଷରେ ସର୍ବୋଚ୍ଚ ବିଚାରାଳୟ ଧନୀ ରଣାକୁ ଫାଶୀ ଦଣ୍ଡ ଆଦେଶ ଦେବା ପରେ ରାଜକ୍ଷମା ପାଇଁ ତା'ର ଆବେଦନ ଘେନି ମଧ୍ୟ ଆଇନର କାରସାଦି ଚାଲିଲା । ଏହିପରି ପିତୃହନ୍ତା ଧନୀ ରଣାକୁ ଫାଶୀ ଦେବାରେ ଯେତିକି ବିଳମ୍ବ ହେଉଥାଏ, 'ବ୍ଲାକ୍-ୱାରେଣ୍ଟ' ଜାରି ହେବା ପରେ ପୁଣି ତାହା ଯେପରି ରଦ୍ଦ ହେଉଥାଏ, ତାହା ମୋତେ ପ୍ରକୃତରେ ମନୁଷ୍ୟକୃତ ନ୍ୟାୟ ବିଚାର ସଂପର୍କରେ ଘୋର ହତାଶ ଓ ସନ୍ଦିଗ୍ଧ କରି ଦେଉଥିଲା । ଅବଶେଷରେ ଧନୀ ରଣାର ଫାଶୀ ଦଣ୍ଡାଦେଶ କାଏମ ରହିଲା ଓ ତା' ନାମରେ 'ବ୍ଲାକ୍-ୱାରେଣ୍ଟ'କୁ ଚିଫ୍ ଜୁଡ଼ିସିଆଲ୍ ମାଜିଷ୍ଟ୍ରେଟ୍ ଦସ୍ତଖତ କଲେ । ଫାଶୀ ଦଣ୍ଡର ତାରିଖ ଓ ସମୟ ସେଥିରେ ସ୍ପଷ୍ଟ ଭାବରେ ଉଲ୍ଲେଖ କରିଦିଆଗଲା । ମୁଁ ମନରେ ଟିକିଏ ଶାନ୍ତି ପାଇଲି ।

ଖବରକାଗଜରେ ଧନୀ ରଣାର ଫାଶୀ ଖବର ବେଶ୍ ବିସ୍ତାରିତ ଭାବରେ ଦିନେ ପ୍ରକାଶ ପାଇଲା । ନିର୍ଦ୍ଦିଷ୍ଟ ଦିନ ସକାଳ ୮ଟା୧୫ ମିନିଟ୍‌ରେ ତାକୁ ଫାଶୀ ଦିଆଯିବ । ତା' ପୂର୍ବରୁ ଜେଲ୍ ସୁପରିଣ୍ଟେଣ୍ଡେଣ୍ଟ ଓ ଅନ୍ୟ କର୍ମକର୍ତ୍ତାମାନେ ଆସି ସେଲ୍ ଭିତରେ ଧନୀ ରଣାକୁ 'ବ୍ଲାକ୍-ୱାରେଣ୍ଟ' ପଢ଼ି ଶୁଣାଇଦେଲେ । ଏ ଖବର ପଢ଼ିବା ବେଳେ ମୋ ଆଖି ଆଗରେ ଗୋଟିଏ ଅନ୍ଧାରିଆ ନିର୍ଜନ ସେଲ୍ କୋଣରେ ଜାକିଜୁକି ହୋଇ ଗୋଟିଏ ମୂକ ପଶୁ ପରି ନିର୍ବାକ୍ ଦୃଷ୍ଟିରେ ଚାହିଁ ବସିଥିବା ଧନୀ ରଣାର ଚେହେରା ଭାସି ଉଠୁଥିଲା। କେଜାଣି କାହିଁକି ହଠାତ୍ ଧନୀ ରଣା ପ୍ରତି ମୋ ପୂର୍ବର ଘୃଣାଭାବ କଟିଯାଇ ସହାନୁଭୂତିରେ ମୋ ମନ କୋମଳ ହୋଇଉଠୁଥିଲା । ମନର ଇଏ ବିଚିତ୍ର ରୀତି ମୁଁ ବୁଝିପାରୁନଥିଲି । ପାଞ୍ଚବର୍ଷ ତଳେ ସେ ତ ନିଶ୍ଚୟ ତା' ବୁଢ଼ା ବାପକୁ ଫାର୍ସାରେ ହାଣିଥିଲା । ସେତେବେଳେ ତାକୁ ସାଙ୍ଗେ ସାଙ୍ଗେ ଗୁଳି କରିଦିଆଯାଇଥିଲେ ମୁଁ ବରଂ ଖୁସି ହୋଇଥାନ୍ତି । କିନ୍ତୁ ପାଞ୍ଚବର୍ଷକାଳ ଉଦ୍‌ବେଗ ଉତ୍କଣ୍ଠା ଓ ବନ୍ଧନ ଭୋଗିବା ପରେ ଏ ଯେଉଁ ଲୋକଟି ନିର୍ଜନ ସେଲ୍ କୋଣରେ ନିର୍ବାକ୍ ଦୃଷ୍ଟିରେ ଚାହିଁ ବ୍ଲାକ୍ ୱାରେଣ୍ଟ ଶୁଣୁଥିଲା, ସିଏ ଯେ ସେଇ ଧନୀ ରଣା, ସେଥିରେ ମୋ ମନରେ ସନ୍ଦେହ ସୃଷ୍ଟି ହେଉଥିଲା । ମୁଁ ମନେ ମନେ

ଚିତ୍କାର କରି ଉଠୁଥିଲି, ନା ନା ଇଏ ସେ ଧନୀ ରଣା ନୁହେଁ । ଇଏ ଜଣେ ଭିନ୍ନ ମଣିଷ ! ତଥାପି ତାକୁ ବ୍ଲାକ୍ ୱାରେଣ୍ଟ ପଢ଼ି ଶୁଣାଇ ଦେବା ପରେ ବଳୀଦତ୍ତ ପଶୁପରି ଗାଧୋଇ ଦେବା ପାଇଁ ନିଆଗଲା । ଗାଧୋଇ ଦେଇ ସାରିବା ପରେ ତାକୁ ନୂଆଲୁଗା ଓ ଜାମା ପିନ୍ଧାଇ ଦିଆଗଲା । ତା' ପରକାଳରେ ସଦ୍‌ଗତିପାଇଁ ଚିନ୍ତାର ମଧ୍ୟ ଅଭାବ ନଥିଲା । ଜଣେ ପଣ୍ଡିତ ଆସି ତାକୁ କିଛି ଧର୍ମଶାସ୍ତ୍ର କଥା ବୁଝାଇଲେ । ତା' ପରେ ତା ଦୁଇହାତ ଓ ଗୋଡ଼ରେ ବେଡ଼ି ଲଗାଇ ତାକୁ ଟାଣିଟାଣି ଫାଶୀ ଖୁଣ୍ଟ ପାଖକୁ ନିଆଗଲା । ତା ଚାରିପଟେ ଘେରି ଚାଲିଥିଲେ, ଆଇନ ଓ ନ୍ୟାୟବିଧାନର ପ୍ରତିନିଧିମାନେ । ଏହି ବିବରଣୀ କାଗଜରେ ପଢ଼ିବାବେଳେ ମୋର ମନେ ହେଉଥିଲା, ଦଳେ ସଂଗଠିତ ଷଡ଼ଯନ୍ତ୍ରକାରୀ ଗୋଟାଏ ନିରୀହ ଲୋକକୁ ବିଧିସମ୍ମତ ଭାବରେ ହତ୍ୟା କରିବାପାଇଁ ଫାଶୀ ଖୁଣ୍ଟ ପାଖକୁ ନେଉଛନ୍ତି । ଫାଶୀ ଖୁଣ୍ଟ ପାଖକୁ ଯାଉଁ ଯାଉଁ ସ୍ନାୟୁବିକ ଦୌର୍ବଲ୍ୟ ହେତୁ ଧନୀ ରଣା ତଳେ କିଛି ସମୟ ବେହୋସ ହୋଇ ପଡ଼ିଗଲା । ସେତେବେଳେ ତା' ପ୍ରତି ସହାନୁଭୂତିର ମଧ୍ୟ ଅନ୍ତ ନଥିଲା । ତାକୁ ହତ୍ୟା କରିବାପାଇଁ ନେଉଥିବା ଲୋକମାନେ ତା' ମୁହଁରେ ପାଣିଛାଟି ଔଷଧ ଶୁଙ୍ଘାଇ ତାକୁ ଚେତା କରାଇଲେ । ତା' ପରେ ଫାଶୀ ଖୁଣ୍ଟ ଉପରେ ତା' ମୁହଁ ଉପରେ କଳା ଢାଙ୍କୁଣୀ ଢାଙ୍କି ଦିଆଗଲା । ଜେଲର୍ ହାତଘଡ଼ିକୁ ଚାହିଁଛନ୍ତି ଯେପରି ଗୋଟିଏ ସେକେଣ୍ଡ ଆଗ ବା ପଛ ନହୁଏ । ନିର୍ଦ୍ଦିଷ୍ଟ ୮ ଘଣ୍ଟା ୧୫ ମିନିଟ୍‌ରେ ସେ ଇସାରା ଦେବାମାତ୍ରେ ଜହ୍ଲାଦ ଫାଶୀର ଲିଭର ଟାଣିଦେଲା । ଧନୀ ରଣାର ଲାସ ଅଧଘଣ୍ଟା ଦଉଡ଼ିରେ ଝୁଲିବା ପରେ ଡାକ୍ତର ସାର୍ଟିଫିକେଟ୍ ଦେଲେ । ଧନୀ ରଣାକୁ ଫାଶୀ ହେଲା !

ଏତକ ପଢ଼ିବା ପରେ ମୋର ମନେ ହେଲା, ଇଏ ତ ଅପରାଧୀର ଶାସ୍ତି ନଥିଲା, ଇଏ ଥିଲା ଜଣେ ଲୋକକୁ ହତ୍ୟା କରିବାପାଇଁ ଏକ ସଂଗଠିତ ପ୍ରଚେଷ୍ଟା । ଏହା ପରିବର୍ତ୍ତେ ଧନୀ ରଣାକୁ ବହୁ ପୂର୍ବରୁ ଗୁଳିରେ ଉଡ଼ାଇ ଦେଇଥିଲେ ବରଂ ତାହା ଅଧିକ ନ୍ୟାୟୋଚିତ ହୋଇ ଥାଆନ୍ତା । ଇଏ ତ ନ୍ୟାୟବିଧାନ ହେଲା ନାହିଁ; ଇଏ ହେଲା ଆଉ ଏକ ନରହତ୍ୟା ।

୨୧/୦୧/୮୯

# ଜୀବନ ଓ ସ୍ୱପ୍ନ

ଥରେ ପୁରୀ ସହରରେ ମୋଚିସାହି ରାସ୍ତାରେ ସମୁଦ୍ର ଆଡ଼େ ଯିବାବେଳେ ସାଙ୍ଗ ଜଣକ ହଠାତ୍ ଗୋଟିଏ ଗଳି ମୋଡ଼ରେ ଅଟକି ଯାଇ ମୋତେ ଟାଣି ଭିତରକୁ ଡାକିଲେ । ସାଙ୍ଗ ଜଣକ ଖିଆଲି ମଣିଷ । ତେଣୁ ଉଦ୍ଦେଶ୍ୟ ନ ପଚାରି ତାଙ୍କ ଖିଆଲ ମାନି, ତାଙ୍କ ପଛେ ପଛେ ସେଇ ଅନ୍ଧାର ଗଳି ଭିତରକୁ ପଶିଲି । ଶୁଣିଥିଲି, ଏ ଅଞ୍ଚଳରେ କେଉଁଠି କୁଆଡ଼େ ଗୋଟେ ଭାଙ୍ଗ ସରବତ ଦୋକାନ ଅଛି । ଯେଉଁଠାରେ ବିଦେଶୀ ହିପ୍‌ପୀମାନଙ୍କର ଭିଡ଼ ଲାଗୁଥିଲା । ସାଙ୍ଗ ବୋଧହୁଏ ମୋତେ ସେହି ଭାଙ୍ଗଦୋକାନକୁ ଡାକୁଛନ୍ତି । ସେଇ ଗ୍ରୀଷ୍ମ ସନ୍ଧ୍ୟାରେ ମୋର ମଧ୍ୟ ଭାଙ୍ଗ ଗିଲାସେ ପାଇଁ ଆପତ୍ତି ନଥିଲା । କିନ୍ତୁ ଗଳି ଭିତରେ ଅଳ୍ପବାଟ ଯିବା ପରେ ଆମେ ଯେଉଁଠି ଅଟକିଲୁ, ତାହା ଭାଙ୍ଗଦୋକାନ ନଥିଲା କିମ୍ବା ସେଠାରେ ବିଦେଶୀ ହିପ୍‌ପୀମାନଙ୍କର ଭିଡ଼ ନଥିଲା ।

ଗଳି ରାସ୍ତା ଉପରେ ଗୋଟାଏ ନୁଆଁଣିଆ କେଉଁ ପୁରୁଣା କାଳର ଚାଳଘର । ଭିତରେ ଯେଉଁ ମିଞ୍ଜିମିଞ୍ଜି ଇଲେକ୍‌ଟ୍ରି ବଲ୍‌ବଟି ଜଳୁଥିଲା, ତାହା ସେଇ ଘରର ଜୀର୍ଣ୍ଣ ଓ ମଳିନ ଅବସ୍ଥାକୁ ଯେପରି ମଳିନତର କରି ଦେଇଥିଲା । ଘର ଭିତରେ ଖଣ୍ଡେ ସଉପ ଉପରେ ଯେଉଁ ବୁଢ଼ା ଜଣକ କାନ୍ଧ ଉପରେ ଖଣ୍ଡେ ଗାମୁଛା ପକାଇ ବସିଥିଲେ, ସିଏ ବୋଧହୁଏ ବୃତ୍ତିରେ ଜଣେ ମାଳାକାର । ସଉପ ଉପରେ ଅନେକ ଫୁଲର ମାଳା, ରଙ୍ଗ ବେରଙ୍ଗର ପ୍ରଦର୍ଶନୀ । ବୁଢ଼ା ଜଣକ ନିଶ୍ଚଳ ଭାବରେ ଫୁଲର ସେଇ ମାଳା ଭିତରେ ବସି ଖଣ୍ଡେ ଛୋଟ କାଠିରେ ମଲ୍ଲୀକଢ଼, ବଉଳ ଓ ଚମ୍ପା ଫୁଲରେ ତୋଡ଼ା ଗୁନ୍ଥୁଥିଲେ । ସାଙ୍ଗ ପଚାରିଲେ, "କେମିତି ଅଛ ମଉସା ?" ବୁଢ଼ାଙ୍କର କୁଞ୍ଚକୁଞ୍ଚିଆ ଶେତା ମୁହଁରେ ପାହାଡ଼ୀ ଝରଣା ଉପରେ ସକାଳ ଖରା ଯେମିତି ଚିକ୍ ଚିକ୍ କରି ଉଠିଲା । ବୁଢ଼ା କହିଲେ, "ହଁ, ଆ ଭିତରେ ଜରରେ କେତେଦିନ ଭୋଗିଲି । କାଲିଠୁଁ ଟିକିଏ ସାଷ୍ଟାମ ହୋଇଛି ।" ସାଙ୍ଗ ଅନୁଯୋଗ ଭରା କଣ୍ଠରେ କହିଲେ, "ପୁଅମାନେ ତ ଡାକୁଛନ୍ତି, ସେମାନଙ୍କ ପାଖକୁ ନ ଯାଇ ତୁମେ ଏକୁଟିଆ ପଡ଼ି କାହିଁକି ଭୋଗୁଛ କହିଲ ?" ବୁଢ଼ା ସଂକ୍ଷେପରେ

ଉତ୍ତର ଦେଲେ "ଏ ସେବା କାହାକୁ ଛାଡ଼ିଯିବି କହିଲ ? ପୁଅମାନେ ତ ସବୁ ଚାକିରି କଲେଣି ।" ସାଙ୍ଗଙ୍କର କଥାବାର୍ତ୍ତାରୁ ବୁଝିଲି, ଶ୍ରୀଜଗନ୍ନାଥଙ୍କର ବଡ଼ସିଂହାରବେଳେ ଇଏ ନିର୍ଦ୍ଦିଷ୍ଟ ସଂଖ୍ୟକ କେତେଟା ଫୁଲ-କାଠି ଭେଟି ଦିଅନ୍ତି । ଇଏ ହେଉଛି ତାଙ୍କର ପାରମ୍ପରିକ ସେବା । ସେଥିପାଇଁ ସେବାୟତ ଜମି ମଧ୍ୟ ଥିଲା । ମାତ୍ର ସେ ଜମିକୁ କେ କେଉଁଆଡ଼େ ଦଖଲ କରିଗଲେଣି । ବୁଢ଼ାଙ୍କର ସ୍ତ୍ରୀ ନାହିଁ । ପୁଅମାନେ ଜଣେ ଭୁବନେଶ୍ୱର ଆଉ ଜଣେ ରାଉରକେଲାରେ ଚାକିରି କରି ସିଆଡ଼େ ରହୁଛନ୍ତି । ବୁଢ଼ାଙ୍କୁ ଅଶୀ ବର୍ଷ ହେଲାଣି । ପୁଅମାନେ ତାଙ୍କୁ ପାଖକୁ ଡାକୁଛନ୍ତି ।

କିନ୍ତୁ ବୁଢ଼ା କହୁଛନ୍ତି ସିଏ ଚାଲିଗଲେ ଏ ସେବା ଚଳେଇବ କିଏ ? ବଡ଼ସିଂହାର ବେଳେ ଫୁଲ-ସେବା ପରି ଗୋଟିଏ ଅମୂର୍ତ୍ତ ଭାବନା ଓ ଆବେଗକୁ ଧରି ବର୍ଷ ପରେ ବର୍ଷ ନିଃସଙ୍ଗ ଜୀବନ ବିତାଇବା ମୋତେ ବିସ୍ମିତ କରିଦେଲା । ତଥାପି ଏହିପରି ଗୋଟାଏ ଅସର୍ତ୍ତ ଆବେଗ ମଧ୍ୟରେ ଏଇ ବୁଢ଼ାଜଣକ ସବୁ ଛାଡ଼ି ଏକୁଟିଆ ରହିପାରିଛନ୍ତି । କିନ୍ତୁ ଏହିପରି ମଧ୍ୟଯୁଗୀୟ ପ୍ରତ୍ୟୟ ମଧ୍ୟରେ ଆଜି ମଣିଷ କିପରି ବଞ୍ଚି ରହିପାରେ, ତାହା ମୋତେ ଆଉରି ବିସ୍ମିତ କରିଦେଲା... । ଆମେ ସେଠାରୁ ଦୁଇଟାବେଳେ ବଉଳମାଳ କିଣି ହାତରେ ଗୁଡ଼ାଇ ବାହାରି ଆସିଲୁ ।

କିନ୍ତୁ ସେଦିନର ସ୍ମୃତି ମୁଁ ଆଦୌ ଭୁଲି ପାରିନଥିଲି । କେତେବର୍ଷ ପରେ ଥରେ ମୁଁ ଏକୁଟିଆ ମୋଚିସାହି ରାସ୍ତାରେ ଯାଉଯାଉ ବୁଢ଼ାଙ୍କୁ ଦେଖିବାପାଇଁ ଗୋଟାଏ ଖିଆଲରେ ସେଇ ଗଳି ଭିତରକୁ ପଶି ଆସିଲି । ମାତ୍ର ସେଦିନକୁ ସେଠାରେ ଆଉ ସେ ଚାଳଘର ନଥିଲା କିମ୍ବା ସେଠାରେ ଫୁଲହାଟ ମେଲାଇ ସେ ବୁଢ଼ା ବଡ଼ସିଂହାର ସେବାପାଇଁ କାଠିରେ ଫୁଲ ତୋଡ଼ା ସଜାଉ ନଥିଲେ । ସେ ଚାଳଘରଟା ମଧ୍ୟ ଇତି ମଧ୍ୟରେ ଗୋଟାଏ ଛୋଟ କୋଠାଘରରେ ପରିଣତ ହୋଇସାରିଥିଲା । ଚାରିପାଞ୍ଚ ବର୍ଷର ପିଲାଟିଏ ବସି ତା' ଆଗରେ ଧୂଳି ଆଉ କିଛି ଅରମା ଫୁଲ ଜମାଇ ଏକୁଟିଆ ଖେଳୁଥିଲା । ବୁଢ଼ାଙ୍କ କଥା ଜଣେ ପ୍ରତିବେଶୀଙ୍କଠାରୁ ପଚାରି ବୁଝିଲି, କେତେବର୍ଷ ତଳେ ଦିନ ଦୁଇଟା ଜରରେ ବୁଢ଼ାଙ୍କର କାଳ ହୋଇଗଲା । ପୁଅମାନେ ପୈତୃକ ଘରକୁ ବିକ୍ରୀ କରିଦେଇ ଅନ୍ୟଆଡ଼େ ଉଠିଗଲେଣି । କିନ୍ତୁ ତାଙ୍କର ସେବା କିଏ ଚଳାଉଛି ବୋଲି ପଚାରିବାରୁ ସେଇ ପ୍ରତିବେଶୀ ଜଣଙ୍କ ଉତ୍ତର ଦେଲେ, "ସେ ସେବା ବୁଢ଼ା ସାଙ୍ଗରେ ଗଲାଣି । ବଡ଼ସିଂହାର ବେଳେ କେତେଟା ଫୁଲ-କାଠି ଭେଟି ଦେବାପାଇଁ ଏଠି ପଡ଼ି ରହିବ କିଏ ?"

ବାରଣ୍ଡା ଉପରେ ଧୂଳିଘରକୁ ଫୁଲରେ ସଜାଇ ଏକୁଟିଆ ଖେଳୁଥିବା ସେଇ ଶିଶୁଟି ଆଡ଼େ ଚାହିଁ କେତେଟି ମୁହୂର୍ତ୍ତ ମୁଁ ସେଠାରେ ଠିଆ ହୋଇଗଲି । ସେଇ ଶିଶୁଟି ମଧ୍ୟ, ବୁଢ଼ା ମାଳି ପରି ଗୋଟାଏ ଅମୂର୍ତ୍ତ ଆବେଗ ଓ ସ୍ୱପ୍ନ ଭିତରେ ଯେପରି ପୂରାପୂରି

ହଜିଯାଇଛି । ସେଠାରେ ଠିଆହୋଇ ସେଦିନ ମୋର ମନେ ହୋଇଥିଲା, ମନୁଷ୍ୟର ବଞ୍ଚିବାପାଇଁ ବିମୂର୍ତ୍ତ ସଂସାର ଖୋଜିଥାଏ ସତ୍ୟ, ମାତ୍ର ସେ ପ୍ରକୃତରେ ବଞ୍ଚେ ଅମୂର୍ତ୍ତ ଭାବନା ଆଉ ସ୍ୱପ୍ନ ଭିତରେ । ତାହା ହିଁ ମନୁଷ୍ୟର ଜୀବନ । ଯାହାର ଜୀବନରେ ସ୍ୱପ୍ନ ନାହିଁ, ତା'ର ପ୍ରକୃତରେ ଜୀବନ ନାହିଁ ।

୨୮/୦୧/୮୯

# ଜାନୁଘଣ୍ଟ

ସେଦିନର ସେଣ୍ଟ୍ରୀ ଆଉ ପହରାଦାରମାନଙ୍କର ଘଣ୍ଟାଧ୍ୱନି କଟକ ସହରରେ କେବେଠାରୁ ନିରବ ହୋଇଗଲାଣି । କେଉଁଠି କେଉଁଠି ପହରାଦାରମାନେ ନିଶ୍ଚୟ ପହର ଗଣି ତଥାପି ଏବେବି ଘଣ୍ଟ ପିଟୁଥିବେ; ମାତ୍ର ସହରର ଜନାକୀର୍ଣ୍ଣ ରାସ୍ତାମାନଙ୍କରେ ଟ୍ରାଫିକ୍, ଆଉ ପଥଚାରୀମାନଙ୍କର କୋଳାହଳ ଭିତରେ ସେ ଘଣ୍ଟାଧ୍ୱନି ଆଉ ସହରର ନିଶୁତିକୁ ଥରାଇ ଦେଉନାହିଁ । ସେଦିନର ସେ କଂସା-ତିଆରି ଘଣ୍ଟା ସବୁ ମଧ୍ୟ କବାଡ଼ିମାନଙ୍କର ଦୋକାନରେ କେବେଠାରୁ ଓଜନ ଦରରେ ବିକ୍ରୀ ହୋଇଯିବଣି । କିନ୍ତୁ ସେଦିନ ଏଇ ଘଣ୍ଟାଧ୍ୱନି ଥିଲା, କଟକ ସହରର ଗୋଟାଏ ନିଜସ୍ୱ ବିଶେଷତ୍ୱ । ଏଇ ଘଣ୍ଟାମାନଙ୍କର ଧ୍ୱନି କଟକ ସହରର ସନ୍ଧ୍ୟା ଆଉ ରାତିକୁ ଅନ୍ୟ ସହରମାନଙ୍କରେ ସନ୍ଧ୍ୟା ଆଉ ରାତିଠାରୁ ନିଆରା କରିଦେଉଥିଲା । ପ୍ରଥମ ଘଣ୍ଟାଧ୍ୱନି ଦେବଦାରୁ, ବୀଥି ଘେରା ଇମ୍ପ୍ରିଆଲ୍ ବ୍ୟାଙ୍କ୍‌ର ସେଣ୍ଟ୍ରି ପୋଷ୍ଟରୁ ବାଜିଉଠି ସମୟ ଘୋଷଣା କରୁଥିଲା । ତା'ପରେ ଛଡ଼ା ଛଡ଼ାରେ ବାଜୁଥିଲା, ଲାଲବାଗ କୋଠି, କଲେକ୍‌ଟରେଟ୍ ଆଉ ଅନ୍ୟ ସେଣ୍ଟ୍ରି-ପୋଷ୍ଟରମାନଙ୍କର ଘଣ୍ଟା । ସହରରେ କେତେଟା ପୁରୁଣା କୋଠିମାନଙ୍କରେ ମଧ୍ୟ ପହରାଦାର୍‌ମାନେ ଘଣ୍ଟା ପିଟୁଥିଲେ । ସମୟର ସବୁ ଚପଳତାର ଊର୍ଦ୍ଧ୍ୱରେ ସେଇ ଘଣ୍ଟାଧ୍ୱନିସବୁ ମୋତେ ଲାଗୁଥିଲା ମହାକାଳର ଗୁରୁଗମ୍ଭୀର ପ୍ରତିଧ୍ୱନି ଭଳି । ଅଥବା ସଦ୍ୟ ଯୁଗର କେଉଁ ରାଜଚକ୍ରବର୍ତ୍ତୀ ଜାନୁଘଣ୍ଟ ଯେପରି ଚାଲିଥିଲେ ନିଜର ଅପ୍ରତିରୋଧ ଜୟଯାତ୍ରା ଘୋଷଣା କରିକରି । ଅନେକ ରାତିରେ ବିଛଣାରେ ପଡ଼ିପଡ଼ି ରାତିର, ନିଶୁତି ଭିତରେ ଦୂରରୁ ଭାସିଆସୁଥିବା ପହରାଦାରମାନଙ୍କର ଘଣ୍ଟାଧ୍ୱନି ଶୁଣିବା, ମୋର ଥିଲା ଏକ ମାନସିକ ବିଳାସ ।

ଥରେ ଏଇପରି ଗ୍ରୀଷ୍ମ ରାତିରେ ଶୁଣିଲି, କେଉଁଠି ଗୋଟାଏ ଘଣ୍ଟା ବାଜୁଛି ଆଉ ବାଜୁଛି... ତା'ର ବିରାମ ନାହିଁ । ତକିଆ ତଳେ ହାତ ଘଡ଼ିକୁ ଚାହିଁ ଦେଖିଲି, ସେଇ ମାତ୍ର ରାତି ଦୁଇଟା ବାଜୁଛି । କିନ୍ତୁ ପନ୍ଦର ଥର ଘଣ୍ଟା ପିଟାଯିବା ପରେ ପହରାଦାରର ଘଣ୍ଟା ପିଟା ବନ୍ଦ ହେଲା । ଇଏତ ଅଜବ କଥା । ରାତି ଦୁଇଟା ମାନେ, ଦୁଇଥର ଘଣ୍ଟା

ପିଟାଯିବା ପରେ ଘଣ୍ଟାପିଟା ବନ୍ଦ ହେବା କଥା । କିନ୍ତୁ ଇଏ ଏମିତି ପାଗଳ ପରି ଘଣ୍ଟା ପିଟି ଚାଲିଛି କାହିଁକି ? ତା' ପରଠାରୁ ପ୍ରତି ରାତିରେ ଉତ୍‌କର୍ଣ୍ଣ ହୋଇ ସେହି ପାଗଳା-ଘଣ୍ଟା ଆଉ ଶୁଣିବା ମୋର ଏକ ଅଭ୍ୟାସରେ ପରିଣତ ହୋଇଗଲା । ସବୁ ଅସ୍ୱାଭାବିକ ବିଚିତ୍ର ଘଟଣା ଓ ମଣିଷମାନଙ୍କ ପାଇଁ ମୋର ଏକ କୌତୂହଳ ଥାଏ । ତେଣୁ ମୁଁ କ୍ରମେ ଏଇ ପାଗଳା ଘଣ୍ଟା ଆଉ ଘଣ୍ଟାପିଟାଳି ପହରାଦାର ସଂପର୍କରେ କୌତୂହଳୀ ହୋଇ ଉଠିଲି । ଦିନେ ରାତିରେ ଘଣ୍ଟା ଶବ୍ଦ ବାରିବାରି ମୁଁ ଯେଉଁଠି ପହଞ୍ଚିଲି, ତାହା ଥିଲା ଏକ ପୁରୁଣା ରାଜକୋଠି । କୋଠି ଭିତରର ଅରମା ଭିତରେ ଗୋଟିଏ ଜୀର୍ଣ୍ଣ ଦୋତାଲା କୋଠା, ବାହାରକୁ ପରିତ୍ୟକ୍ତ ଦିଶୁଥିଲା। ଏ କୋଠିର ରାଜାସାହେବ ବର୍ଷର ଅଧିକାଂଶ ସମୟ ରହୁଥିଲେ ବାହାରେ ବାହାରେ । ତାଙ୍କର କୁଆଡ଼େ ଟିକେ ମାନସିକ ବିକୃତି ମଧ୍ୟ ଥିଲା । ସେଥିପାଇଁ ତାଙ୍କୁ ନିଦ ହେଉ ନଥିଲା ।

ପହର ଗଣି ଗଣି, ପହରାଦାର ଜଣକ ରହେ ସଦର ଫାଟକ ପାଖରେ ଗୋଟିଏ ଛୋଟିଆ କୋଠରିରେ, ଜଣେ ବୁଢ଼ା ମୁସଲମାନ । ତା' ଦେହରେ ଖଣ୍ଡେ ଲୁଙ୍ଗି ଛଡ଼ା ଆଉ କିଛି ନଥିଲା । ଏତେ ରାତିରେ ସେ ମୋତେ ସେଠାରେ ଦେଖି ଭାରି ବିସ୍ମିତ ହେଲା । ମୁଁ ତାକୁ ପଚାରିଲି, "ସେ ସେପରି ଅଦ୍‌ଭୂତ ଭାବରେ, ଚଉଦ, ପନ୍ଦର ଷୋହଳ, ଏହିପରି ଘଣ୍ଟା ପିଟି ଚାଲିଛି କାହିଁକି ? ଅନ୍ୟ ଘଣ୍ଟା ମାନ ତ ସେପରି ବାଜୁ ନାହିଁ । ସେ ଉତ୍ତର ଦେଲା, "ଆରେ ବାବୁ ଇଏ ଆମ ରଜା ସାହେବଙ୍କ ହୁକୁମ । ଆମ ଟାଇମ୍ ରେଳବାଇ ଟାଇମ୍ । ରେଳବାଇରେ ବାରଟା ପରେ ଥରେ ପିଟିକ କାହିଁକି, କିପରି ? ହଁ ଇଏ ରେଳବାଇ ଟାଇମ୍ । ପହରାଦାର ଉତ୍ତର ଶୁଣି ମୋତେ ନିଜକୁ ବୋକା ପରି ଲାଗିଥିଲା । ପହରାଦାର ରେଳବାଇ ଟାଇମ୍‌ର ତାରିଫ୍ କରି କହୁଥିଲା, "ରାଜା ସାହେବ କହନ୍ତି, ରେଳବାଇ ଟାଇମ୍ ହିଁ ଠିକ୍ ଟାଇମ୍ । ଅନ୍ୟ ସବୁ ଟାଇମ୍‌ରେ ଠିକଣା ନଥାଏ ।

ସେଦିନୁ ଅର୍ଦ୍ଧଶତାବ୍ଦୀ ବିତିଗଲାଣି । ରାତିର ବିନିଦ୍ର ପ୍ରହର ସବୁ ଆଉ ଘଣ୍ଟା ଧ୍ୱନିରେ ପ୍ରତିଧ୍ୱନିତ ହେଉ ନାହିଁ । ଏପରିକି ପେଣ୍ଡୁଲମ୍ ଥିବା କାନ୍ଥ ଘଣ୍ଟା ସବୁ ମଧ୍ୟ କାନ୍ଥମାନଙ୍କରୁ ଉଭେଇ ଗଲାଣି । କାଳ ଆଜି ଜାନୁଘଣ୍ଟ ପରି ଆଉ ନିଃସଙ୍କୋଚ ନୁହେଁ । ସେ ମହାକାଳ ଆଜି ଯେପରି ଅଶରୀରୀ ଆତଙ୍କରେ ଆତଙ୍କିତ । ତା'ର ଟିକ୍ ଟିକ୍ ଶବ୍ଦ ସୁଦ୍ଧା ଆଉ ସ୍ପଷ୍ଟ ନୁହେଁ । କାଳ ଆଜି ନିସ୍ତବ୍ଧ । ଥରେ ମୁଁ ଗୋଟାଏ ଖିଆଲରେ ସେଇ ପୁରୁଣା କୋଠି ଆଡ଼େ ସେଇ ପହରାଦାରର ସନ୍ଧାନରେ ଯାଇଥିଲି । ସେଦିନକୁ ସେ ଭଙ୍ଗା ରାଜକୋଠି ନଥିଲା । କିମ୍ବା ସେ ପହରାଦାର ମଧ୍ୟ ନଥିଲା । ସେଠାରେ ଇତିମଧ୍ୟରେ ଗଢ଼ିଉଠିଥିଲା କ୍ରମବର୍ଦ୍ଧିଷ୍ଣୁ ସହରର ଗୋଟାଏ କଲୋନୀ ।

କିନ୍ତୁ ଆଶ୍ଚର୍ଯ୍ୟ, ରାଜାକୋଠିର ସେଇ ପହରାଦାରର କୋଠରିଟି ତଥାପି ଏକ ଭଗ୍ନସ୍ତୂପ ପରି ସେଠାରେ ଠିଆ ହୋଇଥିଲା । ଆଉ ତା' ଭିତରେ କାହାର ବୁଢ଼ା ବୋଦାଟାଏ ଶୋଇ ଚାକୁଳି କରୁଥିଲା । ପହରାଦାରର ଖବର ଆଉ ପଚାରନ୍ତି ବା କାହାକୁ ? ଗୋଟାଏ ଯୁଗ ସହିତ, ସେ ଯୁଗର ପ୍ରହର ସବୁ ମଧ୍ୟ ଶେଷ ହୋଇଯାଇଛି । ଏଇ ପରିବର୍ତ୍ତିତ ଯୁଗରେ କିନ୍ତୁ ରେଳବାଇ ଟାଇମ୍ ସୁଦ୍ଧା ଆଉ ଠିକ୍ ସମୟ ରଖୁନାହିଁ । ରାତି ତେରଟା ଚାଳିଶ ମିନିଟ୍‌ରେ ଆସି ପହଞ୍ଚିବା ଟ୍ରେନ୍ କେବେ ପହଞ୍ଚୁଛି ରାତି ପନ୍ଦରଟା ପରେ, କେବେ କେବେ ଆଦୌ ପହଞ୍ଚୁ ନାହିଁ । ବାଟରେ ହୁଏତ କେଉଁଠି 'ବନ୍ଦ' କିମ୍ବା 'ଧାରଣା' ଭିତରେ ପଡ଼ି କ୍ୟାନ୍‌ସଲ ହେଇ ଯାଇଛି । ଆଜି ଘଣ୍ଟା ସବୁ ହୋଇଛନ୍ତି ସେଦିନର ରାଜାକୋଠିର ପାଗଳାଘଣ୍ଟା ।

୦୪/୦୨/୮୯

# ଦାରିଦ୍ର୍ୟର ସ୍ୱାଦ

ସମୁଦ୍ରବେଳା ପ୍ରାୟ ନିର୍ଜନ । ଡିସେମ୍ବର ସକାଳର କଅଁଳ ଖରା ବାଲି ହରିଣ ପରି ପନ୍ତାବାଲି ଉପରେ ଡେଇଁ ବୁଲୁଛି । ଅନ୍ୟମନସ୍କ ଭାବରେ ବଲିଆ ପଣ୍ଡା ଆଡ଼େ ବୁଲି ଯାଉଁ ଯାଉଁ ମୁଁ ଗୋଟାଏ ପାତଳା ଝାଉଁବଣ ପାଖରେ ଅଟକି ଗଲି । ଏକ ବିଚିତ୍ର ଦୃଶ୍ୟ । ଶୁଖିଲା ନଡ଼ିଆ ବାଉଙ୍ଗା ଆଉ ତାଳପତ୍ରରେ ତିଆରି ଗୋଟାଏ କୁଡ଼ିଆ ଆଗରେ ବୁଢ଼ୀଟିଏ ଠିଆ ହୋଇ ହାଉ ହାଉ ବାହୁନୁ ଥିଲା । ତା'ର କଥା ଝାଉଁବଣର ସୁ ସୁ ପବନ ଆଉ ସମୁଦ୍ରର ଗର୍ଜନ ଭିତରେ ଠିକ୍ ଶୁଣାଯାଉ ନଥିଲା । ତାକୁ ଘେରି ଠିଆ ହୋଇଥିଲେ ତିନିଜଣ ହାପ୍‌ପା- ଦୁଇଜଣ ପୁରୁଷ ଓ ଜଣେ ମହିଳା । ସେମାନେ ହାତ ହଲାଇ ବୁଢ଼ୀକୁ କ'ଣ ବୁଝାଇବାକୁ ଚେଷ୍ଟା କରୁଥିଲେ ।

ମାତ୍ର ସେମାନେ ବୁଢ଼ୀକୁ ଯେତିକି ବୁଝାଇବାକୁ ଚେଷ୍ଟା କରୁଥିଲେ, ବୁଢ଼ୀ ସେତିକି ହାଉ ହାଉ ହୋଇ ଚିତ୍କାର କରୁଥିଲା । କୌତୂହଳୀ ହୋଇ ମୁଁ ସେଇ କୁଡ଼ିଆ ପାଖକୁ ଆସିଲି ଓ ବୁଢ଼ୀକୁ ପଚାରିଲି କଥା କ'ଣ ? କାହିଁକି ସେ ହାଉ ହାଉ ହୋଇ ସେମିତି ବାହୁନୁଛି । ବୁଢ଼ୀ ତେଲେଙ୍ଗା ମିଶା ଓଡ଼ିଆ ଉଚ୍ଚାରଣରେ ଅଥବା ଓଡ଼ିଆ ମିଶା ତେଲେଙ୍ଗାରେ ଯାହା କହିଗଲା, ସେଥିରୁ ବୁଝିଲି, ଏମାନେ ବୁଢ଼ୀକୁ ତା' କୁଡ଼ିଆରୁ ବାହାରି ଯିବାପାଇଁ କହୁଛନ୍ତି । ତା' ହାତ ଧରି ସୁଦ୍ଧା ଟାଣୁଛନ୍ତି । ସିଏ ନିଆଶ୍ରୀ ବୁଢ଼ୀ ନିରିମାଖୀ ମଣିଷ ! ସିଏ ଏବେ କରିବ କ'ଣ ? ମୁଁ ଈଷତ୍ ରୁଷ୍ଟ କଣ୍ଠରେ ସେମାନେ ଏ ବୁଢ଼ୀଟା ଉପରେ କାହିଁକି ଏପରି ଜୁଲୁମ୍ କରୁଛନ୍ତି ବୋଲି ପଚାରିଲି । ହାପ୍‌ପାମାନଙ୍କ ମଧ୍ୟରେ ପୁରୁଷମାନେ ପିନ୍ଧିଥିଲେ ଖଣ୍ଡେ ଖଣ୍ଡେ ତାଳିପକା ଜିନ୍‌ପ୍ୟାଣ୍ଟ ଓ ଟି-ସାର୍ଟ । ମହିଳା ଜଣକ ପିନ୍ଧିଥିଲେ ଖଣ୍ଡେ ଲାଲରଙ୍ଗର ସ୍କର୍ଟ୍ ଆଉ ଗୋଟାଏ ଲକ୍ଷ୍ନୌ ଚୀକନ୍ କରା ଖଦଡ଼ ପଞ୍ଜାବୀ । ଗଳାରେ ସେମାନଙ୍କର ଲମ୍ବିଥିଲା ବିଭିନ୍ନ ରଙ୍ଗର କାଚମାଳି । ମୁହଁର ଚେହେରା ତନ୍ଦ୍ରାଳୁନ୍ନ ! କଣ୍ଠସ୍ୱର ମଧ୍ୟ ସେହିପରି ଅବଶ । ଅନେକ ଚେଷ୍ଟାକରି ସେମାନଙ୍କ କଥାରୁ ବୁଝିଲି, ସେମାନେ ବୁଢ଼ୀକୁ କହୁଛନ୍ତି, ତା' କୁଡ଼ିଆ ସେମାନଙ୍କୁ କିଛିସମୟ ଛାଡ଼ି ଦେବାପାଇଁ । ସେମାନେ

ସେଥିପାଇଁ ବୁଢ଼ୀକୁ ଦଶଟଙ୍କା ସୁଦ୍ଧା ଯାଚିଲେଣି। ମାତ୍ର ବୁଢ଼ୀ କୁଡ଼ିଆ ଛାଡୁ ନାହିଁ, ଓଲଟି ଝଗଡ଼ା କରୁଛି। ସେମାନଙ୍କୁ ସେମାନଙ୍କର ଏ ବିଚିତ୍ର ଖିଆଲର କାରଣ ପଚାରିଲି। ଜଣେ ମଧ୍ୟବୟସୀ ହୀପ୍‌ପା ଉତ୍ତର ଦେଲା, ସେମାନେ ଚାହାନ୍ତି, ଏଇପରି ଭଙ୍ଗା କୁଡ଼ିଆ ଭିତରେ ବସି ସମୁଦ୍ରର ଚେହେରା ଦେଖିବାପାଇଁ... ଏଇ ବୁଢ଼ୀ ଯେପରି ଦେଖୁଛି। ସେମାନଙ୍କର ଏ ଖିଆଲି ମୋତେ ବିସ୍ମିତ କରିଦେଲା। ମୁଁ ପଚାରିଲି, "କାହିଁକି ?" ଏଥର ମହିଳା ହୀପ୍‌ପା ଜଣକ ଉତ୍ତର ଦେଲେ, ଆମେ ଚାହୁଁ ଏଇପରି ଦାରିଦ୍ର୍ୟର ଏକ୍ସପିରୀଏନ୍‌ସ ! ସେଥିପାଇଁ ତ ଆମେ ବୁଢ଼ୀକୁ ଟଙ୍କା ଦେବାପାଇଁ ତିଆର। କଥାଟା ବୁଝିଗଲି। ଡ୍ରଗ୍ ନିଶାରେ ସେମାନଙ୍କ ମନରେ ଚେଇଁଛି, ଏଇପରି ବିଚିତ୍ର ଖିଆଲ ! କିନ୍ତୁ ବୁଢ଼ୀ ଭାବୁଛି, ସେମାନେ ଆସିଛନ୍ତି, ବୁଢ଼ୀକୁ କୁଡ଼ିଆରୁ ବେଦଖଲ କରିବାପାଇଁ। ସ୍ୱର୍ଗଦ୍ୱାର ପାଖରେ ବସି ଭିକ୍ଷା ମାଗିବା ବୋଧହୁଏ ବୁଢ଼ୀର ଜୀବିକା। ଏଇଠି ଖଣ୍ଡେ ଭଙ୍ଗା କୁଡ଼ିଆ ବାନ୍ଧି ରହିଛି। ଏମାନେ ତାକୁ କୁଡ଼ିଆରୁ ତଡ଼ି ଦେଲେ, ସେ ଯିବ ଆଉ କୁଆଡ଼େ ? ମୁଁ ସେମାନଙ୍କ ସଙ୍ଗରେ ଦର କଷାକଷି କରି କହିଲି, "ଏ କୁଡ଼ିଆପାଇଁ ଦଶଟଙ୍କାରେ ଚଳିବ ନାହିଁ। ଅନ୍ତତଃ କୋଡ଼ିଏ ଟଙ୍କା ହେଲେ ଚଳିବ।"

ମହିଳା ହୀପ୍‌ପା ଜଣକ ତୀକ୍ଷ୍ଣ କଣ୍ଠରେ ସ୍ଖଳିତ ଇଂରାଜିରେ କହିଲେ... ଆମେ ସେଇ ଦଶଟଙ୍କାରୁ ଆଉ ବେଶି ଦେଇପାରିବୁ ନାହିଁ। ..."ଉଇ ଜଷ୍ଟ ଡୋଣ୍ଟ୍ ହାଭ୍ ଏନୀ !" ତଥାପି ଦର କଷାକଷି ପରେ ପନ୍ଦରଟଙ୍କା ପାଇଁ ସେମାନ ରାଜି ହେଲେ। କେତେ ସମୟ ସେମାନେ ବା ରହିବେ ଏଠି ? ଘଣ୍ଟାଏ ଦୁଇଘର୍ଟା ପରେ ବୁଢ଼ୀ ପୁଣି ତା'ର କୁଡ଼ିଆକୁ ଫେରିଆସି ପାରିବ। ଇଏ ମନ୍ଦ କ'ଣ ? ଏଇ କୁଡ଼ିଆପାଇଁ ଘଣ୍ଟାକୁ ପନ୍ଦରଟଙ୍କା ଭଡ଼ା, କୌଣସି ଥ୍ରୀଷ୍ଟାର୍ ହୋଟେଲ୍ ଠାରୁ କମ୍ ନୁହେଁ। ସେମାନେ କିନ୍ତୁ ଭଡ଼ା ଦେଉନାହାନ୍ତି, କୁଡ଼ିଆପାଇଁ ସେମାନଙ୍କର ଆଗ୍ରହ, ସେମାନେ ଝାଉଁବଣ ଭିତରେ ଏଇ କୁଡ଼ିଆ ଭିତରେ ବସି ସମୁଦ୍ରର ଚେହେରା ଦେଖିବେ, ଆଉ ଅନୁଭବ କରିବେ, ତା' ଭିତରୁ ସମୁଦ୍ରକୁ ଚାହିଁ ଦେଖିବାର ଉପଲବ୍ଧି !

ବୁଢ଼ୀକୁ ବୁଝାଇ ଦେଲି, ଆଜି ସକାଳେ ସେ କାହା ମୁହଁ ଚାହିଁ ଉଠିଥିଲା କେଜାଣି, ଇଏ ତା' ପକ୍ଷରେ ଗୋଟାଏ ପରମ ସୌଭାଗ୍ୟ। ଘଣ୍ଟାଏପାଇଁ କୁଡ଼ିଆଛାଡ଼ି ଦେଲେ, ତାକୁ ମିଳିବ ପନ୍ଦରଟଙ୍କା। କେତେଦିନ ଧରି ବୁଲିବୁଲି ଭିକ ମାଗିଲେ ସୁଦ୍ଧା ତାକୁ ଏତେ ଟଙ୍କା ମିଳନ୍ତା ନାହିଁ। ଏମାନେ ଘଣ୍ଟାଏ ଦୁଇଘଣ୍ଟା ପରେ କୁଡ଼ିଆ ଛାଡ଼ି ଚାଲିଯିବେ।

ମୋ କଥା ଶୁଣି ବୁଢ଼ୀର ମୁହଁ ଆନନ୍ଦରେ ହଠାତ୍ ଉଜ୍ଜ୍ୱଳ ହୋଇ ଉଠିଲା। ମୋ' କଥା ସତ ବୋଲି, ତା'ର କେଜାଣି ପ୍ରତ୍ୟୟ ହେଲାନାହିଁ! ସେ ସଙ୍ଗେ ସଙ୍ଗେ ଦୁଇହାତ ପାପୁଲି ମେଲି କେମ୍ପା ଆଙ୍ଗୁଠି ମେଲାଇ ଟଙ୍କା ମାଗିଲା। ଜଣେ ହୀପ୍‌ପୀ ପକେଟ୍‌ରୁ

ପନ୍ଦରଟଙ୍କା ନୋଟ୍ କାଢ଼ି ବୁଢ଼ୀ ହାତରେ ଦେଇ ଦେଲେ ଓ ମୁଁ ସେମାନଙ୍କୁ ସାହାଯ୍ୟ କରିଥିବାରୁ, ମୋତେ ମଧ୍ୟ ଧନ୍ୟବାଦ ଦେଲେ। ବୁଢ଼ୀ କିନ୍ତୁ ତା'ର ଏଇ ଅପ୍ରତ୍ୟାଶିତ ସୌଭାଗ୍ୟକୁ ଯେପରି ବିଶ୍ୱାସ କରିପାରୁ ନଥିଲା। ଏତେଗୁଡ଼ାଏ ଟଙ୍କା ସେ ଆଗରୁ କେବେ ବୋଧହୁଏ ହାତରେ ଧରିନଥିଲା। ତା'ର ଆଶଙ୍କା ହେଉଥିଲା, ଏମାନେ ବୋଧହୁଏ ପୁଣି ଟଙ୍କା ଛଡ଼ାଇ ନେଇଯିବେ। ସେଥିପାଇଁ, ସେ ହାତରେ ଟଙ୍କା ପାଇବା ମାତ୍ରେ ସେଠାରୁ ତା'ର ବାଡ଼ି ଓ ଟିଣ ଭିକ୍ଷାପାତ୍ର ଧରି ଦଉଡ଼ି ଦଉଡ଼ି ପଳାଇଗଲା। ସେ ତିନିଜଣ ହୀପ୍‌ପୀ ମଧ୍ୟ କୁଡ଼ିଆ ଭିତରକୁ ପଶିଗଲେ। ମୁଁ ସେଠାରୁ ଚାଲିଆସିଲି।

ସେଇ ଦିନ ଅପରାହ୍ଣରେ ମୁଁ ପୁଣି ଯାଇଥିଲି, ସେଇ ସ୍ଥାନକୁ, ଅବସ୍ଥା କ'ଣ ଦେଖିବାପାଇଁ। କିନ୍ତୁ ସେତେବେଳକୁ ସେ ହୀପ୍‌ପୀ ମାନେ ସେଠାରେ ନଥିଲେ। କୁଡ଼ିଆ ଭିତରେ ପଡ଼ିଥିଲା, ଗୁଡ଼ାଏ ଖଣ୍ଡିଆ ସିଗାରେଟ୍ ଆଉ ବାଦାମୀ ଚକୋଲେଟ୍ ରଙ୍ଗର ଛୋଟ ଛୋଟ ସେଲୋଫନ୍ କାଗଜ। ଏଥିରେ ବୋଧହୁଏ ଥିଲା କୌଣସି ଡ୍ରଗ୍‌ସ ସିଗାରେଟ୍ ସବୁରେ ବୋଧହୁଏ ମିଶିଥିଲା ମାରିଜୁଏନା। ସେମାନେ ଏଇ କୁଡ଼ିଆ ଭିତରେ ଶୋଇ, ଶୋଇ, ମାରିଜୁଏନା ମିଶା ସିଗାରେଟ୍ ଟାଣୁଥିଲେ, ସମୁଦ୍ରର ଚେହେରା ଦେଖୁଥିଲେ ଓ ଦାରିଦ୍ର୍ୟର ବିଳାସ ଉପଲବ୍‌ଧି କରୁଥିଲେ।

ବୁଢ଼ୀ ମଧ୍ୟ ସେଠିକୁ ଆଉ ଫେରି ନଥିଲା। ସେ ତା'ର ଆକସ୍ମିକ ସୌଭାଗ୍ୟକୁ ଅନ୍ୟମାନଙ୍କଠାରୁ ନିରାପଦ ରଖିବାପାଇଁ ଆଉ କେଉଁଠି ଖଣ୍ଡେ କୁଡ଼ିଆ ବୋଧହୁଏ ଅନ୍ୱେଷଣ କରୁଥିଲା। ପୁଣି ହୀପ୍‌ପୀମାନେ ମଧ୍ୟ ଦାରିଦ୍ର୍ୟର ସ୍ୱାଦ ମାରିଜୁଏନା ମିଶା ସିଗାରେଟ୍ ସହିତ ଆକଣ୍ଠ ଉପଭୋଗ କରିବାପରେ ସେଠାରୁ ଅନ୍ୟ କେଉଁ ନୂତନ ଖିଆଲର ଆକର୍ଷଣରେ କେଉଁଆଡ଼େ ଚାଲି ଯାଇଥିଲେ। ଝାଉଁବଣର ପବନ କେବଳ ସୁ ସୁ କରୁଥିଲା।

୧୨/୦୨/୮୯

# ବରଯାତ୍ରି ଦଳରେ ମଙ୍ଗଳଗ୍ରହର ମଣିଷ

କଟକ-ସମ୍ବଲପୁର ରାସ୍ତାରେ ଅନୁଗୁଳ ସହରକୁ ପ୍ରାୟ ୧୫/୨୦ କିଲୋମିଟର ପଛରେ ପକାଇ ଆସିବାପରେ, ରାସ୍ତା କଡ଼ର ଗୋଟାଏ ଛୋଟିଆ ଗାଆଁ ପାଖରେ ଅଟକି ଯିବାପାଇଁ ପଡ଼ିଲା। ଗାଁଟି ଛୋଟ। ରାସ୍ତା କଡ଼ରେ ପ୍ରାୟ ୨୦/୨୫ଟି ଘର। ନୂଆଁଣିଆ ଚାଳଘରମାନଙ୍କ ଆଗରେ ବାଉଁଶବତା ବାନ୍ଧି ବାଡ଼ସବୁ ଦିଆଯାଇଛି। ବାରିମାନଙ୍କରେ କେତେଟା ଗବଗଛ ଆଉ ରୋଗିଣା ସିମ୍ବଲଟା ବ୍ୟତୀତ ଆଖିରେ ଆଉ କିଛି ପଡୁନଥିଲା। ଗାଁ ଗୋହିରୀ ହୁଡ଼ାମାଳ ବିଲ ଆଉ ଅଦୂରରେ ଗୋଟିଏ ଛୋଟିଆ ଲଣ୍ଡାପାହାଡ଼ ମୁଣ୍ଡିଆ। ଏଠାରେ ଅଟକି ଯିବାର କୌଣସି କାରଣ ନଥିଲା।

କିନ୍ତୁ ଗାଁ ମୁଣ୍ଡରେ ସାହି ଭିତରୁ ରାସ୍ତା ଉପରକୁ ହଠାତ୍ ଗୋଟିଏ ବରଯାତ୍ରି ଦଳ କନିଆଘରକୁ ବାହାରି ପଡ଼ିଥିଲେ ଢୋଲ, ପେଁକାଳି ବଜାଇ। ପଟୁଆର ଆଗରେ, କେଉଁଠି ଚରୁଥିବା ଗୋଟାଏ ଦଳଖିଆ ଘୋଡ଼ାକୁ ଧରିଆଣି ତା' ଉପରେ ବସିଥିଲେ ବର। ଆଉ ତାଙ୍କ ପଛରେ ଚାଲିଥିଲେ ବରଯାତ୍ରି ଦଳର ମୁରବୀମାନେ। ବର ଦେହର ରଙ୍ଗ ଜହ୍ନିମଞ୍ଜିପରି କଳା। ରଙ୍ଗ କଳାହେଉ ବା ଗୋରାହେଉ, ପ୍ରତ୍ୟେକ ମଣିଷ ଜୀବନରେ ଥରକପାଇଁ ବର ହୋଇଥାଏ।

ଇଏ ବରଟି ତେଣୁ ସେହି ସାଧାରଣ ନିୟମରୁ ବ୍ୟତିକ୍ରମ ନଥିଲା। ସିଏ ପାଇକଛା ମାରି ପିନ୍ଧିଥିଲା, ଖଣ୍ଡେ ହଳଦିଆ ଧୋତି ଆଉ ରେଶମୀ ଲାଲ ରଙ୍ଗର ପଞ୍ଜାବୀ। ମୁହଁରେ ବୋଧହୁଏ ପାଉଡ଼ର ବୋଳି ପ୍ରସାଧନର ଚେଷ୍ଟା ହୋଇଥିଲା। ତା'ର ଚିହ୍ନ ମୁହଁରେ ଥିଲା ଖୁବ୍ ସୁସ୍ପଷ୍ଟ। କପାଳରେ ଚନ୍ଦନର ଟିପା ସୁଦ୍ଧା ଲାଗିଥିଲା। ଆଉ ମୁଣ୍ଡରେ ବାନ୍ଧିଥିଲା, କେଉଁ ଯାତ୍ରାଦଳର ଗୋଟାଏ ଜରିଦାର ରଜା ପଗଡ଼ି ! ଏଇ ଗାଁରେ ବୋଧହୁଏ ଆଉ ଫୁଲ ଫୁଟୁନାହିଁ। ସେଥିପାଇଁ ତା' ବେକରେ ପଡ଼ିଥିଲା, ରଙ୍ଗିନ ସୋଲରେ ତିଆରି ଗୋଟାଏ ଫୁଲମାଳ। ବରଯାତ୍ରୀମାନଙ୍କର ପାଦର ଚାଲି ଆଉ ଢୁଳଢୁଳ ଆଖିରେ ମହୁଲି ନିଶା ! ମୋ' କାର୍‌ଟି ସେତିକିବେଳେ ପଟୁଆର ଭିତରେ ପଶି ଯାଇଥିଲେ ଘୋଡ଼ା ତରକିଯାଇ

କିଛିଗୋଟେ କାଣ୍ଡ କରିଦେବ, ଏଇ ଆଶଙ୍କାରେ ମୁଁ ଡ୍ରାଇଭରକୁ କହିଥିଲି, ଗାଡ଼ିକୁ ଟିକେ ଅଟକାଇ ଦବାପାଇଁ। କିନ୍ତୁ ଠିକ୍ ସେତିକିବେଳେ ବିପରୀତ ଦିଗରୁ ଯେଉଁ ଟ୍ରକ୍‌ଟି ମାଡ଼ି ଆସୁଥିଲା, ତା'ର ସେଥିପ୍ରତି ଖାତର ନଥିଲା। ମୁଁ ଯାହା ଆଶଙ୍କା କରୁଥିଲି ଠିକ୍ ତାହା ହିଁ ଘଟିଲା। ଟ୍ରକ୍‌ର କିଳିକିଳା ହର୍ଣ୍ଣ ରଡ଼ିରେ ଦଲୁଆ ଘୋଡ଼ାଟା ତରକିଯାଇ ରାସ୍ତାକଡ଼ର ହୁଡ଼ାମାଳ ବିଲ ଭିତରକୁ ଡେଇଁଡେଇଁ ପଳାଇଲା। ଆଉ ଅଶ୍ୱାରୋହୀ ବରଟି ରାସ୍ତା କଡ଼ରେ ତଳେ ପଡ଼ିଗଲା।

ମହୁଲି ପାଦରେ ବରଯାତ୍ରୀମାନେ ସେ ହୁଡ଼ାମାଳ ବିଲରେ ଘୋଡ଼ା ପଛରେ ଦଉଡ଼ି ତାକୁ ଆଉ ଧରି ପାରୁଛନ୍ତି କୁଆଡୁ। ବରଜାତି ଦଳ କିଂକର୍ତ୍ତବ୍ୟବିମୂଢ଼ ! ମୁଁ ସେମାନଙ୍କ ମଧ୍ୟରୁ ଜଣେ। ବୁଢ଼ାଳିଆ ବରଜାତିଙ୍କୁ ପଚାରିଲି, "କନିଆଘର କେତେବାଟ ? ଯଦି ଏଇ ରାସ୍ତା କଡ଼ରେ ହୋଇଥାଏ, ତା'ହେଲେ ତମ ବରକୁ ମୁଁ ମୋ' କାର୍‌ରେ ନେଇ ସେଠି ଛାଡ଼ିଦେଇ ପାରିବି।" ସେ ବୁଢ଼ାଳିଆ ଲୋକଟି ଉତ୍ତର ଦେଲା, "ଶଳା ଘୋଡ଼ାଟା ଏମିତି ତରକିବ ବୋଲି କିଏ ଜାଣିଥିଲା ? କୋଶେବାଟ ଛଡ଼ାରେ କନିଆଁଘର। ସଡ଼କ କଡ଼ରେ।" ଅନେକ କୋଳାହଳ ଓ ଆଲୋଚନା ପରେ ମୋ ପ୍ରସ୍ତାବକୁ ସେମାନେ ବିଧିପ୍ରେରିତ ଗୋଟାଏ ସୁଯୋଗ ବୋଲି ସ୍ଥିର କଲେ ଓ ଦୁଇହାତ ଯୋଡ଼ି ବରକୁ ମତେ କାର୍‌ରେ ନେଇ ଯିବାପାଇଁ ଅନୁରୋଧ ମଧ୍ୟ କଲେ। ମୁଁ ଆଗସିଟ୍‌ରେ ବସି, ପଛସିଟ୍‌କୁ ବର ଓ ବରପିତା ପ୍ରଭୃତିଙ୍କ ପାଇଁ ଛାଡ଼ିଦେଲି।

ସେଠାରୁ କନିଆଁ ଘର ପ୍ରାୟ ପାଞ୍ଚ କିଲୋମିଟର ପରେ ପଡ଼ିଲା। କନିଆଁଘର ଗାଁର ଚେହେରା ବରଘର ଗାଁର ଚେହେରାଠାରୁ ଆଦୌ ଭିନ୍ନ ନଥିଲା। ପଛସିଟ୍‌ରୁ କେହିଜଣେ କହିଲା, ରାସ୍ତାତଳକୁ ଟିକେ ଗଡ଼ାଇନେଲେ କନିଆଁଘର ପଡ଼ିବ। ଡ୍ରାଇଭର ଗାଁ ଭିତରକୁ ପଡ଼ିଥିବା ଗୋଟାଏ ରାସ୍ତାରେ ଗାଡ଼ିକୁ ପୂରାଇବା ମାତ୍ରେ ଗାଁର ଆବାଳ ବୃଦ୍ଧବନିତା ଗାଡ଼ିରେ ତାଙ୍କ ବର ଆସିଥିବାର ସମ୍ବାଦରେ ଚମତ୍କୃତ ହୋଇ ଗାଡ଼ି ଚାରିପଟେ ଯେପରି ଘେରିଗଲେ, ସେ ଗହଳି ଭେଦି ସାମ୍ନା ରାସ୍ତା ଆଉ ଦେଖାଯାଉ ନଥିଲା। ଅବଶ୍ୟ କନ୍ୟାଘର ସେଠାରୁ ମାତ୍ର କେଇପାହୁଣ୍ଡ ବାଟ। ନାଲି, ନେଳି, ରଙ୍ଗିନ କାଗଜରେ ତିଆରି ପତାକାମାନ ଓ ପତ୍ରତୋରଣରେ ତାହା ବେଶ୍ ବାରିହୋଇ ପଡୁଥିଲା। କନିଆଁ ଘର ତ ହୋଇଗଲା ଏବେ କନ୍ୟାପକ୍ଷ ବରକୁ ବାଟବରଣ କରିବେ ବା ସେମାନଙ୍କ ଅନ୍ୟ କୌଳିକ ଉପଚାରରେ ବନ୍ଦାଇ ନେଇଯିବା କଥା। କିନ୍ତୁ ସେଥିପାଇଁ ଦେଖିଲି, କାହାର କୌଣସି ଉଦ୍ୟମ ନଥିଲା। ମୋର ଜୀବନ୍ତ ଚକ୍‌ଚକ୍ କଳା ମଟରଗାଡ଼ି ଆଉ ତା' ଭିତରେ ବସିଥିବା ଜଣେ ଧୋବଧାଉଳିଆ ବାବୁ ସେମାନଙ୍କ ବରକୁ ଆଣିଥିବା ଘଟଣା ସେମାନଙ୍କୁ ଏପରି ବିସ୍ମିତ କରିଦେଇଥିଲା ଯେ ସେତେବେଳେ କିଏ କ'ଣ କରିବା ଉଚିତ୍, ତା' କେହି ସ୍ଥିର

କରିପାରିନଥିଲେ। ବରଜାତିମାନଙ୍କ ପକ୍ଷରେ ମଧ୍ୟ ଅବସ୍ଥା ତଦ୍ରୂପ ! ଧୂଳିରେ ମୋର ଦୁଇ ନାକପୁଡ଼ା ସେତେବେଳକୁ ବନ୍ଦ ହୋଇଯିବା ଉପରେ। ମୁଁ ଚିତ୍କାର କଲି, ତମ ବରକୁ ଜଲ୍‌ଦି ଓହ୍ଲାଅ। ମତେ ଅନେକ ବାଟ ଯିବାପାଇଁ ଅଛି।"

କିନ୍ତୁ ଗାଡ଼ି ଚାରିପଟେ ମୋତେ ଘେରି କନ୍ୟାପକ୍ଷ ଓ ବରପକ୍ଷର ଯେଉଁ ମୁରବୀମାନେ ଠିଆ ହୋଇଥିଲେ, ସେମାନେ କ'ଣ ଯେପରି କହିବାପାଇଁ ଇଚ୍ଛା କରୁଥିଲେ; କିନ୍ତୁ କହିପାରୁ ନଥିଲେ। ସେମାନଙ୍କ ଘଣ୍ଟିକା ସବୁ କେବଳ ଉପରତଳ ହେଉଥିଲା। ମୋର କିନ୍ତୁ ଆଉ ଧୈର୍ଯ୍ୟ ନଥିଲା। ମୁଁ ଡ୍ରାଇଭରକୁ କହିଲି ପଛସିଟ୍‌ରୁ ସେମାନଙ୍କୁ ଓହ୍ଲାଇଦେଇ ସଙ୍ଗେ ସଙ୍ଗେ ଗାଡ଼ି ବୁଲାଇ ଯିବାପାଇଁ। ଡ୍ରାଇଭରର ନିର୍ଦ୍ଦେଶରେ ପଛସିଟ୍‌ରେ ବସିଥିବା ବର ଓ ଅନ୍ୟ ତିନି/ଚାରିଜଣ ଓହ୍ଲାଇଗଲେ। ତଥାପି କ'ଣ ସବୁ ଘଟିଯାଉଛି ବା ଘଟିଗଲା, କେହି ଯେପରି ବୁଝିପାରୁ ନଥିଲେ। କନ୍ୟାପକ୍ଷ ଜାଣିଥିଲେ, ବର ଆସିବ ଘୋଡ଼ାରେ। ଅଥଚ ବର ଆସିଲା ଗୋଟାଏ ଚିକ୍‌ଚିକ୍ ମୋଟର ଗାଡ଼ିରେ। ଧୋବଧାଉଳିଆ ମଣିଷଟି ପୁଣି ସେମାନଙ୍କ ଆଖିରେ ଦେଖାଯାଉଥିଲା, ମଙ୍ଗଳ ଗ୍ରହରୁ ହଠାତ୍ ଓହ୍ଲାଇଥିବା ଗୋଟାଏ ବିଚିତ୍ର ମଣିଷ ପରି। ପରିସ୍ଥିତିଟା ପ୍ରକୃତରେ ସେମାନଙ୍କୁ ଦୁର୍ବୋଧ ଲାଗୁଥିଲା ଓ ତା'ରି ଭିତରେ ସେମାନଙ୍କପାଇଁ ହଜିଯାଇଥିଲା ବିବାହର ସବୁ ଉତ୍ସବମୁଖର ଆନନ୍ଦ।

ସେଠାରୁ ରାସ୍ତା ଉପରକୁ ଆସିବାବେଳେ ମୋର ମନେ ହେଉଥିଲା, ମୁଁ ବରକୁ ଗାଡ଼ିରେ ବସାଇ ଆଣି ଯେପରି ଏମାନଙ୍କ ପ୍ରତି ଗୋଟାଏ ମହା ଅପରାଧ କରିପକାଇଲି। ସେ ଦଲୁଆ ଘୋଡ଼ାକୁ କୌଣସିମତେ ଧରି, ତା' ଉପରେ ବରକୁ ବସେଇ ଆଣିଥିଲେ, ସେମାନଙ୍କ ଉତ୍ସବ ଯେପରି ପରିପୂର୍ଣ୍ଣ ହୋଇପାରିଥା'ନ୍ତା। ବରଜାତି ଦଳରେ ମଙ୍ଗଳଗ୍ରହରୁ ଓହ୍ଲାଇଥିବା ମଣିଷଟି ସେମାନଙ୍କର ସବୁ ଆନନ୍ଦମୁଖର ଉତ୍ସବକୁ ଯେପରି ମାଟି କରି ଦେଇଥିଲା।

୨୫/୦୨/୮୯

# ଦାଦା-ଇଜମ୍

ପିଣ୍ଟୁଦାଦା ଜିନ୍ଦାବାଦ୍... ପିଣ୍ଟୁଦାଦା ଅମରରହେ... ଶବଯାତ୍ରା ପଟୁଆରରେ, ଗୋଟିଏ ଟ୍ରକ ଉପରେ ପିଣ୍ଟୁ ଦାଦାଙ୍କ ଶବପିଣ୍ଡ ରାଶିରାଶି ଫୁଲମାଳ ଓ ତୋଡ଼ା ଭିତରୁ ପ୍ରାୟ ଦେଖାଯାଉନଥିଲା କହିଲେ ଚଳେ। ଟ୍ରକ ଚାରିପଟେ ଘେରି ଶବବାହକମାନେ କପାଳରେ ଅବିର ଲଗାଇ, ସ୍ଲୋଗାନ୍ ଦେଇ ଦେଇ ଚାଲିଛନ୍ତି, ପିଣ୍ଟୁଦାଦା ଅମରରହେ, ଇତ୍ୟାଦି ସ୍ଲୋଗାନ୍ ଦେଇ। ଶବବାହକମାନଙ୍କ ଭିତରେ ଥିଲେ ବୋଧହୁଏ, କୌଣସି କୌଣସି ରାଜନୈତିକ ଦଳର ଯୁବକର୍ମୀ (କର୍ମୀ ଶବ୍ଦ ତ ଏବେ ଅଚଳ ହୋଇଗଲାଣି, ତେଣୁ ଯୁବନେତା କହିବା ବୋଧହୁଏ ଅଧିକ ସମୀଚୀନ ହେବ।)... ସେମାନେ ପେସାଦାରୀ କଣ୍ଠରେ ମଝିରେ ମଝିରେ ସ୍ଲୋଗାନ୍ ଦେଉଥିଲେ, ସହିଦ୍ ପିଣ୍ଟୁଦାଦା ଅମରରହେ। ଶବବାହକମାନଙ୍କ ପଟୁଆରରେ ଥିଲେ ନାନା କିସମର ଓ ବେଶପୋଷାକର ଲୋକ। ସାଇ ବସ୍ତିର ଦରବୁଢ଼ା ପାନବିଡ଼ି ଦୋକାନୀ ଅଥବା ତେଜରାତି ଦୋକାନ ମାଲିକ ଚେହେରାର ଲୋକମାନଙ୍କଠାରୁ ଆରମ୍ଭ କରି ପ୍ୟାଣ୍ଟ ଆଉ ଟି-ସାର୍ଟ ପିନ୍ଧା ଯୁବକମାନେ, ସମସ୍ତେ ଭାସି ଚାଲିଥିଲେ ସେଇ ଶୋକବନ୍ୟାରେ। ଶବବାହକମାନଙ୍କ ଆଗରେ ଓ ପଛରେ ଦୁଇଟା ଭ୍ୟାନ୍‌ରେ ଭର୍ତ୍ତି ହୋଇ ଚାଲିଥିଲେ ଲାଠିଆଳ ପୋଲିସ୍। ମନ୍ତ୍ରୀଙ୍କ ଗହଣରେ ଯିବାପରି ଦେଖାଯାଉଥିଲା ପୋଲିସ୍ ବନ୍ଦୋବସ୍ତ !

ରାସ୍ତା କଡ଼େ କଡ଼େ ପାଦରେ ଚାଲି ବୁଲି ଯାଉଯାଉ ବୃଦ୍ଧ ବ୍ରଜବିହାରୀ ଏଇ ଶବବାହକମାନଙ୍କ ପଟୁଆର ଭିତରେ ହଠାତ୍ ଛନ୍ଦି ହୋଇ ପଡ଼ିଥିଲେ। ସେ ଜାଣିପାରୁ ନଥିଲେ, କାହାର ଶବପଟୁଆର ଇଏ। ପିଣ୍ଟୁଦାଦା ପୁଣି କିଏ ? ସେ କୌଣସି ଜନନେତା ହୋଇଥିଲେ ତାଙ୍କ ମୃତ୍ୟୁ ଖବର ନିଶ୍ଚୟ କାଗଜରେ ବାହାରି ସାରିଥା'ନ୍ତାଣି, ନଚେତ୍ ସେ ଆଞ୍ଚଳିକ ସମ୍ବାଦରୁ ରେଡ଼ିଓରେ ତାହା ଶୁଣିସାରିଥା'ନ୍ତେଣି। ତେଣୁ ପିଣ୍ଟୁଦାଦା ସେ ଶ୍ରେଣୀର ନୁହଁନ୍ତି। ତେବେ ଦାଦା ନାମଧାରୀ କେତେକ ମହାପୁରୁଷ ମଧ ଅଛନ୍ତି। ସେ ଦାଦାମାନଙ୍କର ଏକ ଭକ୍ତ ମଣ୍ଡଳି ବି ଅଛନ୍ତି। ବ୍ରଜବିହାରୀ ଆପାତତଃ ସ୍ଥିର କରିନେଲେ,

ପିଣ୍ଟୁଦାଦା ବୋଧହୁଏ ଦାଦା ଗୋତ୍ରୀୟ କୌଣସି ମହାପୁରୁଷ। ତାଙ୍କର ତିରୋଧାନ ହୋଇଗଲା।

ହ... ମରଣ କାହାକୁ ବା ଆଉ ଛାଡ଼ିଛି ? ବ୍ରଜବିହାରୀ ଦୀର୍ଘଶ୍ୱାସଟିଏ ଛାଡ଼ିଲେ ଓ ଦୁଇହାତ କପାଳରେ ଯୋଡ଼ି ମହାପୁରୁଷ ପିଣ୍ଟୁଦାଦାଙ୍କ ଉଦ୍ଦେଶ୍ୟରେ ପ୍ରଣାମ ଜଣାଇଲେ। ଅସ୍ଫୁଟ କଣ୍ଠରେ ସେ ତାଙ୍କ ଆଗରେ ସ୍ଲୋଗାନ୍ ଦେଇଦେଇ ଚାଲିଥିବା ଯୁବକମାନଙ୍କ ସହିତ ସ୍ଲୋଗାନ୍ ମଧ ଦେଲେ, ପିଣ୍ଟୁଦାଦା ଅମରରହେ...।

ଶବବାହକମାନଙ୍କର ପଟୁଆର ଶ୍ମଶାନ ଆଡ଼େ ମୁହାଁଇବା ପରେ ରାସ୍ତାଟା ପୁଣି ନିରୋଳା ହୋଇଗଲା। ବ୍ରଜବିହାରୀ ରାସ୍ତା କଡ଼ରେ, ଗୋଟାଏ ପାନଦୋକାନରୁ ଦୁଇଖିଲି ପାନକିଣିଲାବେଳେ ପାନଦୋକାନୀକୁ ପଚାରିଲେ, "ଏଇ ପିଣ୍ଟୁଦାଦା କିଏ ? ଇଏ କେଉଁ ମହାପୁରୁଷ ?"... ପାନଦୋକାନୀ ଉତ୍ତରଦେଲା, "ସିଏ ପରା ପିଣ୍ଟୁଦାଦା। କାଲି ରାତିରେ ସେ କେଉଁଠୁ ଫେରୁଥିବାବେଳେ ଆଉ ଗୋଟିଏ ଦାଦାଗୋଷ୍ଠୀ ତାଙ୍କୁ ଶଳେ ଛୁରୀଭୁସି ମାରିଦେଲେ। ପିଣ୍ଟୁଦାଦା ଚାଲିଗଲେ !" ପାନଦୋକାନୀର କଣ୍ଠସ୍ୱର ମନେହେଉଥିଲା ଶୋକୋଚ୍ଛ୍ୱାସରେ ସାମାନ୍ୟ ଓଦାଳିଆ। ପାନଦୋକାନୀଟି ବୋଧହୁଏ ପିଣ୍ଟୁଦାଦାଙ୍କ ଭକ୍ତ ଥିଲା।... ଆରମ୍ଭ ହୋଇଗଲା ଏହାପରେ ବ୍ରଜବନ୍ଧୁଙ୍କର ସମସ୍ୟା। ଦାଦା କହିଲେ ସେ ବୁଝି ଆସିଥିଲେ ନେତା କିମ୍ବା ମହାପୁରୁଷ। ଦୁଇ ଦାଦାଦଳଙ୍କ ଭିତରେ ଛୁରୀ ଭୁସାଭୁସି ପୁଣି କ'ଣ ?

ସେଦିନ ସନ୍ଧ୍ୟାର ପ୍ରାତ୍ୟହିକ ଆଡ୍ଡାଟା ବ୍ରଜବିହାରୀଙ୍କ ଅନୁପସ୍ଥିରେ ଆଉ ଜମିପାରି ନଥିଲା। କୋଠରୀର ଚାରିକାନ୍ଥ ଆଉ କାନ୍ଥରେ ଝୁଲୁଥିବା କେତେଟା ପୁରୁଣା ଫଟୋଗ୍ରାଫ୍ ମୋର ଭ୍ରମକୁ ଅସହ୍ୟ କରିଦେଇଥିଲେ। ସେମାନଙ୍କ ସହିତ ଆଉ କେତେବା ସଂଳାପ କରନ୍ତେ। ଏହି ସମୟରେ ବାହାରେ ଶୁଭିଲା ବ୍ରଜବିହାରୀଙ୍କ ଚିତ୍କାର, "ବୁଝିଲେ ! ଘୋର କଳି, ଷୋଳକଳା ପୂର୍ଣ୍ଣ ହୋଇଗଲା !" ବ୍ରଜବିହାରୀ ପାଖକୁ ଆସିବାପରେ ମୁଁ ତାଙ୍କୁ ପଚାରିଲି, "ଏ ତାଜା ଖବରଟା ଆପଣ ପାଇଲେ କୁଆଡୁ ? କଳିକାଳ ଓ ତଥାପି ଗୁରୁଣ୍ଡିବା ଆରମ୍ଭ କରିନାହିଁ !" ବ୍ରଜବିହାରୀ ଖଣ୍ଡେ ଚଉକି ଉପରେ ଥକ୍‌କାମାରି ବସିପଡ଼ି କହିଲେ, "ହଯେ କଳିକାଳ ଷୋଳକଳାରେ ପୂର୍ଣ୍ଣ ହୋଇ ନଥିଲେ, କ'ଣ ଦାଦାମାନେ ନିଜନିଜ ଭିତରେ ଛୁରୀ ଭୁସାଭୁସି ହୋଇ ମରନ୍ତେ ! କାଲି ରାତିରେ ପିଣ୍ଟୁଦାଦାଙ୍କୁ କେହି ଅନ୍ୟଜଣେ ଦାଦା ଛୁରୀଭୁସି ମାରିଦେଲେ।" ମୁଁ ଈଷତ୍ ବିସ୍ମୟ କଣ୍ଠରେ ପଚାରିଲି, "ଦାଦା ଦାଦାକୁ ଛୁରୀ ଭୁସିବ ନାହିଁ ତ ଆଉ କିଏ କାହାକୁ ଭୁସିବ ?" ସରଳବିଶ୍ୱାସୀ ବ୍ରଜବିହାରୀ ଦାଦା ରହସ୍ୟଟିକୁ ତଥାପି ବୁଝିପାରି ନଥିଲେ। ମୁଁ ତାଙ୍କୁ ବୁଝାଇଦେଲି, ଗୁଣ୍ଡାଗର୍ଦ୍ଦି ଆଜି ସମାଜରେ ସମ୍ମାନଜନକ ହୋଇଉଠିଥିବାରୁ ସେଦିନର ଗୁଣ୍ଡା ଶବ୍ଦ

ଅପ୍ରଚଳିତ ହୋଇଗଲାଣି। ଅବ୍‌ସଲିଟି ! ଏହା ବରଂ ବର୍ତ୍ତମାନ ବେଶ୍ ସମ୍ମାନଜନକ ହେଲାଣି। ସବୁ କିସମର ରାଜନୈତିକ ନେତାମାନଙ୍କଠାରୁ ଆରମ୍ଭ କରି ପୁଲିସ୍ ବାଲାଙ୍କ ପର୍ଯ୍ୟନ୍ତ ଦାଦା ନହେଲେ କାହାର ଚଳୁନାହିଁ। ସେଥିପାଇଁ ସେଦିନ ଯେଉଁମାନଙ୍କୁ ଗୁଣ୍ଡା ବୋଲି ଆକ୍ଷେପ କରାଯାଉଥିଲା, ଆଜି ସେମାନେ ଦାଦା ଭାବରେ ସମ୍ମାନିତ। ଇଏ ଏକ ନୂତନ ଦାଦାଇଜିମ୍ !

ସରଳବିଶ୍ୱାସୀ ବ୍ରଜବିହାରୀ ତାଙ୍କ ଅବସରପ୍ରାପ୍ତ ସୀମିତ ଜୀବନର ସ୍ୱଳ୍ପ ଅଭିଜ୍ଞତାରୁ ଏସବୁ ତଥାପି କିଛି ବୁଝିପାରୁ ନଥିଲେ। ପିଣ୍ଟୁ ଦାଦା କିପରି ସହିଦ ହେଲେ ତାହା ମଧ୍ୟ ସେ ଭାବିପାରୁ ନଥିଲେ। ସେ କେବଳ ବିଳିବିଳେଇ ହେଉଥିଲେ, ଘୋର କଳି... ! ମୁଁ ତାଙ୍କୁ ଆଶ୍ୱାସନା ଦେଲି, ବ୍ୟସ୍ତ ହୁଅନ୍ତୁ ନାହିଁ। ସେଥିପାଇଁ ଅନେକ ଡେରି ଅଛି। କଳି ବର୍ତ୍ତମାନ ଗୁରୁଣ୍ଡିବା ସୁଦ୍ଧା ଆରମ୍ଭ କରିନାହିଁ; ଆଉ ଷୋଳକଳାରେ ପୂର୍ଣ୍ଣ ହେବା ତ ଦୂରର କଥା, ସାହିର ଦାଦାମାନେ ଆସନ୍ତାକାଲି ପରିଚିତ ହେବେ ସନ୍ତ୍ରାସବାଦୀ ରୂପେ। ତା'ପରେ ସାହିର ଦାଦାଇଜିମ୍ ହୋଇଯିବ ଏକ ଆନ୍ତର୍ଜାତିକ ଆଭିମୁଖ୍ୟ। ସେମାନଙ୍କ ପୃଷ୍ଠପୋଷକତା ପାଇଁ ବାହାରିବେ ଆୟାତୁଲ୍ଲା ଖୁମିନୀ ନୋଇଲେ କର୍ଣ୍ଣେଲ ଗଦାଫିମାନେ।... ଦାଦାଇଜିମ୍ ହିଁ ହେବ ଏକବିଂଶ ଶତାବ୍ଦୀର ରାଜନୀତି।

*୦୪/୦୩/୮୯*

# ପରଭୃତ ଓ ଭରଭୃତ୍

ପରଭୃତ... ପିକ... ବସନ୍ତଦୂତ.... କୋକିଳ.... କୋଇଲି... ଇତ୍ୟାଦି ବହୁ ନାମରେ, ବହୁ ସଂଜ୍ଞାରେ ଏହି ପକ୍ଷୀଟି ସଂସ୍କୃତ ତଥା ଭାରତୀୟ ଭାଷା ସାହିତ୍ୟମାନଙ୍କର କାବ୍ୟ କବିତାରେ ବହୁ ପ୍ରକୀର୍ତ୍ତିତ। ମାଘମାସର କୁହୁଡ଼ିବୋଳା ଶୀତସକାଳ ସବୁ ହଠାତ୍ ଦିନେ ଏହାର କୁହୁ ଧ୍ୱନିରେ ମୁଖରିତ ହୋଇଉଠେ। ଆମେ ସବୁ, ଏଇ ବସନ୍ତ ଆସିଗଲା ବୋଲି ମନେମନେ ଉଚ୍ଚକିତ ହୋଇଉଠୁ। ଦେହରେ ମନରେ ରୋମାଞ୍ଚ ଲାଗେ। ପ୍ରାୟ ସବୁ କାବ୍ୟରେ ପଢ଼ିଛି, ଏଇ କୋଇଲିର କୁହୁରବ ଶୁଣିଲେ ବିରହୀ ବିରହିଣୀମାନଙ୍କର ମନ ଓ ପ୍ରାଣ କୁଆଡ଼େ ବେଦନାରେ ଜର୍ଜରିତ ହୋଇଉଠେ, ଯଦ୍ୟପି କାହିଁକି ସେମାନଙ୍କର ଏପରି ଦଶା ଘଟେ ମୁଁ ତାହାର କୌଣସି ସମୀଚୀନ କାରଣ ଖୋଜି ପାଏନାହିଁ। ଜଣେ ପକ୍ଷୀତତ୍ତ୍ୱ ବିଶାରଦଙ୍କୁ ଥରେ ଏଇ ପ୍ରଶ୍ନଟି ପଚାରିଥିଲି। ସେ ସିନିକ୍‌ମାନଙ୍କ ପରି ସ୍ମିତ ହସି ମୋତେ କହିଥିଲେ, "ତମେ ସବୁ ଯାହାକୁ କାବ୍ୟିକ ବାବଦୂକତାରେ କୋଇଲିର ପଞ୍ଚମତାନ ଇତ୍ୟାଦି କହିଥାଅ, ପ୍ରକୃତରେ ତା' ହେଉଛି ସେମାନଙ୍କର 'ମେଟିଙ୍ଗ୍ କଲ୍" ଅର୍ଥାତ୍ ଅଣ୍ଡିରା କୋଇଲି ଡାକେ, ମାଈ କୋଇଲିକୁ। ଆଉ କେଉଁ ବଉଳଭରା ଆମ୍ବଗଛର ପତ୍ର କୋଟରରେ ମାଈ କୋଇଲି ଦିଏ ତା'ର ପ୍ରତ୍ୟୁତ୍ତର।" ବିସ୍ମିତ ହେଲି, କୋଇଲିମାନଙ୍କର ଏଇ ଜାନ୍ତବ 'ମେଟିଙ୍ଗ୍ କଲ୍'କୁ କବିମାନେ ପରିଣତ କରି ଦେଇଛନ୍ତି ଶ୍ରେଷ୍ଠ ସ୍ୱର୍ଗୀୟ ସଙ୍ଗୀତରେ। ସେଥିପାଇଁ ବୋଧହୁଏ କୋଇଲିମାନଙ୍କର 'ମେଟିଙ୍ଗ୍ କଲ' ବିରହୀ ନରନାରୀଙ୍କ ପ୍ରାଣରେ ସୃଷ୍ଟି କରିଥାଏ, ତାହାର ସ୍ୱାଭାବିକ ପ୍ରତିଧ୍ୱନି, ମିଳନପାଇଁ ବ୍ୟାକୁଳତା ! ତେବେ ତାହା ଗୋଟିଏ ପକ୍ଷୀର ନିତାନ୍ତ ପାର୍ଥିବ 'ମେଟିଙ୍ଗ କଲ' ହେଉ ଅଥବା ସ୍ୱର୍ଗୀୟ ସଙ୍ଗୀତର ଝଙ୍କାର ହେଉ, କୋଇଲି ଡାକ ନଶୁଣିଲେ, ମୋତେ ପୃଥିବୀଟା ଲାଗେ, ବସନ୍ତ ଆମକୁ ଯେପରି ଫାଙ୍କି ଦେଇଗଲା !

ଏବର୍ଷ କୋଇଲି ଆମର ଏଇ ସହରରେ ହଠାତ୍ କେଉଁଆଡ଼େ ନିରୁଦ୍ଦିଷ୍ଟ ହୋଇଯାଇଛି। ଗତବର୍ଷ କୋଇଲିର ଶେଷ କୁହୁ ମୁଁ ଶୁଣିଥିଲି, ଜୁଲାଇ ମାସର ଏକ

ମେଘକ୍ଳାନ୍ତ ଅପରାହ୍ନରେ। ଦୂରଦିଗନ୍ତ ଆଡୁ ଭାସି ଆସୁଥିଲା କୋଇଲିର କ୍ଷୀଣ କୁହୁରବ ? ସେଦିନ ଯେପରି କୋଇଲି ଶେଷ ବିଦାୟ ନେଇ ଯାଉଥିଲା। ସେଇଦିନୁ ମୁଁ ପୁଣି ଅପେକ୍ଷା କରି ରହିଥିଲି। ଆମ୍ବଗଛମାନଙ୍କରେ କେବେ ବଉଳ ଧରିବ... କୋଇଲି ପୁଣି ପଞ୍ଚମତାନରେ... ଗାଇବ। ମାତ୍ର ମୋ ବଗିଚାରେ ରାଶି ରାଶି ଆମ୍ବ ବଉଳ କୁହୁଡ଼ି ସ୍ପର୍ଶରେ କ୍ରମେ ପୋଡ଼ିଯାଇ ଝଡ଼ିବା ଆରମ୍ଭ କଲାଣି। ଛୋଟ ଛୋଟ ଆମ୍ବଚଣା ସବୁ ମଧ୍ୟ ବାହାରିଲାଣି। କିନ୍ତୁ କୋଇଲିମାନେ ହଠାତ୍ କୁଆଡ଼େ ନିରୁଦ୍ଦିଷ୍ଟ ହୋଇ ଯାଇଥିବାରୁ, ସେମାନଙ୍କର ଡାକ ନୀରବ ହୋଇଯାଇଛି, ଆଉ ମୋ'ପାଇଁ ସୃଷ୍ଟି କରିଯାଇଛି ଏକ ତୃପ୍ତିହୀନ ନୀରବତା। ମୋତେ ବସନ୍ତ ଫାଙ୍କିଦେଲା ନା କୋଇଲି ଫାଙ୍କିଲା, ତାହା ମୁଁ ସ୍ଥିର କରିପାରୁ ନାହିଁ। କେଉଁ ରେଡ଼ିଓ ବା ଟେଲିଭିଜନରେ ପ୍ରଚାରିତ ହୋଇପାରନ୍ତା ଏଇ ନିରୁଦ୍ଦିଷ୍ଟ ପକ୍ଷୀ ସଂପର୍କରେ ଘୋଷଣା। ସେମାନଙ୍କୁ ଏଥିପାଇଁ ଅନୁରୋଧ କଲେ। ସେମାନେ କହିଲେ, ଲୋକବ ପାଗଳ।

ତା'ହେଲେ କାହାକୁ ବା ଆଉ ପଚାରିବି ଏକଥା ! ଆଜି ବଜାରରେ କୋଉ ଜିନିଷର ଦରଦାମ୍ କେତେ ବଢ଼ିଲା, ସେଇ ଚିନ୍ତାରେ ତ ସମସ୍ତେ ଉଦ୍‌ବିଗ୍ନ ! କୋଇଲି ଥିବା ନଥିବାର ସେମାନଙ୍କପାଇଁ ଫରକ ବା କ'ଣ ପଡୁଛି ! ବସନ୍ତ ବିଲ୍‌କୁଲ୍ ନଆସିଲେ ସୁଦ୍ଧା ସେମାନଙ୍କର କିଛି ଯାଏଆସେ ନାହିଁ। ଋତୁ ସବୁ ଆଜି ପାରିବେଶିକ ଅବକ୍ଷୟ ମଧ୍ୟରେ କ୍ରମେ ଋତୁହୀନ ହୋଇ ପଡୁଥିବାବେଳେ ବସନ୍ତ ଯଦି ଅକସ୍ମାତ କଟକ ସହରକୁ ଭୁଲିଗଲା, ତା'ହେଲେ ତାହା ତ ଆଉ ଜାଣିରଖିବା ଭଳି ଗୋଟାଏ ଖବର ହୋଇଯିବ ନାହିଁ ! ଏବର୍ଷ ତେଣୁ କୋଇଲି ମଧ୍ୟ ଭୁଲିଗଲା, ଆମ ସହରକୁ।

ଦିନେ ପ୍ରାତ୍ୟହିକ ସାନ୍ଧ୍ୟ ଆଡ୍‌ଡାରେ ବ୍ରଜବନ୍ଧୁଙ୍କୁ ଏଇ ପ୍ରଶ୍ନ ପଚାରିଲି। ଲୋକଟି କାଷ୍ଠ ରସିକ। ବସନ୍ତ କହିଲେ ସେ ବୁଝନ୍ତି, ମଡ଼କ-ମହାମାରୀ। ସେ ଉତ୍ତରଦେଲେ, "ବସନ୍ତ ତ କେବେଠାରୁ ଲୋପ ପାଇଗଲାଣି। ଆଉ ବସନ୍ତ କଥା ପଚାରୁଛ କ'ଣ ?" ମୁଁ ବୁଝାଇ ଦେଲି, "ମୁଁ ପଚାରୁଛି ବସନ୍ତଋତୁର କଥା ଓ ସେଥି ସଙ୍ଗେ ସଙ୍ଗେ ବସନ୍ତଦୂତ କୋଇଲିର ଏଇ ଆକସ୍ମିକ ଅନ୍ତର୍ଦ୍ଧାନର ସମ୍ବାଦ।" ...ବ୍ରଜବନ୍ଧୁ ଟିକିଏ ଭାବିଚିନ୍ତି ଉତ୍ତର ଦେଲେ, "କାଉମାନେ ଆଉ କୋଇଲି ଡିମ୍ବ ଫୁଟାଉ ନଥିବେ। ସେଥିପାଇଁ କୋଇଲିମାନେ ଆଉ ଜନ୍ମୁ ନାହାନ୍ତି। ତେଣୁ କୋଇଲି ଆସିବେ କୁଆଡୁ ?" ଏହାର ସତ୍ୟତା କେବଳ ପକ୍ଷୀ ବିଶାରଦମାନେ ହିଁ ଦେଇପାରନ୍ତି। ମୁଁ ବା କ'ଣ ଜାଣିଛି ? ତେବେ ସଂସ୍କୃତରେ ପରଭୃତର ଅର୍ଥ ହେଉଛି କାଉ। ସେଥିପାଇଁ କାଉ କୋଇଲିର ସଂପର୍କ ଅତି ନିବିଡ଼। କାଉ ବିଚରା ମେହନତୀ ପକ୍ଷୀଟିଏ। ସେ ବଡ଼ିଭୋରରୁ ତା'ର ଖାଦ୍ୟ ଅନ୍ୱେଷଣରେ କା... କା... ଚିତ୍କାର କରି ବାହାରେ ଯେ ମୁହଁସଞ୍ଜ ବେଳକୁ ଫେରେ ତା' ବସାକୁ। ଏତେ

କାଳ ସେ କୋଇଲି ଡିମ୍ବକୁ ଉଷୁମାଇ କୋଇଲିମାନଙ୍କୁ ଜନ୍ମ ଦେଲା । କିନ୍ତୁ ଡେଣା ମେଲି କଣ୍ଠସ୍ୱର ଫିଟିବା ମାତ୍ରେ କୋଇଲିମାନେ ଉଡ଼ିଗଲେ, ଆମ୍ବତୋଟାମାନଙ୍କୁ । କାଉର ଜୀବନ ସଂଗ୍ରାମ ପ୍ରତି ସଂପୂର୍ଣ୍ଣ ଉଦାସୀନ ରହି ସେମାନେ ପଞ୍ଚମ ସ୍ୱରରେ ତୋଳିଲେ କୁହୁଧ୍ୱନି । ସର୍ବହରା କାଉ ବୋଧହୁଏ ଏତେଦିନ ପରେ ବୁଝିଲା, ଏତେ ଆଦର ଓ ଯତ୍ନରେ ସେ ଯାହାକୁ ପୋଷିଲା, ପାଳିଲା ସେ ଏକ ବିରାଟ ଫାଙ୍କି । କବିମାନେ କୋଇଲିକୁ ନେଇ କବିତା ଲେଖିଲେ । ଅଥଚ କାଉ ରହିଗଲା, ଅପାଙ୍‌କ୍ତେୟ ତାଲିକାରେ । ତା'ହେଲେ ଆଉ କେଉଁ ଆଶାରେ ସେମାନେ କୋଇଲି ପାଇଁ ଏ ବେଗାରୀ କେତେକାଳ ଖଟିବେ ! ସେଥିପାଇଁ କାଉମାନେ ଆଉ ଯଦି କୋଇଲି ଡିମ୍ବ ଫୁଟାଉ ନଥାନ୍ତି ତା'ହେଲେ କୋଇଲି ହଠାତ୍ ନିରୁଦ୍ଦିଷ୍ଟ ହୋଇ ଯାଇଥିବାର ତାହା ମଧ୍ୟ ଏକ କାରଣ ହୋଇପାରେ । ହୋଇପାରେ ପୋଡ଼ା ପେଟ୍ରୋଲ, ଡିଜେଲ ଆଉ କୋଇଲାର ବିଷାକ୍ତ ଧୂଆଁରେ ତା'ର କଣ୍ଠସ୍ୱର ଆଜି ନୀରବ ହିଁ ହୋଇଯାଇଛି ।

କୋଇଲି ଆଜି ହୁଏତ କେଉଁ ଦୂର ପଲ୍ଲୀ ଗ୍ରାମରେ, କେଉଁ ବୃକ୍ଷ ବିରଳ ତୋଟାରେ ନୋଇଲେ କିମ୍ବା କେଉଁ ଉଜୁଡ଼ା ଜଙ୍ଗଲରେ ଉଡ଼ିଉଡ଼ି ଗାଇ ବୁଲୁଥିବ । ଏହା କିନ୍ତୁ କୋଇଲିର 'ଅରସିକେଷୁ ରସ ନିବେଦନ' ପରି । କାରଣ କିଏ ଶୁଣିବ ସେଠାରେ ତାର କୁହୁରବ ? କେଉଁ ବିରହୀ, ବିରହିଣୀଙ୍କ ମନ ଜର୍ଜରିତ ହେବ ତାର ଡାକ ଶୁଣି ? ଆଉ କିଏ ବା ଲେଖିବ, କୋଇଲି ଉପରେ ଛାନ୍ଦ, ଚଉପଦୀ, କବିତା ?

୧୨/୦୩/୮୯

# ଫଗୁଣ ଆଉ ଆସିବ କେବେ

ସଂସ୍କୃତରେ ଫାଲ୍‌ଗୁନ ଗୋଟିଏ ମାସର ନାମ। କିନ୍ତୁ ଓଡ଼ିଆରେ ଗୋଟାଏ 'ମୁଡ୍' ବା ମାନସିକ ଅବସ୍ଥାର ନାମ ଫଗୁଣ । ଫଗୁଣ ଆସିଗଲା ବୋଲି କହିଲେ, ମନରେ ଗୋଟିଏ ଚମକ ଜାଗେ। କିନ୍ତୁ ଫାଲ୍‌ଗୁନ ଆସିଲା କହିଲେ ... ନ ସେ ଶିହରଣ ଜାଗେନାହିଁ। ସଂସ୍କୃତ ଶବ୍ଦରେ ଶୌର୍ଯ୍ୟ ଅଛି, କିନ୍ତୁ ଓଡ଼ିଆ ଶବ୍ଦରେ ଅଛି ସଙ୍ଗୀତ। ସଂସ୍କୃତରେ ଅଛି ପ୍ରସାଧିତ ସୌନ୍ଦର୍ଯ୍ୟ, କିନ୍ତୁ ଓଡ଼ିଆରେ ଅଛି ଲାବଣ୍ୟ। ସେଥିପାଇଁ ଫାଲଗୁନ ଅପେକ୍ଷା ଫଗୁଣ ମୋ'ପାଇଁ ଅଧିକ ରୋମାଞ୍ଚକର। ଫଗୁଣ ମୋ' ମନରେ ସୃଷ୍ଟିକରେ ଉତଲା ପବନରେ ମୁଠା ମୁଠା ଅବିରର ଚିତ୍ରକଳ୍ପ। କିନ୍ତୁ ଫାଲ୍‌ଗୁନ କହିଲେ, ମୁଁ ବୁଝିଥାଏ, ପାଞ୍ଜିର କେବଳ ଗୋଟିଏ ପୃଷ୍ଠା ଓ ତିଥି, ବାର, ନକ୍ଷତ୍ର ଇତ୍ୟାଦି।

ମାଘମାସର ପ୍ରବଳ ଓ ଦୀର୍ଘ ଶୀତ ଲହରର କାରାଗାର ଭିତରେ ମୁଁ ବନ୍ଦୀ ହୋଇ ପଡ଼ିଥିଲି ଓ ମନେମନେ ଭାବୁଥିଲି ଫଗୁଣ ଆଉ ଆସିବ କେବେ ? କୋଇଲି ପରି ଫଗୁଣ କ'ଣ ଏବର୍ଷ ଫାଙ୍କିଦେଇ ଗଲା ? ଉତ୍ତରାର ଦନ୍ତାଘାତରୁ ରକ୍ଷାପାଇବାପାଇଁ ମୁଁ ଝରକା ସବୁ ବନ୍ଦ କରି ରଖିଥିଲି। ଉତ୍ତରାପବନ ପାଦରେ, ହାତରେ ଛନ୍ଦିଦେଇ ଯାଇଛି, ଲୁହା ଶାଙ୍କୁଳି ? ଶାଙ୍କୁଳି ଫିଟାଇ ଦକ୍ଷିଣ ବାରନ୍ଦାକୁ ଯିବାର ଉପାୟ ନାହିଁ, ଉତ୍ତରାର ଆକ୍ରମଣ ଭୟରେ। ମୋର ନିର୍ଜନ କୋଠରିଟି ଯେପରି ଗୋଟିଏ ସେଲ୍ ଆଉ କେଉଁ ଡିକ୍ଟେଟରର କଠୋର ନିର୍ଦ୍ଦେଶରେ ମୁଁ ଏହି କନ୍‌ସେଣ୍ଟ୍ରେସନ୍ କ୍ୟାମ୍ପରେ ବନ୍ଦୀ ହୋଇ ପଡ଼ିଛି । ଫଗୁଣର ଫଗୁଆ ପବନ କେବଳ ମୋତେ ଦେଇପାରନ୍ତା ଏ ବନ୍ଧନରୁ ମୁକ୍ତି। କିନ୍ତୁ ଅଛିଣ୍ଡା ମାଘର ଅତ୍ୟାଚାରରେ ଫଗୁଣ କେଉଁଠି ଆତ୍ମଗୋପନ କଲା କେଜାଣି !

ମୁଁ ଆଖିବୁଜି ମନେମନେ ଅନୁଭବ କରିବାକୁ ଚେଷ୍ଟା କରୁଛି, ଫଗୁଣର ଦକ୍ଷିଣା ହାଓ୍ୱାରେ ମୁଠାମୁଠା ଅବିର ରେଣୁର ଐନ୍ଦ୍ରଜାଲିକ ସ୍ପର୍ଶ । ଫଗୁ ନଥିଲେ ତ ଫଗୁଣ ଆଉ ଆସିବ ନାହିଁ।... ଝରକା ବାହାରେ, ହଠାତ୍ ଦିନେ ଅପରାହ୍ଣରେ ବୁଢ଼ା ଚମ୍ପାଗଛର ପତ୍ର ସବୁ ମର୍ମରିତ ହୋଇଉଠିଲା। ଭାବିଲି, ଏ ମୋର ଶୁଣିବାରେ ଭ୍ରମ ନୁହେଁ ତ ?

ସକାଳେ ରେଡ଼ିଓରେ ପାଗବାର୍ତ୍ତାରେ ଶୁଣିଥିଲି ପଶ୍ଚିମ ବାୟୁମଣ୍ଡଳରେ କୁଆଡ଼େ କ'ଣଗୋଟାଏ ଗଣ୍ଡଗୋଳ ଘଟିଥିବାରୁ ପ୍ରବଳ ତୁଷାରପାତ ସାଙ୍ଗକୁ ପୁଣି ଶୀତଳହର ମାଡ଼ି ଆସିବ। ତା'ହେଲେ ବୁଢ଼ା ଚମ୍ପାଗଛ ଚପଳ ଶିଶୁପରି କାହିଁକି କିପରି କୁରୁଳି ଉଠୁଛି। ସାରା ମାଘମାସଟା ଯାକ ତ ଗଛଡାଳରେ ପତ୍ରସବୁ ଓହଳି ରହିଥିଲେ, ଉତ୍ତରାର ଆକ୍ରମଣରେ ଭୀତତ୍ରସ୍ତ ହୋଇ, ବାଧ୍ୟ, ଅନୁଗତ ପରି ! ଏବେ ସେମାନେ ହଠାତ୍ ମର୍ମରିତ ହୋଇ ଉଠିଲେ କିପରି ?

ଭୃତ୍ୟକୁ କହିଲି, ଦକ୍ଷିଣପଟର ଚଉଡ଼ା ଝରକାଟା ଖୋଲି ପରଦା ଘୁଞ୍ଚାଇ ଦେବାପାଇଁ। ସେ ଝରକା ଖୋଲିଦେବା ମାତ୍ରେ ବନ୍ଦ କୋଠରି ଭିତରକୁ ପଶିଆସିଲା ଦମକାଏ ପବନ। ଏ ପବନରେ ମୁଁ ଅନୁଭବ କରିପାରିଲି ଦକ୍ଷିଣାର କୁଣ୍ଠିତ ଦାକ୍ଷିଣ୍ୟ। ଚପଳ ଶିଶୁଟିଏ ଯେପରି ଗୁରୁଜନମାନଙ୍କର ଆକଟରୁ ମୁକ୍ତିପାଇବାପାଇଁ ସତର୍ପିତ ଭାବରେ ବାହାରକୁ ଉଙ୍କି ମାରୁଛି। ତଥାପି ଦକ୍ଷିଣାର ଚାପଲ୍ୟ ମୋ'ର ଦେହରେ, ମନରେ ଆଣିଦେଲା, ବନ୍ଧନମୁକ୍ତିର ପୁଲକ।

ତା'ପରଦିନ ମଧ୍ୟ ବୁଢ଼ା ଚମ୍ପାଗଛଟା ସୁଦ୍ଧା ଫଗୁଆ ନିଶାରେ ମାତିଉଠିଲା। ଫଗୁଣ ଆସିଗଲାବୋଲି ମୁଁ ଆଶ୍ୱସ୍ତ ହେଲି, କିନ୍ତୁ ତା'ପରଦିନ ବୁଢ଼ା ଚମ୍ପାଗଛରେ ପତ୍ର ଆଉସବୁ ମର୍ମରିତ ହେଲେ ନାହିଁ। ପତ୍ରମର୍ମର ଉତ୍ତରାର କଠୋର ଶାସନରେ ପୁଣି ନିରବ ହୋଇଗଲେ, ବାଧ୍ୟ ଶିଶୁମାନଙ୍କ ପରି । ଖୋଲା ଝରକାବାଟେ କୁହୁଡ଼ି ପରି ମାଡ଼ିଆସିଲା ଉତ୍ତରା, ତା'ର ହୃତ୍ ରାଜ୍ୟର ପୁନରୁଦ୍ଧାରପାଇଁ । ଭୃତ୍ୟକୁ କହିଲି, ପୁଣି ଝରକା ସବୁ ବନ୍ଦ କରି ତା' ଉପରେ ବହଳ ପରଦା ସବୁ ଟାଣିଦେବାପାଇଁ। ହାତରେ ପାଦରେ ପୁଣି ବେଢ଼ିଗଲା ଦୁଃଚ୍ଛେଦ୍ୟ ଶାଙ୍କୁଳି। ଉତ୍ତରା ଉଦ୍ଦେଶ୍ୟରେ ମୁଁ ଆସ୍ଫାଳନ କଲି, ତୁମେ ହାତରେ ଗୋଡ଼ରେ ଶାଙ୍କୁଳି ପିନ୍ଧାଇ ମୋତେ ବନ୍ଦୀ ରଖିପାର; କିନ୍ତୁ ମୋର ଆତ୍ମାକୁ କଦାପି ନୁହେଁ। ମୁଁ ଅବାରିତ । ତମର ବନ୍ଧନ ମୁଁ ମାନେନାହିଁ ବା ମାନିବି ନାହିଁ। ତମର ଶତ ଆକ୍ରମଣ ମଧ୍ୟରେ ମୁଁ, ତଥାପି ଅପେକ୍ଷା କରିବି, ଫଗୁଣ ଆଉ ଆସିବ କେବେ ।

୧୯/୦୩/୮୯

# ରଜାଘରେ କୁଣିଆ

ସକାଳ ସାଢ଼େ ସାତଟା ପର୍ଯ୍ୟନ୍ତ ବେଡ୍-ଟୀପାଇଁ ଅପେକ୍ଷା କରି କରି ଅଗତ୍ୟା, କପେ ଚା'ର ସନ୍ଧାନରେ ଅତିଥି ଭବନର ବାହାର ବାରନ୍ଦାକୁ ଆସିଲି। ଗତ ରାତିରେ ମୁଁ ଏଇ ଅତିଥି ଭବନରେ ଆସି ପହଞ୍ଚିଥିଲି ଗୋଟିଏ ଦେଶୀୟ ରାଜ୍ୟର ରାଜା ସାହେବଙ୍କର ସଶ୍ରଦ୍ଧ ଆମନ୍ତ୍ରଣରେ। ତାଙ୍କ ଗଡ଼ରେ ଦୁର୍ଗାପୂଜା ଉତ୍ସବ ବେଶ୍ ଜାକଜମକରେ ପାଳିତ ହୋଇଥାଏ। ପୂଜା ଉତ୍ସବ ଅବକାଶରେ ଦୁଇଦିନ ସେଠାରେ କଟାଇବାପାଇଁ ମୁଁ ଆସିଥିଲି ସେଇ ଗଡ଼କୁ ଓ ରହିଥିଲି ରାଜା ସାହେବଙ୍କର ଅତିଥି ହୋଇ। ବାରନ୍ଦା ନିର୍ଜନ। ଉଆସଟା ତଥାପି ନିଝୁମ୍ ହୋଇ ପଡ଼ିଥିଲା। ସତେ ଯେପରି ସ୍ତବ୍‌ଧ ନିଶାର୍ଦ୍ଧ ତଥାପି ବିତି ନଥିଲା। ନୀଳ ଆକାଶରେ ଖଣ୍ଡ ଖଣ୍ଡ ଚଲାବାଦଲ ଓ ଉଆସ ବାହାରେ ଶାଳଗଛମାନଙ୍କ ଉପରେ ଛାଇ ଆଲୁଅର ଲୁଚକାଳି ଖେଳ ଜାଗ୍ରତ-ଜୀବନର କିଛିକିଛି ସୂଚନା ଦେଉଥିଲା। ବାକି ସମସ୍ତେ ଯେପରି ନିଦ୍ରା- ଅଚେତନ।

ହଠାତ୍ ସେଇ ଶୂନ୍ୟତା ଭିତରୁ ଉଆସର କୌଣସି ଭିତିରିଆ ପରି ଦେଖା ଯାଉଥିବା ଜଣେ ଯୁବକ ଆସି ମୁଣ୍ଡ ନୁଆଇଁ ମୋତେ ପ୍ରଣାମ ଜଣାଇଲା ଓ ମୋର ଯଦି କିଛି ପ୍ରୟୋଜନ ଥାଏ, ବୁଝିବାପାଇଁ ନୀରବରେ ଅପେକ୍ଷା କରି ରହିଲା। ମୁଁ କହିଲି, "ଚଟାପଟ କପେ ଗରମ ଚା' ନେଇ ଆସ।" ସେ ଯେପରି କ୍ଷିପ୍ର ପାଦରେ ସେଠାରୁ ଚାଲିଗଲା, ମୋର ମନେହେଲା, ଏଇ ପାଞ୍ଚମିନିଟ୍ ଭିତରେ ବେଡ୍-ଟୀ ଆସି ପହଞ୍ଚିଯିବ ଓ ସେଇଠାରେ ଠିଆ ହୋଇ ମୁଁ ଆକାଶରେ ଛାଇଆଲୁଅର ଖେଳ ଦେଖି ଦେଖି ଚା' ପିଇବି।

କିନ୍ତୁ ଅପେକ୍ଷା କରି କରି ୪୦ ମିନିଟ୍ ବିତିଗଲା। ଚା'ର ଦେଖାନାହିଁ କିମ୍ବା ଭିତିରିଆଟିର ମଧ୍ୟ ଦେଖାନାହିଁ। କପେ ଚା' ଅଭାବରେ ସାରା ସକାଳଟା ମୋତେ ଭାରି ଅସ୍ୱସ୍ତିକର ଲାଗି ଆସୁଥିଲା। ଏଇ ସମୟରେ ଦେଖିଲି, ଆଉ ଜଣେ, ପ୍ରାୟ ଦରବୁଢ଼ା ଭିତିରିଆଟିଏ ଉଆସ ଭିତରକୁ ଯାଉଛି। ଦୁଇ ହାତରେ ତାଳିପିଟି ତାକୁ ପାଖକୁ ଡାକିଲି। ସେ ମଧ୍ୟ ଆସି ବେଶ୍ ଭକ୍ତିରେ ମୁଣ୍ଡ ନୁଆଁଇ ମୋତେ ପ୍ରଣାମ କଲା ଓ ମୋର ଯଦି କିଛି

ଆବଶ୍ୟକ ଥାଏ, ତାହା ଜାଣିବାପାଇଁ ଖୁବ୍ ବିନୟରେ ପଚାରିଲା। ମୁଁ ତାକୁ କହିଲି, "ଜଲ୍‌ଦି କପେ ଚା' ନେଇଆସ୍। ଏ ପର୍ଯ୍ୟନ୍ତ କପେ ଚା' ପାଇପାରିଲି ନାହିଁ।" ସେ ମଧ୍ୟ ସେଠାରୁ ଯେପରି କ୍ଷୀପ୍ର ପାଦରେ ଚାଲିଗଲା, ମୋର ମନେହେଲା ଚା' ଏଇ ସଙ୍ଗେ ସଙ୍ଗେ ଆସି ପହଞ୍ଚିଯିବ। ସେ ଭିତିରିଆଟା ଥିଲା ଟୋକାଲୋକ, ଦାୟିତ୍ୱହୀନ। ମୋ ଚା' କଥା ଭୁଲିଗଲା। କିନ୍ତୁ ଏ ଦରବୁଢ଼ା ଭିତିରିଆ ଏଇ ସଙ୍ଗେ ସଙ୍ଗେ ଚା' ଆଣି ଦେଇଯିବ। ମୁଁ ମୋ ରୁମ୍ ଭିତରକୁ ଫେରି ଆସିଲି।

କିନ୍ତୁ ପଚିଶ ମିନିଟ୍ ବିତିଗଲା; ତାର ମଧ୍ୟ ଦେଖା ନଥିଲା। ଅସ୍ଥିର ପାଦରେ ପ୍ରଚଣ୍ଡ ବିରକ୍ତିରେ ପୁଣି ବାହାର ବାରନ୍ଦାକୁ ଆସିବାମାତ୍ରେ ଦେଖିଲି, କାନ୍ଥକୁ ଆଉଜି ଆଉ ଗୋଟିଏ ଟୋକା ଭିତିରିଆ ଚୁପ୍‌ଚାପ୍ ବସିଛି। ଇଏ କିନ୍ତୁ ପିନ୍ଧିଥିଲା ଖଣ୍ଡେ ଢିଲା ପାଇଜାମା ଆଉ ହାଫ୍‌ସାର୍ଟ। ଅନ୍ୟ ଦୁଇ ଜଣଙ୍କ ତୁଳନାରେ ବେଶ୍ ସ୍ମାର୍ଟ ଦିଶୁଥିଲା। ତାକୁ ଦେଖିବାମାତ୍ରେ ସଙ୍ଗେ ସଙ୍ଗେ ପାଟି କରି କହିଲି, "ଜଲ୍‌ଦି, ଜଲ୍‌ଦି କପେ ଚା' ନେଇଆସ। ସକାଳ ସାଢ଼େ ନଅଟା ବାଜିଗଲାଣି।" "ଏଇ ଆଣୁଛି ହଜୁର" କହି ସେ ମଧ୍ୟ କ୍ଷୀପ୍ର ପାଦରେ ଚାଲିଗଲା ଓ ଚା' ଅପେକ୍ଷାରେ ମୁଁ ପୁଣି ଭିତରକୁ ଫେରି ଆସିଲି। କିନ୍ତୁ ତା'ର ମଧ୍ୟ ଦେଖା ନଥିଲା।

ଅଗତ୍ୟା ଦଶଟା ପରେ ମୁଁ ତଳକୁ ଓହ୍ଲାଇ ମୋ' କାର୍‌ରେ ସେଠାରୁ ଅଦୂରର ଗଡ଼ବଜାରକୁ କପେ ଚା'ପାଇଁ ଆସିଲି।

ସାଢ଼େ ଦଶଟା ପରେ ମୋ' ରୁମ୍‌କୁ ଫେରି ବାଥ୍‌ରୁମ୍‌ରେ ଧୁଆଧୋଇ ହେଉଛି, କବାଟରେ ଟକ୍‌ଟକ୍ ଶବ୍ଦ ହେଲା। ରୁମ୍ କବାଟ ଫିଟାଇ ଦେଖେ, ସେଇ ପ୍ରଥମ ଭିତିରିଆଟି, ଗୋଟିଏ ସୁସଜ୍ଜିତ ଟ୍ରେରେ ସିଲଭର ଚା' ପଟ୍, ମିଲ୍‌କ ପଟ୍, ସୁଗର ପଟ୍ ଓ ଚା' କପ୍ ଇତ୍ୟାଦି ସଜାଇ ଆଣିଛି। ପଚାରିଲି, "ଏତେ ଡେରି ?" ସେ ଟ୍ରେଟା ଗୋଟାଏ ଟିପୟ ଉପରେ ରଖି ଦେଉଦେଉ ଉତ୍ତର ଦେଲା, "ରାଜା ସାହେବଙ୍କ ଖନ୍ଦା ଅବିକା ଫିଟିଲା ତ, ରାଜା ସାହେବଙ୍କ ପହୁଡ଼ ଭାଙ୍ଗିବା ପରେ। ଖନ୍ଦା ଖୋଲିବା ମାତ୍ରେ ମୁଁ ଚା' ନେଇ ଆସୁଛି।"

ମୁଁ ଯେତେବେଳେ ରାଜାସାହେବଙ୍କ ଅତିଥି, ବୋଧହୁଏ ତାଙ୍କରି ଖନ୍ଦାରୁ ହିଁ ମୋତେ ମିଳିବ ଖାଦ୍ୟପେୟ। ତାକୁ କପେ ଚା' ତିଆରି କରିବାପାଇଁ ଓ ସେଥିରେ କମ୍ କ୍ଷୀର ଓ କମ୍ ଚିନି ଦେବାପାଇଁ ବୁଝାଉଛି, ଏଇ ସମୟରେ ସେଇ ଦ୍ୱିତୀୟ ପ୍ରୌଢ଼ ଭିତିରିଆଟି ଆଉ ଗୋଟିଏ ଚା'ଟ୍ରେ ନେଇ ଆସିଲା ଓ ଟେବୁଲ ଉପରେ ରଖିଦେଇ ନିର୍ବୋଧ ପରି ମୋ'ଆଡ଼େ ଚାହିଁ ରହିଲା। ମୁଁ ପଚାରିଲି "ଏ ଚା' ପୁଣି କ'ଣ ?" ସେ ଉତ୍ତରରେ ବୁଝାଇ ଦେଲା, "ସେ ରାଣୀ ସାହେବାଙ୍କ ଖନ୍ଦାଶାଳ ଫିଟିବା ମାତ୍ରେ ମୋ'ପାଇଁ ଚା'

ଧରି ଆସିଛି। ଠିକ୍ ତା'ପରେ ପରେ ଆସିଲା, ପାଇଜାମା ଓ ହାଫ୍ ସାର୍ଟ ପିନ୍ଧା ତୃତୀୟ ଭିତିରିଆଟି। ମୁଁ କୌତୂହଳରେ ପଚାରିଲି, "ଏ ଚା' ପୁଣି କୋଉ ଖନ୍ଦାରୁ ଆସିଲା।" ସେ କହିଲା, "ସେ ଟିକାୟତ ସାହେବଙ୍କ ଲୋକ। ତାଙ୍କ ଖନ୍ଦା ଖୋଲିବା କ୍ଷଣି ସେ ଚା' ନେଇଆସିଛି ?"

ଏ ରାଜା ସାହେବ ଥରେ ମୋତେ କହୁଥିଲେ, ସେ ଜୀବନରେ କେବେ ସୂର୍ଯ୍ୟୋଦୟ ଦେଖିନାହାନ୍ତି। ସକାଳେ ଉଠନ୍ତି ଅନେକ ଡେରିରେ। ତାଙ୍କ ବ୍ରେକ୍‌ଫାଷ୍ଟ ଶେଷ ହେଉ ହେଉ ଦିନ ବାର ବା ସାଢ଼େ ବାର। ଲଞ୍ଚ୍ ଖାଆନ୍ତି ଚାରିଟାବେଳେ ଓ ଡିନର ଖାଉ ଖାଉ ରାତି ବାର ବା ଗୋଟାଏ। ପ୍ରକୃତରେ କାଲି ରାତିରେ ଅନେକ ଡେରିରେ ଗଡ଼ରେ ପହଞ୍ଚିବା ପରେ ମୁଁ ରାଜା ସାହେବଙ୍କ ସହିତ ଡିନର ଖାଇଥିଲି, ରାତି ସାଢ଼େ ବାରଟାରେ।

କିନ୍ତୁ ଏତେ ଗୁଡ଼ାଏ ଚା' ନେଇ କରିବି କ'ଣ ? ରଜାଘରର ସୌଜନ୍ୟ ବିଧି ଅନୁସାରେ ଫେରାଇ ଦେବା ମୋ' ପକ୍ଷରେ ବେଆଦବି ହୁଅନ୍ତା। ମୁଁ ତେଣୁ ରାଜା ସାହେବଙ୍କ ଭିତିରିଆ ମୋ'ପାଇଁ ତିଆରି କରି ସାରିଥିବା ଚା'କପ୍‌କୁ ପିଉ ପିଉ ସେମାନଙ୍କୁ ସେଠାରୁ ଚାଲିଯିବାପାଇଁ କହିଲି।

ସେଇଦିନ, ସେଠାରେ, ସେଇ ଉଦ୍‌ଭଟ ମୁହୂର୍ତ୍ତରେ ଜୀବନର ଗୋଟିଏ ସତ୍ୟ ମୁଁ ଆବିଷ୍କାର କରିଥିଲି... ମଣିଷ ଜୀବନରେ ଯେତେବେଳେ ଯାହା ଚାହେଁ ପାଏନାହିଁ; ଆଉ ଯେତେବେଳେ ରାଶି ରାଶି ପ୍ରମାଣରେ ପାଏ, ସେତେବେଳେ ସେ ସବୁଥିରେ ତା'ର ଆଉ ପ୍ରୟୋଜନ ନଥାଏ।

*୧୬/୦୩/୮୯*

# ଲଙ୍କାମରିଚ ଗଛ

ସେଦିନ ନିର୍ଦ୍ଧୂମ୍ ଖରାବେଳଟାରେ ଈଶାଣପୁର ଗାଁର ପାଣ୍ଡବ ଜେନା, ଯେପରି ମାରମୂର୍ତ୍ତି ହୋଇ, ମୋ ଅଫିସ୍ ବାହାରେ ଚପରାଶିର ନିଷେଧ ନମାନି, ମୋର ସଂପାଦକୀୟ ଅଫିସ୍ ଭିତରକୁ ପଲାଣି ଆସିଲେ, ତାହା ଲକ୍ଷ୍ୟ କରି ମୁଁ ପ୍ରକୃତରେ ବିସ୍ମିତ ହୋଇ ଉଠିଲି । ପାଣ୍ଡବ ଜେନାଙ୍କ ବୟସ ସତୁରି ପାଖାପାଖି । ଚଉପଣିଆ ମୁହଁ ଉପରେ ମୁଣ୍ଡଟି ଚନ୍ଦା । କପାଳରେ ଦୁଇଟି ଗଭୀର ବଳୀରେଖା । ବେକରେ ତିନିସାରି ତୁଳସୀ ମାଳି । ପିନ୍ଧିଥିଲେ, ଆଣ୍ଠୁ ତଳକୁ ଅଳ୍ପ ଝୁଲିପଡ଼ିଥିବା ଖଣ୍ଡେ ଧୋତି, ଖାକି ରଙ୍ଗର ହାଫ୍ ସାର୍ଟ ଆଉ କାନ୍ଧରେ ଖଣ୍ଡେ ଚାଦର ।

ଏପରି ଲୋକ କେବେ ଏମିତି ରାଗି ପାରନ୍ତି ବୋଲି ମୋର ପ୍ରତ୍ୟୟ ହେଉ ନଥିଲା । ସହଜେ ପୁଣି ପାଣ୍ଡବ ଜେନା ଭାରି ଶାନ୍ତ ପ୍ରକୃତିର ମଣିଷ । ସିଏ ପୁଣି ଈଶାଣପୁର ଅଞ୍ଚଳରେ ମୋର ଜଣେ ବିଶିଷ୍ଟ ଶୁଭାକାଂକ୍ଷୀ ଓ ସମର୍ଥକ । ନିର୍ବଚନ ବେଳେ ମୋ ପାଇଁ ଓଲଟି ସେ କିଛି ପଇସା ଖର୍ଚ୍ଚ କରନ୍ତି । ତାଙ୍କ କୁଞ୍ଜକାନ୍ତ ମଠରେ କର୍ମୀମାନଙ୍କୁ ଭାତ ଡାଲମା ଖୁଆଇବାପାଇଁ ସେ କେବେ କୁଣ୍ଠିତ ହୁଅନ୍ତି ନାହିଁ ।

ତେଣୁ ହଠାତ୍ ସିଏ କାହିଁକି ଏପରି ଉତ୍ତେଜିତ ଭାବରେ ଆସିଲେ, ମୁଁ ବୁଝିପାରୁ ନଥିଲି । ଟିକିଏ ଶାନ୍ତ ପଡ଼ିବା ପରେ ସେ ମୋ ସାମନାରେ ଖଣ୍ଡେ ଚୌକି ଉପରେ ବସିପଡ଼ି ଆହତ କଣ୍ଠରେ କହିଲେ, "ଆପଣ ବି ଶେଷକୁ କାଗଜରେ ଲେଖି ବାହାର କଲେ, ମୁଁ ବିକୃତ ମସ୍ତିଷ୍କ ! ଖଳ ଲୋକଙ୍କ ପାଲରେ ପଡ଼ିଛି !" ବ୍ୟାପାରଟା ଆଦୌ ବୁଝି ପାରିଲି ନାହିଁ । ସେଇ କଥା ପଚାରିବାରୁ, ସେ ତାଙ୍କ ପ୍ଲାଷ୍ଟିକ୍ ଥଳି ଭିତରୁ ମୁଁ ସଂପାଦନା କରୁଥିବା ଖଣ୍ଡେ ଖବରକାଗଜର ଗୋଟିଏ ପୃଷ୍ଠା ମେଲି ମୋତେ ଦେଖାଇ କହିଲେ, "ପଢ଼ନ୍ତୁ ଏ କ'ଣ ଏଠି ଲେଖା ହୋଇଛି !" ସେ ଯେଉଁ ଅଂଶଟି ମୋତେ ଦେଖାଇଦେଲେ, ତାହା ଥିଲା ଏକ ନୋଟିସ୍ । ଏ ନୋଟିସ୍‌ଟି ଛପାଇଥିଲେ ତାଙ୍କ ସ୍ତ୍ରୀ ରୁକ୍ମିଣୀ ଦେଈ ଓ ଚାରିପୁତ୍ର । ସେଥିରେ ଯାହା ଲେଖାଥିଲା ତାର ସାରମର୍ମ ହେଉଛି-

ପାଣ୍ଡବ ଜେନା ଇଦାନୀଂ ବିକୃତ ମସ୍ତିଷ୍କ ହୋଇ ଯାଇଥିବାରୁ ଖଳ ଲୋକମାନଙ୍କ ବୁଦ୍ଧିରେ ପଡ଼ି ଜମିବାଡ଼ି ବିକ୍ରି କରି ଦେଉଛନ୍ତି କେହି ଯଦି ସେପରି ସଂପତ୍ତି ତାଙ୍କଠାରୁ କିଣନ୍ତି, ତା'ହେଲେ, ଆମ୍ଭେମାନେ ସେଥିପାଇଁ ଦାୟୀ ରହିବୁ ନାହିଁ !" ଇତ୍ୟାଦି, ମୁଁ କହିଲି, "ପାଣ୍ଡବବାବୁ ଇଏ ଗୋଟିଏ ବିଜ୍ଞାପନ । ପଇସା ଦେଇ ଖବରକାଗଜରେ ଏପରି ବିଜ୍ଞାପନ ଯେ କେହି ଛପାଇ ପାରିବେ । ଏକଥା ବୁଝନ୍ତି ବିଜ୍ଞାପନ ବିଭାଗ । ମୁଁ ଏହାକୁ ଛପାଇବାପାଇଁ ଯିବି କାହିଁକି ? ମୁଁ କାହିଁକି ଆପଣଙ୍କୁ ବିକୃତ ମସ୍ତିଷ୍କ ବୋଲି ଛପାଇବି ? କିନ୍ତୁ କଥା କ'ଣ ?"

ପାଣ୍ଡବ ଜେନା କହିଲେ, "ଆପଣ ତ ଜାଣନ୍ତି ବିପକ୍ଷଦଳିଆ ଆମ ଅଞ୍ଚଳରେ କ୍ଷମତାକୁ ଆସିବା ପରେ, ପଞ୍ଚାୟତ ମୋ ହାତରୁ ନଈଘାଟ କାଢ଼ିନେଲା । ହାଟଟା ମୋ ଜମି ଉପରେ ଥିବାରୁ ପଞ୍ଚାୟତ ହାଟକୁ ନେଇପାରିଲା ନାହିଁ । ତେବେ କୋଶେ ଛଡ଼ାରେ ଘଟଗାଁରେ ଗୋଟେ ନୂଆ ହାଟ ଆରମ୍ଭ କଲାଣି । ଆୟ କମୁଛି । ମଠରେ ମେଳା ମଉଛୁକ ପାଇଁ ପଇସା କୁଳାଉ ନାହିଁ । ସେଥିପାଇଁ ନଈ ସେପାରି ଯେଉଁ ଦୁଇମାଣ ଜମି ଥିଲା, ଆଉ ଭାଗଚାଷୀମାନେ ଯାହାକୁ ଏକପ୍ରକାର ମାଡ଼ି ବସିଥିଲେ, ସେଇ ଜମିକୁ ମୁଁ ବିକ୍ରି କରିଦେବାରୁ ଆମ ଘରେ ଘୋର ଅଶାନ୍ତି ହୋଇ ଯାଇଛି । ସ୍ତ୍ରୀ ଆଉ ପୁଅମାନେ କହୁଛନ୍ତି, ଆମ ଜମି ବିକିଲ କାହିଁକି ? ଆରେ ତମର କି ଜମି ? ପୈତୃକ ଜମି ମୋର ତିନିମାଣ ସୁଦ୍ଧା ନଥିଲା । ମୁଁ ଜୀବନ ସାରା ଖଟିଖଟି ନିଜ ବୁଦ୍ଧି ଆଉ ପରିଶ୍ରମ ଖଟାଇ ତେର ମାଣ ସଂପତ୍ତି କଲି । ଚାଳଘର ଭାଙ୍ଗି ମାହାଲାଏ ପକ୍‌କା ଘର ତୋଳାଇଲି । ସବୁ ସ୍ୱଉପାର୍ଜିତ । ମୋର ଯାହା ଇଚ୍ଛା ମୁଁ ତାହା କରିବି । ତମେ ସେଥିରେ ବାଧା ଦେବାକୁ କିଏ ?"

ପାଣ୍ଡବ ଜେନା ପୁଣି ଉତ୍ତେଜିତ ହୋଇଉଠିଲେ । ମୁଁ ଜାଣେ ପାଣ୍ଡବ ଜେନାଙ୍କ କଥା । ହାଟ ଆଉ ଘାଟରୁ ରୋଜଗାର ପ୍ରାୟ ଭଲ ହେଉଥିଲା । କୁଞ୍ଜକାନ୍ତ ମଠରେ ପ୍ରତି ପୂର୍ଣ୍ଣିମା ଦିନ କିଛି ନା କିଛି ମେଳା ମଉଛୁକ ଲାଗିଥିଲା । ଏବେ ଜେନାଙ୍କ ଆୟ କମିଛି । ମଠରେ ମେଳା ମଉଛୁକ ପାଇଁ ଟଙ୍କା ଅଭାବ ପଡୁଛି । ସେଥିପାଇଁ ସେ ଜମି ଦୁଇମାଣ ବିକ୍ରି କରିଦେଇଛନ୍ତି । ଗଞ୍ଜେଇ ଚିଲମର ଅଭ୍ୟାସ ଅଛି । ସେଥିପାଇଁ ତାଙ୍କୁ ବିକୃତ ମସ୍ତିଷ୍କ ବୋଲି ତାଙ୍କ ପରିବାର ଲୋକେ ଖବରକାଗଜରେ ନୋଟିସ୍ ଛପାଇଛନ୍ତି ।

ମୁଁ କହିଲି, "ଆପଣ ଶାନ୍ତ ହୁଅନ୍ତୁ । ମୁଁ ନିଜେ ଆପଣଙ୍କ ଗାଁକୁ ଆସି ଆପଣଙ୍କ ପିଲାମାନଙ୍କୁ ସବୁ ବୁଝାଇଦେବି । ଆପଣ ବିକୃତ ମସ୍ତିଷ୍କ ବୋଲି ଛପାଇବା ସେମାନଙ୍କ ପକ୍ଷରେ ପ୍ରକୃତରେ ଅନ୍ୟାୟ ହୋଇଛି ।" ପାଣ୍ଡବ ଜେନା କହିଲେ, "ତା'ହେଲେ ଏଇ ପୁଷ ପୁନେଇ ଦିନ, ମୁଁ ନେଉଳି ମଠରୁ ଗୁରୁ ମହାରାଜାଙ୍କୁ ଡକାଇଛି, ଏହାର

ମୀମାଂସାପାଇଁ । ଆପଣ ତା'ହେଲେ ସେଇ ଦିନକୁ ଆସନ୍ତୁ । ମୋତେ ସଂସାରର ଅଶାନ୍ତି ଆଉ ଭଲ ଲାଗୁ ନାହିଁ ।"

ପୂର୍ଣ୍ଣିମା ଦିନ ପାଣ୍ଡବ ଜେନାଙ୍କର କୁଞ୍ଜକାନ୍ତ ମଠରେ ମୁଁ ପହଞ୍ଚିବା ପୂର୍ବରୁ ଗୁରୁ ମହାରାଜ ପହଞ୍ଚି ସାରିଥିଲେ । ପାଣ୍ଡବ ଜେନା, ତାଙ୍କ ଆଗରେ ମାଟି ଚଟାଣ ଉପରେ ବସି, ତାଙ୍କୁ ନିଜ ସଂସାରର ଅଶାନ୍ତିର କଥା କହିଯାଉଥିଲେ ଓ ତାଙ୍କ ସ୍ତ୍ରୀ ଓ ପୁଅମାନଙ୍କୁ ଡାକି ଏ ଅଶାନ୍ତିର ଗୋଟିଏ ସମାଧାନ ପାଇଁ ଅନୁରୋଧ କରୁଥିଲେ । ସେଠାରେ ପ୍ରକୃତରେ ମୋର କୌଣସି ଭୂମିକା ନଥିଲା । ମୁଁ ସାକ୍ଷୀଗୋପାଳ ପରି, ସେଠାରେ ନିରବରେ କେବଳ ବସି ରହିଥିଲି । ଗୁରୁ ମହାରାଜ ଚିଲମ ଶୋଷି ଖୁବ୍ ଧୀରେଧୀରେ ଦୁଇ ନାକପୁଡ଼ା ବାଟେ ଧୂଆଁ ଛାଡୁଥିବାରୁ ପାଣ୍ଡବ ଜେନାଙ୍କ ଅନୁଯୋଗର କୌଣସି ଉତ୍ତର ଦେଇପାରୁନଥିଲେ । ଏହିପରି ପ୍ରାୟ ପାଞ୍ଚ ମିନିଟ୍ କଟିଯିବା ପରେ ଗୁରୁ କହିଲେ, "ବାବାରେ ଏ ସଂସାରରେ ଇଏ କିଛି ନୂଆ କଥା ନୁହେଁ । ଯେଉଁମାନଙ୍କୁ ତୁ ନିଜର ଅତି ପ୍ରିୟଜନ ଭାବୁଛୁ, ପୂର୍ବ ଜନ୍ମରେ ତୁ ଥିଲୁ ସେମାନଙ୍କ ପାଖରେ ଧାରୁଆ । ନୋହିଲେ ଏ ଜନ୍ମରେ ସେଇଥିପାଇଁ ସେମାନେ ତୋ ଚାରିପଟେ ସେମାନଙ୍କର ଋଣ ଆଦାୟ ପାଇଁ ଜୁଟିଛନ୍ତି । ଲଙ୍କାମରିଚ ଗଛ ହୋଇ ତୁ ସେମାନଙ୍କୁ କଡ଼ା କ୍ରାନ୍ତି ଶୁଝିବୁ । ସେଥିରୁ ନିସ୍ତାର ନାହିଁ । ଇଏ ହେଉଛି ସଂସାର ।" ପାଣ୍ଡବ ଜେନା ଆଉ କିଛି କହିଲେ ନାହିଁ । କିମ୍ବା ସେ କଥା ଆଉ ମଧ୍ୟ ଉଠିଲା ନାହିଁ । ମଠରେ ପ୍ରସାଦ ସେବା ପରେ ମୁଁ ବିଦାୟ ନେଇ ଫେରି ଆସିଲି ।

ତା'ର କିଛିଦିନ ପରେ ଦିନେ ହଠାତ୍ ରେଡ଼ିଓ ଖୋଲିବା ମାତ୍ରେ, ନିରୁଦ୍ଦିଷ୍ଟ ବ୍ୟକ୍ତିଙ୍କ ସଂପର୍କରେ ଘୋଷଣାରେ ଶୁଣିଲି, "ପାଣ୍ଡବ ଜେନା, ବୟସ ସତୁରି, ଗ୍ରାମ ଈଶାଣପୁର, ଥାନା ଗୋଲିପରୁ, ଜିଲ୍ଲା କଟକ, ଗତ ମାସରୁ ହଠାତ୍ କୁଆଡ଼େ ନିରୁଦ୍ଦିଷ୍ଟ ହୋଇଯାଇଛନ୍ତି ।" ଇତ୍ୟାଦି । ସମ୍ବାଦଟି ଶୁଣି ଚମକି ଉଠିଲି । ପାଣ୍ଡବ ଜେନା, ତା'ହେଲେ ଘର ଛାଡ଼ି ନିରୁଦ୍ଦିଷ୍ଟ ହୋଇଗଲେ ! ତାଙ୍କ ପରି ଜଣେ ସଂସାରୀ ମଣିଷ ପକ୍ଷରେ ଏହା ସଂଭବ ହେଲା କିପରି ? ବୋଧହୁଏ ସେ ଆଉ ଲଙ୍କାମରିଚ ଗଛ ହୋଇ ପୂର୍ବଜନ୍ମର ଧାରୁଆମାନଙ୍କର ଋଣ ପରିଶୋଧ କରି ଚାଲିଥିବାର ବିଧାନ ବିରୁଦ୍ଧରେ ବିଦ୍ରୋହ କରି ଉଠୁଥିବେ ନା ? ସେ ଯଥେଷ୍ଟ ଶୁଝିସାରିଲେଣି । ଆଉ ସେ କପର୍ଦ୍ଦକଟିଏ ସୁଦ୍ଧା ସୁଝି ପାରିବେ ନାହିଁ । କିମ୍ବା ନଳା ମୁହଁରେ ଲଙ୍କାମରିଚ ଗଛ ହୋଇ ଆଉ ସେ ଫଳି ପାରିବେ ନାହିଁ ।

୦୯/୦୪/୮୯

# ବିଷକନ୍ୟା

ମୌର୍ଯ୍ୟ ଯୁଗର ବିଷ କନ୍ୟାମାନେ ଆଜି ବି ଅଛନ୍ତି । ସେଦିନ ଏଇ ବିଷକନ୍ୟା ମାନେ ଥିଲେ ମୌର୍ଯ୍ୟ ରାଜ ଦରବାରମାନଙ୍କରେ, ସେମାନଙ୍କ ଆଲିଙ୍ଗନରେ ଲୁବ୍ଧ ରାଜଶତ୍ରୁମାନଙ୍କୁ ନିପାତ କରିବାପାଇଁ । ଆଜିର ବିଷକନ୍ୟାମାନେ କିନ୍ତୁ ମିଳିବେ ମହାନଗରୀମାନଙ୍କରେ, ନାଇଟ୍ କ୍ଲବ୍, ହୋଟେଲ୍ ଓ ରେଷ୍ଟୋରାଁମାନଙ୍କରେ । ଏବେ ଶତ୍ରୁ ନିପାତପାଇଁ ରାଜଦରବାରମାନଙ୍କରେ ଏମାନଙ୍କର ଆଉ ପ୍ରୟୋଜନ ପଡୁନାହିଁ । ସେଥିପାଇଁ ମିଳୁଛନ୍ତି ପେସାଦାର ଆତତାୟୀମାନେ । ଏ ବିଷକନ୍ୟାମାନଙ୍କର ବର୍ତ୍ତମାନ ପେସା ହୋଇଛି ନିଜ ଯୌନ ଜୀବନର କଳଙ୍କିତ କାହାଣୀ ବାହାରେ ପ୍ରକାଶ କରିଦେବାର ଧମକ ଦେଇ 'ରାନ୍‌ସମ୍' ଆଦାୟ କରିବା । ପେସାଦାର ଆତତାୟୀମାନଙ୍କର ନାମ ଆଜି ଯେପରି ହେଲାଣି ଆତଙ୍କବାଦୀ । ଏହି ପେସାଦାର ବିଷକନ୍ୟାମାନଙ୍କର ନାମ ସେପରି ହେଲାଣି ବିଉଟୀ କୁଇନ୍ ।

'ଫେମିନା'ର ସୌନ୍ଦର୍ଯ୍ୟ ପ୍ରତିଯୋଗିତାରେ କୁମାରୀ ପାମେଲା ସିଂହ ଭାରତର ବିଉଟୀ କୁଇନ୍ ରୂପେ ବିବେଚିତ ହୋଇଥିଲେ । ନାରୀର ଶ୍ରେଷ୍ଠ ଭୂଷଣ କିନ୍ତୁ ଅଙ୍ଗ ସୌନ୍ଦର୍ଯ୍ୟ ନୁହେଁ, ନାରୀର ଶ୍ରେଷ୍ଠ ଭୂଷଣ ହେଉଛି ଲାବଣ୍ୟ । ଫିତା ଲଗାଇ ସେନ୍‌ସିଟିଭ୍ ଅଙ୍ଗ ପ୍ରତ୍ୟଙ୍ଗ ସବୁ ମାପି ତାହାର ମାପ ଓ ଓଜନ ଅନୁସାରେ ବିଉଟୀ କୁଇନ୍‌ମାନଙ୍କର ସୌନ୍ଦର୍ଯ୍ୟର ପରିମାପ କରାଯାଇଥାଏ । କିନ୍ତୁ ଲାବଣ୍ୟ ସ୍ୱତଃ ଆକୃଷ୍ଟ କରିଥାଏ । ସୌନ୍ଦର୍ଯ୍ୟ ପାଇଁ ପ୍ରୟୋଜନ ପଡ଼ିଥାଏ ଆୟାସଲବ୍ଧ ପ୍ରସାଧନ; କିନ୍ତୁ ଲାବଣ୍ୟ ସ୍ୱତଃ ପ୍ରକଟିତ ହୋଇଥାଏ ।

ନାରୀର ସୌନ୍ଦର୍ଯ୍ୟ ପୁରୁଷକୁ ଅନ୍ଧ କରେ । ପ୍ରାଚୀନ ଗ୍ରୀକ୍ ପର୍ଯ୍ୟଟକ ହେରୋଡେଟସ୍ ତାଙ୍କ ଭ୍ରମଣ ବୃତ୍ତାନ୍ତରେ ଲେଖିଛନ୍ତି, "ପ୍ରାଚୀନ ଇଜିପ୍ଟର ରାଣୀ କ୍ଲିଓପେଟ୍ରାଙ୍କର ଦୈହିକ ସୌନ୍ଦର୍ଯ୍ୟ ଥିଲା ସାମାନ୍ୟ; ମାତ୍ର ତାଙ୍କ ଲାବଣ୍ୟରେ ସିଜର, ଆଣ୍ଟୋନୀଓ ନୀରୋ- ସେ କାଳର ତିନିଜଣ ଐତିହାସିକ ପୁରୁଷ ଅଭିଭୂତ ହୋଇ କ୍ଲିଓପେଟ୍ରାଙ୍କର ମାଳଞ୍ଚର ମାଳାକାର

ହୋଇପଡ଼ିଥିଲେ । ନାରୀର ସୌନ୍ଦର୍ଯ୍ୟ ତେଣୁ ତା'ର ଅଙ୍ଗ ସୌଷ୍ଠବରେ ନାହିଁ, ଅଛି ତା'ର ଅନ୍ତରର ସୌନ୍ଦର୍ଯ୍ୟରେ, ଯାହା ଲାବଣ୍ୟ ପରି ଉକୁଟି ଉଠେ । ବିଉଟୀ କୁଇନ୍‌ମାନଙ୍କ ପାଇଁ ଆକର୍ଷଣ କିନ୍ତୁ ରହିଛି ସେମାନଙ୍କର ଅଙ୍ଗ ସୌଷ୍ଠବରେ, ମାତ୍ର ଲାବଣ୍ୟରେ ନୁହେଁ । ଏମାନେ ଲାବଣ୍ୟହୀନା ପ୍ରସାଧିତା ପ୍ଲାଷ୍ଟିକ୍‌ର କଣ୍ଢେଇ ।

ଏହି ସାମାନ୍ୟ ପୁଞ୍ଜିକୁ ଭିତ୍ତିକରି ଏମାନେ କିନ୍ତୁ ଯେପରି ହଟ ଚମଟ ସୃଷ୍ଟି କରିପାରନ୍ତି, ତାର ସାଂପ୍ରତିକ ଉଦାହରଣ ଇନ୍ଲିତ । ବିଉଟୀକୁଇନ୍ ପାମେଲା ସିଂହ ଓରଫ ପାମେଲା ବୋରଡେସ୍ । ବୟସ ସତେଇଶ ବର୍ଷ । ଇଏ ଦିନେ ଗୋଟିଏ ଟାବଲୟେଡ୍ ଖବରକାଗଜରେ ଘୋଷଣା କରିଦେଲେ, ତାଙ୍କୁ କେହି ଯଦି ଦଶ ଲକ୍ଷ ପାଉଣ୍ଡ ଦେଇପାରିବ, ତା'ହେଲେ ସେ ଯାହା ସବୁ ପ୍ରକାଶ କରିବେ, ସେଥିରେ ଲଣ୍ଡନ ସହରରେ ଭୂମିକମ୍ପ ସୃଷ୍ଟିହୋଇଯିବ । ଯେଉଁ ସବୁ ବିଶିଷ୍ଟ ପାର୍ଲିଆମେଣ୍ଟ ସଦସ୍ୟ, ମନ୍ତ୍ରୀ ପୁଣି ଖବରକାଗଜ ସଂପାଦକମାନଙ୍କ ସହିତ ତାଙ୍କ ନିଶିଯାପନର ବିବରଣୀ ସେ ପ୍ରକାଶ କରିଦେବେ, ତାହା ଲଣ୍ଡନ ସହରରେ ଭୂମିକମ୍ପ ସୃଷ୍ଟି କରିଦେବ ।

କିନ୍ତୁ ଏଥିପାଇଁ କୌଣସି ଆଗ୍ରହୀ ବ୍ୟକ୍ତି ବା ଅନୁଷ୍ଠାନ ନ ମିଳିବାରୁ ସେ ବର୍ତ୍ତମାନ ଘୋଷଣା କରିଛନ୍ତି, ଲଣ୍ଡନର ପ୍ରସିଦ୍ଧ ବକିଂହାମ୍ ରାଜପ୍ରାସାଦରେ ସେ ଗୋଟିଏ ରାତ୍ରି ଯାପନ କରିଥିଲେ । ପ୍ରିନ୍ସ୍ ଫିଲିପସ୍‌ଙ୍କୁ ଏଥି ସହିତ ପରୋକ୍ଷରେ ଜଡ଼ିତ କରିବାର ଉଦ୍ୟମ ହୋଇଥିଲା । ବକିଙ୍ଗ୍‌ହାମ୍ ରାଜପ୍ରାସାଦ ପକ୍ଷରୁ ଏହାକୁ ଅକ୍ଳେଶରେ ଅସ୍ୱୀକାର କରାଯାଇ ପାରିଥାନ୍ତା । ପୁଣି ଆମ ଦେଶ ହୋଇଥିଲେ, ଆମେ ତମ୍ବା ତୁଳସୀ ଛୁଇଁ, ସୈରିଣୀ ପାମେଲାର ଏହା ଚରିତ୍ର ସଂହାରପାଇଁ ଏକ ଷଡ଼ଯନ୍ତ୍ର ବୋଲି ହଲପ୍ କରିଥାଆନ୍ତୁ । ମାତ୍ର ପାଶ୍ଚାତ୍ୟ ଦେଶମାନଙ୍କରେ ଜନସାଧାରଣ ଆଉ ଯାହା ହୁଅନ୍ତୁ ନା କାହିଁକି, ସେମାନେ ଛୋଟ ଛୋଟ କଥାରେ ମିଥ୍ୟା କହନ୍ତି ନାହିଁ । କୌଣସି କଲ୍‌ଗାର୍ଲ ଯଦି ବକିଙ୍ଗ୍‌ହାମ୍ ପ୍ରାସାଦରେ ଗୋଟିଏ ରାତି ବିତାଇ ଦେଲା, ତା'ହେଲେ ସେଥିରେ ମହାଭାରତ କଦାପି ଅଶୁଦ୍ଧ ହୋଇଗଲା ନାହିଁ । ତମ୍ବା ତୁଳସୀ ଛୁଇଁ ସେଥିରେ ହଲପ କରିବାର ପ୍ରୟୋଜନ ନାହିଁ । ପାମେଲାଙ୍କର ଏଇ ଘୋଷଣା ପରେ ବକିଙ୍ଗ୍‌ହାମ୍ ପ୍ୟାଲେସ୍ ପକ୍ଷରୁ କୁହାଯାଇଛି, ପାମେଲା ଗୋଟିଏ ରାତ୍ରି ବକିଂହାମ୍ ପ୍ୟାଲେସ୍‌ରେ ବିତାଇ ଥିଲେ, ମାତ୍ର ତାହା ଥିଲା ସଂପୂର୍ଣ୍ଣ ବୈଧ, ସେଥିରେ କିଛି ଅବୈଧତା ନଥିଲା ।

ଇତି ମଧ୍ୟରେ ପାମେଲା ହାତ ଭାଙ୍ଗି ହଂକଂରେ ଚିକିତ୍ସିତ ହେଉଛନ୍ତି । ସେ ଆରୋଗ୍ୟ ଲାଭ କରିବା ପରେ ଘଟଣା କେଉଁଆଡ଼େ ଗତି କରିବ, ତାହା ସମସ୍ତେ ନିଶ୍ଚୟ କୌତୂହଳର ସହିତ ଲକ୍ଷ୍ୟ କରିବେ ।

ମନେପଡୁଛି, କେତେବର୍ଷ ତଳେ ଦିଲ୍ଲୀରେ ଥରେ ଗୋଟିଏ ନବବର୍ଷର ପୂର୍ବ ସନ୍ଧ୍ୟାରେ ଜଣେ ବନ୍ଧୁଙ୍କ ଆମନ୍ତ୍ରଣକ୍ରମେ ତାଙ୍କ ସହିତ ଫୁର୍ତ୍ତିବାଜ ପାଇଁ ମୁଁ ଗୋଟିଏ କ୍ଲବ୍‌କୁ ଯାଇଥିଲି । ସେଇ କ୍ଲବ୍‌ରେ ସେଦିନ ଥିଲା ଏକ ବିଉଟୀ କଣ୍ଟେଷ୍ଟ । ସେଠାରେ ଜଣେ ଶୁକ୍ଳକେଶ, ବୃଦ୍ଧ, ସମ୍ଭ୍ରାନ୍ତ ଦର୍ଶନ ବ୍ୟକ୍ତି ମୁଖ୍ୟଅତିଥି ରୂପେ ଉପସ୍ଥିତ ରହିବେ ବୋଲି ମୁଁ ଆଦୌ ଆଶା କରି ନଥିଲି । ମାତ୍ର ସେଦିନ ସନ୍ଧ୍ୟାରେ ସେ କେବଳ ସେଠାରେ ମୁଖ୍ୟ ଅତିଥି ନଥିଲେ, ସେ ମଧ୍ୟ ଥିଲେ ଚୂଡ଼ାନ୍ତ ବିଚାରକ । ଆଲୋକିତ ଷ୍ଟେଜ୍ ଉପରେ ପନ୍ଦର ବର୍ଷଠାରୁ କୋଡ଼ିଏ ବର୍ଷ ବୟସ ପର୍ଯ୍ୟନ୍ତ ପ୍ରାୟ ଚଉଦ ପନ୍ଦର ଜଣ ତରୁଣୀ ସେମାନଙ୍କର ଅଙ୍ଗ ପ୍ରତ୍ୟଙ୍ଗ ପ୍ରଦର୍ଶନ କରି ମାର୍ଚ୍ଚ ପାଷ୍ଟ କରି ଚାଲିଗଲେ, ଦର୍ଶକମାନଙ୍କର ଘନ ଘନ କରତାଳି ମଧ୍ୟରେ । ଏହା ପରେ ପ୍ରଧାନ ଅତିଥି, ସେଇ ଶୁକ୍ଳକେଶ ବୃଦ୍ଧ ବ୍ୟକ୍ତି ଶ୍ରେଷ୍ଠ ସୁନ୍ଦରୀଙ୍କ ନାମ ଘୋଷଣା କରିବେ । ତାଙ୍କର ସେନ୍‌ସିଟିଭ୍ ଅଙ୍ଗ ପ୍ରତ୍ୟଙ୍ଗମାନଙ୍କର ଗୋଲେଇ ଓ ମାନ ଇତ୍ୟାଦି ଯଥାବିଧି ପାଠକରି କ୍ଲବ୍‌ର ଜଣେ କର୍ମକର୍ତ୍ତା ଶୁଣାଇ ଦେଲେ ।

ତା'ପରେ ମୁଖ୍ୟ ଅତିଥି ଷ୍ଟେଜ୍ ଉପରକୁ ଉଠିଯାଇ ଜଣେ ତରୁଣୀଙ୍କ ମୁଣ୍ଡରେ ସୌନ୍ଦର୍ଯ୍ୟ-ରାଣୀର ମୁକୁଟ ପିନ୍ଧାଇଦେବା ପରେ ଗୋଟିଏ ସଂକ୍ଷିପ୍ତ ଭାଷଣ ଦେଇ କହିଥିଲେ, "ନାରିତ୍ୱର ମହିମା ସୌନ୍ଦର୍ଯ୍ୟରେ ନାହିଁ । ନାରିତ୍ୱର ମହିମା ତା'ର ମାତୃତ୍ୱରେ । ନାରୀ ଭଗିନୀ ହୋଇପାରେ, କନ୍ୟା ହୋଇପାରେ, ପ୍ରେମିକା ହୋଇପାରେ, ଜାୟା ହୋଇପାରେ- ମାତ୍ର ତା'ର ଶ୍ରେଷ୍ଠ ପରିଚୟ ସେ ଜନନୀ ।" ତାଙ୍କର ସେଇ ସଂକ୍ଷିପ୍ତ କଥା କେଇପଦ ଆଜି ସୁଦ୍ଧା ମୁଁ ଭୁଲିପାରି ନାହିଁ ।

୧୬/୦୪/୮୯

# ମୁଡ୍ ଆସୁନାହିଁ

ଦମ୍‌ଦମ୍ ଉଡ଼ାଜାହାଜ ଘାଟୀରୁ ଡିପାରଚର୍ ଲାଉଞ୍ଜ୍‌ରେ ଗୌହାଟୀ ଫ୍ଲାଇଟ୍ ପାଇଁ ଅପେକ୍ଷା କରିକରି ଭାରି ଚିଟା ଲାଗି ଆସୁଥିଲା । କୌଣସି ଅବ୍ୟକ୍ତ କାରଣରୁ ସେଦିନ ଫ୍ଲାଇଟ୍ ଛାଡ଼ିବାରେ ବିଳମ୍ବ ଲମ୍ବି ଲମ୍ବି ଚାଲିଥିଲା । ଏହି ସମୟରେ ସେଠାରେ ହଠତ୍ ଦେଖାହେଲା ଅମିତାଭ୍ ସହିତ । ସେ ମୋଠାରୁ ବୟସରେ ଆଠ, ଦଶବର୍ଷ ସାନ । ଏକ ସମୟରେ ସେ ଖୁବ୍ ଚମତ୍କାର ଗଳ୍ପ ଲେଖୁଥିଲା । ତା'ଠାରେ ମୁଁ ପ୍ରଚୁର ସମ୍ଭାବନା ଲକ୍ଷ୍ୟ କରିଥିଲି; ମାତ୍ର କେଜାଣି କାହିଁକି ସେ ହଠାତ୍ ନୀରବ ହୋଇଗଲା ।

ଅମିତାଭ ଶୋଫା ଉପରେ ବସି କହିଲା, "ମୋତେ ବୋଧହୁଏ ଠିକ୍ ଚିହ୍ନିପାରୁ ନାହାନ୍ତି ।" ପ୍ରକୃତରେ ତାକୁ ସେତେବେଳେ ବହୁ ବର୍ଷର ବ୍ୟବଧାନ ପରେ ଚିହ୍ନିବାର ଉପାୟ ନଥିଲା । ତା' ମୁହଁର ଅଯତ୍ନ ବିନ୍ୟସ୍ତ ଦାଢ଼ି ଓ ମୁଣ୍ଡର ରୁକ୍ଷ କେଶ ତାକୁ ଚିହ୍ନିବାରେ ବାଧା ସୃଷ୍ଟି କରୁଥିଲା । ମୁଁ ସନ୍ତର୍ପିତ କଣ୍ଠରେ ଉତ୍ତର ଦେଲି, "ତୁମେ ଅମିତାଭ ନା ।" ଅମିତାଭ ମୁଣ୍ଡ ଟୁଙ୍ଗାରି ଖଣ୍ଡେ ସିଗ୍ରେଟ୍‌ରେ ନିଆଁ ଧରାଉ ଧରାଉ କହିଲା, "ଆପଣ ଠିକ୍ ଚିହ୍ନି ପାରିଛନ୍ତି ।" କିନ୍ତୁ ସେ କାହିଁକି ଇତି ମଧ୍ୟରେ ଦାଢ଼ିଟିଏ ଲମ୍ବାଇଲାଣି ବୋଲି ପଚାରିବା ପାଇଁ ଇଚ୍ଛା ହେଉଥିଲେ ସୁଦ୍ଧା ପଚାରିପାରିଲି ନାହିଁ । ଦାଢ଼ି କେତେକଙ୍କ ପକ୍ଷରେ ବଳିଷ୍ଠ ଆଶାବାଦ, ସଂକଳ୍ପ ଓ ପୌରୁଷର ପରିଚୟ ଦେଇଥାଏ । ମାତ୍ର ଆଉ କେତେକଙ୍କ ପାଇଁ ବହନ କରିଥାଏ ବ୍ୟର୍ଥତା, ପରାଜୟ ଓ ନୈରାଶ୍ୟର ସ୍ୱାକ୍ଷର । ଅମିତାଭର ଦାଢ଼ିରେ ଫୁଟି ଉଠିଥିଲା, ସେହି ପ୍ରକାର ନୈରାଶ୍ୟ ଓ ବିଷାଦ । ମୁଁ ପଚାରିଲି, "ତୁମେ କ'ଣ ଲେଖାଲେଖି ଛାଡ଼ିଦେଲ ଅମିତାଭ ? ତୁମ ଗପ ଏହା ଭିତରେ କେଉଁଠି ଆଉ ପଢ଼ିବା ପରି ତ ମୋର ମନେ ହେଉନାହିଁ ।" ଅମିତାଭ ବିଷଣ୍ଣ କଣ୍ଠରେ ଉତ୍ତର ଦେଲା, "ଆଉ ମୁଡ୍ ଆସୁନାହିଁ ।" ମୁଁ ପଚାରିଲି, "ମୁଡ୍‌ର ଅର୍ଥ କ'ଣ ? ମୁଡ୍ ପୁଣି ଆସେ କିପରି ?" ଅମିତାଭ୍ କିଛିକ୍ଷଣ ନୀରବରେ ସିଗ୍ରେଟ୍ ଟାଣିବା ପରେ କହିଲା, "ମୁଁ ବର୍ତ୍ତମାନ ଗୋଟାଏ ବେବିଫୁଡ୍ ଆଉ ସଫ୍ଟ ଡ୍ରିଙ୍କ୍

କମ୍ପାନୀର ମାର୍କେଟିଂ ଅଫିସର । ବିଭିନ୍ନ ସ୍ଥାନ ବୁଲି କମ୍ପାନୀ ପ୍ରଡ଼କ୍ଟ ସବୁର ବିକ୍ରି ପାଇଁ ମାର୍କେଟ୍ ଖୋଜି ବୁଲୁଛି । ଯେଉଁମାନଙ୍କ ସଂପର୍କରେ ଆସୁଛି, ସେମାନଙ୍କର ଚେହେରା ଆଉ କଥାବାର୍ତ୍ତା ଶୁଣିଲେ, ମା ସରସ୍ୱତୀ ସୁଦ୍ଧା ତ୍ରାହିତ୍ରାହି ଡାକ ପକାଇବେ । କଲିକତା ସିଟିର ଯେଉଁ ଅଞ୍ଚଳରେ ଛୋଟିଆ ଫ୍ଲାଟ୍ ଖଣ୍ଡେ ପାଇଛି, ସେଠାରେ ଏତେ ବର୍ଷ ରହିବା ଭିତରେ ମୁଁ ଥରକ ପାଇଁ ସୁଦ୍ଧା ଆକାଶର ଚନ୍ଦ୍ର ଦେଖି ପାରିଲି ନାହିଁ; କିମ୍ବା ଚଢ଼େଇଟିଏ ବୋବାଇବାର ଶୁଣି ପାରିଲି ନାହିଁ । ଧାଡ଼ି ବାନ୍ଧି ପିମ୍ପୁଡ଼ି ଦଳ ଖାଦ୍ୟ ସଂଗ୍ରହ ପାଇଁ ଚାଲିବା ପରି, ମୁଁ ଚାଲିଛି ଆଉ ଚାଲିଛି ସେଇ ପିମ୍ପୁଡ଼ି ଦଳରେ । ଏଥିରେ ଗପ ଲେଖିବାପାଇଁ ଆଉ ମୁଡ୍ ଆସିବ କୁଆଡୁ ?"

ଅମିତାଭ କଥାରୁ ବୁଝିଲି ସେ ଗୌହାଟୀ ଯାଉଛି । ଆସାମର କେତେକ ସହରରେ ତା' କମ୍ପାନୀ ତିଆରି ମାଲ୍ ପାଇଁ ମାର୍କେଟ୍ ସର୍ଭେ କରିବା ଉଦ୍ଦେଶ୍ୟରେ । ମୁଁ କହିଲି, "ଗୋଟିଏ କମିଟି କାମରେ ମୁଁ ଯାଉଛି ସିଲଂ । ରହିବାର ବ୍ୟବସ୍ଥା ହୋଇଛି ଉଡ୍‌ଲାଣ୍ଡ୍ ହୋଟେଲ୍‌ରେ । ଜାଗାଟି ଭାରି ଚମତ୍କାର । ଗୌହାଟୀରୁ କାର୍ ଯୋଗେ ସିଲଂ ଯିବାର ବ୍ୟବସ୍ଥା ମଧ୍ୟ ହୋଇଛି । ଚାଲ, ମୋ ସହିତ ସେଠାରେ ଦୁଇଦିନ କଟାଇ ଦେବ । ମୁଁ ବାଜି ଲଗାଇ କହିପାରେ, ହୋଟେଲ୍ ଉଡ୍‌ଲାଣ୍ଡର ପରିବେଶ ଯାହା ସେଠାରେ ଦୁଇଦିନ ରହିଲେ ତୁମେ ସେହିଠାରୁ ଗୋଟିଏ ଚମତ୍କାର ଗପ ଲେଖିପାରିବ ।"

ଅମିତାଭର ଆପତ୍ତି ନଥିଲା । ସେ ମୋ ସହିତ ଗୌହାଟୀରୁ ସିଲଂ ଯିବାପାଇଁ ରାଜି ହୋଇଗଲା । ସିଲଂ ସହରର ଉପକଣ୍ଠରେ ଗୋଟିଏ ପାତଳା ଶାଳ ଜଙ୍ଗଲ ଭିତରେ ଉଡ୍‌ଲାଣ୍ଡ ହୋଟେଲ୍ । ଏକଦା ବ୍ରିଟିଶ୍ ଟି' ଗାର୍ଡ଼ନ୍ ମାଲିକମାନଙ୍କର ଏହା ଥିଲା ରଙ୍ଗଭୂମି । ମାତ୍ର ଏବେ ତାହା ସ୍ୱଦେଶୀ ପରିଚାଳନାକୁ ଆସିଛି । ସମଗ୍ର ହୋଟେଲ୍‌ଟି କାଠରେ ତିଆରି, ଗୋଟିଏ କଟେଜ୍ ଆକାରରେ । ଶାଳବୀଥି ଭିତରେ ଉଡ୍‌ଲାଣ୍ଡ ହୋଟେଲ୍ ଦେଖାଯାଏ, ଖଣ୍ଡେ କ୍ରୀସ୍‌ମାସ୍ ଗ୍ରୀଟିଙ୍ଗ୍ କାର୍ଡ଼ ପରି ।

ଏଇ ହୋଟେଲ୍‌ରେ ମୋ ପାଇଁ ଯେଉଁ ସୁଟ୍‌ଟି ରିଜର୍ଭ ଥିଲା ସେ ସୁଇଟ୍‌ଟି ଥିଲା ଭାରି ଚମତ୍କାର । ଝରକା ବାଟେ ଶାଳବୀଥି ଭିତର ଦେଇ ଲମ୍ବି ଯାଇଥିବା ପାଦଚଲା ଗୈରିକ ବାଟ ସବୁ ଭାରି କାବ୍ୟିକ ଦିଶୁଥିଲା । ମୁଁ ସେ ସୁଟ୍‌ଟିକୁ ଅମିତାଭକୁ ଛାଡ଼ିଦେଇ ଆଉ ଗୋଟିଏ ସୁଇଟ୍‌ରେ ରହିଲି । ଯେଉଁ ଦିନ ଦୁଇଟା ସେଠାରେ ରହିଲୁ, ଲକ୍ଷ୍ୟ କଲି, ଅମିତାଭ ତା' ସୁଇଟ୍‌ରୁ ପଦାକୁ ବାହାରେ ନାହିଁ । ବୋଧହୁଏ ସ୍ଥାନଟା ତାକୁ ଭାରି ଭଲ ଲାଗିଥିଲା । ଭାବିଲି, ଅମିତାଭ ବୋଧହୁଏ ମୁଡ୍ ଫେରିପାଇଛି । ଏଇଠାରେ ନିଶ୍ଚୟ କିଛି ଗୋଟାଏ ଚମତ୍କାର ଗପ ଲେଖି ପୁଣି ତା'ର ପାଠକମାନଙ୍କୁ ଚମତ୍କୃତ କରିଦେବ । ମୁଁ ତେଣୁ ସେଥିପାଇଁ ତା'ର ନୀରବ ନିଃସଙ୍ଗତାରେ ବାଧା ଦେଲିନାହିଁ ।

ଦୁଇ ଦିନ ପରେ ସିଲଂରୁ ପୁଣି ଗୌହାଟୀ ଫେରିଲୁ । ବାଟରେ ଆସିବା ବେଳେ ଅମିତାଭକୁ କହିଲି, "କ'ଣ ଲେଖିଚ ପଢ଼ । ଶୁଣିଶୁଣି ରାସ୍ତାର ବୋର୍‌ଡମ୍‌ଟା ଅବଶ୍ୟ କଟିଯିବ ।" ଅମିତାଭ ବିଷଣ୍ଣ କଣ୍ଠରେ ଉତ୍ତର ଦେଲା, "ଲେଖିବାକୁ ବହୁ ଚେଷ୍ଟା କରି ସୁଦ୍ଧା ମୁଡ୍‌ ଆସିଲା ନାହିଁ ।"

ମୁଁ ପଚାରିଲି, "ଅମିତାଭ୍‌ ତୁମେ ଯେଉଁ ମୁଡ୍‌ କଥା କହୁଛ, ସେ ମୁଡ୍‌ ଥାଏ କେଉଁଠି, ଆସେ କେଉଁଠୁ ଓ କିପରି ?" ଅମିତାଭ ନିରବରେ କେବଳ କାର୍‌ ବାହାରକୁ ଦୂର ପର୍ବତମାଳା, ଅରଣ୍ୟ ଓ ଶସ୍ୟକ୍ଷେତ୍ର ଆଡ଼େ ଚାହିଁ ରହିଲା । ସେ ଯେପରି ଏ ପ୍ରଶ୍ନର ଉତ୍ତର ଜାଣି ନଥିଲା ।

ମୁଁ କହିଲି, "ଅମିତାଭ, ମୁଡ୍‌ ପରିସ୍ଥିତି ବା ପରିବେଶରେ ନଥାଏ । ଏହା ଥାଏ ତୁମ ନିଜ ଭିତରେ । ସେଥିପାଇଁ ପରିସ୍ଥିତି ଓ ପରିବେଶର ପ୍ରୟୋଜନ ପଡ଼ିପାରେ, ମାତ୍ର ତାହା ଅପରିହାର୍ଯ୍ୟ ନୁହେଁ । ତୁମେ ଯେତେବେଳେ କୌଣସି ଭାବବସ୍ତୁ ସହିତ ଅତି ଘନିଷ୍ଠ ଓ ମାର୍ମିକ ଭାବରେ ସଂପୃକ୍ତ ହୋଇପଡ଼ିବ, ସେତେବେଳେ ତାହା ଆପେ ଆପେ ପ୍ରକାଶ ନ ପାଇବା ପର୍ଯ୍ୟନ୍ତ ତୁମେ ସୃଷ୍ଟିର ଯନ୍ତ୍ରଣାରୁ ତ୍ରାହି ପାଇ ପାରିବ ନାହିଁ । ଏଥିପାଇଁ ଉଡ୍‌ଲାଣ୍ଡ ହୋଟେଲ୍‌ର ଶାଳବୀଥି ଅଥବା ସେଥିପାଇଁ କୌଣସି ସୈକତ-ନିବାସର ପ୍ରୟୋଜନ ନାହିଁ । କଲିକତାରେ ତୁମରି ସେଇ ଫ୍ଲାଟ୍‌ ଭିତରେ ସୁଦ୍ଧା, ମୁଡ୍‌ ସୃଷ୍ଟି ହୋଇ ପାରିଲେ, ତୁମେ ନିଶ୍ଚୟ ଲେଖି ପାରିବ !"

ଅମିତାଭ ଜୀବନରେ ଆଉ ଯେ କେବେ ଏହିପରି ସଂପୃକ୍ତି ଅଭାବରୁ ଲେଖି ପାରିବ ନାହିଁ, ସେକଥା କିନ୍ତୁ ମୁଁ ତାକୁ ଆଉ କହି ପାରିଲି ନାହିଁ । କହି ଲାଭ ବା କ'ଣ ?

୨୩/୦୪/୮୯

# ପାଗଳା-ଚୈତାଳି

ଚୈତ୍ର ଶେଷର ଉତପ୍ତ ମଧ୍ୟାହ୍ନ ବନ୍ଦ ଝରକାମାନଙ୍କ ବାହାରେ ଝାଞ୍ଜିପିଟୁଛି । ଅସ୍ୱସ୍ତିପୂର୍ଣ୍ଣ ଭାବରେ ମୁଁ ବିଛଣାରେ ପଡ଼ିପଡ଼ି ନିର୍ଜନ, ରୌଦ୍ରଦଗ୍ଧ ଦ୍ୱିପ୍ରହରରେ କପୋତର ଘୁମୁରା ଅଥବା କପୋତୀର ବିଳାପ ଶୁଣିବା ପାଇଁ କାନ [illegible]ଡ଼ିଛି । କପୋତ କପୋତୀମାନେ କେବେଠାରୁ ଅବଶ୍ୟ ମଣିଷର ସର୍ବଗ୍ରାସୀ କ୍ଷୁଧାରେ ଲୋପ ପାଇଗଲେଣି । ତଥାପି ଆଶ୍ଚର୍ଯ୍ୟ, ମୁଁ ଯେପରି କପୋତମାନଙ୍କର ଘୁମୁରା ଓ କପୋତୀମାନଙ୍କର ବିଳାପ ବେଳେବେଳେ ଶୁଣିପାରୁଛି । ଏ କିନ୍ତୁ ଯେ ମୋର ଶୁଣିବାର ଭ୍ରମ, ତାହା ବୁଝିବାପାଇଁ ବିଳମ୍ବ ଲାଗୁନାହିଁ । ସେହିପରି ପାଗଳା ଚୈତାଳିର ନିର୍ଘୋଷ ମଧ୍ୟ ମୁଁ ମୋର ବନ୍ଦ କୋଠରି ଭିତରେ ଶୁଣି ପାରୁଛି । ମାତ୍ର ତାହା ମଧ୍ୟ ମୋର ଶୁଣିବାରେ ଆଉ ଏକ ଭ୍ରମ । ଘଞ୍ଚ ଆମ୍ବତୋଟା ସବୁ କେବେଠାରୁ କାଠ କଟାଳିମାନଙ୍କର କୁରାଢ଼ୀ ଚୋଟରେ ଲୋପ ପାଇ ସାରିଲେଣି । ପାଗଳା ଚୈତାଳି ତେଣୁ ଆଉ ନାଚିବ କେଉଁଠି ? ନାଚିବାପାଇଁ ତା'ର ପ୍ରେକ୍ଷାପଟ ବା ଆଉ କାହିଁ ? ତଥାପି ଚୈତାଳି ପବନ ଏଇ ନିର୍ଧୂମ୍ ଖରାବେଳେ ନିଶ୍ଚୟ କେଉଁଠି ପାଗଳ ପରି ନାଚୁଥିବ ! ତା' କିନ୍ତୁ ମୋଠାରୁ ହଜାରେ ଯୋଜନ ଦୂରରେ । ମୁଁ କେବଳ ମନ ଭିତରେ ତା'ର ଉଦଣ୍ଡ ନାଚର ନିର୍ଘୋଷ ଶୁଣି ପାରୁଛି, ଆଉ ଆମ୍ବ ତୋଟାମାନଙ୍କରୁ ଅଣ୍ଟିଅଣ୍ଟି ଆମ୍ବ ଗୋଟାଉଛି ।

ପାଗଳା ଚୈତାଳିର ବାୟା ନାଚର ଗୋଟାଏ ନିଜସ୍ୱ ଷ୍ଟାଇଲ୍ ଅଛି । ବର୍ଷସାରା ଏଇ ପାଗଳା ଘଞ୍ଚ ଆମ୍ବତୋଟାମାନଙ୍କର ପତ୍ରଶାଖାମାନଙ୍କରେ ଘୁମେଇ ଶୋଇଥାଏ । କିନ୍ତୁ ଚୈତ୍ର ଆସିଲେ ସେ ପାଗଳ ପରି ନାଚେ ଆଉ ଗଛମାନଙ୍କୁ ନଚାଏ । ଆମ୍ବତୋଟାମାନଙ୍କରେ, ମୁରବିମାନଙ୍କର ଆକଟଟ ନମାନି ଆମ୍ବ ସାଉଁଟି ବୁଲୁଥିବା ପିଲାମାନଙ୍କୁ ବି ନଚାଏ । ଧୂ ଧୂ ଅପନ୍ତରା ବିଲ ଗହୀରରେ ଖଣ୍ଡିଆଭୂତମାନେ ମଧ୍ୟ ତା' ସାଙ୍ଗରେ ତାଳ ଦେଇ ନାଚି ଉଠନ୍ତି । ପାଷାଣୀ ଅହଲ୍ୟା ପରି ପଡ଼ି ରହିଥିବା ଧୂଳିକଣାସବୁ ଚୈତାଳିର ପାଦସ୍ପର୍ଶରେ ଜୀବନ ପାଇ ନାଚି ଉଠନ୍ତି ।

ଛଏ ପାଗଲା ଚୈତାଳୀର ନିଜସ୍ୱ ଷ୍ଟାଇଲ୍- ଯାହା ଆଦ୍ୟ ମୌସୁମୀର ଷ୍ଟାଇଲ୍‌ଠାରୁ ସ୍ୱତନ୍ତ୍ର । ମୌସୁମୀରେ ଗଛ ସବୁ ଆପେ ଆପେ ପାଗଳ ପରି ନାଚନ୍ତି ନାହିଁ । ମୌସୁମୀ ଯେପରି ବେତରେ ସେମାନଙ୍କୁ ପିଟିପିଟି ନଚାଏ । ଚୈତାଳିର ଉଦ୍ଦଣ୍ଡତା ମୌସୁମୀରେ ନଥାଏ । ମୌସୁମୀର ନାଚରେ ତ୍ରାହିତ୍ରାହି ଡାକ ପଡ଼େ । କିନ୍ତୁ ଚୈତାଳିର ନାଚରେ ମନ ଭିତରେ ଆପେ ଆପେ ଚେଇଁ ଉଠେ ମଧୁର ହଲ୍ଲୀଷକ !

ବିଛଣାରେ ବିନିଦ୍ର ଆଖିରେ ପଡ଼ିପଡ଼ି ମୁଁ ଏହିପରି ସବୁ ଭାବି ଯାଉଛି, ଆଉ ତା'ରି ଭିତରେ ମୋର ହଜିଲା ଅତୀତର ବହୁ ସ୍ମୃତିକୁ ଯେପରି ଗୋଟାଇ ବୁଲୁଛି । ହଠାତ୍ ଶବ୍ଦକରି ମୁଣ୍ଡ ଉପରର ଝରକାଟା ଖୋଲିଗଲା । ଝରକାଟା ବୋଧହୁଏ ଭିତରୁ ଭଲ ଭାବରେ ବନ୍ଦ ହୋଇ ନଥିଲା । ଖୋଲା ଝରକା ବାଟେ ହୁ ହୁ ହୋଇ ମାଡ଼ି ଆସିଲା, ଦମକା ଦମକା ଉତ୍ତପ୍ତ ଚୈତାଳି, ଆଉ ତା' ସାଙ୍ଗକୁ ଧୂଳି, ଶୁଖିଲାପତ୍ର ଆଉ କାଠିକୁଟା । ଝରକା ବନ୍ଦ କରିବାପାଇଁ ସେଠାରେ କେହି ନଥିଲେ, କିମ୍ବା ସେଥିପାଇଁ ଭୃତ୍ୟକୁ ଡାକିଲି ନାହିଁ । ଚାହୁଁ ଚାହୁଁ ମୋର ବିଛଣା ପାଗଳା ଚୈତାଳିର ମୁଠାମୁଠା ଶୁଖିଲାପତ୍ର, କାଠିକୁଟା ଆଉ ଧୂଳି ବାଲିରେ ଭର୍ତ୍ତି ହୋଇଗଲା । ମନ୍ଦ ଲାଗୁ ନଥିଲା ସେଇ ଅନୁଭୂତି । ସିମେଣ୍ଟର ଜଙ୍ଗଲ ଭିତରେ ମୁଁ ଯେଉଁ ପାଗଳା ଚୈତାଳିକୁ ଖୋଜି ବୁଲୁଥିଲି, ସେ ଯେପରି ଅନାହୂତ ଭାବରେ ହଠାତ୍ ସେଠାକୁ ଆସିଗଲା, ମୋତେ ସଙ୍ଖୋଳିବା ପାଇଁ ! ମୋତେ ଟାଣି ଓଟାରି ମୋର ବିଛଣାକୁ ନେଇ ଯାଇଥିଲା ବିସ୍ମୃତ କୈଶୋରର ଘଞ୍ଚ ଆମ୍ବତୋଟାମାନଙ୍କ ଭିତରକୁ । ମୁଁ ମନେ ମନେ ଉପଭୋଗ କରୁଥିଲି, ଚୈତାଳିର ପାଗଳାମୀକୁ ।

ଏଇ ସମୟରେ ହଠାତ୍ ସେଥିରେ ପୂର୍ଣ୍ଣଚ୍ଛେଦ ପଡ଼ିଗଲା । ମୋର ଭୃତ୍ୟ ଦଉଡ଼ି ଆସି ଝରକାଟିକୁ ବନ୍ଦ କରିଦେଇ ଚିତ୍କାର କଲା- ଧୂମାଳ, ଧୂମାଳ !

ମୋର ବିଛଣା ଉପରେ ପଡ଼ି ରହିଥିଲା କେବଳ ପାଗଳା ଚୈତାଳୀର ପାଦଚିହ୍ନ ।

୩୦/୦୪/୮୯

# ହୃଦଯନ୍ତ୍ର ଓ ହୃଦୟ

ଦଶହରା ସପ୍ତମୀ ସଂଧ୍ୟା । ମୁଁ ଏକୁଟିଆ ବାରଣ୍ଡାରେ ଖଣ୍ଡେ ଡେକ୍ ଚେୟାର୍ ଉପରେ ବସି, ପାଖରେ କେଉଁଠି ଗୋଟିଏ ପୂଜା ମଣ୍ଡପରେ ସନ୍ଧ୍ୟା ଆଳତି ବେଳେ ଢୋଲ ବାଜା ଆଉ ମହୁରି, ତନ୍ମୟ ହୋଇ ଶୁଣୁଛି । କୃଷ୍ଣ[illegible] ଗଛ ଉପରେ ଶୁକ୍ଳ ସପ୍ତମୀ ତିଥିର ଜହ୍ନ ଆଉ ଢୋଲ ମହୁରିର ସ୍ୱର ଝଙ୍କାର ମୋ ମନରେ ପ୍ରତ୍ୟୟ ଆଣି ଦେଉଛି, ହଁ ଶରତ ଲକ୍ଷ୍ମୀ ପ୍ରକୃତରେ ଆମର ଏଇ ଧୂଳି ଧୂସରିତ ସହରକୁ ଆସିଛନ୍ତି, ଦିନ କେତେଟା ପାଇଁ !

ଏଇ ସମୟରେ, ଆମ ଘରେ ଯେଉଁ ବୁଢ଼ୀଟି ଦୁଇଓଳି ବାସନ ମାଜେ, ଆଉ ଘର ଓଳାଏ, ସିଏ ଧୀରେଧୀରେ ପାହାଚରେ ବାରଣ୍ଡା ଉପରକୁ ଉଠୁଥିଲା ଗୋଟିଏ ଛାୟାମୂର୍ତ୍ତି ପରି, ହାତରେ ଗୋଟିଏ ପଲିଥିନ୍ ବ୍ୟାଗ୍ । ସେତେବେଳେ ଆମ ଘରକୁ ଅକସ୍ମାତ୍ ସେ କାହିଁକି ଆସିଲା, ବୁଝି ପାରିଲି ନାହିଁ । ଭାବିଲି, ବୋଧହୁଏ ଆସିଥିବ ପୂଜା ବକ୍‌ସିସ୍ ପାଇଁ । କିନ୍ତୁ ଗତକାଲି ତ ସେ ଅଗ୍ରୀମ ଗୋଟିଏ ମାସର ଦରମା ଓ ପରିବାରର ସମସ୍ତଙ୍କଠାରୁ ପୂଜା ବକ୍‌ସିସ୍ ଆଉ ଦୁଇ ଦିନ ଛୁଟି ନେଇ ଯାଇଥିଲା ! ଆଜି ସନ୍ଧ୍ୟାବେଳେ ପୁଣି କାହିଁକି ?

ଡ୍ରଇଁ ରୁମ୍‌ରେ ମୋ ସ୍ତ୍ରୀ, ପୁତ୍ରବଧୂ ଓ ପିଲାମାନେ ବସି ଟି.ଭି. ଦେଖୁଥିଲେ । କାନ ପାରି ଶୁଣିଲି, ବୁଢ଼ୀ ସେମାନଙ୍କ ସହିତ କ'ଣ ଗୋଟାଏ ଗୁରୁତର ଆଲୋଚନା ଆରମ୍ଭ କରିଦେଇଛି । ଆଲୋଚନାର ବିଷୟବସ୍ତୁ କିଛି ଶୁଣିପାରି ମୁଁ ଯାହା ବୁଝିଲି, ସେଥିରୁ ଜାଣିଲି, ଖଣ୍ଡେ ଶାଢ଼ି ଉପରେ ଚାଲିଛି ସେଇ ଆଲୋଚନା । ବୁଢ଼ୀ ତା' ବୋହୂପାଇଁ ଖଣ୍ଡେ ସମ୍ବଲପୁରୀ ନାଲିଧଡ଼ିଆ ମଠା ଶାଢ଼ି କିଣିଥିଲା, ପୂଜାରେ ତାକୁ ଦେବ ବୋଲି, ମାତ୍ର ବୋହୂ ମନକୁ ସେ ଶାଢ଼ି ଆଦୌ ପାଉନାହିଁ । ତା' ବୋହୂ କଟାଳ କରୁଛି, ଝିଅକୁ ଭଲ ଶାଢ଼ି ଦେଲ, ଆଉ ମୋ ପାଇଁ ଏମିତିଆ ଖଣ୍ଡେ ବେରଙ୍ଗ ଶାଢ଼ି । ବୁଢ଼ୀ କହୁଛି, "ମା', ଝିଅକୁ ଦେଇଛି ଦେଢ଼ଶ ଟଙ୍କିଆ ଖଣ୍ଡେ ସିଲ୍‌କ୍ ଶାଢ଼ି । ଆଉ ବୋହୂ ପାଇଁ

କିଣିଲି ଏ ଶାଢ଼ି ଚାରିଶ ଟଙ୍କା ଦେଇ । ଦେବୀ ଦେଖିବାକୁ ଯିବାବେଳେ ଏ ଶାଢ଼ି ତାକୁ ମାନନ୍ତା । ହେଲେ ବୋହୂ ମନକୁ ଏ ଶାଢ଼ି ପାଉ ନାହିଁ ।"

ସମସ୍ତେ ତାକୁ ବୁଝାଇଲେ, ତୋ ବୋହୂକୁ କହ, ଇଏ ଦାମିକା ଶାଢ଼ି । ଝିଅକୁ ଯେଉଁ ଶାଢ଼ି ଦେଇଛୁ, ତା' ତୁଳନାରେ ଏ ଶାଢ଼ି ଅନେକ ଭଲ, ଅନେକ ଦାମୀ । ବୁଢ଼ୀ କହିଲା, "ବୋହୂକୁ ଯେତେ ବୁଝାଇଲେ ବି ସିଏ ବୁଝୁନାହିଁ ।"

ମୋ ସ୍ତ୍ରୀ କହିଲେ, "ତା'ହେଲେ ଏ ଶାଢ଼ି ବଦଳାଇ ଦେଇ ତୋ ଝିଅ ପାଇଁ ଯେମିତି ରଙ୍ଗ ବେରଙ୍ଗ ଶାଢ଼ି ଖଣ୍ଡେ କିଣିଛୁ, ସେମିତିଆ ଶାଢ଼ି ଖଣ୍ଡେ କିଣି ଦେଉନୁ, କଥା ସରିଯିବ । କିନ୍ତୁ ଦୋକାନୀ ଫେରାଇ ନେବ ତ ?" ବୁଢ଼ୀ କହିଲା, "ତାଙ୍କ ଘରେ ବି ମୁଁ କାମ କରେ । ଫେରେଇ ଦେଲେ ଫେରେଇ ନେବେ ।" ମୋର ସ୍ତ୍ରୀ ପଚାରିଲେ, "ତୁ ଏତେ ଟଙ୍କା ପାଇଲୁ କେଉଁଠୁ ?" ବୁଢ଼ୀ ଉତ୍ତର ଦେଲା, "ବର୍ଷସାରା ଖଟି ଖଟି ଯେତେ ଛଣ୍ଡି ରଖିଥିଲି ଆଉ ଯାହା ବକ୍‌ସିସ୍ ପାଇଲି, ସବୁ ମିଶେଇ ବୋହୂ ପାଇଁ ଏ ଶାଢ଼ି ଖଣ୍ଡକ କିଣିଲି । ହେଲେ, ଏ ଶାଢ଼ିକୁ ସିଏ ପସନ୍ଦ କରୁନାହିଁ ।" ବୁଢ଼ୀ ତା'ପରେ ଚାଲିଗଲା । ମଠା ଶାଢ଼ି ଫେରାଇ ଖଣ୍ଡେ ଶସ୍ତା ସିଲ୍‌କ୍ ଶାଢ଼ି କିଣିବାପାଇଁ । ପାହାଚରେ ଓହ୍ଲେଇବା ବେଳେ ବୁଢ଼ୀ ମନକୁ ମନ କହୁଥିଲା, "ହଉ, ଯଉ ପଇସା ବଳିବ, ସେଥିରେ ନାତି ନାତୁଣୀ ଦି'ଟାଙ୍କ ପାଇଁ ପେଣ୍ଟ ଜାମା କିଣି ଆଣିବି ।"

ନବମୀ ଦିନ ସକାଳେ ବୁଢ଼ୀର ଛୁଟି ସରିବା ପରେ ବୁଢ଼ୀ ହାତରେ ଛାଞ୍ଚୁଣୀ ଧରି ମୋ ଘର ଓଳାଇବା ପାଇଁ ଆସିଲା। ସେତେବେଳେ ମୁଁ ଚୁପ୍‌ଚାପ୍ ବସି ଚା' ପିଉଥିଲି । ବୁଢ଼ୀ ଅଣ୍ଟା ନୁଆଁଇ ଘର ଓଳାଇବା ବେଳେ, ସିଏ ପିନ୍ଧିଥିବା ଚିରା ଶାଢ଼ି ତଳେ ତା'ର ନେନାଏ କଳା ପିଠି ମୋ ଆଖିରେ ପଡ଼ିଲା । ଅନୁମାନ କଲି, ତା'ର ଫୁଙ୍ଗୁଳା ପିଠିର ପ୍ରାୟ ଚାରି ଆଙ୍ଗୁଳି ଦେଖାଯାଉଥିଲା । କିନ୍ତୁ ସେଇ ଚାରି ଆଙ୍ଗୁଳି ଫୁଙ୍ଗୁଳା ପିଠିରେ ମୁଁ ଦେଖିପାରିଲି, ଅମାପ ଚଉଡ଼ାର ହୃଦୟ । ଆମେ ଏମାନଙ୍କ ପ୍ରତି ଅନୁକମ୍ପା ପ୍ରଦର୍ଶନ କରିଥାଉ । ଏମାନେ ସବୁ ରହିଛନ୍ତି ଦାରିଦ୍ର୍ୟର ସୀମାରେଖା ତଳେ, କିନ୍ତୁ ଏମାନଙ୍କ ହୃଦୟ ଐଶ୍ୱର୍ଯ୍ୟ କେତେ ଅମାପ, ତାହା ମୋତେ ବିସ୍ମିତ କରିଦେଲା । ମୋର ମନେହେଲା, ଆମର ସବୁ ହୃଦ୍‌ଯନ୍ତ୍ର ଅଛି ଠିକ୍; ଯାହାକୁ ଇ.ସି.ଜି. ଲଗାଇ ମାପିହୁଏ ଓ ତା'ର ଗତିବିଧି ଲକ୍ଷ୍ୟ କରିହୁଏ । କିନ୍ତୁ ଏଇ ଅମାପ ହୃଦୟର ଦୈର୍ଘ୍ୟ ପ୍ରସ୍ଥ ମାପିବାପାଇଁ, ତା'ର ତରଙ୍ଗର ଗତିବିଧି ବୁଝିବା ପାଇଁ, ବିଜ୍ଞାନ ତଥାପି ଏ ପର୍ଯ୍ୟନ୍ତ କୌଣସି ଯନ୍ତ୍ର ଆବିଷ୍କାର କରି ପାରିଲା ନାହିଁ । ପାରିବ ବି ନାହିଁ ।

୦୭/୦୫/୮୯

# ଟ୍ରାଜେଡ଼ିର ନାମ କୃଷ୍ଣଚୂଡ଼ା

ଆଜିକୁ ୩୦ ବର୍ଷ ତଳେ ଏଇ ସହରରେ ଖଣ୍ଡେ ଘର ତୋଳିବା ପାଇଁ ସ୍ଥିର କରି ମୁଁ ଯେଉଁଦିନ ଜମି କିଣି, ପ୍ରଥମେ ପାଚେରି ବୁଲାଇଲି, ସେଦିନ ଘର ଆଗରେ ଗୋଟିଏ କୃଷ୍ଣଚୂଡ଼ା ଗଛ ଲଗାଇବାପାଇଁ ସ୍ଥିର କରିଥିଲି । ତା' ପରେ ନର୍ସରୀରୁ ଗୋଟିଏ କୃଷ୍ଣଚୂଡ଼ା ଚାରା ଆଣି ବେଶ୍ ଆଡ଼ମ୍ବରରେ ଘର ଆଗରେ ଲଗାଗଲା । ନର୍ସରୀ ବାଲା କହିଥିଲା, ଦୁଇ ବର୍ଷରେ ଫୁଲ ଫୁଟିବ । କୃଷ୍ଣଚୂଡ଼ା ସହିତ ମୋର ଏକ ଆବେଗିକ ସଂପର୍କ ସ୍ଥାପିତ ହୋଇଥିଲା ଏହାର କେତେ ବର୍ଷ ପୂର୍ବରୁ ଅକସ୍ମାତ୍ ଥରେ, ଆଷାଢ଼ର ଏକ ମେଘ ମେଦୁର ଅପରାହ୍ଣରେ । ସେହିଦିନୁ, ମୋ ନିଜ ଅଗଣାରେ ପୁଷ୍ପିତ କୃଷ୍ଣଚୂଡ଼ା ପାଇଁ ମୁଁ ପ୍ରକୃତରେ ଭାରି ବ୍ୟାକୁଳ ଥିଲି ।

ଗଛଟି ସେବା ପରିଚର୍ଯ୍ୟା ପାଇ ବଢ଼ିବାରେ ଲାଗିଲା । ଦୁଇବର୍ଷ ପରେ କେବେ ରକ୍ତିମ ବିଳାସରେ ମୋର ଅଗଣା ହସିଉଠିବ, ସେଇ ଦିନଟି ପାଇଁ ଥିଲା ବ୍ୟାକୁଳ ପ୍ରତୀକ୍ଷା । କିନ୍ତୁ ବର୍ଷ ପରେ ବର୍ଷ ଗଡ଼ିଗଲା, ଫୁଲ ଆଉ ଫୁଟିଲା ନାହିଁ । ଗଛଟି ପୁଣି ହୋଇ ଉଠିଲା କିମ୍ଭୂତ । ଏହାର ଅଙ୍ଗଭଙ୍ଗୀରେ ନର୍ତ୍ତକୀର ଲାଳିତ୍ୟ ନଥିଲା, କିମ୍ବା ଶାଖା ପ୍ରଶାଖାମାନଙ୍କର ଲୀଳାୟିତ ବାହୁରେ ଛନ୍ଦ ନଥିଲା। ବୃଷାଳ ଆକାରରେ ଏହା ବଢ଼ିବାରେ ଲାଗିଲା । ଦିନେ ଆବିଷ୍କାର କରାଗଲା, ଏହାର ପତ୍ର ସବୁ କୃଷ୍ଣଚୂଡ଼ାର ପତ୍ର ନୁହେଁ । ଏହା ଅନ୍ୟ କୌଣସି ଗଛ । ଏଥିପାଇଁ ଦାୟିତ୍ୱ ନିରୂପଣ କରିବାକୁ ଯାଇ ପରିବାରର ଦାମ୍ପତ୍ୟ କଳହ ମଧ୍ୟ ଲାଗିଲା । ଅବଶେଷରେ ସ୍ଥିର କରାଗଲା, ଗଛଟିକୁ ହାଣିଦେଇ ସେହି ସ୍ଥାନରେ ଗୋଟିଏ କୃଷ୍ଣଚୂଡ଼ା ଗଛ ଲଗାଇବାପାଇଁ । ସେଥିପାଇଁ ପ୍ରସ୍ତୁତି ଚାଲିଛି, ଏଇ ସମୟରେ ଦିନେ ଗୋଟିଏ ଚୈତ୍ର ସକାଳେ ଦେଖାଗଲା, ଗଛଟାରେ ଛୋଟ ଛୋଟ ହଳଦିଆ ଫୁଲ ସବୁ ଫୁଟିବା ପାଇଁ ଆରମ୍ଭ କରିଛି । ଚାହୁଁ ଚାହୁଁ ଦିନ କେତେଟା ମଧ୍ୟରେ ରାଶିରାଶି ହଳଦିଆ ଫୁଲର ଆଭରଣରେ ଗଛର ପତ୍ରସବୁ ସୁଦ୍ଧା ଲୁଚିଗଲା । ସେ ରାସ୍ତାରେ ଯିବା ଆସିବା କରୁଥିବା ଲୋକମାନେ ସୁଦ୍ଧା ଗଛର ପୁଷ୍ପିତ ଶୋଭା ଦେଖି ଦଣ୍ଡେ ଅଟକି

ଯାଉଥିଲେ । ଗଛଟି କ୍ରମେ ସେ ଅଞ୍ଚଳରେ ହୋଇଉଠିଲା, ଗୋଟିଏ 'ଲାଣ୍ଡମାର୍କ' ଓ ଅଚ୍ଛଣା ଲୋକଙ୍କ ପାଇଁ ମୋ ଘରର ଠିକଣା । ଏ ଫୁଲର ବିଶେଷତ୍ୱ ହେଉଛି ସକାଳକୁ ରାଶିରାଶି ଫୁଲ ଫୁଟେ, ଆଉ ତଳେ ସେଇପରି ରାଶିରାଶି ସଂଖ୍ୟାରେ ଝରିପଡ଼େ । ଚୈତାଳି ପବନରେ ଝଡ଼ା ଫୁଲ ସବୁ ଉଡ଼ିଆସି ଅଗଣା ଓ ବାରଣ୍ଡା ଉପରେ ବିଛାଇ ଦିଏ ଯେପରି ଗାଢ଼ ହଳଦୀ ରଙ୍ଗର କାର୍ପେଟ୍ । ନର୍ସରୀରୁ ଏ ଗଛଟି କିଏ ବାଛି କିଣିଥିଲା ବୋଲି ଏକ ସମୟରେ ଅନେକ ଦାମ୍ପତ୍ୟ କଳହ ଲାଗୁଥିଲା । କିନ୍ତୁ ବର୍ତ୍ତମାନ ଦାମ୍ପତ୍ୟ କଳହ ଲାଗିଲା ଭିନ୍ନ କାରଣରୁ । ଅର୍ଥାତ୍ ଗଛର ଚାରାଟିକୁ କିଏ ପ୍ରଥମେ ଚିହ୍ନି କିଣିଥିଲେ । ସେଥିପାଇଁ ଲାଗିଲା ବିବାଦ । ଅନୁସନ୍ଧାନରୁ ପରେ ଜଣାପଡ଼ିଲା, ଗଛଟିର ନାମ ରାଧାଚୂଡ଼ା । କିନ୍ତୁ ରାଧାଚୂଡ଼ାରେ ଥିଲା ଲାବଣ୍ୟ, ମାତ୍ର କୃଷ୍ଣଚୂଡ଼ାର ଆବେଗ ଉଚ୍ଛ୍ୱସିତ ରକ୍ତିମ ବିଳାସ ନଥିଲା । ମନଟା ମୋର ସେଥିପାଇଁ ଅନେକ ସମୟରେ କୃଷ୍ଣଚୂଡ଼ାପାଇଁ ବ୍ୟାକୁଳ ହେଉଥିଲା । ଏଇ ସମୟରେ ଦିନେ ଦେଖାଗଲା, ଗଛଟି ପାଚେରିକୁ ଫଟାଇ ସାରିଲାଣି । ଚାହୁଁଚାହୁଁ ଏହା ଅଗଣାକୁ ମଧ୍ୟ ଫଟାଇବା ଆରମ୍ଭ କଲା । ଇଞ୍ଜିନିୟର ପରାମର୍ଶ ଦେଲେ ଗଛଟିକୁ ପୂରା କାଟି ନଦେଲେ କ୍ରମେ ଏହାର ଚେର ମାଡ଼ି ଘର ବାରଣ୍ଡାକୁ ମଧ୍ୟ ଫଟାଇ ଦେବ । ଅଗତ୍ୟା ଗଛଟିକୁ କାଟି ତା'ର ମୂଳଟିକୁ ସୁଦ୍ଧା ତାଡ଼ି ଦିଆଗଲା । ତା'ପରେ ସ୍ଥିର କରାଗଲା, ଫାଟକର ଦୁଇକଡ଼ରେ ଲାଗିବ ଦୁଇଟି କୃଷ୍ଣଚୂଡ଼ା । ଇତି ମଧ୍ୟରେ କେତେ ବର୍ଷ ପାଇଁ ମୁଁ ବାହାରକୁ ଚାଲିଯାଇଥିଲି । ଫେରି ଆସିବା ପରେ ଦେଖିଲି, ଫାଟକର ଦୁଇ ପାଖରେ ଦୁଇଟି କୃଷ୍ଣଚୂଡ଼ା ଗଛ ବେଶ୍ ହୃଷ୍ଟପୁଷ୍ଟ ହୋଇ ବଢ଼ିଉଠିଛି । କିନ୍ତୁ ଫୁଲ ଫୁଟୁ ନାହିଁ । ଟେଲିଫୋନ୍ ବାଲା, ଇଲେକ୍‌ଟ୍ରିବାଲା ଗଛ ବିରୁଦ୍ଧରେ ନାଲିସ କରି ବାରମ୍ବାର ଏହାର ଶାଖା ପ୍ରଶାଖା ସବୁ କାଟି ପକାଉଛନ୍ତି । ମୁଁ ଆପତ୍ତି କରୁନାହିଁ । ବରଂ ଗଛ ଦୁଇଟିକୁ ହାଣି ଦେବାପାଇଁ ମୁଁ ମନେମନେ ପ୍ରାୟ ଗୋଟିଏ ନିଷ୍ପତ୍ତି ନେଇ ସାରିଛି । ଏଇ ସମୟରେ ଦିନେ ଅପ୍ରେଲ୍ ମାସର ସକାଳେ ମୋର ଭୃତ୍ୟ ସକାଳୁ ଉଠି ଫୁଲଦାନି ସଜାଇବାପାଇଁ ବାହାରୁ କିଛି ଫୁଲ ନେଇ ଆସିଲା । ତା'ପରେ ମୋ ହାତରେ ଧରାଇଦେଲା, ଗୁଡ଼ାଏ ଲାଲ ଲାଲ ଫୁଲ । ମୋର ଦୃଷ୍ଟି ଶକ୍ତି ହଠାତ୍ କ୍ଷୀଣ ହୋଇଯାଇଥିବାରୁ ଏହା କି ଫୁଲ ଚିହ୍ନିପାରିଲି ନାହିଁ । ପଚାରିବାରୁ ଭୃତ୍ୟ କହିଲା, "ଆମ ଗଛରେ ଟୋକେଇ ଟୋକେଇ କୃଷ୍ଣଚୂଡ଼ା ଫୁଟିଛି । ଭାରି ଶୋଭା ଦିଶୁଛି । ଦେଖିବେ ଆସନ୍ତୁ ! ମୁଁ ନୀରବରେ ଗୋଟିଏ ଦୀର୍ଘଶ୍ୱାସ ପକାଇ କୃଷ୍ଣଚୂଡ଼ାର ସ୍ତବକ ସବୁ ତାକୁ ଫେରାଇ ଦେଇ କହିଲି, "ଆଜି ଆଉ ମୋ ପାଇଁ କୃଷ୍ଣଚୂଡ଼ାର ପ୍ରୟୋଜନ ନାହିଁ ।"

*୧୪/୦୫/୮୯*

# ରାଘବ ବିଳାସ

ଅଣସର ଗଲାଣି । କିନ୍ତୁ ଗୁଳୁଗୁଳି ବଢ଼ିଛି । ଖରାବେଳେ ସେଇ ଗୁଳୁଗୁଳି ଭିତରେ ମୁଁ ଆଖିବୁଜି ଟିକିଏ ବିଶ୍ରାମ ନେବାର ଉପକ୍ରମ କରୁଛି; ଏଇ ସମୟରେ ଅର୍ଦ୍ଦଳି, ଜଣେ ସାକ୍ଷାତପ୍ରାର୍ଥୀଙ୍କ ସ୍ଲିପ୍‌ଟିଏ ଆଣି ମୋ ହାତରେ ଧରାଇ ଦେଲା । ପ୍ରଚଣ୍ଡ ବିରକ୍ତି ଚାପି ସ୍ଲିପ୍‌ଟିକୁ ପଢ଼ି ଦେଖିଲି, ସେଥିରେ ଲେଖାଯାଇଛି, କବି ଗିରିଧାରୀ ପୁହାଣ, ଗ୍ରାମ-କଣ୍ଟାବିନ୍ଧା, ଜି- କଟକ । ଗିରିଧାରୀ ପୁହାଣ ନାମଟା ମୋତେ ଅକାବ୍ୟିକ ଲାଗିଲା । ମୀରାଙ୍କ ଭଜନରେ ଗିରିଧର ନାମଟି ବରଂ ଅଧିକ କାବ୍ୟିକ ହୋଇଉଠିଛି । କବିଙ୍କ ନାମ ଗିରିଧର ହୋଇଥିଲେ, ସେଇ ଅସ୍ୱସ୍ତିକର ମୁହୂର୍ତ୍ତରେ ସୁଦ୍ଧା ମୁଁ ତାଙ୍କୁ ନିଶ୍ଚୟ ସେତେବେଳେ ଡାକିଥାନ୍ତି । ଗାଁ ନା ପୁଣି କଣ୍ଟାବିନ୍ଧା । ମୁଁ ଈଷତ୍ ବିରକ୍ତ କଣ୍ଠରେ କହିଲି, କବିଙ୍କୁ କହିଦିଅ ମୋର ସାକ୍ଷାତ ସମୟ ଚାରିଟାରୁ ସାତଟା ପର୍ଯ୍ୟନ୍ତ । ବାହାରେ ସାଇନ୍‌ବୋର୍ଡ଼ ସୁଦ୍ଧା ଝୁଲାଇ ଦେଇଛି । ସେ ଚାରିଟାରୁ ସାତଟା ଭିତରେ କେବଳ ମୋର ସାକ୍ଷାତ ପାଇବେ । ଅର୍ଦ୍ଦଳୀ କବି ଗିରିଧାରୀ ପୁହାଣଙ୍କ ପକ୍ଷରୁ ଓକିଲାତି କରି କହିଲା, "ତାଙ୍କ ଘର ଏଠୁ ନଅ ଟଙ୍କାର ବାଟ । ଏଠି ରହିବାପାଇଁ ତାଙ୍କର ସୁବିଧା ନାହିଁ । ଖାସ୍ ଆପଣଙ୍କ ସାଙ୍ଗରେ ଦେଖାକରିବା ପାଇଁ ଆସିଛନ୍ତି । ଚାରିଟା ବେଳେ ଗାଁକୁ ବସ୍ ।" ଅଗତ୍ୟା କବିଙ୍କୁ ସେଠାରୁ ଆଣିବା ପାଇଁ ମୁଁ ଅର୍ଦ୍ଦଳୀକୁ କହିଲି ।

କବିଙ୍କର ପ୍ରକୃତରେ କବିଆଳୀ ଚେହେରା । ବୟସ ବୋଧହୁଏ ପଚାଶ ଛୁଇଁଛି । ମୁଣ୍ଡରେ ଘଞ୍ଚ ବାବୁରି ବାଳ । ଧୋତି ଉପରେ ପିନ୍ଧିଛନ୍ତି ଅଧା ମଇଳା ଟେରିକଟ ପଞ୍ଜାବୀ । କାନ୍ଧରେ ଚଉଡ଼ା ଚଦର ଓ ଶାନ୍ତିନିକେତନୀ ଝୁଲି । କବିଙ୍କୁ ବସିବାପାଇଁ ଚୌକିଟିଏ ଦେଲି ଓ ହଠାତ୍ ଏ ଅସମୟରେ ତାଙ୍କର ଶୁଭାଗମନର ଉଦ୍ଦେଶ୍ୟ ପଚାରିଲି । କବି ପ୍ରଥମେ ଅଭିଯୋଗ କରି କହିଲେ, "ଦୁଇ ଦୁଇ ଖଣ୍ଡ ଚିଠି ଆପଣଙ୍କ ଏକାଡେମୀ ଅଫିସ୍‌କୁ ପଠାଇଲି । ମାତ୍ର ଉତ୍ତର ନ ପାଇବାରୁ ନିଜେ ଆସିଲି ।" ମୁଁ କହିଲି, "ଏତେ ଶୀଘ୍ର ଉତ୍ତର ପାଇଥିଲେ, ମୁଁ କ'ଣ ଆପଣଙ୍କ ଦର୍ଶନର ସୌଭାଗ୍ୟ ପାଇ ପାରିଥାଆନ୍ତି । ପୁଣି

ଏଇ ନିର୍ଧୂମ୍ ଖରାବେଳେ । ତେବେ କେଉଁ ବିଷୟରେ ଲେଖିଥିଲେ ?" କବି ଝୁଲାମୁଣି ଭିତରୁ ପଲିଥିନ୍ କାଗଜରେ ମୋଡ଼ା ଗୋଟିଏ ପ୍ୟାକେଟ୍ ଭିତରୁ ଖଣ୍ଡେ ପାଣ୍ଡୁଲିପି କାଢ଼ି ମୋ ହାତରେ ଧରାଇ ଦେଇ କହିଲେ, "ଏଇ କାବ୍ୟର ପ୍ରକାଶ ପାଇଁ ମୁଁ ଏକାଡେମୀକୁ ଅନୁରୋଧ କରି ପତ୍ର ଲେଖିଥିଲି ।" ପାଣ୍ଡୁଲିପି ଉପରେ କାବ୍ୟର ଶୀର୍ଷକ ଲେଖା ହୋଇଛି, 'ରାଘବ ବିଳାସ' । କବି କହିଲେ, "ଭଞ୍ଜ କବି 'ବୈଦେହୀଶ ବିଳାସ' ଲେଖିଲେ ବ-ଶୃଙ୍ଖଳାରେ । ମୁଁ 'ରାଘବ ବିଳାସ' ଲେଖିଛି ର-ଶୃଙ୍ଖଳାରେ ।" ତା'ପରେ ମୋ ହାତରୁ ପାଣ୍ଡୁଲିପିଟି ଟାଣି ନେଇ ସୁରମେଳି ଗୋଟିଏ ଛାନ୍ଦ ଗାଇବାକୁ ଆରମ୍ଭ କଲେ। କବି ଗିରିଧାରୀ ପୁହାଣ ମନ୍ଦ ଲେଖି ନାହାନ୍ତି । ପଦଲାଳିତ୍ୟ, ଉପମା, ଉପମେୟର ବିନ୍ୟାସ, ଯମକ ଓ ଅନୁପ୍ରାସ ପ୍ରଭୃତି ମନ୍ଦ ନଥିଲା । କବିଙ୍କୁ ମୁଁ କହିଲି, "କାବ୍ୟଟି ତ ସୁନ୍ଦର ଲାଗୁଛି । କିନ୍ତୁ ଏକାଡେମୀ ଏହାକୁ ଛାପିବ ବୋଲି ମୋର ବିଶ୍ୱାସ ହେଉନାହିଁ ।" କବି ଆହତ କଣ୍ଠରେ ପଚାରିଲେ, "କାହିଁକି, ଆମେ କ'ଣ କବି ନୋହୁଁ ।" ମୁଁ କହିଲି, "ଆପଣ ତ ନିଶ୍ଚୟ କବି, ତା' ନହେଲେ କ'ଣ ଏପରି କାବ୍ୟ ଲେଖିପାରି ଥାଆନ୍ତେ ? କିନ୍ତୁ କଥା ହେଉଛି, ଏ କାବ୍ୟ ପାଇଁ ଯୁଗ ଓ ପାଠକ ରୁଚି ବଦଳି ଗଲାଣି ।" କବିଙ୍କର ନିରୀହ ଗୋ-ବିଚାରୀ ଚେହେରା ତଳେ ଏତେ ଅଗ୍ନି ସ୍ଫୁଲିଙ୍ଗ ଲୁଚି ରହିଥିଲା, ମୁଁ ଜାଣି ପାରି ନଥିଲି । ସେ ତୀକ୍ଷ୍ଣ ଶାଣିତ କଣ୍ଠରେ କହିଲେ, "ଆପଣ ଜାଣନ୍ତି, 'ରାଘବ ବିଳାସ', 'କଂସବଧ', 'ସୁଭଦ୍ରା ପରିଣୟ' ପରି ମୋର କାବ୍ୟମାନଙ୍କ ପାଇଁ ପାଲାବାଲାମାନେ ଆସି ମୋ ଦୁଆରେ ଧାଡ଼ି ବାନ୍ଧନ୍ତି! ପୁଆଣଙ୍କ ରାଘବ ବିଳାସ ପାଲା ଶୁଣିବାପାଇଁ ଥାଟ ପଟାଳି ଭାଙ୍ଗି ଲୋକ ଆସନ୍ତି ! ଆପଣମାନେ ଛାପୁଥିବା ବହିକୁ ପଢୁଛନ୍ତି କେତେଜଣ ?" କବି ଆହତ ଅଭିମାନରେ ମୋତେ କଟୁରୀରେ ଚୋଟ ପକାଇବା ପରି ଗୋଟାଏ ନମସ୍କାର ହାଣି ସେଠାରୁ ଉଠି ଚାଲିଗଲେ ।

ଘଟଣାଟି ସାମାନ୍ୟ । କିନ୍ତୁ ଅନେକ ଦିନ ପର୍ଯ୍ୟନ୍ତ ଏହା ମୋର ଚିନ୍ତା ଓ ଭାବନାକୁ ଆଛନ୍ନ କରି ରଖିଥିଲା । ସାହିତ୍ୟରେ ରୁଚି, ଶୈଳୀ ଓ ସଂସ୍କୃତିର ଦୁଇଟି ଧାରା ବହି ଚାଲିଛି । ଅନାଦି କାଳ ପର୍ଯ୍ୟନ୍ତ ମଧ୍ୟ ବହି ଚାଲିବ । ଗୋଟିଏ ଧାରା ଅନ୍ୟ ଧାରାଟିକୁ କଦାପି ଲୋପ କରି ଦେଇ ପାରିବ ନାହିଁ । ଆଜିର ସୁପରସୋନିକ୍ ଜେଟ୍ ଯୁଗରେ ସୁଦ୍ଧା ଶଗଡ଼କୁ ମଣିଷ ତଥାପି ଛାଡ଼ି ନାହିଁ; କିମ୍ବା ଛାଡ଼ି ମଧ୍ୟ ପାରିବ ନାହିଁ । ଗ୍ରାମାଞ୍ଚଳମାନଙ୍କରେ କବି ଗିରିଧାରୀ ପୁହାଣଙ୍କ 'ରାଘବ ବିଳାସ' ଛାନ୍ଦ ଶୁଣିବା ପାଇଁ ପାଲାମଣ୍ଡପକୁ ଥାଟ ପଟାଳି ଭାଙ୍ଗି ଲୋକ ଆସିବେ । ସହରମାନଙ୍କରେ ମଧ୍ୟ କବିତା ପାଠୋତ୍ସବମାନଙ୍କରେ ଭିଡ଼ ବାନ୍ଧିବେ ଆଧୁନିକ କବିମାନେ ।

୨୧/୦୫/୮୯

# ପ୍ରଥମ ବର୍ଷା

ଏଇ ବୈଶାଖ ମାସରୁ ଦିନବେଳା ସୂର୍ଯ୍ୟୋତାପ ବୟାଳିଶ ଡିଗ୍ରୀ, ତେୟାଳିଶ୍ ଡିଗ୍ରୀ ସେଲ୍‌ସିୟସ୍ ଛୁଉଁଥିବାବେଳେ, ରେଡ଼ିଓ ଓ ଟେଲିଭିଜନରେ ପାଣିପାଗବାଲାମାନଙ୍କର ଆସନ୍ତା ଚବିଶ୍ ଘଣ୍ଟା ମଧ୍ୟରେ ବୃଷ୍ଟିପାତର ସମ୍ଭାବନା ରହିଛି ବୋଲି ସବୁ ପାଗ ବାର୍ତ୍ତା ଏକ ପ୍ରହସନ ପରି ଲାଗୁଥିଲା । ଅପରାହ୍ଣରେ ଥରେ ଥରେ ବିଜୁଳି ଚମକି ଉଠି, ଆସନ୍ନ ବର୍ଷା ସଂପର୍କରେ ରୌଦ୍ର ସନ୍ତାପିତ ମନରେ ଯେଉଁ ଆଶା ଅଙ୍କୁରିତ କରୁଥିଲା, ତାହା ତତଲା ଝାଞ୍ଜି ପବନରେ ଝାଉଁଳି ପଡ଼ିବାପାଇଁ ଆଦୌ ବିଳମ୍ବ ଲାଗୁ ନଥିଲା । ରୌଦ୍ରଦଗ୍ଧ ଆକାଶ ଯେପରି ବିଜୁଳିର ଲହଲହ ଜିହ୍ୱା ଲମ୍ବାଇ ତଳ ମାଟିକୁ ପୋଡ଼ି ଜାଳି ଦେବାପାଇଁ ଅଗ୍ନି ସ୍ଫୁଲିଙ୍ଗ ଝରାଉ ଥିଲା ।

ଏଇପରି ଗ୍ଲାନିପୂର୍ଣ୍ଣ ମୁହୂର୍ତ୍ତରେ ଦିନେ ସନ୍ଧ୍ୟାବେଳେ ଦାଣ୍ଡ ଅଗଣାରେ କେଉଁଠି ବେଙ୍ଗଟାଏ ରଡ଼ି ଉଠିଲା । ସେଦିନ ପ୍ରାତ୍ୟହିକ ସାନ୍ଧ୍ୟ ଆଡ୍‌ଡ଼ାରେ କେବଳ ବ୍ରଜବନ୍ଧୁଙ୍କ ବ୍ୟତୀତ ଆଉ କେହି ନଥିଲେ । ବ୍ରଜବନ୍ଧୁ କହିଲେ, "ବେଙ୍ଗ ରଡ଼ିଲାଣି, ଏଇ ଦିନେ ଦୁଇଦିନ ଭିତରେ ବର୍ଷା ହେବ ।" ମୁଁ ଟିପ୍ପଣୀ କଲି, "ମେଟେରୋଲୋଜିବାଲାମାନଙ୍କର ଗଣନା ଯେଉଁଠି ଫସର ଫାଟି ଯାଉଛି, ସେଠି ବେଙ୍ଗଟାଏ ରଡ଼ି କଲା ବୋଲି ବର୍ଷା ହେବ ବୋଲି ଆପଣ କହୁଛନ୍ତି ? ବାୟୋଲୋଜିବାଲାମାନଙ୍କ ପାଖରୁ ମୁଁ ଶୁଣିଛି, ଜୀବ ସୃଷ୍ଟିରେ କୁଆଡ଼େ ବେଙ୍ଗର ମସ୍ତିଷ୍କ ସବୁଠାରୁ ନିକୃଷ୍ଟ । ସେଇ ବେଙ୍ଗ ମେଟେରୋଲଜିବାଲାଙ୍କର ଶାଣିତ ମସ୍ତିଷ୍କ ଆଉ କମ୍ପ୍ୟୁଟରକୁ ବଳି ପଡ଼ିବ ?"

ବ୍ରଜବନ୍ଧୁ ଉତ୍ତର ଦେଲେ, "ଗାଁ ଗହଳରେ ଚାଷୀମାନେ ଏଇ ବେଙ୍ଗରଡ଼ିରୁ ବର୍ଷାର ସମ୍ଭାବନା ସଂପର୍କରେ ଜାଣିପାରି ଥାଆନ୍ତି । କାର୍ତ୍ତିକ ମାସରେ ସେହିପରି ଘରଚଟିଆ ଚଢ଼େଇମାନେ ବାଲିରେ ଗାଧୋଇଲେ, ନିଶ୍ଚିତ ବର୍ଷା ହେବାର ସମ୍ଭାବନା ରହିଛି । "ଫଳେନ ପରିଚୀୟତେ" କହି ମୁଁ ଆଲୋଚନାକୁ ସେଇଠାରେ ଶେଷ କଲି । ବେଙ୍ଗଟା ରହି ରହି ତଥାପି କଟର କଟର ହେଉଥିଲା ।

କିଛି ସମୟ ପରେ କେତେଟା ବେଙ୍ଗ ହଠାତ୍ ରଡ଼ିବା ପାଇଁ ଆରମ୍ଭ କଲେ । ତା'ପରଦିନ ଅପରାହ୍ଣରେ ପଶ୍ଚିମ ଆକାଶ ହଠାତ୍ କଳା ମେଘରେ ଛାଇ ହୋଇଗଲା । ଚାହୁଁ ଚାହୁଁ ମାଡ଼ି ଆସିଲା ଶୀତୁଳିଆ ପବନ । ଆସନ୍ନ ବୃଷ୍ଟିପାତର ନିଶ୍ଚିତ ସମ୍ଭାବନା । କିନ୍ତୁ ବେଙ୍ଗପରି ଗୋଟିଏ କଦାକାର ଜୀବ, ଏହାର ବାର୍ତ୍ତାବହ ହୋଇ ପାରିଲା କିପରି ?

ଚାହୁଁ ଚାହୁଁ ଘଡ଼ଘଡ଼ି ଚଡ଼ଚଡ଼ି ସହିତ ବରକୋଳିଆ ଟୋପାସବୁ ଆକାଶରୁ ତଳେ ଝରି ପଡ଼ିଲା । ରୌଦ୍ରଦଗ୍ଧ ମାଟିରୁ ଓଦା ମାଟିର ବାସନା ବାହାରି ଚାରିଆଡ଼କୁ ସୁରଭିତ କରିଦେଲା, ମାତ୍ର କେତୋଟି ମୁହୂର୍ତ୍ତପାଇଁ । ତା'ପରେ ଖୋଲା ଝରକା ବାଟେ ମୋ ଉପରେ ଜଳକଣା ସବୁ ଛିଟିକି ପଡ଼ିଲା । ଭୃତ୍ୟ ଝରକା ବନ୍ଦ କରିଦେବା ପାଇଁ ଲମ୍ଫ ଦେଉଥିଲା; ମାତ୍ର ମୁଁ ତାକୁ ବାରଣ କଲି । ଇଏ ତ ଜଳକଣା ନୁହେଁ, ଇଏ ଯେପରି ପ୍ରସ୍ଫୁଟିତ କଦମ୍ବର ସ୍ନିଗ୍ଧ କେଶର ! ଭାରି ଭଲ ଲାଗୁଥିଲା, ସେଇ ମୁଗ୍ଧ ଅନୁଭୂତି । ହଠାତ୍ ମନେ ପଡ଼ିଗଲା, ରବୀନ୍ଦ୍ର ନାଥଙ୍କର କବିତାର ଗୋଟିଏ ଧାଡ଼ି, "ଜୀବନ ଯଖନ୍ ଶୁକିଏ ଯାଏ, ତୁମି କରୁଣା ଧାରାଏ ଏସୋ ।" ପ୍ରଥମ ବର୍ଷାର ଏହି ଜଳ କଣା ସବୁ ମୋର ସନ୍ତାପିତ ଜୀବନରେ ଲାଗୁଥିଲା; କରୁଣାର ବାରିଧାରା ପରି ।

ତା'ପରଦିନ ସକାଳକୁ ପୂର୍ବ ସନ୍ଧ୍ୟାର ସେଇ ମୁଗ୍ଧ ଅନୁଭୂତି କଟି ନଥିଲା । ସକାଳେ ଆକାଶ ମଧ୍ୟ ଥିଲା ମେଘାଚ୍ଛନ୍ନ । ଚାହା ପିଇ ଖବରକାଗଜର ପୃଷ୍ଠା ଉପରେ ଆଖି ବୁଲାଇ ଦେଉଦେଉ ଦେଖିଲି, ପ୍ରଥମ ବର୍ଷାର ବଜ୍ରପାତରେ ବିଭିନ୍ନ ସ୍ଥାନରେ ଛଅ ଜଣଙ୍କର ମୃତ୍ୟୁ ଘଟିଛି । ତିନିଜଣ ଲୋକ ବର୍ଷାବେଳେ ଗହୀର ବିଲରୁ ଫେରୁଥିଲେ । ବଜ୍ର ପଡ଼ି ସେମାନଙ୍କୁ ଜାଳି ଦେଇଛି । ପ୍ରଥମ ବର୍ଷା କାହାପାଇଁ ଯଦି ଆସିଥିଲା କରୁଣାର ବାରିଧାରା ପରି, ତା'ହେଲେ ଆଉ କାହାପାଇଁ ଆସିଲା ବଜ୍ରପାତ ହୋଇ ! ପ୍ରକୃତି ପ୍ରକୃତରେ ଅନ୍ଧ । ଏହାର କରୁଣାର ବାରିଧାରାରେ ଆଶୀର୍ବାଦ ନାହିଁ, କିମ୍ବା ବଜ୍ରପାତରେ ମଧ୍ୟ ଧ୍ୱଂସର କ୍ରୁଦ୍ଧ ବିସ୍ଫୋରଣ ନାହିଁ । ଏହା ମଣିଷର ସୁଖ, ଦୁଃଖ ପ୍ରତି ସଂପୂର୍ଣ୍ଣ ଉଦାସୀନ ଅନାସକ୍ତ ଓ ନିର୍ଲିପ୍ତ ।

୨୮/୦୫/୮୯

# ବର୍ଷା

ବୈଦିକ କବିଙ୍କ ଦୃଷ୍ଟିରେ ବର୍ଷା ଦାବ୍ୟା (ଆକାଶ) ଓ ପୃଥିବୀର ମିଳନ । ଆଷାଢ଼ର ପ୍ରଥମ ଦିବସରେ ମେଘ ଘନଶ୍ୟାମ ବେଶରେ, ଗଳାରେ ବଳାକାର ମାଳା ଲମ୍ୱାଇ ତୃଷିତା ପୃଥିବୀକୁ ଗାଢ଼ ଆଶ୍ଳେଷରେ ଆଲିଙ୍ଗନ କରେ । ବର୍ଷା ଏହି ମିଳନର ପ୍ରତୀକ । ଏହି ମିଳନରୁ ପୃଥିବୀ ଶସ୍ୟବତୀ ହୁଏ । ବର୍ଷା ସେଥିପାଇଁ ଶୃଙ୍ଗାରର ରୂପ ।

କବି କାଳିଦାସଙ୍କ 'ମେଘଦୂତ' କାଳରୁ ସେଥିପାଇଁ ଭାରତୀୟ କାବ୍ୟ ସାହିତ୍ୟରେ ବର୍ଷା ଋତୁ ବହୁ ପ୍ରକୀର୍ତ୍ତିତ । ସଂସ୍କୃତ କାବ୍ୟମାନଙ୍କରେ ବସନ୍ତ ଋତୁରାଜ ରୂପେ ବର୍ଣ୍ଣିତ । କିନ୍ତୁ କି ସଂସ୍କୃତ ସାହିତ୍ୟ, କି ଓଡ଼ିଆ ସାହିତ୍ୟ, ସବୁ କାବ୍ୟ ସାହିତ୍ୟରେ ଶୃଙ୍ଗାରର ଋତୁ ରୂପେ ବର୍ଷା ଋତୁର ପ୍ରାଧାନ୍ୟ ।

ପ୍ରକୃତିର ଏହି ଆବେଗ ପୃଥିବୀର ନରନାରୀଙ୍କ ଜୀବନରେ ମଧ୍ୟ ପ୍ରତିଧ୍ୱନିତ ହୁଏ । ବିରହୀ ପ୍ରେମିକ ବ୍ୟାକୁଳ ହୁଏ, ପ୍ରେମିକାର ସାନ୍ନିଧ୍ୟ ପାଇଁ । ମେଘକୁ ସେ ବାର୍ତ୍ତାବହ କରି ପଠାଏ, ତା'ର ବିରହିଣୀ ପ୍ରେମିକା ପାଖକୁ ।

ପ୍ରଥମ ବର୍ଷା ଦେହରେ ଓ ମନରେ ଶୀତ୍କାର ଆଣେ । ସେଇ ସୀତ୍କାର ଓ ଶିହରଣ ଫୁଟି ଉଠେ, ରାଶି ରାଶି କଦମ୍ବ ଫୁଲ ପରି । କେକା କେକୀକୁ ଲୁବ୍ଧ କରିବାପାଇଁ ଗାନ୍ଧର୍ବୀ ଚିତ୍ରଙ୍ଗଦା ପରି, ତାହାର ବହୁ ଚିତ୍ରିତ ପକ୍ଷ ତୋଳି ନାଚେ । ବର୍ଷାଋତୁ ଶୃଙ୍ଗାରର ମହୋତ୍ସବ ।

୪୦ ଡିଗ୍ରୀ ସେଲ୍‌ସିୟସ୍ ଉତ୍ତାପ ମଧ୍ୟରେ ପାଗବାର୍ତ୍ତାରୁ ଶୁଣୁଛି, ନାରୀକେଳକୁଞ୍ଜ ଶୋଭିତ କେରଳର ପଶ୍ଚିମ ଉପକୂଳକୁ ଦକ୍ଷିଣ-ପଶ୍ଚିମ ମୌସୁମୀର ବର୍ଷା ଗାଢ଼ ଆଶ୍ଳେଷଣରେ ଆଲିଙ୍ଗନ କଲାଣି । ବହୁଦିନର ବିରହ ବିଚ୍ଛେଦ ପରେ, ତା'ର ଏହି ପ୍ରଥମ ଆଲିଙ୍ଗନରେ ଥାଏ ପ୍ରମତ୍ତତା । କିନ୍ତୁ ପୃଥିବୀର ପ୍ରାଣରେ ତାହା ପୁଲକ ସଂଚାର କରେ । ଆମର ଆକାଶ ଏଠି କିନ୍ତୁ ନିଦାଘ ଅଗ୍ନି ସ୍ଫୁଲିଙ୍ଗ ଝରାଉଛି । ଆମର ମାଟି

ବିରହିଣୀ ଯକ୍ଷିଣୀ ପରି ଅନନ୍ତ ତୃଷାଧରି ଅପେକ୍ଷା କରି ରହିଛି, ବର୍ଷାର ପ୍ରଥମ ଆଲିଙ୍ଗନ ପାଇଁ ।

ଆଜି ସେଦିନର ପରିବେଶ ଆଉ ନାହିଁ । କଦମ୍ବ ଆଉ ଫୁଟୁ ନାହିଁ । କଦମ୍ବ ଗଛ ସବୁ ହଜିଗଲେଣି, ମଣିଷର ଜଠର ଭିତରେ । କିଆ, କେତକୀ ମଧ୍ୟ ଆଉ ଫୁଟୁ ନାହାନ୍ତି । କେକା ଧ୍ୱନି ମଧ୍ୟ ଆଉ ଶୁଭୁ ନାହିଁ । ବର୍ଷାର ସହଚରମାନେ ଗୋଟିଗୋଟି ହୋଇ ବିଦାୟ ନେଇ ଗଲେଣି । ତଥାପି ଆମେ ସବୁ ଅପେକ୍ଷା କରି ରହିଛୁ, କେବେ ଆସିବ ବର୍ଷା... କେବେ ଏହାର ଜଳକଣା ଆମର କ୍ଲାନ୍ତ ମନ ଓ ଶ୍ରାନ୍ତ ଦେହକୁ ନବ ଜୀବନରେ ପୁଣି ସଂଜୀବିତ କରିବ ।

ବର୍ଷାଋତୁ କଥା ଅତୀତର ବହୁ ହଜିଲାସ୍ମୃତି ମଧ୍ୟରେ ସନ୍ଧାନ କରୁକରୁ ମୋ ଆଖିରେ ଉତପ୍ତ ଦ୍ୱିପହରର ଟିକିଏ ଛାଇନିଦ ଲାଗି ଆସିଥିଲା । ମୁଁ ଦେଖି ପାରୁଥିଲି, ଗୋଟିଏ ଚାଳଘର ଓ ତା'ର ସାମନାରେ ପ୍ରଶସ୍ତ ଅଗଣା । ଅଗଣା ଚାରିପଟକୁ ଘେରି ଚାଳ ଖଞ୍ଜା । କଖାରୁ ଲଟା ସବୁ ମାଡ଼ିଥିଲେ ଚାଳ ଉପରେ । ବର୍ଷା ପାଣି କଖାରୁ ପତ୍ରଉପରେ ଥପ୍ ଥପ୍ ଝରିପଡ଼ି, ସୃଷ୍ଟି କରୁଥିଲା, ବର୍ଷାର ସଙ୍ଗୀତ । ଚାଳରୁ କଫି ରଙ୍ଗର ଓଳିପାଣି ତଳେ ଝରି ପଡୁଥିଲା । ସେଇ ଓଳି ପାଣିର ସୁଅ ବର୍ଷାର ଗୋଳିଆ ପାଣି ସହିତ ମିଶିଯିବା ପରେ, ଦୁଇଟି ଧାରା ସ୍ପଷ୍ଟ ବାରି ହୋଇ ଯାଉଥିଲା । ଗୁଡ଼ିଏ କିଶୋର ବାଳକ ବାଳିକା କାଗଜରେ ଡଙ୍ଗା ତିଆରି କରି ଭସାଇ ଦେଉଥିଲେ, ବର୍ଷା ପାଣିର ସେଇ ସୁଅରେ । ଏ ଅସରା ବର୍ଷା ଶେଷ ନହେଉ ବୋଲି ସେମାନେ ମନେ ମନେ ପ୍ରାର୍ଥନା କରୁଥିଲେ ।

କିନ୍ତୁ ସିମେଣ୍ଟ କଂକ୍ରିଟ୍‌ର ଏହି ଅରଣ୍ୟ ମଧ୍ୟରେ ଚାଳଘର କାହିଁ ? କଖାରୁ ଲଟା ବା ମାଡୁଛି କେଉଁଠି ? ତଥାପି ବର୍ଷା ପାଇଁ ଆମର ବ୍ୟାକୁଳ ପ୍ରାର୍ଥନା ଓ ପ୍ରତୀକ୍ଷା ।

ଉପରର ଆକାଶ କିନ୍ତୁ ନିର୍ମେଘ । ଦୂର ଦିଗ୍‌ବଳୟରେ ସୁଦ୍ଧା ଖଣ୍ଡେ ବାଦଲର ଦେଖା ନାହିଁ । ହଠାତ୍ ଇଲେକ୍‌ଟ୍ରିକ୍ କରେଣ୍ଟ ଚାଲିଗଲା । ପଙ୍ଖା ସବୁ ବନ୍ଦ ହୋଇଗଲା । ଉତ୍ତାପ ଓ ଗୁଳିଗୁଳି ମଧ୍ୟରେ ମୁଁ ବିଛଣା ଉପରେ ଉଠି ବସିଲି । ବର୍ଷାର ସ୍ୱପ୍ନସବୁ ବହୁ ହଜିଲା ସ୍ମୃତି ମଧ୍ୟରେ ପୁଣି ହଜିଗଲା ।

୧୧/୦୬/୮୯

# ନୀଳ ଅପାର ସଂସାର

ଶ୍ରୀମନ୍ଦିରରେ କାର୍ତ୍ତିକ ମାସର ଯାତ୍ରୀ ଭିଡ଼ ଆଉ ନାହିଁ । ମାର୍ଗଶିର ମାସରେ ଯାତ୍ରୀଭିଡ଼ ନଥାଏ । ଅନ୍ନ ବିହୁନେ ହାନି / ଯୋଗ ସାଧିବୁ କାହା ଘେନି । ଭକ୍ତମାନେ ଏବେ ମାର୍ଗଶିରର ପାଚିଲା ଧାନକ୍ଷେତମାନଙ୍କରେ ଧାନକଟା, ଫସଲ ଅମଳରେ ବ୍ୟସ୍ତ । କେବଳ ସହର ବାସିନ୍ଦା ଓ ପଞ୍ଚକୋଶୀ କୌଣସି କୌଣସି ଦର୍ଶନାର୍ଥୀ ଯାତ୍ରୀଙ୍କ ବ୍ୟତୀତ ମନ୍ଦିର ବେଢ଼ା ଯାତ୍ରୀ ବିରଳ ।

ମୁଁ ଦର୍ଶନ ସାରି ବେଢ଼ା ପ୍ରଦକ୍ଷିଣ କଲାବେଳେ, ମାର୍ଗଶିର ଅପରାହ୍ଣର ତେରେଛା ଖରାରେ ଦେଖିଲି, ତଥାପି କେତେଜଣ ବିଧବା ବୁଢ଼ୀ ଖଣ୍ଡେ ଖଣ୍ଡେ ଧଳା ଖଦୀ ପିନ୍ଧି ଦକ୍ଷିଣ ବାଡ଼ କାନ୍ଥ ପାଖରେ ଅଧାଛାଇ ଅଧା ଖରାରେ ବସିଛନ୍ତି । ଦୀପ ବଳିତା ବଳୁଛନ୍ତି । ଅପରାହ୍ଣର ମଳିନ ଖରା ଓ ମନ୍ଦିର ଛାଇରେ ସେମାନେ ଦିଶୁଥିଲେ ବିଷାଦର ପ୍ରତିମା ପରି । ଜୀବନ ସାରା ସଂସାରର ତାପ ଓ ଜ୍ୱାଳାରେ ରିକ୍ତ ଜୀବନ କଟାଇ, ସେମାନେ ଏବେ ଏଇ ଶ୍ରୀମନ୍ଦିର ବେଢ଼ାକୁ ନିଜର ଆଶ୍ରୟ ସ୍ଥଳୀରେ ପରିଣତ କରିଛନ୍ତି । ଜଗନ୍ନାଥଙ୍କ ପାଇଁ ଦୀପ ବଳିତା-ସୂତାରେ ବଳିବା, ସେମାନଙ୍କର ଜୀବନ ଓ ଜୀବିକା । ଏଇ ବଳିତାସବୁ ଯାତ୍ରୀମାନେ କିଣିଥାଆନ୍ତି ଘିଅଦୀପ ଦେବାପାଇଁ ସେଥିରୁ ଯାହା କିଛି ଉପାର୍ଜନ ହୁଏ, ସେଇଥିରେ ସେମାନେ ବକତେ ଅବଢ଼ା କିଣି ଗୁଜୁରାଣ ମେଣ୍ଟାନ୍ତି ।

ସେମାନଙ୍କ ମଧ୍ୟରେ ସେଦିନ ମୁଁ ନୀଳଅପାକୁ ଦେଖି ଦଣ୍ଡେ ଠିଆ ହୋଇଗଲି । ଏଇ ନୀଳଅପା ଲେଖାଯୋଖାରେ ମୋର ପିଇସୀ । ତା'ର ଏକମାତ୍ର ପୁଅ ଭାଗୀରଥି ସ୍କୁଲ୍‌ରେ ଥିଲା ମୋର ସହପାଠୀ ଓ ଘନିଷ୍ଠ ବନ୍ଧୁ । ପ୍ରତିବର୍ଷ ଖରା ଛୁଟିରେ ମୁଁ ତାଙ୍କ ଗାଆଁକୁ ଯାଉଥିଲି, ପ୍ରାୟ ନିୟମିତ ଭାବରେ । ନୀଳଅପାଠୁଁ ଅନେକ ଆଦର ଯତ୍ନ ପାଇଛି । ସ୍ୱାମୀକୁ ସେ ହରାଇଥିଲା, ପ୍ରାୟ ତା'ର ଯୌବନରୁ । ସେତେବେଳକୁ ତା'ର ଦୁଇଟି ଝିଅ ଓ ପୁଅ ଭାଗୀରଥି, ବୟସ ପ୍ରାୟ ଦୁଇ ବା ତିନି । ଭାଇ-ଭଗାରି ଘର । ନୀଳଅପାକୁ କୌଣସି ଉପାୟରେ ତା' ବାପଘରକୁ ପଠାଇ ଦେବାପାଇଁ ସେମାନଙ୍କର ନାନା ମସୁଧା ।

କିନ୍ତୁ ଏକୁଟିଆ ସେ ପରିସ୍ଥିତିର ମୁକାବିଲା କରିଥିଲା ନୀଳଅପା । ଦୁଇଟି ଝିଅଙ୍କୁ ଭଲ ଘରେ ଉଠାଇ ଦେଇଛି । ପୁଅ ଭାଗୀରଥିକୁ ମଧ୍ୟ ବାହା କରିଦେଇଛି । ଭାଗୀରଥି ମାଟ୍ରିକ୍ ପାସ୍ କରି ସାରିବା ପରେ ଆଉ ପଢ଼ିଲା ନାହିଁ । ଘରେ ରହି, ଜମିବାଡ଼ି, ଚାଷବାସ କଥା ବୁଝିଲା । ଯଖ ପରି ନୀଳଅପା ଆବୋରି ବସିଲା ତା'ର ସଂସାରକୁ । ତା'ର ବିନା ଅନୁମତିରେ ତା'ର ସଂସାରରେ କୌଣସି କଥା ସମ୍ଭବ ନଥିଲା । ସେଥିପାଇଁ ପୁଅବୋହୂଙ୍କ ସହିତ ଅନେକ ସମୟରେ ଖିଟ୍ ଖିଟ୍ ମଧ୍ୟ ଲାଗୁଥିଲା ।

ପ୍ରାୟ ବର୍ଷକ ତଳେ ଥରେ ଭାଗୀରଥି ସହିତ ଦେଖାହୋଇଥିଲା । ନୀଳଅପା କଥା ତାକୁ ପଚାରିବାରୁ, ସେ କହିଲା, "ବୋଉ ଆମ ଘରେ କଳାକନା ବୁଲାଇ ଦେଇ ହଠାତ୍ ପୁରୀ ଚାଲିଗଲା । ପୁରୀରେ କେଉଁଠି ରହୁଛି, ତା'ର ଠିକଣା ବି ଆମକୁ ଜଣାଇଲା ନାହିଁ । ସେ ବର୍ତ୍ତମାନ କେଉଁଠି କିପରି ଅଛି ମୁଁ ଜାଣେ ନାହିଁ । କିନ୍ତୁ ନୀଳଅପା ଯେଉଁ ସଂସାରକୁ ଏତେ କୃଚ୍ଛ ସାଧନା କରି ଗଢ଼ିଥିଲା, ସେ ସଂସାରକୁ ସେ ତୁଚ୍ଛ କରି ଦିନେ ଏମିତି ଚାଲିଆସିବ, ଏହା ମୁଁ ଚିନ୍ତାକରି ପାରୁନଥିଲି । ନୀଳଅପା ତାଙ୍କ ସଂସାରରେ କଳାକନା କିପରି ବୁଲାଇଦେଲା ବୋଲି ପଚାରିବାରୁ ଭାଗୀରଥି କହିଲା, "ଜେଜେଙ୍କ ଅମଳରୁ ଆମ ଘରେ ଯେଉଁ ସୁନା ମୋହର ଆଉ ଅସରପି ପୁଣି ପୁରୁଣା ସୁନା ଗହଣା ତା' ଜିମାରେ ଥିଲା, ସେସବୁ ଧରି ବୋଉ ଚାଲିଆସିଲା; ତା'ର ହିସାବ ଆମକୁ ଜଣାନାହିଁ । ବୋଧହୁଏ ଦୁଇ ଝିଅଙ୍କୁ ଦେବ ।" ଅଥଚ ସେଇ ନୀଳଅପା ଏଠି ମନ୍ଦିର ବେଢ଼ାରେ ବସି ସଞ୍ଜ ବଳିତା ବଳୁଛି ।

ମୁଁ ପଚାରିଲି, "କିଏ, ନୀଳଅପା ନା !" ନୀଳଅପା ସଂକ୍ଷେପରେ ଉତ୍ତର ଦେଲା, "ଏଇଠି ଆସି ବରଷେ କଟାଇଲିଣିରେ ପୁଅ । ସେ ସଂସାର ତେଜ୍ୟା କରିଦେଦଇଛି । ଆଉ ଫେରିବି ନାହିଁ ।" ସେଠାରେ ଆଉ କିଛି କଥାବାର୍ତ୍ତା ପାଇଁ ସୁଯୋଗ ନଥିଲା । କେହି କେହି ଯାତ୍ରୀ ସଂଜ ବଳିତା କିଣିବାପାଇଁ ନୀଳଅପା ପାଖରେ ଜମି ଯାଇଥିଲେ । ନୀଳଅପାକୁ ପଚାରିଲି, "ତୁ ପୁରୀରେ ରହୁଛୁ କେଉଁଠି ? ମୁଁ କାଲି ତୋ ବସାକୁ ଆସିବି ।" ନୀଳଅପା କହିଲା, "ସେ ନଅରଗଳି କୁଞ୍ଜକାନ୍ତ ମଠରେ ବଖରାଏ ଘର ଭଡ଼ାନେଇ ରହୁଛି ।"

ତା' ପରଦିନ ସନ୍ଧ୍ୟା ଆଳତି ପରେ ମୁଁ ନଅରଗଳି କୁଞ୍ଜକାନ୍ତ ମଠର ବାଟ ପଚାରି ପଚାରି ଯାଇ ପହଞ୍ଚିଲି । ନୀଳଅପା ସେତେବେଳକୁ ଦେଉଳରୁ ଫେରିଆସିଥିଲା । କଦଳୀପତ୍ର ପକାଇ ସେ ମୋତେ ଗୋଟିଏ କୁଡୁଆରୁ ଅନ୍ନ, ଡାଲି ଓ ବେସର ପରଷିଲା । ମୁଁ ଖାଇ ସାରିବା ପରେ ନୀଳଅପାକୁ କହିଲି, "ତୋତେ ଗୋଟେ କଥା ପଚାରିବି । ତୁ ତ ସଂସାର ଛାଡ଼ି ଚାଲିଆସିଲୁ । ଆଉ ତୋ ସାଙ୍ଗରେ ଶ୍ୱଶୁରଙ୍କ ଅମଳର ଗହଣା, ସୁନା

ମୋହର ଆଉ ଅସରପି ନେଇ ଆସିଲୁ କାହିଁକି ?" ମୋ ପ୍ରଶ୍ନ ଶୁଣି ନୀଳଅପାର ବିଷଣ୍ଣ ଓଠରେ ଟିକିଏ ହସ ଉକୁଟିଲା । ସିଏ କହିଲା, "ଏ କଥା ତୋତେ ଭାଗ କହିଥିବ ପରା । ତାଙ୍କ ସୁନା ମୋହର, ଅସରପି ଆଉ ଗହଣା କେତେଖଣ୍ଡ ସେଇ ସିନ୍ଦୁକ ଭିତରେ ରହିଛି । ଚାବି ଦେଇ ଆସିଛି ବୋହୂକୁ । ମୋର ଯାହା କିଛି ଜୀବନର ସଂଚୟ ରହିଛି, ଏଇ ଟିଣ ଟ୍ରଙ୍କ୍ ଫିଟାଇ ଦେଖି ।" କୌତୂହଳରେ ନୀଳଅପାର କଥା ଅନୁସାରେ ଟ୍ରଙ୍କରୁ ତାଲା ଫିଟାଇଲି । ତା' ଭିତରେ ଦେଖିଲି, ବଳିତା ବୋଳିବାପାଇଁ କେତେ ମୋଡ଼ା ସୂତା ବ୍ୟତୀତ ସେଥିରେ ରହିଥିଲା, ଗୋଛାଏ ମଲା ତୁଳସୀ, କେତେଖଣ୍ଡ ଚନ୍ଦନ କାଠ, ଗୋଟାଏ ବୋତଲରେ ବୋତଲେ ଘିଅ ଇତ୍ୟାଦି । ନୀଳଅପାର ଘୋର ସଂସାରୀ ଜୀବନରେ ଏତିକି କ'ଣ ସଂଚୟ ?

"ଏଇ ଶୁଖିଲା ତୁଳସୀ ଗଛଗୁଡ଼ିକ କ'ଣ ହେବ ?"

ଉତ୍ତର ଦେଲା ନୀଳଅପା, "ସ୍ୱର୍ଗଦ୍ୱାରରେ ମୋର ସତ୍କାରରେ ଲାଗିବ ।"

ସ୍ତବ୍ଧ ହୋଇ ଯାଇଥିଲି ନୀଳଅପା କଥାରେ । ସାରା ଜୀବନର ସବୁ ସଂଗ୍ରାମର ସଂଚୟ ତା'ହେଲେ, କ'ଣ କେତେଟା ମଲା ଶୁଖିଲା ତୁଳସୀ ଗଛ ଆଉ କେଇଖଣ୍ଡ ଚନ୍ଦନ କାଠ !

୧୮/୦୬/୮୯

# ନିର୍ଜନ ଦ୍ୱୀପ

ବୟସରେ କନିଷ୍ଠ ଜଣେ ସହଯୋଗୀ ଆଗ୍ରହରେ ପଚାରିଲେ, "ବିଭିନ୍ନ କ୍ଷେତ୍ରରେ ଆପଣ ତ ଏତେ କାର୍ଯ୍ୟକରି ଆସିଲେ, ଉତ୍‌ଥାନ ପତନର ଏତେ ଉତ୍ତେଜନା ଆପଣଙ୍କ ଜୀବନରେ, ଆକ୍ରମଣ ଆତ୍ମରକ୍ଷାର ଏତେ କୋଳାହଳ, ଏତେ ଲୋକଙ୍କର ଯିବା ଆସିବା, ଏସବୁ ସତ୍ତ୍ୱେ ଆପଣଙ୍କ ଲେଖାରେ କାହିଁକି ଫୁଟିଉଠେ, ନିର୍ଜନତା ଓ ନିଃସଙ୍ଗତାର ସ୍ୱର ?"

ମୁଁ ଉତ୍ତର ପ୍ରସଙ୍ଗରେ ତାଙ୍କୁ ମୋ ଶୈଶବ ଜୀବନର ଗୋଟିଏ ଘଟଣା ଗଳ୍ପ ଛଳରେ କହିଲି ।

ଗୋଟିଏ ବଡ଼ ମେଲଣ, ମେଲଣରେ ଆତସବାଜି, ଷଣ୍ଢ ଲଢ଼େଇ, ସଖୀନାଚ ଇତ୍ୟାଦି ଦେଖିବାପାଇଁ ହଜାର ହଜାର ଲୋକ ଥାଟ ପଟାଳି ଭାଙ୍ଗୁଛନ୍ତି । ଏତେ ଲୋକଙ୍କର ମେଳ ଓ କୋଳାହଳ ଭିତରେ ଛଅ ସାତ ବର୍ଷର ପିଲାଟି ସାଙ୍ଗଛଡ଼ା ହୋଇ ହଜିଗଲା । ସେତେବେଳେ ହଜିଲା ଲୋକଙ୍କ ସଂପର୍କରେ ଘୋଷଣା କରିବାପାଇଁ ଲାଉଡ୍‌ସ୍ପିକ୍‌ରର ବ୍ୟବସ୍ଥା ନଥିଲା । ପିଲାଟି ଆସିଥିଲା ପାଖ ଗାଁରୁ, ତା'ଠାରୁ ବୟସରେ ଅଳ୍ପ ବଡ଼ ଜଣେ ପିଲା ସହିତ ମେଲଣ ଦେଖିବାପାଇଁ । ହଠାତ୍ ମେଲଣର ସବୁ ଆଲୁଅ ଓ ଆତସବାଜି ଭିତରେ ତାକୁ ଚାରିଆଡ଼ ଅନ୍ଧକାର ଦିଶିଲା । ନିରନ୍ଧ୍ର ଅନ୍ଧକାର । ତା' ଭିତରେ ସେ ବାଟ ଖୋଜି ପାଉ ନାହିଁ । ମଣିଷମାନେ ତାକୁ ଦିଶୁଛନ୍ତି ଆକାରହୀନ, ପରିଚୟହୀନ ଛାଇପରି । ସେ କାନ୍ଦି କାନ୍ଦି ମେଳାରେ ବୁଲିଲା ।

ଜଣେ ବୁଢ଼ା ତାକୁ କାନ୍ଦି କାନ୍ଦି ବୁଲିବା ଲକ୍ଷ୍ୟ କରି ପାଖକୁ ଡାକି ସ୍ନେହବୋଳା କଣ୍ଠରେ ପଚାରିଲେ, "କାନ୍ଦୁଛୁ କାହିଁକି ?" ସେ କୌଣସି ଉତ୍ତର ଦେଇ ପାରିଲା ନାହିଁ । ତା'ର କୋହ ଆଉରି ଉଠିଲା ଓ ସେ ଆଉରି ଜୋର୍‌ରେ କାନ୍ଦିଲା । ବୁଢ଼ା ତାକୁ ଗୁଡ଼ିଆ ଦୋକାନରୁ ଜିଲିପିଟିଏ କିଣିଆଣି ଦେଲେ ଓ ଖାଇବାପାଇଁ କହିଲେ । କିନ୍ତୁ ସେ ରାହା ଧରି କାନ୍ଦିବାରେ ଲାଗିଲା । ତା'ର ଘର କେଉଁ ଗାଁ, ତା' ବାପାଙ୍କ ନାଁ କ'ଣ ଇତ୍ୟାଦି ବୁଢ଼ା ଯେତେ ପଚାରିଲେ, ପିଲାଟି ସବୁ ଜାଣିଥିଲେ ସୁଦ୍ଧା କୌଣସି ଉତ୍ତର ଦେଇ

ପାରିଲା ନାହିଁ । ଏହି ସମୟରେ କିଏ ଜଣେ ତା'ର ଡେଣାକୁ ଝିଙ୍କି ଧରି, ଗାଳି ଦେଇ କହିଲା, ତତେ ମୁଁ ମେଳଣ ସାରା ଖୋଜି ଖୋଜି ବୁଲୁଛି । ତୁ ଏ'ଠି ? ଗୋଟାଏ ଚାପୁଡ଼ା ମାରିବା ପାଇଁ ସୁଦ୍ଧା ହାତ ଉଠାଇଲା । କିନ୍ତୁ ପିଲାଟି ତା'ର ସାଥୀକୁ ଫେରି ପାଇ ସବୁ ଗାଳି ଓ ଚାପୁଡ଼ାର ଧମକ ଭୁଲିଗଲା । ସିଏ ଯେପରି ଏହିପରି ଗାଳି ଆଉ ଚାପୁଡ଼ାପାଇଁ ବ୍ୟାକୁଳ ହୋଇ ଏତେ ସମୟ ମେଳଣ ପଡ଼ିଆରେ କାନ୍ଦି କାନ୍ଦି ବୁଲୁଥିଲା ! ମେଳଣର ସବୁ ଆଲୁଅ, ସବୁ କୋଳାହଳ ପୁଣି ତା' ଆଖି ଆଗରେ ଭାସି ଉଠିଲା ।

ଆପାତତଃ ଗପଟାକୁ ଏଇଠାରେ ଶେଷ କଲି ଓ କହିଲି, "ତୁମେ ଠିକ୍ କହିଛ । ମୋ ଜୀବନରେ ଅନେକ ମଣିଷଙ୍କର ଯିବା ଆସିବା ଓ କୋଳାହଳ ଜୟ, ପରାଜୟର ଅନେକ ଉତ୍ତେଜନା ମୋ ଜୀବନରେ । ତଥାପି ମୋତେ ଲାଗେ ମେଳଣ ଭିତରେ ହଜି ଯାଇଥିବା ସେଇ ପିଲାଟି ପରି ।"

ସେ ପଚାରିଲେ, "କାହିଁକି ?"

ମୁଁ ଉତ୍ତର ଦେଲି, "ନିର୍ଜନତା ଓ ନିଃସଙ୍ଗତାବୋଧ, ମନୁଷ୍ୟର ଏକ ସ୍ୱାଭାବିକ ପ୍ରବୃତ୍ତି । ଏଇ ନିର୍ଜନତା ଓ ନିଃସଙ୍ଗତା ଭିତରୁ ମଧ୍ୟଯୁଗୀୟ ଚେତନା ଜନ୍ମଲାଭ କରିଥିଲା । ବିବିକ୍ତ ନୈରାଶ୍ୟ । ଆଜି ତାହାକୁ ଅନ୍ୟ ଭାବରେ କୁହାଯାଉଛି "ଆଲିନିଏସନ୍" । ମନୁଷ୍ୟ ଏକାକୀ । ପ୍ରତ୍ୟେକ ମନୁଷ୍ୟ ଗୋଟିଏ ଗୋଟିଏ ନିର୍ଜନ ଦ୍ୱୀପ । ତା' ଚାରିପାଖେ ଘେରି କିନ୍ତୁ ସମୁଦ୍ରର ଅଶାନ୍ତ କୋଳାହଳ । ମାତ୍ର ସେସବୁ ଫେନିଳ କୋଳାହଳ ତା'ର ନିର୍ଜନତା ଓ ନିଃସଙ୍ଗତା ଉପରେ କୌଣସି ରେଖାପାତ କରୁନାହିଁ । ବରଂ ତାହାକୁ ଆଉରି ରେଖାଙ୍କିତ କରୁଛି ।

୨୪/୦୬/୮୯

# ଶରଶଯ୍ୟା

ଗାଁ ମୁଣ୍ଡରେ କେନାଲ୍ ଇଲାକାର ଗୋଟିଏ ଛୋଟିଆ ଡାକ ବଙ୍ଗଳା । ସେଠାରୁ ତିନି କିଲୋମିଟର ଦୂରରେ ଏକ୍ସପ୍ରେସ୍ ହାଇୱେ-କଡ଼ରେ ଗୋଟିଏ ଆଧୁନିକ ବଙ୍ଗଳା ତିଆରି ହେବା ଦିନୁ ଏଇ ଡାକ ବଙ୍ଗଳାରେ ଆଉ ପ୍ରାୟ କେହି ରହନ୍ତି ନାହିଁ । ଚୌକିଦାରଟିଏ କେବଳ ବଙ୍ଗଳା ଜଗି ପଡ଼ି ରହିଥାଏ । ଗତକାଲି ରାତିରେ କର୍ମୀ ବନ୍ଧୁମାନଙ୍କର ଅନୁରୋଧ ଓ ଆଗ୍ରହରେ ମୁଁ ଏଇ ଡାକବଙ୍ଗଳାରେ ରାତିଟା କଟାଇଥିଲି । ଭିତରେ ଗମରିଆ ଗମରିଆ ଗନ୍ଧ- ଯେପରି ଅନେକ ଦିନଠାରୁ ଏ ଘର ଭିତରକୁ ବାହାରର ଆଲୁଅ ପବନ ପଶି ନଥିଲା ! ଖଟ, ମେଜ ଓ ଚୌକୀ ସବୁ ଅନେକ ଦିନର ପୁରୁଣା । ଉପରୁ ଫୁଙ୍ଗୁଳା ଇଲେକ୍‌ଟ୍ରିକ୍ ବଲ୍‌ବର ମହଳ ଆଲୁଅ ତାହାର ବିଷଣ୍ଣତାକୁ ଆହୁରି ବଢ଼ାଇ ଦେଉଥିଲା । ତଥାପି ସିଲିଂ ଫ୍ୟାନ୍‌ଟି ଚାଲୁଥିଲା । ସେଇ ଯାହା ରକ୍ଷା ! ଖଟ ଉପରର ଗ଼ିଟା ମଧ୍ୟ ଅନେକ ଦିନର ପୁରୁଣା । ତା' ଉପରେ କିନ୍ତୁ ବାସି ଚଦରଟା ବିଛା ହୋଇଥିଲା ।

କର୍ମୀବନ୍ଧୁମାନେ ବିଦାୟ ନେଇ ଯିବା ପରେ, ମୁଁ ଲାଇଟ୍ ନିଭାଇ ଖଟ ଉପରେ ଗଡ଼ି ପଡ଼ିଲି । ପ୍ରାୟ ଅଧଘଣ୍ଟା ପରେ ଶୋଇବାର ଉପକ୍ରମ କରୁଛି, ଆରମ୍ଭ ହୋଇଗଲା ଛାରପୋକମାନଙ୍କର ଆକ୍ରମଣ । କେଉଁ ଅନ୍ଧକାର ବିବର ଭିତରୁ ସେମାନେ ମଣିଷର ବାସନା ପାଇ ରକ୍ତଲୋଭୀ ପଶୁ ପରି ଦଂଶନ କରିବାପାଇଁ ବାହାରି ଆସୁଥିଲେ, ଜାଣି ପାରୁ ନଥିଲି । ସେମାନଙ୍କ କାମୁଡ଼ାରେ ଅତିଷ୍ଠ ହୋଇ ଖଟ ଉପରୁ କେବଳ ଚାଦର ଖଣ୍ଡକ ଉଠାଇ ଆଣି ମୁଁ ବାରନ୍ଦାର ଚଟାଣ ଉପରେ ଶୋଇବାକୁ ଚେଷ୍ଟା କଲି । କିନ୍ତୁ ସେଥିରେ ସୁଦ୍ଧା କେତେଟା ଛାରପୋକ ଚାଲି ଆସିଥିଲେ ।

ହଠାତ୍ ଚେତନା ପ୍ରବାହ କ୍ରମରେ ମୋ ମନକୁ ଆସିଲା ଭୀଷ୍ମଙ୍କ ଶରଶଯ୍ୟା କଥା । ତାଙ୍କର ଶରଶଯ୍ୟା ଏହାଠାରୁ ବଳି ନିଶ୍ଚୟ ଥିଲା ଯନ୍ତ୍ରଣାଦାୟକ । ତଥାପି ସେ ଇଚ୍ଛାମୃତ୍ୟୁର ଅଧିକାରୀ ହୋଇଥିଲେ ସୁଦ୍ଧା କାହିଁକି ଦୀର୍ଘ ଛଅ ମାସ କାଳ ଉତ୍ତରାୟଣ ପାଇଁ ଅପେକ୍ଷା

କରୁଥିଲେ, ମୁଁ ଏ ପ୍ରଶ୍ନର କୌଣସି ସଦୁତ୍ତର ସେ ପର୍ଯ୍ୟନ୍ତ ପାଇ ନଥିଲି । ସେଦିନ ସେଇ ଅନ୍ଧକାର ବାରନ୍ଦାରେ ଛାରପୋକମାନଙ୍କର କାମୁଡ଼ା ଭିତରେ ବିନିଦ୍ର ଆଖିରେ ଶୋଇ ଶୋଇ ମୋର ମନେ ହେଲା, ଭୀଷ୍ମଙ୍କର ବିବେକ ଦଂଶନର ପ୍ରତୀକ ଥିଲା, ତାଙ୍କର ଶରଶଯ୍ୟା । ସେ ଥିଲେ କୁଳବୃଦ୍ଧ ପିତାମହ- ଉଭୟ କୌରବ ଓ ପାଣ୍ଡବମାନଙ୍କର । ପାଣ୍ଡବମାନେ ମଧ୍ୟ ଥିଲେ କୌରବମାନଙ୍କ ପରି ତାଙ୍କର ପୌତ୍ର । ତା'ହେଲେ କୁରୁସଭା ତଳେ ପ୍ରମତ୍ତ ଦୁଃଶାସନ କୁଳବଧୂ ଦ୍ରୌପଦୀକୁ ବିବସନା କଲାବେଳେ ସେ ସେଠାରେ ନିଜେ ଉପସ୍ଥିତ ଥାଇ ସୁଦ୍ଧା କାହିଁକି ଦୁଃଶାସନକୁ ଆକଟି ନଥିଲେ ? କାହିଁକି ପ୍ରତିବାଦ, ପ୍ରତିରୋଧ କରି ନଥିଲେ ? ସେ ଥିଲେ ଦୁର୍ଯ୍ୟୋଧନର ଅନ୍ନଭୋଗୀ । ସେଇଥିପାଇଁ ସିନା ସେଦିନ ସେ ନିଜ ବିବେକ ସହିତ ସାଲିସ କରି, କୁଳବଧୂ ଦ୍ରୌପଦୀକୁ ବିବସନା କରିବାର ଦୃଶ୍ୟ ଆଖିଆଗରେ ଦେଖି ସୁଦ୍ଧା ନ ଦେଖିବା ପରି ନିରବ ରହିଥିଲେ !

ଭୀଷ୍ମଙ୍କ ପ୍ରତି ମୋର ସବୁ ଶ୍ରଦ୍ଧା ଓ ସମ୍ମାନ ହଠାତ୍ ଉଣେ... । କିନ୍ତୁ ବିବେକ ସହିତ ସ୍ୱୟଂ ଶ୍ରୀକୃଷ୍ଣ ସୁଦ୍ଧା ବହୁବାର ସାଲିସ କରିଛନ୍ତି । ସତ୍ୟନିଷ୍ଠ ଯୁଧିଷ୍ଠିର ସୁଦ୍ଧା ନିଜ ବିକେକ ସହିତ ସାଲିସ କରିଛନ୍ତି । ବିବେକ ସହିତ ଯେଉଁମାନେ ସାଲିସ କରିପାରି ନାହାନ୍ତି, ସେମାନେ ପରିବେଶ ସହିତ ଖାପଖାଇପାରି ନଥିବା ବହୁ ଜୀବଜନ୍ତୁଙ୍କ ପରି ସଂସାରରୁ ବ୍ୟର୍ଥ ଓ ପରାଜିତମାନଙ୍କ ପରି ବିଦାୟ ନେଇଛନ୍ତି । ଅନେକ ପରିସ୍ଥିତିରେ ବିବେକ ସହିତ ସାଲିସ୍ ଆତ୍ମରକ୍ଷା ପାଇଁ ମନୁଷ୍ୟର ଏକ ସହଜାତ ପ୍ରବୃତ୍ତି । ତଥାପି ଏହା କେଉଁ ପରିମାଣରେ ଓ କେତେଦୂର ପର୍ଯ୍ୟନ୍ତ ଚଳିପାରେ ତାହାହିଁ ହେଉଛି ପ୍ରଶ୍ନ ? କିନ୍ତୁ ବିବେକ ସହିତ ସାଲିସ କରି ଆଜି ମଣିଷ ଭିତରୁ ବିବେକ ଲୋପପାଇ ଗଲାଣି । ଅଭିଧାନରେ ଆଜି ବିବେକ ଏକ ଅପ୍ରଚଳିତ ଶବ୍ଦରେ ପରିଣତ ହେଲାଣି ।

ମୋତେ ମଧ୍ୟ ଜୀବନରେ ବିବେକ ସହିତ କେତେବାର ସାଲିସ୍ କରିବାକୁ ପଡ଼ିନାହିଁ ବୋଲି, ମୁଁ ହଲପ କରି କହି ପାରିବି ନାହିଁ । ଛାରପୋକ କାମୁଡ଼ାର ସେଇ ଶରଶଯ୍ୟା ଉପରେ ଶୋଇ ମୋର ମନେହେଲା, ବିବେକ ହରାଇ ମୁଁ ଯେପରି, ହଠାତ୍ ଗୋଟିଏ ବଡ଼ ଛାରପୋକରେ ପରିଣତ ହୋଇଯାଇଛି ! ସେଥିପାଇଁ ମୋର ବିରାଦରମାନେ ଦାଳବାନ୍ଧି ଆସୁଛନ୍ତି ମୋତେ ଶଙ୍ଖୋଳିବା ପାଇଁ । ସେମାନଙ୍କୁ ବାଧା ଦେବା ବୃଥା ।

ଆଶ୍ଚର୍ଯ୍ୟ କଥା ଏହିପରି ଭାବୁଭାବୁ ମୋ ଆଖିରେ କେତେବେଳେ ନିଦ ଲାଗିଗଲା ଓ ଛାରପୋକମାନଙ୍କର ଦଂଶନ ମୁଁ ଜାଣି ପାରିଲି ନାହିଁ ।

*୦୨/୦୭/୮୯*

# ଜିଙ୍ଗିଲ୍

ଦିନେ ବୁବୁନ୍ ଦୌଡ଼ିଦୌଡ଼ି ମୋ ବିଛଣା ପାଖକୁ ଆସି ଆଖି ଦୁଇଟାକୁ ବଡ଼ ବଡ଼ କରି ମୋତେ ହଠାତ୍ ଅପ୍ରତ୍ୟାଶିତ ଭାବରେ କହିଲା, "ପ୍ରମିଜ୍ !" ମୁଁ ଧରିନେଲି, କିଛି ଗୋଟାଏ ନୂଆ ବଦମାସୀ ପାଇଁ ସେ ଚାହୁଁଛି ମୋର ନୈତିକ ସମର୍ଥନ । ମୁଁ ଉତ୍ତର ଦେଲି, "କୋଉ କଥା ପାଇଁ ପ୍ରମିଜ୍ କରିବି, ନଜାଣି ନ ବୁଝି ମୁଁ କାହାକୁ ପ୍ରମିଜ୍ ଦିଏ ନାହିଁ । ତୁମେ ବି କେବେ ଦେବ ନାହିଁ ।" ବୁବୁନ୍ ମୋର ଖଟ ଉପରକୁ ଉଠିପଡ଼ି ଆବ୍‌ଦାରରେ କହିଲା, "ଥରେ ପ୍ରମିଜ୍ କରନା !" ମୁଁ ଜାଣେ ବୁବୁନ୍‌କୁ ଏଥରୁ ନିରସ୍ତ କରିବାର ଚେଷ୍ଟା ବୃଥା । କ'ଣ ବା ମାଗିବ ସେ ? ଚକୋଲେଟ୍ ନୋଇଲେ ଖଣ୍ଡେ ବହି । ମୁଁ କହିଲି, "ହଉ ମୁଁ ପ୍ରମିଜ୍ କଲି ।"

ତା' ପରେ ସେ ମୋର ରୁମ୍ ବାହାରକୁ ଦୌଡ଼ିଯାଇ କିଟ୍‌କିଟ୍ ଅନ୍ଧାର ପରି କଳା ବିଲେଇ ଛୁଆଟା କୁଆଡୁ ଧରିଆଣି କହିଲା, "ଏ ବିଲେଇ ଛୁଆକୁ ମୁଁ ରଖିବି ।" ବୁବୁନ୍ ଜାଣେ, ଏ ଘର ଭିତରକୁ ବୁଲା କୁକୁର ଛୁଆ, ବିଲେଇ ଛୁଆ ଆଣିଲେ, ମୁଁ ଭାରି ବିରକ୍ତ ହୁଏ । ସେଥିପାଇଁ ସେ ଚାହୁଁଥିଲା ମୋର ଅନୁମତି । ମୁଁ କହିଲି, "କଳା ବିଲେଇ ଦେଖିବା ଅମଙ୍ଗଳ । ତୁ ଗୋଟାଏ ଧଳା ନୋଇଲେ କସରା ବିଲେଇ ଛୁଆ ଆଣିଲୁ ନାହିଁ ?" ତା'ର କିନ୍ତୁ ଏକା ଜିଦ୍ ସେ ସେଇ କଳା ବିଲେଇଛୁଆଟିକୁ ରଖିବ ଓ ତା'ର ନାଁ ଦେବ ଜିଙ୍ଗିଲ୍ ।

ମୋର ଅନୁମତି ପାଇବା ମାତ୍ରେ ବିଲେଇ ଛୁଆଟାକୁ କାଖରେ ଧରି ସେ ଗଡ଼ ଜିତିଲା ପରି ଆନନ୍ଦରେ ବାହାରକୁ ପଳାଇଲା । ସେ ଘରେ କାହାକୁ ବରାଦ ଦେଉଥିବା ଶୁଣିଲି, ଜିଙ୍ଗିଲ୍ ପାଇଁ ଗୋଟାଏ ବେଲ୍ଟ ଆଉ ଚେନ୍ ଆସିବ । କିନ୍ତୁ ଜିଙ୍ଗିଲ୍ ପାଇଁ ବେଲ୍‌ଟ ଓ ଚେନ୍ କିଣାହୋଇ ଆସିବା ପୂର୍ବରୁ ସେ ଓ ତା'ର ଅପା (ବୟସରେ ଦୁଇ ବର୍ଷ ବଡ଼) ଖରା ଛୁଟିରେ ମାମୁ ଘରକୁ ଚାଲିଗଲେ । ଜିଙ୍ଗିଲ୍ ପଛରେ ପଡ଼ି ରହିଲା, ଉପେକ୍ଷିତ ହୋଇ । ବିଲେଇମାନଙ୍କର ସ୍ୱଭାବ ଅନୁସାରେ ଜିଙ୍ଗିଲ୍ ରୋଷେଇ ଘରେ ପଶିବା ମାତ୍ରେ

ପାଚକ ପିଲାଟି ପାଖରୁ ନିର୍ଦ୍ଦୟ ପ୍ରହାର ଖାଇଖାଇ ଆଉ ସେ ରୋଷେଇ ଘର ଦରଜା ମାଡ଼ିଲା ନାହିଁ । ସୋଫା ବା କାହା ବିଛଣା ଉପରେ ଶୋଇଲେ ସମସ୍ତେ ଜିଙ୍ଗିଲ୍‌କୁ ଟାଣି ତଳେ ଫିଙ୍ଗିଦେଉଥିଲେ । ଅଗତ୍ୟା ପ୍ରଥମେ ଯେଉଁ ରୁମ୍‌କୁ ଆସି, ଯାହା ପାଖରେ ତା'ର ଗୃହ ପ୍ରବେଶ ହୋଇଥିଲା, ତା'ରି ପାଖକୁ, ଅର୍ଥାତ୍ ମୋ'ରି ପାଖକୁ ସେ ଆସିଲା ଆଶ୍ରୟ ଓ ସହାନୁଭୂତି ପାଇଁ । ମୁଁ ନିରୁପାୟ । ସେଥିପାଇଁ ଜିଙ୍ଗିଲ୍‌କୁ ମୁଁ ବାଧା ଦେଲି ନାହିଁ ।

ଦିନେ ରାତିରେ ହଠାତ୍ ମୋ ପିଠିକୁ ଲାଗି କୌଣସି ଗୋଟିଏ ଲୋମଶ ଜନ୍ତୁ ଶୋଇଥିବା ଅନୁଭବ କରି ମୁଁ ଭୃତ୍ୟକୁ ଚିତ୍କାର କରି ଡାକିଲି । ସେ ସୁଇଚ୍ ଜାଳି ଦେଖିଲା, ମୋ ଦେହକୁ ଲାଗି ଶୋଇଚି ଜିଙ୍ଗିଲ୍ । ମୋ ବିଛଣା ଉପରେ ଜିଙ୍ଗିଲ୍ ଶୋଇବାରେ ମୋର ଆପତ୍ତି ନଥିଲା । କିନ୍ତୁ ମୋ ଦେହକୁ ଲାଗି ସେ ଶୋଇବା ମୋତେ ଭାରି ଅପରିଚ୍ଛନ୍ନ, କ୍ଳେଦାକ୍ତ ଓ ବିରକ୍ତିକର ଲାଗୁଥିଲା । ମୋ ନିର୍ଦ୍ଦେଶରେ ଭୃତ୍ୟ ଜିଙ୍ଗିଲ୍‌କୁ ବିଛଣାରୁ ଟାଣି ତଳେ ଫିଙ୍ଗିଦେଲା । ଯନ୍ତ୍ରଣାରେ କ୍ଷୀଣ କଣ୍ଠରେ ମିଆଁଉ ମିଆଁଉ ହୋଇ ସେ ସେଠାରୁ ପଳାଇଗଲା । ତା'ପରଠାରୁ ଜିଙ୍ଗିଲ୍ ମୋ' ରୁମ୍‌କୁ ବେଳେବେଳେ ଆସିଲେ ବି ମୋ ବିଛଣା ଉପରକୁ ଆଉ ଚଢ଼େ ନାହିଁ । ସେ ତା'ର ଉପଲବ୍ଧିରୁ ବୁଝିଛି, ଏଇ ମଣିଷମାନେ ଭାରି ନିର୍ଦ୍ଦୟ ଓ ସହାନୁଭୂତିହୀନ । ଯାହାକୁ ସେମାନେ ଆଦରରେ ମା' କୋଳରୁ ଛଡ଼ାଇ ଆଣନ୍ତି, ତାକୁ ସେମାନେ ଫିଙ୍ଗି ଦିଅନ୍ତି ଉପେକ୍ଷା ଓ ଅନାଦର ଭିତରକୁ ।

କିନ୍ତୁ ଇତି ମଧ୍ୟରେ ସେ ବୁଝିଗଲାଣି, ଏ ଘରେ ମୋ ବ୍ୟତୀତ ତା'ପାଇଁ ଅନ୍ୟ କୌଣସି ନିରାପଦ ସ୍ଥାନ ନାହିଁ । ସେଥିପାଇଁ ଅନେକ ସମୟରେ ମୋ ରୁମ୍ ଭିତରକୁ ଆସି ସେ ମିଆଁଉ...ମିଆଁଉ ହୁଏ । ତା'ର ଛୋଟ ଛୋଟ ଆଖିରେ ମୋ' ଆଡ଼େ ଭାରି କରୁଣ ଦୃଷ୍ଟିରେ ଅନାଇ ରହେ । ତା' ଆଖିର ସେଇ ଦୃଷ୍ଟିରେ ଫୁଟି ଉଠିଥାଏ ଯେପରି ତା' ପ୍ରତି ଉପେକ୍ଷା ଓ ଅବିଚାରର ସବୁ ଅଭିଯୋଗ । ମୁଁ ଜିଙ୍ଗିଲ୍‌ର ଦୁଇ ଆଖିର କରୁଣ ଦୃଷ୍ଟି ଭିତରେ କ୍ରମେ ଲକ୍ଷ୍ୟକରି ପାରିଲି, ତା'ରି ପରି ଉପେକ୍ଷିତ କୋଟି କୋଟି ମଣିଷ ଶିଶୁଙ୍କର ଅତ୍ୟାଚାରିତ ଶୈଶବ । ଶୈଶବଟା ସେମାନଙ୍କର ବିତିଯାଏ ଅନାଦର, ଉତ୍ପୀଡ଼ନ ଓ କ୍ଷୁଧା ମଧ୍ୟରେ । ଜିଙ୍ଗିଲ୍ ମୋ ଆଖିରେ ହଠାତ୍ ହୋଇ ଉଠିଥିଲା, ସେଇପରି ଏକ ଉପେକ୍ଷିତ ମଣିଷ ଶିଶୁ ।

ମୁଁ ଅସ୍ୱାଭାବିକ ଆଦରରେ ତାକୁ ଦୁଇ ହାତରେ ମୋ ବିଛଣା ଉପରକୁ ଉଠାଇ ଆଣିଲି । ବିଛଣା ଉପରକୁ ଆସିବା ମାତ୍ରେ ସେ କୁଣ୍ଡଳୀ ମୋଡ଼ି ଦୁଇ ଆଖି ବୁଜି ଶୋଇ ପଡ଼ିଲା ।

୦୯/୦୭/୮୯

# କଟକ ସହରର ସହସ୍ରବର୍ଷ ପୂର୍ତ୍ତି

ଚାରିବର୍ଷ ତଳେ, କଲିକତା ମହାନଗରୀର ଦ୍ୱିଶତ ବାର୍ଷିକୀ ପାଳନ ଉପଲକ୍ଷେ କଲିକତାର ବୁଦ୍ଧିଜୀବୀ ମହଲରେ ଧୂମ୍‌ଧାମ୍ ପ୍ରସ୍ତୁତି ଆରମ୍ଭ ହୋଇ ଯାଇଥିଲା । ସେତେବେଳେ ମୁଁ ଦିନେ କଟକ ଆସୁଥିଲି, କେତେକ କାର୍ଯ୍ୟ-ଉପଲକ୍ଷ୍ୟରେ । ବାଟରେ ହଠାତ୍ ମନରେ ଗୋଟାଏ ଇଚ୍ଛା ଜନ୍ମିଲା, ବୃଦ୍ଧ ପ୍ରପିତାମହ କଟକଙ୍କୁ ଥରେ ସନ୍ଧୋଳି ଆସିବାପାଇଁ ।

କଲିକତା ମହାନଗରୀର ଦ୍ୱିଶତ-ବାର୍ଷିକୀ ପାଳନ ହେଉଛି, ଅଥଚ କେଜାଣି ହଜାରେ ବର୍ଷରୁ ଆଉରି ପୁରାତନ ଆମ ବୃଦ୍ଧ ପ୍ରପିତାମହ କଟକଙ୍କୁ କେହି କଟକୀମାନେ ଭୁଲରେ ସୁଦ୍ଧା ଥରେ ପଚାରୁନାହାନ୍ତି । ଇତି ମଧ୍ୟରେ ବୃଦ୍ଧ ପ୍ରପିତାମହ କେଉଁଠି ରହୁଛନ୍ତି, ତାହା ଭୁଲି ଯାଇଥିଲେ । କଟକର ବାଉନ ବଜାର ତେପନ ଗଳିର ଚେହେରା ମଧ୍ୟ ଇତିମଧ୍ୟରେ ପୂରାପୂରି ବଦଳି ଯାଇଛି । ମନେପଡ଼ିଲା, ବହୁ ବର୍ଷ ତଳେ ଡଗରପଡ଼ା ଅଞ୍ଚଳର ଗୋଟାଏ ସଂକୀର୍ଣ୍ଣ ଉପଗଳିରେ ବୃଦ୍ଧ ପ୍ରପିତାମହ ଗୋଟାଏ ଉଜୁଡ଼ା ଚାଳଘରେ ରହୁଥିଲେ । ମାସଟା ବୋଧହୁଏ ଅଶିଣ ମାସର ଶେଷ । ସିଝୁ ବାଡ଼ରେ ଜହ୍ନିଲଟାମାନଙ୍କରେ ଜହ୍ନିଫୁଲ ସବୁ ଫୁଟିଥିଲେ । ଜହ୍ନିଫୁଲର ମିଠାଳିଆ ବାସନାରେ ଗଳିଟା ବେଶ୍ ହାଲ୍‌କା ଲାଗୁଥିଲା । ଅଗଣାରେ ହରଗୌରା ଫୁଲ ସବୁ ଫୁଟି, ରାଶିରାଶି ଝରା ପାଖୁଡ଼ାରେ ସ୍ଥାନଟାକୁ ପୁଲକିତ କରି ଦେଇଥିଲେ । ବୃଦ୍ଧ ପ୍ରପିତାମହ ଖଣ୍ଡେ ମଶିଣା ଉପରେ କାନ୍ଥକୁ ଆଉଜି ବସି ଗୋଟାଏ ପାନ ଛେଚାରେ ଧୀର ମନ୍ଥର ଭାବରେ ପାନ ଛେଚି ଚାଲିଥିଲେ । ତାଙ୍କ ପାଖରେ ଯେପରି ସମୟର ଗତି ବନ୍ଦ ହୋଇଯାଇଥିଲା । ବୃଦ୍ଧ ପ୍ରପିତାମହଙ୍କର ଦୃଷ୍ଟିଶକ୍ତି ଅତି କ୍ଷୀଣ ହୋଇ ଆସିଥିଲା । ମୁଁ କିଏ ବୋଲି ସେ ପଚାରିବାରୁ, ମୁଁ ଉତ୍ତର ଦେଇଥିଲି, "ମୁଁ କେଜାଣି ଆପଣଙ୍କର, ପ୍ରପୌତ୍ରର ପ୍ରପୌତ୍ରର ପ୍ରପୌତ୍ର ।

"ତା'ପରଠାରୁ ବୃଦ୍ଧ ପ୍ରପିତାମହଙ୍କୁ ମୁଁ ଏକ ପ୍ରକାର ଭୁଲି ଯାଇଥିଲି । ଆଜି ଅନେକ ଖୋଜାଖୋଜି କରି, ସେଇ ଗଳିରେ ପହଞ୍ଚି ବୃଦ୍ଧ ପ୍ରପିତାମହଙ୍କ ସଂପର୍କରେ ଅନୁସନ୍ଧାନକରି

ବୁଝିଲି, ସେ କେବେଠୁ ସେ ସ୍ଥାନ ଛାଡ଼ି ଚାଲିଗଲେଣି । ସେଠାରେ ଏବେ ଠିଆ ହୋଇଥିଲା କେତେଟା ବଡ଼ ବଡ଼ ଉଚ୍ଚ କୋଠା । ଆଉ ଫ୍ଲାଟ୍ । ଆଖପାଖରେ ଅନେକ ପଚରାଉଚୁରା କରି ବୁଝିଲି, ବୃଦ୍ଧ ପ୍ରପିତାମହ ଏବେ ରହୁଛନ୍ତି ବନ୍ଧବାଶେଳୀ ଅଞ୍ଚଳରେ, କେଉଁ ଗୋଟାଏ ଗଳିରେ । ଅବଶେଷରେ ବହୁ ଅନୁସନ୍ଧାନ ପରେ, ଗୋଟିଏ ଶିଉଳିବସା ଭଙ୍ଗା ଏକ କୋଠାଘରେ ବୃଦ୍ଧ ପ୍ରପିତାମହ କଟକଙ୍କର ସାକ୍ଷାତ ମିଳିଲା । ପୂର୍ବଥର ପରି ସେ ବାହାରର ଶିଉଳିବସା ବାରନ୍ଦାରେ ଖଣ୍ଡେ ଛିଣ୍ଡା ମଶିଣା ଉପରେ ବସି ପାନ ଛେଚାରେ ପାନ ଛେଚି ଚାଲିଥିଲେ । ସେ ମୋତେ କ୍ଷୀଣ ଦୁର୍ବଳ କଣ୍ଠରେ ପଚାରିଲେ, "କୁଆଡ଼େ ଆସିଲ ?"

ମୁଁ ଉତ୍ତର ଦେଲି, "ଆପଣ ଜାଣି ଖୁସିହେବେ, ଆପଣଙ୍କର ଏକ ହଜାର ବର୍ଷ ପୂର୍ତ୍ତି ଉତ୍ସବ ବର୍ତ୍ତମାନ ମହା ସମାରୋହରେ ପାଳିତ ହେବାକୁ ଯାଉଛି ।"

ମୋ କଥା ଶୁଣି ବୃଦ୍ଧ ପ୍ରପିତାମହ ଦଣ୍ଡେ ଗୁମ୍‌ମାରି ନୀରବରେ ବସି ରହିଲେ । ତା'ପରେ ଈଷତ୍ ବିରକ୍ତ କଣ୍ଠରେ କହିଲେ, "ଆରେ ତମେ ଅପଦାର୍ଥ ଗୁଡ଼ାକ । ମୋର ହଜାରେ ବର୍ଷ ପୂର୍ତ୍ତି ପାଳନ କରିବ କ'ଣ ? ଯୋଉ ବାରବାଟୀ ଦୁର୍ଗରୁ ମୋର ସୂର୍ଯ୍ୟବଂଶୀ କପିଳେନ୍ଦ୍ର, ପୁରୁଷୋତ୍ତମ, ପ୍ରତାପରୁଦ୍ରଙ୍କର ଜୈତ୍ର ବାହିନୀ ସବୁ ବାହାରିଥିଲେ, ସେଇ ବାରବାଟୀକୁ ତମେ ଆଜି କରିଛ ଗୋଟାଏ ଅମଲାପଡ଼ା ଆଉ ଝୁଗୀ-ଝୁମ୍ପୁଡ଼ି ବସ୍ତି ! ତା'ର ଗଡ଼ଖାଇରେ ତମେ ଧୋବାତୁଠ କଲ । ତା'ପରେ ସେଠି ମାଛ ଚାଷ କଲ । ଏବେ ତା'ର ପଶ୍ଚିମ ପଟକୁ ପୋତି, ତା' ଉପରେ ରାସ୍ତା ତିଆରି କଲଣି ହୋମଡ଼ା, ଚୋମଡ଼ାମାନଙ୍କପାଇଁ । ମୋର ବାରବାଟୀ ହଜିଗଲା ! ମରକତକେଶରୀର ମହାନଦୀ ପଥରବନ୍ଧ, କାଠଯୋଡ଼ି ବନ୍ଧର ସାମାନ୍ୟ ଚିହ୍ନବର୍ଣ୍ଣ ସୁଦ୍ଧା ରଖିଦେଲ ନାହିଁ । ମୋର ରେଭେନ୍‌ସା କଲେଜକୁ ତମେ ଜାଳିଲ, ପୋଡ଼ିଲ ! ମୋ ବାରବାଟୀ ଦୁର୍ଗକୁ ଭାଙ୍ଗି ତା' ପଥରରେ କଟକରେ ସଡ଼କ ତିଆରି ହେଲା । ଏ କୀର୍ତ୍ତି କରିଥିଲେ, ଗୋରା ଇଂରେଜମାନେ । ତମେ ସେଥିରେ ବାଧା ଦେଇ ନଥିଲ । ମୋର ଆଉ ଅଛି କ'ଣ ? କାହାକୁ ନେଇ ତୁମେ ହଜାରେ ବର୍ଷ ପୂର୍ତ୍ତି ଉତ୍ସବ ପାଳନ କରିବ ?" ବୃଦ୍ଧ ପ୍ରପିତାମହଙ୍କ ଛାତି ପଞ୍ଜରା ଭିତରୁ ଗୋଟିଏ ଗଭୀର ଦୀର୍ଘଶ୍ୱାସ ବାହାରି ଆସିଲା ।

ମୁଁ ତାଙ୍କୁ କହିଲି, "କଟକର ସାହି ବସ୍ତିମାନଙ୍କରେ ଉତ୍ସବ ପାଳନପାଇଁ ସାଇ ମାମଲତକାରମାନେ ଲାଗିପଡ଼ିଛନ୍ତି । ବଡ଼ ବଡ଼ ପଣ୍ଡିତମାନେ ଆପଣଙ୍କ ଉପରେ ସନ୍ଦର୍ଭମାନ ପାଠ କରିବାପାଇଁ, ସେମିନାର ସିମ୍ପୋସିୟମର ବ୍ୟବସ୍ଥା କରୁଛନ୍ତି । ଆପଣ ତ ଏଥିରେ ଖୁସି ହେବାର କଥା !" ବୃଦ୍ଧ ପ୍ରପିତାମହ ଏଥିରେ କିନ୍ତୁ ଆଦୌ ଉତ୍ସାହିତ ମନେହେଲେ ନାହିଁ । ସେ ବିଷଣ୍ଣ କଣ୍ଠରେ କହିଲେ, "ସାଇ ବସ୍ତି ମାମଲତକାରମାନେ କେଉଁ ମତଲବ୍‌ରେ ଏଥିରେ ମାତିଛନ୍ତି, ସେକଥା ସେଇମାନେ ଏକା ଜାଣନ୍ତି । ଏଥିରେ ମୁଁ

ନିମିତ୍ତ ମାତ୍ର । ଆଉ ପଣ୍ଡିତମାନେ ଯେଉଁ ସଭା ସମିତି କରିବେ, ସେସବୁ କିତାବୀ କଥା । ସେଥିରେ ମୁଁ ନାହିଁ କିମ୍ବା ମୋର ଆତ୍ମା ନାହିଁ । କଲିକତା ମୋର ପଣନାତି । ତା'ର ଜନ୍ମ ଆଉ ନାହିକଟା ମୁଁ ମୋ ନିଜ ଆଖି ଆଗରେ ଦେଖିଛି । କଲିକତାର ଦ୍ୱିଶତ ବାର୍ଷିକୀ ପାଳିତ ହେବାରୁ ତମେ ଭାବିଲ, ମୋ ପାଇଁ ମଧ୍ୟ କିଛି ଗୋଟାଏ ହେଉ । କିନ୍ତୁ ଆଜି ମୋର ଅଛି କ'ଣ ? ତୁମେ ସବୁ ରଖିଛ ବା କ'ଣ ?" ବୃଦ୍ଧ ପ୍ରପିତାମହ ଆତ୍ମପ୍ରୌଢ଼ି କରି କହିଲେ, "ଆରେ ବାରାଣସୀ, ପାଟଳୀପୁତ୍ର, ବୈଶାଳୀ, ଏମାନେ ସବୁ ମୋ ଠାରୁ ବୟସରେ ବଡ଼ ହେଲେ ସୁଦ୍ଧା ମୁଁ ଥିଲି ସେଇ ବେଳର । ମୋର ଇତିହାସ ହଜାରେ ବର୍ଷରୁ ଯେ ଆହୁରି ପୁରୁଣା ନୁହେଁ, ତାକୁ ପ୍ରମାଣ କରିବା ପାଇଁ ତମ ପଣ୍ଡିତମାନଙ୍କର କି ସାକ୍ଷ୍ୟ ପ୍ରମାଣ ରହିଛି ?" ବୃଦ୍ଧ ପ୍ରପିତାମହ ଏତେଗୁଡ଼ାଏ କଥା କହିବା ପରେ ଗଭୀର କ୍ଳାନ୍ତିରେ କାନ୍ଥକୁ ଆଉଜି ଦୁଇ ଆଖି ବୁଜି ଧିମେଇ ପଡ଼ିଲେ । ମୁଁ ତାଙ୍କୁ ନମସ୍କାରଟିଏ ପକାଇ ସେଠାରୁ ସେଦିନ ବିଦାୟ ନେଇ ଆସିଲି ।

ଏହାର କେତେ ଦିନ ପରେ କଟକ ସହରର ସହସ୍ର ବର୍ଷ ପୂର୍ତ୍ତିପାଳନ ପାଇଁ ଉଦ୍ୟମ ଆଗେଇ ଚାଲିଥାଏ । ମୁଁ ଦିନେ ମୋର ପ୍ରତିବେଶୀ ବନ୍ଧୁ ବ୍ରଜବନ୍ଧୁଙ୍କୁ କହିଲି, ବୃଦ୍ଧ ପ୍ରପିତାମହ ବର୍ତ୍ତମାନ କିପରି ଅଛନ୍ତି, ଥରେ ଯାଇ ତାଙ୍କୁ ଦେଖି ଆସିବା । ବ୍ରଜବନ୍ଧୁ ଦୁଇଦିନ ପରେ ମୋତେ ଆସି ଖବର ଦେଲେ, ଏହା ଭିତରେ ଦିନେ ବୃଦ୍ଧ ପ୍ରପିତାମହ ଇହଲୋକ ଛାଡ଼ି ଚାଲିଗଲେ ବୋଲି ଶୁଣିଲି । ଆପଣ ଯେଉଁ ଘରର ଠିକଣା ଦେଇଥିଲେ, ସେ ଘର ମଧ୍ୟ ଆଉ ନାହିଁ । କେହି ଜଣେ ବ୍ୟବସାୟୀ ସେ ଘରକୁ ଭାଙ୍ଗି ସେଠାରେ ଗୋଟିଏ ମଲ୍‌ଟି-ଷ୍ଟୋରିଡ୍ ଫ୍ଲାଟ୍ ତିଆରି କରୁଛି । କଳା ଟଙ୍କାର ସହର ସିମେଣ୍ଟ କଂକ୍ରିଟ୍‌ର ଜଙ୍ଗଲ ଭିତରେ ବଢ଼ିବଢ଼ି ଚାଲିଛି । ଏଠି ଆଉ କଟକ କାହିଁ ? ଏହା ଭିତରେ କଟକର ଆତ୍ମା ବା କାହିଁ ? କାହାର ସହସ୍ର ବାର୍ଷିକୀ ପାଳନ କରିବା ପାଇଁ ଏତେ ବ୍ୟାକୁଳ ଏମାନେ ?

୧୬/୦୭/୮୯

# ସାହିତ୍ୟର ସଂଜ୍ଞା

ସେଦିନ ଭଦ୍ରଲୋକ ଯେତେବେଳେ ଖଣ୍ଡେ ଓଡ଼ିଆ ବହି ପଢ଼ିବାପାଇଁ ମୋତେ ମାଗିଲେ, ମୁଁ ପ୍ରକୃତରେ ଭାରି ବିସ୍ମିତ ହୋଇ ଉଠିଲି । ଭଦ୍ରଲୋକ ମୋର ସମବୟସ୍କ । ପିଲାବେଳେ କଟକରେ ଓଡ଼ିଆ ମାଧ୍ୟମରେ ସ୍କୁଲ୍‌ରେ ପଢ଼ାଶୁଣା କରୁଥିଲେ; ମାତ୍ର ତା'ପରେ ଇଞ୍ଜିନିୟରିଂ ପଢ଼ି ଇଞ୍ଜିନିୟର ହୋଇଥିଲେ ଓ ଟାଟା କମ୍ପାନୀର ଚାକିରିରୁ ଅବସର ନେବା ପର୍ଯ୍ୟନ୍ତ ସେଠାରେ ଇଞ୍ଜିନିୟର ରହିଆସିଥିଲେ । କିନ୍ତୁ ଭଦ୍ରଲୋକଙ୍କର ହୋମିଓପ୍ୟାଥିରେ ଆଗ୍ରହ ଥିଲା । ସେ ଘରେ ହୋମିଓପ୍ୟାଥି ପଢ଼ାଶୁଣା କରି ହୋମିଓପ୍ୟାଥି ଚିକିତ୍ସାରେ ପାରଦର୍ଶିତା ଲାଭ କରିଥିଲେ । କିନ୍ତୁ ଓଡ଼ିଶା ବାହାରେ ସାରା ଜୀବନ କଟିଥିବାରୁ ଓଡ଼ିଆ ସାହିତ୍ୟ ସହିତ ତାଙ୍କର ଆଦୌ ପରିଚୟ ନଥିଲା । ସେ ନିଜେ କହନ୍ତି, ତାଙ୍କୁ କେବେ କେବେ ସମୟ ମିଳିଲେ ସେ ଖଣ୍ଡେ ଖଣ୍ଡେ ବଙ୍ଗଳା, ହିନ୍ଦୀ ଅଥବା ଇଂରାଜୀ ଉପନ୍ୟାସ ପଢ଼ିଥାଆନ୍ତି । କିନ୍ତୁ ଓଡ଼ିଆ ସାହିତ୍ୟ ସହିତ ତାଙ୍କର ମୋଟେ ସଂପର୍କ ନଥିଲା । ତାଙ୍କ ଘରେ ପିଲାମାନେ ଇଂରାଜୀ ମିଡ଼ିୟମ୍ ସ୍କୁଲ୍‌ରେ ପଢୁଥିବାରୁ ଓଡ଼ିଆ ସାହିତ୍ୟ ସେମାନଙ୍କ ପକ୍ଷରେ ଗ୍ରୀକ୍ ଅଥବା ଲାଟିନ୍ ।

ମୁଁ ତେଣୁ ତାଙ୍କୁ ପଚାରିଲି, "ହଠାତ୍ ଓଡ଼ିଆ ବହି ପଢ଼ିବାପାଇଁ ଆପଣଙ୍କର ଆଗ୍ରହ ହେଲା କାହିଁକି ?" ସେ କୈଫିୟତ୍ ଦେବାପରି କଣ୍ଠରେ କହିଲେ, "ଓଡ଼ିଶାରେ ଅଛି, ଏହାର ପାଣି ପବନରେ ବଞ୍ଚିଛି, ଓଡ଼ିଆ ଭାଷାରେ କଥାବାର୍ତ୍ତା କରୁଛି ଅଥଚ ଓଡ଼ିଆ ସାହିତ୍ୟ କ'ଣ, ଟିକିଏ ଜାଣିବି ନାହିଁ ?" ମୁଁ ତାଙ୍କୁ ମୋ ଲାଇବ୍ରେରୀରୁ ତାଙ୍କ ଇଚ୍ଛା ଅନୁସାରେ ଖଣ୍ଡିଏ ଓଡ଼ିଆ ଉପନ୍ୟାସ ବା ଅନ୍ୟ କିଛି ଓଡ଼ିଆ ବହି ନେଇ ଯିବା ପାଇଁ କହିଲି । ଭଦ୍ରଲୋକ ଯେତେବେଳେ ଓଡ଼ିଆ ସାହିତ୍ୟ ସଂପର୍କରେ ଏତେ ଆଗ୍ରହୀ, ତାଙ୍କୁ ଉତ୍ସାହିତ କରିବା ନିଶ୍ଚିତ ଭାବରେ ମୋର ଏକ କର୍ତ୍ତବ୍ୟ ।

ତା'ର ଦୁଇ ଦିନ ପରେ ଅପରାହ୍ଣରେ ଯେତେବେଳେ ଭଦ୍ରଲୋକ ପୁଣି ମୋ' ପାଖକୁ ଆସିଲେ, ସେ ବହି ତାଙ୍କୁ କିପରି ଲାଗୁଛି ବୋଲି ପଚାରିଲି । ସେ ଈଷତ୍ ଲଜ୍ଜିତ ହେବାପରି କଣ୍ଠରେ କହିଲେ, "ଜାଣନ୍ତି ତ ମୁଁ ଜଣେ ଭାରି କାର୍ଯ୍ୟବ୍ୟସ୍ତ ଲୋକ । ସେଥିପାଇଁ ଏ ପର୍ଯ୍ୟନ୍ତ ବହିଟାକୁ ଆରମ୍ଭ କରିପାରିନାହିଁ । ତା'ଛଡ଼ା ବହିର ଟାଇପ୍ ସବୁ ଏତେ ଛୋଟ ଯେ ଦୁଇ ତିନି ମିନିଟ୍ ପଢ଼ିବା ପରେ ଆଖି ଆପେ ବନ୍ଦ ହୋଇଯାଉଛି । ମୁଁ ତାଙ୍କୁ ପରାମର୍ଶ ଦେଲି, "ସେ ବହିଟାକୁ ବଦଳାଇ, ତା' ବଦଳରେ ଅନ୍ୟ ଖଣ୍ଡେ ଓଡ଼ିଆ ବହି ବାଛି ନେବାପାଇଁ । କିନ୍ତୁ ଭଦ୍ରଲୋକ ସେଇ ବହିଟାକୁ ପଢ଼ିବେ ବୋଲି କେ'ଜାଣି କାହିଁକି ଆଗ୍ରହ ପ୍ରକାଶ କଲେ । ମୁଁ ନୀରବ ରହିଲି ।

ଏହାର ଦୁଇ ଦିନ ପରେ ସେ ମୋ' ପାଖକୁ ଆସିବା ମାତ୍ରେ କହିଲେ, "ଆଜି ବହିର ଦୁଇଟା ଚାପ୍ଟର ଶେଷ କରିଦେଲି । ଆଖିରୁ ପାଣି ଝରି ନଥିଲେ ମୁଁ ଆଉରି ପଢ଼ିଥାଆନ୍ତି । ପ୍ରକୃତରେ ବହିଟାକୁ ଛାଡ଼ିବାପାଇଁ ଆଦୌ ମନ ବଳୁ ନଥିଲା । ଓଡ଼ିଆ ସାହିତ୍ୟ ଏତେ ଚମତ୍କାର ହୋଇପାରେ, ଏ ଧାରଣା ମୋର ନଥିଲା ।" ମୁଁ ତାଙ୍କୁ ପଚାରିଲି, "ବହିଟା ଆପଣଙ୍କୁ ଏତେ ଭଲ ଲାଗିବାର କାରଣ କ'ଣ ?" ଭଦ୍ରଲୋକ ମୋତେ ସଂକ୍ଷେପରେ ଉତ୍ତର ଦେଲେ, "ଗୋଟାଏ ଫୁଲ କାହିଁକି ଭଲ ଲାଗେ, ତାହାର ଉତ୍ତର ଫୁଲ ଦେଇ ପାରିବ ନାହିଁ । କିନ୍ତୁ ଫୁଲ ଶୁଙ୍ଘିବାର ଲୋକ ମଧ୍ୟ ଦେଇ ପାରିବ ନାହିଁ । ଫୁଲଟା ଭଲ ଲାଗେ, ତାହା ହିଁ ଫୁଲର ଏକମାତ୍ର ପରିଚୟ ।"

ସେଦିନ ମୋର ମନେହେଲା, ଭଦ୍ରଲୋକଙ୍କର ଏଇ ସଂକ୍ଷିପ୍ତ ଉକ୍ତି ମଧ୍ୟରେ ମୁଁ ଯେପରି ପାଇଗଲି ରସୋତ୍ତୀର୍ଣ୍ଣ ସାହିତ୍ୟର ସଂଜ୍ଞା । ପ୍ରକୃତରେ ମୋର ମନେହେଲା ସାହିତ୍ୟର ସଂଜ୍ଞା ବା କ'ଣ ? ଯାହା କିଛି ଅଛି ସେ ସବୁ ବର୍ଣ୍ଣନାତ୍ମକ । ମାତ୍ର ବର୍ଣ୍ଣନା ସଂଜ୍ଞା ନୁହେଁ । ରସୋତ୍ତୀର୍ଣ୍ଣ ସାହିତ୍ୟ ସେହିପରି ଏକ ବସ୍ତୁ । ଏହା ଗୋଟିଏ ଫୁଲ ପରି । ମୁହୂର୍ତ୍ତକ ପାଇଁ ଏହା ମନ ଓ ଚେତନାକୁ ମହକାଇ ଦିଏ ଆଉ ପାଠକର ମନରେ ତାହାର ଗୋଟାଏ ଛାପ ରହିଯାଏ ।

୨୩/୦୭/୮୯

# ମୂଲ୍ୟ ଓ ମୂଲ୍ୟବୋଧ

ଅବଶେଷରେ ଦିନେ ଘର ଦାଣ୍ଡବାଡ଼ିର ବୁଢ଼ା ଚମ୍ପାଗଛଟାକୁ ମୂଳରୁ ହାଣିଦେବାପାଇଁ ବାନାମ୍ବର ନିଷ୍ପତ୍ତି ନେଲେ । ଚମ୍ପାଗଛଟା ଅନେକ ପୁରୁଣା ଦିନର । ବାନାମ୍ବର ତାଙ୍କ ପିଲାଦିନୁ ସେ ଗଛଟାକୁ ଦେଖି ଆସିଛନ୍ତି । ତାଙ୍କ ବାପା ମଧ୍ୟ ପିଲାଦିନୁ ସେଇ ଚମ୍ପାଗଛଟାକୁ ସେହିପରି ଦେଖି ଆସିଥିବା, ଅନେକ ଥର କଥା ପ୍ରସଙ୍ଗରେ ପ୍ରକାଶ କରୁଥିଲେ । ବୁଢ଼ା ଚମ୍ପାଗଛଟାକୁ ଧରି ରହିଥିଲା ବାନାମ୍ବରଙ୍କ ବଂଶର ଅନେକ କିଂବଦନ୍ତି ଓ ଉପକଥା । ବାନାମ୍ବରଙ୍କ ଗୋସେଇଁ ବାପା ନୀଳାମ୍ବର ଏ ଚମ୍ପାଗଛଟାକୁ କୋଉଠୁ ଆଣି ଏଠାରେ ଉତୁରାଇ ଥିଲେ କେଜାଣି, ଏ ଗଛରେ ବାରମାସୀ ଚମ୍ପାଫୁଲ ଫୁଟୁଥିଲା । ପୁଣି ଏ ଚମ୍ପାର ମହକର ତୁଳନା ନଥିଲା । ଗଛରେ କୁଢ଼କୁଢ଼ ହୋଇ ଫୁଲ ଫୁଟେ । ଫୁଲର ରଂଗ ସବୁ ପୁଣି ହଳଦୀଗଣ୍ଠି ପରି ହଳଦିଆ । ବାନାମ୍ବରଙ୍କ ଗୋସେଇଁ ବାପା ନୀଳାମ୍ବର ପ୍ରତିଦିନ ଏଇ ଗଛରୁ ଶହେ ଆଠ ଚମ୍ପାଫୁଲ ତୋଳି ଗାଁ ମୁଣ୍ଡର ସିଦ୍ଧେଶ୍ୱର ମହାଦେବଙ୍କୁ ପୂଜା ଦେବାପାଇଁ ଯାଉଥିଲେ । ବାନାମ୍ବରଙ୍କ ବାପା ଦିଗମ୍ବର ମଧ୍ୟ କୁଳାଚାର ଅନୁସାରେ ଥିଲେ ଶିବଭକ୍ତ । ସେ ମଧ୍ୟ ପ୍ରତିଦିନ ସେଇ ଗଛରୁ ଶହେ ଆଠ ଅକ୍ଷତ ଚମ୍ପାଫୁଲ ତୋଳି, ସିଦ୍ଧେଶ୍ୱର ଦେବଙ୍କୁ ପୂଜା ଦେବାପାଇଁ ଯାଉଥିଲେ । ଗାଁରେ ସିଦ୍ଧେଶ୍ୱର ମହାଦେବଙ୍କ ପାଖରେ କାହାର କୌଣସି ପୂଜା ବା ମାନସିକ ଥିଲେ ସେ ଏଇ ଗଛରୁ ଚମ୍ପାଫୁଲ ତୋଳି ନେଉଥିଲେ । କ୍ରମେ ସିଦ୍ଧେଶ୍ୱର ମହାଦେବଙ୍କ ସହିତ ନୀଳାମ୍ବରଙ୍କ ଚମ୍ପାଗଛର ଗୋଟାଏ ଅଭେଦ୍ୟ ସଂପର୍କ ଗଢ଼ି ଉଠିଥିଲା ।

କିନ୍ତୁ କେଜାଣି କାହିଁକି ବାନାମ୍ବର ଗଛଟାର ବେଢ଼ଙ୍ଗ ଚେହେରା ଆଦୌ ବରଦାସ୍ତ କରିପାରୁ ନଥିଲେ । ଗଛଟା ତାଙ୍କୁ ଦିଶୁଥିଲା, ଗୋଟାଏ ପାଳଭୂତ ପରି । ଗଛଟାକୁ ଦିନେ କାଟି ସଫାକରି ଦେବେ ବୋଲି ପିଲାଦିନୁ ତାଙ୍କ ମନରେ ଗୋଟାଏ ଝୁଙ୍କି ରହି ଆସିଥିଲା । କିନ୍ତୁ ସେ ଚାକିରି ଉପଲକ୍ଷ୍ୟରେ ଦୀର୍ଘକାଳ ଗାଁ ବାହାରେ ରହିଥିବାରୁ ତାହା

ଆଉ ସମ୍ଭବ ହୋଇପାରି ନଥିଲା । ଚାକିରି କାଳ ସମାପ୍ତ ହେବା ପରେ, ସହରରେ ରହିବା ପାଇଁ ତାଙ୍କର ପ୍ରବୃତ୍ତି ନଥିଲା । ଫାର୍ମିଂ କରିବା ପାଇଁ ତାଙ୍କର ପ୍ରବଳ ଆଗ୍ରହ ରହିଥିଲା । ଗାଁରେ ମଧ୍ୟ ଜମିବାଡ଼ି ପ୍ରଚୁର ଥିଲା । ଗାଁକୁ ଫେରିବା ପରେ ସେ ଏଇ ଫାର୍ମିଂରେ ଲାଗିପଡ଼ିଲେ । ସେତେବେଳେ ତାଙ୍କର ମନେହେଲା, ଦାଣ୍ଡବାଡ଼ିର ଏଇ ବୁଢ଼ା ଚମ୍ପାଗଛର ଛାଇ ପ୍ରାୟ ଦେଢ଼ ଗୁଣ୍ଠ ଜମିକୁ ଆକ୍ରାନ୍ତ କରି ରଖିଛି । ଚମ୍ପାଗଛ ଛାଇରେ ଦୁବଘାସଟିଏ ସୁଦ୍ଧା ଉଧାଉ ନାହିଁ।

ବାନାମ୍ବର ଚିନ୍ତା କରି ଦେଖିଲେ, ଚମ୍ପାଗଛଟାକୁ କାଟିଦେଲେ ଦାଣ୍ଡବାଡ଼ିଟାରେ ମଉସୁମୀ ଫୁଲ ଆଉ ପରିବା ଇତ୍ୟାଦି ଉତ୍ତୁରାଇ ହେବ । ତା'ଛଡ଼ା ଅତୀତର ବହୁ ଝଡ଼ବାତ୍ୟାରେ ଗଛଟାର କେତେଟା ଡାଳ ମଧ୍ୟ ଭାଙ୍ଗି ପଡ଼ିଥିଲା । ଗଛ ଗଣ୍ଡିକୁ ପୋକମାନେ ଖାଇ ସ୍ଥାନେ ସ୍ଥାନେ କଳା କଳା କୋଟର ସବୁ ଖୋଲି ପକାଇଥିଲେ । ସକାଳୁ ଉଠି ଦାଣ୍ଡ ଆଗରେ ସେ ବୁଢ଼ା ଚମ୍ପାଗଛଟାକୁ ଦେଖିବା ମାତ୍ରେ ତାଙ୍କର ମିଜାଜ୍ ଖରାପ ହୋଇ ଯାଉଥିଲା । କିନ୍ତୁ ଘରେ ଓ ବାହାରେ ଯେଉଁମାନଙ୍କୁ ସେ ଗଛଟାକୁ କାଟିଦେବା କଥା କହୁଥିଲେ, ସେମାନେ ସମସ୍ତେ ଗୋସେଇଁ ବାପା ଅମଳର ଗଛ ପୁଣି ସିଦ୍ଧେଶ୍ୱର ମହାଦେବଙ୍କ ସହିତ ଏହାର ସଂପର୍କ ଦୃଷ୍ଟିରୁ ଏହାକୁ ନକାଟିବାପାଇଁ ତାଙ୍କୁ ପରାମର୍ଶ ଦେଉଥିଲେ । ବାନାମ୍ବର କିନ୍ତୁ ତାଙ୍କ ବାପ ଗୋସେଇଁ ବାପାଙ୍କ ପରି ବିଶ୍ୱାସୀ ବା ଭକ୍ତ ନଥିଲେ । ସେ ଥିଲେ ପ୍ରଗତିବାଦୀ । ତାଙ୍କ ପାଖରେ ବିଶ୍ୱାସର କୌଣସି ମୂଲ୍ୟ ନଥିଲା । ବ୍ୟାବହାରିକ ଦୃଷ୍ଟିକୋଣରୁ ସେ ସବୁ କଥା ବିଚାର କରୁଥିଲେ । ବାନାମ୍ବର କହୁଥିଲେ, ବାପ ଗୋସେଇଁ ବାପଙ୍କ ଅମଳ ଗଲାଣି । ସିଦ୍ଧେଶ୍ୱର ମହାଦେବଙ୍କୁ ବୁଢ଼ା ଚମ୍ପାଗଛର ଫୁଲରେ ପୂଜା ନଦେଇ ଅନ୍ୟ ଫୁଲରେ ପୂଜା ଦେଲେ ପୂଜା ମାରା ହୋଇଯିବ ନାହିଁ । ଅବଶେଷରେ ଦିନେ ଦୁଇଜଣ ଗଛ କଟାଳି ଆସି ବୁଢ଼ା ଚମ୍ପାଗଛକୁ ହାଣି ମାଟିରେ ଶୁଆଇ ଦେଲେ ।

କ୍ରମେ ବାନାମ୍ବର ସେଇ ଜାଗାରେ ତିଆରିକଲେ ଗୋଟିଏ ସୁନ୍ଦର ଫୁଲ ବଗିଚା । ସେଥିରେ ବର୍ଷସାରା ବିଭିନ୍ନ ଋତୁ ଫୁଲର ବାହାର । ଜିନିଆ, ସୂର୍ଯ୍ୟମୁଖୀ, ଅର୍କିଡ୍, ଗୋଲାପ ଓ ଗେଣ୍ଡୁଫୁଲ ପ୍ରଭୃତିର ବର୍ଣ୍ଣିଳ ଉତ୍ସବରେ ସେଇ ବିବର୍ଣ୍ଣ ପରିବେଶ ଉତ୍ସବମୁଖର ହୋଇ ଉଠିଲା । ବାନାମ୍ବର ଏଥିପାଇଁ ମନେ ମନେ ଭାରି ଖୁସି ହେଲେ ।

କିନ୍ତୁ ସେବାଟେ ଗଲା ଆଇଲା ଲୋକେ ଟିପ୍ପଣୀ କଲେ, ବୁଢ଼ାଚମ୍ପାଗଛଟା ଥିବାବେଳେ ଏ ଜାଗା ଖଣ୍ଡକ ଦିନରାତି ସବୁବେଳେ ମହକୁ ଥିଲା । ଆଜି ଆଉ ସେ ମହକ ନାହିଁ । ଅଛି କେବଳ ବାନାମ୍ବରଙ୍କ ଫୁଲ ବଗିଚାରେ ଗନ୍ଧହୀନ ଫୁଲର ବାହାର୍ ।

ବାନାମ୍ବରବାବୁ ମନେମନେ ଭାବନ୍ତି, ଏହା ହିଁ ତ ପ୍ରଗତି ଓ ଆଧୁନିକତା । ଏଥିରେ ରଙ୍ଗ ଅଛି, ଚମତ୍କାରିତା ଅଛି, କିନ୍ତୁ ମଧ୍ୟଯୁଗୀୟ ମହକ ଏଥିରେ ଖୋଜିଲେ ମିଳିବ କେଉଁଠୁ ? ତଥାପି ସେ ସୁଦ୍ଧା ନିଜେ ବେଳେବେଳେ ଏହାର ଅଭାବ ଅନୁଭବ କରନ୍ତି ଓ ଗଛଟାକୁ କାଟି ଦେଇ ନଥିଲେ ଭଲ ହୋଇଥାନ୍ତା ବୋଲି ପସ୍ତେଇ ଥାଆନ୍ତି ।

୩୦/୦୭/୮୯

# ତୃତୀୟ ବିଶ୍ୱ

୧୯୬୭ ମସିହାର ପ୍ରଳୟଙ୍କରୀ ବାତ୍ୟାର ଦୁଇଦିନ ପରେ, ମୁଁ ମୋର ନିର୍ବାଚନମଣ୍ଡଳୀର ଜଣେ ବନ୍ଧୁଙ୍କ ସହିତ ସେ ଅଞ୍ଚଳରେ କ୍ଷୟକ୍ଷତିର କଳନା କରିବା ପାଇଁ ଆସିଥିଲି । ଜିପ୍‌ରେ କେନ୍ଦ୍ରାପଡ଼ା ପର୍ଯ୍ୟନ୍ତ ପହଞ୍ଚିବାରେ ବିଶେଷ ଅସୁବିଧା ନଥିଲା । ମାତ୍ର କେନ୍ଦ୍ରାପଡ଼ାଠାରୁ ପଟ୍ଟାମୁଣ୍ଡାଇ ପର୍ଯ୍ୟନ୍ତ ଯିବାର ଉପାୟ ନଥିଲା । ରାସ୍ତାକଡ଼ର ବଡ଼ବଡ଼ ଗଛ ସବୁ ଉପୁଡ଼ି ପଡ଼ିଥିବାରୁ ରାସ୍ତାରେ ଯାନବାହନର ଚଳାଚଳ ସବୁ ବନ୍ଦ ହୋଇଯାଇଥିଲା । କିନ୍ତୁ ସେଇ ଅଞ୍ଚଳ ବାତ୍ୟାରେ ବିଶେଷ କ୍ଷତିଗ୍ରସ୍ତ ହୋଇଥିବାରୁ, ଆମେ ବାହାରିଥିଲୁ ପଟ୍ଟାମୁଣ୍ଡାଇ ଅଭିମୁଖରେ । ତେଣୁ ପଟ୍ଟାମୁଣ୍ଡାଇ କେନାଲ୍ ବନ୍ଧ ଉପରେ ଅନେକ କଷ୍ଟରେ ଯାଇ କୌଣସି ପ୍ରକାର ପଟ୍ଟାମୁଣ୍ଡାଇରେ ପହଞ୍ଚିଲୁ । ସେତେବେଳକୁ ସନ୍ଧ୍ୟା ଆଠଟା । ଆମର ସେତେବେଳେ ପ୍ରୟୋଜନ ଥିଲା, ବିଶ୍ରାମ । ମାତ୍ର ପଟ୍ଟାମୁଣ୍ଡାଇ ଡାକ ବଙ୍ଗଳାରେ ରିଲିଫ୍ କେନ୍ଦ୍ର ଖୋଲା ଯାଇଥିବାରୁ ସେଠାରେ ତିଳ ଧାରଣ ପାଇଁ ସୁଦ୍ଧା ସ୍ଥାନ ନଥିଲା ।

ରାତିରେ କେଉଁଠି ଆଶ୍ରୟ ନେବୁ ସେଇ ଚିନ୍ତାରେ ଆମେ ଚିନ୍ତିତ ହୋଇପଡ଼ିଥିବା ବେଳେ ଡାକବଙ୍ଗଳାର ଚୌକିଦାର କହିଲା, "ଅଳଭା ଆଗର ଅଡ଼ାଯୋଡ଼ି ଡାକବଙ୍ଗଳାକୁ ପଳାନ୍ତୁ । ସେଠାରେ କେହି ନଥିବେ ।" ଆମେ ବ୍ରାହ୍ମଣୀ ନଦୀବନ୍ଧ ଉପରେ ଅଳଭା ଲକ୍ ଡେଇଁ ଅଡ଼ାଯୋଡ଼ି ଡାକବଙ୍ଗଳାରେ କୌଣସିମତେ ଆସି ପହଞ୍ଚିଲୁ । ମାତ୍ର ସେଠାରେ ମଧ୍ୟ ତିଳ ଧାରଣ ପାଇଁ ସ୍ଥାନ ନଥିଲା । ବାତ୍ୟାରେ ସେ ଅଞ୍ଚଳ ଭୟଙ୍କର କ୍ଷତିଗ୍ରସ୍ତ ହୋଇଥିବାରୁ ଆଖପାଖ ଗାଁର ଲୋକମାନେ ପରିବାର ସାଙ୍ଗରେ ଧରି ସେଇ ଡାକବଙ୍ଗଳାରେ ସମସ୍ତେ ଆଶ୍ରୟ ନେଇଥିଲେ । ଡାକବଙ୍ଗଳାର ତିନୋଟିଯାକ କୋଠରିରେ ବାତ୍ୟାପୀଡ଼ିତମାନଙ୍କର ସଂସାର ଜମି ଉଠିଥିଲା । କେଉଁଠି ଇଟା ପଥରରେ ଚୁଲି ତିଆରି କରି କେହିକେହି ରନ୍ଧାବଢ଼ା କରୁଥିଲେ । ଆଉ ଯେଉଁମାନଙ୍କର ରନ୍ଧାବଢ଼ାର ପ୍ରୟୋଜନ ନଥିଲା, ସେମାନେ ଶୋଇଶୋଇ ବିଶେଷତଃ, ସ୍ତ୍ରୀଲୋକମାନେ ନିଜ ନିଜ ଭିତରେ

କଳି ତକରାଳ ଆରମ୍ଭ କରିଦେଇଥିଲେ । କିଏ କାହା ଭାତ ଚୋରାଇ ନେଇଛି ତ କିଏ କାହାର କ୍ଷୀରଗୁଣ୍ଡ ଓ ବିସ୍କୁଟ୍ ଲୁଚାଇ ଖାଇଯାଇଛି ଇତ୍ୟାଦି । ଏହିପରି କଦର୍ଯ୍ୟ କଳହରେ ସେଇ ଦୁର୍ଗନ୍ଧ ପରିବେଶଟା ଆଉରି ଉତ୍କଟ ଓ ଅସହ୍ୟ ହୋଇ ଉଠୁଥିଲା । ଚୌକିଦାର ଆମ ଅବସ୍ଥା ବୁଝିପାରି କହିଲା, "ମୁଁ ଏଇ ପଛ ବାରଣ୍ଡାକୁ ଖଣ୍ଡେ ଖଟ କାଢ଼ିଦେଉଛି । ବିଛଣା ତ ନାହିଁ । ଆପଣ ସେଇ ଖଟ ଉପରେ କୌଣସ ପ୍ରକାରେ ରାତିଟା କଟାଇ ଦିଅନ୍ତୁ ।" ତା'ଛଡ଼ା ସେତେବେଳେ ସେଇ ବାତ୍ୟା ବିଧ୍ୱସ୍ତ ଅପନ୍ତରା ଭିତରେ କେଉଁଠି ଆଶ୍ରୟ ନେବାର ଅନ୍ୟ ଉପାୟ ବା ଅବଲମ୍ବନ ନଥିଲା । କିନ୍ତୁ କଳହ ଓ ଚିତ୍କାର ମଧ୍ୟରେ ଆମେ ଅନେକ ରାତି ପର୍ଯ୍ୟନ୍ତ ମୁହୂର୍ତ୍ତକ ପାଇଁ ମଧ୍ୟ ବିଶ୍ରାମ ନେଇପାରି ନଥିଲୁ । କାଠ ଖଟଟା ଉପରେ ପଡ଼ି ରହିଥିଲୁ ସକାଳର ଅପେକ୍ଷାରେ ।

ତା'ରି ଭିତରେ କ୍ଳାନ୍ତି ଓ ଅବସାଦରେ ଆଖିରେ କେତେବେଳେ ନିଦ ଆସି ଯାଇଥିଲା କେଜାଣି, ସକାଳେ ଉଠିବା ବେଳକୁ ପ୍ରାୟ ଆଠଟା ବାଜି ସାରିଥିଲା । ଡାକବଙ୍ଗଳା ଚୁପ୍‌ଚାପ୍ । କାଲି ରାତିରେ ଯେ ଏଇ ଡାକବଙ୍ଗଳାରେ ଏତେ ଲୋକ ଥିଲେ ଓ ନିଜ ନିଜ ମଧ୍ୟରେ କଳହ, ଚିତ୍କାର କରୁଥିଲେ, ତାହା ବିଶ୍ୱାସ କରିହେଉ ନଥିଲା । ଚୌକିଦାରକୁ ପଚାରିବାରୁ ସେ କହିଲା, "ସେମାନେ ଅଳନ୍ତା ରିଲିଫ୍ ଡ଼ିପୋକୁ ଚାଲିଗଲେଣି ସକାଳୁ ସକାଳୁ । ଫେରିବେ ସେଇ ସଂଜକୁ । ଦଶଦିନ ପାଇଁ ସେଠାରେ ରିଲିଫ୍ ଦିଆଯାଉଛି ତ, ଥିଲାବାଲା ଲୋକମାନେ ମଧ୍ୟ ସେଠି ରିଲିଫ୍ ପାଇଁ ଭିଡ଼ ଲଗାଉଛନ୍ତି ।" ଆମେ କୌତୂହଳବଶତଃ ଡାକବଙ୍ଗଳାର ଗୋଟିଏ କୋଠରି ଭିତରେ ପଶିଲୁ । କେତେଟା ଟିଣ ଟ୍ରଙ୍କ୍ ଆଉ ଗୁଡ଼ାଏ ଛିଣ୍ଡା ମଇଳା ବିଛଣା । ଆଲୁମିନିୟମ୍ ଡେକ୍‌ଚି ହାଣ୍ଡିଛଡ଼ା ସେଠାରେ ଅନ୍ୟ କିଛି ଆଖିରେ ପଡ଼ିଲା ନାହିଁ । ତା'ରି ଭିତରେ ଦେଖିଲୁ, ବେଶ୍ ହୃଷ୍ଟପୁଷ୍ଟ-ଦରବୁଢ଼ାଟିଏ କାନ୍ଥକୁ ଆଉଜି ବସି, ଚୁଲି ଉପରେ ଡେକ୍‌ଚିଟାଏ ବସାଇ ଚା' ତିଆରି କରୁଛି । ସେ ଯେଉଁ ରିଲିଫ୍ ସାମଗ୍ରୀ ପାଇଥିଲା ସେଥିରୁ କିଛି ବିକ୍ରିକରି ସେଇ ପଇସାରେ ଚା'ଗୁଣ୍ଡ ଓ ଚିନି କିଣିଛି । ବୋଧହୁଏ କୌଣସି ଦାତବ୍ୟ ଅନୁଷ୍ଠାନ ପକ୍ଷରୁ ବାତ୍ୟାପୀଡ଼ିତମାନଙ୍କପାଇଁ ପାଉଁରୁଟି ବିସ୍କୁଟ୍ ବଣ୍ଟାଯାଉଥିଲା । ସେଇ ପାଉଁରୁଟି ଆଉ ବିସ୍କୁଟ୍‌କୁ ସେ ତା' ଆଗରେ ସଜାଇ ରଖିଥିଲା, ଚା' ସାଙ୍ଗରେ ଖାଇବ ବୋଲି । ଆମେ ତା'ର ପ୍ରାତଃଭୋଜନର ଏଇ ପରିପାଟୀକୁ ଚାହିଁ ଦେଖୁଛୁ, ଏଇ ସମୟରେ ପଙ୍ଗୁ ବୁଢ଼ାଟିଏ କେଉଁଠୁ ଆଣ୍ଠେଇ ଆଣ୍ଠେଇ ଆସି ତାକୁ ଖଣ୍ଡେ ରୁଟି ବା ବିସ୍କୁଟ୍ ଆଉ ଟୋପାଏ ଚା' ମାଗିଲା । ଦରବୁଢ଼ାଟି କ୍ରୋଧରେ ଫାଟିପଡ଼ି ଚିତ୍କାରକରି ଉଠିଲା, "ଯା ପଳା ପଳା ଏଠୁ । ଭିକମଗାଟାଏ । ଚା ପାଉଁରୁଟି ଖାଇବ ।" ପଙ୍ଗୁ ଜଣକ ବୁଢ଼ାର ଏଇ ଚିତ୍କାରରେ ତଥାପି ନିରସ୍ତ ହେଲା ନାହିଁ । ସେ ବାହୁନିବା ପରି କଣ୍ଠରେ କହିଲା, "ମୁଁ ତ ରିଲିଫ୍

କ୍ୟାମ୍‌କୁ ଯାଇପାରୁ ନାହିଁ । ଯାଇ ପାରୁଥିଲେ କ'ଣ ତୁମକୁ ଚା ଟୋପାଏ ଆଉ ଖଣ୍ଡେ ରୁଟି ମାଗନ୍ତି ?" ବୁଢ଼ା କ'ଣ ବୁଝିଲା କେଜାଣି, ପଙ୍ଗୁ ଉପରକୁ ଟୁକୁଡ଼ାଏ ରୁଟି ଫିଙ୍ଗିଦେଇ କହିଲା, "ହଉ ଏତକ ନେଇ ଯା । ଆଉ ଭୁଲ୍‌ରେ କେବେ ମୋ ପାଖକୁ ଆସିବୁନାହିଁ ।" ତା'ପରେ ସେଇ ଶୁଖିଲା ରୁଟିରୁ କଳେକଳେ କାମୁଡ଼ି ମୁନ୍ଦାଏ ମୁନ୍ଦାଏ ଚା' ପିଇବାପାଇଁ ଲାଗିଲା । ପଙ୍ଗୁ ଜଣକ ବଡ଼ ବିକଳ ଦୃଷ୍ଟିରେ ଚାହିଁ ରହିଥିଲା ଟୋପାଏ ଚା' ପାଇଁ । ତା'ରି ପରି ଆଉ କେତୋଟି ଛୋଟା ଓ କେମ୍ପା ମଧ୍ୟ ସେଠାକୁ ଆସୁଥିଲେ ସେଇ ଟୋପାଏ ଚା' ଆଉ ବିସ୍କୁଟ୍ ଲୋଭରେ । ସାରନ୍ଦା ଗାଁର ଜଗୁ ବେହେରା ଜଣେ ମାତବର ଲୋକ, ସିଏ କ'ଣ ଟୋପାଏ ଚା' ଆଉ ଫାଳେ ବିସ୍କୁଟ୍ ଦେବ ନାହିଁ ? ମାତ୍ର ଜଗୁ ବେହେରା ସମସ୍ତଙ୍କୁ ଦୂର୍‌ଦୂର ମାର୍‌ମାର୍ କରି ସେଠାରୁ ତଡ଼ି ଦେଉଥିଲା ।

୦୬/୦୮/୮୯

# ରଙ୍ଗିନ ଫଟୋଗ୍ରାଫ୍

ଇଗଲ୍‌ର ଶାଣିତ, ତୀକ୍ଷ୍ଣ ଦୃଷ୍ଟିଶକ୍ତି ପ୍ରଶାନ୍ତ ବାବୁଙ୍କର ଆଉ ନାହିଁ । ନିଜକୁ ସେ ଏବେ ତୁଳନା କରି ଥାଆନ୍ତି ପେଚା ସହିତ । ପେଚା ପରି [illegible] ଦିନସାରା ବସି ରହିଥାଆନ୍ତି । ତା' ଛଡ଼ା ପେଚାପରି ମଧ୍ୟ ଦିବାଲୋକରେ ସେ କିଛି ସ୍ପଷ୍ଟ ଦେଖି ପାରନ୍ତି ନାହିଁ ।

ସେଦିନ ସଂଧ୍ୟାବେଳେ ତାଙ୍କର ସାନପୁଅ ହାତରେ କ'ଣ ଗୁଡ଼ାଏ ଧଳାଧଳା କାର୍ଡ଼ ଧରି ଆସି ପହଞ୍ଚିଲା । ସେ ପହଞ୍ଚିବା ମାତ୍ରେ ପରିବାରର ସମସ୍ତେ ଗୁଡ଼କୁ ପିମ୍ପୁଡ଼ି ଘେରିବା ପରି, ତାକୁ ଘେରିଗଲେ । ପ୍ରଶାନ୍ତ ବାବୁ ଆରାମ ଚୌକି ଉପରେ ପଡ଼ି, ଏସବୁ ବ୍ୟାପାରର ବିନ୍ଦୁ ବିସର୍ଗ ବୁଝିପାରୁ ନଥିଲେ । ତାଙ୍କର ନାତି, ନାତୁଣୀଙ୍କଠାରୁ ଆରମ୍ଭ କରି ପୁତ୍ର, କନ୍ୟା, ସ୍ତ୍ରୀ ପର୍ଯ୍ୟନ୍ତ ସମସ୍ତେ, ସାନପୁଅ ହାତରୁ ସେଇ ଧଳା ଧଳା କାର୍ଡ଼ସବୁ ଛଡ଼ାଇ ଦେଖୁଛନ୍ତି ଓ ବିଭିନ୍ନ ପ୍ରକାରର ଟିପ୍ପଣୀମାନ କରୁଛନ୍ତି । ଏପରିକି ତାଙ୍କ ଭୃତ୍ୟଟି ମଧ୍ୟ ସେଥିରେ ଯୋଗ ଦେଇଛି । ସେ ତା'ର ସ୍ଥୁଳ ରୁଚିରେ ଏଇଟା ଭାରି ଭଲ ଉଠିଛି କହିବା ବେଳକୁ ଅନ୍ୟମାନେ ତା'ର ପସନ୍ଦକୁ ନାକଚ କରି ଦେଉଛନ୍ତି ।

କେଉଁ ସଂପର୍କରେ ଏସବୁ ଆଲୋଚନା ଚାଲିଛି, ପ୍ରଶାନ୍ତବାବୁ ବୁଝି ପାରିଲେ ନାହିଁ, କିମ୍ବା ଏ ସଂପର୍କରେ କାହାକୁ କ'ଣ ପଚାରିବେ, ସ୍ଥିର କରିପାରିଲେ ନାହିଁ । ସମସ୍ତେ କୋଳାହଳରେ ବ୍ୟସ୍ତ । ଅବଶେଷରେ ବହୁ ମତରେ ସ୍ଥିର ହେଲା, ଏଇ ଫଟୋଟା ସବୁଠାରୁ ଭଲ ଉଠିଛି ।

ପ୍ରଶାନ୍ତବାବୁଙ୍କର ମନେପଡ଼ିଗଲା, ଗତ ଜନ୍ମଦିନରେ ତାଙ୍କର କେତେଗୁଡ଼ାଏ ରଙ୍ଗିନ ଫଟୋ ଉଠିଥିଲା । ବୋଧହୁଏ ସେହି ଫଟୋଗ୍ରାଫ୍ ଘେନି ଏସବୁ ବିତର୍କ ଓ ଆଲୋଚନା ଚାଲିଛି । ସାନପୁଅ କହିଲା, "ଏଇଟାକୁ ପୋଟ୍ରେଟ୍ ସାଇଜ୍‌ର ଏନ୍‌ଲାର୍ଜ କଲେ ପ୍ରାୟ ହଜାରେ ଟଙ୍କା ପଡ଼ିବ ।"

ନାତୁଣୀ ବିନୀତା ପଚାରିଲା, "ଏ ଫଟୋଗ୍ରାଫ୍‌ଟା ତମର ଭାରି ଚମତ୍କାର ଉଠିଛି ଜେଜେ ! ନୁହେଁ ?"

ପ୍ରଶାନ୍ତବାବୁ ଖୁବ୍ ସନ୍ତୁଷ୍ଟ ହୋଇଥିବାର ଅଭିନୟ କରି କହିଲେ, "ପ୍ରକୃତରେ ଭାରି ଚମତ୍କାର ଉଠିଛି । ଏପରି ଫଟୋଗ୍ରାଫ୍ ଆଉ କେହି କେବେ ମୋର ଉଠାଇ ପାରି ନଥିଲେ ।" ଗୋଟିଏ ଦୀର୍ଘଶ୍ୱାସ ପକାଇ ପ୍ରଶାନ୍ତବାବୁ ଫଟୋଗ୍ରାଫ୍‌ଟିକୁ ସାନପୁଅ ହାତକୁ ବଢ଼ାଇ ଦେଲେ ।

ଏମାନେ ଯେଉଁ ରଙ୍ଗିନ ଫଟୋଗ୍ରାଫ୍‌କୁ ଖୁବ୍ ଚମତ୍କାର ହୋଇଛି ବୋଲି ଏତେ ତାରିଫ୍ କରୁଛନ୍ତି, ପ୍ରଶାନ୍ତବାବୁଙ୍କ ଦୃଷ୍ଟିରେ ତାହା ଥିଲା କେବଳ ଅରାଏ ଛାଇ ଆଉ ମୁଠାଏ ପାଉଁଶର ଚିତ୍ର ।

କିନ୍ତୁ ଏଇ ଅରାଏ ଛାଇ ଆଉ ମୁଠାଏ ପାଉଁଶର ରଙ୍ଗିନ ଚିତ୍ର ଆଙ୍କିବାପାଇଁ ପ୍ରଶାନ୍ତବାବୁ ସାରା ଜୀବନ କେତେ ରଙ୍ଗ ଆଉ ତୂଳୀ ନିଃଶେଷ କରି ଦେଇ ନାହାନ୍ତି ସତେ !

୧୩/୦୮/୮୯

# ଚଳମାନ ତୁଷାରଖଣ୍ଡ

ଦିନେ ସକାଳେ, ସହରର ଜଣେ ବିଶିଷ୍ଟ ଚାଟାର୍ଡ଼ ଆକାଉଣ୍ଟାଣ୍ଟ ମୋତେ ହଠାତ୍ ଟେଲିଫୋନ୍ କରି, ବିନା ଉପକ୍ରମଣିକାରେ କହିଲେ, "ଆପଣଙ୍କର ଜୀବନ ସ୍ମୃତି 'ପଥ ଓ ପୃଥିବୀ'ରେ ଆପଣ ଯେଉଁ ବରଜୁ ଦାସଙ୍କ ସଂପର୍କରେ ଲେଖିଛନ୍ତି, ତାଙ୍କ ସହିତ ମୋର କି ସଂପର୍କ ଥିଲା ଜାଣନ୍ତି ?" ଜଣେ ଚାଟାର୍ଡ଼ ଆ[illegible]ଙ୍କ ସହିତ ଜଣେ ଭବଘୂରା ଅଭିନେତା ଓ ଚିତ୍ରଶିଳ୍ପୀର କି ସଂପର୍କ ଥାଇପାରେ ଭାବି [illegible]ସ୍ମିତ ହେଲି । ମୁଁ ସଂକ୍ଷେପରେ ଉତ୍ତର ଦେଲି, "ସେ କଥା ଜାଣିବାର ମୋର ତ କୌଣସି ଉପାୟ ନଥିଲା !" ଭଦ୍ରଲୋକ ଗଦ୍‌ଗଦ୍ କଣ୍ଠରେ କହି ଚାଲିଲେ, "ସେ ଥିଲେ ମୋ ବଡ଼ଭାଇଙ୍କ ସଂଗାତ । ମୋ ଭାଉଜଙ୍କୁ ସେ ଧରମ ଭଉଣୀ କରିଥିଲେ, ମହାପ୍ରସାଦ ଦେଇ । ମୁଁ ତେଣୁ ତାଙ୍କୁ ବଡ଼ଭାଇ ଜ୍ଞାନ କରୁଥିଲି । କିନ୍ତୁ ସେ ମଧ୍ୟ ଥିଲେ ମୋର ବନ୍ଧୁ । ସିଏ ଅନାହୂତି ଦିନେ ଦିନେ ଆମ ଗାଁ ଘରେ ଆସି ପହଞ୍ଚି ଯାଉଥିଲେ । କଥାହୁଏ ଦିନେ ଦୁଇ ଦିନ ସିଏ ଆମ ଘରେ ରହିବେ ବୋଲି । କିନ୍ତୁ ଆର ଓଳିକୁ ଖୋଜିଲା ବେଳକୁ ସେ ଆଉ ନଥାନ୍ତି । କାହାକୁ କିଛି ନକହି, ଯେମିତି ଅନାହୂତି ଆସିଥିଲେ, ସେହିପରି ଅନାହୂତି ସେ କୁଆଡ଼େ ଚାଲିଯାଆନ୍ତି... !" ମୁଁ କହିଲି, "ସେହିପରି ପ୍ରକୃତିର ମଣିଷ ଥିଲେ ସେ ।"

ଚାଟାର୍ଡ଼ ଆକାଉଣ୍ଟାଣ୍ଟ କହିଚାଲିଲେ, "ତା'ପରେ ବହୁ ବର୍ଷ ଧରି ତାଙ୍କ ସହିତ ମୋର ଆଉ କୌଣସି ସଂପର୍କ ନଥିଲା । ମୁଁ ଏକପ୍ରକାର ତାଙ୍କୁ ପାସୋରି ଦେଇଥିଲି କହିଲେ ଚଳେ । ବହୁବର୍ଷ ପରେ ଦିନେ ସେ ହଠାତ୍ କେଉଁଠୁ କଟକରେ ମୋ ଘରର ଠିକଣା ସଂଗ୍ରହ କରି, ମୋ ଚାମ୍ବରରେ ଆସି ହାଜର । ବହୁ ବର୍ଷପରେ ତାଙ୍କର ସାକ୍ଷାତ ପାଇ ମୁଁ ଯେତିକି ବିସ୍ମିତ ହେଲି, ତା'ଠାରୁ ଆନନ୍ଦିତ ହେଲି ବେଶି । ମୁଁ ଆନନ୍ଦରେ ଚୌକି ଛାଡ଼ି ଉଠି ତାଙ୍କୁ କୁଣ୍ଢାଇ ପକାଇବାକୁ ଯାଉଛି, ସେ କେତେ ପାଦ ପଛକୁ ଘୁଞ୍ଚିଯାଇ କହିଲେ, "ମୁଁ ଗୋଟିଏ ପାପୀ ! ନରାଧମ । ମୋତେ ଛୁଅଁ ନାହିଁ ।" ତାଙ୍କର ଏପରି ପ୍ରତିକ୍ରିୟା ମୋତେ ଭାରୀ ବିସ୍ମିତ କରିଦେଲା । ତାଙ୍କ ପାଇଁ କପେ ଚା' ମଗାଇ କଥାବାର୍ତ୍ତା ଆରମ୍ଭ କରିବା ବେଳକୁ ସେ ହଠାତ୍ ପୁଣି ଉଠି ଚାଲିଗଲେ । ଯେଉଁ କେତେ

ମିନିଟ୍ ସେଠାରେ ସେ ବସିଥିଲେ, ତାଙ୍କଠାରୁ ବୁଝିଥିଲି, ସେ ଚାଉଳିଆଗଞ୍ଜ ଅଞ୍ଚଳରେ କେଉଁଠି ରହନ୍ତି । କିନ୍ତୁ ଠିକ୍ କେଉଁଠି ରହନ୍ତି, ଯେତେ ପଚାରିଲେ ବି ସେ ମୋ ପ୍ରଶ୍ନକୁ ବାଁରେଇ ଦେଇଥିଲେ। ତା'ର କେତେ ମାସ ପରେ ସେ ଦିନେ ମୋ ଚାମ୍ବରରେ ଆସି ପହଞ୍ଚିଲେ ଓ ତାଙ୍କ ଥଳି ଭିତରୁ ଖଣ୍ଡେ ଶିବତାଣ୍ଡବ ପେଣ୍ଟିଙ୍ଗ୍ ମୋ ସାମ୍ନାରେ ଟେବୁଲ୍ ଉପରେ ରଖିଲେ । ସେ ସେମିତି ଉଚ୍ଚକୋଟୀର ଚିତ୍ରଶିଳ୍ପୀ ନଥିଲେ । ତଥାପି, ପେଣ୍ଟିଙ୍ଗ୍‌ଟି ମନ୍ଦ ହୋଇ ନଥିଲା । ମୁଁ ତାଙ୍କୁ କିଛି ଟଙ୍କା ଦେବାପାଇଁ ମନେମନେ ଭାବୁଛି, ସେ ହଠାତ୍ ବାହାରକୁ ଚାଲିଗଲେ । ତା' ପରେ ଲୋକ ଲଗାଇ ଚାଉଳିଆଗଞ୍ଜ ଅଞ୍ଚଳରେ ମୁଁ ତାଙ୍କର ପତ୍ତା ଲଗାଇ ବୁଝିଲି; ସେ ପାଟରା ସାଇରେ କୁଞ୍ଜକାନ୍ତ ମଠରେ ରହୁଛନ୍ତି । ଦୁଇ ଥର ସେ ମଠକୁ ଯାଇଥିଲି ତାଙ୍କର ସାକ୍ଷାତ ପାଇଁ । କିନ୍ତୁ ସବୁ ଥର ମଠ ଲୋକେ କହନ୍ତି, ଆଠ ଦଶଦିନ ହେବ ସେ କୁଆଡ଼େ ଚାଲି ଯାଇଛନ୍ତି । କେବେ ଫେରିବେ, ଆମେ କ'ଣ ଜାଣିଛୁ ? ଅଗତ୍ୟା ମୋର ଜଣେ ଲୋକକୁ କିଛି ଟଙ୍କା ଦେଇ ତାଙ୍କ ପାଖକୁ ସେଇ ମଠ ଠିକଣାରେ ପଠାଇଲି । ସେଦିନ ସେ ମଠରେ ଥିଲେ ଓ କ'ଣ ଗୋଟାଏ ଛବି ଆଙ୍କୁଥିଲେ । ମୋ ଲୋକ ତାଙ୍କୁ ଲଫାଫାଟି ଦେବା ମାତ୍ରେ, ତା' ଭିତରେ କେତେଖଣ୍ଡ ନୋଟ୍ ଦେଖି ସେ କହିଲେ, ଗୋଟାଏ ଛବି ପାଇଁ ସେ ଏତେ ଟଙ୍କା ପଠାଇଲେ ! ହଉ ଯାଅ ଯାଅ ! ତା'ପରେ ଏବେ ଆପଣଙ୍କ ବହିରୁ ଜାଣିଲି, ତାଙ୍କର କାଳ ହୋଇଯାଇଛି । କିନ୍ତୁ ସେ କାହିଁକି ଏପରି ଅଶାନ୍ତ ଥିଲେ ?" ମୁଁ ଉତ୍ତର ଦେଲି, "ସେ ପ୍ରଶ୍ନର ଉତ୍ତର ମୁଁ ବା କ'ଣ ଦେଇ ପାରିବି ? ସେ ଥିଲେ ଏମିତି ଖିଆଲି ଆଉ ଅଭିମାନୀ ପ୍ରକୃତିର । କେଉଁଠି କେବେ ତାଙ୍କ ମନରେ କିଏ କ'ଣ କହି ଆଘାତ ଦେଇଥିଲା, ତାହା ସେ ଭୁଲି ପାରିନଥିଲେ ।" ଟେଲିଫୋନ୍‌ରେ ବରଜୁ ଦାଦାଙ୍କ ସମ୍ପର୍କରେ କଥାବାର୍ତ୍ତା ସେତିକିରେ ସେଇଠି ଶେଷ ହୋଇଥିଲା ।

ପିଲାଦିନୁ ଅନେକ ଚେଷ୍ଟାକରି ସୁଦ୍ଧା ମୁଁ ବରଜୁ ଦାଦାଙ୍କୁ କେବେ ଚିହ୍ନିପାରି ନଥିଲି । ତାଙ୍କ ବିଷୟରେ ଭାବିଲେ ମୋର ମନେହୁଏ, ପ୍ରତ୍ୟେକ ମଣିଷ ଗୋଟିଏ ଗୋଟିଏ ଚଳମାନ ତୁଷାରଖଣ୍ଡ ପରି । ତାହାର ଏଗାର ଭାଗରୁ ମାତ୍ର ଗୋଟିଏ ଭାଗ ଆମେ ଦେଖିପାରୁ ଓ ଚିହ୍ନିପାରୁ । ତା'ର ଅବଶିଷ୍ଟ ଦଶ ଭାଗ ଅଜଣା ରହସ୍ୟ ଭିତରେ ବୁଡ଼ି ରହିଥାଏ । ପ୍ରତ୍ୟେକ ମଣିଷ ଅନ୍ୟ ସହିତ ସବୁ ଘନିଷ୍ଠ ପରିଚୟ ସତ୍ତ୍ୱେ ଚିରକାଳ ରହିଯାଏ ଅପରିଚିତ ହୋଇ । ପ୍ରକୃତରେ ଆମେ କ'ଣ ଆମର ଘନିଷ୍ଠତମ ବନ୍ଧୁକୁ କେବେ ଠିକ୍ ଚିହ୍ନି ପାରିଛୁ ? ଜାଣି ପାରିଛୁ ? ଆମେ ପ୍ରତ୍ୟେକେ ପ୍ରତ୍ୟେକ ନିକଟରେ ରହିଯାଉ ଚିର ଅପରିଚିତ ହୋଇ !

୨୦/୦୮/୮୯

# ବଡ଼ଭାତ-ସାନଭାତ

କଟକ ଜିଲ୍ଲା ତଳହଟୀ ଲୁଣି ଅଞ୍ଚଳର ଗୋଟିଏ ଗାଁ, ଗୋଟିଏ ଜୁଆରିଆ ନଈ କୂଳରେ ।

ଇଏ ସ୍ୱାଧୀନତା ପାଇବା ବର୍ଷର କଥା, ଅର୍ଥାତ୍ ଆଜିଠୁ ୪୨ ବର୍ଷ ତଳର ଘଟଣା । ଆମେ ଦୁଇ ବନ୍ଧୁ ବାହାରିଥିଲୁ, ସର୍ବାପେକ୍ଷା ଅଧିକ ଅଗ୍ରଗାମୀ କୁହାଯାଉଥିବା କଟକ ଜିଲ୍ଲାର, ସର୍ବାପେକ୍ଷା ଅନୁନ୍ନତ କୌଣସି ଗ୍ରାମକୁ ଆବିଷ୍କାର କରିବାପାଇଁ । ମାସଟା ବୋଧହୁଏ ଅଶିଣ । ରାସ୍ତାମାନଙ୍କରୁ ତଥାପି କାଦୁଅ ପଙ୍କ ଶୁଖି ନଥିଲା । ରାହାମା ବଜାର ପର୍ଯ୍ୟନ୍ତ କଟକରୁ ନାଲି ଗୋଡ଼ିର ଭଙ୍ଗା ଟୁଟା ରାସ୍ତାରେ ଆମେ ବସ୍‌ରେ ଆସି ପାରିଥିଲୁ । ମାତ୍ର ତେଣିକି ବସ୍‌ର ଚଳାଚଳ ବନ୍ଦ । ସେଠାରୁ ଦୀର୍ଘ ୧୮ ମାଇଲ ରାସ୍ତା ଆମେ କାଦୁଅ ପଙ୍କ ଆଉ ଚିକିଟା ଖସଡ଼ା ମାଟିରେ ଚାଲିଚାଲି ସନ୍ଧ୍ୟାର ଅଳ୍ପ ପୂର୍ବରୁ ଆସି ପହଞ୍ଚିଥିଲୁ, ଏଇ ଗାଁରେ ।

ସବୁଆଡ଼େ ଲୁଣିଆ ମାଟିର ପାଉଁଶିଆ ଚେହେରା । ସେଇଟି ଅପେକ୍ଷାକୃତ ଗୋଟିଏ ବଡ଼ ଗାଁ । କିନ୍ତୁ ମାଟି ଘରର ଚେହେରା ସବୁ ଶ୍ରୀହୀନ । ସବୁଜିମାର ସ୍ପର୍ଶ କେଉଁଠି ହେଲେ ନଥିଲା । କେଉଁଠାରେ କାହା ବାଡ଼ିରେ ଗୋଟାଏ କଦଳୀଗଛ କିମ୍ବା ସଜନା ଗଛଟାଏ ସୁଦ୍ଧା ଆମ ଆଖିରେ ପଡ଼ିଲା ନାହିଁ । ଏଇ ଅପନ୍ତରା ଅପରିଚିତ ଗାଁରେ, ରାତିଟା କେଉଁଠି କିପରି କଟାଇବୁ ଭାବୁଛୁ, ଗାଁ ଦାଣ୍ଡରେ ଦେଖାହେଲା ଲୁଙ୍ଗି ପିନ୍ଧା ଜଣେ ପ୍ରୌଢ଼ ବ୍ୟକ୍ତିଙ୍କ ସହିତ । କାନ୍ଧରେ ଖଣ୍ଡେ ଶସ୍ତା ଗାମୁଛା ପକାଇ, ସେ ବୋଧହୁଏ ଗାଁ ବୁଲି ବାହାରିଥିଲେ । ଆମେ ଷଣ୍ଢକୁଦ ଚାଲିଯିବୁ । ପ୍ରୌଢ଼ ବ୍ୟକ୍ତି ଜଣକ ଜଣେ ସଦାଶୟ ବ୍ୟକ୍ତି, ମାନିବାକୁ ପଡ଼ିବ । ସେ ଆମ୍ଭମାନଙ୍କୁ ଆଶ୍ୱାସନା ଦେଇ କହିଲେ, "ରାତିଟା ରହିବାପାଇଁ କୌଣସି ଅସୁବିଧା ହେବନାହିଁ । ଆସନ୍ତୁ !" ତା' ପରେ ସେ ଆମକୁ ନେଇଗଲେ ତାଙ୍କ ଗାଁର କୋଠଘରକୁ । ଏ ଘରଟିର କାନ୍ଥସବୁ ତଥାପି ପୂରା ଉଠି ନଥିଲା । ମେଝିଆ କିନ୍ତୁ ଲିପାପୋଛା ହୋଇ ସମତୁଲ ଥିଲା । ଶୁଣିଲୁ, ଦିନବେଳା

ଏବେ ନୂଆକରି ସିଏ ନିଜେ ଏକ ଚାଟଶାଳୀ ସେଇଠାରେ ଖୋଲିଛନ୍ତି । ଘର ଭିତରେ ଗୋଟାଏ ଚଉଡ଼ା ହେଁସ ପଡ଼ିଥିଲା । ସେ କହିଲେ, "ରାତିଟା ଏଇ ଘରେ କୌଣସିମତେ କଟାଇ ନେବେ ।" ଆମେ ତାଙ୍କୁ ଅଜସ୍ର ଧନ୍ୟବାଦ ଦେଇ, କ୍ଲାନ୍ତି, ଅବସାଦ ଓ କ୍ଷୁଧାରେ ସେଇ ହେଁସ ଉପରେ ଗଡ଼ି ପଡ଼ିଲୁ । କାଲି ସକାଳେ ବରଂ କେଉଁଠି ମୁଢ଼ି କିମ୍ବା ଚୂଡ଼ାର ସନ୍ଧାନ କଲେ ଚଳିବ । ଆଜି ରାତିଟା ପାଇଁ ଆମର ପ୍ରୟୋଜନ ବିଶ୍ରାମ । ଯୌବନରେ, ସେଦିନ ମନର ଭୋକ ବାଧୁଥିଲା ସିନା, କିନ୍ତୁ ପେଟର ଭୋକ ଆମେ ଅନେକ ସମ୍ଭାଳି ପାରୁଥିଲୁ ।

କିଛି ସମୟ ପରେ ସେଇ ଭଦ୍ରବ୍ୟକ୍ତି ହାତରେ ଗୋଟିଏ ନାଳିଚା ପଡ଼ି ଆସିଥିବା ମିଞ୍ଜିମିଞ୍ଜିଆ ଧୂଆଁଳିଆ ଲଣ୍ଠନ ଧରି, ପୁଣି ସେଠାରେ ଆସି ପହଞ୍ଚିଗଲେ । ସେ ପଚାରିଲେ, "ରାତିରେ ଆପଣମାନେ ଖାଇବେ କ'ଣ ? ଆମର ଇଆଡ଼େ ଗହମ, ଅଟା ରୁଟି କହିଲେ, କେହି ତିଆରି ଜାଣନ୍ତି ନାହିଁ । ରାତିରେ ସମସ୍ତେ ପଖାଳ ଖାଇ ଚଳିଯାଆନ୍ତି । ତେବେ ଆପଣଙ୍କ ପାଇଁ ବଡ଼ଭାତ ଆଉ ସାନଭାତର ବ୍ୟବସ୍ଥା ହୋଇଯିବ ।" ସାନଭାତ କ'ଣ ବୋଲି ଆମେ ପଚାରିବାରୁ ସେ କହିଲେ, "ବଡ଼ ଭାତ ହେଉଛି ନାଲି ବଗଡ଼ା ଉଷୁନା ଚାଉଳ । ଆଉ ସାନଭାତ ହେଉଛି ଖୁଦ । ଏଇ ଖୁଦକୁ କାଞ୍ଜିପରି ତିଆରି କରି ଭାତରେ ଗୋଳାଇ ଖାଉ ।"

ମୁଁ ପଚାରିଲି, "କାହିଁକି ? ଇଆଡ଼େ କ'ଣ ମୁଗ, ବିରି, କୋଳଥ, ପନିପରିବା କିଛି ହୁଏ ନାହିଁ ?" ସେ ଉତ୍ତର ଦେଲେ ଯେ ଲୁଣା ମାଟିରେ ସେସବୁ ସ୍ୱପ୍ନ । ଅଗତ୍ୟା ସେଇ ବଡ଼ଭାତ ଆଉ ସାନଭାତରେ ଆମେ ରାତ୍ରି ଆହାର କୌଣସିମତେ ସୌଜନ୍ୟ ଦୃଷ୍ଟିରୁ ଶେଷ କଲୁ ।

ଏଇ ଗାଁଟି ପରେ ମୋର ନିର୍ବାଚନମଣ୍ଡଳୀର ଅନ୍ତର୍ଭୁକ୍ତ ଥିଲା । ମୁଁ କିନ୍ତୁ ଏଇ ଗାଁ ଆଡ଼େ ତା' ପରଠାରୁ ଆଉ କେବେ ଆସି ନଥିଲି । କିନ୍ତୁ ୧୯୭୧ ମସିହା ନିର୍ବାଚନ ବେଳେ, ଏକ ସଭାରେ ଯୋଗଦେବା ପାଇଁ ମୋତେ ଏଇ ଗାଁକୁ ଆସିବାକୁ ପଡ଼ିଥିଲା । ସେଦିନକୁ ଏ ଗାଁର ପୂର୍ବ ଚେହେରା ଆଉ ନଥିଲା । ୧୯୪୮ ମସିହାରେ ଏ ଗାଁକୁ ମୁଁ ୧୮ ମାଇଲ୍ ବାଟ କାଦୁଅ ପଙ୍କରେ ଚାଲିଚାଲି ଆସି ପହଞ୍ଚିଥିଲି ବୋଲି ବିଶ୍ୱାସ କରିପାରୁ ନଥିଲି । ଗାଁ ପର୍ଯ୍ୟନ୍ତ ଲମ୍ବିଥିଲା- କଳା ରିବନ୍ ପରି ପିଚୁ ରାସ୍ତା । ସବୁଆଡ଼େ ସବୁଜିମାର କୋମଳ ସ୍ପର୍ଶ । ଗାଁ ଦାଣ୍ଡରେ ଇଲେକ୍‌ଟ୍ରିକ୍ ବତିଖୁଣ୍ଟ । ଗାଁ ମୁଣ୍ଡରୁ ଲମ୍ବି ଯାଇଥିଲା, ଗୋଟିଏ ଛୋଟିଆ ବଜାର । ଦୋକାନମାନଙ୍କରୁ ରେଡ଼ିଓର ଚିତ୍କାରରେ ସ୍ଥାନଟା କୌଣସି ସହର ତଳିର ଭ୍ରମ ସୃଷ୍ଟି କରିଥିଲା । ଆମ ସଭା ମଣ୍ଡପରୁ ସଭାର ପ୍ରଚାର କାର୍ଯ୍ୟ ଚାଲିଥିଲା, ମାଇକ୍ରୋଫୋନ୍‌ରେ ହିନ୍ଦୀ ସିନେମା ଗୀତର କାନଫଟା ଚିତ୍କାରରେ ।

ସେଦିନ ରାତିରେ ଆମେ ମଧ୍ୟ ଆଶ୍ରୟ ନେଇଥିଲୁ, ସେଇ କୋଠ ଚାଟଶାଳୀ ଘରେ । କିନ୍ତୁ ସେଦିନକୁ ସେ ଘରଟି ପକ୍‌କା ହୋଇ ସାରିଥିଲା । ତା' ଥିଲା ଗ୍ରାମର କ୍ଲବ୍ ଘର । ରାତିରେ ସେଦିନ ଆମେ ପରଟା, ମାଂସ ତରକାରୀଠାରୁ ଆରମ୍ଭ କରି ବନ୍ଧାକୋବି ତରକାରୀ ଆଉ ବିଲାତିବାଇଗଣ ଖଟା ପର୍ଯ୍ୟନ୍ତ ସବୁ ଖାଇ ପାରିଥିଲୁ । ଜଣେ କର୍ମୀ ସୁଦ୍ଧା ଆସି ପଚାରିଥିଲେ, ମୋର ଡ୍ରିଙ୍କ୍‌ସ ଦରକାର କି ବୋଲି । ମୁଁ କିନ୍ତୁ ନିର୍ବାଚନ ବେଳେ, ନିର୍ବାଚନମଣ୍ଡଳୀ ଭିତରେ ଡ୍ରିଙ୍କ୍‌ସ ଛୁଏଁ ନାହିଁ । ବାଇଶ ତେଇଶଟା ବର୍ଷ ଭିତରେ ବଢ଼ଭାତ- ସାନଭାତ ଖାଇଥିବା ଏ ଗାଁର ଅଭୂତପୂର୍ବ ପରିବର୍ତ୍ତନ ମୋତେ ବିସ୍ମିତ କରିଥିଲା ।

ସେ ଦିନର ସେଇ ପ୍ରୌଢ଼ବ୍ୟକ୍ତି ଏବେ ବୃଦ୍ଧ ହୋଇଯାଇଥିଲେ । ମୁଁ ଆସିଥିବା ଜାଣି, ସେ ମୋ ସହିତ ଦେଖା କରିବାପାଇଁ ସେଠାକୁ ଆସିଲେ । ତାଙ୍କୁ ପଚାରିଲି, "ସ୍ୱାଧୀନତା ପରେ ଏଇ ବର୍ଷ କେତେଟା ଭିତରେ ଆପଣଙ୍କ ଗାଁର ଏ ପରିବର୍ତ୍ତନ ମୋତେ ବିସ୍ମିତ କରିଦେଇଛି ।" ସେ ଉତ୍ତର ଦେଲେ, ପାରାଦ୍ୱୀପ ବନ୍ଦର ଯୋଗୁଁ ଆମର ସେଦିନର ସେ ଗାଁ ଆଜି ଆଉ ନାହିଁ । ଆଜି ଏ ଗାଁ ଅଧା ସହର । କିନ୍ତୁ ସେ ଦିନ ବଢ଼ଭାତ, ସାନଭାତ ଖାଇ ଆମେ ଯେଉଁ ଶାନ୍ତି ସନ୍ତୋଷରେ ଥିଲୁ, ଆଜି ଆମ ଭିତରେ ଆଉ ସେ ଶାନ୍ତି ସନ୍ତୋଷ ନାହିଁ । ଘରେ ଘରେ ଆଜି ବାପ ପୁଅ, ଭାଇଭାଇ, ଦଳା ଦଳି, ପିଟାପିଟି ।"

ବୃଦ୍ଧ ନିରବ ରହିଲେ ।

ମୋର ମନେହେଲା, ସ୍ୱାଧୀନତା ପରେ ପରିମାଣାତ୍ମକ ଦୃଷ୍ଟିରୁ ଆମର ଜୀବନ ଯଥେଷ୍ଟ ବିକଶିତ ହୋଇଛି । କିନ୍ତୁ ଗୁଣାତ୍ମକ ଦୃଷ୍ଟିରୁ ଏହା ହୋଇ ଉଠିଛି ସଙ୍କୁଚିତ । ଏ ଦୁଇଟି ମଧ୍ୟରେ ସାମଞ୍ଜସ୍ୟ ନ ଆସିବା ପର୍ଯ୍ୟନ୍ତ କେବଳ ଏଇ ପରିମାଣାତ୍ମକ ବିକାଶର କୌଣସି ଅର୍ଥ ନାହିଁ ।

୧୭/୦୮/୮୯

# ଖରାଖିଆ ଭୋବନା

ପ୍ରତିଥର ଭିଁପୁରକୁ ଯିବାବେଳେ ମୁଁ ଗାଁ ମୁଣ୍ଡରେ ଖଣ୍ଡେ ଅନାବାଦୀ ଗୋଚର ଭିତରେ, କିଆ ବୁଦାଘେରା ଗାଁ ମହାଦେବଙ୍କ ଅରାଏ ଚକଡ଼ା ପାଖରେ ଜିପ୍ ଦଣ୍ଡେ ଅଟକାଇ ଦିଏ- ଭକ୍ତିରେ ଯେତେ ନୁହେଁ, ସେତେବେଶି କୌତୂହଳରେ । କୋଉ କାଳର ଖଣ୍ଡେ ଛୋଟିଆ ପଥର ଚକଡ଼ା... ତା' ପରେ ଗୋଟିଏ ଶିବଲିଙ୍ଗଙ୍କ ଉପରେ କେହି କେବେ ଠେକିଏ କ୍ଷୀର ଢାଳିବା, ଅଥବା ସେବାପୂଜା କରିବା କିମ୍ୱା କୌଣସି ଶ୍ରଦ୍ଧାଳୁ ଭକ୍ତ ସେଠାକୁ ଯାଇ ପୂଜା ଦେବା ମୋ ଆଖିରେ ପଡ଼ିନାହିଁ । ଚକଡ଼ା ଦେଖିଲେ ମନେହୁଏ ଏହା ଯେପରି ଏକ ଅପୂଜା ଶିବଲିଙ୍ଗ । ଅଥଚ ଚକଡ଼ାଟିକୁ କେହି ପ୍ରତିଦିନ ଧୋଇ ପରିଷ୍କାର କରି ଯାଉଥିଲା । ଲିଙ୍ଗଙ୍କ ପାଖରେ ପଡ଼ିରହିଥାଏ କେତେଟା ବେଲପତ୍ର ଆଉ ଗଇଣ କିମ୍ୱା ଅରଖ ଫୁଲ ।

କ୍ରମେ ଏହି ଶିବଲିଙ୍ଗଙ୍କ ସଂପର୍କରେ ମୋର କୌତୂହଳ ବଢ଼ିଲା । ଭିଁପୁର ଗାଁରେ କେହି କେହି ମୋତେ କହିଲେ, "ଇଏ ଖରାଖିଆ ଭୋବନା ମହାଦେବ । ଥପନା ଲିଙ୍ଗ ନୁହନ୍ତି, ପାତାଳଫୁଟା ଲିଙ୍ଗ । ଭିଁପୁର ଗାଁର ଇଷ୍ଟ ଦେବତା । ଡାକିଲେ ଓ କରନ୍ତି । କିନ୍ତୁ ମହାଦେବମାନଙ୍କର ଫୁଙ୍ଗଳେଶ୍ୱର, କୁନ୍ତଳେଶ୍ୱର, ସ୍ୱପ୍ନେଶ୍ୱର, ସିଦ୍ଧେଶ୍ୱର, ଅମରେଶ୍ୱର, ଲକ୍ଷେଶ୍ୱର ପ୍ରଭୃତି ଏତେ ସବୁ ସୁନ୍ଦର ସୁନ୍ଦର ନାଁ ଥାଉଥାଉ ଏହାଙ୍କ ନାଁକୁ କାହିଁକି ଖରାଖିଆ ଭୋବନା ରଖାଯାଇଛି, ବୁଝିପାରିଲି ନାହିଁ । ପଚାରିଲେ ଲୋକେ କହନ୍ତି, ଭୋବନା ମହାଦେବ ତାଙ୍କ ନାଁ ସେହିପରି ରହିବ ବୋଲି ସ୍ୱପ୍ନରେ କୁଆଡ଼େ କାହାକୁ କହିଥିଲେ । କାହାକୁ ସେପରି ସ୍ୱପ୍ନାଦେଶ ହୋଇଥିଲା ବୋଲି ପଚାରିଲେ ଲୋକେ କହନ୍ତି, ଭୋବନାଙ୍କ ସେବାୟତ ମହନୀ ପତ୍ରୀଙ୍କୁ ପଚାରିଲେ ସେସବୁ କଥା କହିବେ । ଭୋବନାଙ୍କ ଚକଡ଼ା ବସାଣ ପୋଥି ତାଙ୍କ ପାଖରେ ଅଛି । ସେ ପୋଥି ସେ କାହାକୁ ଦେଖାନ୍ତି ନାହିଁ । ଦେଖାଇବା ପାଇଁ କହିଲେ, କହନ୍ତି ବଂଶଲୋପ ହୋଇଯିବ ।

ଭୋବନାଙ୍କ ସଂପତ୍ତି ଦିନେ କୁଆଡ଼େ ଥିଲା ଦଶବାଟି ଦଶମାଣ ଦଶଗୁଣ୍ଠ ଦଶବିଶ୍ୱା ଜମି । କୋଉ ରଜା ଭୋବନାଙ୍କ ସେବାପୂଜା ପାଇଁ ସେ ଜମି ଖଞ୍ଜି ଦେଇଥିଲେ । ସେ ଜମି ସବୁ ବିକ୍ରୀବଟାରେ ଯାଇ ଯାଇ ଅବଶିଷ୍ଟ ମାଣେ କି ଅଧମାଣେ ବାକି ଅଛି । ସେତକ ଭୋଗ କରୁଛନ୍ତି ସେବାୟତ ମହନୀ ପତ୍ରୀ । ସେ ଠାକୁରଙ୍କ ସେବାପୂଜା କରନ୍ତି । କିନ୍ତୁ ଖରାଖିଆ ଭୋବନା ସ୍ୱପ୍ନାଦେଶ ଦେଇଥିଲେ ତାଙ୍କ ସେବାପୂଜା କେହି ଦେଖିବେ ନାହିଁ । ସେଥିପାଇଁ ମହନୀ ପତ୍ରୀ ବଡ଼ି ସକାଳୁ କେହି ଉଠିବା ଆଗରୁ ଭୋବନାଙ୍କ ଚକଡ଼ା ଧୋଇ ତାଙ୍କ ଉପରେ ପାଣି ଢାଳି, ତାଙ୍କ ସେବାପୂଜା ବଢ଼ାଇ ଆସିଥାଆନ୍ତି । ସେଇଥିପାଇଁ ବୋଧହୁଏ ଭୋବନା ମହାଦେବଙ୍କୁ କେହି କେବେ ପୂଜା ଦେବା ମୁଁ ଦେଖି ନଥିଲି ।

ଥରେ ସେବାୟତ ମହନୀ ପତ୍ରୀଙ୍କ ସହିତ ଦେଖାହେଲା ତାଙ୍କ ଘରେ । ବୟସ ସତୁରି ଟପି ଗଲାଣି । ପିଠି ଧନୁପରି ବଙ୍କା ହୋଇ ଆସିଲାଣି । ଗଞ୍ଜେଇ ଟାଣିଟାଣି ଦେହ ଶୁଖି ଗଲାଣି । ଭୋବନାଙ୍କ ମାଜଣା ପାଇଁ ମୁଁ ପାଞ୍ଚଟଙ୍କା ତାଙ୍କୁ ଦେବାରୁ ସେ ଭାରି ଖୁସି ହୋଇଗଲେ । ତାଙ୍କୁ ଭୋବନା ମହାଦେବଙ୍କ ଇତିବୃତ୍ତ ପଚାରିବାରୁ ସେ କଫମିଶା ଘାଘଡ଼ା ଗଳାରେ କହିଲେ, "ଏ ଅଞ୍ଚଳ ଆଗେ ଥିଲା ଭୀମ ନଗ୍ର । ଏହାର ରାଜା ଥିଲେ ଭୀମସେନ । ଭାରି ପ୍ରତାପୀ ଆଉ ଶିବଭକ୍ତ । ତାଙ୍କ ଭକ୍ତିରେ ପ୍ରସନ୍ନ ହୋଇ ଭୋବନା ଏଠାରେ ବିଜେ ହେଲେ । ରଜା ତହୁଁ ତାଙ୍କ ପାଇଁ ଦେଉଳଟିଏ ତିଆରି କରିବେ ବୋଲି ମନାସିଲେ । ଦେଉଳ ତିଆରି କାମ ଆରମ୍ଭ ହୋଇଛି କି ନାହିଁ ଭୋବନା ସ୍ୱପ୍ନରେ ରାଜା ଭୀମସେନଙ୍କୁ ପଚାରିଲେ, "ମୋ ପାଇଁ ତୁ ଦେଉଳ କରିବୁ, ସେ ଦେଉଳ କ'ଣ ଭୁବନେଶ୍ୱର ଦେଉଳଠାରୁ ବେଶି ଉଚ୍ଚା, ବେଶି ବଡ଼ ହୋଇପାରିବ ?"

ରଜା ଭୀମସେନ କହିଲେ, 'ମୋର ସେ ଶକ୍ତି କାହିଁ ପ୍ରଭୁ ! ଭୁବନେଶ୍ୱର ଦେଉଳଠୁ ବଳି ମୁଁ ଗୋଟାଏ ଦେଉଳ ତୋଳାଇ ପାରିବି !' ଭୋବନା ତହୁଁ କହିଲେ, 'ତାହେଲେ, ତୁ ଆଉ ମୋ ପାଇଁ ଦେଉଳ ତିଆରି କରନା । କଲେ ତୋ ବଂଶ ଲୋପ ପାଇବ । ମୁଁ ହେବି ତ ହେବି ଭୋବନେଶ୍ୱର ନହେଲେ ଖରାଖିଆ ଭୋବନା ।' ସେଇଦିନୁ ଭୋବନା ସେମିତି ସେଇ ଚକଡ଼ା ଉପରେ ରହିଛନ୍ତି । ଗାଁ ଲୋକେ କେତେଥର ଚେଷ୍ଟା କଲେଣି, ସେଠାରେ ଦେଉଳଟିଏ ତୋଳିବାପାଇଁ । ମାତ୍ର ଭୟରେ କେହି ଆଉ ସେଠାରେ ଦେଉଳ ତୋଳି ପାରୁ ନାହାନ୍ତି । ଚକଡ଼ା ପୋଥିରେ ଏସବୁ ଲେଖା ହୋଇରହିଛି ।"

ଥରେ କେଉଁ ଗୋଟିଏ ସଂକ୍ରାନ୍ତି ଦିନ ମୁଁ ଭିଁପୁର ଗାଁକୁ ଆସୁଥିଲି । ଅଭ୍ୟାସବଶତଃ ଜିପ୍‌ଟିକୁ ସେଠାରେ ଦଣ୍ଡେ ଅଟକାଇଦେଲି । ଭୋବନା ଲିଙ୍ଗଙ୍କ ଉପରେ ସେବାୟତ କି

କେହି ଜଣେ ଭକ୍ତ ଅରଖ ଫୁଲର ଗୋଟିଏ ମାଳା ଗୁଡ଼ାଇଦେଇ ଯାଇଛି । ବାସୁଆ ବେଳରେ ସୁଦ୍ଧା କନିଅର ଫୁଲର ମାଳାଟିଏ ଲମ୍ବିଛି । ଚକଡ଼ା ଜନଶୂନ୍ୟ । ସେଇ ନିର୍ଜନତା ଭିତରେ ଭୋବନା ତାଙ୍କ ନିଃସଙ୍ଗ ମହିମାରେ ଦିଶୁଛନ୍ତି ପ୍ରକୃତ ଭୁବନେଶ୍ୱର ପରି । ମୁଁ ଦୁଇହାତ ଯୋଡ଼ି ତାଙ୍କ ଉଦ୍ଦେଶ୍ୟରେ ପ୍ରଣାମ ଜଣାଇଲି ।

୦୩/୦୯/୮୯

# ମହାରାଜା

ଉଡ଼ାଜାହାଜରେ ଯିବାପାଇଁ କୌଣସି ଏୟାରପୋର୍ଟରେ ପହଞ୍ଚିବା ମାତ୍ରେ, ଖାଲି ମୋ ଆଖିରେ କାହିଁକି, ସମସ୍ତଙ୍କ ଆଖିରେ ପଡ଼ିଥାଏ ଏୟାର ଇଣ୍ଡିଆର ହୋର୍ଡ଼ିଂମାନଙ୍କରେ କୌଣସି ମଧ୍ୟଯୁଗୀୟ ମହାରାଜାଙ୍କର ଏକ ଚିତ୍ର । ଏ ଚିତ୍ରଟି ହେଉଛି, ଏୟାର୍ ଇଣ୍ଡିଆର 'ଲୋଗୋ' । ଜେଟ୍-ସେଟ୍ ଯୁଗର ଏୟାର ଇଣ୍ଡିଆ କାହିଁକି ଯେ ଗୋଟିଏ ମଧ୍ୟଯୁଗୀୟ ସାମନ୍ତବାଦୀ ଅଚଳନ୍ତି ମହାରାଜାଙ୍କୁ 'ଲୋଗୋ' କରି ରଖିଛନ୍ତି, ତାହାର ତାତ୍ପର୍ଯ୍ୟ ମୁଁ ବୁଝିପାରିନାହିଁ । ଚିତ୍ରଟି ମୋତେ ଲାଗେ କୌଣସି ମହାରାଜାଙ୍କର କାରିକେଚର୍ ପରି । ପ୍ରତ୍ୟେକ ଥର ମୁଁ କିଛି ସମୟ ଏୟାର ଇଣ୍ଡିଆ ହୋର୍ଡ଼ିଂରୁ ସେହି ମଧ୍ୟଯୁଗୀୟ ମହାରାଜାଙ୍କ ଆଡ଼େ କିଛିକ୍ଷଣ ଚାହିଁ ଦେଖେ । 'ଲୋଗୋ'ର ଚିତ୍ରଟି ପ୍ରକୃତରେ ଥିଲା, ଚାହିଁ ଦେଖିବା ପରି । ମହାରାଜାଟି ଖର୍ବକାୟ ଓ ପୃଥୁଳ । ଜରୀଦାର ରାଜକୀୟ ପୋଷାକ ତଳେ ପୃଥୁଳ ଉଦରଟି ବାହାରି ପଡ଼ିଛି । ମୁଣ୍ଡରେ ରାଜକୀୟ ପଗଡ଼ି । ଆଖି ଦୁଇଟିରେ ଧୂର୍ତ୍ତତା । କିନ୍ତୁ ଧୂର୍ତ୍ତତା ଅପେକ୍ଷା ସେଥିରେ ସୌଜନ୍ୟର ଭାବଟା ହେଉଛି ବେଶି । ଏୟାର ଇଣ୍ଡିଆ ମହାରାଜା ମଧ୍ୟଯୁଗୀୟ ସୌଜନ୍ୟରେ କୌଣସି ସମ୍ମାନିତ ଅତିଥିଙ୍କୁ ସାଦର ଆମନ୍ତ୍ରଣ ଜଣାଇବା ପରି ନିଜ ଦେହକୁ କିଛିଟା ବଙ୍କାଇ ଦେଇଛନ୍ତି । କ୍ରମେ ମୋର ମନେ ହେଲା, ଏୟାର ଇଣ୍ଡିଆ ବିଦେଶୀ ଟୁରିଷ୍ଟମାନଙ୍କୁ ଆକର୍ଷଣ କରିବାପାଇଁ ଭାରତୀୟ ସୌଜନ୍ୟର ପ୍ରତୀକ ରୂପେ ଏହି ମଧ୍ୟଯୁଗୀୟ ମହାରାଜାଙ୍କୁ ସନ୍ତକରୂପେ ବ୍ୟବହାର କରୁଅଛନ୍ତି ।

ଏହି ମହାରାଜା କ୍ରମେ ଏତେ ଲୋକପ୍ରିୟ ହୋଇଉଠିଲେ ଯେ ଅନେକ ସୌଖୀନ୍ ଡ୍ରଇଂରୁମ୍‌ରେ ଏୟାର ଇଣ୍ଡିଆ ମହାରାଜାଙ୍କର ପ୍ରତିକୃତି ସବୁ ଏକ ଗୃହସଜ୍ଜା ରୂପେ ଦେଖାଯିବା ପାଇଁ ଲାଗିଲା । ମୁଁ ଅନେକ ସମୟରେ ଭାବେ, ସୁଦୂର ୧୯୪୮ ମସିହାରୁ ଭାରତରୁ ରାଜତନ୍ତ୍ର ଲୋପପାଇଯିବା ସଙ୍ଗେସଙ୍ଗେ ମହାରାଜାମାନେ ମଧ୍ୟ ଲୋପପାଇଗଲେ । ସେଥିସହିତ ମଧ୍ୟ ଲୋପପାଇଗଲା, ମହାରାଜା ଯୁଗର ଔଜ୍ଜ୍ୱଲ୍ୟ । ତଥାପି ପ୍ରିଭିପର୍ସ ପ୍ରସାଦରେ ମହାରାଜାମାନେ ଅତୀତ ଔଜ୍ଜଲ୍ୟର କିଛିଟା ଭଗ୍ନାଂଶ ଧରି

ତିଷ୍ଠି ରହି ପାରିଥିଲେ । ମାତ୍ର ଆଜିକୁ ଦୁଇ ଦଶନ୍ଧି ତଳୁ ସ୍ୱର୍ଗତା ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧୀ ପ୍ରିଭିପର୍ସ ଲୋପ କରିଦେବା ପରେ ମହାରାଜା ଯୁଗର ସୂର୍ଯ୍ୟ ଅସ୍ତ ହୋଇଗଲା । ସେଇ ସାମ୍ୟବାଦୀ ଗଣତାନ୍ତ୍ରିକ ରାଷ୍ଟ୍ରରେ, ରାଷ୍ଟ୍ରାୟତ୍ତ ଏୟାର ଇଣ୍ଡିଆ ସେହି ମଧ୍ୟଯୁଗୀୟ ମହାରାଜାଙ୍କୁ ସାମ୍ୟବାଦୀ ଭାରତର ସନ୍ତକ ରୂପେ ବିଦେଶରେ ପ୍ରଚାରିତ କରୁଛନ୍ତି କାହିଁକି ? କିପରି ?

ଏ ପ୍ରଶ୍ନ ମୁଁ ଯେ କେବଳ ଅନେକ ଥର ଭାବିଛି, ତା' ନୁହେଁ; ବହୁ ବନ୍ଧୁଙ୍କୁ ମଧ୍ୟ ଏ ପ୍ରଶ୍ନ ପଚାରିଛି । କିନ୍ତୁ କେହି ତାହାର କୌଣସି ସଦୁତ୍ତର ଦେଇପାରି ନାହାନ୍ତି । ଅବଶେଷରେ ମୋର ମନେ ହୋଇଛି, ଏୟାର ଇଣ୍ଡିଆ ଏକ ବ୍ୟାବସାୟିକ ସଂସ୍ଥା । ବିଦେଶୀ ପର୍ଯ୍ୟଟକମାନଙ୍କୁ ଆକର୍ଷଣ କରିବାପାଇଁ ଏୟାର ଇଣ୍ଡିଆ ଯଦି ମଧ୍ୟଯୁଗୀୟ ମହାରାଜାଙ୍କୁ ନିଜର ଲୋଗୋ ରୂପେ ବ୍ୟବହାର କରେ, ତା'ହେଲେ ସେଥିରେ ଆପତ୍ତି କରିବାର କ'ଣ ଅଛି ?

ମୁଁ ଏକଥା ଥରେ ଜଣେ ବନ୍ଧୁଙ୍କୁ କହିବାରୁ, ସେ କହିଲେ, "ଏୟାର ଇଣ୍ଡିଆ ଏକ ରାଷ୍ଟ୍ରାୟତ୍ତ ବ୍ୟାବସାୟିକ ସଂସ୍ଥା ହୋଇପାରେ ସତ, କିନ୍ତୁ ଏହା ରାଷ୍ଟ୍ରର ଉର୍ଦ୍ଧ୍ୱରେ ନୁହେଁ । ଭାରତୀୟ ସମ୍ବିଧାନରେ ଭାରତ ଏକ ସାମ୍ୟବାଦୀ ଗଣତାନ୍ତ୍ରିକ ରାଷ୍ଟ୍ର ବୋଲି ଯେଉଁ ଉଦ୍‌ଘୋଷଣ କରିଛି, ତାହାର ପ୍ରତିକୂଳାଚରଣ କରିବାପାଇଁ ରାଷ୍ଟ୍ରାୟତ୍ତ ଏୟାର ଇଣ୍ଡିଆର କୌଣସି ଅଧିକାର ଥାଇ ନପାରେ । ପୁଣି ଭାରତ ସରକାରଙ୍କର ସିଭିଲ ଆଭିଏସନ୍ ମନ୍ତ୍ରାଳୟ ଏହାକୁ ଅନୁମୋଦନ କରୁଛନ୍ତି କେଉଁ ନ୍ୟାୟରେ ?"

ବନ୍ଧୁବରଙ୍କର ଏ ଉକ୍ତି ମଧ୍ୟ ଅକାଟ୍ୟ । ଏୟାର ଇଣ୍ଡିଆ ମହାରାଜାଙ୍କୁ ଘେନି ପ୍ରକୃତରେ ଅନେକ ଦିନ ଖୁବ୍ ଧନ୍ଦି ହୋଇପଡ଼ିଥିଲି । ଅବଶେଷରେ ମୋର ମନେ ହୋଇଥିଲା, ଆମେ ଯେତେ ଯାହା ହେଲେ ବି ଆମ ଅବଚେତନରେ ରହିଯାଇଛି ମହାରାଜା ଯୁଗର ବହୁ ଉପକଥା । ସେଥିପାଇଁ ପ୍ରାୟ ଦୁଇବର୍ଷ ତଳେ କେନ୍ଦ୍ରରେ ମନ୍ତ୍ରୀ ଥିବା ଜଣେ ମହାରାଜାଙ୍କର କନ୍ୟାର ବିବାହ ଉତ୍ସବରେ ତାଙ୍କ ରାଜ୍ୟରେ ଯେପରି ଉତ୍ସବ ଓ ଆଡ଼ମ୍ବର ଚାଲିଲା, ତାହା ମଧ୍ୟଯୁଗୀୟ ରାଜକୀୟ ଉତ୍ସବ ଆଡ଼ମ୍ବରକୁ ସୁଦ୍ଧା ବଳି ପଡ଼ିଥିଲା । ଆମେ ସେଥିପାଇଁ ଯେତେ ସାମ୍ୟବାଦୀ ହେଲେ ବି ସେଇ ମଧ୍ୟଯୁଗୀୟ ମହାରାଜାମାନଙ୍କୁ ତଥାପି ଏଡ଼ାଇ ପାରିନାହୁଁ । ସହଜେ ପୁଣି ବିଦେଶରେ ତଥାପି ଭାରତ କହିଲେ, ସାଧାରଣ ଲୋକେ ବୁଝନ୍ତି, ସାପୁଆ କେଳା, ମହାରାଜା ଓ ଶିକାର । ମହାରାଜାମାନଙ୍କର ଔଜଲ୍ୟ ବିଦେଶୀମାନଙ୍କର ଅବଚେତନରେ ମଧ୍ୟ ଦାନା ବାନ୍ଧିଯାଇଛି । ସେଥିପାଇଁ ରାଷ୍ଟ୍ରାୟତ୍ତ ଏୟାର ଇଣ୍ଡିଆ ନିଜର ବ୍ୟାବସାୟିକ ସ୍ୱାର୍ଥ ଦୃଷ୍ଟିରୁ ଗୋଟିଏ ମଧ୍ୟଯୁଗୀୟ ମହାରାଜାଙ୍କୁ ନିଜର ଲୋଗୋ ରୂପେ ବ୍ୟବହାର କରୁଅଛନ୍ତି ।

ଏବେ ଆଉ ମୋର ବାହାରକୁ କୁଆଡ଼େ ଯିବା ଆସିବା ନାହିଁ । ସେଥିପାଇଁ ଏୟାର ଇଣ୍ଡିଆର ହୋଡ଼ିଂମାନଙ୍କରେ ସେହି ମଧ୍ୟଯୁଗୀୟ ମହାରାଜାଙ୍କ ସହିତ ଦେଖା ସାକ୍ଷାତର ମଧ୍ୟ ଅବକାଶ ନାହିଁ । କିନ୍ତୁ ଏବେ କାଗଜରେ ପଢ଼ିଲି, ଏୟାର ଇଣ୍ଡିଆ ବର୍ତ୍ତମାନ ସେହି ପ୍ରସିଦ୍ଧ ମହାରାଜା ଲୋଗୋକୁ ବାତିଲ କରିଦେଇଛନ୍ତି । କିନ୍ତୁ ତା'ପରେ ଏୟାର ଇଣ୍ଡିଆର ବିକଳ୍ପ ସନ୍ତକ ହେବ ଆଉ କ'ଣ ? ଖଦଡ଼ ଟୋପି ପିନ୍ଧା କୌଣସି ପୃଥୁଳୋଦର ନେତା ? ଅଥବା କୌଣସି ସୌଜନ୍ୟ ସ୍ନିଗ୍ଧା ହୋଷ୍ଟେସ୍ ? କିନ୍ତୁ କୌଣସିଟି ମୋ ମନକୁ ପାଇଲା ନାହିଁ । ଦୁଇଟି ଯାକରେ ଅଛି, ଅନେକ ଛଳନା, ଅନେକ କୃତ୍ରିମତା, ଅନେକ ଅଭିନୟ ।

ବୋଧହୁଏ ଏହାପରେ ବିନା ଲୋଗୋରେ ଏୟାର ଇଣ୍ଡିଆ ଚଳାଇବାରେ କୌଣସି ଅସୁବିଧା ହେବନାହିଁ !

୨୪/୦୯/୮୯

# ଦଶହାଣ୍ଡି

ଅନ୍ତ୍ୟେଷ୍ଟି କ୍ରିୟାର ପ୍ରଥମ ରାତିଠାରୁ ଜ୍ଞାତି, କୁଟୁମ୍ବ ଆଖି, ନାକ ବୁଜି କୌଣସିମତେ ତିକ୍ତ ଭୋଜନ ଶେଷ କରିବାପରେ, କ୍ରିୟା ଧରିଥିବା ଜ୍ୟେଷ୍ଠପୁତ୍ର ପ୍ରେତ ଉଦ୍ଦେଶ୍ୟରେ ସେଇ ତିକ୍ତକୁ ଗୋଟିଏ ସାନ ହାଣ୍ଡିରେ ରଖି, କୌଣସି ତିନିମୁହାଣ ଅଥବା ଚଉମୁହାଣରେ ତାହାକୁ ରଖିଆସିବାପାଇଁ ବାହାରନ୍ତି। ସେତେବେଳେ ଜଣେ ପରମ ଆତ୍ମୀୟ ଓ ଶୁଭାକାଂକ୍ଷୀ କାଳେ ପ୍ରେତଟି ଆସି ହାବୁଡ଼ିଯିବ, ସେଥିପାଇଁ ତାହା ସାଙ୍ଗରେ ଯାଆନ୍ତି, କେତେଜଣ ପୁଅ, ପୁତୁରା ବା ସେହି ଶ୍ରେଣୀର ଆତ୍ମୀୟ। ସେହିପରି ଏକ ଦଶହାଣ୍ଡି ସାଙ୍ଗରେ ଯିବାବେଳେ, ମୁଁ ଭାବୁଥିଲି, ଘର ଆଗରେ ଦଶହାଣ୍ଡିଟିକୁ ରଖିଦେଲେ କ'ଣ ଚଳନ୍ତା ନାହିଁ? ପ୍ରେତ ଯଦି କେଉଁଠାକୁ ଆସୁଥିବ, ତା' ହେଲେ ସେ ପ୍ରଥମେ ଆସୁଥିବ ସେହି ଘର ପାଖକୁ ଯେଉଁ ଘରଟିକୁ ସେ ଏତେ ଯତ୍ନରେ ତା'ର ଆଜୀବନ ସଞ୍ଚୟରେ ତୋଳାଇ ଥିଲା। ସେଥିପାଇଁ ତିନିମୁହାଣି ବା ଚଉମୁହାଣି ଖୋଜାପଡ଼ିଛି କାହିଁକି ? ଭାବିଲି, ବୋଧହୁଏ ପ୍ରିୟଜନର ସେହି ପ୍ରେତଟିକୁ ତା'ର ଘରଲୋକ ପାଖ ମଡ଼ାଇ ଦେବାପାଇଁ ଆଉ ଚାହାନ୍ତି ନାହିଁ। ସେଥିପାଇଁ ଘରଠାରୁ ଦୂରରେ ତିନିମୁହାଣି ବା ଚଉମୁହାଣି ଛକ ଅଧିକ ନିରାପଦ। ପ୍ରଥମ ଦିନ ପ୍ରେତ ଉଦ୍ଦେଶ୍ୟରେ ଯଥାବିଧି ତିକ୍ତ ହାଣ୍ଡିଟିଏ ଗୋଟିଏ ତିନିମୁହାଣି ଛକରେ ରଖାଯିବା ପରେ ମୁଁ କୌତୂହଳ ସମ୍ବରଣ କରି ନପାରି ହାଣ୍ଡି ଉପରୁ ପଲମଟି କାଢ଼ି ଦେଖିଲି, ତା' ଭିତରେ ତିକ୍ତ ଭାତ, ଡାଲମା ଓ ଖଣ୍ଡେ ପତ୍ର ଉପରେ ଦୁଇଖଣ୍ଡ ଖିଲିପାନ। ପ୍ରେତ ତିକ୍ତ ଭୋଜନ କରିସାରିବା ପରେ ବୋଧହୁଏ ଖଣ୍ଡେ ଖିଲିପାନ ଖୋଜିବ। କିନ୍ତୁ ଯାହା ଉଦ୍ଦେଶ୍ୟରେ ହାଣ୍ଡି ଦିଆଯାଇଥିଲା ସେ ଆଦୌ ପାନ ଖାଉ ନଥିଲେ, ସେ ଟାଣୁଥିଲେ ସିଗ୍ରେଟ୍। ମୁଁ ତେଣୁ ଖଣ୍ଡେ ସିଗ୍ରେଟ୍ ଓ ତା' ସହିତ ଦିଆସିଲିଟିଏ ସେଇ ପତ୍ର ଉପରେ ରଖିଦେଲି; ଅବଶ୍ୟ ଅନ୍ୟମାନଙ୍କ ଅଜ୍ଞାତସାରରେ। ଏ ପାଳା ଚାଲିଲା ନଅ ରାତି।

ସେଇ ଏକା ରୀତିରେ ଦଶଦିନ ରାତିରେ ପ୍ରେତକୁ ଦିଆଯିବ ଦଶହାଣ୍ଡି। ସେଦିନ ରାତିରେ ମୁଁ ଲକ୍ଷ୍ୟ କଲି, ପରିବାରର ଲୋକେ ବ୍ୟସ୍ତ, ବିବ୍ରତ ଭାବରେ ଘର ଭିତରେ

ଏଣେତେଣେ ଦଉଡ଼ାଧାପଡ଼ା କରୁଛନ୍ତି। କିଏ ଚିତ୍କାର କରୁଛି 'ଡଙ୍କି କାହିଁ ? ଡଙ୍କି କାହିଁ ? ଆଉ କେହି ପାଟି କରି ଖୋଜୁଛି, ଚଟୁ କୁଆଡ଼େ ଗଲା ? କେହି ବା ଖୋଜୁଛି ଦଶହାଣ୍ଡି ଛାଞ୍ଚୁଣୀ ଇତ୍ୟାଦି। ଏସବୁର ରହସ୍ୟ ମୁଁ ବୁଝିପାରିଲି ନାହିଁ। ସେଠାରେ ବସି ମୋର ମନେହେଲା, ଯେପରି ମୃତ୍ୟୁ ପରି ଏକ ଗମ୍ଭୀର ଉପଲକ୍ଷ୍ୟରେ ଏଠାରେ ଚାଲିଛି ଏକ ପ୍ରହସନ। ଇଏ ଶୋକ ପ୍ରକାଶ ନା ଗୁଡ଼ିଏ ଲୋକଙ୍କର ଶୋକ ପ୍ରକାଶ ନାମରେ ହାସ୍ୟୋଦ୍ଦୀପକ ପ୍ରହସନ- ତାହା ମଧ୍ୟ ବୁଝିପାରିଲି ନାହିଁ। ଏକଥା ପଚାରିବି ବା କାହାକୁ। ସେଦିନ ବହୁ ବିଳମ୍ବରେ ଦଶହାଣ୍ଡି ପ୍ରସ୍ତୁତ ହେଲା। ହାଣ୍ଡିଟି ଅନ୍ୟ ଦିନମାନଙ୍କ ତୁଳନାରେ ଅପେକ୍ଷାକୃତ ବଡ଼ ଆକାରର। ମୋର ମନେହେଲା, ଇଏ ଶେଷ ହାଣ୍ଡି ବୋଲି ପ୍ରେତ ଉଦ୍ଦେଶ୍ୟରେ ଏଥିରେ କିଛି ଭଲ ଭଲ ଖାଇବା ପଦାର୍ଥ ଯାଉଛି। ନଅ ରାତି ତିକ୍ତ ଖାଇଖାଇ ପ୍ରେତର ପାଟି ଖରାପ ଲାଗୁଥିବ ତ। ହାଣ୍ଡି ରଖି ସାରି ସମସ୍ତେ ଟିକିଏ ଦୂରେଇ ଯିବା ପରେ ପଲମ କାଢ଼ି ତା' ଭିତରେ କ'ଣ ଅଛି ବୋଲି ଦେଖିବାପାଇଁ ମୋର କୌତୂହଳ ହେଲା। ତା' ଭିତରେ ଥିଲା ଚଟୁ, ଡଙ୍କି ସବୁ, ଛାଞ୍ଚୁଣୀଟାଏ, ଖଣ୍ଡେ ଛୋଟ ପିଢ଼ା ଆଉ ଲୁହାକଣ୍ଟାଟିଏ।

ଏହାର ତାତ୍ପର୍ଯ୍ୟ ଜଣେ ବୟୋଜ୍ୟେଷ୍ଠ ଲୋକଙ୍କୁ ପଚାରିଲି। ସେ ମୋତେ ବୁଝାଇଦେଲେ, ପ୍ରେତକୁ ଆମେ ଆଉ କେତେ ଦେଉଥିବୁ। ଏଣିକି ସେ ନିଜେ ରାନ୍ଧି ଖାଇବାପାଇଁ ଦଶହାଣ୍ଡିରେ ତାକୁ ସବୁ ଉପକରଣ ଯୋଗାଇ ଦିଆଗଲା। ସେ ଏଣିକି ତା'ର ଯେଉଁଠି ଇଚ୍ଛା ସେଠି ରାନ୍ଧି ଖାଇବ !

ସେଦିନ ରାତିଯାକ ବିଛଣାରେ ପଡ଼ିପଡ଼ି ମୁଁ ହସିବି କି କାନ୍ଦିବି ଠିକ୍ କରିପାରିଲି ନାହିଁ। ଗୀତାପାଠ ଖୁବ୍ ଧୁମ୍‌ଧାମ୍‌ରେ ଚାଲିଛି। ପଣ୍ଡିତ ମହାଶୟ ଶ୍ଳୋକ ଆବୃତ୍ତି କରୁଛନ୍ତି। ଆତ୍ମା ଅବିନଶ୍ୱର, ଆତ୍ମାର ମୃତ୍ୟୁ ନାହିଁ, ଆତ୍ମା ଅଜର ଓ ଅମର। ଆମର ହିନ୍ଦୁ ସମାଜ ସେଇ ଅବିନଶ୍ୱର ଆତ୍ମାର ପରିକଳ୍ପନାରେ ଘୋର ବିଶ୍ୱାସୀ। ଇଏ କିନ୍ତୁ ବୌଦ୍ଧିକ ସ୍ତର। ବାସ୍ତବ ସ୍ତରରେ କିନ୍ତୁ ଆତ୍ମା ନାହିଁ, ଅଛି ପ୍ରେତ। ଯାହା ପାଇଁ ଲୋଡ଼ା ଡଙ୍କି, ଚଟୁ ଆଉ ଛାଞ୍ଚୁଣୀ। ହିନ୍ଦୁ ସମାଜରେ ଅନ୍ତ୍ୟେଷ୍ଟିକ୍ରିୟା ନାମରେ ଏହି ଅଭିନୟ ଶତାବ୍ଦୀ ଶତାବ୍ଦୀ ଧରି ଚାଲିଛି। ଏଥିପାଇଁ କର୍ମକାଣ୍ଡ ଖଞ୍ଜାଯାଇଛି। ଯେପରି ପାନରୁ ଚୂନ ନଖସେ। ତାହେଲେ ଏହାର ପ୍ରତିବାଦ କରି ଖ୍ରୀଷ୍ଟପୂର୍ବ ଚତୁର୍ଥ ବା ପଞ୍ଚମ ଶତାବ୍ଦୀର ଚାର୍ବାକ୍ ଯାହା କହିଥିଲେ, ଆତ୍ମା ନାହିଁ, "ଭସ୍ମୀଭୂତସ୍ୟ ଦେହସ୍ୟ ପୁନରାଗମନଂ କୁତଃ" ସେଥିପ୍ରତି ହିନ୍ଦୁ ସମାଜର ଆତ୍ମାତତ୍ତ୍ୱ- ବିଶ୍ୱାସୀ ପଣ୍ଡିତସମାଜ ଏତେ ନାସିକା କୁଞ୍ଚନ କରନ୍ତି କାହିଁକି ? ହିନ୍ଦୁ ସମାଜରେ ଅନ୍ତ୍ୟେଷ୍ଟି କ୍ରିୟାର ଏ ଅଭିନୟ ଆଉ କେତେଦିନ ଧରି ଚାଲିବ କେଜାଣି ?

*୦୧/୧୦/୮୯*

# ଜୁଆଡ଼ି

ମତ୍ତଗଜପୁର ପଞ୍ଚୁମେଲଣ ଆମର ସେ ଅଞ୍ଚଳରେ ଏକ ପ୍ରସିଦ୍ଧ ଯାତ୍ରା । ଏ ମେଲଣରେ ହଜାର ହଜାର ଲୋକ ଠାକୁର ବିମାନମାନଙ୍କର ବାଣ ରୋଶଣି, ଦୋଳମଣ୍ଡପରେ ଗୋଟିପୁଅ ନାଚ, ଗୋଟିଏ ଛୋଟିଆ ସର୍କସ ଓ ଭାଲୁନାଚ ଦେଖିବା ପାଇଁ ଭିଡ଼ ବାନ୍ଧି ଥାଆନ୍ତି । ପ୍ରତି ବର୍ଷ ସେଇ ଏକା ଦୃଶ୍ୟ ଦେଖି ଦେଖି ସୁଦ୍ଧା, ସେମାନଙ୍କ କ୍ଳାନ୍ତି କିମ୍ବା ଅବସାଦ ନଥାଏ । ମେଲଣ ଆରମ୍ଭ ହୁଏ ସନ୍ଧ୍ୟା ପରେ, କିନ୍ତୁ ଖରାବେଳ ଗଡ଼ିଯିବା ପରଠାରୁ ମେଲଣ ପଡ଼ିଆରେ ଯାତ୍ରାବିକାଳିମାନଙ୍କର ଭିଡ଼ ଆରମ୍ଭ ହୋଇଯାଇଥାଏ । ମତ୍ତଗଜପୁର ମେଲଣ ପୁଣି କେବେ ଆସିବ, ସେଇ ଦିନକୁ ଯେପରି ସେଇ ଅଞ୍ଚଳର ଲୋକେ ଅପେକ୍ଷା କରି ରହି ଥାଆନ୍ତି ।

ପିଲାଟିର ବୟସ ବାର ବା ଚଉଦରୁ ବେଶି ହେବ ନାହିଁ । ସେ କାଳର ରୀତିରେ ସେ ପିନ୍ଧିଥିଲା ଆଣ୍ଠୁ ତଳକୁ ଅଳ୍ପ ଝୁଲି ଆସିଥିବା ଖଣ୍ଡିଏ ଧୋତି, ଦେହରେ ଖଣ୍ଡେ ଧଳା ହାପ୍ କାମିଜ୍, ପାଦରେ ଚଟି ବା ଯୋତା ନଥିଲା । ଆଜି ସେ ପୂରା ଟଙ୍କାଟିଏ ପକେଟରେ ଧରି ମେଲଣକୁ ଯାଉଥିଲା । ଏଥିପାଇଁ ସେ ପରିବାରର ସମସ୍ତଙ୍କଠାରୁ ଦୋଳମାଗୁଣି ଆଦାୟ କରିଥିଲା । ସେ ମେଲଣକୁ ଯାଉଥିଲା ସର୍କସ, ଭାଲୁ ନାଚ, ଗୋଟିପୁଅ ନାଚ ଅଥବା ବାଣ ରୋଶଣି ଦେଖିବାପାଇଁ ନୁହେଁ। ମେଲଣକୁ ଦୁଇ ତିନିଟା ଜୁଆପାଲି ଦଳ ଆସନ୍ତି । ସେମାନଙ୍କ ଚେହେରା ଓ କଥାବାର୍ତ୍ତାରୁ ସେମାନେ ମନେ ହୁଅନ୍ତି ସହରୀଙ୍କ ପରି । କେତେଖଣ୍ଡ ତାସ୍‌ପତା ସେମାନେ ଟେବୁଲ ଉପରେ ମେଲାଇ ରଖି ଗୋଟିଏ ଟିଣ ଉପରେ ଜୁଆଦାନି ଖଡ଼ଖଡ଼ କରନ୍ତି ଓ ଲୋକମାନଙ୍କ ଦୃଷ୍ଟି ଆକର୍ଷଣ କରିବାପାଇଁ ଗୋଟିଏ ଡମ୍ବରୁ ଡିବି ଡିବି ବଜାନ୍ତି । ଜୁଆ ଖେଳିବାପାଇଁ ଅନେକ ଲୋକ ଭିଡ଼ ବାନ୍ଧନ୍ତି । କେହି ବା ଜିତନ୍ତି, କେହି ବା ହାରନ୍ତି । କିନ୍ତୁ ହାରିଗଲେ ସୁଦ୍ଧା ଜୁଆଖେଳର ଆକର୍ଷଣ ସେମାନେ ଛାଡ଼ି ପାରନ୍ତି ନାହିଁ । ଏଇ ପିଲାଟି ଗତବର୍ଷ ଚାରିଅଣା ପଇସାରେ ଖେଳି ତାକୁ ଆଠଅଣା କରିପାରିଥିଲା । ଜୁଆ ପାଲି ବାଲା କହିଥିଲା, "ତୋର ନସୀବ ଭଲ" । ଏତକ କହି

ଜୁଆପାଲିବାଲା ତା' ଆଡ଼େ ଚାହିଁ ଅଳ୍ପ ହସିଥିଲା । କିନ୍ତୁ ସେ ହସରେ ପ୍ରଶଂସା ଥିଲା ନା ଥିଲା ଅନ୍ୟ କିଛି, ସେ ତାହା ବୁଝି ପାରି ନଥିଲା । ଜୁଆପାଲି ବାଲାର ହସ ତାକୁ ବିଚିତ୍ର ଲାଗିଥିଲା । ସେଇ ହସ ଦେଖି ସେ ପିଲାଟି ଆଉ ଜୁଆପାଲି ଉପରେ ବାଜି ଲଗାଇ ନଥିଲା, ଯଦ୍ୟପି ଜୁଆପାଲିବାଲା ତାକୁ ବାଜି ଲଗାଇବା ପାଇଁ ଅନେକ ପ୍ରଲୋଭନ ଦେଖାଉଥିଲା । ସେଇ ପଇସାରେ ସେଦିନ ସେ କିଣିଥିଲା ଘରେ ତା'ର ସାନ ସାନ ଭାଇ ଭଉଣୀଙ୍କ ପାଇଁ ଅନେକ ପିପରମେଣ୍ଟ ମିଠାଇ ଆଉ କେତେଟା ମାଟି କଣ୍ଢେଇ । ତା'ର ସାଙ୍ଗସାଥୀମାନଙ୍କୁ ମଧ୍ୟ ସେ ବାଣ୍ଟିଥିଲା କେତେଟା ପିପରମେଣ୍ଟ ମିଠେଇ । ସେ ଯେ ଜୁଆ ଖେଳିପାରେ ଓ ଜୁଆଖେଳି ଚାରିଅଣା ପଇସାକୁ ଆଠଅଣା କରିପାରେ, ତାହା ସେମାନେ ବିଶ୍ୱାସ କରିପାରୁ ନଥିଲେ । ସେମାନଙ୍କ ଦୃଷ୍ଟିରେ ସେ ହୋଇ ଉଠିଥିଲା ଜଣେ ହିରୋ। ଆଜି ସେ ଟଙ୍କାଟିଏ ଦୋଳଖର୍ଚ୍ଚ ଧରି ମେଲଣକୁ ଯାଉଥିଲା ଜୁଆଖେଳି ତାକୁ ତିନିଟଙ୍କା ବା ପାଞ୍ଚଟଙ୍କା କରିବାପାଇଁ । ଜୁଆରେ ଜିତି କାହାପାଇଁ କ'ଣ କ'ଣ କିଣିବ, ମନେମନେ ତା'ର ଗୋଟିଏ ତାଲିକା ମଧ୍ୟ ତିଆରି କରିସାରିଥିଲା । ଜୁଆ ତା' ମନରେ ଆଣିଦେଇଥିଲା ଗୋଟିଏ ନୂତନ ଉତ୍ତେଜନା । ଅକାରଣରେ ସେ ପାଦରେ ଧୂଳି ଉଡ଼ାଇ ଉଡ଼ାଇ ମେଲଣ ଆଡ଼େ ଚାଲିଥିଲା ।

ମେଲଣ ପଡ଼ିଆର ଗୋଟିଏ କଡ଼ରେ ଗତବର୍ଷର ଜୁଆପାଲି ବାଲା ତା'ର ଜୁଆପାଲି ମେଲାଇ ଡିବିଡିବି ଡମ୍ବରୁ ବଜାଉ ଥିଲା । ସେତେବେଳକୁ ସେଠାରେ କେତେଜଣ ଜୁଆ ଖେଳାଳି ମଧ୍ୟ ଭିଡ଼ ବାନ୍ଧି ସାରିଥିଲେ । ସମସ୍ତେ ପ୍ରାୟ ଜିତୁ ଥାଆନ୍ତି । ଜୁଆପାଲି ବାଲାଟି ଶେଷକୁ ଫତୁର ହୋଇଯିବ ବୋଲି ତା' ପ୍ରତି ପିଲାଟି ମନରେ ଗୋଟାଏ ସହାନୁଭୂତି ଡେଇଁ ଉଠିଥିଲା । ଜୁଆପାଲିବାଲା ତାକୁ ଦେଖି କିପରି ଚିହ୍ନିପାରିଲା କେଜାଣି, କହିଲା, "ଆଇଯେ, ଆଇଯେ ।" ସେଇ ପିଲାଟି ନାଲିପାନ ବିବି ଉପରେ ଚାରଣିଟିଏ ବାଜି ଲଗାଇଲା । ଉଠିଲା ଡବଲ । ସାଙ୍ଗେ ସାଙ୍ଗେ ସୁଉକିଟା ହେଇଗଲା ଆଠଣା । ଅନ୍ୟ ଖେଳାଳିମାନେ ତାକୁ ଖୁବ୍ ବାହାବା ଦେଲେ । ତା'ର ମୁଣ୍ଡକୁ ରକ୍ତ ଚଢ଼ିଗଲା । ଏଥର ସେ ଲଗାଇଲା ଆଠଣିଟିଏ । ତା' ହୋଇଗଲା ଟଙ୍କାଏ । ଏଥର ସେ ତା'ର ପକେଟରୁ ସବୁପଇସା ଅଜାଡ଼ି ଦେଲା ଜୁଆପାଲି ଉପରେ ।

ତା'ପରେ ଅପେକ୍ଷା କେତେବେଳେ ଜୁଆପାଲି ପଡ଼ିବ । ନିଶ୍ଚୟ ଦୁଇଗୁଣ ହୋଇଥିବ । ତା'ପରେ ସେ ଆଉ ଖେଳିବ ନାହିଁ । ସେଇ ପଇସାରେ ମେଲଣ ବୁଲି ଦେଖିବ, ସହରରୁ ଆସିଥିବା ଜଳଖିଆ ଦୋକାନରୁ ମିଠାଇ ରସଗୋଲା ଖାଇବ । ଆଉ ଯାହା ବଳିବ, ସେଥିରେ ତା'ର ସାନ ସାନ ଭାଇ ଭଉଣୀ ଆଉ ସାଙ୍ଗସାଥୀମାନଙ୍କ ପାଇଁ ପିପରମେଣ୍ଟ ମିଠାଇ କିଣିବ ।

କିନ୍ତୁ ଜୁଆ ଦାନରେ ତା'ର ସବୁ ପଇସା ଉଡ଼ିଗଲା । ଜୁଆପାଲି ବାଲା କହିଲା, "କୁଛ୍ ଫିକର ନେଇ । ଫିର୍ ବାଜି ଲଗାଓ ।" ଜୁଆପାଲିବାଲା ମଧ୍ୟ ସେତେବେଳେ ତା'ର ବିଚିତ୍ର ହସ ହସିଲା । କିନ୍ତୁ ଆଉ ଥରେ ବାଜି ଲଗାଇବା ପାଇଁ ପିଲାଟିର ପକେଟରେ ଆଉ କିଛି ନଥିଲା । ଚାହୁଁଚାହୁଁ ମୁହୂର୍ତ୍ତକ ଭିତରେ ସେଇ ପିଲାର ଆଖିରେ ସାରା ମେଳଣ ପଡ଼ିଆଟା ଯେପରି ନିଶୂନ୍, ନିସ୍ତବ୍ଧ ପାଲଟିଗଲା । ତା'ର ମନେହେଲା ସେ ଯେପରି ଭାରି କ୍ଷୁଧାର୍ତ୍ତ । କିନ୍ତୁ ଖାଇବାପାଇଁ ତାର ପକେଟରେ ପଇସା ନଥିଲା । ସବୁ ହାତରେ ପାଇ ପୁଣି ସେସବୁ ହରାଇବାର ଆଘାତ ଯେ ଏପରି ଦାରୁଣ ହୋଇପାରେ, ଏ ଥିଲା ତା'ର ପ୍ରଥମ ଅନୁଭୂତି ।

ସେଦିନ ଭାରି କ୍ଲାନ୍ତ ଭାବରେ ସେ ଘରକୁ ଫେରିଥିଲା ।

୦୮/୧୦/୮୯

# ଯାତ୍ରା ବାହୁଡ଼ା

ଗତ ତିନିଦିନ ଧରି ଗଙ୍ଗେଶ୍ୱର ମହାଦେବଙ୍କର ମେଲଣ ପଡ଼ିଆରେ କଣ୍ଢାପାଟୁଆ ଓ ଖଣ୍ଡାପାଟୁଆମାନଙ୍କୁ ଦେଖିବାପାଇଁ ଝାମୁ ଯାତ୍ରାର ଯେଉଁ ଲୋକଗହଳି ଲାଗିଥିଲା, ଯାତ୍ରାବାସି ତାହା ଯାଦୁଖେଳର ଭୋଜବାଜି ପରି କୁଆଡ଼େ ମି[illegible] ଛଥିଲା । ବାହାରୁ, ଏପରିକି କଟକ ସହରରୁ ଯେଉଁ ଜଳଖିଆ ଦୋକାନୀ ଓ ମନୋହରୀ ଦୋକାନୀମାନେ ଶଗଡ଼ରେ ସେମାନଙ୍କ ବିପଣି ସମ୍ଭାର ଧରି ଆସିଥିଲେ, ମେଳା ଶେଷ ହେବା ସଙ୍ଗେ ସଙ୍ଗେ ସେମାନେ ଦୋକାନ ଭାଙ୍ଗି ସେସବୁ ପୁଣି ଶଗଡରେ ଲଦି ଫେରି ଯାଇଥିଲେ । ଶେଷ ଶଗଡ଼ଟି ଏଇ ଅଳ୍ପ ଦିନ ପୂର୍ବେ ତା' ବାଟରେ ଚାଲିଗଲା । ପଛରେ ପଡ଼ି ରହିଲା ଖାଲି ଜଳଖିଆ ଦୋକାନମାନଙ୍କ ପାଖରେ ଅଇଁଠା ଶାଳପତ୍ର ଓ ଏଣେତେଣେ ବିଛେଇ ହୋଇ ପଡ଼ିଥିବା ନାଲି ନେଳି କାଗଜ, ପୁଣି ଆବର୍ଜନା ।

ଗତ ତିନିଦିନ ଧରି ଯେଉଁଠାରେ ଲାଗି ରହିଥିଲା ଲୋକ ଗହଳି, ଯାହାର ପବନରେ ଉଡ଼ି ବୁଲୁଥିଲା ଜଳଖିଆ ଦୋକାନମାନଙ୍କର ବଡ଼ବଡ଼ ଚୁଲୀମାନଙ୍କରୁ ଧୂଆଁ ସହିତ ମିଶି ବାଦାମ ତେଲରେ ଛଣାଛଣିର ବାସନା, ଯେଉଁଠାରେ ଜଣେ ଚକ୍ରିବାଲା ଡିବିଡିବି ଡମ୍ବରୁ ବଜାଇ ଚକ୍ରିରେ ଚଢ଼ିବାପାଇଁ ପିଲାମାନଙ୍କୁ ଆକୃଷ୍ଟ କରୁଥିଲା, ମେଳାର ଇନ୍ଦ୍ରଜାଲରେ ଯେଉଁ ସ୍ଥାନଟା ହଠାତ୍ ଏକ ସ୍ୱପ୍ନପୁରୀରେ ପାଲଟି ଯାଇଥିଲା, ମେଳା ଭାଙ୍ଗିଯିବା ପରେ ଏବେ ସେଠାରେ ଓହ୍ଲାଇ ଆସିଥିଲା ବୈଶାଖ ମଧ୍ୟାହ୍ନର ନିର୍ଜନତା ଆଉ ନିସ୍ତବ୍ଧତା । ମେଲଣ ପଡ଼ିଆଠାରୁ ଅଳ୍ପ ଦୂରରେ ଗଙ୍ଗେଶ୍ୱର ମହାଦେବଙ୍କ ମନ୍ଦିରଟି ତା'ର ନିର୍ଜନତାକୁ ଆଉରି ଗମ୍ଭୀର କରିଦେଉଥିଲା ।

ତେର ଚଉଦ ବର୍ଷର ପିଲାଟିଏ ମେଳା ଆରମ୍ଭ ହେବାର ଦିନକ ଆଗରୁ ମେଳାକୁ ଆସିବା ଆରମ୍ଭ କରିଦେଇଥିଲା । ବାହାରୁ ଦୋକାନୀ ଓ ବେପାରୀମାନେ ଶଗଡ଼ରେ କିପରି ଶଉକ ଧରି ଆସନ୍ତି, ପୁଣି ଚାହୁଁଚାହୁଁ ଦୋକାନ ସବୁ ବସାଇ ଦିଅନ୍ତି; ଚକ୍ରିବାଲା କିପରି ମାଟିଖୋଳି ତାର ଚକ୍ରି ବସାଏ, ସନ୍ଧ୍ୟା ନହେଉଣୁ କିପରି ଅନ୍ଧାର ମେଳା ପଡ଼ିଆଟା

ପେଟ୍ରୋମାକ୍ସ ଆଲୁଅରେ ଦାଉଦାଉ କରିଉଠେ, ଏସବୁ ବୁଲି ଦେଖିବାପାଇଁ ତା'ର ଗୋଟିଏ ପ୍ରବଳ ଆକର୍ଷଣ ରହିଥିଲା । ତିନିଦିନ ଧରି ମେଳା ଚାଲି ମଉଳି ଯିବା ପରେ ମଧ୍ୟ ସିଏ ମେଳା ପଡ଼ିଆକୁ ଆସୁଥିଲା, ମେଳା ଭାଙ୍ଗିବାର ଦୃଶ୍ୟ ଦେଖିବାପାଇଁ । ମେଳା ବସିବା ଓ ଭାଙ୍ଗିବା, ଦୁଇଟାଯାକ ତାକୁ ରହସ୍ୟମୟ ଲାଗୁଥିଲା । କାଲି ଯେଉଁଠି ମେଳାରେ ଗହଳି ଲାଗିଥିଲା, ଆଜି ସେଠି ସବୁ ଚୁପ୍‌ଚାପ୍ । ଦୂରରେ କେତେଟା ଗାଈ ଜଗୁଆଳ ପିଲାଙ୍କ ବ୍ୟତୀତ ଏତେବଡ଼ ମେଳା ପଡ଼ିଆରେ ଆଉ କେହି ନଥିଲେ । ବୁଲା ଗୋରୁମାନେ ଶୁଖିଲା ଅଇଁଠା ପତ୍ରମାନ ବୁଲିବୁଲି ଚରିବା ବ୍ୟତୀତ ଏତେବଡ଼ ମେଳାପଡ଼ିଆରେ ଜୀବନର ଅନ୍ୟ ସତ୍ତା ନଥିଲା ।

ସେଇ ତେର ଚଉଦ ବର୍ଷର ପିଲାଟି ଗୋଟିଏ ଆମ୍ବଗଛର ଛାଇରେ ବସି ଏସବୁ ଦୃଶ୍ୟ ଦେଖୁଥିଲା ଓ କେଉଁଟା ସତ୍ୟ- ମେଳା ଜମିବା ନା ମେଳା ଭାଙ୍ଗିବା- ଭାବି ସ୍ଥିର କରିପାରୁ ନଥିଲା । ସେ ନିଜ ଆଖି ଆଗରେ ଦେଖିଥିଲା, ମେଳା ଜମିବାର ଦୃଶ୍ୟ । ସେ ମଧ୍ୟ ଆଖି ଆଗରେ ଦେଖିଲା, ମେଳା କିପରି ଧୀରେଧୀରେ ମଉଳିଗଲା । କିନ୍ତୁ କେଉଁଟା ସତ୍ୟ, ସେ ସ୍ଥିର କରିପାରୁ ନଥିଲା। ବୈଶାଖର ନିଛାଟିଆ ଖରାବେଳଟାରେ ଖଣ୍ଡିଆ ଭୂତମାନେ ଯେପରି ଶୁଖିଲା ପତ୍ର ଆଉ ରଙ୍ଗିନ କାଗଜ ଉଡ଼ାଇ ନାଚୁଥିଲେ, ବେଳେବେଳେ ତା' ମନରେ ତାହା ଭୟ ସଂଚାର କରୁଥିଲା । ଗୋଟିଏ ଜାଗାରେ ବସିବସି ତାକୁ ଚିଟା ଲାଗିଆସିଥିଲା । ସେ ସେଠାରୁ ଉଠି ମେଳାରେ ବୁଲିବା ପାଇଁ ଲାଗିଲା ।

ବୁଲୁବୁଲୁ ହଠାତ୍ ତା' ନଜରରେ ପଡ଼ିଲା ତଳେ ପଡ଼ିଥିବା ଗୋଟାଏ ରବର କଣ୍ଢେଇ । କଣ୍ଢେଇଟି ଗୋଟିଏ ଫ୍ରକ୍ ପିନ୍ଧା ଝିଅ । ଏପରି ଫ୍ରକ୍‌ର ସେତେବେଳେ ପ୍ରଚଳନ ଗାଁ ଗହଳରେ ନଥିଲା । କଣ୍ଢେଇଟିରେ ଗୋଟିଏ ସ୍ପ୍ରିଙ୍ଗ୍ ଲାଗିଥିଲା । ସ୍ପ୍ରିଙ୍ଗ୍‌ଟିକୁ ମୋଡ଼ିଦେଲେ କଣ୍ଢେଇ ହାତରେ ଦୁଇପଟ ଝାଞ୍ଜ ଝଣଝଣ ହୋଇ ବାଜୁଥିଲା, ଠିକ୍ ପିଲାଟିଏ ଝାଞ୍ଜ ବଜାଇବା ପରି । କଣ୍ଢେଇଟିକୁ ପ୍ରଥମେ ପାଇ ସେ ତାହାକୁ ବିଶ୍ୱାସ କରି ପାରୁନଥିଲା । ଏହିପରି କଣ୍ଢେଇଟିଏ ସେ ତା'ର ସାନ ଭଉଣୀପାଇଁ କିଣିବାଲାଗି ଗୋଟିଏ ମନୋହରୀ ଦୋକାନରେ ମୂଲ କରିଥିଲା । କିନ୍ତୁ ଚାରଣା ପଇସାରୁ ସେ ପଇସାଟିଏ ସୁଦ୍ଧା କମାଇବାପାଇଁ ମନା କରିଦେଇଥିଲା । ତା' ପକେଟରେ ଏତେ ପଇସା ନଥିଲା । ସେ ତେଣୁ ନିରାଶ ହୋଇ କେତେବାର ସେ ମନୋହରୀ ଦୋକାନ ପାଖରୁ ଯେ ଫେରିଥିଲା ତା'ର ଇୟତ୍ତା ନଥିଲା । ଏବେ ସେ ସେଇ କଣ୍ଢେଇଟିକୁ ନିଜ ହାତରେ ପାଇ ତାହା ପ୍ରକୃତରେ ତାର ବୋଲି ବିଶ୍ୱାସ କରିପାରୁ ନଥିଲା । ମନୋହରୀ ଦୋକାନୀଟି ହୁଏତ ଜିନିଷପତ୍ର ବାନ୍ଧିବାବେଳେ ଭୁଲ୍‌ରେ ସେଠାରେ କଣ୍ଢେଇଟିକୁ ପକାଇ ଯାଇଥିଲା । ପୁଣି ହୁଏତ ସେ କଣ୍ଢେଇଟିକୁ ଖୋଜିବାପାଇଁ ଆସି ପାରୁଥାଏ ।

ସେଥିପାଇଁ କିଛି ସମୟ କଣ୍ଢେଇଟିକୁ ଧରି ସେ ସେହି ନିର୍ଜ୍ଜନ ମେଳା ପଡ଼ିଆରେ ଠିଆ ହୋଇ ରହିଲା, ମାତ୍ର ମନୋହରୀ ଦୋକାନୀ କଣ୍ଢେଇ ଖୋଜିବାପାଇଁ ଆଉ ଆସିଲା ନାହିଁ । ସ୍ପ୍ରିଙ୍ଗ୍ ମୋଡ଼ିଦେବା ମାତ୍ରେ କଣ୍ଢେଇରେ ଖଞ୍ଜା ଯାଇଥିବା ଦୁଇପଟ ଟିଣ ଝାଞ୍ଜ ଯେପରି ଝାଇଁଝାଇଁ ହୋଇ ବାଜି ଉଠିଲା, ସେଥିରେ ନିଶୂତି ପଡ଼ିଆଟା ହଠାତ୍ ଯେପରି ଚକିତ ଓ ଚଞ୍ଚଳ ହୋଇଉଠିଲା । ତା' ଆଖି ଆଗରେ ଭାସି ଉଠିଲା ମେଳାର ସେଇ ଭିଡ଼, ସେଇ ଲୋକ ଗହଳି, ବିଭିନ୍ନ ଶବ୍ଦର ସେଇ ନିର୍ଘୋଷ ।

କଣ୍ଢେଇଟିକୁ ବାରମ୍ବାର ବଜାଇ ବଜାଇ ନିଛାଟିଆ ରାସ୍ତାରେ ସେ ଘରକୁ ଫେରିଲା ।

୧୫/୧୦/୮୯

# ଭିଟାମାଟି

ପାରାଦ୍ୱୀପ ପାଖରେ ମହାନଦୀର ଚଉମୁହାଣୀଠାରୁ ଆମ ଲଞ୍ଚ ପାଇକା ନଦୀ ଭିତରକୁ ପଶିଲା । ମୋର ସେ ପର୍ଯ୍ୟନ୍ତ ଧାରଣା ଥିଲା, ପାଇକା ନଦୀକୁ ଉପର ମୁଣ୍ଡରେ କେଉଁଠି ବନ୍ଦ କରି ଦିଆଯାଇଛି । ସ୍ୱାଧୀନତା ପରେ, ପାଇକାର ବନ୍ୟା ଦାଉରୁ ଲୋକଙ୍କୁ ରକ୍ଷା କରିବାପାଇଁ କୌଣସି ମନ୍ତ୍ରୀଙ୍କ ଆଦେଶରେ କୁଆଡ଼େ ପାଇକାକୁ ଉପର ମୁଣ୍ଡରେ କେଉଁଠି ବନ୍ଧାଇ ଦିଆଯାଇଥିଲା । ଚଉମୁହାଣୀଠାରେ ପାଇକା ନଦୀ ଭିତରକୁ ପଶି ମୋର ମନେହେଲା, ମନୁଷ୍ୟ ପ୍ରକୃତିକୁ ଯେତେ ଜୟ କରିବାକୁ ଚେଷ୍ଟା କଲେ ସୁଦ୍ଧା ପ୍ରକୃତି ଅପରାଜେୟ ହୋଇ ରହିବ। ଅପରାଜେୟତା ହିଁ ପ୍ରକୃତିର ସ୍ୱଧର୍ମ । ସେଇଥିପାଇଁ ସେ ପ୍ରକୃତି ।

ପାଇକାର ଚେହେରା ଏଠାରେ ଭୟଙ୍କର । ତା'ର ସ୍ରୋତଧାରାକୁ ଅଟକାଇ ରଖିବା ପାଇଁ ମନୁଷ୍ୟର ସବୁ ଉଦ୍ୟମ ବ୍ୟର୍ଥ ହୋଇଯାଇଛି । ଜଣେ କର୍ମୀ ମୋତେ ଦେଖାଇ ଦେଇ କହିଲେ, "ଏଇ ବାଁ ପାଖ ବନ୍ଧ ଆଡ଼େ ଚାହିଁ ଦେଖନ୍ତୁ । ପାଇକା ଗର୍ଭରେ ପ୍ରତିବର୍ଷ ଘର ପରେ ଘର ନଦୀ ଗର୍ଭରେ ଚାଲିଯାଉଛି । ସରକାରଙ୍କ ପକ୍ଷରୁ ସବୁ ନିର୍ବାଚନ ବେଳେ, ଏଠାରେ ପଥର ପ୍ୟାକିଂ ଓ ସ୍ପର ତିଆରିପାଇଁ ପ୍ରତିଶ୍ରୁତି ଦିଆଯାଇ ଆସୁଛି । ମାତ୍ର ପଥର ପ୍ୟାକିଂ ହେଉନାହିଁ କିମ୍ବା ସ୍ପର ତିଆରି ମଧ୍ୟ ହେଉନାହିଁ । ଗାଁ ପରେ ଗାଁ ନଦୀ ଗର୍ଭରେ ଚାଲିଯାଉଛି ।" ନଦୀର ବାଁ ପାଖ ବନ୍ଧ ଆଡ଼େ ଚାହିଁ ମୁଁ ଚମକି ଉଠିଲି । ନଦୀ ଗ୍ରାସ ଯେ ଏପରି ଭୟଙ୍କର ହୋଇପାରେ, ସେ ଧାରଣା ମୋର ସେ ପର୍ଯ୍ୟନ୍ତ ନଥିଲା । ବାଁ ପାଖର ନଦୀ ବନ୍ଧ ଦେଖା ଯାଉଥିଲା, ଶ୍ମଶାନରେ ନର କରୋଟୀ ପରି । ମଣିଷ ମୁଣ୍ଡ ସବୁ ଦାନ୍ତ ଦେଖାଇ ପଡ଼ିଥିବା ପରି ବାଁ ପାଖର ନଦୀବନ୍ଧର ଚେହେରା ଦେଖାଯାଉଥିଲା, ନିଷ୍ପ୍ରାଣ ଓ ଭୟଙ୍କର । ଅତଡ଼ା ଭୁଶୁଡ଼ି ସବୁଠାରେ ବନ୍ଧଟା ଦେଖାଯାଉଥିଲା କ୍ଷତ ବିକ୍ଷତ । ଯେଉଁ ଘର ସବୁ ନଦୀ ଗ୍ରାସରେ ଯାଇଥିଲା, ତାହାର ମୂଳଦୁଆ ଓ ଚାଳ ପ୍ରଭୃତି ତଳେ ଖସି ପଡୁପଡୁ କେଉଁଠି କେଉଁଠି ଲାଖି ରହିଥିଲା ।

ଗୋଟାଏ କୂଅର ମାଟିନନ୍ଦସବୁ ତଥାପି ଠିଆ ହୋଇ ରହିଥିଲା, ନର କଙ୍କାଳ ପରି । ଗୋଟାଏ ଚଡ଼ା ମଝିରେ ଅଟକି ଲାଗି ରହିଥିଲା । ପାଇକା ଗୋଟାଏ କ୍ଷୁଧିତ ସରୀସୃପ ପରି ଯେପରି ଲହଲହ ଜିଭ ବୁଲାଇ ସମୁଦ୍ର ଆଡ଼େ ବହି ଚାଲିଥିଲା ।

ଗାଁରେ ତଥାପି କେତୋଟି ଘର ରହିଯାଇଥିବା ପରି ମନେ ହେଉଥିଲା । କିନ୍ତୁ ମୁଁ ଭାବୁଥିଲି, ନଦୀ ଗ୍ରାସରୁ ରକ୍ଷା ପାଇବା ପାଇଁ ଗାଁ ଲୋକ ବୋଧହୁଏ ଘରଦ୍ୱାର ଛାଡ଼ି ଏଠାରୁ ଅନ୍ୟ କେଉଁ ନିରାପଦ ସ୍ଥାନକୁ ଉଠିଗଲେଣି । କିନ୍ତୁ ଗାଁ ପାଖ ଧରିବା ମାତ୍ରେ ବିଭିନ୍ନ ବୟସର ଗୁଡ଼ିଏ ସାନସାନ ପିଲା ଲଞ୍ଚର ଶବ୍ଦ ଶୁଣି ନଦୀ କୂଳ ପାଖକୁ କୌତୂହଳରେ ଲଞ୍ଚ୍ ଦେଖିବାପାଇଁ ଦଉଡ଼ି ଆସିଲେ । ସେମାନଙ୍କ ସହିତ ଜଣେ ଦୁଇଜଣ ପୁରୁଷ ମଧ୍ୟ ଦଉଡ଼ି ଆସି ଦୁଇହାତ ହଲାଇ ଆମକୁ ଯେପରି କ'ଣ କହୁଥିଲେ । କିନ୍ତୁ ଲଞ୍ଚର ଶବ୍ଦରେ ଆମେ ତାହା ଶୁଣି ପାରୁ ନଥିଲୁ । ଜଣେ କର୍ମୀ କହିଲେ, "ଏମାନେ ତ ଆମକୁ ଭୋଟ୍ ଦେବେ ନାହିଁ, ବୁଥ୍ ଏଠାରୁ କୋଶେ ଦୂରରେ ବାହାରଣା ଗାଁରେ । ଏଠି ଲଞ୍ଚ୍ ଅଟକାଇ ଗାଁ ଭିତରକୁ ଯିବା ବେକାର ।" ମୁଁ କହିଲି, "ସେମାନେ ଭୋଟ୍ ଦେବା ନଦେବା ବଡ଼ କଥା ନୁହେଁ । ମୁଁ ଜଣେ ପ୍ରାର୍ଥୀ । ଇଏ ମୋର ନିର୍ବାଚନମଣ୍ଡଳୀ । ତେଣୁ ଏ ଅଞ୍ଚଳକୁ ଆସିଛି ଯେତେବେଳେ ସେମାନଙ୍କୁ ସଙ୍ଖୋଳି ଯିବା ମୋର କର୍ତ୍ତବ୍ୟ । ଆଗରେ କେଉଁଠି ସୁବିଧା ଜାଗା ଦେଖି ଲଞ୍ଚ୍ ଅଟକାଇବାକୁ କୁହ ।" ଗାଁ ମୁଣ୍ଡରେ ଗୋଟାଏ ବୁଢ଼ା ଓସ୍ତ ଗଛ ପାଖରେ ଆମ ଲଞ୍ଚ୍ ଅଟକିଲା । ଆମେ ଲଞ୍ଚ୍‌ରୁ ଓହ୍ଲାଇ ଗାଁ ଭିତରକୁ ପଶିଲୁ । ଆଗେ କୁଆଡ଼େ ଏ ଗାଁରେ ଦୁଇଶହ ଭଳି ଘର ଥିଲା । ମାତ୍ର ଗାଁର ଉତ୍ତରପୂର୍ବ ସୀମାରୁ ନଦୀଗ୍ରାସ ଆରମ୍ଭ ହୋଇ ସେଥିରୁ ପ୍ରାୟ ଅଧେ ଘର ନଦୀ ଗର୍ଭରେ ଚାଲିଗଲାଣି । ହରିଜନମାନେ ଅନ୍ୟତ୍ର ଉଠିଗଲେଣି । ଅନ୍ୟ ଯେଉଁମାନେ ସୁବିଧା କରିପାରିଛନ୍ତି, ସେମାନେ ମଧ୍ୟ ନଦୀ ଗ୍ରାସରୁ ରକ୍ଷାପାଇବା ପାଇଁ ଅନ୍ୟତ୍ର ଉଠିଗଲେଣି । ଗାଁରେ ତଥାପି ଆଠ ଦଶଟି ଘରର ଲୋକମାନେ ଭିଟାମାଟିର ମାୟା ଛାଡ଼ି ନପାରି ସେଇ ଗାଁରେ ଚରମ ମୁହୂର୍ତ୍ତକୁ ଅପେକ୍ଷା କରି ପଡ଼ି ରହିଛନ୍ତି ।

ଆଶ୍ୱିନ ମାସ । ସେଦିନ ବୋଧହୁଏ ଖୁଦୁରୁକୁଣୀ ପୂଜାର କୌଣସି ଗୋଟିଏ ପାଳି । ସେଥିପାଇଁ ଗାଁର ସାନସାନ ପିଲାମାନଙ୍କ ମଧ୍ୟରେ ଉତ୍ସବର ଆନନ୍ଦ କୋଳାହଳ । ଆଶ୍ଚର୍ଯ୍ୟ ହେଲି, ବାହାର କାନ୍ଥମାନଙ୍କରେ ଚିତାରେ ଗଜଲକ୍ଷ୍ମୀ ମୂର୍ତ୍ତି ସୁଦ୍ଧା ଚିତ୍ର ହୋଇଛି । ଆଉ କେଉଁଠି କେଉଁଠି ପଦ୍ମଫୁଲ । ଧ୍ୱଂସ, ମୃତ୍ୟୁ ଓ ପ୍ରଳୟ ଉପରେ ଇଏ ଯେପରି ଅପରାଜିତ ଜୀବନର ବିଜୟ ଘୋଷଣା ! କେତେଜଣ ମୁରବୀ ଶ୍ରେଣୀର ଲୋକ ଆମକୁ ଗାଁ ଠାକୁର ଘର ପିଣ୍ଡାକୁ ଡାକି ନେଲେ । ଜଣେ କର୍ମୀ କହିଲେ, "ଇଏ ଖାସ୍ ଆପଣମାନଙ୍କ ଅବସ୍ଥା ଦେଖିବାପାଇଁ ଏ ଗାଁକୁ ଆସିଛନ୍ତି । ଏଥର ଇଏ ଆମ ଅଞ୍ଚଳରୁ ପାର୍ଲିଆମେଣ୍ଟକୁ ପ୍ରାର୍ଥୀ

ହୋଇଛନ୍ତି । ଇଏ ଭୋଟ ପାଇଗଲେ ପଥର ପ୍ୟାକିଂ ପାଇଁ ନିଶ୍ଚୟ ସରକାର ସାଙ୍ଗରେ ଲଢ଼ିବେ ।” ଲୋକମାନେ କୌଣସି ଉତ୍ତର ଦେଲେ ନାହିଁ । ସେମାନଙ୍କ ମୁହଁର ଭାବଭଙ୍ଗୀରୁ ମନେହେଲା, ସେମାନେ ଅତୀତରେ ଏହିପରି ବହୁ ପ୍ରତିଶ୍ରୁତି ଶୁଣି ଆସିଛନ୍ତି । ଆଉ ପ୍ରତିଶ୍ରୁତି ଶୁଣିବାରେ ସେମାନଙ୍କର ଆଗ୍ରହ ନଥିଲା । ଜଣେ ବୁଢ଼ା ବୟସର ଲୋକ ସେହିପରି କଥା ମଧ୍ୟ ଆମକୁ ସ୍ପଷ୍ଟ କରିଦେଲେ । ମୁଁ କହିଲି, “ଏଠି ନଦୀର ଅବସ୍ଥା ଯାହା, ଏଠାରେ ପଥର ପ୍ୟାକିଂ କିମ୍ବା ସ୍ପର କିଛି କାମ ଦେବ ନାହିଁ । ଆପଣମାନେ ଦଣ୍ଡକାରଣ୍ୟ ଚାଲନ୍ତୁ । ସେଠି ଆମେ ଆପଣମାନଙ୍କପାଇଁ ଯୋଗାଇ ଦେଇ ପାରିବୁ ଜମି, ଘର, ପିଚୁରାସ୍ତା, କଳପାଣି, ଇଲେକ୍‌ଟ୍ରିକ୍ ଆଲୁଅ, ଡାକ୍ତରଖାନା, ସ୍କୁଲ୍, ସବୁକିଛି । ପାଇକା ଗ୍ରାସରୁ ରକ୍ଷା ପାଇବାପାଇଁ ଆପଣମାନଙ୍କର ଅନ୍ୟ ଉପାୟ ନାହିଁ ।’ ମହୁଫେଣାରେ ଟେକାଟିଏ ପଡ଼ିଲେ ମହୁମାଛିମାନେ ଗୁଞ୍ଜରି ଉଠିବା ପରି ସେଠାରେ ଜମିଥିବା ଗାଁ ଲୋକଙ୍କ ମଧ୍ୟରେ ଗୋଟାଏ ଅସ୍ପଷ୍ଟ ଗୁଞ୍ଜରଣ ଉଠିଲା । ସମସ୍ତେ ଏକ ବାକ୍ୟରେ ଯେପରି ମୋ ଉପରେ ଆକ୍ରମଣ ଆରମ୍ଭ କରି କହିଲେ, କ’ଣ ? ଆମେମାନେ ପାଇକା କୂଳର କେତେ ପୁରୁଷର ଭିଟାମାଟି ଛାଡ଼ି କୋଉ ଦଣ୍ଡକାରଣ୍ୟକୁ ଯିବୁ ! ପାଇକା ନଦୀ ଆମକୁ ଜନ୍ମ ଦେଇଛି । ତା’ର ଇଚ୍ଛା ହେଲେ ଆମେ ତା’ରି ଗର୍ଭକୁ ଯିବୁ । ଭିଟାମାଟି ଛାଡ଼ି ଆମେ କୁଆଡ଼େ ଯିବୁ ନାହିଁ ।”

ଏହାପରେ ସେମାନଙ୍କ ସହିତ କଥାବାର୍ତ୍ତା ହେବାପାଇଁ ଆଉ କିଛି ନଥିଲା । ଆମେ ସେଠାରୁ ଉଠିବାର ଉପକ୍ରମ କଲୁ । ମାତ୍ର ସେତେବେଳକୁ ସେଠିକୁ ଆସି ଯାଇଥିଲା କାଚ ଗିଲାସମାନଙ୍କରେ ଆମ ପାଇଁ ଚା’ । ଜଣେ ବୁଢ଼ା କହିଲେ, “ଆମେ ବା ଆଉ କ’ଣ ଦେଇ ପାରିବୁ ! ଆମ ଗାଁକୁ କଷ୍ଟ କରି ଆସିଥିଲେ । ଏଇ ଚା’ ମୁନ୍ଦାକ ପିଇ ଦେଇ ଯାଆନ୍ତୁ !’

୨୨/୧୦/୮୯

# 'କଳିଙ୍ଗା ଅସୁର ମାତିବ'

ସେଦିନ ପ୍ରାତ୍ୟହିକ ସାନ୍ଧ୍ୟ ଆଡ୍‌ଡ଼ାକୁ ବ୍ରଜବନ୍ଧୁ ଆସି ନଥିଲେ । ଅଧୁନା ବଜାରର ଗତିବିଧି ଦେଖି ସେ ହତଚକିତ ହୋଇ ପଡ଼ିଛନ୍ତି । ବାଇଗଣ କିଲୋ ସାତ ଟଙ୍କା, କଖାରୁ କିଲୋ ପାଞ୍ଚଟଙ୍କା ହେବ ବୋଲି କିଏ ଆଶା କରିଥିଲା ! ଚିନି ପୁଣି କିଲୋ ବାରଟଙ୍କା ହେଲାଣି । ବଜାରର ଏଇ ହାଲ୍ ତାଙ୍କୁ ବିମର୍ଷ କରିଦେଇଛି । ପୂର୍ବପରି ସାନ୍ଧ୍ୟ ଆଡ୍‌ଡ଼ାକୁ ସେ ଆଉ ନିୟମିତ ଆସୁନାହାନ୍ତି । ପ୍ରକୃତରେ ପ୍ରାଣ ବଞ୍ଚାଇବା ଯେଉଁଠି ଏକ ଦାୟ, ସେଠି ଆଡ୍‌ଡ଼ା ଜମାଇବା ପାଇଁ ସମୟ କାହିଁ ? ପରିମାଣାତ୍ମକ ଦୃଷ୍ଟିରୁ ବଞ୍ଚିବାର ଗତିରୀତି ସଂପ୍ରସାରିତ ହେଉଛି ସତ୍ୟ; ମାତ୍ର ଗୁଣାତ୍ମକ ଦୃଷ୍ଟିରୁ କ୍ରମେ ତାହା ସଂକୁଚିତ ହୋଇଯାଉଛି । ବ୍ରଜବନ୍ଧୁ ପଡ଼ିଯାଇଛନ୍ତି ସେଇ ସଂକଟ ମଧ୍ୟରେ ।

କିନ୍ତୁ ଏବେ କିଛି ଦିନ ହେଲା ଆସୁଛନ୍ତି ଧରଣୀବାବୁ- ଜଣେ ଅବସରପ୍ରାପ୍ତ ସରକାରୀ ଅଫିସର । ପ୍ରତିବେଶୀ ହିସାବରେ ପୂର୍ବେ ଅବଶ୍ୟ ଦିନେ ଦିନେ ସେ ଆମ ଆଡ୍‌ଡ଼ାକୁ ଆସୁଥିଲେ, ମାତ୍ର ସେତେବେଳେ ଫାଇଲ୍ ଆଉ ମନ୍ତ୍ରୀଙ୍କ ଛଡ଼ା ତାଙ୍କର ଅନ୍ୟ ଚର୍ଚ୍ଚା ନଥିଲା । ଭାରି ବୋରିଙ୍ଗ୍ । ମାତ୍ର ଚାକିରିରୁ ଅବସର ନେବା ପରେ ସେ ହଠାତ୍ ମାଳିକା ଭକ୍ତ ହୋଇପଡ଼ିଛନ୍ତି । ଅଚ୍ୟୁତାନନ୍ଦଙ୍କ ମାଳିକାଠାରୁ ଆରମ୍ଭ କରି ହାଡ଼ୁ ଦାସଙ୍କ ମାଳିକା ପର୍ଯ୍ୟନ୍ତ ବହୁ ମାଳିକାର ପଦ ତାଙ୍କର ମୁଖସ୍ଥ । ମାଳିକାର ସେଇସବୁ ରହସ୍ୟମୟ ପଦର ଅର୍ଥ ଉନ୍ମୋଚନ ଏବେ ତାଙ୍କର ଏକମାତ୍ର ଚର୍ଚ୍ଚାର ବିଷୟ ହୋଇଛି । ସେଦିନ ସେ ହଠାତ୍ ଆସି ପଚାରିଲେ, "ଭୀମଭୋଇ 'ସ୍ତୁତିଚିନ୍ତାମଣି'ରେ ଲେଖିଛନ୍ତି, 'କଳିଙ୍ଗା ଅସୁର ମାତିବ / ସୁନାରେ ଧରଣୀ ଛାଇବ' । ଏହାର ଅର୍ଥ କ'ଣ ? କଳିଙ୍ଗା ଅସୁର ଆଉ ମାତିବ କେବେ ? କବିଙ୍କର ମାଳିକା ବଚନ କ'ଣ ଭୁଲ୍ ହେଇଯିବ ? ମୁଁ ଉତ୍ତର ଦେଲି, "ମଧ୍ୟଯୁଗର ସମସ୍ତ କବି ନିଜର ପାରିପାର୍ଶ୍ୱିକ ବ୍ୟବସ୍ଥାକୁ ଚାହିଁ, ଭବିଷ୍ୟତ ବାଣୀ କରିଥାନ୍ତି । ସେସବୁ ଯେ ଠିକ୍ ଠିକ୍ ଫଳିବ ତାହାର କେଉଁ ନିଶ୍ଚିତତା ଅଛି ?" ଧରଣୀବାବୁ ଯୁକ୍ତି କଲେ, "ନା ନା ତା ଆଦୌ ନୁହେଁ । କଳିଙ୍ଗା ଅସୁର ଆସିଗଲାଣି ।"

ମୁଁ ବିସ୍ମୟରେ ପଚାରିଲି, ଏ କଳିଙ୍ଗା ଅସୁର କିଏ ?" ଧରଣୀବାବୁ ପ୍ରବଚନ ଶୁଣାଇବା ପରି ଭଙ୍ଗୀରେ କହିଲେ, "ପରୀକ୍ଷିତ ମହାରାଜା ସିଂହାସନ ଆରୋହଣ କରିବା ପରେ ସର୍ବପ୍ରଥମେ କଳି ପ୍ରବେଶ କରିଥିଲା । ଜଗନ୍ନାଥ ଦାସ ଭାଗବତରେ ଲେଖିଛନ୍ତି, ସେ କଳି ଥିଲା, ଶୂଦ୍ର । ସେ ହାତରେ ଧରିଥିଲା, ଲୁହା ଆଉ ସୁନା ।" ମୁଁ ପଚାରିଲି, "ଇଏ ତ ରୀତିମତ ଗୋଟିଏ ଗୋଲକଧନ୍ଦା ।" ଧରଣୀ ବାବୁ ବୁଝାଇଦେଲେ, "ବୁଝୁ ନାହାନ୍ତି କିପରି ? ଲୌହଯୁଗର ଆରମ୍ଭ ହେଉଛି, କଳିକାଳ । ସେଥିପାଇଁ କଳି ହାତରେ ଥିଲା ଲୁହା । ଏଇ ଲୁହାରୁ ଜନ୍ମ ନେଲା ମାଟିରିଆଲିଜିମ୍ ! ସୁନା ଇ ହେବ, ଏ କାଳର ଧ୍ୟେୟ ଓ ଶ୍ରେୟ । ସେଇଆକୁ ଲକ୍ଷ୍ୟ ରଖି ଭୀମଭୋଇ 'ସ୍ତୁତିଚିନ୍ତାମଣି'ରେ କଳିକୁ କରିଛନ୍ତି, କଳିଙ୍ଗା ଅସୁର ।" ମୁଁ ପଚାରିଲି, "କିନ୍ତୁ ସୁନାରେ ମାଟିକୁ ସେ ଛାଉଣୀ କରୁ ନାହାନ୍ତି ତ !" ଧରଣୀ ବାବୁ କ'ଣ ଉତ୍ତର ଦେବାକୁ ଯାଉଥିଲେ, ଏଇ ସମୟରେ ହଠାତ୍ ବ୍ରଜବନ୍ଧୁ ସିଆଡୁ ଖଣ୍ଡେ ପାନ ଚୋବାଇ ଚୋବାଇ ଆସି କହିଲେ, "ବୁଝିଲେ ମଣ୍ଟୁ ଆଜି ଗୋଟାଏ ଖାଣ୍ଟି କଥା କହିଲା!" କିନ୍ତୁ ମଣ୍ଟୁ କିଏ ? ବ୍ରଜବନ୍ଧୁ କହିଲେ, "ଏଇ ଆମ ଛକ ଉପର ମଣ୍ଟୁ ପାନ ଦୋକାନୀ । ମୁଁ ତ ପଚିଶ ପଇସା ଦେଇ ଖିଲେ ପାନ କିଣେ । କିନ୍ତୁ ପାନ ଖିଲ ଯେ ଦୁଇ ଟଙ୍କା ହୋଇପାରେ, ଏ ଧାରଣା ମୋର ନଥିଲା । ଅଥଚ ମୋରି ଆଗରେ ସେ ଜଣଙ୍କୁ ଖିଲେ ପାନ ଦୁଇଟଙ୍କାରେ ବିକିଲା । ସେଥିରେ କୁଆଡ଼େ ଗୋପାଳୀ ଜର୍ଦ୍ଦା, ଡିଲକ୍ସ ଜର୍ଦ୍ଦା ରହିଛି । ପାନରେ ସେ ଯେଉଁ ଚୂନ ବୋଳୁଛି, ସେଥିରେ ପୁଣି ଅତର ମିଶିଛି । ମୁଁ କଲେଜରେ ପଢ଼ିଲା ବେଳେ ମଦନା ଦୋକାନରୁ ମାସରେ ଦୁଇଟଙ୍କାର ପାନ କିଣୁଥିଲି । ଚାରି ପଇସାକୁ ତିନି ଖିଲ ପାନ । ଅଥଚ ପାନ ଖିଲେ ଆଜି ପଚିଶ ପଇସା । ପୁଣି କିସମ କିମସର ଜର୍ଦ୍ଦା ଦିଆ ପାନ। ହେଲେ ଖିଲକର ଦାମ ଦୁଇଟଙ୍କା ! ମୁଁ ଏକଥା କହିଲାରୁ ମଣ୍ଟୁ କ'ଣ ଉତ୍ତର ଦେଲା ଜାଣନ୍ତି ? ସେ କହିଲା, "ଆପଣଙ୍କ ଗୋସବାପାଙ୍କ ଅମଳରେ ପଇସାଟାକୁ ହୁଏତ ଚାରିଖିଲି ପାନ ମିଳୁଥିଲା । କାଳକୁ ଚାହିଁ ଦର ବଢୁଛି । ସେତେବେଳେ କାଁ ଭାଁ କେଉଁଠି ଗୋଟାଏ ପାନ ଦୋକାନ ଥିଲା କି ନାହିଁ, ସନ୍ଦେହ । ଆଜି ପ୍ରତି ଛକରେ ଗଣ୍ଡା ଗଣ୍ଡା ପାନ ଦୋକାନ ।"

ଧରଣୀବାବୁ ଏ ପର୍ଯ୍ୟନ୍ତ ଆମ କଥା ଚୁପ୍‌ଚାପ୍ ଶୁଣୁଥିଲେ । ସେ କହିଲେ, "କଳିଙ୍ଗା ଅସୁରର ଇଏ କାରସାଦି ନୁହେଁ ତ ଆଉ କ'ଣ ? ମାଟି ଉପରେ ସେ ସୁନା ଛାଉଣୀ କରୁ ନଥିଲେ ପାନ ଖିଲ ଦୁଇଟଙ୍କା ହୁଅନ୍ତା କିପରି ? ଇଏ ହାଇପର୍ ଇନ୍‌ଫ୍ଲେସନ୍ । ସବୁ ଆଡ଼େ ସୁନା ଆଉ ସୁନା । କିନ୍ତୁ ତା'ରି ଭିତରେ ମଣିଷ ଭୋଖିଲା । ଇଏ କଳିର ଲକ୍ଷଣ । ସନ୍ଥ କବି ଭୀମଭୋଇଙ୍କର ମାଳିକା କ'ଣ ମିଥ୍ୟା ହୁଅନ୍ତା !"

୦୫/୧୧/୮୯

# ଗୋଟିଏ ଅଚିହ୍ନା ଲାସ୍

ସେଦିନ ଅଞ୍ଜନନଗର ମହାରାଜାଧିରାଜ ଆମ ଛୋଟିଆ ସହରକୁ ଆସୁଥିଲେ ପରିଦର୍ଶନପାଇଁ। ତାଙ୍କର ଯଥାବିଧି ଅଭ୍ୟର୍ଥନାପାଇଁ ପ୍ରସ୍ତୁତିରେ ଆମର ନିଦ ନଥିଲା। ଛୋଟିଆ ସହରଟି କର୍ମ ଚଞ୍ଚଳ ହୋଇ ଉଠିଥିଲା। ମହାରାଜାଧିରାଜଙ୍କର ନିରନ୍ତର ରକ୍ଷାପାଇଁ ଆମ କଟୁଆଳ ବାହିନୀଙ୍କୁ ଦଣ୍ଡେ ନିଶ୍ୱାସ ନେବାପାଇଁ ସୁଦ୍ଧା ତର ନଥିଲା। ଆମ ସହରର ଅଧିବାସୀମାନେ ମହାରାଜାଧିରାଜଙ୍କୁ ନରରୂପୀ ବିଷ୍ଣୁ ଜ୍ଞାନ କରନ୍ତି।

'ମହତୀ ଦେବତା ହ୍ୟେଷା ନର ରୂପେଣ ତିଷ୍ଠତି।' ତାଙ୍କ ଶ୍ରୀଅଙ୍ଗରେ ଏଠାରେ ଧାଉଡ଼ ଲଗାଇବ କିଏ? ଏପରି ଚିନ୍ତା ସୁଦ୍ଧା କାହାରି ମନକୁ ଛୁଇଁ ନଥିଲା। ତଥାପି ଆମର ପ୍ରଶାସକମାନେ ଧରି ଆଣ କହିଲେ ବାନ୍ଧି ଆଣରେ ବିଶ୍ୱାସ କରନ୍ତି। ସେଥିପାଇଁ କୌଣସି ପ୍ରୟୋଜନ ନଥିଲେ ସୁଦ୍ଧା ସେମାନେ କଟୁଆଳ ବାହିନୀଙ୍କୁ ମହାରାଜାଧିରାଜଙ୍କ ନିରାପତ୍ତା ରକ୍ଷା ସଂପର୍କରେ ସବୁ ପ୍ରକାର ତାଲିମ ଦେଇ ମହାରାଜାଧିରାଜଙ୍କର ଯିବା ଆସିବାର ରାସ୍ତା ଦୁଇ କଡ଼ରେ ମୁତୟନ କରିଥିଲେ। ନିରାପତ୍ତା ବ୍ୟୁହ ଏପରି ହୋଇଥିଲା ଯେ ମାଛିଟିଏ ସୁଦ୍ଧା ତା' ଭିତରକୁ ପ୍ରବେଶ କଲେ ନବଖଣ୍ଡ ହୋଇଯିବ। ମହାରାଜାଧିରାଜ ଆମ ସହରକୁ ଆସିଲେ ମାତ୍ର ଦୁଇଘଣ୍ଟା ପାଇଁ, କିନ୍ତୁ ସେଥପାଇଁ ଆମ ଛୋଟିଆ ସହରରେ ଭୌଗୋଳିକ ସାଧାରଣ ଜୀବନ ପୂରା ଅଚଳ ହୋଇ ପଡ଼ିଥିଲା।

ସହରର ମୁଖ୍ୟ କଟୁଆଳର ସେଦିନ କାଉ ଉଡୁଥିଲା କହିଲେ ଚଳେ। କଟୁଆଳମାନେ ମହାରାଜାଧିରାଜଙ୍କର ନିରାପତ୍ତା ରକ୍ଷାପାଇଁ ପ୍ରଧାନ ରାସ୍ତା କଡ଼େକଡ଼େ ମୁତୟନ ରହିଥିଲେ। କଟୁଆଳୀରେ କଟୁଆଳମାନଙ୍କର ଜଣେ ହାକିମ କେବଳ ଏକୁଟିଆ ଟେଲିଫୋନ୍ ପାଖରେ କେତେବେଳେ କୁଆଡୁ କି ଖବର ଆସିବ, ସେଇ ଅପେକ୍ଷାରେ ଉତ୍କଣ୍ଠିତ ଭାବରେ ବସି ରହିଥିଲେ। ଏହି ସମୟରେ ଗେରୁଆ ଆଲଖାଲ୍ଲା ପିନ୍ଧା ତିନିଜଣ ବାବାଜୀ ଚେହେରାର ଲୋକ ବହୁ ବ୍ୟାକୁଳ ଭାବରେ ହାକିମଙ୍କ ଟେବୁଲ୍ ପାଖକୁ ଆସି କହିଲେ, "ରକ୍ଷା କରନ୍ତୁ ହଜୁର। ତା' ନହେଲେ ସବୁ ଶେଷ ହୋଇଯିବ।" ହାକିମ

ଚିତ୍କାର କରି ଉଠିଲେ, "ନୁଇସେନ୍‌ସ। କ'ଣ ଶେଷ ହୋଇଯିବ ? ଆଜି ମହାରାଜାଧିରାଜ ଆମ ସହରକୁ ଆସୁଛନ୍ତି। ତମମାନଙ୍କୁ କ'ଣ ମାଲୁମ୍ ନାହିଁ ସେକଥା ?" ଜଣେ ଛେଳିଦାଢ଼ିଆ ବାବାଜୀ କହିଲେ, "ଆଜି ଆମର ଗୁରୁ ଈଶ୍ୱରାନନ୍ଦଜୀ ମଧ୍ୟ ଏଇ ସହରକୁ ଆସୁଛନ୍ତି। କିନ୍ତୁ କେତେଜଣ ଗୁଣ୍ଡା ତାଙ୍କୁ ଖୁନ୍ କରିବାପାଇଁ ତିଆର ହେଉଛନ୍ତି। ଆପଣ ରକ୍ଷା ନକଲେ ଗୁଣ୍ଡାମାନଙ୍କର ଛୁରାମାଡ଼ରେ ଗୁରୁ ଈଶ୍ୱରାନନ୍ଦଜୀଙ୍କର ଆଉ ପ୍ରାଣ ରହିବ ନାହିଁ।" ହାକିମ ପ୍ରବଳ ବିରକ୍ତିରେ ଚିତ୍କାର କରି ଉଠିଲେ, "ତମ ଗୁରୁଙ୍କର କ'ଣ ଆଉ ଦିନ ନଥିଲା ? ସେ ଆଜି ଆସୁଛନ୍ତି ଏଇ ସହରକୁ; ଯେଉଁଦିନ ଆମେ ମହାରାଜାଧିରାଜଙ୍କର ନିରାପତ୍ତା ରକ୍ଷାରେ ବ୍ୟସ୍ତ ? କିନ୍ତୁ ଗୁଣ୍ଡାମାନେ ତମ ଗୁରୁବାବାଙ୍କୁ ଖୁନ୍ କରିବାପାଇଁ ବସିଛନ୍ତି ବୋଲି ତମେ ଜାଣିଲ କିପରି ?" ସେଇ ଛେଳିଦାଢ଼ିଆ ବାବାଜୀ ଜଣକ ଉତ୍ତର ଦେଲେ, "ସେମାନେ ଗୋଟାଏ ପାର୍କ ପାଖରେ ବସି ଚାରିଟା ଭୁଜାଲୀକୁ ଘସିଘସି ଧାର କରୁଛନ୍ତି। ଆଉ ଖୋଲାଖୋଲି କହୁଛନ୍ତି, ଗୁରୁ ଈଶ୍ୱରାନନ୍ଦଜୀ ଆଜି ଏଇ ସହରକୁ ଆସିଲେ ତାଙ୍କୁ ସେମାନେ ଖୁନ୍ କରିଦେବେ।" ହାକିମ ହୋ ହୋ ହୋଇ ହସିହସି କହିଲେ, "ସେମାନେ ସେମିତି ଥଟ୍ଟା ତାମସା କରୁଥିବେ। ତମ ଗୁରୁଙ୍କୁ ସେମାନେ ଖତମ୍ କରିବାକୁ ଯିବେ କାହିଁକି ?"

ବାବାଜୀମାନେ ଏକ କଣ୍ଠରେ ଉତ୍ତର ଦେଲେ, "ସେମାନେ କହୁଛନ୍ତି ଏଇ ଗୁରୁ ଈଶ୍ୱରାନନ୍ଦଜୀଙ୍କୁ ଖତମ ନକଲେ, ସେମାନଙ୍କର ଧନ୍ଦା ଚଳିବ ନାହିଁ।" ହାକିମ ଉତ୍ତର ଦେଲେ, "ସେ ଯାହା ହେଉ, ଆଜି ଆମେ କିଛି କରିପାରିବୁ ନାହିଁ। ତମ ଗୁରୁ ଈଶ୍ୱରାନନ୍ଦଜୀଙ୍କୁ ଖବର ପଠାଅ, ଆଜି ସେ ଏ ସହରକୁ ଆସିବେ ନାହିଁ। ଆଜି ସ୍ୱୟଂ ମହାରାଜାଧିରାଜ ଆସୁଛନ୍ତି ଏଇ ସହରକୁ। ପୁଣି ତମ ଗୁରୁ ଯେ ଏକ ସିକ୍ୟୁରିଟୀ ରିସ୍କ ହୋଇ ନଥିବେ, ତା'ର କେଉଁ ସ୍ଥିରତା ଅଛି ? ବାବାଜୀମାନେ ଅଗତ୍ୟା ସେଠାରୁ ବିମର୍ଷ ଭାବରେ ଫେରିଆସିଲେ।

ମହାରାଜାଧିରାଜ ନିର୍ଦ୍ଦିଷ୍ଟ ସମୟ ନିର୍ଘଣ୍ଟ ଅନୁସାରେ ଆମ ସହରକୁ ଆସିଲେ ଓ ଭକ୍ତ ପ୍ରଜାଗଣଙ୍କଠାରୁ ଅଭିବାଦନ, ଅଭିନନ୍ଦନ ପାଇ ବାହୁଡ଼ିଗଲେ। ମହାରାଜାଧିରାଜ ଆମ ସହର ଛାଡ଼ିବା ପରେ କଟୁଆଳମାନେ କ୍ଳାନ୍ତି ଓ ଅବସାଦରେ, ନିଶ୍ଚିନ୍ତରେ ନିଘୋଡ଼ ନିଦରେ ଶୋଇପଡ଼ିଲେ। ...କିନ୍ତୁ ତା' ପରଦିନ ଦେଖାଗଲା, ରାସ୍ତାକଡ଼ରେ ଜଣେ ସନ୍ନ୍ୟାସୀଙ୍କର ମୃତ ଦେହ ପଡ଼ିରହିଛି। ତାଙ୍କ ଦେହରେ ବହୁ କ୍ଷତ ଚିହ୍ନ। କଟୁଆଳ ଓ ହାକିମମାନେ ମୃତ ଦେହର ମାଇନାପାଇଁ ତାହାକୁ ହାସ୍‌ପାତାଳ ପଠାଇଦେଲେ। ସେଇ ଚାରିଜଣ ବାବାଜୀ ଲୋକମୁଖରେ ଏଇ ହତ୍ୟା ସମ୍ବାଦପାଇ ହାସ୍‌ପାତାଳକୁ ଦଉଡ଼ିଗଲେ ଗୁରୁଙ୍କର ଶବପିଣ୍ଡର ଶେଷ ଦର୍ଶନପାଇଁ। ହାସ୍‌ପାତାଳାବାଲା କୌଣସି ଠିକଣା ଉତ୍ତର

ଦେଇ ନପାରି ବାବାଜୀମାନଙ୍କୁ କହିଲେ, "ମୁର୍ଦ୍ଦାରଖାନାକୁ ଯାଇ ସେଠାରେ ତଲାସ କରିବାପାଇଁ।"

ମୁର୍ଦ୍ଦାରଖାନାରେ କେତେଜଣ ଭିଖାରୀ, ଚୋର ଆଉ ଗୁଣ୍ଡାଙ୍କ ପରି ଚେହେରାର ଲୋକମାନଙ୍କ ଲାସ୍ ଭିତରେ ପଡ଼ି ରହିଥିଲା, ଗୁରୁ ଈଶ୍ୱରାନନ୍ଦଙ୍କର ଶବପିଣ୍ଡ..., ଗୋଟିଏ ଅଚିହ୍ନା ଲାସ୍! ସହରର କଟୁଆଳ ବାହିନୀ ମହାରାଜାଧିରାଜଙ୍କର ନିରାପତ୍ତା ରକ୍ଷା କରୁଥିବା ବେଳେ ସେଇ ଗୁଣ୍ଡାମାନେ ଈଶ୍ୱରାନନ୍ଦଜୀଙ୍କୁ ରାସ୍ତାରେ ଏକୁଟିଆ ଆସୁଥିବା ଦେଖି ଭୁଜାଲୀ ଚୋଟରେ ହତ୍ୟା କରିଥିଲେ।

୧୨/୧୧/୮୯

# ରାଜନୀତିର ସଂଜ୍ଞା

ନିର୍ବାଚନ ହାଓ୍ୱା ତଥାପି ଗରମ ହୋଇ ଉଠିନାହିଁ । ତେବେ ସେଥିପାଇଁ ସବୁ ଶିବିରରେ ପ୍ରସ୍ତୁତି ଚାଲିଛି । ଏହି ସମୟରେ ଖବରକାଗଜରେ ଗୋଟିଏ ଖବର ମୋ ଆଖିରେ ପଡ଼ିଲା । ଜଣେ ବିଶିଷ୍ଟ ବର୍ଷୀୟାନ୍ ନେତା କୌଣସି ଏକ ନିର୍ବାଚନ ମଣ୍ଡଳୀରେ ତାଙ୍କର ପ୍ରଥମ ସଭା କରିବାପାଇଁ ଯାଇଥିଲେ । ତାଙ୍କ ଆଗମନ ଉପଲକ୍ଷେ ଗୋଟିଏ ବିରାଟ ମଞ୍ଚ ପ୍ରସ୍ତୁତ ହୋଇଥିଲା । ନେତା ଦଳବଳ ସହିତ ସଭାସ୍ଥଳରେ ପହଞ୍ଚି ମଞ୍ଚ ଉପରକୁ ଉଠିଯାଇ ସେଠାରୁ ବିରାଟ ଜନସମାବେଶ ଦେଖି ଭାରି ଉଲ୍ଲସିତ ହୋଇଉଠିଲେ । ତା'ପରେ ସେ ସଂଗେସଂଗେ କର୍ମୀମାନଙ୍କୁ କହିଲେ, ସେ ମଞ୍ଚ ଛାତ ଉପରକୁ ଯିବେ ।

ନେତାଙ୍କର ଏହି ଅଦ୍ଭୁତ ଅନୁରୋଧରେ କର୍ମୀମାନେ ବିସ୍ମିତ ଓ କିଂକର୍ତ୍ତବ୍ୟବିମୂଢ଼ ହୋଇପଡ଼ିଲେ । କାରଣ ମଞ୍ଚର ଛାତ ଉପରକୁ ଉଠିବାପାଇଁ କୌଣସି ପାହାଚ ବା ଶିଡ଼ିର ବ୍ୟବସ୍ଥା ନଥିଲା । ନେତା କହିଲେ, "ଠିକ୍ ଅଛି ! କେଉଁଠୁ ଗୋଟିଏ ନିଶୁଣି ଘେନିଆସ ।" ନେତାଙ୍କର ନିର୍ଦ୍ଦେଶମତେ କର୍ମୀମାନେ କେଉଁଠୁ ନିଶୁଣି ଆଣି ସେଠାରେ ରଖିଲେ । ନେତା ବର୍ତ୍ତମାନ ଏହି ନିଶୁଣୀରେ ମଞ୍ଚର ଛାତ ଉପରକୁ ଉଠି ପାରିବେ କି ନାହିଁ ବୋଲି କେତେକ ଦର୍ଶକଙ୍କ ମଧ୍ୟରେ ବାଜି ଲଗାଲଗି ଚାଲିଲା । ଆଶ୍ଚର୍ଯ୍ୟ ! ବର୍ଷୀୟାନ୍ ନେତା ଯୁବସୁଲଭ ଉତ୍ସାହରେ ନିଶୁଣିରେ ଧାପେ ଧାପେ ମଞ୍ଚ ଛାତ ଉପରକୁ ଉଠିଗଲେ । ଦର୍ଶକମାନଙ୍କର ଘନଘନ କରତାଳିରେ ସଭାସ୍ଥଳ ମୁଖରିତ ହୋଇଗଲା । ସର୍କସର କୌଣସି ଖେଳ ଏହାଠାରୁ ବଳି କଦାପି ଅଧିକ ଚାଞ୍ଚଲ୍ୟକର ହୋଇପାରି ନଥାନ୍ତା ।

ସମ୍ବାଦଟି ପଢ଼ି ମୋର ମନେପଡ଼ିଗଲା, ଦ୍ୱିତୀୟ ମହାଯୁଦ୍ଧ ପରେ ପ୍ରକାଶିତ ଖଣ୍ଡେ ଇଂରାଜୀ ବହିର ଶିରୋନାମା, 'The Rape Of Mass Mind' । ବହିଟି ଏବେ ଆଉ ମୋ ପାଖରେ ନାହିଁ । ଯା ଭିତରେ ହଜି ଯାଇଛି । ବହିର ଲେଖକଙ୍କ ନାମ ସୁଦ୍ଧା ମୋର ମନେନାହିଁ । ହିଟ୍‌ଲର କାଳେ ରାଜନୀତିକୁ କହିଥିଲେ, 'The Rape Of Mass Mind' ଗଣମାନସର ଧର୍ଷଣ ହେଉଛି ରାଜନୀତି । ଯିଏ ଗଣମାନସକୁ ଯେତେ ସଫଳ

ଭାବରେ ଧର୍ଷଣ କରିପାରିଲା, ସିଏ ହୋଇପାରିଲା ସେତେ ବେଶି ସଫଳ ଓ ଶକ୍ତିଶାଳୀ ରାଜନୀତିଜ୍ଞ । ଏହି ସୂତ୍ର ଅନୁସାରେ ହିଟଲର ଜର୍ମାନୀର ସର୍ବଶକ୍ତିମାନ୍ ଡିକ୍ଟେଟର ହୋଇପାରିଥିଲେ । ଆମର ଏଇ ବର୍ଷୀୟାନ୍ ବିଶିଷ୍ଟ ନେତା ଜ୍ଞାତସାରରେ ହେଉ ବା ଏକ ଶସ୍ତା କୌଶଳରେ, ଗଣମାନଙ୍କୁ ଚମତ୍କୃତ କରିବାପାଇଁ କରିଥିଲେ । ଏହାର ଅପରନାମ ଗଣମାନସର ଧର୍ଷଣ ! ଏଥିରେ ନୀତି, କାର୍ଯ୍ୟକ୍ରମ ଓ ନୂତନ ରାଜନୈତିକ ଆଦର୍ଶର କୌଣସି ଇଙ୍ଗିତ ନାହିଁ; ଅଛି, 'ଡେମାଗଗୀ' ବା ପ୍ରଗଲ୍‌ଭତା ଓ ସର୍କସ ।

ଏହିପରି ଚିନ୍ତା କରୁଛି, ଏହି ସମୟରେ ସେ ଅଞ୍ଚଳର ଜଣେ ରାଜନୈତିକ ବ୍ୟକ୍ତି ମୋ ପାଖକୁ ଏମିତି ବୁଲି ଆସିଲେ । ମୁଁ ତାଙ୍କୁ ବିଶିଷ୍ଟ ନେତାଙ୍କର ନିଶୁଣି ଚଢ଼ା ଘଟଣାଟି କହିଲି । ସେ ଉତ୍ତର ଦେଲେ, "କେବଳ ସେଇ କଥାତ ବର୍ତ୍ତମାନ ଆମ ଅଞ୍ଚଳରେ ନିର୍ବାଚନ ଚର୍ଚ୍ଚାର ଏକମାତ୍ର ବିଷୟବସ୍ତୁ ହୋଇଛି ! ଅପରପକ୍ଷ ଭାବୁଛନ୍ତି, ଆଉ ଗୋଟାଏ ଉଚ୍ଚା ମଞ୍ଚ ତିଆରି କରାଇ ସେମାନେ ସେମାନଙ୍କର ନେତାଙ୍କୁ ତା' ଉପରେ ନେଇ ଠିଆ କରାଇବେ । ସେଠାରେ ତାଙ୍କୁ ଆଉ ଭାଷଣ ଦେବାର ପ୍ରୟୋଜନ ପଡ଼ିବ ନାହିଁ । ବିଶିଷ୍ଟ ବର୍ଷୀୟାନ୍ ନେତା ଉଠିଥିଲେ, ଆଠ ଫୁଟ ଉଚ୍ଚାର ମଞ୍ଚ ଛାତ ଉପରକୁ । କିନ୍ତୁ ସେମାନଙ୍କ ନେତା ଦଶ ଫୁଟ ଉଚ୍ଚର ମଞ୍ଚ ଛାତ ଉପରକୁ ଉଠିବେ । ଏହାପରେ ଭାଷଣର ଆଉ ପ୍ରୟୋଜନ କ'ଣ ? ଲୋକେ ସେଇ ଦୃଶ୍ୟ ଦେଖି କୃତକୃତ୍ୟ ହୋଇଯିବେ ।

ମୁଁ ପଚାରିଲି, "ତା'ହେଲେ ନେତା ମଞ୍ଚ ଛାତ ଉପରେ ଠିଆ ହୋଇ କରିବେ କ'ଣ ? ଭଦ୍ରଲୋକ ଉତ୍ତର ଦେଲେ, "ସେଇ ବର୍ଷୀୟାନ୍ ନେତା ମଞ୍ଚ ଛାତ ଉପରେ ଠିଆହୋଇ ଜିନ୍ଦାବାଦ ଧ୍ୱନି ମଧ୍ୟରେ ଡିକ୍ଟେଟରମାନଙ୍କ ଠାଣିରେ ହାତ ହଲାଇଥିଲେ । ଏ ନେତା କିନ୍ତୁ କେବଳ ହାତ ହଲାଇବେ ନାହିଁ, ମାଙ୍କଡ଼ଚିତ୍ ମାରିବେ ! ଦୁଇଗୋଡ଼ ମଧ୍ୟ ଉପରକୁ ଉଠାଇ ହଲାଇବେ ।"

ମନେମନେ ଭାବିଲି, ହିଟ୍‌ଲରଙ୍କ ରାଜନୀତିର ସଂଜ୍ଞା ପ୍ରକୃତରେ କେତେ ବାସ୍ତବ ଥିଲା ! ପୁଣି ଆଜି ନିର୍ବାଚନୀ ରାଜନୀତି କହିଲେ ତ ବୁଝାଉଛି ସର୍କସ୍ ! ସେଥିରେ କିଛି କିଛି ଜୋକରଗିରି ମିଶାଇ ଶ୍ରୋତାମାନଙ୍କୁ ହସାଇ ପାରିଲେ, ତାହା ପୁଣି ଆଉରି ଭଲ ।

୧୯/୧୧/୮୯

# ସୁପର କମ୍ପ୍ୟୁଟର

ଉଣେଇଶ ଅଶୀ ମଡ଼େଲ୍‌ର ନେତା ନେତା ଚେହେରା... ଦାମୀ ଟେରିକଟ୍ ପ୍ୟାଣ୍ଟ୍ ସାଙ୍ଗକୁ ସଫାରୀ... ବ୍ୟସ୍ତ ବିବ୍ରତ ଭାବରେ ଗୋଟିଏ ପଞ୍ଚତାରକା ହୋଟେଲ୍‌ର ପ୍ରେସିଡେଣ୍ଟସିଆଲ୍ ସୁଇଟ୍‌କୁ ଲିଫ୍ଟରେ ଆସିଥିଲେ, ତାନ୍ତ୍ରିକ ମହାରାଜ ନନ୍ଦୁରାମଙ୍କ ସହିତ ସାକ୍ଷାତ କରି ଆସନ୍ତା ନିର୍ବାଚନ ସଂପର୍କରେ ଭାଗ୍ୟ ଗଣନାପାଇଁ । ... ନିର୍ବାଚନ ଯେତିକି ପାଖେଇ ଆସୁଛି, ରାଜଧାନୀରେ କ୍ରମେ ସେତିକି ବଢୁଛି, ବାବା, ପୀର, ତାନ୍ତ୍ରିକ, ହସ୍ତରେଖା ଗଣନା ବିଶାରଦ, ଏପରିକି ନ୍ୟୁମୋରୋଲୋଜିଷ୍ଟ ବା ସଂଖ୍ୟାଗଣକମାନଙ୍କ ଭିଡ଼ । ଆସନ୍ତା ଏକବିଂଶ ଶତାବ୍ଦୀର ଏମାନେ ସୁପର କଂପ୍ୟୁଟର... ଜନ୍ମ ତାରିଖ, ରାଶି, ନକ୍ଷତ୍ର ଇତ୍ୟାଦି ଏଇ କଂପ୍ୟୁଟରମାନଙ୍କରେ ଫିଡ୍ କରିଦେଲେ ଫଳାଫଳ ସବୁ ଚଟାପଟ ବାହାରିପଡ଼େ । ଖବରକାଗଜର ପରିସଂଖ୍ୟାନ ଅନୁସାରେ ଭାରତରେ ପ୍ରତି ଦୁଇଶହ ଜଣରେ ଅଛନ୍ତି ଜଣେ ଲେଖାଏଁ ଗଣକ ।

ଗାଁ ଗହଳରେ ମାଟି ଚଟାଣ ଉପରେ ଅଙ୍ଗାରୁ ଖଡ଼ି ଗୋଟାଳି କାଢ଼ି ଗ୍ରହ ଚକ୍ର ଆଙ୍କି ଗଣନା କରିବାଠାରୁ ଆରମ୍ଭ କରି କେବଳ ଆଖିବୁଜି ଧ୍ୟାନସ୍ଥ ହୋଇ ଭବିଷ୍ୟତ ବାଣୀ କରିପାରିବା ପର୍ଯ୍ୟନ୍ତ ସବୁ କିସମର ଗଣକ ଏମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ । ଶୁଆପକ୍ଷୀମାନେ ମଧ୍ୟ ଗଣନା କରିପାରୁଛନ୍ତି । ପ୍ରକାରଭେଦରେ, ଫୁଟ୍‌ପାଥ୍ ଧାରରେ ବସି ଗଣନା କରିବାଠାରୁ ଆରମ୍ଭ କରି ଫାଇଭ୍‌ଷ୍ଟାର୍ ହୋଟେଲ୍‌ର ପ୍ରେସିଡେଣ୍ଟସିଆଲ୍ ସୁଇଟ୍ ପର୍ଯ୍ୟନ୍ତ ସର୍ବତ୍ର ଏମାନଙ୍କର ସାକ୍ଷାତ୍ ମିଳିପାରିବ । ତେବେ ତାନ୍ତ୍ରିକ ମହାରାଜା ନନ୍ଦୁରାମ କେବଳ ଭାରତର ନୁହେଁ, ଆନ୍ତର୍ଜାତିକ କ୍ଷେତ୍ରରେ ମଧ୍ୟ ବେଶ୍ ପ୍ରସିଦ୍ଧ । ବହୁ ରାଷ୍ଟ୍ରମୁଖ୍ୟଙ୍କ ସହିତ ତାଙ୍କର ଘନିଷ୍ଠ ସମ୍ବନ୍ଧ ଥିବା, ନନ୍ଦୁ ମହାରାଜାଙ୍କ ଭକ୍ତମଣ୍ଡଳୀ କହିଥାଆନ୍ତି । ସେ କୁଆଡ଼େ ହବନ୍ ଓ ପୂଜା ଇତ୍ୟାଦି କରି ଗ୍ରହରିଷ୍ଟ କେବଳ ଖଣ୍ଡନ କରନ୍ତି ନାହିଁ, ଭାଗ୍ୟଫଳକୁ ମଧ୍ୟ ବଦଳେଇ ଦେଇ ପାରନ୍ତି । ତାଙ୍କ ସହିତ ସାକ୍ଷାତ୍ ସହଜ ବ୍ୟାପାର ନୁହେଁ । ପ୍ରଥମେ ତାଙ୍କ ସେକ୍ରେଟାରୀଙ୍କ ସହିତ ସାକ୍ଷାତ୍ କରି ଆପଏଣ୍ଟମେଣ୍ଟ ନେବାପାଇଁ ପଡ଼ିବ । ତାନ୍ତ୍ରିକ

ମହାରାଜାଙ୍କ ସୁଇଟ୍ ପାଖକୁ ଲାଗି ଅନ୍ୟ ଏକ ସୁଇଟ୍‌ରେ ସେକ୍ରେଟାରୀଙ୍କ ଦପ୍ତର । ସେକ୍ରେଟାରୀଙ୍କ ଚେହେରା ଅନେକାଂଶରେ ସନ୍ନ୍ୟାସିନୀ ପରି, ଗୈରିକ ସିଲ୍‌କର ଦାମୀ ଶାଢ଼ି ଓ ଗଳାରେ ରୁଦ୍ରାକ୍ଷ ଇତ୍ୟାଦି । ନେତା ଜଣକ ତାଙ୍କ ପାଖକୁ ଆପଏଣ୍ଟମେଣ୍ଟ ପାଇଁ ଯିବାବେଳେ ଆଉ ଦୁଇଜଣ ପୂର୍ବରୁ ସେଠାରେ ଆପଏଣ୍ଟମେଣ୍ଟ ପାଇଁ ଅପେକ୍ଷା କରି ବସିଥିଲେ । ତାଙ୍କୁ ଦେଖିବା ମାତ୍ରେ ଭଦ୍ରମହିଳା କହିଲେ, "ଆସନ୍ତା ତିନିଦିନ ପାଇଁ ମହାରାଜାଙ୍କ ପ୍ରୋଗ୍ରାମ୍ ବଡ଼ ଟାଇଟ୍ । ଆପଣ ତିନିଦିନ ପରେ ବରଂ ଚେଷ୍ଟା କରିବେ । କେତେଜଣ ଭି.ଭି.ଆଇ.ପି.ଙ୍କ ପାଇଁ ପୂର୍ବରୁ ଆପଏଣ୍ଟମେଣ୍ଟ ଦିଆ ସରିଛି ।" ଏହାପରେ ନେତାଙ୍କର ଆଉ କିଛି କହିବାପାଇଁ ନଥିଲା । ସେ ସେଠାରେ ଆଉ ଅକାରଣରେ କାଳକ୍ଷେପଣ କରିବା ପରିବର୍ତ୍ତେ ଅନ୍ୟ ଜଣାଶୁଣା ତାନ୍ତ୍ରିକ ଓ ଭବିଷ୍ୟତ ବକ୍ତାମାନଙ୍କ ସନ୍ଧାନରେ ବ୍ୟସ୍ତବିବ୍ରତ ପାଦରେ ସେଠାରୁ ଚାଲିଆସିଲେ ।

କିନ୍ତୁ ସବୁଠି ଭିଡ଼ । ସବୁଠି ସାକ୍ଷାତ୍ ପାଇବାରେ ବିଳମ୍ବ... [illegible]ାଙ୍କର କିନ୍ତୁ ଅପେକ୍ଷା କରିବା ପାଇଁ ଧୈର୍ଯ୍ୟ ନଥିଲା । ଆଉ ଦୁଇଦିନ ପରେ ନୋମିନେସନ୍ ପେପର ଫାଇଲ୍‌ର ଶେଷ ତାରିଖ । ତାଙ୍କ ଆଖି ଆଗରେ ଥିଲା ତିନୋଟି ନିର୍ବାଚନ ମଣ୍ଡଳୀ । କେଉଁଠାରୁ ସେ ନୋମିନେସନ୍ ପେପର ଫାଇଲ୍ କଲେ ନିଶ୍ଚିତ ଭାବରେ ଜୟଯୁକ୍ତ ହେବେ ଓ ମନ୍ତ୍ରୀ ମଧ୍ୟ ହୋଇ ପାରିବେ, ତାହା ଜାଣିବାପାଇଁ ସେ ଅତ୍ୟନ୍ତ ଉଦ୍‌ବିଗ୍ନ ହୋଇ ପଡ଼ିଥିଲେ, ଅବଶେଷରେ ସବୁଠାରୁ ନିରାଶ ହୋଇ ସେ ତାଙ୍କ ମାରୁତି ଗାଡ଼ିରେ ତିନ୍‌ମୂର୍ତ୍ତି ଆଭିନ୍ୟୁ ରାସ୍ତାରେ ଯାଉଯାଉ ଦେଖିଲେ, ଫୁଟପାଥ କଡ଼ରେ ଗୋଟିଏ ଜାମୁଗଛ ମୂଳରେ ଜଣେ ଗଣକ ବସିଛନ୍ତି ପଞ୍ଜୁରିରେ ଗୋଟିଏ ଶୁଆପକ୍ଷୀ ଧରି । ତାଙ୍କ ଆଗରେ ଖଣ୍ଡେ ଚଟ ଉପରେ ସ୍ଲେଟ୍, ଖଡ଼ି ଓ କିଛି ପୁରୁଣା ବହିପତ୍ର ରହିଛି । ତାଙ୍କ ଆଗରେ କେତେଜଣ ନିଜର ଭାଗ୍ୟ, ଭବିଷ୍ୟତ ଜାଣିବାପାଇଁ ବସିଯାଇଛନ୍ତି । ମାତ୍ର ନେତାଜୀ ମାରୁତି କାର୍‌ରୁ ଅସ୍ତବ୍ୟସ୍ତ ପାଦରେ ଓହ୍ଲାଇ ପଡ଼ିବା ମାତ୍ରେ ସେ ଅପେକ୍ଷା କରି ବସିଥିବା ଲୋକମାନଙ୍କୁ ତଡ଼ିଦେଇ ନେତାଜୀଙ୍କୁ ଆମନ୍ତ୍ରଣ କରି କହିଲେ, "ପଧାରିଏ, ପଧାରିଏ ।" ଫୁଟପାଥ ଉପରେ ବସିବାପାଇଁ ନେତାଜୀଙ୍କୁ ସେ ଖଣ୍ଡେ ଚଟ ଆସନ ମଧ୍ୟ ଦେଲେ । ନେତାଜୀ କିଛି କହିବା ପୂର୍ବରୁ ଗଣକ ଦଣ୍ଡେ ଆଖି ବୁଜି କହିଲେ, "ବୃହସ୍ପତିରେ ବର୍ତ୍ତମାନ ଆପଣଙ୍କର କେତୁ ମହାଦଶା । ଆପଣଙ୍କ ନାମ ପୋପଟ ଲାଲ, ପିତା ସୁଖଲାଲ ।" ନେତାଜୀ ଚମତ୍କୃତ ହୋଇ ଉଠିଲେ । ଇଏ ତାଙ୍କର ନାମ ଓ ପିତାଙ୍କ ନାମ ଜାଣିଲେ କିପରି । କର୍ଣ୍ଣପିଶାଚୀ ସାଧନା ବଳରେ ଏମାନେ ଏଇପରି ଚମତ୍କୃତ ହେବାଭଳି କିଛି କଥା କହି ଲୋକମାନଙ୍କୁ ପ୍ରଭାବିତ କରିଥାଆନ୍ତି । କିନ୍ତୁ ଅଦୃଷ୍ଟକୁ ନୁହେଁ । ଅଦୃଷ୍ଟକୁ ଯିଏ ପ୍ରଭାବିତ କରିପାରେ ସିଏ ନିଜେ କାହିଁକି ବା ପଞ୍ଜୁରିରେ ଶୁଆପକ୍ଷୀ ଧରି ଫୁଟପାଥ କଡ଼ରେ ବସନ୍ତା ।

# ସୁପର କମ୍ପ୍ୟୁଟର

ଉଣେଇଶ ଅଶୀ ମଡ଼େଲ୍‌ର ନେତା ନେତା ଚେହେରା... ଦାମୀ ଟେରିକଟ୍ ପ୍ୟାଣ୍ଟ୍ ସାଙ୍ଗକୁ ସଫାରୀ... ବ୍ୟସ୍ତ ବିବ୍ରତ ଭାବରେ ଗୋଟିଏ ପଞ୍ଚତାରକା ହୋଟେଲ୍‌ର ପ୍ରେସିଡେଣ୍ଟସିଆଲ୍ ସୁଇଟ୍‌କୁ ଲିଫ୍ଟରେ ଆସିଥିଲେ, ତାନ୍ତ୍ରିକ ମହାରାଜ ନନ୍ଦୁରାମଙ୍କ ସହିତ ସାକ୍ଷାତ କରି ଆସନ୍ତା ନିର୍ବାଚନ ସଂପର୍କରେ ଭାଗ୍ୟ ଗଣନାପାଇଁ । ... ନିର୍ବାଚନ ଯେତିକି ପାଖେଇ ଆସୁଛି, ରାଜଧାନୀରେ କ୍ରମେ ସେତିକି ବଢୁଛି, ବାବା, ପୀର, ତାନ୍ତ୍ରିକ, ହସ୍ତରେଖା ଗଣନା ବିଶାରଦ, ଏପରିକି ନ୍ୟୁମୋରୋଲୋଜିଷ୍ଟ ବା ସଂଖ୍ୟାଗଣକମାନଙ୍କ ଭିଡ଼ । ଆସନ୍ତା ଏକବିଂଶ ଶତାବ୍ଦୀର ଏମାନେ ସୁପର କଂପ୍ୟୁଟର... ଜନ୍ମ ତାରିଖ, ରାଶି, ନକ୍ଷତ୍ର ଇତ୍ୟାଦି ଏଇ କଂପ୍ୟୁଟରମାନଙ୍କରେ ଫିଡ୍ କରିଦେଲେ ଫଳାଫଳ ସବୁ ଚଟାପଟ ବାହାରିପଡ଼େ । ଖବରକାଗଜର ପରିସଂଖ୍ୟାନ ଅନୁସାରେ ଭାରତରେ ପ୍ରତି ଦୁଇଶହ ଜଣରେ ଅଛନ୍ତି ଜଣେ ଲେଖାଏଁ ଗଣକ ।

ଗାଁ ଗହଳରେ ମାଟି ଚଟାଣ ଉପରେ ଅଙ୍ଗାରୁ ଖଡ଼ି ଗୋଟାଳି କାଢ଼ି ଗ୍ରହ ଚକ୍ର ଆଙ୍କି ଗଣନା କରିବାଠାରୁ ଆରମ୍ଭ କରି କେବଳ ଆଖିବୁଜି ଧ୍ୟାନସ୍ଥ ହୋଇ ଭବିଷ୍ୟତ ବାଣୀ କରିପାରିବା ପର୍ଯ୍ୟନ୍ତ ସବୁ କିସମର ଗଣକ ଏମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ । ଶୁଆପକ୍ଷୀମାନେ ମଧ୍ୟ ଗଣନା କରିପାରୁଛନ୍ତି । ପ୍ରକାରଭେଦରେ, ଫୁଟ୍‌ପାଥ୍ ଧାରରେ ବସି ଗଣନା କରିବାଠାରୁ ଆରମ୍ଭ କରି ଫାଇଭ୍‌ଷ୍ଟାର୍ ହୋଟେଲ୍‌ର ପ୍ରେସିଡେଣ୍ଟସିଆଲ୍ ସୁଇଟ୍ ପର୍ଯ୍ୟନ୍ତ ସର୍ବତ୍ର ଏମାନଙ୍କର ସାକ୍ଷାତ୍ ମିଳିପାରିବ । ତେବେ ତାନ୍ତ୍ରିକ ମହାରାଜା ନନ୍ଦୁରାମ କେବଳ ଭାରତର ନୁହେଁ, ଆନ୍ତର୍ଜାତିକ କ୍ଷେତ୍ରରେ ମଧ୍ୟ ବେଶ୍ ପ୍ରସିଦ୍ଧ । ବହୁ ରାଷ୍ଟ୍ରମୁଖ୍ୟଙ୍କ ସହିତ ତାଙ୍କର ଘନିଷ୍ଠ ସମ୍ବନ୍ଧ ଥିବା, ନନ୍ଦୁ ମହାରାଜାଙ୍କ ଭକ୍ତମଣ୍ଡଳୀ କହିଥାଆନ୍ତି । ସେ କୁଆଡ଼େ ହବନ୍ ଓ ପୂଜା ଇତ୍ୟାଦି କରି ଗ୍ରହରିଷ୍ଟ କେବଳ ଖଣ୍ଡନ କରନ୍ତି ନାହିଁ, ଭାଗ୍ୟଫଳକୁ ମଧ୍ୟ ବଦଳେଇ ଦେଇ ପାରନ୍ତି । ତାଙ୍କ ସହିତ ସାକ୍ଷାତ୍ ସହଜ ବ୍ୟାପାର ନୁହେଁ । ପ୍ରଥମେ ତାଙ୍କ ସେକ୍ରେଟାରୀଙ୍କ ସହିତ ସାକ୍ଷାତ୍ କରି ଆପଏଣ୍ଟମେଣ୍ଟ ନେବାପାଇଁ ପଡ଼ିବ । ତାନ୍ତ୍ରିକ

ମହାରାଜାଙ୍କ ସୁଇଟ୍ ପାଖକୁ ଲାଗି ଅନ୍ୟ ଏକ ସୁଇଟ୍‌ରେ ସେକ୍ରେଟାରୀଙ୍କ ଦପ୍ତର । ସେକ୍ରେଟାରୀଙ୍କ ଚେହେରା ଅନେକାଂଶରେ ସନ୍ନ୍ୟାସିନୀ ପରି, ଗୈରିକ ସିଲ୍‌କର ଦାମୀ ଶାଢ଼ି ଓ ଗଳାରେ ରୁଦ୍ରାକ୍ଷ ଇତ୍ୟାଦି । ନେତା ଜଣକ ତାଙ୍କ ପାଖକୁ ଆପଏଣ୍ଟମେଣ୍ଟ ପାଇଁ ଯିବାବେଳେ ଆଉ ଦୁଇଜଣ ପୂର୍ବରୁ ସେଠାରେ ଆପଏଣ୍ଟମେଣ୍ଟ ପାଇଁ ଅପେକ୍ଷା କରି ବସିଥିଲେ । ତାଙ୍କୁ ଦେଖିବା ମାତ୍ରେ ଭଦ୍ରମହିଳା କହିଲେ, "ଆସନ୍ତା ତିନିଦିନ ପାଇଁ ମହାରାଜାଙ୍କ ପ୍ରୋଗ୍ରାମ୍ ବଡ଼ ଟାଇଟ୍ । ଆପଣ ତିନିଦିନ ପରେ ବରଂ ଚେଷ୍ଟା କରିବେ । କେତେଜଣ ଭି.ଭି.ଆପି.ପି.ଙ୍କ ପାଇଁ ପୂର୍ବରୁ ଆପଏଣ୍ଟମେଣ୍ଟ ଦିଆ ସରିଛି ।" ଏହାପରେ ନେତାଙ୍କର ଆଉ କିଛି କହିବାପାଇଁ ନଥିଲା । ସେ ସେଠାରେ ଆଉ ଅକାରଣରେ କାଳକ୍ଷେପଣ କରିବା ପରିବର୍ତ୍ତେ ଅନ୍ୟ ଜଣାଶୁଣା ତାନ୍ତ୍ରିକ ଓ ଭବିଷ୍ୟତ ବକ୍ତାମାନଙ୍କ ସନ୍ଧାନରେ ବ୍ୟସ୍ତବିବ୍ରତ ପାଦରେ ସେଠାରୁ ଚାଲିଆସିଲେ ।

କିନ୍ତୁ ସବୁଠି ଭିଡ଼ । ସବୁଠି ସାକ୍ଷାତ୍ ପାଇବାରେ ବିଳମ୍ବ... ୮ ାଙ୍କର କିନ୍ତୁ ଅପେକ୍ଷା କରିବା ପାଇଁ ଧୈର୍ଯ୍ୟ ନଥିଲା । ଆଉ ଦୁଇଦିନ ପରେ ନୋମିନେସନ୍ ପେପର ଫାଇଲ୍‌ର ଶେଷ ତାରିଖ । ତାଙ୍କ ଆଖି ଆଗରେ ଥିଲା ତିନୋଟି ନିର୍ବାଚନ ମଣ୍ଡଳୀ । କେଉଁଠାରୁ ସେ ନୋମିନେସନ୍ ପେପର ଫାଇଲ୍ କଲେ ନିଶ୍ଚିତ ଭାବରେ ଜୟଯୁକ୍ତ ହେବେ ଓ ମନ୍ତ୍ରୀ ମଧ୍ୟ ହୋଇ ପାରିବେ, ତାହା ଜାଣିବାପାଇଁ ସେ ଅତ୍ୟନ୍ତ ଉଦ୍‌ବିଗ୍ନ ହୋଇ ପଡ଼ିଥିଲେ, ଅବଶେଷରେ ସବୁଠାରୁ ନିରାଶ ହୋଇ ସେ ତାଙ୍କ ମାରୁତି ଗାଡ଼ିରେ ତିନ୍‌ମୂର୍ତ୍ତି ଆଭିନ୍ୟୁ ରାସ୍ତାରେ ଯାଉଯାଉ ଦେଖିଲେ, ଫୁଟପାଥ କଡ଼ରେ ଗୋଟିଏ ଜାମୁଗଛ ମୂଳରେ ଜଣେ ଗଣକ ବସିଛନ୍ତି ପଞ୍ଜୁରିରେ ଗୋଟିଏ ଶୁଆପକ୍ଷୀ ଧରି । ତାଙ୍କ ଆଗରେ ଖଣ୍ଡେ ଚଟ ଉପରେ  ସ୍ଲେଟ୍, ଖଡ଼ି ଓ କିଛି ପୁରୁଣା ବହିପତ୍ର ରହିଛି । ତାଙ୍କ ଆଗରେ କେତେଜଣ ନିଜର ଭାଗ୍ୟ, ଭବିଷ୍ୟତ ଜାଣିବାପାଇଁ ବସିଯାଇଛନ୍ତି । ମାତ୍ର ନେତାଜୀ ମାରୁତି କାର୍‌ରୁ ଅସ୍ତବ୍ୟସ୍ତ ପାଦରେ ଓହ୍ଲାଇ ପଡ଼ିବା ମାତ୍ରେ ସେ ଅପେକ୍ଷା କରି ବସିଥିବା ଲୋକମାନଙ୍କୁ ତଡ଼ିଦେଇ ନେତାଜୀଙ୍କୁ ଆମନ୍ତ୍ରଣ କରି କହିଲେ, "ପଧାରିଏ, ପଧାରିଏ !"  ଫୁଟପାଥ ଉପରେ ବସିବାପାଇଁ ନେତାଜୀଙ୍କୁ ସେ ଖଣ୍ଡେ ଚଟ ଆସନ ମଧ୍ୟ ଦେଲେ । ନେତାଜୀ କିଛି କହିବା ପୂର୍ବରୁ ଗଣକ ଦଣ୍ଡେ ଆଖି ବୁଜି କହିଲେ, "ବୃହସ୍ପତିରେ ବର୍ତ୍ତମାନ ଆପଣଙ୍କର କେତୁ ମହାଦଶା । ଆପଣଙ୍କ ନାମ ପୋପଟ ଲାଲ, ପିତା ସୁଖଲାଲ !" ନେତାଜୀ ଚମତ୍କୃତ ହୋଇ ଉଠିଲେ । ଇଏ ତାଙ୍କର ନାମ ଓ ପିତାଙ୍କ ନାମ ଜାଣିଲେ କିପରି । କର୍ଣ୍ଣପିଶାଚୀ ସାଧନା ବଳରେ ଏମାନେ ଏଇପରି ଚମତ୍କୃତ ହେବାଭଳି କିଛି କଥା କହି ଲୋକମାନଙ୍କୁ ପ୍ରଭାବିତ କରିଥାଆନ୍ତି । କିନ୍ତୁ ଅଦୃଷ୍ଟକୁ ନୁହେଁ । ଅଦୃଷ୍ଟକୁ ଯିଏ ପ୍ରଭାବିତ କରିପାରେ ସିଏ ନିଜେ କାହିଁକି ବା ପଞ୍ଜୁରିରେ ଶୁଆପକ୍ଷୀ ଧରି ଫୁଟପାଥ କଡ଼ରେ ବସନ୍ତା ।

ଭଦ୍ରଲୋକ କିଛି କହିବା ପୂର୍ବରୁ ସେ ତାଙ୍କର ଦୁଇ ହାତର କିଛି ପାପୁଲି ଦେଖି କିଛି ଗଣନା କଲେ । ତା'ପରେ କହିଲେ, "ଆପଣଙ୍କର ଖୁବ୍ ଭଲ ସମୟ ଆସୁଛି । ତେବେ କେତୁର ଅଶୁଭ ଦୃଷ୍ଟି ଥିବାରୁ ତାକୁ ବଦଳାଇବାକୁ ପଡ଼ିବ । ବର୍ତ୍ତମାନ ଆପଣ କ'ଣ ପଚାରିବାକୁ ଚାହୁଁଛନ୍ତି ପଚାରନ୍ତୁ ।" ନେତାଜୀ ଇତି ମଧ୍ୟରେ ଗଣକଙ୍କର କରାମତିରେ ସଂପୂର୍ଣ୍ଣ ଅଭିଭୂତ ହୋଇପଡ଼ିଥିଲେ । ସେ ତାଙ୍କର ପ୍ରଶ୍ନ ପଚାରିଲେ । ଏଇ ତିନିଗୋଟି ନିର୍ବାଚନ ମଣ୍ଡଳୀରୁ କେଉଁଠାରୁ ଠିଆହେଲେ ତାଙ୍କର ବିଜୟ ନିଶ୍ଚିତ ଓ ସେ ମନ୍ତ୍ରୀ ହୋଇପାରିବେ ।" ଗଣକ ଏହାପରେ ତିନିଖଣ୍ଡ କାଗଜରେ ତିନିଗୋଟି ନିର୍ବାଚନମଣ୍ଡଳୀର ନାମ ଲେଖି ପଞ୍ଜୁରି ଆଗରେ ରଖିଦେଲେ ଓ ନେତାଜୀଙ୍କୁ ବୁଝାଇ ଦେଲେ, ଏହାର ଉତ୍ତର ଦେଇପାରିବ କେବଳ ଏଇ ଶୁଆ । କିନ୍ତୁ ତା' ପୂର୍ବରୁ ଶୁଆକୁ ଦର୍ଶନୀ ଦେବାକୁ ପଡ଼ିବ, ପାଞ୍ଚ ହଜାର । ନେତାଜୀ ଫୋଲିଓ ବ୍ୟାଗ୍ ଭିତରୁ ପାଞ୍ଚ ହଜାର ଟଙ୍କାର ବିଡ଼ାଏ ନୋଟ୍ କାଢ଼ି ପଞ୍ଜୁରି ଆଗରେ ରଖିଦେଲେ ଓ ତା'ପରେ ପଞ୍ଜୁରିର ଦ୍ୱାରଟି ଫିଟାଇଦେଲେ । ଶୁଆଟି କିଚିରିମିଚିରି ହୋଇ ନୋଟ୍ ବିଡ଼ାଟାକୁ ପଞ୍ଜୁରି ଭିତରକୁ ଟାଣିନେଲା । ତା'ପରେ ଦୁଇଖଣ୍ଡ କାଗଜ ଥଣ୍ଟରେ ଛିଣ୍ଡାଇ ଅବଶିଷ୍ଟ କାଗଜ ଖଣ୍ଡେ ସେହିପରି ଅକ୍ଷତ ଛାଡ଼ିଦେଲା ।

ଗଣକ ସେ କାଗଜଖଣ୍ଡକ ନେତାଜୀଙ୍କ ଆଗକୁ ବଢ଼ାଇଦେଇ କହିଲେ, ଏଇ ନିର୍ବାଚମଣ୍ଡଳୀରୁ ଆପଣ ନିଶ୍ଚିତ ଜିତିବେ ଓ ମନ୍ତ୍ରୀ ହେବେ । କିନ୍ତୁ ଶୁଆ କହୁଛି ଆପଣଙ୍କୁ ନିଗମବୋଧ ଘାଟରେ ଗୋଟିଏ ହବନ କରିବାକୁ ପଡ଼ିବ । ଖର୍ଚ୍ଚ ବେଶି ଲାଗିବ ନାହିଁ । ପାଞ୍ଚ ସାତ ହଜାର ଟଙ୍କା ଭିତରେ ଚଳିଯିବ । ଭାବୀ ମନ୍ତ୍ରିତ୍ୱ ଆଶାରେ ବିହ୍ୱଳ ନେତାଜୀ କହିଲେ, "ଠିକ୍ ଅଛି, ମୁଁ ପରେ ଆସିବି ।" ତା'ପରେ ଗଣକ ଗୋଟିଏ ଝୁଲା ଭିତରୁ ପଥର ବସା ଗୋଟିଏ ମୁଦି କାଢ଼ି ନେତାଜୀଙ୍କ ଆଡ଼େ ବଢ଼ାଇ ଦେଇ କହିଲେ, "ଏ ମୁଦି ପାଇଁ ଆପଣଙ୍କୁ ଅବଶ୍ୟ ତିନି ହଜାର ଟଙ୍କା ଦେବାକୁ ପଡ଼ିବ । କିନ୍ତୁ ଅନ୍ୟ କେହି ହୋଇଥିଲେ ମୁଁ ପାଞ୍ଚ ହଜାର ଟଙ୍କା ନେଇଥାଆନ୍ତି ।" ନେତାଜୀ ଆଉ ତିନିହଜାର ଟଙ୍କାର ନୋଟ୍ ବିଡ଼ା ଫୋଲିଓ ବ୍ୟାଗରୁ କାଢ଼ି ଗଣକ ହାତକୁ ବଢ଼ାଇ ଦେଲେ ।

କିନ୍ତୁ ନିର୍ବାଚନରେ ନେତାଜୀ ଟିକେଟ ତ ପାଇଲେ ନାହିଁ, ଜିତିବା ଆଶାରେ ସ୍ୱାଧୀନ ପ୍ରାର୍ଥୀ ହୋଇ ଶେଷକୁ ଅମାନତ ସୁଦ୍ଧା ହରାଇଲେ । ଆଜି ଏକବିଂଶ ଶତାବ୍ଦୀ ଆଡ଼େ ଯାଉଯାଉ ମଣିଷ ଯେପରି ଆତ୍ମପ୍ରତ୍ୟୟ ହୀନ ହୋଇପଡ଼ିଛି, ଏଇ ଗଣକ ଓ ଭବିଷ୍ୟତ ବକ୍ତାମାନଙ୍କର ସଂଖ୍ୟାବୃଦ୍ଧି ହେଉଛି ତାହାର ସଂକେତ ।

*୨୬/୧୧/୮୯*

# ପ୍ରତୀକ୍ଷା

ଶୀତଋତୁ ଆରମ୍ଭ ହେବା ମାତ୍ରେ ସୁମନ୍ତ ନଭେମ୍ବର ଶେଷ ସପ୍ତାହକୁ ବରାବର ଅପେକ୍ଷା କରିଥାନ୍ତି । ନଭେମ୍ବରର ଶେଷ ସପ୍ତାହରେ ତାଙ୍କ ଷ୍ଟଡ଼ୀର ପୂର୍ବପଟ ପ୍ରଶସ୍ତ ଝରକା ଖୋଲି ବହଳ ପରଦା ଘୁଞ୍ଚାଇ ଦେବାମାତ୍ରେ ପକ୍ଷୀକୁଳଙ୍କ କାକଳି ମଧ୍ୟରେ, କମଳାଲେମ୍ବୁ ରଙ୍ଗର ନାରଙ୍ଗୀ ଖରା ଷ୍ଟଡ଼ି ଭିତରକୁ ପଶିଆସେ ନବଜୀବନର ବନ୍ୟା ପରି ଆଜି ବହୁଦିନ ପରେ ନଭେମ୍ବରର ଶେଷ ସପ୍ତାହରେ ଦିନେ ସେ ତାଙ୍କର ଷ୍ଟଡ଼ୀ ଭିତରକୁ ଆସି ସେଇ ପୁରୁଣା ସ୍ଥାନରେ ବସିଲେ ଓ ବ୍ରଜକୁ ଝରକା ଖୋଲି ବହଳ ପରଦା ସବୁ ଘୁଞ୍ଚାଇ ଦେବାପାଇଁ କହିଲେ । ପକ୍ଷୀକୁଳଙ୍କର କାକଳି ବହୁଦିନରୁ ନିରବ ହୋଇଛି । କାଉଟାଏ କେବଳ କେଉଁଠି କା କା ହେଉଛି । କିନ୍ତୁ ସକାଳର ସେଇ ନାରଙ୍ଗୀ ଖରା ଗଲା କୁଆଡ଼େ ? କ୍ଳାନ୍ତ ଦେହକୁ ଖରାର ଉତ୍ତାପ ଠିକ୍ ଲାଗୁଛି । ମାତ୍ର ଖରାର ଚେହେରା ନିଷ୍ପ୍ରଭ ଆଖିରେ ଠିକ୍ ଧରାପଡୁ ନାହିଁ । ଘର ଭିତରେ ଯେପରି ଅଦିନ କୁହୁଡ଼ି ମାଡ଼ିଯାଇଛି । ସୁମନ୍ତ ଟା' ପିଉପିଉ ବ୍ରଜକୁ ପଚାରିଲେ, "ବାହାରେ କୁହୁଡ଼ି ମାଡ଼ିଚି କିରେ ? ଇଏ ତ କୁହୁଡ଼ିର ଦିନ ନୁହେଁ !" ବ୍ରଜ ଉତ୍ତର ଦେଲା, "ନା ତ, କୁହୁଡ଼ି କାଇଁ ? ଖରା ଟାଇଁ ଟାଇଁ କରୁଚି !" ସୁମନ୍ତ ଦୀର୍ଘଶ୍ୱାସ ପକାଇ ମନକୁ ମନ କହିଲେ, ଇଏ ତା' ହେଲେ ତାଙ୍କ ଆଖିର ଦୋଷ । ତଥାପି ସକାଳର ସୂର୍ଯ୍ୟ ଉତ୍ତାପ ପାଇଁ ସେ ମନେ ମନେ ଈଶ୍ୱରଙ୍କୁ ଧନ୍ୟବାଦ ଦେଲେ ଓ ସେଇ ଉତ୍ତାପ ମଧ୍ୟରେ ଯେପରି ନାରଙ୍ଗୀ ଖରାର ଚେହେରା ଦେଖି ପାରିଲେ । ସୁମନ୍ତ କେତେଦିନ ଧରି ଷ୍ଟଡ଼ୀ ଭିତରକୁ ଆସି ନଥିଲେ । ସେ ଚାରିଆଡ଼େ ଆଖି ବୁଲାଇ ତାଙ୍କ ଲେଖା ଟେବୁଲ୍‌ଟିକୁ ଦେଖିବାପାଇଁ ଚେଷ୍ଟା କରୁଥିଲେ; ମାତ୍ର ଟୀକ୍ କାଠର ସେ ଟେବୁଲ୍‌ଟା କେଉଁଠି ଆଖିରେ ପଡୁନଥିଲା । ବୋଧହୁଏ ଅନ୍ୟ କାହାର ପ୍ରୟୋଜନରେ ସେ ଟେବୁଲ୍‌ଟାକୁ କେହି ନେଇଗଲାଣି । ଆଉ ସେ ଟେବୁଲ୍‌ରେ ତାଙ୍କର କ'ଣ ବା ପ୍ରୟୋଜନ ! କାଚ ଆଲମାରୀମାନଙ୍କରେ ବହି ସବୁ ଝାପ୍‌ସା ଝାପ୍‌ସା ଦେଖାଯାଉଛନ୍ତି । ମାତ୍ର ବହି ଥାକମାନଙ୍କରେ ଅନେକ ସ୍ଥାନ ଶୂନ୍ୟ ଦେଖା ଯାଉଛି । ବୋଧହୁଏ ବହିସବୁ ମଧ୍ୟ କେହି ପଢ଼ିବାପାଇଁ ନେଇ ଗଲେଣି । ସୁମନ୍ତ ମନକୁ ମନ

ଭାବିଲେ, ମେଳାସବୁ ଦିନେ ଏଇପରି ଜମନ୍ତି ପୁଣି ଏଇପରି ଭାଙ୍ଗନ୍ତି । ମେଳା ଜମିବା ଓ ଭାଙ୍ଗିବା, କେଉଁଟା ସତ୍ୟ ଏ ପ୍ରଶ୍ନର ଉତ୍ତର ସୁମନ୍ତ ଅବଶ୍ୟ ଖୋଜି ପାଇନାହାନ୍ତି । ବୋଧହୁଏ ଦୁଇଟା ଯାକ ସତ୍ୟ । କିନ୍ତୁ ମେଳା ଜମିବା ବେଳେ ଥାଏ ଗୋଟାଏ ଉତ୍ତେଜନା ଓ ମେଳା ଭାଙ୍ଗିବା ମଧ୍ୟରେ ଥାଏ ଅବସାଦ ଓ ବିଷାଦର  ଗୋଟିଏ ରାଗିଣୀ। ଟିପୟ ଉପରେ ଗୋଟିଏ ଫୁଲଦାନୀରେ କେତେଟା ମଉଳା କେନା ଫୁଲ ତଥାପି ରହିଥିଲା । ସେ ମଉଳା ଫୁଲ ସବୁ କାହିଁକି ବଦଳାଇ ଦିଆଯାଇନାହିଁ ବୋଲି ଆଜି ସୁମନ୍ତ ଚିତ୍କାର କଲେ ନାହିଁ । ସୁମନ୍ତଙ୍କର ମନେହେଲା, ଏ ଋତୁ ମଧ୍ୟ ବଦଳିବାର ଋତୁ । ବସନ୍ତ ଆସୁଛି ନା ଗଲାଣି ବୋଲି ସୁମନ୍ତ ମନେମନେ ଧନ୍ଦି ହେବାକୁ ଲାଗିଲେ । ଏଇ ସମୟରେ ଅଧାମେଲା ଦରଜା ଜୋର୍‌ରେ ଠେଲି ଦେଇ ବ୍ୟସ୍ତ ବିବ୍ରତ ଭାବରେ ଜଣେ ମୋଟା ବାଙ୍ଗର ଲୋକ ଭିତରକୁ ପଶି ଆସିଲେ । ଅନ୍ୟ ଦିନ ହୋଇଥିଲେ, ସୁମନ୍ତ ରୁକ୍ଷ କଣ୍ଠରେ ବାହାରି ଯିବାପାଇଁ ତାଙ୍କୁ କହିଥାଆନ୍ତେ । ସକାଳର ଶାନ୍ତ ମୁହୂର୍ତ୍ତଗୁଡ଼ିକରେ ଅଚିହ୍ନା, ଅଜଣା ଲୋକମାନଙ୍କ ସହିତ ବାଜେ କଥା ଗପିବାପାଇଁ ତାଙ୍କୁ ଭଲ ଲାଗେ ନାହିଁ । କିନ୍ତୁ ଯେତେବେଳେ କିଛି ଘଟୁ ନାହିଁ, କେହି ଆସୁ ନାହାନ୍ତି, ସେତେବେଳେ ଏଇ ଅଚିହ୍ନା, ଅଜଣା ଲୋକଟି ସହିତ ପଦେ ଦୁଇପଦ କଥାବାର୍ତ୍ତା ହୋଇଥିଲେ ବରଂ କିଛି ଆରାମ ମିଳିଥାଆନ୍ତା । ଲୋକଟା ବୋଧହୁଏ ତ୍ରିପଣ୍ଡ କଳା ବୋଲି ତାଙ୍କର ମନେହେଲା । ଖଣ୍ଡେ କଙ୍କାରଂଗର ଉଲେନ୍ ପ୍ୟାଣ୍ଟ ଉପରେ ସେ ପିନ୍ଧିଥିଲା ଖଣ୍ଡେ କଳା କୋଟ୍ । ସେ ବିକୃତ ଓଡ଼ିଆ ଉଚ୍ଚାରଣରେ ପଚାରିଲା, "ଆପଣ ଅବିନାଶ ଚୌଧୁରୀ ତ !" ସୁମନ୍ତ ବିରକ୍ତି ମିଶା କଣ୍ଠରେ ଉତ୍ତର ଦେଲେ, "ଆପଣ କାହା ପାଖକୁ ଆସୁଛନ୍ତି, ନଜାଣି, ନବୁଝି ହଠାତ୍ ଘରଭିତରକୁ ପଶିଆସୁଛନ୍ତି ଯେ ! ଆଉ ଅବିନାଶ ଚୌଧୁରୀଙ୍କୁ ଯଦି ଖୋଜୁଥାଆନ୍ତି, ତ'ହେଲେ ସେପରି କେହି ଏ ପଡ଼ାରେ ନାହାନ୍ତି । ସେ ଲୋକଟି ବେପରୁଆ ଭାବରେ 'ଅଚ୍ଛା' ବୋଲି କହି, ସେଠାରୁ ଚାଲିଗଲା । ଆଉ ଗଲାବେଳେ କହିଗଲା, "ମୁଁ ବରଂ ଆଉଦିନେ ଆପଣଙ୍କ ପାଖକୁ ଆସିବି ।" ସେ ଚାଲିଯିବା ପରେ ବ୍ରଜକୁ ଡାକି ସୁମନ୍ତ କହିଲେ, "ଆରେ ସେ ଭଦ୍ରଲୋକଙ୍କୁ ଡାକ ଡାକ ! ଲୋକଟି ଇନ୍‌ଟ୍ରେଷ୍ଟିଂ ମନେ ହେଉଛି ।" ତା' ସହିତ ବରଂ କିଛି କଥାବାର୍ତ୍ତା ହେଲେ ଚଳନ୍ତା । ମାତ୍ର ବ୍ରଜ ଫାଟକ ପାଖରୁ ଫେରି ଆସି କହିଲା, "ନା ସେ କୁଆଡ଼େ ଚାଲି ଗଲେଣି ।" ଲୋକଟି ଚାଲିଗଲା ସତ; ମାତ୍ର ତା'ପାଇଁ ସୁମନ୍ତଙ୍କ ମନରେ ଛାଡ଼ି ଦେଇଗଲା, ଗୋଟାଏ ପ୍ରତୀକ୍ଷା । ସେଇ ଅଚିହ୍ନା ଲୋକଟି ଭିତରେ ସୁମନ୍ତ ଯେପରି ହଠାତ୍ ପାଇପାରିଥିଲେ ଏଇ ଅଚ୍ଛିଣ୍ଡା ବୋର୍‌ଡମ୍‌ରୁ ମୁକ୍ତିର ଇସାରା ।

*୦୩/୧୨/୮୯*

# ଯଦୁବଂଶ

ସେଦିନ ଆସନ୍ନ ସନ୍ଧ୍ୟାର ଛାୟା ମଧ୍ୟରେ ମୁଁ ହୀରାଧରପୁର ଗାଁର,ମୋର ପୁରାତନ କର୍ମୀ ଧନେଶ୍ୱର ରାଉତଙ୍କୁ ହଠାତ୍ ଦେଖି ବିସ୍ମିତ ହୋଇଗଲି । ୧୯୮୦ ମସିହାଠାରୁ ତାଙ୍କ ସହିତ ମୋର ସାକ୍ଷାତ କିମ୍ବା ସଂପର୍କ ନଥିଲା । ଅତୀତର ବହୁ ନିର୍ବାଚନରେ, ସେ ଅଞ୍ଚଳରୁ ମୁଁ ପ୍ରାର୍ଥୀ ହୋଇଛି ବୋଲି ଜାଣିବା ମାତ୍ରେ, ସେ କାମ ଆରମ୍ଭ କରିଦେଇ ଥାଆନ୍ତି । ପୁରୁଣା ଦିନର କର୍ମୀ । ସେମାନଙ୍କ ଦୃଷ୍ଟିରେ ନିର୍ବାଚନ ଥିଲା ଏକ ଆଦର୍ଶ ପାଇଁ ଲଢ଼ାଇ- କୌଣସି ପ୍ରାର୍ଥୀ ପାଇଁ ନୁହେଁ । ପ୍ରାର୍ଥୀ କେବଳ ନିମିତ୍ତ ମାତ୍ର । ପିଲାଦିନେ ସେ ଥିଲେ ବାନର ସେନା । ୧୯୪୨ ମସିହା ଆନ୍ଦୋଳନରେ ସେ ଦୁଇବର୍ଷ କାରାବରଣ କରିଥିଲେ । ସେଇ ପୁରୁଣା ଦିନର କର୍ମୀ ପରି ବେଶଭୂଷା । ଆଣ୍ଠୁ ତଳକୁ ଅଳ୍ପ ଲମ୍ବିଥିବା ଖଦଡ଼ ଧୋତି, ଦେହରେ ଖଣ୍ଡେ ଫତେଇ ଆଉ ଚାଦର । କାନ୍ଧରେ ସେଇ ସନାତନୀ ଝୁଲାମୁଣି । ବୟସରେ ସେ ମୋଠାରୁ ଥିଲେ ଦୁଇବର୍ଷ ବଡ଼ । ସେଥିପାଇଁ ମୁଁ ତାଙ୍କୁ ଡାକୁଥିଲି ଧନୁଭାଇ । ଆଜି ତାଙ୍କୁ ଏତେ ବର୍ଷର ବ୍ୟବଧାନ ପରେ ଦେଖି ମୁଁ ବିସ୍ମିତ କଣ୍ଠରେ ପଚାରିଲି, "ଇଏ ନିର୍ବାଚନର ସରଗରମ ବେଳ । ତମେ ଏତେବେଳେ ଇଆଡ଼େ କଟକରେ ବୁଲୁଛ ଯେ !" ସିଏ ବାରଣ୍ଡା ଚଟାଣ ଉପରେ ବସି ଗୋଟାଏ ଦୀର୍ଘଶ୍ୱାସ ପକାଇ କହିଲେ, "ଆମେ ସବୁ ଏବେ ଅଚଳ ହୋଇଗଲୁଣି । ଏବେ ଆଉ ଆମ ବେଳର କର୍ମୀ କେହି ନାହାନ୍ତି । ସମସ୍ତେ ଯୁବନେତା । ସେମାନଙ୍କ ପୋଷାକ ପରିଧାନ ପ୍ୟାଣ୍ଟ ସାର୍ଟ, ପାଦରେ ଯୋତା । ମୋ ପୁଅ ଗଗନ ପାଠ ପଢ଼ି ଏବେ ଛୋଟିଆ ମୋଟିଆ କଣ୍ଟ୍ରାକ୍ଟରୀ କରେ । ସେ ମଧ୍ୟ ହୋଇଛି ଗୋଟିଏ ଦଳର କର୍ମୀ । ମୁଁ ତାଙ୍କୁ ବୁଝାଏ, ଆରେ ଗଗନ ତୁ ପ୍ୟାଣ୍ଟ ସାର୍ଟ ପିନ୍ଧି ଲୋକଙ୍କ ପାଖକୁ ଗଲେ, କ'ଣ ସେମାନଙ୍କ ପାଖରେ ପହଞ୍ଚି ପାରିବୁ ? ସେମାନେ ଭାବିବେ, ତୁ ନିଆରା ମଣିଷ, ସେମାନଙ୍କ ଭିତରର ମଣିଷ ନୁହଁ । ଆଉ ତୁ ସେମାନଙ୍କୁ ନିଜର ନୋଇଲେ ପ୍ରାର୍ଥୀର କରିପାରିବୁ କିପରି ? ଗାଁ ଗହଳରେ ଖାଲି ଆମ ଗଗନ ନୁହେଁ, ସବୁ କର୍ମୀ ତା'ରି ପରି । କାହାର ବୁଲେଟ୍ ମଟର

ସାଇକେଲ୍ ତ କାହାର ଲୁନା । ଆମ ପରି ଦିନକୁ ପାଞ୍ଚକୋଶ ସେମାନେ ଚାଲୁନାହାନ୍ତି । କଉଠୁ ଏତେ ଟଙ୍କା ପାଉଛନ୍ତି କେଜାଣି ?

ଆମ ଗଗନ କହେ, ତୁମେ ସବୁ ମାନ୍ଧାତାକାଳିଆ ହେଇଗଲଣି । ତୁମମାନଙ୍କ କଥା ଆଉ ଚଳିବ ନାହିଁ । ଆମେ ସବୁ ଏଣିକି ଆଉ କର୍ମୀ ନୁହେଁ । ଆମେ ସବୁ ନେତା । ମୁଁ କହିଲି, "ଯୁଗ ବଦଳୁଛି, ତେଣୁ ତୁମ ବାନର ସେନା ଦିନର କର୍ମୀମାନେ ଏବେ ଆଉ ଆସିବେ କୁଆଡୁ ? ଗଗନ ଯାହା କହୁଛି ଠିକ୍ । ତୁମେ ଏଣିକି ଘରେ ବସି ମାଳା ଗଡ଼େଇବା ବରଂ ଭଲ । ତୁମମାନଙ୍କର ଦିନ ଗଲାଣି ।"

ଧନୁଭାଇ କହିଲେ, "ଆଚ୍ଛା କହିଲ, ତୁମେ ନେତା ହେଲ ତ ହେଲ, ପ୍ୟାଣ୍ଟ ପକେଟରେ ଛୁରୀ ଧରି ବୁଲୁଛ କାହିଁକି ? ଆମ ଆଡ଼େ ବାବୁ, କଥା କଥାକେ ଛୁରୀଭୁସା ! ଆଉ ଗାଁ ଗାଁରେ ମଦ ଦୋକାନ । ମଦ ପିଇ ସବୁବେଳେ ଚୁର୍ । କଥାକଥାକେ ଗୁଣ୍ଡାମି । ବିପକ୍ଷ ଦଳ ଆସୁଛନ୍ତି ସଭା କରିବାପାଇଁ । ସେମାନେ ତାଙ୍କର ସଭା କରିବେ, ଚାଲିଯିବେ । ଲୋକେ ଯାହାକୁ ଖୁସି ତାକୁ ଭୋଟ ଦେବେ । ତମେ ତାଙ୍କ ସଭା ଭଣ୍ଡୁର କରିବାପାଇଁ ଢେଲା ଫିଙ୍ଗୁଛ କାହିଁକି ? ବିପକ୍ଷ ଲୋକଙ୍କ ସାଙ୍ଗରେ ମାଡ଼ଗୋଳ ଲଗାଉଛ କାହିଁକି ? ଇଏ କୋଉ ନିର୍ବାଚନ ।"

ମୁଁ ଉତ୍ତର ଦେଲି, "ଇଏ ମଧ୍ୟ ଏ ଯୁଗର ରାଜନୀତି, ଇଏ ମାଂସପେଶୀର ଲଢ଼ାଇ । ଆଦର୍ଶର ଲଢ଼ାଇ ନୁହେଁ । ଯୁଗ ବଦଳୁଛି । ତା' ସହିତ ସବୁ ବଦଳୁଛି । କିନ୍ତୁ ତମେ ହଠାତ୍ କଟକ ଆସିଛ କାହିଁକି ? ଧନୁଭାଇ ଗୋଟାଏ ଦୀର୍ଘଶ୍ୱାସ ପକାଇ ଉତ୍ତର ଦେଲେ, "ଆମ ଗାଁରେ ଦୁଇଦଳ ଏଇ ଯୁବନେତାଙ୍କ ମଧ୍ୟରେ ଦଙ୍ଗା ହଙ୍ଗାମା ହେଲା । ଗଗନ ପେଟରେ କିଏ ଗୋଟିଏ ଛୁରୀ ଭୁସି ଦେଲା । ପ୍ରାଥମିକ ସ୍ୱାସ୍ଥ୍ୟକେନ୍ଦ୍ରକୁ ତାକୁ ନେଇଥିଲି । ସେମାନେ କହିଲେ, ବଡ଼ ଡାକ୍ତରଖାନାକୁ ନେଇଯାଅ । ଆଜିକୁ ସାତ ଦିନ ହେଲା, ତାକୁ ନେଇ ବଡ଼ ଡାକ୍ତରଖାନା ଆସିଥିଲି । ଏଠି ତାକୁ ଦୁଇବୋତଲ ରକ୍ତ ଦିଆଗଲା । ଔଷଧ ଇଂଜେକ୍ସନ୍ କିଣାରେ ଗାଁରୁ ସାଙ୍ଗରେ ଯାହା ପଇସାପତ୍ର ଆଣିଥିଲି ସବୁ ସରିଗଲା । ଆଉରି ଔଷଧ ଦରକାର । ମୋତେ ଟଙ୍କା ଶହେଟା ଅଛି ତ ଦେଇଥାଅ । ମୁଁ ଆର ମାସରେ ସଂଗ୍ରାମୀ ପେନ୍ସନ୍ ପାଇଲେ ତୁମକୁ ଫେରାଇ ଦେବି ।" ମୁଁ ତାଙ୍କ ପାଇଁ କପେ ଚା' ଆଉ ଟଙ୍କା ଶହେଟା ଭିତରୁ ମଗାଇଲି । ମୁଁ କହିଲି, "ଆରେ ଗଗନ ଭଲ ହୋଇଯାଉ, ଟଙ୍କା ଫେରାଇବ ।"

ଧନୁଭାଇ ଚା' ପିଉପିଉ ପଚାରିଲେ, "ସତରେ ବାବୁ ଏସବୁ କ'ଣ ?" ମୁଁ ଉତ୍ତର ଦେଲି, "ଏ ଯଦୁବଂଶ ।"

୧୦/୧୨/୮୯

# ମାନପତ୍ର

ସୂର୍ଯ୍ୟ ପଶ୍ଚିମ ଦିଗ୍‌ବଳୟକୁ ଢଳି ପଡ଼ିଲେଣି, ଲାଲିମା ବିଛି । ଗୋଧୂଳି ମଧ୍ୟରେ ସୂର୍ଯ୍ୟାସ୍ତ ପାଇଁ ଆଉ ବିଳମ୍ବ ନାହିଁ । ନଈ ଘାଟ ଆଡ଼େ ଯାଇଥିବା ଅଙ୍କା ବଙ୍କା ନିଛାଟିଆ ଧୂଳିଆ ରାସ୍ତାରେ ବୁଢ଼ାଟିଏ ପିଠିରେ ଗୋଟିଏ ବେଶ୍ ବଡ଼ ଗଣ୍ଠିଲି ବାନ୍ଧି ନଈ ଘାଟରେ ଶେଷ ଡଙ୍ଗା ଧରିବାପାଇଁ ଦ୍ରୁତ ପାଦରେ ଚାଲିଥିଲା । ଆଉ ମନେମନେ ଅବସୋସ କରୁଥିଲା, କାହିଁକି ବା ସେ ଏଠାରେ ଏତେ ବିଳମ୍ବ କଲା ବୋଲି ।

ଧନଧାନ୍ୟଭରା ବିଚିତ୍ର ଏ ରାଜ୍ୟ । ଆଉ ତା'ଠାରୁ ଆଉରି ବିଚିତ୍ର ଏ ରାଜ୍ୟ ରାଜାର ଖିଆଲ । ସୂର୍ଯ୍ୟୋଦୟ ହେବାମାତ୍ରେ ପ୍ରତିଦିନ ରାଜ୍ୟକୁ ଆସନ୍ତି ବାହାର ରାଜ୍ୟମାନଙ୍କର ଅସୁମାରି ମଣିଷ । କେହି ବା ଶସ୍ତାରେ ଆଉ କେହି ବା ଦୁର୍ମୂଲ୍ୟ ଦେଇ ଏଠାରେ ସେମାନେ ଅନେକ କିଛି ପଣ୍ୟ ସଂଗ୍ରହ କରନ୍ତି, ପରେ ସେମାନଙ୍କର ନିଜ ନିଜ ରାଜ୍ୟରେ ଲାଭରେ ବିକ୍ରି କରିବାପାଇଁ । କିନ୍ତୁ ଖିଆଲି ରାଜାର ବିଚିତ୍ର ଆଦେଶ- ସୂର୍ଯ୍ୟାସ୍ତ ପରେ ବାହାର ରାଜାର କେହି ବେପାରୀ ରାଜ୍ୟ ଛାଡ଼ି ଯାଇ ନଥିଲେ, ରାଜାଙ୍କ କଟୁଆଳମାନେ ତାକୁ ସିଧା ଧରି ନେଇ ଶୂଳିରେ ଚଢ଼ାଇ ଦେବେ । ସେଥିପାଇଁ ସେ ବୁଢ଼ାଟି ପିଠିରେ ପଣ୍ୟର ଗଣ୍ଠିଲି ବାନ୍ଧି ଦ୍ରୁତ ପାଦରେ ଛୁଟିଥିଲା, ନଈଘାଟରେ ଶେଷ ଡଙ୍ଗା ଧରିବାପାଇଁ । ତାକୁ ଲାଗୁଥିଲା ସେ ଯେପରି, ସେଦିନ ଥିଲା ଶେଷ ପଝାରି ।

ବୁଢ଼ାଟି ରାସ୍ତାରେ ଆସୁଆସୁ ଦେଖିଲା, ରାସ୍ତା କଡ଼ରେ କିଏ ଫିଙ୍ଗି ଦେଇ ଯାଇଥିଲା କ'ଣ ଗୋଟାଏ ଜିନିଷ । ଦିନାନ୍ତର ଶେଷ ଆଲୋକରେ ସେ ଜିନିଷଟା ଚକ୍‌ଚକ୍ କରୁଥିଲା । ବୁଢ଼ା ବେପାରୀ ଲୋଭ ସମ୍ବରଣ କରିନପାରି, ରାସ୍ତା କଡୁ ସେଇ ଜିନିଷଟିକୁ ଆଗ୍ରହରେ ଉଠାଇ ନେଲା । ଜିନିଷଟି ଥିଲା ଖାଣ୍ଟି ଚାନ୍ଦି ରୂପାରେ ତିଆରି, ବୋଧହୁଏ କୌଣସି ଗୋଟାଏ ମାନପତ୍ର । ସେଇ ମାନପତ୍ର ଦେହରେ ସୁନାରେ ମଧ୍ୟ ଖୋଳା ହୋଇଥିଲା, ଅନେକ ଫୁଲ, ଲତା ଓ ପତ୍ର । ବୋଧହୁଏ କୌଣସି ରାଜ ଦରବାରରେ ଏଇ ମାନପତ୍ରଟି କାହାକୁ କେବେ ମିଳିଥିଲା । କିନ୍ତୁ ସେ କାହିଁକି କେଜାଣି ଏହାକୁ ଫିଙ୍ଗି

ଦେଇଗଲା, ନିହାତି ଅନାବଶ୍ୟକ ଓ ଅବାନ୍ତର ଗୋଟିଏ ଜଞ୍ଜାଳ ପରି । ଏଥିରେ ବୋଧହୁଏ ତା'ର କୌଣସି ପ୍ରୟୋଜନ ଥିଲା ବୋଲି ତା'ର ମନେ ହେଉ ନଥିଲା । ଏପରି ମଧ୍ୟ ହୋଇପାରେ, ଯେଉଁମାନଙ୍କପାଇଁ ସେ ଏହାକୁ ଛାଡ଼ି ଯାଇଥିଲା, ସେମାନେ ତାହାକୁ ରାସ୍ତାକଡ଼ରେ ଫିଙ୍ଗି ଦେଇଥିଲେ ଅଦରକାରୀ ଆବର୍ଜନା ପରି ।

ପ୍ରକୃତରେ ଏ ମାନପତ୍ରମାନଙ୍କର କ'ଣ ମୂଲ୍ୟ ଥାଏ ? ମୁହୂର୍ତ୍ତକର ଆତ୍ମସନ୍ତୋଷ ବ୍ୟତୀତ । ମଲା ମଣିଷମାନଙ୍କର ଅନ୍ତତଃ ଏଥିରେ କୌଣସି ପ୍ରୟୋଜନ ନଥାଏ । ସେମାନଙ୍କ ପାଇଁ ଏସବୁ ଗୋଟାଏ ଦୁର୍ବାର ବୋଝ । ଆଉ ଅନେକ ଉତ୍ତରାଧିକାରୀ ଭାବିଥାଆନ୍ତି, ଏସବୁ ସାଇତି ରଖି ଲାଭ ବା କଅଣ ? ବୁଢ଼ାଟି ସେଇ ରୂପା ମାନପତ୍ର ଉପରୁ ଧୂଳିପୋଛି ମନେମନେ ହସିଲା ଆଉ ଭାବିଲା, ଏହାକୁ ତରଳାଇ ଦେଇଥିଲେ, ସେମାନେ ଏଥିରୁ ବେଶ୍ କିଛି ରୂପା ଓ ସୁନା ପାଇପାରି ଥାଆନ୍ତେ । ସେଇ ରୂପା ଓ ସୁନାକୁ ବିକ୍ରିକରି ଦେଇଥିଲେ ପଇସା ମନ୍ଦ ମିଳି ନଥାନ୍ତା । ବୁଢ଼ା ବେପାରୀଟି ସେଇ ମାନପତ୍ରଟିକୁ କାଖତଳେ ଚାପିଧରି ନଦୀଘାଟ ଆଡ଼େ ଦୌଡ଼ିଲା ।

ନଦୀଘାଟ ନିର୍ଜନ । ସୂର୍ଯ୍ୟ ଅସ୍ତଯିବା ଉପରେ । ନଦୀ ଘାଟରେ ଆଉ କେହି ପଝାରି ମଧ୍ୟ ନାହାନ୍ତି । ସମସ୍ତେ ପାର ହୋଇଗଲେଣି । ମାଝିଟି ଅପେକ୍ଷା କରି ରହିଛି, ଦିନାନ୍ତର ଶେଷ ପଝାରିପାଇଁ । ବୁଢ଼ା ବେପାରୀଟି ତରତର ପାଦରେ ଡଙ୍ଗା ଉପରକୁ ଉଠି ଆସୁଥିଲା । କିନ୍ତୁ ମାଝି ତାକୁ ବାଧାଦେଇ କହିଲା, "ସାଙ୍ଗରେ ଜିନିଷ ଧରି କେହି ଏ ଡଙ୍ଗାରେ ପାରି ହୁଅନ୍ତି ନାହିଁ । ସାଙ୍ଗରେ ଯାହା କିଛି ଆଣିଛ ସବୁ ସେଇ ଘାଟରେ ଫିଙ୍ଗି ଦିଅ ।" ବୁଢ଼ା ପଚାରିଲା, "କାହିଁକି ?" ମାଝି ଉତ୍ତର ଦେଲା, "ସେ କାହିଁକିର ଉତ୍ତର ମୁଁ ଦେଇ ପାରିବି ନାହିଁ । କିନ୍ତୁ ଏ ରାଜାଙ୍କର ତାହା ହିଁ ହୁକୁମ ।" ଅଗତ୍ୟା ଶୂଳୀରୁ ପ୍ରାଣ ବଞ୍ଚାଇବା ପାଇଁ ବୁଢ଼ା ବେପାରୀ ପିଠିରୁ ଗଣ୍ଠିଲିଟି ଖୋଲି ନଦୀ ଘାଟରେ ରଖିଦେଲା, ଆଉ ମାଝିକୁ ମିନତି କରି ରୂପାର ସେଇ ମାନପତ୍ରଟିକୁ ଅନ୍ତତଃ ସାଙ୍ଗରେ ନେଇଯିବାପାଇଁ କହିଲା । ମାଝି ରୁକ୍ଷ କଣ୍ଠରେ ଉତ୍ତର ଦେଲା, "ତମ ରାଜ୍ୟରେ ସେ ମାନପତ୍ରର କ'ଣ ବା ମୂଲ୍ୟ ଅଛି ? ତାକୁ ମଧ୍ୟ ଫିଙ୍ଗିଦିଅ ସେଇଠି ।" ବୁଢ଼ା ବେପାରୀ ଗୋଟାଏ ଦୀର୍ଘଶ୍ୱାସ ପକାଇ ଶୂଳି ଭୟରେ ସେଇ ମାନପତ୍ରଟିକୁ ସେଇଠାରେ ଫିଙ୍ଗିଦେଇଗଲା ।

ଡଙ୍ଗାରେ ଉଠିବା ପରେ ବୁଢ଼ା ବେପାରିଟି ଘାଟ ଆଡ଼େ ଚାହିଁ ଦେଖିଲା, କାଉଟାଏ କେଉଁଠାରୁ ଉଡ଼ିଆସି ସେଇ ମାନପତ୍ରଟିକୁ ଖଣ୍ଡେ ଶୁଖିଲା ହାଡ଼ ବା ସେହିପରି କିଛି ଭାବି ତା' ଉପରେ ଲମ୍ଫ ଦେଇ ଥଣ୍ଟ ପିଟୁଛି ।

୧୭/୧୨/୮୯

# ଅପରାଧୀ କିଏ ?

ମୁହଁସଂଜ ବେଳ । ମାଛି ଅନ୍ଧାରର ତରଳ ପ୍ରଲେପ କ୍ରମେ ଚାରିଆଡ଼େ ବୁଲି ଆସୁଛି । ଇଲେକ୍‌ଟ୍ରିକ୍ ଆଲୁଅର ଭୋଲ୍‌ଟେଜ୍ କମ୍ ଥିବାରୁ ସବୁ ଝାପ୍‌ସା ଝାପ୍‌ସା ଦେଖାଯାଉଛି । ଜଣେ ଯୁବକ ପରି ଦିଶୁଥିବା ଗୋଟିଏ ଛାୟାମୂର୍ତ୍ତି ଏଇପରି ସମୟରେ ବାରଣ୍ଡା ପାହାଚର ଗୋଟିଏ କଡ଼ରେ ଆସି ଠିଆହେଲା । ସେ ଯେପରି ସ୍ୱେଚ୍ଛାକୃତ ଭାବରେ ନିଜକୁ ଅଧା ଅନ୍ଧାର ଓ ଅଧା ଆଲୁଅ ଭିତରେ ରଖିବାପାଇଁ ଚେଷ୍ଟା କରୁଥିଲା । ବାରଣ୍ଡା ଉପରକୁ ଆସିବାପାଇଁ ସେ ଯେପରି ଥିଲା ସଂକୁଚିତ । ମୁଁ ପଚାରିଲି, "କିଏ ? କାହାକୁ ଖୋଜୁଛ ?" ସେ ଉତ୍ତର ଦେଲା, "ମୁଁ ଶିଶିର ଦାସ । ବହୁ ବର୍ଷ ପରେ ଆପଣ ମୋତେ ଚିହ୍ନିପାରିବେ କି ନାହିଁ ସନ୍ଦେହ । ମୁଁ ଆମ କଲେଜ ୟୁନିଅନ୍‌ର ପ୍ରେସିଡେଣ୍ଟ ଥିବାବେଳେ ଆମର ଉଦ୍‌ଘାଟନ ଉତ୍ସବକୁ ଆପଣଙ୍କୁ ସେଥର ଚିଫ୍ ଗେଷ୍ଟ କରି ନେଇଥିଲି ।"

ବହୁ ବର୍ଷ ତଳର ସେ ଘଟଣା ମୋର ମନେ ପଡ଼ିଗଲା । ସେ ଦିନ ମୁଁ ଯଥାଯଥ ୟୁନିଅନ୍ ଉଦ୍‌ଘାଟନ ଉତ୍ସବରେ ଯୋଗଦେବାପାଇଁ ଯାଇଥିଲି । ମାତ୍ର ଶିଶିର ଦାସର ପ୍ରତିପକ୍ଷମାନେ ରାଜନୈତିକ କାରଣରୁ ଉଦ୍‌ଘାଟନ ଉତ୍ସବକୁ ଭଣ୍ଡୁର କରି ମୋତେ ଅପମାନିତ କରିବାପାଇଁ ଗୋଟିଏ ସୁଚିନ୍ତିତ ଷଡ଼ଯନ୍ତ୍ର କରିଥିଲେ । ସଭାମଞ୍ଚ ଉପରେ ଥାଇ ମୁଁ ଅବଶ୍ୟ କିଛି ଜାଣି ପାରୁ ନଥିଲି । ମାତ୍ର ବାହାରେ ସେତେବେଳେ ଶିଶିର ଦାସ ଗୋଷ୍ଠୀ ଓ ତାର ପ୍ରତିପକ୍ଷ ଗୋଷ୍ଠୀଙ୍କ ମଧ୍ୟରେ ଚାଲିଥିଲା ଖଣ୍ଡଯୁଦ୍ଧ । ରାସ୍ତା କଡ଼ର ଗୋଟାଏ ମାରୁଆଡ଼ି ବ୍ୟବସାୟୀ, ଶିଶିର ଦାସର ପ୍ରତିପକ୍ଷ ଗୋଷ୍ଠୀକୁ ଆର୍ଥିକ ସାହାଯ୍ୟ ଦେଇଥିବାରୁ ଶିଶିର ଦାସର ଗୋଷ୍ଠୀ ତା' ଦୋକାନରେ ନିଆଁ ଲଗାଇ ଦେଇଥିଲେ; ଇତ୍ୟାଦି । ମାତ୍ର ବାହାରେ ଏସବୁ ଦକ୍ଷଯଜ୍ଞ ଭଙ୍ଗ କାଣ୍ଡ ଚାଲିଥିବାବେଳେ ସଭାରେ ତାହାର କୌଣସି ପ୍ରତିଫଳନ ନଥିଲା । କିନ୍ତୁ ପରେ କଲେଜର ପ୍ରିନ୍‌ସପାଲଙ୍କଠାରୁ ମୁଁ ଏ ଖବର ପାଇଥିଲି ।

ଏହାପରେ ଶିଶିର ଦାସ ବିରୁଦ୍ଧରେ ପୋଲିସ୍ ପକ୍ଷରୁ ମକଦ୍ଦମା ରୁଜୁ କରାଯାଇଥିଲା । ତାହା ମଧ୍ୟ ମୁଁ ଜାଣି ନଥିଲି; କିମ୍ବା ଶିଶିର ସେଥିପାଇଁ ମୋ'ଠାରୁ କୌଣସି ସାହାଯ୍ୟ ଚାହିଁ ନଥିଲା । ନିଜେ ଲଢ଼ି ସେ ଅବଶ୍ୟ ମକଦ୍ଦମାରୁ ବେକସୁର୍ ଖଲାସ୍ ହୋଇଥିଲା ।

ଆଜି ଅନେକ ବର୍ଷ ପରେ ସେଇ ଶିଶିର ଦାସକୁ ଦେଖି, ମୁଁ ଖୁବ୍ ଆଦରରେ ବାରଣ୍ଡା ଉପରକୁ ଡାକିଲି ଓ ତା' ପାଇଁ କଫି ମଗାଇଲି । "ଏବେ କ'ଣ କରୁଛ ?" ପଚାରିଲି । ତା' କଥାରୁ ବୁଝିଲି, ସେ ଯେଉଁଥିରେ ହାତ ଦେଉଛି, ସେସବୁ ଫେଲ୍‌ମାରୁଛି । ତାଳଚେରରେ ସେ ଗୋଟାଏ ଛୋଟିଆ ଇଣ୍ଡଷ୍ଟ୍ରୀ ଆରମ୍ଭ କରିଥିଲା । ମାତ୍ର ଇଣ୍ଡଷ୍ଟ୍ରୀ କ୍ଷତିରେ ଚାଲିଲା । ସେ ତାକୁ ପାର୍ଟନର ହାତରେ ଛାଡ଼ି ଦେଇ ଏବେ ଜୀବିକା ଅନ୍ୱେଷଣ କରୁଛି । ଅର୍ଥାତ୍ ସେ ବର୍ତ୍ତମାନ କିଛି କରୁନାହିଁ । କଫି କପ୍‌ରୁ କେତେ ଢୋକ ପିଇ ସେ କହିଲା, "ମୋର ଜଣେ ବନ୍ଧୁ ମୋତେ ମନାଲୀରେ ଜଣେ ଭଦ୍ରଲୋକଙ୍କ ପାଖକୁ ଖଣ୍ଡେ ଚିଠି ଦେଇ ପଠାଇ ଦେଲେ ଓ କହିଲେ ସେ ମୋ'ପାଇଁ ନିଶ୍ଚୟ କିଛି ଗୋଟିଏ ସୁବ୍ୟବସ୍ଥା କରିବେ ।

ହିମାଚଳ ପ୍ରଦେଶର ମନାଲୀ, ନେପାଳ ସୀମାଠାରୁ ଅଳ୍ପ କେତେ କିଲୋମିଟର ଛଡ଼ାରେ । ଗୋଟିଏ ପାହାଡ଼ି ନଈ ଅତିକ୍ରମ କରିଗଲେ, ଆରମ୍ଭ ହୋଇଯାଏ ନେପାଳର ସୀମା । ମୁଁ ସେ ଭଦ୍ରଲୋକଙ୍କୁ ସାଙ୍ଗରେ ଆଣିଥିବା ଚିଠିଟି ଦେଲି । ସେ ମୋତେ ଗୋଟାଏ ସପ୍ତାହ ବେଶ୍ ଆରାମରେ ତାଙ୍କ ପାଖରେ ରଖିଲେ । ସେଇ ସମୟ ମଧ୍ୟରେ ମୁଁ ଲକ୍ଷ୍ୟ କଲି, ନେପାଳରୁ ଚରସ ଆଣି ସେ ଚୋରାରେ ବିକ୍ରି କରନ୍ତି । କିନ୍ତୁ ସେ ମନାଲୀ ଛାଡ଼ି ଦେଉଛନ୍ତି । ମୋତେ ସେଇ ଚରସ ବ୍ୟବସାୟରେ ଲଗାଇବାପାଇଁ ପ୍ରସ୍ତାବ ଦେଲେ ଓ କହିଲେ ଏଥିରେ ପ୍ରଚୁର ଟଙ୍କା ଅଛି । ମୋର ସେତେବେଳେ ପ୍ରୟୋଜନ ଥିଲା ଉପାର୍ଜନ । ମୁଁ ଚରସ ପେଡ୍‌ଲିଂରେ ଲାଗି ପଡ଼ିଲି । କେତେ ଦିନ ପରେ ପୋଲିସ୍ ମୋ ପିଛା ଧରିବାରୁ ମୁଁ ପଳାଇ ଆସିଲି ଦିଲ୍ଲୀ: ଦିଲ୍ଲୀରୁ ବନାରସ । ବନାରସରେ ସ୍ଥିର କଲି, ଏ ବ୍ୟବସାୟ ମୁଁ ଛାଡ଼ିଦେବି । ଜଣେ ଅପରାଧୀ ପରି ବଞ୍ଚି ରହିବା ମୋର ଅଭିମାନକୁ ବାଧିଲା । ତା'ପରେ ସେଇଦିନୁ ମୁଁ ସେ ଧନ୍ଦା ଛାଡ଼ି, ବର୍ତ୍ତମାନ ଘରକୁ ଫେରି ଆସିଛି ।

... "କିନ୍ତୁ ଏଠି କରୁଛ କ'ଣ ?"

ଶିଶିର ଉତ୍ତର ଦେଲା, "ମୁଁ ଏଠି ଚିତ୍ର ଆଙ୍କି ଜୀବିକା ଉପାର୍ଜନ କରିବା ପାଇଁ ଚାହୁଁଛି । ମୁଁ ଅବଶ୍ୟ କୌଣସି ଆର୍ଟ ସ୍କୁଲ୍ କିମ୍ବା କଲେଜରେ ପଢ଼ିନାହିଁ । ତେବେ ମୁଁ ଭଲ ଚିତ୍ର ଆଙ୍କି ପାରୁଛି । କେତେଟା ବହିର କଭର୍ ଡିଜାଇନ୍ ମୁଁ ଆଙ୍କି ସାରିଲିଣି ।

ଏହା ଛଡ଼ା ସାଇନ୍ ବୋର୍ଡ଼ ସବୁ ମଧ୍ୟ ତିଆରି କରୁଛି । ମୁଁ ବର୍ତ୍ତମାନ ନିଜକୁ ସୁଧାରିବାପାଇଁ ଚେଷ୍ଟା କରୁଛି । ଟଙ୍କା ମୋ ପକ୍ଷରେ ଆଉ ସେତେ ବଡ଼ କଥା ହୋଇ ରହିନାହିଁ ।"

ଶିଶିରକୁ ଉତ୍ସାହ ଦେବା ଉଦ୍ଦେଶ୍ୟରେ ମୁଁ କହିଲି, "ତମର ଏଇ ଶୁଭ ସଂକଳ୍ପ ଶୁଣି ମୁଁ ପ୍ରକୃତରେ ଭାରି ଆନନ୍ଦିତ ହେଲି । ଭଗବାନ ତୁମକୁ ନିଶ୍ଚୟ ଆଶୀର୍ବାଦ କରିବେ । ମୁଁ ତୁମକୁ କିପରି ସାହାଯ୍ୟ କରିପାରିବି କୁହ ।" ଶିଶିର କହିଲା, "ଆପଣଙ୍କର କୌଣସି ବହିର ଗୋଟାଏ କଭର ଡିଜାଇନ୍ ପାଇଁ ମୋତେ ଯଦି ଅର୍ଡ଼ର ଦିଅନ୍ତେ, ତା'ହେଲେ ମୋର ବ୍ୟବସାୟଟା କିଛି ବଢ଼ନ୍ତା ।" ମୁଁ କହିଲି, "ତୁମେ ତୁମର କୌଣସି ଗୋଟିଏ ଭଲ କଭର ଡିଜାଇନ୍ ଆଣି ଦେଖାଅ । ତା'ପରେ ମୁଁ ତୁମପାଇଁ ଅନେକ କଭର ଡିଜାଇନ୍ ବ୍ୟବସ୍ଥା କରିଦେବି ।"

ଦୁଇ ଦିନ ପରେ ଶିଶିର ମୋ ପାଖକୁ ତା'ଦ୍ୱାରା ଅଙ୍କିତ 'ବିପ୍ଳବିନୀ' ଶୀର୍ଷକ ଏକ କବିତା ବହିର ଡିଜାଇନ୍ ଧରି ଆସି ପହଞ୍ଚିଲା । ଡିଜାଇନ୍‌ର ଚିତ୍ର ହେଉଛି, ଜଣେ ନାରୀ ନିଆଁହୁଲାଟିଏ ଜଣେ ପୁରୁଷ ହାତରେ ଧରାଇ ଦେଉଛି । ଚିତ୍ରଟି ନିତାନ୍ତ ସ୍ଥୂଳ । ରେଖା ସବୁ ଅତି କର୍କଶ ଓ ଭାରି । ସେଥିରେ ଲାବଣ୍ୟର ଲେଶ ମାତ୍ର ନାହିଁ । ଚିତ୍ରରେ ପରିମିତି ବୋଧ ସୁଦ୍ଧା ନାହିଁ । ବିପ୍ଳବିନୀଙ୍କ ହାତଟା ଦିଶୁଛି, ଗୋଦର ହୋଇଥିବା ପରି । ମୁଁ ଡିଜାଇନ୍‌ଟି ଶିଶିର ହାତକୁ ଫେରାଇ ଦେଇ କହିଲି, ଏହା ଅପେକ୍ଷା ଅନ୍ୟ କୌଣସି ଡିଜାଇନ୍ ଥିଲେ ମୋ ପାଖକୁ ଆଣିବ । ଏହା ପରେ ବହୁ ଦିନ ପର୍ଯ୍ୟନ୍ତ ଶିଶିର ସହିତ ମୋର ଆଉ ସାକ୍ଷାତ ହୋଇ ନଥିଲା । ଶିଶିର ଯେ କେବେ ଏ ଲାଇନ୍‌ରେ ଠିଆ ହୋଇ ପାରିବ, ସେଥିରେ ମଧ୍ୟ ମୋର ଘୋର ସନ୍ଦେହ ସୃଷ୍ଟି ହେଲା ।

ଏହାର ପ୍ରାୟ ଦୁଇବର୍ଷ ପରେ ଜଣେ ପୋଲିସ୍ ଅଫିସର୍ ମୋ' ପାଖକୁ ଆସି ଶିଶିର ଦାସର ଖଣ୍ଡେ ପାସ୍‌ପୋର୍ଟ ସାଇଜ୍ ଫଟୋ ଦେଖାଇ ପଚାରିଲେ, "ଏହାର ନାମ ଶିଶିର ଦାସ, ଆପଣ ଏହାକୁ ଜାଣନ୍ତି କି ?" ମୁଁ ହଠାତ୍ ରୁକ୍ଷ କଣ୍ଠରେ ପଚାରିଲି, "ଆପଣ କାହିଁକି ମୋତେ ଏପରି ପ୍ରଶ୍ନ ପଚାରୁଛନ୍ତି ?" ପୋଲିସ୍ ଅଫିସର ଉତ୍ତର ଦେଲେ, ପୁରୀର ଗୋଟାଏ ଲଜିଂରେ ଏହାଠାରୁ କିଛି ବ୍ରାଉନ୍ ସୁଗାର ଓ ଚରସ ଜବତ କରାଯାଇଛି । କିନ୍ତୁ ସେ ଡ୍ରଗ୍ ବ୍ୟବସାୟରେ ନାହିଁ ବୋଲି କହୁଛି ଓ ଆପଣ ତା' ସଂପର୍କରେ ସାର୍ଟିଫିକେଟ୍ ଦେଇ ପାରିବେ  ବୋଲି ସେ ଆମକୁ କହିଛି । ଯେଉଁ ସୁଟ୍‌କେଶ୍‌ରେ ଏ ସବୁ ବ୍ରାଉନ୍ ସୁଗାର ଓ ଚରସ ଥିଲା, ସୁଟ୍‌କେଶ୍‌ଟି ତା'ର ନୁହେଁ ବୋଲି ମଧ୍ୟ ସେ ସଫେଇ ଦେଉଛି । ସେ ଆପଣଙ୍କ ନାମ ତା'ର ସଫେଇରେ ରେଫ୍‌ରୀ ରୂପେ ଦେଇଥିବାରୁ ମୁଁ ଆସିଛି, ଭେରିଫିକେସନ୍ ପାଇଁ ।" ମୁହୂର୍ତ୍ତକ ମଧ୍ୟରେ ମୋ ଆଗରେ ସୃଷ୍ଟି ହୋଇଗଲା, ଏକ ଧର୍ମ ସଂକଟ । ଡ୍ରଗ୍ ପେଡ଼୍‌ଲିଂରେ ଅଭିଯୁକ୍ତ ଜଣେ ଆସାମୀ ସହିତ ସଂପୃକ୍ତ ହେବାପାଇଁ

ମୋର ସଂଭ୍ରାନ୍ତବୋଧ ମତେ ବାଧା ଦେଉଥିଲା । ଅଥଚ ଦିନେ ମୋର ମାନ ରକ୍ଷାପାଇଁ ସେ ଯେଉଁସବୁ ସଙ୍କଟ ଭିତର ଦେଇ ଗତି କରିଥିଲା, ତା' ମଧ୍ୟ ମୋ ମନ ଭିତରେ ଚେଇଁ ଉଠୁଥିଲା ।

ମୁଁ ପୋଲିସ୍ ଅଫିସରଙ୍କୁ କହିଲି, "ଏ ଶିଶିର ଦାସ କିଏ, ମୁଁ ଜାଣେ ନାହିଁ, ଇଏ ତା'ର ଗୋଟିଏ ଫିସାଦୀ ।" କିନ୍ତୁ ପୋଲିସ୍ ଅଫିସର ଚାଲିଯିବା ପରେ ମୋତେ ନିଜକୁ ଜଣେ ଡ୍ରଗ୍ ପେଡ୍ଲରଠାରୁ ବଳି ଅପରାଧୀ ପରି ଲାଗିଲା ।

*୨୪/୧୨/୮୯*

# ଏକ ନବବର୍ଷର ସ୍ମୃତି

ନୂଆଦିଲ୍ଲୀର କନଟ୍‌ପ୍ଲେସ୍ । ନବବର୍ଷ ଉତ୍ସବର ପୂର୍ବ ରାତିରୁ ଏଠାରେ ଆରମ୍ଭ ହୋଇଯାଇଥିଲା ପ୍ରମତ୍ତ ନରନାରୀମାନଙ୍କର ଆନନ୍ଦୋତ୍ସବ । କନ୍‌ଟପ୍ଲେସ୍‌ର ସୌଖୀନ ରେସ୍ତୋରାଁମାନଙ୍କରେ ତିଳଧାରଣ ପାଇଁ ସ୍ଥାନ ନଥିଲା । ସେଥିପାଇଁ ଶେଷ ଡିସେମ୍ବରର ପ୍ରବଳ ଶୀତ ସତ୍ତ୍ୱେ ବହୁ ନରନାରୀ ରାସ୍ତାରେ ପ୍ରମତ୍ତ ହୋଇ ସେଇ ଆନନ୍ଦୋତ୍ସବ ମଧ୍ୟରେ ଦଳ ଦଳ ହୋଇ ବୁଲୁଥିଲେ । ରାସ୍ତା ସବୁ ଉଜ୍ଜ୍ୱଳ ଆଲୋକରେ ଆଲୋକିତ । କେହି କେହି ମାଉଥ୍ ଅର୍ଗାନ୍ ବଜାଇ, ମୁଣ୍ଡରେ ରଙ୍ଗିନ କାଗଜ ତିଆରି ଟୋପି ପିନ୍ଧି ନାଚୁଥିଲେ । ଆଉ କେହି କେହି ବା କାରଲ୍ ଗାଉଥିଲେ । ବାର୍‌ମାନଙ୍କରୁ ହ୍ୱିସ୍କି, ରମ୍ ବୋତଲ ସବୁ ଚାହୁଁ ଚାହୁଁ ସଫା ହୋଇଯାଉଥିଲା । ଆଇସ୍‌କ୍ରିମ୍ ବିକାଳିମାନଙ୍କ ପାଖରେ ମଧ୍ୟ ଭିଡ଼ କମ୍ ନଥିଲା । ସମସ୍ତେ ଯେପରି ବିଦାୟୀ ବର୍ଷର ପାନପାତ୍ରରୁ ଶେଷ ବିନ୍ଦୁଟିକୁ ନିଗାଡ଼ି ଶୋଷି ନେବାପାଇଁ ବ୍ୟାକୁଳ ହୋଇ ଉଠିଥିଲେ । ନବବର୍ଷର ସେଇ ଶୂନ୍ୟପାତ୍ର ଅମୃତ ନା ଗରଳ କେଉଁଥିରେ ପୂର୍ଣ୍ଣ ହେବ, କିଏ ଜାଣେ !

ନବବର୍ଷ ଖ୍ରୀଷ୍ଟିଆନ୍‌ମାନଙ୍କର ପର୍ବ ବୋଲି ଯେଉଁ ଗୋଟାଏ ଧାରଣା ରହିଛି, ତାହା ସତ୍ୟ ନୁହେଁ । ପୃଥିବୀରେ ଯୀଶୁଖ୍ରୀଷ୍ଟଙ୍କ ସୁ-ଆବିର୍ଭାବ ଦିବସ ହିଁ ଖ୍ରୀଷ୍ଟିଆନ୍‌ମାନଙ୍କର ପଞ୍ଜିକାରେ ନବବର୍ଷ ରୂପେ ପାଳିତ ହୋଇଥାଏ । କିନ୍ତୁ ରୋମାନ୍‌ମାନେ ପହିଲା ଜାନୁଆରୀକୁ ନବବର୍ଷ ଉତ୍ସବ ରୂପେ ଆନନ୍ଦ ହିଲ୍ଲୋଳ ମଧ୍ୟରେ ପାଳନ କରୁଥିଲେ । ଖ୍ରୀଷ୍ଟିଆନ୍‌ମାନେ ରୋମାନ୍ ସହରମାନଙ୍କରେ ବର୍ଷସାରା ଆତ୍ମଗୋପନ କରି ରହୁଥିଲେ । କିନ୍ତୁ ନବବର୍ଷର ପ୍ରମତ୍ତ ଆନନ୍ଦୋତ୍ସବ ମଧ୍ୟରେ ସେମାନେ ମିଶିଯାଇ ତାହାର ଉତ୍ତେଜନା କିଛି କିଛି ଅନୁଭବ କରିପାରୁଥିଲେ । ରୋମାନ୍ ସାମ୍ରାଜ୍ୟରେ ସେଇ ବିଦ୍ରୋହୀ ଖ୍ରୀଷ୍ଟିଆନ୍‌ମାନଙ୍କ ପରି କନଟ୍‌ପ୍ଲେସ୍‌ର ପ୍ରମତ୍ତ କୋଳାହଳ ମଧ୍ୟରେ ମୁଁ ନିଃସଙ୍ଗ ଭାବରେ ବୁଲୁଥିଲି ଓ ତାହାର ଉତ୍ତେଜନା କିଛିକିଛି ଅନୁଭବ କରୁଥିଲି । ଉତ୍ସବମୁଖର ନରନାରୀମାନଙ୍କ ସହିତ ମୋର କୌଣସି ଭାବସୂତ୍ର ନଥିଲା । କିମ୍ବା ସେମାନଙ୍କ ସହିତ

ମୁଁ ନିଜକୁ ଖାପଖୁଆଇ ପାରୁ ନଥିଲି । ମୋ ଦୃଷ୍ଟିରେ ସେମାନ ସବୁ ଥିଲେ ଯେପରି ଏକ ଭିନ୍ନ ଗ୍ରହର ମଣିଷ।

ଅନେକ ସମୟ ପରେ ସେମାନଙ୍କର ଉତ୍ତେଜନା ଓ ଆନନ୍ଦରେ ମୁଁ ମଧ୍ୟ ସଂକ୍ରମିତ ହୋଇ ଉଠିଲି । ମୁଁ ମଧ୍ୟ ବିଦାୟୀ ବର୍ଷର ପାନପାତ୍ରରୁ ଶେଷବିନ୍ଦୁଟିକୁ ନିଗାଡ଼ି ଶୋଷି ନେବାପାଇଁ ଚାହିଁଲି । ମୁଁ ମଧ୍ୟ ମୁଣ୍ଡରେ ରଙ୍ଗିନକାଗଜରେ ତିଆରି ଗୋଟିଏ ଗଧଟୋପି ପିନ୍ଧିଲି ଓ ବାର୍‌ମାନଙ୍କରେ ବୁଲିବାପାଇଁ ଲାଗିଲି । ଅନିଦ୍ରାର ଅବସାଦ ମଧ୍ୟରେ କ୍ରମେ ବିଦାୟୀ ବର୍ଷର ରାତ୍ରି ଶେଷ ହୋଇଆସିଲା । ଗୀର୍ଜାମାନଙ୍କରେ ନବବର୍ଷ ସକାଳର ଘଣ୍ଟାଧ୍ୱନି ହେଲା । ମୁଁ ଇଣ୍ଡିଆଗେଟ୍ ରାସ୍ତାରେ କାନିଙ୍ଗ୍ ରୋଡ୍‌ରେ ମୋର ଆସ୍ଥାନ ଆଡ଼େ ଫେରିଲି । ସୂର୍ଯ୍ୟୋଦୟ ପାଇଁ ଆଉ ବିଳମ୍ବ ନଥିଲା । କିଙ୍ଗଜର୍ଜ ଆଭିନ୍ୟୁରୁ କାନିଙ୍ଗ୍ ରୋଡ୍ ଯେଉଁଠାରେ ବାହାରି ଯାଇଛି, ସେଇ କ୍ରସିଂରେ ଇଣ୍ଡିଆ ଗେଟ୍ ଲନ୍‌ରେ ଗୋଟିଏ ରକ୍ତକରବୀ ଗଛମୂଳେ ଖଣ୍ଡେ କାଠବେଞ୍ଚ୍, କୋଟିଏ କୃତ୍ରିମ କେନାଲ୍ କୂଳରେ; ଏଇ ସ୍ଥାନଟି ମୋର ଭାରି ପ୍ରିୟ । ପ୍ରତ୍ୟହ ପ୍ରାତଃ ଭ୍ରମଣ ବେଳେ ମୁଁ ଏଇଠାରେ ଆସି ବସେ ଓ ପୂର୍ବ ଦିଗରେ ସୂର୍ଯ୍ୟୋଦୟ ଦେଖେ । ସେଦିନ ସେଇ ବେଞ୍ଚ୍ ଉପରେ ବସି ନବବର୍ଷର ସୂର୍ଯ୍ୟକୁ ପ୍ରଣାମ ଜଣାଇବା ପାଇଁ ମୋର ଭାରି ଇଚ୍ଛା ହେଲା । କିନ୍ତୁ ସେଠାକୁ ଯାଇ ଦେଖେ, କେହି ଜଣେ ମାତାଲ ଗତ ରାତ୍ରିର ଉତ୍ସବ ପରେ ଖଣ୍ଡେ ଓଭରକୋଟ୍ ମଡ଼ାଇ ସେଠାରେ ମୁହଁମାଡ଼ି ଶୋଇଛି । ଲୋକଟି ବୃଦ୍ଧ । ତା'ର ପାଚିଲା ବାଳ ଓ ଦାଢ଼ିରୁ ତାହା ବେଶ୍ ଅନୁମାନ କରିହେଉଥିଲା । ମୁଁ ବେଞ୍ଚ୍ ପାଖରେ ଠିଆହୋଇ ତାକୁ ହଲାଇ ଡାକିଲି ଓ ସେ ମୋ ଆଡ଼େ ନିଦ ଟଳମଳ ଆଖିରେ ଚାହିଁବା ମାତ୍ରେ ମୁଁ ତାକୁ 'ହାପି ନ୍ୟୁ ଇୟର୍' ବୋଲି କହିଲି । ସେ ହିଂସ୍ର କଣ୍ଠରେ ମୋତେ ବ୍ଲାଡ଼ି ଷ୍ଟୁପିଡ୍ ଇତ୍ୟାଦି କହି ଚିତ୍କାର କଲା ଓ ମୁଁ କାହିଁକି ତାର ନିଦ ଭାଙ୍ଗି ଦେଲି ବୋଲି ମୋତେ ମୁଦ୍ରଣ ଅଯୋଗ୍ୟ ଇଂରାଜୀ ଭାଷାରେ ଗାଳି ଦେବାକୁ ଲାଗିଲା । ମୁଁ ସୁଲଭ ଶାନ୍ତ କଣ୍ଠରେ କହିଲି, "ଭାଇ ! ଆଜି ପରା ନବବର୍ଷ । ନବବର୍ଷର ସୂର୍ଯ୍ୟ ଉଦୟ ହେଲାଣି, ତୁମେ ମୋତେ ଗାଳି ଦେଉଛ କାହିଁକି ?" ସେ ଖଣ୍ଡେ ଦଳାମକଚା ସିଗାରେଟ୍‌ରେ ନିଆଁ ଲଗାଇଲା ଓ ସେଥିରୁ କଳେ ଧୂଆଁ ଛାଡ଼ି ନବବର୍ଷକୁ ମଧ୍ୟ ଅକଥ୍ୟ ଭାଷାରେ ଗାଳି ଗୁଲଜ କଲା । ତା'ପରେ ପୁଣି ଥରେ ସେଇ କାଠବେଞ୍ଚ୍ ଉପରେ ଦେହ ଢାଳି ଶୋଇବାର ଉପକ୍ରମ କରୁ କରୁ କହିଲା, "ସବୁ ନବବର୍ଷ ସେଇ ପୁରୁଣା ବର୍ଷମାନଙ୍କର ନିର୍ବୋଧତା ଓ ବର୍ବରତାର ପୁନରାବୃତ୍ତି; ଏଥିରେ ଏତେ ଆବେଗପ୍ରବଣ ହେବାର କ'ଣ ଅଛି ?

୩୧/୧୨/୮୯

# ଭୂତଘର

ସ୍କୁଲ୍‌ରେ ପଢ଼ିବାବେଳେ ପ୍ରତି ବର୍ଷ ଖରାଛୁଟିଟା ମୋର କଟେ ସାନ ମାଉସୀ ଘରେ, ମାଳିପୁର ଗାଁରେ । ବିରୂପା ନଦୀକୂଳରେ ଛୋଟ ଗାଁଟିଏ । ଗାଁ ଦାଣ୍ଡ ଦୁଇ କଡ଼େ ୨୫ ବା ୩୦ ସରିକି ଘର । ଗାଁଟିରେ କେବଳ କରଣମାନଙ୍କ ଛଡ଼ା ଅନ୍ୟ ଜାତିର ଲୋକ ନାହାନ୍ତି, ଅବଶ୍ୟ ଗାଁ ଚୌକିଆକୁ ବାଦ୍‌ଦେଲେ । କଥିତ ଅଛି, ବିରୂପା ବନ୍ୟାରେ କେତୋଟି କରଣ ପରିବାର ଉଚ୍ଛନ୍ନ ହୋଇ, ଏଠାରେ ଆସି ବସବାସ କରି ରହିଥିଲେ । କାଳକ୍ରମେ ସେମାନେ ପଚିଶ, ତିରିଶ ଘର ହୋଇଛନ୍ତି । ଏଇ ଗାଁରେ ସବୁ ପୁରୁଷ ଲୋକ ପ୍ରବାସୀ । କଲିକତା କାଳିମାଟିଠାରୁ ଆରମ୍ଭ କରି କଟକ ପର୍ଯ୍ୟନ୍ତ ବିଭିନ୍ନ ସ୍ଥାନରେ ସେମାନେ ନିଜ ନିଜ ଯୋଗ୍ୟତା ଅନୁସାରେ ଜୀବିକା ଅର୍ଜନ କରନ୍ତି । ଗାଁରେ ପଡ଼ିରହିଥାଆନ୍ତି ବୁଢ଼ା ବୁଢ଼ୀ ଓ ସ୍ତ୍ରୀ ଲୋକମାନେ । କିନ୍ତୁ ଦଶହରା ଓ ଦୋଳ ବେଳେ ସମସ୍ତେ ପ୍ରବାସରୁ ଫେରନ୍ତି ଗାଁକୁ । ସେତେବେଳେ ବର୍ଷସାରା ନିଝୁମ୍ ହୋଇ ପଡ଼ିଥିବା ମାଳିପୁର ଗାଁଟା କେତେଦିନ ପାଇଁ ପ୍ରାଣଚଞ୍ଚଳ ହୋଇଉଠେ ।

କିନ୍ତୁ ସେ ଗାଁରେ ଗୋଟିଏ ଘର ମୋତେ ଭାରି ରହସ୍ୟମୟ ଲାଗେ । ଘରଟି ଠିକ୍ ଗାଁ ମଝିରେ । ଘରଟି ମାଟିର ବେଶ୍ ବଡ଼ ଖଞ୍ଜା ଘରଟିଏ । କିନ୍ତୁ ସେ ଘରେ ମୁଁ କେବେ କୌଣସି ମଣିଷ ଦେଖି ନାହିଁ । ଘର ଭିତରୁ ପିଲାଟିଏ କାନ୍ଦିବାର ଶୁଣିନାହିଁ କିମ୍ବା ଦାଣ୍ଡ ପିଣ୍ଡାରେ ବୁଢ଼ାଟିଏ କାନ୍ଥକୁ ଆଉଜି ବସି ଖୁଁ ଖୁଁ କାଶିବାର ଦେଖିନାହିଁ । ଗାଁର ସବୁଘର ଦାଣ୍ଡକାନ୍ଥରେ ଚିତା ପଡ଼ିଥାଏ; କିନ୍ତୁ ଏ ଘରର ଦାଣ୍ଡକାନ୍ଥରେ କେବେ କୌଣସି ଚିତା ପଡ଼ିଥିବା ପରି ଜଣାପଡ଼େ ନାହିଁ । ବରଂ ଲିପାପୋଛା ଅଭାବରୁ ସ୍ଥାନେ ସ୍ଥାନେ ଦାଣ୍ଡକାନ୍ଥରୁ ଅରାଏ ଅରାଏ ମାଟି ଖସି ପଡ଼ିଥାଏ । ଘର ବୋଧହୁଏ ପ୍ରତିବର୍ଷ ଛପର ହୋଇପାରେ ନାହିଁ । ସେଥିପାଇଁ ଅନେକ ସ୍ଥାନରେ ଚାଳରୁ ଛପର ଉଡ଼ିଯାଇ କେବଳ କଙ୍କାଳ ଦେଖାଇ ପଡ଼ିଥାଏ । ସବୁଥର ଗାଁ ଦାଣ୍ଡରେ ନିର୍ଧୂମ୍ ଖରାବେଳେ ବିରୂପା କୂଳର ଘଞ୍ଚ ଆମ୍ବ ତୋଟାକୁ ମୁଁ ଆଉ ସାନ ମାଉସୀ ପୁଅ ଗୌରାଙ୍ଗ ତାସ୍

ଖେଳିଯିବା ବେଳେ ସେ ଘରଟା ପାଖରେ ଦଣ୍ଡେ ଅଟକି ଯାଇ ଭିତରକୁ ଅନାଏ । ଖୋଲା ଦାଣ୍ଡ ଦୁଆର ବାଟେ ଦେଖାଯାଏ, ଭିତର ଖଞ୍ଜାଟା ଉଜୁଡ଼ି ପଡ଼ିଛି । ଭିତରଟା କିଟ୍ କିଟ୍ ଅନ୍ଧାର । ମୁଁ ସେଠାରୁ ତରତର ପାଦରେ ଚାଲିଯାଏ । ଗୋଟାଏ ଅଶରୀରୀ ଭୟରେ ମୋର ଦେହଟା ଯେପରି ଶୀତେଇ ଉଠେ।

ଥରେ ସାନ ମାଉସୀକୁ ସେଇ ଘର କଥା ପଚାରିଥିଲି। ସେ ମୋତେ କହିଲା, ସେଇଟା ଭୂତ ଘର । ତା' ଭିତରକୁ କେବେ ଯିବୁ ନାହିଁ । ଏହା ପରେ ସେଇ ଘର ସଂପର୍କରେ ମୋର କୌତୂହଳ ଆହୁରି ବଢ଼ିଗଲା । ଗାଁ ସାଙ୍ଗମାନଙ୍କ ପାଖରୁ ପଚାରି ବୁଝିଲି, ସେ ଘରେ ବିଚ ମହାନ୍ତି ବୋଲି ପାଗଳାଟାଏ ଥାଏ । ତା'ର ଗୋଁସବାପ କଲିକତାରେ ସର୍ଦ୍ଦାରୀ କାମ କରି, ବହୁ ପଇସା ରୋଜଗାର କରିଥିଲେ । କିନ୍ତୁ ତାଙ୍କ ପୁଅ ଜମିବାଡ଼ି ବନ୍ଧା ପକାଇ ଅଫିମ ଗୁଳି ନିଶାରେ ସବୁ ଉଡ଼ାଇ ଦେଲେ । ତାଙ୍କର ଗୋଟିଏ ବୋଲି ପୁଅ ବିଚ ମହାନ୍ତି । ପାଠ ପଢୁଥିବା ବେଳେ ସେ ପାଗଳ ହୋଇଗଲେ । ସେଇଦିନୁ ସେ ପାଗଳ ହୋଇ ସେଇ ଘରେ ରହିଛି । ସାଇ ପଡ଼ିଶାର କେହି ଦୟାକରି ଦି'ଓଳି ଦି'ମୁଠା ଖାଇବାକୁ ଦେଲେ, ସେଇଆ ସେ ଖାଇ ବଞ୍ଚେ । ନୋଇଲେ ବଞ୍ଚି ରହିବାପାଇଁ ତା'ର ଅନ୍ୟ ପ୍ରଚେଷ୍ଟା ନାହିଁ ।

ଏ କାହାଣୀ ଶୁଣିବା ପରେ ମୁଁ ସେ ବାଟେ ଯିବାବେଳେ ତରତର ପାଦରେ ଚାଲିଯାଏ । ପାଗଳଟା ଯଦି ହଠାତ୍ ବାହାରିପଡ଼ି ମୋତେ ଭିତରକୁ ଟାଣିନିଏ କି କାମୁଡ଼ି ପକାଏ, ସେଇ ଭୟ ମୋତେ ଅତିଷ୍ଠ କରିପକାଏ । ତଥାପି ସେଇ ବାଟେ ଯିବାରେ, ଥରେ ସେ ଘର ଭିତରକୁ ଚାହିଁ ପାଗଳାଟିକୁ ଦେଖିବାର ଇଚ୍ଛା ମୁଁ ଏଡ଼ାଇ ପାରେ ନାହିଁ ।

ଦିନେ ନିର୍ଦ୍ଧୁମ୍ ଖରାବେଳେ ସେଇବାଟେ ଯାଉଛି, ସାଙ୍ଗରେ ସେଦିନ ଗୌରାଙ୍ଗ ନଥିଲା । ହଠାତ୍ ଘର ଭିତରୁ କାହାର କୋମଳ କଣ୍ଠରେ ଶୁଣିଲି, "ଶୁଣ !" ଭୟରେ ଚାହିଁ ଦେଖିଲି, କବାଟ ଉଢ଼ାଳରେ ଲୋକଟିଏ ଛିଡ଼ାହୋଇ ତା'ର ମୁହଁଟିକୁ କେବଳ ବାହାରକୁ ଦେଖାଇ ମୋତେ ଭିତରକୁ ଆସିବାପାଇଁ ଡାକୁଛି । ତା'ର ରୁଢ଼ିଆ ମୁହଁରେ ମରମୀ ହସ ଦେଖି ମୋର ପୂର୍ବର ସବୁ ଭୟ ଉଭେଇଗଲା । ଇଏ କଦାପି ଭୂତ ହୋଇ ନପାରେ, ଇଏ ମଣିଷ ! ମୁଁ ଘର ଭିତରକୁ ଆସିଲି । ସେ କହିଲା, "ତୁମେ ଡରୁଛ କାହିଁକି ? ମୋ ସାଙ୍ଗରେ ଆସ । କେହି ତ କେବେ ଏ ଘରକୁ ଆସନ୍ତି ନାହିଁ ।"

ତା'ର କଣ୍ଠ ସ୍ୱରରୁ ମନେହେଲା, ସେ ଯେପରି ଚାହେଁ ମଣିଷର ସାନ୍ନିଧ୍ୟ । ମାତ୍ର ସେ ଦରିଦ୍ର ବୋଲି, ତାକୁ ଭୂତ ଓ ପାଗଳ କହି ସମସ୍ତେ ଦୂରେଇ ଦେଇଛନ୍ତି । ଦାଣ୍ଡଘରକୁ ଲାଗି ବେଶ୍ ଲମ୍ବା ଚଉଡ଼ା ଘରଟିଏ । ମାତ୍ର କେତେ ଦିନ ହେବ ଘରଟା ଓଳାଓଳି ହୋଇ ନଥିବାରୁ, ଭିତରୁ କିପରି ଗୋଟିଏ ଦୁର୍ଗନ୍ଧ ବାହାରୁଥିଲା । ଲୋକଟି ଯେଉଁ କୋଠଟ

ମଇଳା ଧୋତି ଖଣ୍ଡକ ପିନ୍ଧିଥିଲା, ସେଥିରେ ସାତ ଗଇଁଠା । ଘର ଉପରେ ଗୋଟିଏ ପୁରୁଣାକାଳିଆ ପଲଙ୍କ ଉପରେ ଖଣ୍ଡେ କନ୍ଥା ଉପରେ ଛିଣ୍ଡା ସଅପଟିଏ ପଡ଼ିଥିଲା । ସେ ଖଟତଳୁ ଗୋଟାଏ ବଡ଼ ପାଚିଲା ଆମ୍ବ ଆଣି ମୋ' ହାତରେ ଧରାଇଦେଇ କହିଲା, "ଖାଅ । ଏଇଟା ଭାରି ମିଠା ।" ପ୍ରକୃତରେ ଆମ୍ବଟି ଥିଲା, ମହୁ ପରି ମିଠା ।

ସେଠାରେ କିଛି ସମୟ ବସି ଚାଲିଆସିବା ବେଳେ ମୁଁ ପଚାରିଲି, "ତୁମେ ଏ ଘର ଭିତରଟାରେ ସବୁବେଳେ ବନ୍ଦହୋଇ ପଡ଼ିଥାଅ କାହିଁକି ?" ସେ କୌଣସି ଉତ୍ତର ଦେଲା ନାହିଁ । ଗୁଡ଼ିଆ ମୁହଁରେ ସେ ସେହିପରି ମରମୀ ହସ ହସିଲା; ଆଉ କହିଲା, "ତୁମେ ଏ ଗାଁକୁ କୁଣିଆ ଘର ଆସିଛ ! ଏ ମଧ୍ୟ ତୁମର କୁଣିଆ ଘର । ସବୁଦିନେ ଆସିବ ।"

ମୁଁ ବୁଝିପାରିଲି, ବାହାରକୁ ବାହାରିବାପାଇଁ ସେ କୁଣ୍ଠିତ । କାରଣ ସାତ ଗଣ୍ଠିପକା ଛିଣ୍ଡା ଲୁଗା ପିନ୍ଧି ସେ ବାହାରକୁ ବାହାରନ୍ତା ବା କିପରି ? ସେ ଏକାନ୍ତ ପରିତ୍ୟକ୍ତ ଓ ନିଃସଙ୍ଗ ! ସେଥିପାଇଁ ସବୁଦିନେ ବେଳେବେଳେ ତା'ପାଖକୁ [illegible]ପାଇଁ ସେ ମୋତେ ଅନୁରୋଧ କରୁଥିଲା ଓ ପାଚିଲା ଆମ୍ବର ପ୍ରଲୋଭନ ଦେଉଥିଲା !

୦୭/୦୧/୯୦

# ବସନ୍ତ ବାହାର

ଶିଳ୍ପୀ ସୁଧୀନ୍ଦ୍ର ଆଜି ମଧ୍ୟ ବେଡ୍‌ରୁମ୍‌ର ନିରନ୍ଧ୍ର ଅନ୍ଧକାର ମଧ୍ୟରେ ଉତ୍କର୍ଣ୍ଣ ହୋଇ ବସିଥିଲେ, ଶିଢ଼ିରେ କାହାର ପାଦଶବ୍ଦ ଶୁଣିବାପାଇଁ । ବାହାରେ ମାର୍ଚ୍ଚର ଉଜ୍ଜ୍ୱଳ ପୂର୍ବାହ୍ନ ଚାରିଆଡ଼େ ଆଞ୍ଜୁଳା ଆଞ୍ଜୁଳା ଫୁଲ ପରି ବିଛୁଡ଼ି ହୋଇ ପଡ଼ିଛି । ମାର୍ଚ୍ଚର ଦକ୍ଷିଣା ପବନ ସୁଧୀନ୍ଦ୍ରଙ୍କର କପାଳ ଉପରେ ତାଙ୍କର ଅଲରା କେଶରାଶିକୁ ଉଡ଼ାଇ ନେବାବେଳେ, ସେ ଅନୁଭବ କରି ପାରୁଛନ୍ତି, ଇଏ, 'ବସନ୍ତ ବାହାର'; ବସନ୍ତର ଋତୁ । ତାଙ୍କ ମନର ନିଭୃତ କୋଣରେ ଶିଳ୍ପୀର ଚେତନା ମୁହୂର୍ତ୍ତକ ପାଇଁ ଜାଗି ଉଠି ପୁଣି ଅନ୍ଧକାର ମଧ୍ୟରେ ହଜି ଯାଉଛି ।

ଦୃଷ୍ଟି ଶକ୍ତି ହରାଇ ସେ ହଠାତ୍ ଅନ୍ଧ ହୋଇଯିବା ଦିନୁ ତାଙ୍କର ସୃଷ୍ଟି ଚେତନା ହଜି ଯାଇଛି, ଅତଳ ଅନ୍ଧକାର ମଧ୍ୟରେ । ସେ ଦିନର ଅଧିକାଂଶ ସମୟ ଗୋଟାଏ ଚୌକି ଉପରେ ସ୍ଥାଣୁ ମୂର୍ତ୍ତିଟିଏ ପରି ବସି ରହୁଛନ୍ତତି, ଶିଢ଼ିରେ କାହାର ପାଦଶବ୍ଦ ଶୁଣିବାପାଇଁ । କିଏ ବା କେଉଁମାନେ ଆସନ୍ତି, ଆଉ ତାଙ୍କ ସ୍ତ୍ରୀ ଅପର୍ଣ୍ଣା ସହିତ ପାଖ ଷ୍ଟୁଡ଼ିଓରେ କ'ଣ କଥାବାର୍ତ୍ତା ହୋଇ ଚାଲିଯାଆନ୍ତି, ତାହା ଜାଣିବାପାଇଁ ସୁଧୀନ୍ଦ୍ରଙ୍କ ମନରେ କୌତୂହଳ ଜନ୍ମେ । ଅପର୍ଣ୍ଣାକୁ ପଚାରିଲେ ସେ ଉତ୍ତର ଦିଅନ୍ତି, "ସେମାନେ ତୁମର ପ୍ରଶଂସକ । ଚିତ୍ର ସବୁ ଦେଖିବାପାଇଁ ବିଭିନ୍ନ ସ୍ଥାନରୁ ସେମାନେ ଆସନ୍ତି । ଦେଖନ୍ତି, ଚାଲିଯାଆନ୍ତି ।" ସୁଧୀନ୍ଦ୍ରଙ୍କର ଆତ୍ମଗ୍ଲାନି ମୁହୂର୍ତ୍ତକ ମଧ୍ୟରେ ଦୂର ହୋଇଯାଏ । ସେ ଅନୁଭବ କରନ୍ତି, ସେ ଏବେ ବି ବଞ୍ଚିଛନ୍ତି, ତାଙ୍କ ଚିତ୍ରକଳା ମଧ୍ୟରେ ।

"କିନ୍ତୁ ସେମାନେ କାହିଁକି ମୋ ପାଖକୁ ଆସନ୍ତି ନାହିଁ । ସେ ଚିତ୍ରସବୁ ତ ମୋର ସୃଷ୍ଟି ।" ଅପର୍ଣ୍ଣା ଉତ୍ତର ଦିଅନ୍ତି, "ସେମାନେ ଆସି ତୁମକୁ ଅଯଥା ଡିଷ୍ଟର୍ବ କରିବେ ବୋଲି ମୁଁ ସେମାନଙ୍କୁ ତୁମ ପାଖକୁ ଆଣେ ନାହିଁ । ଫେରାଇ ଦିଏ । ମୁଁ ସେମାନଙ୍କୁ ଜଣାଇ ଦେବାକୁ ଚାହେଁ ନାହିଁ, ତୁମେ ଦୃଷ୍ଟିଶକ୍ତି ହରାଇ ଅନ୍ଧ ହୋଇ ଯାଇଛ ବୋଲି ।"

ସୁଧୀନ୍ଦ୍ର ଗୋଟାଏ ଦୀର୍ଘଶ୍ୱାସ ପକାଇ ପଚାରନ୍ତି, "ସେମାନେ କାହିଁକି ଆଉ ଏବେ ଆସୁ ନାହାନ୍ତି ତ । ମୁଁ ଶିଡ଼ିରେ ସେମାନଙ୍କର ପାଦଶବ୍ଦ ଆଉ ଶୁଣୁନାହିଁ ।" ଅପର୍ଣ୍ଣା ଏହାର କୌଣସି ଉତ୍ତର ନଦେଇ ନିରବରେ ସେଠାରୁ ଚାଲିଯାଆନ୍ତି । ସୁଧୀନ୍ଦ୍ରଙ୍କ ଚାରିପଟେ ନିର୍ଜନ ଅନ୍ଧକାର ଓ ନିରବତା ପୁଣି ଜମାଟ ବାନ୍ଧି ଉଠେ ।

ସେଦିନ ସକାଳେ ସୁଧୀନ୍ଦ୍ରଙ୍କର ଇଚ୍ଛା ହେଲା, ତାଙ୍କ ନିଜ ଅଙ୍କା 'ବସନ୍ତ ବାହାର' ଚିତ୍ର ଦେଖିବାପାଇଁ । ଚିତ୍ରକୁ ତ ସେ ଦେଖିପାରିବେ ନାହିଁ । ତଥାପି ତା' ଉପରେ ଆଙ୍ଗୁଳି ବୁଲାଇ, ସେ ଅନୁଭବ କରିପାରିବେ, ଚିତ୍ରର ସୁଷମା ଆଉ ରଙ୍ଗର କୋଳାହଳ। ଚିତ୍ରଟିକୁ ଦିନେ ବସନ୍ତର ଗୋଟିଏ ସକାଳେ ସେ ଆଙ୍କିଥିଲେ ଇମ୍ପ୍ରେସନିଷ୍ଟିକ୍ ଶୈଳୀରେ । ଅନେକ ଏକ୍ଜିବିସନରେ ଏ ଚିତ୍ରଟି ବହୁପ୍ରଶଂସିତ ହୋଇଥିଲା । ଏଥିପାଇଁ ପ୍ରଚୁର ମୂଲ୍ୟ ମିଳିଲେ ହେଁ ଏହାକୁ ସେ ବିକ୍ରି କରି ନଥିଲେ । ସେଦିନ ସକାଳେ, ତାଙ୍କର ଇଚ୍ଛା ହେଲା, ସେଇ ଚିତ୍ର ଉପରେ ଆଙ୍ଗୁଳି ବୁଲାଇ ବସନ୍ତର ଚପଳତ ଭବ କରିବାପାଇଁ ।

ବେଡ୍‌ରୁମ୍ ପାଖକୁ ଲାଗି ତାଙ୍କର ଷ୍ଟୁଡ଼ିଓ । ସେଲଫ୍‌ମାନଙ୍କରେ ତାଙ୍କର ଅନେକ ଚିତ୍ରପଟ ରହିଥାଏ । ଆଗ୍ରହୀ କଳାପ୍ରେମୀମାନେ ସେ ଚିତ୍ର ସବୁ ଦେଖନ୍ତି । ଆର୍ଟ କ୍ରିଟିକ୍‌ମାନେ ତା' ଉପରେ ସମାଲୋଚନା ଲେଖି ଆର୍ଟ ଜର୍ଣ୍ଣାଲ୍‌ମାନଙ୍କରେ ଛପାନ୍ତି । କିନ୍ତୁ ସୁଧୀନ୍ଦ୍ର ଅନ୍ଧ ହୋଇଯିବା ଦିନୁ, ଆଉ ସେ ଷ୍ଟୁଡ଼ିଓ ଭିତରକୁ ଯାଇ ନାହାନ୍ତି । ଷ୍ଟୁଡ଼ିଓଟା ଏବେ ପରିତ୍ୟକ୍ତ । ଗୋଟାଏ ଇଜେଲ୍ ଉପରେ ସୁଧୀନ୍ଦ୍ରଙ୍କର ଅଧା ଅଙ୍କା ଗୋଟାଏ ପୋଟ୍ରେଟ, କେବଳ ଲାଗି ରହିଛି । ସୁଧୀନ୍ଦ୍ର ସେ ପୋଟ୍ରେଟ୍‌ଟାକୁ ଆଉ ଶେଷ କରିପାରି ନାହାନ୍ତି । ବେଳେବେଳେ ଷ୍ଟୁଡ଼ିଓ ଭିତରକୁ କେହି କେହି ଆସୁଥିଲେ । ଏବେ କିନ୍ତୁ ଆଉ କାହାର ପାଦଶବ୍ଦ ଶିଡ଼ିରେ ଶୁଣାଯାଉ ନାହିଁ । ଆଜି ବସନ୍ତର ଏଇ ସକାଳେ ସୁଧୀନ୍ଦ୍ରଙ୍କର ପ୍ରବଳ ଇଚ୍ଛା ହେଲା, ଷ୍ଟୁଡ଼ିଓ ଭିତରକୁ ଯାଇ ସେଇ ବସନ୍ତର ବାହାର ଚିତ୍ର ଉପରେ ଆଙ୍ଗୁଳି ବୁଲାଇ ମାନସଚକ୍ଷୁରେ ତାହାକୁ ଅନୁଭବ କରିବାପାଇଁ ।

ସୁଧୀନ୍ଦ୍ର ହାତ ଦେଇ ଷ୍ଟୁଡ଼ିଓ ଭିତରକୁ ଆସିଲେ । କିନ୍ତୁ ସେଲ୍‌ଫମାନଙ୍କରୁ ଚିତ୍ରପଟ ସବୁ ଗଲା କୁଆଡ଼େ ? ସେଲ୍‌ଫ ସବୁ ପ୍ରାୟ ଶୂନ୍ୟ, ଦୁଇ ତିନିଟା ଫ୍ରେମ୍ ବନ୍ଧା ଚିତ୍ରପଟ ଛାଡ଼ିଦେଲେ । କିନ୍ତୁ ଚିତ୍ରଟା କାହିଁ ? ସେ ଚିତ୍ରପଟଟା ତ ଥିଲା ଆକାରରେ ଅନେକ ବଡ଼ ! ସୁଧୀନ୍ଦ୍ର ଅସହାୟ କଣ୍ଠରେ ଚିତ୍କାର କରି ଉଠିଲେ, "ଅପର୍ଣ୍ଣା ଅପର୍ଣ୍ଣା !" ଅପର୍ଣ୍ଣା କିଛି କ୍ଷଣ ପରେ ଷ୍ଟୁଡ଼ିଓ ଭିତରକୁ ଆସି ଈଷତ୍ ରୁକ୍ଷ କଣ୍ଠରେ ପଚାରିଲେ, "କାହିଁକି ଡାକିଲ । ତୁମେ ଏକୁଟିଆ, ପୁଣି ମୋତେ ନ ଡାକି ଷ୍ଟୁଡ଼ିଓ ଭିତରକୁ ଆସିଲ କାହିଁକି ? ପଡ଼ିଯାଇ ହାତଗୋଡ଼ ଭାଙ୍ଗିଥିଲେ ମୋତେ ପୁଣି ସନ୍ତୁଳେଇ ଥାଆନ୍ତ ।" ସୁଧୀନ୍ଦ୍ର ପଚାରିଲେ, "ଏ ସେଲ୍‌ଫ ସବୁ ତ ପ୍ରାୟ ଖାଲି । ମୋର 'ବସନ୍ତ ବାହାର' କାହିଁ ? ସୁଧୀନ୍ଦ୍ରଙ୍କର ଏହି

ନିରୀହ ଆବେଗ କମ୍ପିତ ପ୍ରଶ୍ନ ଆଗରେ ଅପର୍ଣ୍ଣାଙ୍କୁ ଅପରାଧୀ ପରି ଲାଗିଲା । ସେ କିଛିକ୍ଷଣ ନୀରବ ରହିବା ପରେ ଉତ୍ତର ଦେଲେ, "ସେସବୁ ମୁଁ ଆର୍ଟ ବ୍ୟବସାୟୀମାନଙ୍କୁ ବିକ୍ରୀ କରି ଦେଇଛି । ଶିଡ଼ିରେ ଯେଉଁମାନଙ୍କର ପାଦଶବ୍ଦ ତୁମେ ଦିନେ ଦିନେ ଶୁଣିଥାଅ, ସେମାନେ ସବୁ କେହି ତୁମର ପ୍ରଶଂସକ ନୁହନ୍ତି । ସେମାନେ ସବୁ ଆର୍ଟ ବ୍ୟବସାୟୀ । ସେମାନେ ତୁମର ବସନ୍ତ ବାହାର ଚିତ୍ରଟିକୁ ମଧ୍ୟ ନେଇ ଯାଇଛନ୍ତି ।" ସୁଧୀନ୍ଦ୍ର ପାଗଳ ପରି ତୀବ୍ର କଣ୍ଠରେ ପଚାରିଲେ "କିନ୍ତୁ କାହିଁକି ? ତୁମେ କାହିଁକି ମୋର 'ବସନ୍ତ ବାହାର' ଚିତ୍ର ସେମାନଙ୍କୁ ବିକ୍ରୀ କଲ ?"

ଅପର୍ଣ୍ଣା ଉତ୍ତର ଦେଲେ, "ସୁଧୀ ! ତୁମେ ପାଗଳଙ୍କ ପରି ହୁଅନାହିଁ । ବୁଝିବାକୁ ଚେଷ୍ଟାକର, ଯେତେଦିନ ପର୍ଯ୍ୟନ୍ତ ତୁମେ ଚିତ୍ର ଆଙ୍କୁଥିଲ, ସେତେଦିନ ପର୍ଯ୍ୟନ୍ତ ତୁମ ପ୍ରତି ଥିଲା ସମାଜ ଆଉ ସଂସାରର ଶ୍ରଦ୍ଧା ଓ ଆଗ୍ରହ । ଯେଉଁଦିନଠାରୁ ତୁମ ତୂଳୀ ନୀରବ ହୋଇଗଲା, ସେଦିନଠାରୁ ତୁମେ ପରିତ୍ୟକ୍ତ । ବିସ୍ମୃତ । ଆଜି କେବଳ ବଞ୍ଚି ରହିଛି ତୁମର ଚିତ୍ରସବୁ ଆର୍ଟ ଡିଲରଙ୍କର ଗୋଦାମମାନଙ୍କରେ । ମୋତେ ତ' ପୁଣି ସଂସାର ଚଳାଇବାକୁ ପଡ଼ିବ ।" ଅପର୍ଣ୍ଣା କୋହ ସମ୍ଭାଳି ନପାରି ଶାଢ଼ି କାନି ଦୁଇ ଆଖି ଉପରେ ଚାପି ଧରି କାନ୍ଦି ଉଠିଲେ ।

୧୪/୦୧/୯୦

# ଗୋଧୂଳି

ସଦାନନ୍ଦ ସ୍ତିମିତ ଗୋଧୂଳିର ରକ୍ତାଭ ଆଲୋକ ମଧ୍ୟରେ ବସି, ଗୌତମ ବୁଦ୍ଧ କିମ୍ବା କବି ଅଶ୍ୱଘୋଷ କାହାରି କଥା ଆଦୌ ଚିନ୍ତା କରୁ ନଥିଲେ । ସେ କେବଳ ଭାବୁଥିଲେ ଗୋଟିଏ ସୂର୍ଯ୍ୟତପ୍ତ ଉଜ୍ଜ୍ୱଳ ମଧ୍ୟାହ୍ନ କିପରି ଧୀରେଧୀରେ ଏହି ସ୍ତିମିତ ଗୋଧୂଳି ମଧ୍ୟରେ କ୍ରମେ ଅସ୍ତମିତ ହୋଇଯାଉଛି । ଏଇ ବୋଧହୁଏ ଜୀବନର ପ୍ରତୀକ । ହଠାତ୍ ସେଇ ମୁହୂର୍ତ୍ତରେ କିପରି କେଜାଣି ତାଙ୍କ ମନରେ ଚେଇଁ ଉଠିଲା, କବି ଅଶ୍ୱଘୋଷଙ୍କ କଥା ।

ଏ ମନ ବଡ଼ ବିଚିତ୍ର । କେତେବେଳେ କେଉଁ କଥାରୁ କେଉଁ କଥାରେ ଆସି ପହଞ୍ଚିଯାଏ । କବି ଅଶ୍ୱଘୋଷ ତାଙ୍କ 'ବୁଦ୍ଧ ଚରିତ' କାବ୍ୟରେ ଲେଖିଛନ୍ତି, ଗୌତମ ବୁଦ୍ଧ ମୃତ୍ୟୁ ଶଯ୍ୟାରେ ପଡ଼ିଥିବା ବେଳେ ଅର୍ଦ୍ଧ ନିମିଳିତ ଆଖିରେ ଚାହିଁ, ତାଙ୍କ ଶିଷ୍ୟମାନଙ୍କୁ କହିଥିଲେ, "ଏ ଜମ୍ବୁଦ୍ୱୀପ କି ସୁନ୍ଦର । କି ବିଚିତ୍ର ଏହାର ନରନାରୀ ।" ଜୀବନର ସେଇ ଶେଷ ମୁହୂର୍ତ୍ତରେ ଦୁଃଖବାଦୀ ଗୌତମ ବୁଦ୍ଧଙ୍କୁ ଏହି ଶୋକ, ଦୁଃଖ, ଜରା, ବ୍ୟାଧିଗ୍ରସ୍ତ ଏ ଜୀବନ ଓ ପୃଥିବୀ ଭାରି ଭଲ ଲାଗିଥିଲା ।

ତାହା ପଢ଼ିବା ଦିନୁ ମୁଁ ଅନେକ ସମୟରେ ଭାବି ଆସିଛି, ଗୌତମ ବୁଦ୍ଧ ତେବେ କାହିଁକି ଚାହୁଁଥିଲେ ମୋକ୍ଷ ? ପୁନର୍ଜନ୍ମର ବନ୍ଧନରୁ ମୁକ୍ତି ପାଇଁ କାହିଁକି ତାଙ୍କର ସମଗ୍ର ସାଧନା ଅଭିପ୍ରେତ ଥିଲା ?

ବସ୍ତୁତଃ କେବଳ ଗୌତମବୁଦ୍ଧ ନୁହନ୍ତି, ସବୁ ଧର୍ମରେ ମନୁଷ୍ୟର ସେଇ ଗୋଟିଏ ପ୍ରାର୍ଥନା ମୋକ୍ଷ, ପୁନର୍ଜନ୍ମରୁ ମୁକ୍ତି । ଏଇ ସୁନ୍ଦର ପୃଥିବୀ ଓ ଏହାର ବିଚିତ୍ର ନରନାରୀ ସେମାନଙ୍କ ଜୀବନଲୀଳା ମଧ୍ୟରେ ପୁଣି ଥରେ ଜନ୍ମ ନେବାପାଇଁ ମଣିଷର କୁଣ୍ଠା କାହିଁକି ?

ସଦାନନ୍ଦଙ୍କ ମନରେ ଜାଗି ଉଠିଲା, ସେଇ ଅସମାଧିତ ଜିଜ୍ଞାସା, ଜୀବନର ସ୍ୱରୂପ କ'ଣ ? ସଂଜ୍ଞା କ'ଣ ? ପ୍ରତ୍ୟେକ ମନୁଷ୍ୟର ଜୀବନରେ ଶୈଶବ ଓ କୈଶୋରର ଦିନସବୁ ଥାଏ ସ୍ୱପ୍ନବେଳା । ତା'ର ବେଦନା ମଧୁର ସ୍ମୃତି ପ୍ରତ୍ୟେକ ମନୁଷ୍ୟର ମନରେ

ସାଇତା ହୋଇ ରହିଥାଏ ଅମୂଲ୍ୟ ସଂପଦ ପରି । ତା'ପରେ ଯୌବନର ଦିନ କେତେଟା ଚୋରା ବସନ୍ତ ପରି ଆସି ଚାଲିଯାଏ । ତା'ପରେ ଆରମ୍ଭ ହୋଇଯାଏ ଲହୁ ଓ ଲୁହର କାହାଣୀ । ସଂଘର୍ଷ ଓ ସଂଗ୍ରାମ । ସେଥିରେ ଉତ୍ତେଜନା ଥାଏ ସତ, ମାତ୍ର ସେଥିରେ ମଧ୍ୟ ଥାଏ ବ୍ୟର୍ଥତା, କ୍ଲାନ୍ତି ଓ ଅବସାଦ । ଜୀବନ ବେଳେବେଳେ ଦୁର୍ବିସହ ଲାଗେ; ମାତ୍ର ବଞ୍ଚିବାପାଇଁ ସେଇ ପ୍ରଚଣ୍ଡ ଆଗ୍ରହ ଓ ଉତ୍ତେଜନା ଜରାର ଶୀତଳ ସ୍ପର୍ଶରୁ କୁଆଡ଼େ ଉଭେଇଯାଏ । ତା'ପରେ ବ୍ୟାଧିର ଶତ ଯନ୍ତ୍ରଣା ମଧ୍ୟରେ ମନୁଷ୍ୟର ଦିନ ପରେ ଦିନ ବିତିଯାଏ । ତଥାପି ବଞ୍ଚିବାର ମୋହ ସେ ଛାଡ଼ିପାରେ ନାହିଁ । ଆଧ୍ୟାତ୍ମିକ ତତ୍ତ୍ୱବାଦୀମାନେ କୁହନ୍ତି, ଇଏ କୁଆଡ଼େ ବିଷ୍ଣୁମାୟା । ସଂସାରକୁ ବଞ୍ଚାଇ ରଖିଛି । ମନୁଷ୍ୟ ଏଇ ବିଷ୍ଣୁମାୟାରେ ଆବଦ୍ଧ ହୋଇ, ଶୋକ-ଦୁଃଖ-ବ୍ୟାଧିର ଶତ ଯନ୍ତ୍ରଣା ମଧ୍ୟରେ ସୁଦ୍ଧା ଚାହେଁ ଆହୁରି ବଞ୍ଚିବାପାଇଁ । ସେ ମୋକ୍ଷ ପାଇଁ ପ୍ରାର୍ଥନା କରିଥାଏ ସତ, କିନ୍ତୁ ପ୍ରକୃତରେ ସେ ଚାହିଁଥାଏ ପୁନର୍ଜନ୍ମ । ଆଉଥରେ ଏଇ ଶୋକଦୁଃଖପୂର୍ଣ୍ଣ ପୃଥିବୀରେ ଜନ୍ମନେବାପାଇଁ ।

ଅସଂଲଗ୍ନ ଭାବରେ ସଦାନନ୍ଦ ଏହିପରି ସବୁ ଭାବି ଯାଉଛନ୍ତି, ହଠାତ୍ ସେଠାରେ ଆସି ପହଞ୍ଚିଗଲେ, କିଶୋର । ଭଦ୍ରଲୋକ ହାର୍ଟରେ ପେସ୍‌ମେକର ଲଗାଇ ଏବେ ଭେଲୋର୍‌ରୁ ଫେରିଛନ୍ତି । ଭେଲୋର ଯିବା ପୂର୍ବରୁ ତାଙ୍କର ଅବସ୍ଥା ସଂକଟାପନ୍ନ ହୋଇ ଉଠିଥିଲା । କିଶୋର ଗୋଟିଏ ବେତ ଚୌକି ଟାଣିଆଣି ତା' ଉପରେ ବସିପଡ଼ିଲେ ଓ ଖଣ୍ଡେ ସିଗାରେଟ୍‌ରେ ନିଆଁ ଲଗାଉ ଲଗାଉ କହିଲେ, "ବୁଝିଲ ସଦାନନ୍ଦ ! ଆସନ୍ତା ନିର୍ବାଚନରେ ମୁଁ ଏଇ ସହରରୁ କଣ୍ଟେଷ୍ଟ କରିବି । ଟିକେଟ ପାଇଁ ତ ଆପ୍ଲାଇ କରିଛି, କେହି ଟିକେଟ୍ ନଦେଲେ ସ୍ୱାଧୀନ ପ୍ରାର୍ଥୀରୂପେ ଠିଆହେବି । କିନ୍ତୁ କଣ୍ଟେଷ୍ଟ କରିବି ନିଶ୍ଚୟ ।"

ମୁଁ ବିସ୍ମୟରେ ପଚାରିଲି, "ତୁମେ ପର ଏବେ ପେସ୍‌ମେକର ଲଗାଇ ଫେରିଛ ?"

କିଶୋର ଖଣ୍ଡେ ସିଗାରେଟ୍‌ରୁ ଧୂଆଁ ଛାଡ଼ି ଉତ୍ତର ଦେଲେ, "ସୋ ହ୍ୱାଟ୍ ! ମୁଁ ବଞ୍ଚିଛି । ଏତିକି ମୋ ପାଇଁ ଯଥେଷ୍ଟ ।"

୧୧/୦୨/୯୦

# ରୋଗଶଯ୍ୟା

ସିଏ ଥିଲେ ସହରର ଜଣେ ବୟୋଜ୍ୟେଷ୍ଠ ସର୍ବସମ୍ମାନିତ ବ୍ୟକ୍ତି । ସେ ମଧ୍ୟ ଥିଲେ ସେଦିନ କଂଗ୍ରେସର ଜଣେ ବିଶିଷ୍ଟ ନେତା । ସେ ମଧ୍ୟ ଥିଲେ ଜଣେ ସୁ-ପ୍ରତିଷ୍ଠିତ ଆଇନ୍‌ଜୀବୀ । ବିଭିନ୍ନ ସମାଜମଙ୍ଗଳ କାର୍ଯ୍ୟରେ ତାଙ୍କର ଯୋଗଦାନ ଥିଲା ଘନିଷ୍ଠ । ବେଳେବେଳେ ବିଭିନ୍ନ କାର୍ଯ୍ୟୋପଲକ୍ଷ୍ୟରେ ମୁଁ ତାଙ୍କ ପାଖକୁ ଯାଉଥିଲି । ସବୁବେଳେ ଦେଖେ, ତାଙ୍କର ସାକ୍ଷାତ ପାଇବା ମୁସ୍କିଲ୍ । ଚାମ୍ବରରେ ଜୁନିୟର ଓ ମହକିଲମାନଙ୍କଠାରୁ ଆରମ୍ଭକରି ଅଭାବୀ କଂଗ୍ରେସକର୍ମୀ ଓ ସାହାଯ୍ୟ ପ୍ରତ୍ୟାଶୀ ଛାତ୍ରମାନଙ୍କର ଭିଡ଼ । ତା'ରି ଭିତରେ ତାଙ୍କ ସହିତ ଦୁଇ ମିନିଟ୍ ପାଇଁ ମୁଁ କଥାବାର୍ତ୍ତା ହେବାର ସୁଯୋଗ ପାଇଲେ କୃତକୃତ୍ୟ ମନେକରେ । କ୍ରମେ ମୋର କର୍ମକ୍ଷେତ୍ର ବଦଳିଗଲା । ତେଣୁ ତାଙ୍କ ସହିତ ଯୋଗାଯୋଗ ମଧ୍ୟ ଆଉ ରହିଲା ନାହିଁ । କେତେବର୍ଷର ବ୍ୟବଧାନ ପରେ ମୁଁ ଥରେ ସହରକୁ ଆସି ଶୁଣିଲି ଯେ ସେ ଶକ୍ତ ବେମାରରେ ଶଯ୍ୟାଶାୟୀ ହୋଇପଡ଼ିଛନ୍ତି । ଦିନେ ତାଙ୍କ ଅବସ୍ଥା ଦେଖିବା ପାଇଁ ତାଙ୍କ ଘରକୁ ଆସିଲି । ଚେମ୍ବର ବନ୍ଦ । ବାହାରେ ତାଲା ପଡ଼ିଛି । ବୁଢ଼ା ମୋହରିରଟି କେବଳ ବାରଣ୍ଡାରେ ଖଣ୍ଡେ ବେଞ୍ଚ୍ ଉପରେ ବଡ଼ ବିଷଣ୍ଣ ଭାବରେ ଏକୁଟିଆ ବସିଥିଲା । ତାଙ୍କୁ ବାବୁଙ୍କ କଥା ପଚାରିବାରୁ ସେ ଉତ୍ତର ଦେଲା, "ବାବୁ ତଳ ମହଲାର ସେଇ ଘରେ ଶୋଇଛନ୍ତି । ଯାଆନ୍ତୁ, ଦେଖିବେ ।"

ଚାମ୍ବରକୁ ଲାଗି ଗୋଟିଏ ବଡ଼ କୋଠରି । ସେ କାର୍ଯ୍ୟକ୍ଷମ ଥିବାବେଳେ ଏଇ କୋଠରିଟି ସଂପୂର୍ଣ୍ଣ ନିର୍ଜନ । ସେଇ ନିର୍ଜନ ପରିତ୍ୟକ୍ତ କୋଠରିରେ ଖଣ୍ଡେ ତକ୍ତପୋଷ ଉପରେ ପଡ଼ିଛି ଗୋଟିଏ ମଇଳା ବିଛଣା । ତା'ରି ଉପରେ ସେ ଏକୁଟିଆ ଆଖିବୁଜି ପଡ଼ିଛନ୍ତି । କୋଠରି ବାହାରେ ମୋର ପାଦଶବ୍ଦ ଶୁଣି ସେ ଆଖିମେଲି ମୋ ଆଡ଼େ ଚାହିଁଲେ ଓ ତା'ପରେ ପୁଣି ଆଖି ବୁଜିଦେଲେ । ଅନ୍ୟ ଦିନମାନଙ୍କ ପରି ସେ ମୋ ନାଁ ଧରି ମୋତେ ଡାକିଲେ ନାହିଁ, କିମ୍ବା କଥାବାର୍ତ୍ତା କଲେ ନାହିଁ । ମୁଁ ସହାନୁଭୂତିପୂର୍ଣ୍ଣ କଣ୍ଠରେ ପଚାରିଲି, "ଆଜି କିପରି ଲାଗୁଛି ?"

ସେ ହଠାତ୍ ବିସ୍ଫୋରଣ କରି ଉଠିଲେ, "ଖବରକାଗଜରେ ମୁଁ ଶକ୍ତ ବେମାର ପଡ଼ିଥିବାର ଖବର ପଢ଼ି ତୁମେ ମୋତେ ଦେଖିବାକୁ ଆସିଚ ପରା !" ତାଙ୍କ କଣ୍ଠରେ କ୍ରୋଧ ଅପେକ୍ଷା ଅଭିମାନର ସ୍ୱର ଥିଲା ବେଶି । ମୁଁ ନିରବରେ ତଳକୁ ମୁଣ୍ଡ ନୁଆଁଇ ବସିଲି ଓ ପୁଣିଥରେ ପଚାରିଲି, "ଆପଣ କିପରି ଅଛନ୍ତି ?" ସେ ମୋ ଆଡ଼େ ଆଖିମେଲି ଚାହିଁଲେ । ପୁଣି ବିସ୍ଫୋରଣ କରି ଉଠିଲେ, "ହ୍ୱାଟ୍ ଡୁ ୟୁ ନୋ ଅଫ୍ ସଫରିଙ୍ଗ୍, ୟଙ୍ଗ୍ ମ୍ୟାନ୍ ।" ତାପରେ ପୁଣି ନୀରବରେ ଆଖି ବୁଜିନେଲେ । ମୁଁ ଅପରାଧୀ ପରି ସେଠାରୁ ନୀରବରେ ବାହାରକୁ ଉଠି ଆସିଲି । ତା'ପର ବାହାର ବେଞ୍ଚ୍ ଉପରେ ବସି ତାଙ୍କ ମୋହରିରଙ୍କୁ ପଚାରିଲି, "ବାବୁଙ୍କର ହେଇଚି କ'ଣ ?" ମୋହରିର ଉତ୍ତର ଦେଲା, "ଡାକ୍ତରମାନେ କିଛି ଜାଣିପାରୁ ନାହାନ୍ତି । ଡାକ୍ତର ଡାକୁଚି ବା କିଏ ?" ମୁଁ ପଚାରିଲି, "ତାଙ୍କ ଘର ଲୋକେ କ'ଣ ତାଙ୍କ ଚିକିତ୍ସାର ବ୍ୟବସ୍ଥା କରୁନାହାନ୍ତି ?" ମୋହରିର କହିଲେ, ତାଙ୍କ ସ୍ତ୍ରୀ ତ କେବେଠାରୁ ମରି ସାରିଛନ୍ତି । ଆଉ ଯେଉଁମାନଙ୍କୁ ସେ ଘରେ ରଖି ମଣିଷ କରିଥିଲେ, ସେମାନେ ଥରେ ଥରେ ଆସି ମୁହଁ ଦେଖାଇ ଚାଲିଗଲେ । କୁଳମଣିବାବୁ ଡାକ୍ତରଙ୍କୁ ଆଣି ମୁଁ ତାଙ୍କର ଯାହା ଚିକିତ୍ସା କରାଉଛି । ସିଏ ବି ବେମାରି ଜାଣିପାରୁ ନାହାନ୍ତି ?" ମୁଁ ନୀରବରେ ସେଠାରୁ ଚାଲିଆସିଲି । ମୋର ବା କ'ଣ କରିବାର ଥିଲା ?

ତା'ପରେ ଅନେକ ଥର ଭାବିଛି, ତାଙ୍କର ସେଇ ଅଭିମାନ ଭରା ପ୍ରଶ୍ନ- ହ୍ୱାଟ୍ ଡୁ ୟୁ ନୋ ଅଫ୍ ସଫରିଙ୍ଗ୍, ୟଙ୍ଗ୍ ମ୍ୟାନ୍ ? ରୋଗଶଯ୍ୟାର ଯନ୍ତ୍ରଣା କ'ଣ କେବଳ ଶରୀର ପୀଡ଼ାର । ଶରୀର ପୀଡ଼ା ସହିତ ଯନ୍ତ୍ରଣା ତ ଅନିବାର୍ଯ୍ୟ ଭାବରେ ଜଡ଼ିତ । ତା' ହେଲେ କେଉଁ ଯନ୍ତ୍ରଣାର କଥା ସେ ମୋତେ ପଚାରୁଥିଲେ ? ଅନେକ ଦିନ ପରେ ମୁଁ ସେ ପ୍ରଶ୍ନର ଉତ୍ତର ପାଇଲି। ସେ ଯନ୍ତ୍ରଣା ହେଉଛି, ନିଃସଙ୍ଗତା ଓ ନିର୍ଜନତାର । କାର୍ଯ୍ୟକ୍ଷମ ଓ ସୁସ୍ଥ ଥିବାବେଳେ ଚାରିପଟେ ବନ୍ଧୁମାନଙ୍କଠାରୁ ଆରମ୍ଭ କରି ଉମେଦୱାରମାନଙ୍କ ପର୍ଯ୍ୟନ୍ତ ସମସ୍ତଙ୍କର ଲାଗିଥାଏ ଭିଡ଼ ଓ କୋଳାହଳ; ମାତ୍ର ଅସୁସ୍ଥ ହୋଇ ଶଯ୍ୟାଶାୟୀ ହେବା ମାତ୍ରେ କେହି ଆଉ ଆସନ୍ତି ନାହିଁ । ଏଇ ନିଃସଙ୍ଗତାର ଯନ୍ତ୍ରଣା ହିଁ ରୋଗଶଯ୍ୟାର ଯନ୍ତ୍ରଣା । ଏହାର ପୀଡ଼ା ଶରୀର ପୀଡ଼ାଠାରୁ ସୁଦ୍ଧା ଅଧିକ । ଦିନେ ଖବରକାଗଜରେ ଦେଖିଲି ତାଙ୍କ ମୃତ୍ୟୁଶଯ୍ୟାର ଫଟୋଚିତ୍ର । ତାଙ୍କ ମୃତ୍ୟୁଶଯ୍ୟା ଚାରିପଟେ ଘେରି ଅସୁମାରି ଲୋକ। ତିଳ ଧାରଣ ପାଇଁ ସୁଦ୍ଧା ସ୍ଥାନ ନାହିଁ । ତାଙ୍କ ଫଟୋଚିତ୍ରଟି ଦେଖି ମୋର ମନେ ପଡ଼ିଗଲା, ଓଡ଼ିଆରେ ଗୋଟିଏ ପ୍ରବଚନ, "ଯାହାକୁ ନଦେଲେ ତୁଣ୍ଡେ, ତାକୁ ଦେଲେ ବେଣା ମୁଣ୍ଡେ ।" ସେ ରୋଗଶଯ୍ୟାରେ ପଡ଼ିଥିବା ବେଳେ ଏମାନଙ୍କ ମଧ୍ୟରୁ କେହି ଯଦି ବେଳେବେଳେ ତାଙ୍କ ନିଃସଙ୍ଗ ରୋଗଶଯ୍ୟା ପାଖକୁ ଆସିଥାଆନ୍ତେ, ତା'ହେଲେ ତାଙ୍କର ଯନ୍ତ୍ରଣା କେତେ ଲାଘବ ହୋଇ ନଥାନ୍ତା ।

୧୮/୦୨/୯୦

# ଏକ ପ୍ରତୀକ୍ଷିତ ମୁହୂର୍ତ୍ତର ଟ୍ରାଜେଡ଼ି

ନିର୍ଜନ ବାରଣ୍ଡାରେ ଖଣ୍ଡେ ଡେକ୍ ଚେୟାର୍ ଉପରେ ମୁଁ ଆସନ୍ନ ସନ୍ଧ୍ୟାର ତରଳ ଅନ୍ଧକାର ଭିତରକୁ ଚାହିଁ ବସିଥିଲି । ସନ୍ଧ୍ୟା ପାଇଁ ତଥାପି ବିଳମ୍ବ ଥିଲା; ମାତ୍ର ମୋର ଦୃଷ୍ଟିଶକ୍ତି ହଠାତ୍ ଖରାପ ହୋଇଯିବା ଦିନୁ ମୋତେ ସବୁବେଳେ ଲାଗେ, ଚାରିଆଡ଼େ ଯେପରି ସନ୍ଧ୍ୟାର ତରଳ ଅନ୍ଧକାର ଘୋଟି ଆସିଲାଣି । କିଏ ଯାଉଛି, ଆଉ କିଏ ଆସୁଛି, ମୁଁ କାହାକୁ ଠିକ୍ ଚିହ୍ନିପାରୁନାହିଁ କିମ୍ବା ଜାଣିପାରୁ ନାହିଁ । ସମସ୍ତେ ଦିଶୁଛନ୍ତି ସିଲହଟ୍‌ର ଛବିପରି । କେହି ଅକସ୍ମାତ୍ ପାଖରେ ବସି କଥାବାର୍ତ୍ତା ଆରମ୍ଭ କଲେ, କଣ୍ଠସ୍ୱରରୁ କେବଳ ତାଙ୍କର ପରିଚୟ ପାଇ, ତାଙ୍କ ସହିତ ମୁଁ ସ୍ୱାଭାବିକ ଭାବରେ କଥାବାର୍ତ୍ତା କରୁଛି । ଢିଙ୍କିଶାଳରୁ ଢେଙ୍କାନାଳ ପର୍ଯ୍ୟନ୍ତ ନାନା କଥା । ମୋର ଦୃଷ୍ଟିଶକ୍ତି ଯେ ହ୍ରାସପାଇଛି, ମୁଁ ସେ କଥା କାହାକୁ ଜଣାଇବାପାଇଁ ସୁଯୋଗ ଦେଉନାହିଁ ।

ସେ ଦିନ ହଠାତ୍ ଜଣେ ପ୍ୟାଣ୍ଟ ଆଉ ହାୱାଇନ୍ ସାର୍ଟ ପିନ୍ଧା ଭଦ୍ରଲୋକ, ମୋଠାରୁ ଅଳ୍ପ ଦୂରରେ ଆସି ଠିଆ ହେଲେ । ତାଙ୍କୁ କିନ୍ତୁ ମୁଁ ଠିକ୍ ଚିହ୍ନିପାରିଲି ନାହିଁ । ମୁଁ ପାଖରେ ଖଣ୍ଡେ ଚୌକି ଉପରେ ବସିବାପାଇଁ ଆମନ୍ତ୍ରଣ କଲି । ସେ ବସିପଡ଼ି କହିଲେ, "ସାନବୋହୂ ମୋତେ ଅନେକ ଦିନ ତଳେ ଖବର ଦେଇଥିଲା, ଆପଣ ମୋତେ ଭାରି ଖୋଜୁଛନ୍ତି ବୋଲି । ଏତେ ଦିନ ମୁଁ ତ ଆସିପାରି ନଥିଲି । ଆଜି କିନ୍ତୁ କାହିଁକି କେଜାଣି ଆପଣଙ୍କ ପାଖକୁ ଆସିବା ପାଇଁ ଇଚ୍ଛା ହେଲା, ଚାଲି ଆସିଲି ।"

"କିନ୍ତୁ ସାନବୋହୂ କିଏ ?" କାହାର ବା ସାନବୋହୂ ? ଏ ଭଦ୍ରଲୋକ ବା କିଏ ? ମୁଁ ତାଙ୍କ କଣ୍ଠସ୍ୱରରୁ ତାଙ୍କର ପରିଚୟ ପାଇପାରୁ ନଥିଲି କିମ୍ବା ସୌଜନ୍ୟ ଦୃଷ୍ଟିରୁ ତାଙ୍କର ପରିଚୟ ମଧ୍ୟ ତାଙ୍କୁ ପଚାରିପାରୁ ନଥିଲି । ମୁଁ ତାଙ୍କ ପାଇଁ ଚା' ମଗାଇଲି । କିନ୍ତୁ ସେ କହିଲେ, "ଆସିବାବେଳେ ସେ ଗୋଟାଏ ଚା'ଦୋକାନରୁ ଚା' ପିଇ ଆସିଛନ୍ତି, ଆଉ ଚା ପିଇବେ ନାହିଁ । ତା'ହେଲେ ତାଙ୍କ ସହିତ କିପରି କ'ଣ କଥାବାର୍ତ୍ତା ଆରମ୍ଭ କରିବି, ମୁଁ ସ୍ଥିର କରିପାରୁ ନଥିଲି । ମୁଁ ପଚାରିଲି, "ଆପଣ ଏଠି ରହୁଛନ୍ତି କେଉଁଠି ?"

ସେ ଉତ୍ତର ଦେଲେ, "ଅନେକ ବର୍ଷ ତଳେ, ଆପଣ ଯେଉଁ ଘରକୁ ଯାଉଥିଲେ, ସେଇ ଘରେ ମୁଁ ପଡ଼ିଛି । ଘର ଅବଶ୍ୟ ଭାଗ ବଣ୍ଟରା ହୋଇଗଲାଣି ।" ସେ କ'ଣ କରୁଛନ୍ତି ବୋଲି ପଚାରିଲି । ସେ ଉଦାସ କଣ୍ଠରେ ଉତ୍ତରଦେଲେ, "ସ୍ତ୍ରୀ ତ ନାହାନ୍ତି, ଚାକିରିରୁ ଭଲେଣ୍ଟିଆରୀ ରିଟାୟାରମେଣ୍ଟ୍ ନେଇଛି । ଝିଅ ଦୁଇଟିଙ୍କୁ ଅବଶ୍ୟ କୌଣସି ମତେ ବିବାହ ଦେଇ ସାରିଛି । ପୁଅ ମଫସଲରେ ତା'ର ମାମୁଁ ଘରେ ରହି ଚାକିରିବାକିରିର ସନ୍ଧାନ କରୁଛି । ପେନ୍‌ସନ୍‌ରେ ଚଳୁଛି । ମୋର କରିବାପାଇଁ ବା ଆଉ ଅଛି କ'ଣ ? ଯୁଆଡ଼େ ଇଚ୍ଛା ହେଲା ସିଆଡ଼େ ବୁଲି ପଳାଉଛି ।"

ମୁଁ ତଥାପି ତାଙ୍କର ପରିଚୟ ପାଇ ପାରିଲି ନାହିଁ । ମୁଁ ତ ଆଗେ ସହରରେ ଅନେକ ଘରକୁ ବୁଲି ଯାଉଥିଲି, ଆଡ଼୍‌ଡ଼ା ଦେଉଥିଲି । ଯା'ଙ୍କ ଘରକୁ ମଧ୍ୟ ଯାଉଥିବି । କିନ୍ତୁ ସେ କାହାଘର, କେଉଁ ଘର, କେଉଁ ଅଞ୍ଚଳରେ, କେଉଁଠି, ତାହା ମୁଁ ସ୍ଥିର କରିପାରୁ ନଥିଲି । ନୀରବରେ ବସି ରହିବା ବ୍ୟତୀତ ମୁଁ ଆଉ କ'ଣ ବା କରନ୍ତି । ସେ ମଧ୍ୟ ସେହିପରି ନୀରବରେ ବସି ରହିଲେ । ତା'ପରେ ହଠାତ୍ ଉଠି କହିଲେ, "ମୁଁ ଏବେ ଆସୁଛି ।"

ସେ ଚାଲିଗଲେ କିନ୍ତୁ ମୋ ପାଇଁ ଛାଡ଼ିଗଲେ ଏକ ଅସମାଧିତ ପ୍ରଶ୍ନ । ମୋ ପାଖକୁ ଆସିଥିଲେ, ମାତ୍ର ତାଙ୍କୁ ମୁଁ ଚିହ୍ନି ପାରିଲି ନାହିଁ କିମ୍ବା ଜାଣି ପାରିଲି ନାହିଁ । ଅଥଚ ତାଙ୍କୁ ଦେଖିବାପାଇଁ ମୁଁ ବଡ଼ ବ୍ୟାକୁଳ ଭାବରେ ତାଙ୍କ ସାନବୋହୂ ହାତରେ ତାଙ୍କ ପାଖକୁ କୁଆଡ଼େ ଖବର ପଠାଇଥିଲି ।

ଏହାର କେତେଦିନ ପରେ ପାଖ ସାହିର ପ୍ରମୀଳା, ଆମ ଘରକୁ ଦିନେ ବୁଲି ଆସିଥିଲା । ପ୍ରମୀଳା ସଂପର୍କରେ ମୋର ଝିଆରୀ ହେବ । ପାଖ ସାହିରେ ତା'ର ଶାଶୂଘର । ପ୍ରମୀଳା ମୋ ପାଖକୁ ଆସି ପଚାରିଲା, "ଭାଇ ସେଦିନ ସନ୍ଧ୍ୟାବେଳେ ଆପଣଙ୍କ ପାଖକୁ ଆସିଥିଲେ ପରା, ଆପଣ ତାଙ୍କୁ ନଚିହ୍ନିଲା ପରି ତାଙ୍କ ସହିତ କଥାବାର୍ତ୍ତା ହେଲେ । ସେଥିପାଇଁ ତାଙ୍କ ମନରେ ଭାରି ଦୁଃଖ ।" ମୋ ମୁଣ୍ଡରେ ହଠାତ୍ ଯେପରି ବଜ୍ର ପଡ଼ିଲା । ପ୍ରମୀଳା ତା'ହେଲେ ତାଙ୍କର ସାନବୋହୂ । ସବୁ କଥା ମୋ ଆଗରେ ଦିବାଲୋକ ପରି ସ୍ପଷ୍ଟ ହୋଇଗଲା । ପ୍ରମୀଳାର ସ୍ୱାମୀ ଯଦୁନାଥଙ୍କର ସେ ବଡ଼ଭାଇ- ଗୋବିନ୍ଦ । ଏଇ ଗୋବିନ୍ଦଙ୍କ ସହିତ ଶୈଶବ ଓ କୈଶୋରରେ ମୋର ଥିଲା ଘନିଷ୍ଠ ବନ୍ଧୁତ୍ୱ । ମାଇନ୍‌ର ସ୍କୁଲ୍‌ରେ ପଢ଼ିବା ବେଳେ ଆମେ ଦୁହେଁ ପୁଣି ଏକା କ୍ଲାସ୍‌ରେ ପାଠ ପଢୁଥିଲୁ । ଥରେ ହିସାବ କରି ଦେଖୁଥିଲି, ଏଇ ସହରରେ ସେ ହିଁ ଥିଲେ ମୋର ଶୈଶବ ଓ କୈଶୋରର ଏକମାତ୍ର ଅଭିନ୍ନ ବନ୍ଧୁ । ତାଙ୍କ ସହିତ ଜଡ଼ିତ ରହିଥିଲା ଅନେକ ନଷ୍ଟାଲଜିକ୍ ସ୍ମୃତି । ଜୀବନର ଗୋଧୂଳିରେ ବର୍ତ୍ତମାନ ଅପେକ୍ଷା ଅତୀତ ହିଁ ମନେହୁଏ ଏକମାତ୍ର ସତ୍ୟ ବୋଲି । ଅତୀତର ହଜିଲା ଦିନଗୁଡ଼ିକର ସେଇସବୁ ବେଦନା ମଧୁର ସ୍ମୃତିର ରୋମନ୍ଥନ ପାଇଁ ମୁଁ

ପ୍ରକୃତରେ ତାଙ୍କୁ ବ୍ୟାକୁଳ ଭାବରେ ଖୋଜୁଥିଲି । ସେଥିପାଇଁ ପ୍ରମୀଳା ହାତରେ ତାଙ୍କ ପାଖକୁ ମଧ୍ୟ ଖବର ପଠାଇଥିଲି । ଖବର ପାଇବାର ବହୁଦିନ ପରେ ସେଦିନ ସେ ଆସିଥିଲେ ଅଥଚ ମୁଁ ତାଙ୍କୁ ଚିହ୍ନିପାରିଲି ନାହିଁ । ସେ ମଧ୍ୟ ହଜିଗଲେ ଅତୀତର ହଜିଲା ଦିନଗୁଡ଼ିକ ପରି ।

ଏ ମଧ୍ୟ ହେଉଛି ଜୀବନର ଅନ୍ୟ ଏକ ଟ୍ରାଜେଡ଼ି; ଯେଉଁ ମୁହୂର୍ତ୍ତଟି ପାଇଁ ମଣିଷ ବ୍ୟାକୁଳ ଭାବରେ ପ୍ରତୀକ୍ଷା କରିଥାଏ, ସେ ମୁହୂର୍ତ୍ତଟି କେତେବେଳେ ଆସି ପୁଣି ଚାଲିଯାଏ, ସେ ତାହା ଜାଣିପାରେ ନାହିଁ ।

୨୪/୦୨/୯୦

# କନିଆଁ-ଦେଖା

ବୈଶାଖ ମାସର ଗୋଟାଏ ଉତ୍ତପ୍ତ ଦ୍ୱି-ପ୍ରହର । ମୁଁ ବାହାର ଦାଣ୍ଡଘରେ ଖଟ ଉପରେ ଶୋଇ କ'ଣ ଖଣ୍ଡେ ବହି ପଢୁଛି । କିନ୍ତୁ ପଢ଼ିବାରେ ମନ ଲାଗୁନାହିଁ । ମୁଁ ଉତ୍କର୍ଣ୍ଣ ହୋଇ ଶୁଣୁଛି, ଆମ୍ବ ତୋଟାରେ ପବନର ନିର୍ଘୋଷ, କପୋତୀମାନଙ୍କର ବାହୁନା ଆଉ ବେଳେବେଳେ କୋଇଲିମାନଙ୍କର କୁହୁଧ୍ୱନି । ଏହି ସମୟରେ ଗଳଦ୍‌ଘର୍ମ ହୋଇ ସେଠାରେ ଆସି ପହଞ୍ଚିଲା ରାଜେନ୍ଦ୍ର । ସେ ମୋଠାରୁ ବୟସରେ ଦୁଇବର୍ଷ ବଡ଼ । ପଢ଼େ ମଧ୍ୟ ମୋଠାରୁ ଗୋଟାଏ କ୍ଲାସ୍ ଉପରେ ରେଭେନ୍‌ସା କଲେଜରେ ସେକେଣ୍ଡ ଇୟରରେ । ବିନା ଉପକ୍ରମଣିକାରେ ସେ ମୋତେ କହିଲା, "ଉଠ ଉଠ ! ଚାଲ ।" ମୁଁ ବିସ୍ମିତ କଣ୍ଠରେ ପଚାରିଲି, "କୁଆଡ଼େ ?" "କନିଆଁ ଦେଖି ଯିବା ।"ସେ ଉତ୍ତର ଦେଲା । ତା'ର ବିବାହ ପ୍ରସ୍ତାବ ପଡ଼ିଛି ବୋଲି ମୁଁ ଅବଶ୍ୟ ଆଗରୁ ଜାଣିଥିଲି । ଖବରଟା ମୋ ପକ୍ଷରେ ଥିଲା ସଂପୂର୍ଣ୍ଣ ଅପ୍ରତ୍ୟାଶିତ ।

ଆଜିକୁ ପଚାଶ ବର୍ଷର ଉର୍ଦ୍ଧ୍ୱକାଳ ତଳେ ଆମ ମଧ୍ୟବିତ୍ତ ସମାଜରେ ଏ ପ୍ରକାର ଚଳଣି ନଥିଲା । କିନ୍ତୁ ଭାବୀ ଜାମାତା କଲେଜ ପଢୁଆ ଥିବାରୁ, ମହାପ୍ରସାଦ ନିର୍ବନ୍ଧ ପୂର୍ବରୁ ବର ନିଜେ ଯାଇ କନିଆଁ ଦେଖିବାରେ କନିଆଁ ପରିବାରର ଆପତ୍ତି ନଥିଲା । ମୁଁ କହିଲି, "ତୁ ତ କନିଆଁ ଦେଖିବୁ, ମୋତେ ସାଙ୍ଗରେ ନେଉଛୁ, କନିଆଁ ପକ୍ଷର ଲୋକେ ମୋତେ ସେଠୁ ବାଡ଼େଇ ତଡ଼ି ଦେବେ ନାହିଁ ତ !" ରାଜେନ୍ଦ୍ର ଉତ୍ତର ଦେଲା, "ମୁଁ ଆଗରୁ କହି ସାରିଛି, ମୋ ସାଙ୍ଗରେ ମୋର ଜଣେ ଘନିଷ୍ଠ ବନ୍ଧୁ ମଧ୍ୟ ଯିବ ।

ସେ ସମୟରେ ମଧ୍ୟବିତ୍ତ ସମାଜରେ ମୋ ବୟସର ଯୁବକମାନଙ୍କ ପକ୍ଷରେ, ଗୋଟିଏ ବାଡ଼ୁଅ ଝିଅ, କେଉଁଠି ଦେଖିବା ମୁସ୍କିଲ୍ ଥିଲା । ସଂପର୍କିତ ପରିବାରମାନଙ୍କରେ ସୁଦ୍ଧା, ବାଡ଼ୁଅ ଝିଅମାନେ ଆଗକୁ ବାହାରୁ ନଥିଲେ । ବୋହୂ ଭୁଆସୁଣୀଙ୍କ ପରି ଅସୂର୍ଯ୍ୟଂପଶ୍ୟା ହୋଇ ସେମାନେ ଘର କଣରେ ରହୁଥିଲେ । ତେଣୁ କନିଆଁ ଦେଖି ଯିବାପାଇଁ ରାଜେନ୍ଦ୍ରର ପ୍ରସ୍ତାବ ମୋ ମନରେ ଆଣି ଦେଇଥିଲା ଗୋଟିଏ ରୋମାଣ୍ଟିକ୍

ଉତ୍ତେଜନା । ମୁଁ ତେଣୁ ଆଉ କାଳ ବିଳମ୍ବ ନକରି, ଦେହରେ ଖଣ୍ଡେ ପଞ୍ଜାବୀ ଗଳାଇ ପକେଇ ସେଇ ନିର୍ଧୂମ ଖରାଟାରେ ରାଜେନ୍ଦ୍ର ସାଙ୍ଗରେ ସାଇକେଲ୍‌ରେ ବାହାରି ପଡ଼ିଲି ।

"କିନ୍ତୁ କନିଆଁ ଘର କେଉଁଠି, କେଉଁ ଗାଁରେ ?" ରାଜେନ୍ଦ୍ର କହିଲା, "ଗାଁର ନାଁ ହଳଦୀବସନ୍ତ । ରାସ୍ତାରୁ ଗଡ଼ି ଗୋଟାଏ ଗହୀର ଭିତରେ ପ୍ରାୟ ଦୁଇକୋଶ ବାଟ ଯିବାପାଇଁ ପଡ଼ିବ ।" ମୁଁ ମଧ୍ୟ ସେଥିପାଇଁ ପ୍ରସ୍ତୁତ । ଅବଗୁଣ୍ଠନବତୀ ଗୋଟାଏ ଅନୂଢ଼ା କନ୍ୟା ମୋ ମନ ଭିତରେ ସୃଷ୍ଟି କରିଥିଲା, କାବ୍ୟିକ ସ୍ପନ୍ଦନ । ହୁଡ଼ାମାଳ ଗହୀର ଭିତରେ ଶଗଡ଼ ଗୁଳାରେ ସାଇକେଲ୍ ଚଳାଉ ଚଳାଉ ମୁଁ ରାଜେନ୍ଦ୍ରକୁ କହିଲି, "ତୋ କନିଆଁ, ତା'ର ଗାଁଟିର ନାଁ ଭାରି ସୁନ୍ଦର, ହଳଦୀ ବସନ୍ତ । କନିଆଁ ନିଶ୍ଚୟ ହୋଇଥିବ ଚମ୍ପକ ବରଣା ! "ରାଜେନ୍ଦ୍ର ଟିପ୍ପଣୀ କଲା, କିନ୍ତୁ ତୁ ତା' ସହିତ ଯଦି ପ୍ରେମରେ ପଡ଼ିଯାଉ, ତା'ହେଲେ ତ ବିପଦ !"

ଏହିପରି ଲଘୁ ଚପଳ ପରିହାସ ମଧ୍ୟରେ ଆମକୁ ଗହୀର ଭିତରେ ସାଇକେଲ୍ ଚଳାଇବାର କଷ୍ଟ କିମ୍ବା ଖରାବେଳର ଉତ୍ତାପ ବାଧୁନଥିଲା। ଗୋଟାଏ ବାଡୁଅ ଝିଅକୁ ଆଖିରେ ଦେଖିବାର ସ୍ୱପ୍ନ ମୋତେ ବିଭୋର କରିଦେଇଥିଲା !

ଆମ୍ବତୋଟା ଆଉ ବାଉଁଶ ଝାଡ଼ ଘେରା ଗୋଟିଏ ଗାଁ ଭିତରକୁ ଆମେ ପଶିଲୁ । ରାଜେନ୍ଦ୍ରର ଭାବୀ ଶ୍ୱଶୁର ହରି କାନଗୋଇଙ୍କ ଘର ଏଇ ଗାଁରେ । ତା' ପଛେପଛେ ସାଇକେଲ୍‌ରେ ଆସି ଗାଁ ଭିତରେ ଆମେ ଗୋଟିଏ ଘର ଆଗରେ ଓହ୍ଲାଇଲୁ । କିନ୍ତୁ ପାହାଚରେ ଚଢ଼ି ପିଣ୍ଡା ଉପରକୁ ଉଠିବାପାଇଁ ଆମକୁ ଲାଜ ମାଡୁଥିଲା । ମୋତେ ଲାଗୁଥିଲା, ମୁଁ ଯେପରି ପରୀକ୍ଷା ହଲ୍ ଭିତରକୁ ପଶୁଛି ! ଆମକୁ ଦେଖି ଦାଣ୍ଡଘର ଭିତରୁ ଜଣେ ଦରବୁଢ଼ା ଲୋକ ଆସି ପଚାରିଲେ, "ତମେ କ'ଣ ପାର୍ବତୀପୁର ଗାଁରୁ ଆସିଛ ?" ରାଜେନ୍ଦ୍ର ଭାରି ସଂକୋଚରେ ତଳକୁ ମୁଣ୍ଡ ନୁଆଁଇ, ଉତ୍ତର ଦେଲା, "ହଁ, ଆଉ ଇଏ ମୋର ସାଙ୍ଗ ।"

ଭଦ୍ରଲୋକ ଆମକୁ ଭିତରକୁ ଡାକିନେଇ ଗୋଡ଼ ଓ ମୁହଁ ଧୋଇବାପାଇଁ ପାଣି ବ୍ୟବସ୍ଥା କରିବାକୁ ତାଙ୍କର ଜଣେ ମୂଲିଆ ଅଥବା ଭୃତ୍ୟକୁ ଡାକିଲେ । ଆମେ ଗୋଡ଼ହାତ ଧୋଇ ଗାମୁଛାରେ ପୋଛିପୋଛି ହେବା ପରେ, ସେ ଆମକୁ ସିଧା ଗୋଟାଏ ଘର ଭିତରକୁ ଡାକିନେଲେ । ଘରଟି ବୋଧହୁଏ ଗୃହସ୍ଥଙ୍କର ଶୋଇବା ଘର । ଝରକା ନଥିବାରୁ, ଭିତରଟା ସେଇ ଉଜ୍ଜ୍ୱଳ ଅପରାହ୍ନରେ ସୁଦ୍ଧା କିପରି ଅନ୍ଧାରିଆ, ଅନ୍ଧାରିଆ । ଗୋଟାଏ ସିନ୍ଦୁକ, ଆଉ ଗୋଟିଏ ପୁରୁଣା କାଳିଆ ପଲଙ୍କ, ସେ ଘରକୁ ଅଧେ ମାଡ଼ି ବସିଥିଲା । ସେ ଘର ଭିତରେ ତଳେ ମାଟି ଚଟାଣ ଉପରେ ପାଣିଛିଞ୍ଚା ଯାଇ ଆମ ପାଇଁ ଦୁଇଖଣ୍ଡି କାର୍ପେଟ ଆସନ ଇତି ମଧ୍ୟରେ ପଡ଼ି ସାରିଥିଲା । କାର୍ପେଟ୍‌ରେ ରଙ୍ଗିନ ସୂତାରେ ଫୁଲପତ୍ରର

ନକ୍ସା ସବୁ ସିଲେଇ କରାଯାଇଛି । ଇଏ କେଜାଣି ରାଜେନ୍ଦ୍ରର କନିଆଁର କାରୁକର୍ମ । ଆମେ ଆସନ ଉପରେ ବସିବା ପରେ ମୁଁ ଆଶା କରୁଥିଲି, କନିଆଁ ନିଜେ ଆସି ଆମ ପାଇଁ କିଛି ଖାଦ୍ୟ ପରିବେଷଣ କରିବ ଓ ସେଇଠି ଶୁଭ ଦୃଷ୍ଟିର ବିନିମୟ ହେବ ! କେଜାଣି କନିଆଁଟା ମଧ୍ୟ ସେଠାରେ ଆମ ଖାଇବା ଶେଷ ପର୍ଯ୍ୟନ୍ତ ଅପେକ୍ଷା କରି ଠିଆହୋଇପାରେ ! କିନ୍ତୁ ଜଣେ ବୁଢ଼ୀ ଦୁଇପଟ ଥାଳିରେ ଆମ ପାଇଁ ଆଣିଲେ ସରୁ ଚକୁଳି, ଛୁଞ୍ଚିପତ୍ର ଆଉ ବାଟିଏ କ୍ଷୀର । ଖାଇବାକୁ ବାଢ଼ିଦେଇ ସେ ଆମଠାରୁ ଅଦୂରରେ ବସି କହିଲେ, “ଲାଜ କରୁଛ କାହିଁକି, ଖାଅ !” ଥାଳି ଶୂନ୍ୟ କରିଦେବାପାଇଁ ଆମକୁ ବିଶେଷ ସମୟ ଲାଗି ନଥିଲା । କିନ୍ତୁ କନିଆଁ କାହିଁ ? ରାଜେନ୍ଦ୍ର ହାତ ଧୋଇବାପାଇଁ ବାହାରକୁ ଉଠିଗଲା । ମୁଁ ମଧ୍ୟ ତା' ପଛେ ପଛେ ଉଠି ଆସିଲି ।

ବାଟରେ ଫେରିବା ବେଳେ ରାଜେନ୍ଦ୍ର ପଚାରିଲା, “କନିଆଁ ତୋ ମନକୁ କେମିତି ପାଇଲା ? ମୁଁ ଆକାଶରୁ ପଡ଼ିବା ପରି ଉତ୍ତର ଦେଲି, କିରେ କନିଆଁ କାହିଁ, ବୁଢ଼ୀଟିଏ ତ ପାଖରେ ବସିଥିଲା । ରାଜେନ୍ଦ୍ର କହିଲା, “ତୁ କନିଆକୁ ଦେଖି ପାରିଲୁ ନାହିଁ ? ସେ ପରା ସେଇ କବାଟ କଣରେ ଠିଆ ହୋଇ ତୋରି ଆଡ଼େ କଣେଇ କଣେଇ ବେଶି ଅନାଉ ଥିଲା ।” ମୁଁ ଗୋଟାଏ ଦୀର୍ଘଶ୍ୱାସ ପକାଇ କହିଲି, “ସତେ ! ମୋତେ ଟିକିଏ ଇସାରା ଦେଲୁ ନାହିଁ !” ରାଜେନ୍ଦ୍ର ଉତ୍ତର ଦେଲା, “ମୁଁ ଭାବିଲି ତୁ ବୋଧେ ତା' ସାଙ୍ଗରେ ଆଖି ମିଳାଉଛୁ !”

ମନଟା ମୋର ହତାଶାରେ ଭାରି ହୋଇ ଉଠିଲା । ବାତୁଅ ଝିଅଟା ମୋ ଆଡ଼େ କୁଆଡ଼େ କଣେଇ କଣେଇ ଚାହୁଁଥିଲା, ଆଉ ମୁଁ ଥରେ ସୁଦ୍ଧା ତା' ସହିତ ଆଖି ମିଳାଇ ପାରିଲି ନାହିଁ ! ଲେଉଟାଣି ବାଟ ଭାରି ଦୀର୍ଘ ଆଉ ଅସରନ୍ତି ମନେ ହେଉଥିଲା ।

୦୪/୦୩/୯୦

# ଷଷ୍ଠ ଦଶକରେ ଓଡ଼ିଶା

ସ୍ଥାନଟିର ନାମ ଏଠାରେ ଉଲ୍ଲେଖ କରୁନାହିଁ । କଟକଠାରୁ ଦକ୍ଷିଣକୁ ପ୍ରାୟ ଶହେ ଷାଠିଏ ମାଇଲ୍ ଦୂର ହୋଇପାରେ । ଇଏ ଷଷ୍ଠ ଦଶକର ଘଟଣା । ସେଠାରେ ଏକ ହାଇସ୍କୁଲ୍‌ରେ ଜିଲ୍ଲା ମାଧ୍ୟମିକ ସ୍କୁଲ୍ ଶିକ୍ଷକ ସଂଘର ବାର୍ଷିକ ଅଧିବେଶନକୁ ମୁଁ ଆମନ୍ତ୍ରିତ ହୋଇ ଯାଇଥିଲି, ମୁଖ୍ୟ ଅତିଥି ରୂପେ । ସଂଘ ପକ୍ଷରୁ ଯେଉଁ ଶିକ୍ଷକ ମୋତେ କଟକରୁ ନେବାପାଇଁ ଆସିଥିଲେ, ତାଙ୍କ ସହିତ ବସ୍‌ରେ ସେଠାକୁ ବାହାରିଲି । ମାସଟା ଏପ୍ରିଲ୍ । ସେ ସ୍ଥାନରେ ପହଞ୍ଚିବା ବେଳକୁ ମଧ୍ୟାହ୍ନର ଖରା ଓ ଉତ୍ତାପ ମଉଳି ଆସିଥିଲା । ଗୋଟାଏ ଛକରେ ବସ୍ କେତେ ମିନିଟ୍ ପାଇଁ ଅଟକିଲା । ସେଠାରେ ଶିକ୍ଷକ ମହାଶୟଙ୍କ ପଛେ ପଛେ ମୁଁ ବସ୍‌ରୁ ଓହ୍ଲାଇ ପଡ଼ିଲି । ଛକଠାରୁ କଳା ରିବନ ପରି ଗୋଟାଏ ପିଚୁ ରାସ୍ତା କେଉଁ ଅନିର୍ଦ୍ଦିଷ୍ଟ ସୀମାନ୍ତ ଆଡ଼େ ଲମ୍ବି ଯାଇଥିଲା, ତାହା ଅନୁମାନ କରି ହେଉ ନଥିଲା । ସେ ରାସ୍ତାଟି ପୁଣି ସଂପୂର୍ଣ୍ଣ ନିର୍ଜନ । ଦୁଇ ପାଖରେ କେବଳ ହୁଡ଼ାମାଳ ବିଲ । ବର୍ଷା ଅଭାବରୁ ସେ ପର୍ଯ୍ୟନ୍ତ ହଳ ହୋଇନାହିଁ । ସେଇ ବିଷଣ୍ଣ ପରିବେଶ ଆଡ଼େ ଚାହିଁ, ମୁଁ ଶିକ୍ଷକ ମହାଶୟଙ୍କୁ ପଚାରିଲି, "ଆପଣଙ୍କ ସ୍କୁଲ୍ ଏଠାରେ କେଉଁଠି, କେତେ ଦୂର ? କିନ୍ତୁ ମୁଁ ତ ଏତେ ବାଟ ଚାଲିଯାଇ ପାରିବି ନାହିଁ । ଏଠାରେ ରିକ୍ସା ମିଳିବ ନାହିଁ ?" କିନ୍ତୁ ସେଠାରେ ରିକ୍ସା ନଥାଏ । ସେ ମୋତେ ସାଇକେଲ୍ କ୍ୟାରିଅର୍‌ରେ ବସାଇ, ନେଇଯିବାର ପ୍ରସ୍ତାବ ଦେଲେ । କିନ୍ତୁ ମୁଁ ତାଙ୍କୁ କହିଲି, "ସାଇକେଲ୍ ପଛରେ ବସି ଯିବାର ଅଭ୍ୟାସ ମୁଁ ଅନେକ ଦିନରୁ ଛାଡ଼ି ଦେଇଛି ।" ଅନ୍ୟ କିଛି ବ୍ୟବସ୍ଥା ହୋଇ ନ ପାରିଲେ ମୁଁ ବରଂ ସେଇଠାରୁ କଟକ ଫେରିଯିବି । ସେ ଉଦବିଗ୍ନ କଣ୍ଠରେ କହିଲେ, "ଆପଣ ତା'ହେଲେ ସେଇ ପାନ ଦୋକାନର ବେଞ୍ଚ୍ ଉପରେ ବସି ଥାଆନ୍ତୁ । ମୁଁ ଗୋଟାଏ ଶଗଡ଼ ନେଇ ଆସୁଛି ।" ଅଗତ୍ୟା ମୋତେ ଛକ ଉପରେ ବସି ରହିବାକୁ ପଡ଼ିଲା । ଦୁଇ ତିନି ଖଣ୍ଡ ସିଗ୍ରେଟ୍ ଟାଣି ସାରିବା ପରେ, ଶିକ୍ଷକ ମହାଶୟ କେଉଁଠୁ ଗୋଟାଏ ମଇଁଷି ଯୋଚା ଶଗଡ଼ ଧରି ଆସି ପହଞ୍ଚିଲେ । କିନ୍ତୁ ଶଗଡ଼ ଉପରକୁ ଉଠିବା

ମଧ୍ୟ ମୋ ପକ୍ଷରେ ଅସମ୍ଭବ । ଅଗତ୍ୟା ଶଗଡ଼ିଆ ଓ ଶିକ୍ଷକ ମହାଶୟ ମୋତେ ଟେକାଟେକି କରି ଶଗଡ଼ ଦଣ୍ଡା ଉପରେ ବସାଇଲେ । ସ୍କୁଲ୍‌ରେ ପହଞ୍ଚିବା ବେଳକୁ, ବିଷୟ ନିର୍ବାଚନ କମିଟିର ଅଧିବେଶନ ଶେଷ ହୋଇ ଯାଇଥିଲା । ସ୍କୁଲର ପ୍ରଧାନ ଶିକ୍ଷକ ଜଣେ ପ୍ରାୟ ୬୦ ବର୍ଷ ବୟସର ଭଦ୍ରବ୍ୟକ୍ତି । ମୋତେ ବହୁ ସୌଜନ୍ୟରେ ଆମନ୍ତ୍ରଣ କରି କହିଲେ, "ଆପଣ ବର୍ତ୍ତମାନ ବିଶ୍ରାମ ନିଅନ୍ତୁ, କାଲି ସକାଳ ନଅଟାରେ ଆମର ସାଧାରଣ ଅଧିବେଶନ ।

ସ୍କୁଲ୍‌ଠାରୁ ଅଳ୍ପ ଛଡ଼ାରେ ଦକ୍ଷିଣମୁହାଁ ଧାଡ଼ିଏ ଚାଳଘର । ସେଇଟା ବୋଧହୁଏ ହଷ୍ଟେଲ୍ । ମାତ୍ର ସେଠାରେ କୌଣସି ଛାତ୍ର ରହୁଥିବା ମୁଁ ଜାଣି ପାରିଲି ନାହିଁ । ସଂପୂର୍ଣ୍ଣ ନିର୍ଜ୍ଜନ । ଅଭ୍ୟର୍ଥନା ସମିତି ପକ୍ଷରୁ କେତେଜଣ ଶିକ୍ଷକ ଆସି ମୋ ପାଇଁ ଜଳପାନର ବ୍ୟବସ୍ଥା କରୁଥିଲେ । ମୁଁ ସେମାନଙ୍କୁ କ୍ଲାନ୍ତ ଭାବରେ ଉତ୍ତର ଦେଲି, "ମୋର ଲୋଡ଼ା ଗୋଟିଏ କପ୍ ଚା' ବା କଫି ଆଉ ବିଶ୍ରାମ ।" ସେମାନେ ମୋପାଇଁ ବାରଣ୍ଡାରେ ଦୁଇ ତିନିଟା ବେଞ୍ଚ୍ ଯୋଡ଼ି ତା' ଉପରେ ଗୋଟିଏ ବିଛଣା କରିଦେଲେ ଓ ତା'ପରେ ମୋତେ କଫି ଆଣି ଦେବା ପରେ ମୋର ଆଉ କିସ ଲୋଡ଼ା ବୋଲି ପଚାରିଲେ । ମୁଁ କୁଣ୍ଠିତ କଣ୍ଠରେ ଉତ୍ତର ଦେଲି, "ଆପଣଙ୍କର ଏଠାରେ କେହି ଜଣେ ଯଦି ମାଲିସ୍ କରିଦେବାକୁ ମିଳନ୍ତେ, ତା'ହେଲେ ଭଲ ହୁଅନ୍ତା । ଦିନ ସାରା ବସ୍‌ରେ ବସି ବସି ଦେହ ବଥା କରୁଛି ।" ସେମାନେ ଚେଷ୍ଟା କରିବେ ବୋଲି କହି ସେଠାରୁ ଚାଲିଗଲେ ଓ କିଛି ସମୟ ପରେ ସେମାନଙ୍କ ମଧ୍ୟରୁ ଜଣେ ଆସି ମୋତେ କହିଲେ, "ଏ ଗାଁର ଯେଉଁ ଲୋକଟି ମାଲିସ କରେ ସେ ପାଖ ଗାଁକୁ ଭାର ନେଇ ଯାଇଛି । ଏଇ ଘଣ୍ଟାଏ, ଅଧଘଣ୍ଟାଏ ଭିତରେ ଆସି ପହଞ୍ଚିଲେ, ସେ ଆସିବ ।"

ଲଣ୍ଠନର ମହଳ ଆଲୁଅର ଲୋକଟିର ଚେହେରା ଠିକ୍ ବାରି ହେଉ ନଥିଲା । ଡେଙ୍ଗା ପତଳା ଦରବୁଢ଼ା ଲୋକଟାଏ । ଆଣ୍ଠୁ ନ ଲୁଚା ଖଣ୍ଡେ ଧୋତି ଓ କାନ୍ଧରେ ଖଣ୍ଡେ ଗାମୁଛା । ଲୋକଟି ଟିକିଏ ପ୍ରଗଲ୍‌ଭ । କେଉଁ ଗାଁରେ କାହାଘରକୁ କେତେବାଟ ସେ ଭାର ନେଇ ଯାଇଥିଲା । ଆଉ ମାଷ୍ଟ୍ରମାନେ ତାକୁ ଖୋଜୁଛନ୍ତି ବୋଲି ଶୁଣିବା ମାତ୍ରେ ସେ କିପରି ମାଲିସ କରିବା ପାଇଁ ଧାଇଁ ଆସିଛି, ବିଶଦ ଭାବରେ ତାହା ବର୍ଣ୍ଣନା କରି ଚାଲିଲା । ତା'ପରେ ସେ ତା'ର କାର୍ଯ୍ୟରେ ଲାଗି ପଡ଼ିଲା । ତା'ର ଆଙ୍ଗୁଠି ସ୍ପର୍ଶରେ ମୋର କ୍ଲାନ୍ତ ସ୍ନାୟୁକେନ୍ଦ୍ରସବୁ ତନ୍ଦ୍ରାରେ ଯେପରି ଘାରି ହୋଇପଡ଼ିଲା । ସେ ହଠାତ୍ ମୋତେ ପଚାରିଲା, "ବାବୁ, ଏବେ ଆମ ଦେଶର ରଜା କିଏ ? ନେହରୁ ପରା ?" ମୁଁ ଉତ୍ତର ଦେଲି, "ନେହରୁଙ୍କ କାଳ ହୋଇଗଲାଣି । ବର୍ତ୍ତମାନ ତାଙ୍କ ଝିଅ ଶ୍ରୀମତୀ ଇନ୍ଦିରାଗାନ୍ଧୀ ହେଉଛନ୍ତି ଦେଶର ପ୍ରଧାନମନ୍ତ୍ରୀ, ମାନେ ରାଜା ।" ମୋର ଉତ୍ତର ଶୁଣି, ତା'ର ହାତ ବନ୍ଦ

ହୋଇଗଲା । ସେ କହିଲା, "ମୋତେ ମିଛ କହୁଛ ଆଜ୍ଞା ! ମାଇପିଲା, ଦେଶ ରଜା ହେବ କେମିତି ! ମୋ ମାଇପିଲା ଦିଟା ଛେଳି ଚରାଉଛନ୍ତି !"

ମୁଁ ତାକୁ ବୁଝାଇ ଦେଲି, ସିଏ ତା'ର ଝିଅମାନଙ୍କୁ ପାଠ ପଢ଼ାଇଥିଲେ ସେମାନେ ଦେଶର ପ୍ରଧାନମନ୍ତ୍ରୀ ହୋଇପାରନ୍ତେ । ଇଏ ହେଉଛି ଆମ ଦେଶର ଆଇନ୍ ଆଉ ସମ୍ବିଧାନ । ତା'ର କିନ୍ତୁ ବିଶ୍ୱାସ ହେଲା ନାହିଁ । ସେ କହିଲା, "ମାଇପିଲାମାନେ ପାଠ ପଢ଼ିବେ ?" ମୁଁ ପଚାରିଲି, "ତମର ଏଇ ଅଞ୍ଚଳର ଏମ.ଏଲ୍.ଏ. କିଏ ?" ସିଏ ଉତ୍ତର ଦେଲା, "କିସ ଜଣାଟି ? ଆମେ ସବୁ ଧାନ କେଣ୍ଡା ଦା'ରେ ଭୋଟ ଦେଇଥିଲୁ ।" ତା' ଆଙ୍ଗୁଠିର ଟିପରେ ମୋ ଆଖିରେ କ୍ରମେ ନିଦ ଆସିଗଲା ।

ତା' ପରଦିନ ସକାଳେ, ସାଧାରଣ ଅଧିବେଶନ ପରେ ସ୍କୁଲ୍‌ର ହେଡ୍‌ମାଷ୍ଟ୍ରେ ମହାଶୟ, ମୋତେ ଆମନ୍ତ୍ରଣ କଲେ ତାଙ୍କ ଘରେ ଭୋଜନ କରିବାପାଇଁ । ମୁଁ ସଙ୍ଗେ ସଙ୍ଗେ ସମ୍ମତ ହୋଇ ତାଙ୍କ ପଛେ ପଛେ ତାଙ୍କ କ୍ୱାଟରକୁ ଅ ! ମାଟି ଖଞ୍ଜାଟିଏ। ବେଶ୍ ପରିଷ୍କାର ପରିଚ୍ଛନ୍ନ । ଆମ ପାଇଁ ପୂର୍ବରୁ ଦୁଇଖଣ୍ଡ ପିଢ଼ା ପଡ଼ିଥିଲା । ଖଣ୍ଡେ ପିଢ଼ା ଉପରେ ହେଡ୍‌ମାଷ୍ଟ୍ର ମହାଶୟ ବସିପଡ଼ି ଅନ୍ୟ ପିଢ଼ାଟିରେ ମୋତେ ବସିବାପାଇଁ ସୌଜନ୍ୟର ସହିତ ଅନୁରୋଧ ଜଣାଇଲେ । ତାଙ୍କ ଘର ପାରଳାଖେମୁଣ୍ଡି ଅଞ୍ଚଳରେ ବୋଲି ମଧ୍ୟ ସେ କହିଲେ । ରୋଷେଇ ଘରୁ ବ୍ରାହ୍ମଣ ପିଲାଟିଏ ପ୍ରଥମେ ଗୋଟିଏ କଂସା ବେଲାରେ ବେଲାଏ ପଖାଳ ଆଣି ହେଡ୍‌ମାଷ୍ଟ୍ରଙ୍କ ପାଖରେ ରଖିଲା । କିନ୍ତୁ ମୋ ଆଗରେ ଗୋଟାଏ ସାନ ଆଲୁମିନିୟମ୍ ଡେକ୍‌ଚିରେ ଡେକ୍‌ଚିଏ ପଖାଳ ଆଣି ରଖିଦେଲା । ତା'ପରେ ସାନ ସାନ କାଚ ପ୍ଲେଟ୍‌ମାନଙ୍କରେ ବଡ଼ି ଭଜା, ଶାଗ ଖରଡ଼ା, ଆଚାର, ଆମ୍ବୁଲ, ସନ୍ତୁଳା ଇତ୍ୟାଦି ଆଣି ପରିବେଷଣ କଲା । ଲକ୍ଷ୍ୟକରି ଦେଖିଲି, ପ୍ଲେଟ୍ ସବୁ ସମାନ ଥିଲେ ହେଁ ହେଡ଼ମାଷ୍ଟ୍ରଙ୍କ ପାଇଁ କଂସାବେଲା ଆଉ ମୋ ପାଇଁ ଆଲୁମିନିୟମ୍ ଡେକ୍‌ଚି ! ରହସ୍ୟଟା ବୁଝି ପାରିଲି ନାହିଁ । ସୌଜନ୍ୟ ଦୃଷ୍ଟିରୁ, ତିନି ଚାରି ଗୁଣ୍ଡା ପଖାଳ ଖାଇ ଖାଇବା ଶେଷ କରିଦେଲି ।

ହେଡମାଷ୍ଟ୍ରଙ୍କ ଖାଇବା ଶେଷ ହେବା ପରେ ହାତ ଧୋଇ ଆମେ ତାଙ୍କ ଦାଣ୍ଡ ଘରକୁ ଆସିଲୁ । ଗୋଟାଏ ଖଟ ଉପରେ ବସିବାପାଇଁ ସେ ମୋତେ ଅନୁରୋଧ କଲେ । ମୁଁ ଖଣ୍ଡେ ସିଗ୍ରେଟ୍ ଟାଣି ତାଙ୍କୁ ମଧ୍ୟାହ୍ନ ଭୋଜନପାଇଁ ଧନ୍ୟବାଦ ଜଣାଇବା ସଙ୍ଗେସଙ୍ଗେ କୌତୂହଳ ସମ୍ଭାଳି ନପାରି ପଚାରିଲି, "ଆଚ୍ଛା ହେଡ୍‌ମାଷ୍ଟ୍ର ମହାଶୟ, ଆପଣଙ୍କ ପାଇଁ ପଖାଳ ତ ବଢ଼ାଗଲା କଂସା ବେଲାରେ, ଆଉ ମୋ ପାଇଁ ଆଲୁମିନିୟମ୍ ଡେକ୍‌ଚିରେ ଡେକ୍‌ଚିଏ ପଖାଳ ବଢ଼ାହେଲା କାହିଁକି ?" ସେ ଈଷତ୍ କୁଣ୍ଠିତ ଭାବରେ ଉତ୍ତର ଦେଲେ, "ବୁଝିଲେ ନାହିଁ ଆଜ୍ଞା, ଆପଣ ପରା ଶୂଦ୍ର !" ମୁଁ କଥାଟା ଅନ୍ୟ ଆଡ଼େ ବୁଲାଇନେଲି ।

ଫେରିବା ବେଳେ ଭାବୁଥିଲି, ଯେଉଁଠି ନାପିତଟିଏ ଦେଶରେ ଜଣେ ମହିଳା ପ୍ରଧାନମନ୍ତ୍ରୀ ହୋଇପାରେ ବୋଲି ମୋତେ ବିଶ୍ୱାସ କରି ପାରିଲା ନାହିଁ, ସେଠାରେ ଜଣେ ଶୂଦ୍ର ପାଇଁ ଆଲୁମିନିୟମ୍ ଡେକ୍‌ଚିରେ ଡେକ୍‌ଚିଏ ପଖାଳ ବାଢ଼ିବାରେ ଅସଙ୍ଗତି ରହିଲା କେଉଁଠି ?

୧୧/୦୩/୯୦

# ଅଭିନୟ ଓ ଫାଙ୍କି

ଭୁବନେଶ୍ୱରରେ ମୋର କ୍ୱାର୍ଟର ବାରଣ୍ଡାରେ ଦିନେ ଅପରାହ୍ନରେ ଏକୁଟିଆ ବସିଛି, ଆଉ ଶୁଣୁଛି ବେଳେବେଳେ ଦୂର ଦିଗନ୍ତ ଆଡୁ ଭାସିଆସୁଥିବା କୋଇଲିର କୁହୁ ଧ୍ୱନି । ବାରଣ୍ଡାର ଗ୍ରୀଲ୍ ଉପରେ ଗୋଟିଏ ମଧୁମାଳତୀ ଲତା ଘଞ୍ଚ ବେ[illegible]ଷ୍ଟି କରିଛି ଯେପରି ପତ୍ର ପଲ୍ଲବ ଆଉ ମଧୁମାଳତୀ ଫୁଲର ପ୍ରାଚୀର । ମାର୍ଚ୍ଚର ଦକ୍ଷିଣ ପବନରେ ବେଳେବେଳେ ମହକି ଉଠୁଛି ମଧୁମାଳତୀର ମହକ ଓ କୋଇଲିର କୁହୁ ଧ୍ୱନି । ବେଳେବେଳେ ଶୁଣୁଛି ଆଉ ଭାବୁଛି କୋଇଲିର କୁହୁ ଅପେକ୍ଷା ତାର ପ୍ରତିଧ୍ୱନି ଅଧିକ ସଂଗୀତମୟ । ଶୁଦ୍ଧ ସଂଗୀତର ଏହା ହିଁ ଲକ୍ଷଣ । ବୀଣା ଅପେକ୍ଷା ଏହାର ମୂର୍ଚ୍ଛନା ଶ୍ରୋତାର ପ୍ରାଣରେ ସୃଷ୍ଟି କରିଥାଏ ଗଭୀରତାର ସ୍ପନ୍ଦନ । ସଂଗୀତର ରସପୁଷ୍ଟି ଘଟିଥାଏ ।

ସଂଗୀତ ମଧ୍ୟରେ ଯେତେ ନୁହେଁ, ତାହାର ମୂର୍ଚ୍ଛନା ମଧ୍ୟରେ, କୋଇଲିର କୁହୁଧ୍ୱନି ମଧ୍ୟରେ ମୁଁ ହଠାତ୍ ଆବିଷ୍କାର କଲି ଶୁଦ୍ଧ ସଂଗୀତର ସେଇ ଲକ୍ଷଣ । ତାହାର ପ୍ରତିଧ୍ୱନି ଦିଗନ୍ତରେ ପ୍ରସାରିତ ହୋଇ ମୋ ପ୍ରାଣରେ ସୃଷ୍ଟି କରୁଥିଲା ଯେପରି ଗୋଟାଏ ଆନନ୍ଦମୟ ଉଲ୍ଲାସ । କିନ୍ତୁ ଆଶ୍ଚର୍ଯ୍ୟ ଭାବରେ ସେ ଆନନ୍ଦ ଏକ ଅବ୍ୟକ୍ତ ବେଦନାର... ହଠାତ୍ ମୋର ମନେ ପଡ଼ିଲା । କୋଇଲିକୁ କେନ୍ଦ୍ରକରି ପିଲାଦିନର ଗୋଟିଏ ଘଟଣା । ପିଲାଦିନୁ ମୋର ଭାରି ଆଗ୍ରହ ଥିଲା ଗୋଟିଏ କୋଇଲି ପୋଷିବାପାଇଁ । ଏ କଥା ମୁଁ କହିଥିଲି, ଆମର ନେତା ପାଣୁଆ ଓରଫ ପ୍ରାଣକୃଷ୍ଣକୁ । ବୟସରେ ସେ ମୋଠାରୁ ଦୁଇବର୍ଷ ବଡ଼ ଥିଲେ ହେଁ ସେ ପର୍ଯ୍ୟନ୍ତ ବର୍ଣ୍ଣମାଳା ସହିତ ପୂର୍ଣ୍ଣ ପରିଚୟ ଘଟିନଥିଲା । ମାତ୍ର ବାହାର ଦୁନିଆର ଅନେକ ଖବର ମାଲୁମ ଥିଲା ତାକୁ । ଉଦାହରଣ ସ୍ୱରୂପ ଆମ ଭିତରୁ ସେଇ ପ୍ରଥମ ଦେଖାଥିଲା, ରେଳଗାଡ଼ି କିପରି ଧୂଆଁ ଉଡ଼ାଇ ଯାଏ, ସେ ମଧ୍ୟ ଦେଖିଥିଲା, ଆମ ଗାଁ ପାଖରୁ ଦୁଇ ମାଇଲ୍ ଛଡ଼ାରେ ରାସ୍ତାକଡ଼ର ବଜାରରେ ଗୋଟାଏ ମଟର ବସ । ଗାଁରେ ଆମେ ରେଳ ବା ବସ ଦେଖିବା ତ ଦୂରର କଥା, ସେ କଥା ଚିନ୍ତା ମଧ୍ୟ କରିପାରୁ ନଥିଲୁ । ସେଇ ପାଣୁଆକୁ ଦିନେ ଅନୁରୋଧ କଲି କେଉଁଠୁ ଗୋଟିଏ କୋଇଲି ଛୁଆ

ମୋତେ ଧରି ଆଣିଦେବା ପାଇଁ । ମୁଁ ତାଙ୍କୁ ପଞ୍ଜୁରୀରେ ପୋଷିବି । କିନ୍ତୁ ପାଣୁଆ ଗୋଟିଏ ବିଜ୍ଞୋଚିତ ଗାମ୍ଭୀର୍ଯ୍ୟରେ ଉତ୍ତର ଦେଇଥିଲା, "ତୁ କ'ଣ କୋଇଲି ପୋଷି ପାରିବୁ ? ତାକୁ ଖାଇବାକୁ ଦେବ କ'ଣ ? ସେ ଖାଲି ମହୁପିଏ ଓ ଫୁଲ ପାଖୁଡ଼ା ଖାଏ । ସେଇଥିପାଇଁ ତ ତା'ର ସ୍ୱର ଏଡ଼େ ମିଠା । ତୁ ସେସବୁ ପାଇବୁ କେଉଁଠୁ ?" ତା'ପରେ କୋଇଲିଟିଏ ପୋଷିବାର ଚିନ୍ତା ମୁଁ ଛାଡ଼ି ଦେଇଥିଲି । କିନ୍ତୁ ସେହିଦିନୁ ମୋର ଗୋଟିଏ ନିର୍ବୋଧ ଧାରଣା ରହିଆସିଥିଲା ଯେ କୋଇଲି ପ୍ରକୃତରେ ମହୁପିଇ ଓ ବସନ୍ତ ଋତୁରେ ଫୁଲକୁ ଖାଇ ବଞ୍ଚେ । ତା' ନହେଲେ ତା'ର କଣ୍ଠ ସ୍ୱର ଏମିତି ସଂଗୀତମୟ ହୁଅନ୍ତା କିପରି ? ଏହିପରି ଖାପଛଡ଼ା ଭାବରେ ନାନା ସ୍ମୃତି ଓ ବିସ୍ମୃତି ମନେ ମନେ ଭାବି ଚାଲିଛି । ଏଇ ସମୟରେ ମଧୁମାଳତୀର ଲତା ପ୍ରାଚୀରରୁ ଗୋଟାଏ ଖସ୍‌ଖସ୍ ଶବ୍ଦ ଶୁଭିଲା । ଚାହିଁ ଦେଖିଲି ଅଣ୍ଡିରା କୋଇଲିଟାଏ ଲତା ଗହଳି ମଧ୍ୟରେ ଡେଇଁ ଡେଇଁ କୀଟପତଙ୍ଗ ସବୁ ଟକ୍‌ଟାକ୍ ଗିଳି ଚାଲିଛି । ତା'ର ଆଖି ଦୁଇଟା ଗାଢ଼ ଲାଲ୍ । କୀଟପତଙ୍ଗ ସବୁ ଟକ୍‌ଟାକ୍ ଗିଳିବାବେଳେ ତା'ର ଯାନ୍ତବ କ୍ଷୁଧାର ବିଭତ୍ସତା ଲକ୍ଷ୍ୟ କଲେ କେହି ଚିନ୍ତା ସୁଦ୍ଧା କରିପାରିବ ନାହିଁ ଯେ ଏ କୋଇଲି ପୁଣି କୁହୁ ଧ୍ୱନି ଭିତରେ ସ୍ୱର୍ଗୀୟ ସଂଗୀତ ସୃଷ୍ଟି କରିପାରେ । କୋଇଲି ଯେ ଖାଲି ମହୁ ପିଏ ତା' ଆଦୌ ନୁହେଁ । ଅନ୍ୟ ଚଢ଼େଇମାନଙ୍କ ପରି ଏପରିକି କାଉ ପରି ସୁଦ୍ଧା ତା'ର ମଧ୍ୟ ଯାନ୍ତବ କ୍ଷୁଧା ରହିଛି । ଯଦ୍ୟପି ତା' କଣ୍ଠସ୍ୱରରେ ଅଛି ଅନନ୍ୟତା । କିନ୍ତୁ ସେହି ଯାନ୍ତବଟା ସ୍ୱର୍ଗୀୟ କୁହୁଧ୍ୱନି... ମୁଁ କିନ୍ତୁ ତାହା ସେଇ କୋଇଲିର କୁହୁଧ୍ୱନି ହୋଇପାରେ ବୋଲି ଆଦୌ ବିଶ୍ୱାସ କରିପାରୁ ନଥିଲି ।

ସେଦିନର ଏଇ ଅନୁଭୂତି ଜଣେ ବନ୍ଧୁଙ୍କଠାରେ ବର୍ଣ୍ଣନା କରୁଥିଲି । ମୋ କଥା ଶୁଣି ସାରି ସେ ଦୋଦୋ ହସି ଉଠି କହିଲେ, "କେବଳ ଗୋଟାଏ ଜୀବ ମହୁ ଖାଇ ବଞ୍ଚେ, ଆଉ ସେ ହେଲା ବାଘୁଆ ମହୁମାଛି । କିନ୍ତୁ ତା'ର ଝଙ୍କାର ଯେତିକି ଭୀଷଣ, ତା'ର ଦଂଶନ ମଧ୍ୟ ସେତିକି ଜ୍ୱାଳାବହ ।" ଏ ପର୍ଯ୍ୟନ୍ତ ମୁଁ ଏଇ ବିରୋଧାଭାସର କୌଣସି ସମାଧାନ ଖୋଜି ପାଇନାହିଁ । ଏହି ବିରୋଧାଭାସ ହିଁ ସମ୍ଭବତଃ ହେଉଛି ଆର୍ଟ, ସେଥିପାଇଁ ଅଧିକାଂଶ କବି ଓ ଲେଖକ ଯେଉଁ ସବୁ ସୁନ୍ଦର ସୁନ୍ଦର କବିତା ଓ କାହାଣୀ ଲେଖି ଥାଆନ୍ତି ସେମାନଙ୍କର ବ୍ୟକ୍ତିଗତ ଜୀବନ ତାହାର ସଂପୂର୍ଣ୍ଣ ବିପରୀତ । ସେଥିପାଇଁ ମଧ୍ୟ ରାଜନୈତିକ ନେତା ବା ଧର୍ମଗୁରୁମାନେ ଯେଉଁସବୁ ଶ୍ରୁତିମଧୁର ଉଦ୍‌ବୋଧନ ଦେଇଥାଆନ୍ତି, ସେମାନଙ୍କ ବ୍ୟକ୍ତିଗତ ଜୀବନରେ ତାହାର ଅନୁଶୀଳନ ନଥାଏ । ସବୁ ଗୋଟାଏ ଅଭିନୟ । ସବୁ ଗୋଟିଏ ଫାଙ୍କି ।

୧୮/୦୩/୯୦

# ଏକ ବିସ୍ମୃତ ମୂଲ୍ୟବୋଧ

ସେଦିନ ଗୋଟାଏ ରବିବାରିଆ ମଧ୍ୟାହ୍ନ । ବାକ୍‌ଦେବୀ ମେସ୍‌ର ଅନ୍ତେବାସୀ ଅମଲାମାନେ ଟିକିଏ ଡେରିରେ ମଧ୍ୟାହ୍ନ ଭୋଜନ ସାରି ଘୋଡ଼ିଘାଡ଼ି ହୋଇ ଶୋଇପଡ଼ିଲେଣି; ଅଥବା ଶୋଇବାର ଉପକ୍ରମ କରୁଛନ୍ତି । ମାସଟା ମାର୍ଗଶିର । ବେଶ୍ ଶୀତୁଳିଆ ଲାଗୁଛି । ଆମେ କେତେଜଣ କଲେଜର ସହପାଠୀ ବ୍ରିଜ୍ ଖେଳିବାପାଇଁ ତାସ୍ ଫେଣ୍ଟାଫେଣ୍ଟି ଆରମ୍ଭ କରୁଛୁ । ଏହିପରି ସମୟରେ ମୋର ଏକାଧାରରେ ପାଚକ ଓ ଭୃତ୍ୟ ଦଧୀ ମୋତେ ଆସି ଖବର ଦେଲା, "ବାହାରେ ଦୁଇଜଣ ଲୁଙ୍ଗି ପିନ୍ଧା ମିଆଁ ତୁମକୁ ଡାକୁଛନ୍ତି ।"

ହଠାତ୍ ଏ ନିଛାଟିଆ ଖରାବେଳଟାରେ ଦୁଇଜଣ ଲୁଙ୍ଗିପିନ୍ଧା ମିଆଁ ମୋତେ ଖୋଜୁଛନ୍ତି କାହିଁକି ? ପୁଣି ମୋ ଠାରେ ସେମାନଙ୍କର କି କାମ ? ଭାବି ସ୍ଥିର କରିପାରିଲି ନାହିଁ । ଦଧୀ ବହୁବର୍ଷ ଧରି କଟକ ସହରରେ ରହିଲାଣି । ସେ କହିଲା, "ସିଏ ନସ୍‌ରା ଆଜ ମକ୍‌ରା । କଟକର ଦୁଇଟା ବଡ଼ ଗୁଣ୍ଡା । ତୁମେ ଜଲ୍‌ଦି ଯାଅ । ନୋଇଲେ ସେମାନେ ଭିତରକୁ ପଶି ଆସିବେ ।" ମୁଁ ବିବ୍ରତ ଭାବରେ ଅଗତ୍ୟା ବାହାରକୁ ଆସି ମନ ଭିତରେ ଆଶଙ୍କା ଓ ଭୟ ସତ୍ତ୍ୱେ ଈଷତ୍ କଡ଼ା ସ୍ୱରରେ ପଚାରିଲି, "ମୋ'ଠି ତୁମମାନଙ୍କର କି କାମ ?" ସେ ଦୁଇଜଣଙ୍କ ଭିତରୁ ଗେଡ଼ା ଲୋକଟି ନସ୍‌ରା । ଦେହରେ ପିନ୍ଧିଥିଲା ଖଣ୍ଡେ କୁର୍ତ୍ତା, ଆଉ ବେକରେ ଝୁଲୁଥିଲା କଳାଫିତାରେ ଗୋଟିଏ ବଡ଼ ମାଦୁଲି । ଏହାକୁ ମୁଁ ଆଗରୁ ଚିହ୍ନିଥିଲି । କିନ୍ତୁ ତା'ର ସାଥୀଟିକୁ ଜାଣିନଥିଲି କିମ୍ବା ଚିହ୍ନି ନଥିଲି । ଏବେ ତିନିକୋଣିଆ ବଗିଚା ଅଞ୍ଚଳରେ ବକ୍‌ସି ବଜାର ରାସ୍ତାକଡ଼ରେ ଯେଉଁଠି ଅନ୍ନପୂର୍ଣ୍ଣା 'ବି' ଗ୍ରୁପ୍‌ର ଜରାଜୀର୍ଣ୍ଣ ଥିଏଟର ରହିଛି, ଆଜକୁ ପଚାଶ ବର୍ଷ ତଳେ ସେଠାରେ ଥିଲା, ସହରର ଏକମାତ୍ର ସିନେମା ହଲ୍- ହଲ୍‌ମୁଖ ଟକିଜ୍ । ସେକାଳର ଅନେକ ସ୍ମରଣୀୟ ବଙ୍ଗଳା ଫିଲ୍ମ ମୁଁ ଦେଖିଛି ସେଇ ହଲ୍‌ରେ । ହଲ୍‌ମୁଖ ଟକିଜର ଗେଟ୍ ପାଖରେ ରାସ୍ତାକଡ଼ରେ ଗୋଟାଏ କାଠ କ୍ୟାବିନ୍‌ରେ ନସରା ଖୋଲିଥିଲା, ପାନ, ବିଡ଼ି, ସିଗାରେଟ୍, ସୋଡ଼ା ଓ

ଲିମୋନେଡ଼୍‌ର ଦୋକାନ । ସେ ଯେ ସହରର ଗୋଟିଏ ଭୟଙ୍କର ଗୁଣ୍ଡାଥିଲା ତା'ର ଚେହେରାରୁ ତାହା ଆଦୌ ଜଣାପଡୁ ନଥିଲା । ଧ୍ୟାନସ୍ଥ ପରି ସେ ତା' କ୍ୟାବିନ୍‌ରେ ବସି ସବୁବେଳେ ତଳକୁ ମୁହଁ ପୋତି ଖିଲିପାନ ତିଆରି କରୁଥିଲା ଓ ତା'ରି ମଝିରେ କେହି ବିଡ଼ି, ସିଗାରେଟ୍ ଅଥବା ସୋଡ଼ା ବା ଲିମୋନେଡ଼୍ ମାଗିଲେ ଚୁପ୍‌ଚାପ୍ ସେମାନଙ୍କ ଆଡ଼କୁ ତାହା ବଢ଼େଇ ଦେଉଥିଲା । କାହା ସାଙ୍ଗରେ ସେ ପ୍ରାୟ କଥାବାର୍ତ୍ତା କରୁନଥିଲା । କିନ୍ତୁ ନିରେଖି ଦେଖିଲେ ତା' ଦେହରେ ଲକ୍ଷ୍ୟ କରିହେଉଥିଲା, ଅନେକ କ୍ଷତ ଚିହ୍ନ । ମୋର ଜଣେ କଟ୍‌କୀ ସାଙ୍ଗ ମୋତେ ଥରେ କହିଥିଲା, ନସ୍‌ରା ଦେହରେ ଏସବୁ ଛୁରୀ ଭୁସାର ଦାଗ । ଛୁରୀ ଭୁସାଭୁସିରେ ନସ୍‌ରା ମଧ୍ୟ କମ୍ ଓସ୍ତାଦ ନଥିଲା । ସେଇ ନସ୍‌ରାକୁ ଏଇ ନିଛାଟିଆ ଖରାବେଳଟାରେ ଦେଖି, ମୁଁ ପ୍ରକୃତରେ ଶଙ୍କିତ ହୋଇଉଠିଲି ।

ନସ୍‌ରା ମୋ ଆଡ଼େ କଟମଟ ଆଖିରେ ଚାହିଁ କଟ୍‌କୀ ଭାଷାରେ କହିଲା, "କାଲି ଲାଲ୍‌ବାଗ ଥାନାରେ ଚିହ୍ନଟ ପରେଡ଼ ହେବ । ତମେ ଆଉ ତୁମର ଦୁଇଜଣ ସାଙ୍ଗ ହାମ୍‌କୁ ଚିହ୍ନାଇ ଦେଇଛ ତ, ନତିଜା ଖତରନାକ୍ ହବ ।" ଇଏ ଥିଲା ତା'ର ଅଲ୍‌ଟିମେଟମ୍ । ତା'ପରେ ଆଉ କିଛି ନ କହି ସେ ଦୁଇଜଣ ସେଠାରୁ ଚାଲିଗଲେ । ଏହାପରେ ଆମ ବ୍ରୀଜ୍ ଖେଳ ସେଇଠାରେ ବନ୍ଦ ରହିଲା । ପୋଲିସ୍ ପ୍ରକୃତରେ ଆମକୁ ତା' ପରଦିନ ୧୧ଟା ବେଳେ ଚିହ୍ନଟ ପ୍ୟାରେଡ଼୍‌କୁ ଡାକିଥିଲା, ସେଦିନର ଏକ ଘଟଣାରେ ଆସାମୀମାନଙ୍କୁ ଚିହ୍ନଟ କରିବାପାଇଁ। ଏମାନେ କିନ୍ତୁ ତାହା ଜାଣିଲେ କିପରି ? ନିଶ୍ଚୟ ପୋଲିସ୍‌ଠାରୁ । ପୋଲିସ୍‌ଠାରୁ ମଧ୍ୟ ସେମାନେ ସଂଗ୍ରହ କରିଥିଲେ ଆମ ମେସ୍‌ର ଠିକଣା ।

ଘଟଣାଟି ଘଟିଥିଲା, କାର୍ତ୍ତିକ ପୂର୍ଣ୍ଣିମା ଦିନ ବାଲିଯାତ୍ରା ରାତିରେ । ଆମେ ତିନିଜଣ ସାଙ୍ଗ ବାଲିଯାତ୍ରାରେ ବୁଲାବୁଲି କରିବା ପରେ ରାତି ପ୍ରାୟ ଦୁଇଟା ବେଳେ ନିର୍ଜନ ବକ୍‌ସିବଜାର ରାସ୍ତା ଦେଇ ଫେରୁଥିଲୁ । ଏବେ ଯେଉଁଠାରେ ରାଜତରଙ୍ଗିଣୀ ସିନେମା ହଲ୍ ଓ ଓରିଏଣ୍ଟା ହୋଟେଲ୍ ହୋଇଛି, ସେଦିନ ତାହା ଥିଲା ନର୍ଦ୍ଦମା ଜଳପୂର୍ଣ୍ଣ ଏକ ବିରାଟ ପୁଷ୍କରିଣୀ । ତା' ସାମନାରେ ଧାଡ଼ିଏ ଚାଳଘର ଛଡ଼ା ଆଉ ସେଠାରେ ଅନ୍ୟ କିଛି ନଥିଲା । ଆମେ ଶୁଣିଥିଲୁ, ସେଠାରେ କୁଆଡ଼େ କେତେକ ଅଣ-ଓଡ଼ିଆ ବେଶ୍ୟା ରହୁଥିଲେ । ଏବେ ଯେଉଁଠାରେ ପ୍ରଭାତ ସିନେମା ହୋଇଛି, ସେ ସ୍ଥାନଟା ସେଦିନ ଥିଲା ଗୁଳ୍ମାକୀର୍ଣ୍ଣ । ଆମେ ଚାଲି ଚାଲି ସେଇଠାରେ ହୋଇଛୁ, ରାତିର ନିଶୂତି ଭିତରେ ହଠାତ୍ ଶୁଣିଲୁ ଗୋଟିଏ ନାରୀକଣ୍ଠର ଆର୍ତ୍ତ ଚିତ୍କାର । ରଣିଫୁଲ ପରି ଜହ୍ନ ଆଲୁଅରେ ଦେଖିଲୁ, ଦୁଇଜଣ ଲୋକ ସେଇ ଚାଳଘର ଧାଉଡ଼ୀର ଗୋଟାଏ ଘର କବାଟରେ ଧକ୍‌କା ପରେ ଧକ୍‌କା ମାରୁଛନ୍ତି, ଆଉ ଖୋଲିବା ପାଇଁ ମାତାଲ୍ କଣ୍ଠରେ ଚିତ୍କାର କରୁଛନ୍ତି । ସେଇ ଘର ଭିତରୁ ଶୁଭୁଚି, ଅସହାୟ ନାରୀକଣ୍ଠର ଚିତ୍କାର । ଆମ ଭିତରେ ରୋମାଣ୍ଟିକ୍

ସିଭାଲରୀ ଚେଇଁ ଉଠିଲା । ଆମେ ସେଇଠାରୁ ଦଉଡ଼ି ଦଉଡ଼ି ପଛକୁ ଯାଇ ବକ୍‌ସିବଜାର ଛକରେ ଡ୍ୟୁଟିରେ ଥିବା ଦୁଇଜଣ ପୋଲିସ୍ କନେଷ୍ଟବଲଙ୍କୁ ଏ ଘଟଣା ଜଣାଇ ଦେଲୁ ଓ ସେମାନଙ୍କୁ ଆମର ପରିଚୟ ଦେଲୁ । ସେମାନେ ଅଳ୍ପ ସମୟ ମଧ୍ୟରେ ସେଠାରେ ପହଞ୍ଚି ସେ ଦୁଇଜଣଙ୍କୁ ଲାଲବାଗ ଥାନାକୁ ନେଇ ଚାଲିଗଲେ । ଅବଳାଟିକୁ ଏକ ବିପଦଜନକ ପରିସ୍ଥିତିରୁ ରକ୍ଷା କରିପାରିଥିବା ହେତୁ ଆମେ ସବୁ ମନ ଭିତରେ ଗୋଟିଏ ପୁରୁଷାର୍ଥ ଅନୁଭବ କରୁଥିଲୁ । କାଲି ହେବ ସେମାନଙ୍କର ଚିହ୍ନଟ ପ୍ୟାରେଡ଼୍ । ଆଜି ସେଥିପାଇଁ ନସ୍‌ରା ତାର ସାଙ୍ଗ ମକରାକୁ ଧରି ଆସିଥିଲା ଆମକୁ ଅଲ୍‌ଟିମେଟମ୍ ଦେବାପାଇଁ । ଅନେକ ଆଲୋଚନା ପରେ ସ୍ଥିର ହେଲା, 'ଆପେ ବଞ୍ଚିଲେ ବାପର ନାଁ' । ଆମେ ତେଣୁ ସେମାନଙ୍କୁ ନଚିହ୍ନାଇ ଭୁଲ ଲୋକଙ୍କୁ ଚିହ୍ନାଇ ଦେବା ଓ ରାତିରେ ଆମେ କାହାକୁ ଠିକ୍ ଭାବରେ ଦେଖିପାରି ନାହୁଁ ବୋଲି ଚିହ୍ନଟ ପ୍ୟାରେଡ଼୍‌ରେ କହିବା। ତା' ପରଦିନ ଚିହ୍ନଟ ପ୍ୟାରେଡ଼୍ ବେଳେ ସେଇଆ ମଧ୍ୟ କଲୁ ।

ଏହାର କେତେଦିନ ପରେ ଦିନେ ସେଇପରି ରବିବାରିଆ ଖରାବେଳେ ଦଧୀ ଅସି କହିଲା, "ସେଇ ନସ୍‌ରା ଆଉ ମକରା ପୁଣି ମୋତେ ଖୋଜୁଛନ୍ତି ।" ମୋ ଦେହ ଭୟ ଓ ଆଶଙ୍କାରେ ଶୀତେଇ ଉଠିଲା । ପୁଣି କ'ଣ ହେଲା । ଆମେ ତ ସେମାନଙ୍କୁ ଚିହ୍ନଟ କଲୁ ନାହିଁ । ଭାବିଥିଲୁ, କଥାଟା ସେଇଠାରେ ଶେଷ ହୋଇଗଲା । ପୁଣି କ'ଣ ? ବୋଧହୁଏ ଆମେ ପୋଲିସ୍‌ରେ ଖବର ଦେଇଥିବା ହେତୁ ସେମାନେ ଆସିଛନ୍ତି, ଆମ ଉପରେ ଅକସ୍ ନେବାପାଇଁ । ଆମେ ତିନି ଜଣ ବାହାରକୁ ଆସିଲୁ । ଏକୁଟିଆ ଆସିବାକୁ ମୁଁ ଭରସି ପାରୁ ନଥିଲି । ନସ୍‌ରା ଆଉ ମକରା ଏକା ସାଙ୍ଗରେ କହିଲେ, "ଆଜି ବକ୍‌ସିବଜାର ମାର୍କେଟରେ ଆମେ ତମକୁ ଦାଓ୍ୱତ୍ ଦବୁ । ତମେ ତିନିଜଣ ଜରୁର୍ ଆସିବ ।" "ଅନେ[illegible] ଆଲୋଚନା ପରେ ଆମେ ସ୍ଥିର କଲୁ, କପାଳରେ ଯାହା ଥିବ ହବ, ନ ଗଲେ ମଧ୍ୟ ବିପଦ ରହିଛି ।

ବକ୍‌ସିବଜାର ମାର୍କେଟ କହିଲେ, ସେତେବେଳେ ବିଲ୍‌ମୋରିଆ ଷ୍ଟୋର୍ ସାମନାରେ ସାମନା ସାମନି ହୋଇ ଗୋଟିଏ ସରୁ ଗଳି । ଦୁଇ ପାଖରେ ଦୁଇ ଧାଡ଼ି ପକ୍‌କା ଘର । ଘର ସବୁ ଅପ୍ରଶସ୍ତ । ତା'ରି ଭିତରେ କେତେଟା ମୁସଲମାନ ହୋଟେଲ୍ ଆଉ ଗୋଟିଏ ଦୁଇଟା ଦର୍ଜୀ ଦୋକାନ । ସନ୍ଧ୍ୟାବେଳେ କେବଳ ପରିବାବିକାଳିମାନେ ପରିବା ବିକନ୍ତି । ଆମେ ଆଲିବାବାର ଗୁମ୍ଫା ପରି ଦିଶୁଥିବା ସେଇ ମାର୍କେଟ୍ ଭିତରେ ପଶିବୁ କି ନାହିଁ, ଦୋ ଦୋ ପାଞ୍ଚ ହେଉଥିଲୁ । ଏହା ଭିତରେ ଆମ ପାଇଁ କି ବିପଦ ଲୁଚି ରହିଛି, କିଏ ଜାଣେ । ମକରା ଆମକୁ ସେଠାରେ ଦେଖି ମାର୍କେଟ୍ ଭିତରକୁ ବେଶ୍ ସୌଜନ୍ୟର ସହ ଡାକିନେଲା । ଗୋଟାଏ କଳା କିଟ୍ କିଟ୍ ହୋଟେଲ୍ । ଆମେ ବାଧ୍ୟ ହୋଇ ତା'

ଭିତରକୁ ଗଲୁ । ଭିତରେ ଗୋଟାଏ ଟେବୁଲ୍ ଉପରେ ଖଣ୍ଡେ ସଫା ଧଳା ଚାଦର ବିଛାହୋଇଛି । ଏଇଠାରେ ବ୍ୟବସ୍ଥା ହୋଇଛି ବୋଧହୁଏ ଆମପାଇଁ ଦାଓ୍ୱତ୍ ବା ଭୋଜି । ନସ୍‌ରା ମଧ୍ୟ ସେଠାରେ ଉପସ୍ଥିତ ଥିଲା । ଆମେ ଅନନ୍ୟୋପାୟ ଭାବରେ ଖଣ୍ଡେ ବେଞ୍ଚ ଉପରେ ବସିବା ପରେ ଟେବୁଲ୍ ଉପରେ ଆମ ପାଇଁ କଲର କରା ପ୍ଲେଟ୍‌ମାନଙ୍କରେ ପରିବେଷିତ ହେଲା ପଲଉ, କୁର୍‌ମା, ମାଂସ ଚାମ୍ ଆଉ ଲିଭର ଭଜା ଇତ୍ୟାଦି । ଖାଦ୍ୟ ଥିଲା ଅତ୍ୟନ୍ତ ସୁସ୍ୱାଦୁ । ପ୍ରକୃତରେ ସେଦିନ କଟକରେ ମୁସଲମାନ ରେଷ୍ଟୋରାଁ ଓ ହୋଟେଲ୍‌ମାନଙ୍କରେ ମିଳୁଥିଲା ସୁସ୍ୱାଦୁ ଖାଦ୍ୟ । ଆମେ ପେଟଭରି ଖାଇଲୁ ।

ଆମକୁ ବିଦାୟ ଦେବାପାଇଁ ନସ୍‌ରା ଆଉ ମକରା ବିଲମୋରିଆ ଷ୍ଟୋର୍ ପର୍ଯ୍ୟନ୍ତ ଆମ ସାଙ୍ଗରେ ଆସିଲେ । ଆମେ ଫେରିବା ପାଇଁ ସାଇକେଲ୍‌ରେ ଉଠିବା ବେଳେ ସେମାନେ ଆମକୁ କହିଲେ, "ଏଣିକି ତମେ ବେଫିକର ରହ ବାବୁ । ତମ ଉପରେ କିଛି ଖତରା ଆସିଲେ, ସାଙ୍ଗେ ସାଙ୍ଗେ ଆମକୁ ଖବର ଦେଇଦବ । ତା'ପରେ ଆମେ ଦେଖିନବା ।"

ଏଥିପାଇଁ ଅବଶ୍ୟ ଆମର କେବେ କୌଣସି ପ୍ରୟୋଜନ ପଡ଼ି ନଥିଲା । କିନ୍ତୁ ହଲମୁଖ ଟକିଜ୍‌ରେ କେବେକେବେ ବୁକିଂ କ୍ଲୋଜ୍ ହୋଇଯାଇଥିଲେ ନସ୍‌ରାକୁ ତାହା ଜଣାଇ ଦେବା ମାତ୍ରେ ସେ ଆମ ପାଇଁ ବ୍ୟବସ୍ଥା କରିଦେଉଥିଲା, ଅଧା ଦାମ୍‌ରେ ଫାଷ୍ଟକ୍ଲାସ୍ ଟିକେଟ୍ ।

ସେମାନେ ଥିଲେ ଗୁଣ୍ଡା । ମାତ୍ର ପରବର୍ତ୍ତୀ ସମୟରେ ଯେତେବେଳେ ସେମାନଙ୍କ କଥା ଭାବିଛି, ସେତେବେଳେ ମନେ ହୋଇଛି, ସେଇ ଗୁଣ୍ଡାମାନଙ୍କର କୃତଜ୍ଞତା ଆଜି ଭଦ୍ରଲୋକମାନଙ୍କଠାରେ ସୁଦ୍ଧା ବିରଳ । କୃତଜ୍ଞତା ଆଜି ବୋଧହୁଏ ବିଗତ ପୃଥିବୀର ଏକ ବିସ୍ମୃତ ମୂଲ୍ୟବୋଧ ।

୨୫/୦୩/୯୦

# ଅଜଣା ନଈ

୧୯୫୦ ମସିହା । ଓଡ଼ିଶାର ଗଡ଼ଜାତମାନଙ୍କର ପ୍ରଦେଶ ସହିତ ଦୁଇବର୍ଷ ତଳୁ ମିଶ୍ରଣ ହୋଇଗଲାଣି । ସେଥି ସଙ୍ଗେସଙ୍ଗେ ରାଜତନ୍ତ୍ର ମଧ୍ୟ ବିଦାୟ ନେଲାଣି । ସେତେବେଳେ କେତେକ ରାଜନୈତିକ ଉଦ୍ଦେଶ୍ୟରେ ମୁଁ ଓଡ଼ିଶା ଗଡ଼ଜାତମାନଙ୍କରେ ବୁଲୁଥିଲି । ସେହି ଉପଲକ୍ଷେ ଦିନେ ଗୋଟିଏ ଗଡ଼ଜାତର ରାଜାଙ୍କ ପାଖକୁ ମୁଁ ଯାଇଥିଲି । ରାଜ୍ୟଟି ବିଶେଷ ବଡ଼ ନଥିଲା । ତେଣୁ ଉଆସଟିର ଆକାର ମଧ୍ୟ ସେହି ଅନୁପାତରେ ଥିଲା ଅପେକ୍ଷାକୃତ କ୍ଷୁଦ୍ର । ସିଂହଦ୍ୱାରରେ ଓଡ଼ିଶା ପୋଲିସର ଦୁଇଜଣ ପୋଲିସ ବନ୍ଧୁକ ଧରି ଡ୍ୟୁଟି ଦେଉଥିଲେ । ଏହା ଥିଲା ମିଶ୍ରଣର ଅନ୍ୟ ଏକ ସର୍ତ୍ତ । ମାତ୍ର ଉଆସର ପୂର୍ବଶିରୀ ଆଉ ବିଭବ ଉପରେ ଇତି ମଧ୍ୟରେ ବୁଲି ଆସିଥିଲା ଶିଉଳିର ବିଷଣ୍ଣତା ।

ସମୟଟା ବୈଶାଖମାସର ସକାଳ । ପବନ କ୍ରମେ ଗରମ ଲାଗି ଅସୁଥିଲା । ମୁଁ ଜିପ୍‌ର ଓହ୍ଲାଇ ଦେଖିଲି, ଦରବୁଢ଼ା ଲୋକଟିଏ ହାତଯୋଡ଼ି, ଉଆସ ଆଡ଼କୁ ଚାହିଁ ଗୋଟାଏ ବଉଳ ଗଛ ଛାଇରେ ଠିଆ ହୋଇଛି । ସେ ପିନ୍ଧିଥିଲା ଆଣ୍ଠୁ ନଲୁଚା ଗୋଟାଏ ମଇଳା ଲୁଗା ଆଉ ଅଣ୍ଟାରେ ବାନ୍ଧିଥିଲା ଖଣ୍ଡେ ଗାମୁଛା । ତା’ ପାଖରେ ଦେଖିଲି, ତିନି-ଚାରିଟା ସଦ୍ୟକଟା କଞ୍ଚା ତାଳ ବାଉଙ୍ଗା, ଗୋଟାଏ କଟୁରୀ ଆଉ ଖଣ୍ଡେ ପଘା ପରି ମୋଟା ଦଉଡ଼ି । ସେ ବୋଧହୁଏ କୋଉ ତାଳଗଛରେ ଚଢ଼ି ଏଇ ବାଉଙ୍ଗା କାଟୁଥିଲା । କିନ୍ତୁ ସିଏ ଏଠି ହାତଯୋଡ଼ି ଉଆସ ଆଡ଼କୁ ଚାହିଁ ଏପରି ଠିଆ ହୋଇଛି କାହିଁକି ?

ଦୃଶ୍ୟଟା ମୋତେ କିମ୍ଭୁତ ଲାଗିଲା । ମୁଁ ସେ ଲୋକଟି ପାଖକୁ ଯାଇ ସେ ସେଠାରେ ଯେପରି ଭାବରେ ଠିଆ ହୋଇଥିବାର କାରଣ ସଂପର୍କରେ ପଚାରିଲି । ସିଏ ଭୀତ ଶଙ୍କିତ କଣ୍ଠରେ ଯାହା କହିଲା, ସେଥିରୁ ବୁଝିଲି, ସିଏ ଗଡ଼ରେ ତା’ ଗାଁକୁ ଲାଗିଥିବା ଗୋଟାଏ ଅନାବାଦି ଦଣ୍ଡାରେ ଗୋଟାଏ ତାଳଗଛରେ ଚଢ଼ି ତାଟି ତିଆରି କରିବାପାଇଁ କେତେଖଣ୍ଡ ବାଉଙ୍ଗା କାଟୁଥିଲା । ରଜାଘର ପାଇକ ତାକୁ ବାଉଙ୍ଗା କାଟୁଥିବା ଦେଖି ଛାମୁଙ୍କ ପାଖକୁ ଧରି ଆଣିଛନ୍ତି । ତାର ଭାରି ଭୁଲ୍ ହୋଇଯାଇଛି । ଛାମୁ ରଖିଲେ ରଖିବେ, ଦଣ୍ଡିଲେ

ଦଣ୍ଡିବେ। କପାଳରେ ଯାହା ଥିବ। ଇତ୍ୟାଦି ଇତ୍ୟାଦି। ମୁଁ ତାକୁ କହିଲି, "ଆରେ, ରାଜୁଡ଼ା ଶାସନ ଦୁଇବର୍ଷ ତଳୁ ଗଲାଣି। ଏବେ ତୋର ଯେମିତି ଗୋଟିଏ ଭୋଟ, ରାଜାଙ୍କର ସେମିତି ଗୋଟିଏ ଭୋଟ। ରାଜାପ୍ରଜା ସବୁ ସମାନ। ତୁ ଏଠି ମିଛଟାରେ ହାତଯୋଡ଼ି ଠିଆ ହୋଇଛୁ କାହିଁକି ? ବାଉଙ୍ଗା, କଟୁରୀ ଧରି ଘରକୁ ପଳା।' ମାତ୍ର ମୋ' କଥାରେ ତା'ର ପ୍ରତ୍ୟୟ ହେଲାନାହିଁ। ସେ ଉତ୍ତର ଦେଲା- "ରଜା ନଥିଲେ ରାଇଜ ନାହିଁ। ରାଇଜ ନଥିଲେ ପ୍ରଜା ନାଇଁ। ଛାମୁ ଯେତେବେଳେ ଧରି ଆଣିଛନ୍ତି, ଛାମୁ ହୁକୁମ୍ ନଦେଲେ ମୁଁ ଏଠୁ ଯିବି କେମିତି ?" ମୁଁ ତା' ସାଙ୍ଗରେ ଆଉ ଅଯଥା ସମୟ ନଷ୍ଟ ନକରି ଉଆସକୁ ରାଜା ସାହେବଙ୍କ ସହିତ ସାକ୍ଷାତ ଓ ଆଳାପପାଇଁ ଆସିଲି।

ରାଜା ସାହେବ ଟିକିଏ ଗପୁଡ଼ି। ଦୀର୍ଘ ସମୟ ଧରି ଗପସପ ଓ ତା'ରି ମଝିରେ ବ୍ରେକ୍‌ଫାଷ୍ଟ ସାରି ପ୍ରାୟ ବାରଟାବେଳେ ମୁଁ ବାହାରକୁ ଆସି ଦେଖିଲି ସେ ଲୋକଟି ତଥାପି ସେହିପରି ହାତଯୋଡ଼ି ସେଇ ବଉଳଗଛ ଛାଇରେ ଠିଆ ହୋଇଛି। ଦୃଶ୍ୟଟା ମୋତେ ବାଧିଲା। ପୁଣି ଲୋକଟି କେତେ ସରଳ ଓ ନିର୍ବୋଧ, ସେଥିପାଇଁ ତା' ପ୍ରତି ମୋ' ମନରେ ସହାନୁଭୂତି ମଧ୍ୟ ଜାଗିଲା। ମୁଁ ସେହିଠାରୁ ଫେରିଯାଇ ରାଜା ସାହେବଙ୍କୁ କହିଲି, "ଆପଣ ବିଚରା ଗରିବ ଲୋକଟାଏ କୋଉ ତାଳଗଛରୁ କେତେଖଣ୍ଡ ବାଉଙ୍ଗା କାଟି ଆଣିଥିଲା ବୋଲି ତାକୁ ଧରାଇ ଆଣି ଉଆସ ଆଗରେ ଏ ନିର୍ଘୁମ୍ ଖରାବେଳେ ଘଣ୍ଟାଘଣ୍ଟା ଧରି ଠିଆ କରାଇ ରଖିଛନ୍ତି କାହିଁକି ?" ରାଜା ସାହେବ ମୋ କଥାରେ ବିଚଳିତ ହୋଇ ଉତ୍ତର ଦେଲେ, "କୋଉ ଲୋକ। ଆମେ ତ କାହାକୁ ଡକାଇ ନାହୁଁ କିମ୍ବା ଉଆସ ଆଗରେ ହାତଯୋଡ଼ି ଠିଆ ହେବାକୁ କହିନାହୁଁ।" ମୁଁ କହିଲି, "ସେଇ କଥା ମୁଁ ତାକୁ ଅନେକ ବୁଝାଇଲିଣି। କିନ୍ତୁ ସେ କହୁଛି, ଛାମୁଙ୍କଠାରୁ ହୁକୁମ ନପାଇଲେ ସେ ସେଠା ଛାଡ଼ି ଯିବ କିପରି ?" ରାଜା ସାହେବ ମୋ' କଥା ଶୁଣି ଈଷତ୍ ହସିଲେ ଓ ତାଙ୍କର ଜଣେ ପାଖଲୋକଙ୍କୁ ଡାକି ସେ ଲୋକଟିକୁ ତା' ବାଉଙ୍ଗା ଧରି ସେଠାରୁ ଚାଲିଯିବାକୁ କହିବାପାଇଁ ନିର୍ଦ୍ଦେଶ ଦେଲେ। ତା'ପରେ ସ୍ୱଗତୋକ୍ତି କରିବା ପରି କହିଲେ, "ରାଜ୍ୟ ତ ଗଲା। ଆଉ ତାଳଗଛ।" ମୋ' ସହିତ ପାଖ ଲୋକଟି ଆସି ବଉଳ ଗଛତଳେ ସେ ଲୋକଟିକୁ ଛାମୁ ତାକୁ ବାଉଙ୍ଗା ଧରି ସେଠାକୁ ଚାଲିଯିବାପାଇଁ ହୁକୁମ ଦେଇଛନ୍ତି ବୋଲି କହିବାରୁ ସେ ତାଳ ବାଉଙ୍ଗା ସବୁ କାନ୍ଧରେ ଉଠାଇ ତା' କଟୁରୀ ଆଉ ଦଉଡ଼ି ଧରି ସେଠାରୁ ଚାଲିଗଲା। ମାତ୍ର ସେ ସ୍ଥାନ ଛାଡ଼ିଯିବା ପୂର୍ବରୁ ଉଆସ ଓ ଛାମୁଙ୍କ ଉଦ୍ଦେଶ୍ୟରେ ଭୂଇଁରେ ମୁଣ୍ଡ ଲଗାଇ ସାଷ୍ଟାଙ୍ଗ ଦଣ୍ଡବତ କରିବାପାଇଁ ସେ ଭୁଲି ନଥିଲା।

ସାନ ସାନ ଲୋକମାନଙ୍କର ଏଇପରି ଛୋଟଛୋଟ କଥା ସବୁ ମୋ' ମନରେ ଗଭୀର ରେଖାପାତ କରିଥାଏ। ଅନେକ ସମୟରେ ସେଇ ମଣିଷ, ଘଟଣା ଓ ସ୍ମୃତିସବୁ

ମୋ' ମନରେ ଚେଇଁ ଉଠନ୍ତି। ପରବର୍ତ୍ତୀ ସମୟରେ ସେମାନଙ୍କ କଥା ସବୁ ମୁଁ ଯେତିକି ଯେତିକି ଚିନ୍ତାକରେ, ସେତିକି ସେତିକି ମୋତେ ସେଥିରୁ ନୂଆ ନୂଆ ଉପଲବ୍ଧି ମିଳିଥାଏ। ସେଦିନର ସେଇ ଘଟଣା ମୋର ଏବେ ମନେପଡ଼ିଲେ, ମୁଁ ଭାବେ, ଇଏ ହେଉଛି ସ୍ୱାଧୀନତାର ଆତଙ୍କ- ଯାହାକୁ ରାଜନୈତିକ ବିଜ୍ଞାନୀମାନେ କହିଛନ୍ତି- Fear of Freedom । ସ୍ୱାଧୀନ ହେବାପାଇଁ ମଣିଷ ପ୍ରକୃତରେ ଭୟ କରେ। ଇଏ ତାର ଏକ ଆଦିମ ପ୍ରବୃତ୍ତି। ସେଥିପାଇଁ କାଳେକାଳେ ସିଏ ରାଜା, ପୁରୋହିତ ଓ ଗୁରୁମାନଙ୍କୁ ସୃଷ୍ଟି କରି ଆସିଛି, ତାର ଉଲ୍ଲଙ୍ଗ ସ୍ୱାଧୀନତାକୁ ନିରାପଦରେ ଘଣ୍ଟ ଘୋଡ଼ାଇ ରଖିବାପାଇଁ। ସେଥିପାଇଁ ରାଜତନ୍ତ୍ରରୁ ସେ ଲୋକଟି ଯେ ମୁକ୍ତି ପାଇ ସାରିଲାଣି, ତାହା ସେ ଆଦୌ ବିଶ୍ୱାସ କରିପାରୁ ନଥିଲା। ତା'ପାଇଁ ଛାମୁ ଥିଲେ ସନାତନ।

ପ୍ରକୃତରେ ଅଜଣା ନଈ ଭିତରକୁ ଲମ୍ଫ ଦେବାପାଇଁ ଭରସି ଥାଏ ବା କିଏ ? ଗାଁର ଦଲୁଆ ପୋଖରୀ ତାକୁ ମନେହୁଏ ଅଧିକ ନିରାପଦ।

୦୧/୦୪/୯୦

# ସଞ୍ଜା

ଉଆସ ସିଂହଦୁଆରେ ମୋ ଜିପ୍‌ର ଘୋର ଘର୍ଘର ନାଦ ଶୁଣିବା ବେଳୁ ଅତିଥିଶାଳା ବା ଅତିଥି ଭବନ ବାହାରେ ଲୋକଟିଏ ଆଣ୍ଠୁ ନଲୁଚା ଗୋଟିଏ ସଫା ଧୋତି ଆଉ ବାଁ କାନ୍ଧରେ ଖଣ୍ଡେ ଗାମୁଛା ପକାଇ ମୋତେ ଅଭ୍ୟର୍ଥନା ଜଣାଇବା ପାଇଁ ଠିଆ ହୋଇଥିଲା । ମୁଁ ଜିପ୍‌ରୁ ଓହ୍ଲାଇ ପଡ଼ିବା ମାତ୍ରେ ସେ ନବେ ଡିଗ୍ରୀରେ ଅଣ୍ଟା ଓ ମୁଣ୍ଡ ନୁଆଁଇ ମୋତେ ଗୋଟେ ଜୁହାର ପକାଇ କହିଲା, "ମୁଁ ହଜୁର ନକୁଳ ବାରିକ । ଏଠିକୁ କେବେକେବେ ବାବୁ ଭାୟାମାନେ ବାହାରୁ ଆସି କୁଣିଆ ହେଲେ ମୁଁ ସେମାନଙ୍କ ବୁଝାସୁଝା କରିଥାଏ ।" ମୁଁ କହିଲି, "ଇଏ ଭାରି ଭଲ କଥା । କିନ୍ତୁ ମୁଁ ଛାମୁ ବା ଛାମୁଆ ନୁହେଁ, ମୋ ପାଇଁ ଦଶ ଡିଗ୍ରୀ ନମସ୍କାର ଚଳି ଥାଆନ୍ତା ।" ନକୁଳ ବାରିକ କିନ୍ତୁ ମୋର ରସିକତା ବୁଝି ପାରିଲା ନାହିଁ । ସିଏ ଜିପ୍‌ରୁ ମୋର ହୋଲ୍‌ଡଅଲ୍ ଓ ଛୋଟ ସୁଟ୍‌କେଶ୍‌ଟି ଓହ୍ଲାଇ ଆଣି ମୋତେ କହିଲା, "ଭିତରକୁ ବିଜେ କରନ୍ତୁ ହଜୁର !"

ଗଡ଼ଜାତଟି ଛୋଟ, ଅତିଥିଶାଳା ବା ଅତିଥିଭବନଟି ତେଣୁ ସେହିପରି । ଟାଳ ଛପର ଗୋଟିଏ ପକ୍‌କା ଖଞ୍ଜା । ପକ୍‌କା ଅଗଣା ମଝିରେ ଚାନ୍ଦିନୀବନ୍ଧା ଗୋଟିଏ କୂଅ ଆଉ ଗୋଟିଏ ଚମ୍ପା ଗଛ। ପରିବେଶଟି ମୋତେ ବେଶ୍ ଭଲ ଲାଗୁଥିଲା । କୋଠରି ଭିତରେ ଥିବା ଖଣ୍ଡେ କୋଉ କାଳର ଶିଶୁକାଠ ପଲଙ୍କ ଉପରେ ନକୁଳ ମୋ ବିଛଣା ତିଆରି କରିଦେଲା । ଅନ୍ୟ ଆସବାବପତ୍ର ମଧ୍ୟରେ ପଡ଼ିଥିଲା ଖଣ୍ଡେ ଟେବୁଲ୍ ଆଉ ଖଣ୍ଡେ ଚୌକି । ମୁଁ ଚୌକି ଉପରେ ବସିପଡ଼ି ପ୍ରଥମେ କପେ ଚା' ପାଇଁ ନକୁଳକୁ କହିଲି । ବିଚରା ନକୁଳ ଦୁଇହାତ ମଳି ମଳି କହିଲା, "ଆଜ୍ଞା ଏଠି ଚା'ର ବ୍ୟବସ୍ଥା ନାହିଁ । ମୁଁ ଉଆସ ବାହାର ଦୋକାନରୁ ଚା' ନେଇ ଆସୁଛି । ହଜୁରଙ୍କ ପରି କେଽ କେହି ବାବୁଭାୟା ଚା' ଖୋଜିଲେ ମୁଁ ଦୋକାନରୁ ଆଣି ଦେଇଥାଏ ।" ଚା' ଆଣିବାପାଇଁ ମୁଁ ତାକୁ ପକେଟରୁ ପଇସା କାଢ଼ି ଦେଉଥିଲି । ନକୁଳ ଜିଭ କାମୁଡ଼ି ପକେଇ କହିଲା,

"ହଜୁର ଏଠି କୁଣିଆ, ହଜୁରଙ୍କ ପଇସାରେ ମୁଁ ଚା' ଆଣି ଦେଉଛି, ଛାମୁଙ୍କ ଆଗରେ କେହି ଚୁଗୁଲି କଲେ, ମୁଁ ଆଉ ରହିଁବି ତ !

ନକୁଳ ଲମ୍ବାଲମ୍ବା ଖେପା ପକାଇ ଚା' ଆଣିବାପାଇଁ ଚାଲିଗଲା । ପ୍ରାୟ ପନ୍ଦର କୋଡ଼ିଏ ମିନିଟ୍ ପରେ ଗୋଟିଏ ଆଲୁମିନିୟମ୍ ଢାଳରେ ଚା' ଆଉ ଗୋଟିଏ କାଚ ଗ୍ଲାସ୍ ଧରି ପହଞ୍ଚିଲା । ରଜାଘର କୁଣିଆଙ୍କ ପାଇଁ ଚା' ବୋଲି, ବହଳ କ୍ଷୀରରେ ଚା' ତିଆରି ହୋଇଛି । ସେଥିରେ ପୁଣି ଚା'ର ସ୍ୱାଦ ଚିନି ସିରା ପରି ଲାଗୁଛି । ମୁଁ ଅଗତ୍ୟା ସେଇ ଚା'ରୁ କିଛି ଗଳାଧଃକରଣ କରିବା ପରେ ଖଣ୍ଡେ ସିଗ୍ରେଟ୍‌ରେ ନିଆଁ ଲଗାଇଲି । ନକୁଳ ବିନୀତ କଣ୍ଠରେ କହିଲା, "ଦୋକାନୀଟାକୁ କହିଲି, ଆଉ ଟିକିଏ କ୍ଷୀର ଆଉ ଚେନି ଦେବାପାଇଁ । ସିଏ କହିଲା, ଏଇ ଢେର । ଚା'ଟା ସୁଆଦିଆ ଲାଗୁ ନଥିବ ପରା ! ମୁଁ କହିଲି, "ନା ନା, ଚା ଠିକ୍ ଅଛି । ତେବେ ଏଣିକି ମୋ ପାଇଁ ଚା' ଆଣିବା ବେଳେ ଦୋକାନୀକି କହିବ, ମୋ ଚା'ରେ ଦି ଚାମଚ କ୍ଷୀର ଆଉ ଚାମୁଚେ ଚିନି ଦବ । ଅଳେଇଚ, ଗୁଜୁରାତି ପ୍ରଭୃତି ଦେବ ନାହିଁ ।"

ପ୍ରାତଃକୃତ୍ୟ ସାରି ଗାଧୋଇ ପାଧୋଇ ବସିଚି, ନକୁଳ ପଛେ ପଛେ ଉଆସରୁ ଜଣେ ଭିତିରିଆ ଗୋଟେ ବଡ଼ ପରାତ ଧରି ଆସି ପହଞ୍ଚିଲା । ସେ ପରାତରେ ଥିଲା ଅଧସେର ଭଳି ସରୁ ଚାଉଳ, ପାଏ ଭଳି ଡାଲି, ଗୋଟିଏ ପତ୍ର ଦନାରେ କିଛି ମାଂସ, କିଛି ପରିବା, ଗିନାରେ ଗିନାଏ ଘିଅ, ଗୋଟିଏ ବାଟିରେ ତେଲ ଓ ହଳଦୀ, ଲୁଣ, ମସଲାମସଲି ସାଙ୍ଗକୁ କେତେଖଣ୍ଡ ଦାନ୍ତ ଖୁଣ୍ଟା । ସେଇ ପରାତରେ ମଧ୍ୟ ଥିଲା, ଗୋଟିଏ ବାଟିରେ ପ୍ରାୟ ପାଏ ଭଳି ଚୁଡ଼ା, ଗୋଟିଏ ପତ୍ର ଦନାରେ କୋରା ନଡ଼ିଆ, ଗୋଟିଏ ପାଚିଲା କଦଳୀ ଓ ଚିନି । ଭିତିରିଆ ପରାତଟିକୁ ଟେବୁଲ୍ ଉପରେ ରଖି ଦେଇ ଚାଲିଗଲା । ଏହାର ଅର୍ଥ ମୁଁ ବୁଝିପାରିଲି ନାହିଁ । ନକୁଳକୁ ଏହାର ଅର୍ଥ ପଚାରିବାରୁ ସିଏ ଉତ୍ତର ଦେଲା, "ହଜୁର ଇଏ ସଞ୍ଚା ।" ଅର୍ଥାତ୍ ମୋର ଏ ଓଳିର ଖୋରାକି । ଗୋସେଇଁ ଏଇ ଘଡ଼ିକୁ ଆସି ପହଞ୍ଚିଯିବ । ସିଏ ଆସିଲେ ରନ୍ଧାରନ୍ଧି କରିଦେଲେ, ଆପଣ ଠା ପିଢ଼ାରେ ବସିବେ । ଭିତିରିଆ ପୁଣି ଆଉ ଗୋଟିଏ ସାନ ପରାତରେ କିଛି ଅଟା ଓ ବଡ଼ି ଆଚାର ପ୍ରଭୃତି ଧରି ଆସି ପହଞ୍ଚିଲା । ରାତିରେ ଭାତ ଖାଇବା ଯଦି ଅଭ୍ୟାସ ନଥାଏ, ତା'ହେଲେ ଗୋସେଇଁ ଏ ଅଟାରେ ମୋ ପାଇଁ ପରଟା ତିଆରି କରିଦେବ ବୋଲି ନକୁଳ ମୋତେ ବୁଝାଇଦେଲା ।

ଜଙ୍ଗଲ ଦେଖିବା ମୋର ଗୋଟାଏ ସଉକ ଥିଲା । ରାଜା ସାହେବ, ଜଣେ ଶିକାରୀକୁ ମୋତେ ସାଙ୍ଗରେ ଦେଲେ ଜଙ୍ଗଲ ବୁଲାଇବାପାଇଁ । ବାଟଯାକ ସେଇ ଶିକାରୀଟି ଗପିଗପି ଚାଲିଥାଏ, ତା'ର ଶିକାରୀ ପଣିଆର କଥା। ଛାମୁ ସିନା ମଞ୍ଚା ଉପରେ ବସି ନାଁ

ନିଅନ୍ତି, ନୋଇଲେ ବାଘ, ହରିଣ ମୁଇଁ ମାରିଥାଏ, ଇତ୍ୟାଦି ଇତ୍ୟାଦି । କିନ୍ତୁ ଦୁର୍ଭାଗ୍ୟକୁ ବାଘ ତ ବାଘ ଠେକୁଆଟାଏ ସୁଦ୍ଧା କୋଉଠି ଆମ ଆଖିରେ ପଡ଼ିଲା ନାହିଁ ।

ସେଠାରେ ଚାରିଦିନ ରହିବା ପରେ ମୁଁ ଫେରିବା ପାଇଁ ପ୍ରସ୍ତୁତ ହେଲି । ନକୁଳ ମୋର ବିଛଣାପତ୍ର ହୋଲ୍‌ଡ଼ଅଲ୍‌ରେ ପୂରାଇ ରେଡ଼ି କରିଦେଲା । ତା' ପରେ ଗୋଟିଏ ଛୋଟ ଟୋକେଇ ଆଣି ସେଇ ହୋଲ୍‌ଡର ପାଖରେ ରଖିଦେଲା । ଟୋକେଇ ଉପରେ ଖଣ୍ଡେ କନା ବନ୍ଧା ହୋଇଥିବାରୁ ତା' ଭିତରେ କି ଦ୍ରବ୍ୟ ସବୁ ରହିଛି ଜାଣିବାର ଉପାୟ ନଥିଲା । କୌତୂହଳରେ ଟୋକେଇ ଉପରୁ କନା ଢାଙ୍କୁଣୀ କାଢ଼ି ଦେଖିଲି, ତା' ଭିତରେ କିଛି ଚାଉଳ, ଡାଲି, ଚୁଡ଼ା ଆଉ ଗୋଟିଏ ବୋତଲରେ କିଛି ଘିଅ ଓ ଆଚାର ପ୍ରଭୃତି ରହିଛି । ମୁଁ ବିସ୍ମିତ କଣ୍ଠରେ ପଚାରିଲି, "ଏ ସବୁ କ'ଣ ନକୁଳ ?" ନକୁଳ ଉତ୍ତର ଦେଲା, "ଏସବୁ ଆପଣଙ୍କ ସଞ୍ଚାରୁ ବଳିଥିଲା ।" ମୁଁ କହିଲି, "ତୁମେ ଏସବୁ ନେଇଯାଅ ନକୁଳ ।" ମୁଁ ଏ ଚୁଡ଼ା, ଚାଉଳ ନେଇ କ'ଣ କରିବି ? ନକୁଳ ଜିଭ କାମୁଡ଼ି ପକାଇ ଉତ୍ତର ଦେଲା । "ହଜୁରଙ୍କ ସଞ୍ଚା ମୁଁ ମାରିନେଲି ବୋଲି କେହି ଚୁଗୁଲିଆ ଛାମୁଙ୍କ କାନରେ ଚୁଗୁଲି କଲେ, ମୋ ମୁଣ୍ଡ ଆଉ ରହିବଟି ? ନକୁଳ ମୋର ଅନୁମତି ପାଇଁ ଅପେକ୍ଷା ନ ରଖି ଟୋକେଇଟି ସିଧା ନେଇ ଜିପ୍ ଭିତରେ ରଖିଦେଲା ।

ମୋର ମନେପଡ଼ିଲା ସେବେକାର ଜଣେ ବୟୋଜ୍ୟେଷ୍ଠ ସାହିତ୍ୟିକଙ୍କ କଥା । ସିଏ ବର୍ଷକେ ଥରେ ଏମିତି ଗଡ଼ଜାତମାନଙ୍କରେ ବୁଲିବୁଲି ଶଗଡ଼ରେ ଲଦି ସଞ୍ଚା ଡାଲି, ଚାଉଳ ଇତ୍ୟାଦି ଧରି ଫେରନ୍ତି । ବର୍ଷ ସାରା ତେଣୁ ଅନ୍ନ ଚିନ୍ତା ନଥାଏ । କାତରେ କବିତା କୁତଃ । ତେଣୁ ମହାଜନମାନଙ୍କ ପନ୍ଥା ଧରି ମୁଁ ସଞ୍ଚା ଟୋକେଇକୁ ସଙ୍ଗରେ ଧରି ଫେରିଲି ।

୦୮/୦୪/୯୦

# ପାହାଳର ଇତିବୃତ୍ତ

**ଷଷ୍ଠ** ଦଶକରେ ମୋତେ ବୃତ୍ତିଗତ କାରଣରୁ ସପ୍ତାହରେ ପ୍ରାୟ ଦୁଇ ତିନି ଦିନ ସନ୍ଧ୍ୟାରେ ଭୁବନେଶ୍ୱର ଯିବାପାଇଁ ପଡୁଥିଲା । ମୁଁ ଫେରୁଥିଲି, ଟିକିଏ ବିଳମ୍ବିତ ରାତିରେ । କଟକ-ଭୁବନେଶ୍ୱର ଟ୍ରାଫିକ୍‌ଟା ସେତେବେଳେ ଏତେ ଭିଡ଼ ନଥିଲା । ଛାପିଛାପିକିଆ ଜହ୍ନବୋଳା ରାସ୍ତାରେ ଜିପ୍‌ରେ ଯିବାବେଳେ ଟ୍ରାଫିକ୍-ବିରଳ ରାସ୍ତାଟି ଲାଗେ, କେଉଁ ସ୍ୱପ୍ନପୁରୀକୁ ରାସ୍ତା ପରି । ଫୁଲନଖରା ଡେଇଁଯିବା ପରେ ସବୁଥର ଦେଖେ, ହୁଡ଼ାମାଳ ବିଲ ଭିତରେ ରାସ୍ତାଠାରୁ ପ୍ରାୟ ଦୁଇଶହ ବା ତିନିଶହ ଗଜ ଦୂରରେ ଗୋଟାଏ ନିଛାଟିଆ ଚାଳଘର । ପିଣ୍ଡାରେ ଗୋଟାଏ ପେଟ୍ରୋମାକ୍ସ ଲାଇଟ୍ ଝୁଲୁଥାଏ । ସେଇଠାରେ କେବେକେବେ ଦେଖେ, ରାସ୍ତା ଉପରେ ଗୋଟାଏ ଦୁଇଟା ଟ୍ରକ୍ ଆଉ ଅକସ୍ମାତ୍ ଗୋଟାଏ ବା ଦୁଇଟା ମୋଟର କାର୍ । କିନ୍ତୁ ତାହା କେବେ ମୋର ଦୃଷ୍ଟି ବା କୌତୂହଳ ଆକର୍ଷଣ କରି ନଥିଲା ।

ଥରେ ଖରାଦିନେ ରାତି ପ୍ରାୟ ଏଗାରଟା ବେଳେ ଫେରିବା ବାଟରେ ଦେଖେ, ସେଠାରେ କୌଣସି ଟ୍ରକ୍ ବା କାର୍ ନଥିଲା, କିନ୍ତୁ ଚାଳଘର ପିଣ୍ଡାରେ ପେଟ୍ରୋମ୍ୟାକ୍ସ ଲାଇଟ୍‌ଟା ସେଇପରି ଝୁଲୁଥିଲା । ମୁଁ ଡ୍ରାଇଭରକୁ କହିଲି, “ଲୋକଟା ଏଇ ରାସ୍ତା କଡ଼ରେ ପେଟ୍ରୋମ୍ୟାକ୍ସ ଜାଳି ଭାଟି ମଦ ବିକ୍ରୀ କରୁଛି, ଆଉ ପୋଲିସ୍, ଅବକାରୀ କାହା ଆଖିରେ ଏଇଟା ପଡୁନାହିଁ ?” ଡ୍ରାଇଭରର ଉତ୍ତରରୁ ଜାଣିଲି, ସେଇଟା ମଦ ଭାଟି ନୁହେଁ; ଗୋଟାଏ ପ୍ରସିଦ୍ଧ ରସଗୋଲା ଦୋକାନ । ମୁଁ ଡ୍ରାଇଭରକୁ ପଚାରିଲି, “ଲୋକଟା ତା'ହେଲେ ଫୁଲନଖରା ବଜାରରେ ରସଗୋଲା ଦୋକାନ ନଖୋଲି, ସେଠି ଅପନ୍ତରାଟାରେ, ବିଲ ମଝିରେ ରସଗୋଲା ଦୋକାନ ଦେଇଛି କାହିଁକି ?”

ସେତେବେଳକୁ ଜିପ୍ ଫୁଲନଖରା ଛକ ପାଖାପାଖି ହୋଇଯାଇଥିଲା । ମୁଁ ମନେମନେ ଧରିନେଲି, ସେଇଟା ନିଶ୍ଚୟ ଗୋଟାଏ ଭାଟି ମଦ ଦୋକାନ । ଡ୍ରାଇଭରକୁ କହିଲି, ପଛକୁ ଗାଡ଼ି ଫେରାଇ ସେଠାକୁ ନେବାକୁ । ରାସ୍ତାରୁ ଓହ୍ଲାଇ ସେ ଘର ପର୍ଯ୍ୟନ୍ତ

ଯିବାପାଇଁ ବାଟ ନଥିଲା । ହିଡ଼ ଉପରେ ଚାଲିଚାଲି ଯାଇ ମୁଁ ସେ ଘର ପାଖରେ ପହଞ୍ଚିଲି । ଘର ସାମନା ଅଗଣାଟା ଲିପାପୋଛା ହୋଇ ଭାରି ପରିଷ୍କାର ଲାଗୁଥିଲା । ଆଉ ସେଠାରେ ପଡ଼ିଥିଲା, ଗୋଟାଏ ବେଞ୍ଚ୍ । ଦେଖିଲି, ଘର ଭିତରେ ପ୍ରାୟ ଷାଠିଏ ବର୍ଷ ପାଖାପାଖି ବୟସର ବୁଢ଼ାଟିଏ ମୁଣ୍ଡରେ ବାଳଗଣ୍ଠି ପକାଇ ଖାଲିଦେହରେ ଚୁଲି ପାଖରେ ବସି ଗୋଟାଏ ରସଗୋଲା କଡ଼େଇରେ ଜାଲିଚଟୁରେ ରସଗୋଲା ସବୁ ଧୀରେଧୀରେ ଛାଣୁଛି । ମୁଁ ସେଠାରେ ଦୁଇ ତିନି ମିନିଟ୍ ଛିଡ଼ା ହୋଇ ସାରିଥିଲେ ସୁଦ୍ଧା ସେ ମୋ ଆଡ଼େ ଥରେ ସୁଦ୍ଧା ଚାହିଁ ନ ଥିଲା ବା ମୋତେ ଲକ୍ଷ୍ୟ କରି ନଥିଲା । ମାଳା ଗଡ଼ାଇବା ପରି ଏକମନ ଓ ଧ୍ୟାନରେ ସେ ରସଗୋଲା କଡ଼େଇ ଭିତରେ ଜାଲିଚଟୁରେ ରସଗୋଲା ଛାଣୁଥିଲା ।

ହଠାତ୍ ଭିତରୁ ଜଣେ ବୟସୀ ସ୍ତ୍ରୀ ଲୋକ ବାହାରିଆସି ପଚାରିଲା, "ରସଗୋଲା ନେବେ କି ବାବୁ ? ତା'ହେଲେ ଅଧଘଣ୍ଟା ଖଣ୍ଡେ ସବୁର କରିବାକୁ ପଡ଼ିବ । ଅବିକା ନୂଆପାଗ ଉଠିବ ।

ପରିବେଶଟି ଚମତ୍କାର ଲାଗୁଥିଲା । ଆଉ ଏପ୍ରିଲ୍ ମାସର ପବନ, ଜହ୍ନ ଆଲୁଅରେ ଦିଗହଜା ବିଲ ଗହୀର, ଆଉ ଅଦୂରରେ ଗୋଟିଏ ଛୋଟିଆ ମନ୍ଦିରର ସିଲହଟ୍ ସବୁ ମିଶି ଶାନ୍ତିପ୍ରଦ ଲାଗୁଥିଲା । ମୁଁ କହିଲି, "ମାଉସୀ ଭାରି ଶୋଷ ଲାଗୁଛି । ପାଣି ଟୋପାଏ ଦେଇପାରିବ ?" ଭିତରେ ମଦ ଥିବା ସନ୍ଦେହ କରି ମୁଁ ତାଙ୍କ ପଛେ ପଛେ ଦୁଆର ମୁହଁ ପର୍ଯ୍ୟନ୍ତ ଆସିଲି । କିନ୍ତୁ ସେ ସ୍ତ୍ରୀଲୋକ ଗୋଟାଏ ବଡ଼ ମାଟି କଳସ ଭିତରୁ ଗୋଟାଏ ମଗ୍‌ରେ ପାଣି ବାହାର କରି, ଗୋଟାଏ କାଚ ଗ୍ଲାସ୍‌ରେ ମୋତେ ଆଣି ଦେଲା । ପାଣିରେ ଫୁଟିଲା ମଲ୍ଲୀର ବାସନା । ମୁଁ କହିଲି, "ପାଣିରେ ମଲ୍ଲୀର ମହକ ।" ସେ ସ୍ତ୍ରୀଲୋକଟି ଉତ୍ତର ଦେଲେ, "ମଲ୍ଲୀ କଢ଼ସବୁ ପଡ଼ିଥିଲା, ଏବେ ଫୁଟିଲାଣି ।" ଆଉ ଗିଲାସେ ପାଣି ପିଇବା ପାଇଁ ମାଗିଲି । ସେ ସ୍ତ୍ରୀ ଲୋକଙ୍କୁ ପଚାରିଲି, "ତୁମେ ଫୁଲନଖରା ବଜାର ଛାଡ଼ି, ଏଠି ବିଲ ଗହୀର ମଝିରେ ଏ ଅପନ୍ତରାରେ ଦୋକାନ ଖୋଲିଛ କାହିଁକି ?" ସେ ଉତ୍ତର ଦେଲେ, "ଆମର ସେଠି ଜାଗା ନଥିଲା । ତା'ଛଡ଼ା ୟାଙ୍କର ଜିଦ୍, ଚିହ୍ନିଲା ଗରାଖମାନେ ୟାଙ୍କ ରସଗୋଲା ପାଇଁ ଏଠିକି ଆସିବେ । ସିଏ ଗରାଖଙ୍କ ପାଖକୁ ହାଟୁଆ ପରି ରସଗୋଲା ନେଇ ଯିବେନାହିଁ ।" ମନେମନେ ଭାବିଲି, ଆଚ୍ଛା ପାଗଳ ଲୋକ ତ । ପଚାରିଲି, "ଏଠି ବିକ୍ରିବଟା କିପରି ଚାଲିଛି ?" ତାଙ୍କ ଉତ୍ତରରୁ ଜାଣିଲି, ଏ ପର୍ଯ୍ୟନ୍ତ ଦୁଇ କଡ଼େଇ ରସଗୋଲା ବିକ୍ରି ହୋଇଗଲାଣି । ଇଏ ଶେଷ ପାଗ ପଡ଼ିଛି । ଯାହା ବଳିବ କାଲି ସକାଳେ ବିକ୍ରି ହେବ । ଏହାର ଅର୍ଥ, ବିକ୍ରିବଟା ବେଶ୍ ଚାଲିଛି । କିନ୍ତୁ ସେ ବୁଢ଼ା ଜଣକ ତପସ୍ୟା କଲାପରି ଧ୍ୟାନସ୍ଥ ଭାବରେ ଯେପରି ରସଗୋଲା ଛାଣୁଥିଲା, ସେଥିରୁ ମୋର ମନେହେଲା, ରସଗୋଲା ଖାଇବା ପାଇଁ ହେଲେ, ମୋତେ

ଆହୁରି ଦୀର୍ଘ ସମୟ ଅପେକ୍ଷା କରିବା ପାଇଁ ପଡ଼ିବ । ମୁଁ ଆଉ ଦିନେ ଆସିବି ବୋଲି କହି ସେଠାରୁ ଚାଲି ଆସିଲି । କିନ୍ତୁ ଘରେ ପହଞ୍ଚିବା ପର୍ଯ୍ୟନ୍ତ ସେଇ ମଲ୍ଲୀ ଫୁଲର ସୁଗନ୍ଧ ମିଶା ପାଣି ଗ୍ଲାସ ମୁଁ ଭୁଲି ପାରି ନଥିଲି ।

ତା'ପରେ ଅନେକ ବାର ଫେରିବା ବେଳେ ସେଇ ଦୋକାନରୁ ମୁଁ ସଞ୍ଜ ରସଗୋଲା କିଣିଛି । ପ୍ରକୃତରେ ତା'ର ସ୍ୱାଦ ଥିଲା ଅନନ୍ୟ । ରସଗୋଲା ତିଆରି କରିବା ଯେପରି ସେଇ ଲୋକଟିର ଥିଲା ଜୀବିକା ନୁହେଁ, ତାହାର ମଧ୍ୟ ଜୀବନଚର୍ଯ୍ୟା । ସେଥିପାଇଁ ବୋଧହୁଏ ତାର ରସଗୋଲାରେ ଥିଲା, ଏକ ଅନିର୍ବଚନୀୟ ସ୍ନିଗ୍ଧତା ଓ ସ୍ୱାଦ ।

ଏହାପରେ ପ୍ରାୟ ପନ୍ଦର ବର୍ଷ କାଳ ମୋତେ ବାହାରେ ରହିବାକୁ ପଡ଼ିବାରୁ ସେ ଦୋକାନ କିମ୍ବା ରସଗୋଲା ସହିତ ମୋର ସଂପର୍କ ନଥିଲା । କିନ୍ତୁ କଟକରୁ ଭୁବନେଶ୍ୱର ଏୟାରପୋର୍ଟକୁ ଯିବାବେଳେ ସବୁଥର ଲକ୍ଷ୍ୟ କରିଛି, ସେଠାରେ କ୍ରମେ ଦୋକାନ ସଂଖ୍ୟା ବଢ଼ିବଢ଼ି ଚାଲିଛି ଓ ରାସ୍ତାଠାରୁ ସେଠାକୁ ଯିବାପାଇଁ ନାଲିଗୋଡ଼ିର ମଧ୍ୟ ପଡ଼ିଗଲାଣି । ସବୁଥର ସେଇବାଟେ ଯିବାବେଳେ ମୋର ମନେହୁଏ- ଜଣେ ବ୍ୟକ୍ତିର ସ୍ୱପ୍ନ, ନିଷ୍ଠା ଓ ସଂଗ୍ରାମ ସୃଷ୍ଟି କରିଥାଏ ଇତିହାସ । ଗଣ ବା ଜନତା କେବଳ ଗୋଟାଏ ସ୍ଲୋଗାନ୍ ମାତ୍ର । ଗଣ ଇତିହାସର ଅସ୍ତ୍ର ହୋଇପାରେ, କିନ୍ତୁ ଏହାର ନିର୍ମାତା ଜଣେ ବ୍ୟକ୍ତି ।

ରସଗୋଲା ଖାଇବା ଡାକ୍ତରଙ୍କ ପରାମର୍ଶ ଅନୁସାରେ ଏବେ ମୋ ପକ୍ଷରେ ନିଷିଦ୍ଧ । କିନ୍ତୁ ପ୍ରାୟ ଦୁଇବର୍ଷ ତଳେ ଥରେ ସେଇ ରାସ୍ତାରେ ଆସୁଆସୁ ଆଉ ଗୋଟାଏ ଏପ୍ରିଲ୍ ରାତିରେ ମୋର ଭାରି ଇଚ୍ଛା ହେଲା, ପନ୍ଦର ବର୍ଷ ତଳର ସେଇ ଦୋକାନରୁ ସଞ୍ଜ ରସଗୋଲା ଖାଇ ମଲ୍ଲୀଫୁଲିଆ ପାଣି ପିଇବାପାଇଁ । ସ୍ଥାନଟା ସେଦିନକୁ ହୋଇଗଲାଣି ଗୋଟିଏ ଛୋଟିଆ ବଜାର । କେବଳ ମିଠା ଛଡ଼ା ସେ ବଜାରରେ ଅନ୍ୟ କିଛି ପ୍ରାୟ ମିଳେ ନାହିଁ । ପଣ୍ୟର ସେଇ ଅରଣ୍ୟ ଭିତରେ ମୁଁ ଅନେକ ଥର ଏପାଖ ସେପାଖ ହେବା ପରେ ଗୋଟାଏ ରସଗୋଲା ଦୋକାନ ପାଖରେ ପହଞ୍ଚିଲି । ତା' ଆଗରେ ମଧ୍ୟ ଥିଲା ଗୋଟାଏ ସଂକୀର୍ଣ୍ଣ ଅଗଣା ଓ ସେଠାରେ କେତେ ଖଣ୍ଡ ବେଞ୍ଚ ମଧ୍ୟ ପଡ଼ିଥିଲା । ମୋର ମନେହେଲା ଆଜିଠୁ ପନ୍ଦର ବା ସତର ବର୍ଷ ତଳେ ମୁଁ ପ୍ରଥମେ ବୋଧେ ଏଇ ଦୋକାନକୁ ଆସିଥିଲି । ମଲ୍ଲୀଫୁଲର ବାସ୍ନାମିଶା ପାଣି ପିଇଥିଲି । ଦୋକାନ ଆଗରେ ପିଣ୍ଡାରେ ଖଣ୍ଡେ ତକ୍ତପୋଷ ଉପରେ ଦୋକାନ ମାଲିକ, ଜଣେ ଯୁବକ ଗୋଟାଏ କ୍ୟାସ୍‌ବାକ୍ସ ପାଖରେ ଟ୍ରାଞ୍ଜିଷ୍ଟର ଧରି ବସିଥିଲେ । ତାଙ୍କୁ ସେ ବୁଢ଼ାବୁଢ଼ୀଙ୍କ କଥା ପଚାରିବାରୁ ସେ ଉତ୍ତର ଦେଲେ, "ସେମାନେ କେବେଠାରୁ କୁଆଡ଼େ ଗଲେଣି ।" ମୁଁ ରସଗୋଲା ନେବି କି ବୋଲି ପଚାରିବାରୁ ତାକୁ ପ୍ରଥମେ ଦୁଇଟି ରସଗୋଲା ମାଗିଲି । କିନ୍ତୁ ମୋର ମନେହେଲା, ସିଏ ତ ରସଗୋଲା ନୁହେଁ, ସେ ଥିଲା ମଇଦା ଆଉ ଛେନା ମିଶା କିଛି ଗୋଟାଏ

ପଦାର୍ଥ । ସେଥିରେ ସ୍ୱାଦ କିମ୍ବା ସ୍ନିଗ୍ଧତା ନଥିଲା । ପାଣି ଗିଲାସେ ମାଗିବାରୁ ଗୋଟିଏ ହାଫ୍‌ପାଣ୍ଟ୍ ପିନ୍ଧା କାଳିଆ ଟୋକା ଗୋଟାଏ କାଚ ଗ୍ଲାସ୍‌ରେ ଯେଉଁ ପାଣି ଆଣି ଦେଲା, ତାହା କିପରି ପଙ୍କୁଆ ପଙ୍କୁଆ ଲାଗୁଥିଲା । ମୁଁ ପଇସା ଦେଇ ସେଠାରୁ ଉଠି ଆସିଲି ।

ସେଦିନ ଯାହା ଥିଲା, ସେଇ ଏକବାଗିଆ-ପାଗଳା ବୁଢ଼ାର ସ୍ୱପ୍ନ, ଆଜି ତାହା ହୋଇଛି ବ୍ୟବସାୟୀମାନଙ୍କ ପଣ୍ୟ । ପଣ୍ୟରେ ତେଣୁ ସ୍ୱପ୍ନ ଆସିବ କେଉଁଠୁ ? ଜଣଙ୍କର ସ୍ୱପ୍ନ ଓ ସାଧନା ମଧ୍ୟରେ ସବୁ ନୂଆ ସୃଷ୍ଟି ହୋଇଥାଏ । ପରବର୍ତ୍ତୀ କାଳରେ ତାହା ହୋଇଯାଏ ପଣ୍ୟ । ତାହା ହିଁ ହେଉଛି ଅବକ୍ଷୟ । ଏ ଅବକ୍ଷୟ ଆଜି ସାହିତ୍ୟ, କଳା, ସଂସ୍କୃତି ଓ ରାଜନୀତି ପ୍ରଭୃତି ସବୁଠି ପ୍ରସରିଗଲାଣି । ନୂତନ ସ୍ୱପ୍ନ ମଧ୍ୟରେ କେବଳ ଏ ଅବକ୍ଷୟରୁ ମୁକ୍ତି ମିଳିପାରିବ- ପୁରାତନର ରୋମନ୍ଥନରେ ନୁହେଁ ।

୨୨/୦୪/୯୦

# ନିଃଶବ୍ଦ ବିଦାୟ

ଗତ ସପ୍ତାହର ଗୋଟିଏ ସମ୍ବାଦ ମୋତେ ଏପର୍ଯ୍ୟନ୍ତ ତଥାପି ଆଚ୍ଛନ୍ନ କରି ରଖିଛି- ତାହା ହେଲା, ଚତୁର୍ଥ ଦଶକର ବିଖ୍ୟାତ ଚଳଚ୍ଚିତ୍ର ଅଭିନେତ୍ରୀ ଗ୍ରେଟା ଗାର୍‌ବୋଙ୍କର ଚଉରାଅଶୀ ବୟସରେ ମୃତ୍ୟୁ । ଏଇ ସ୍ତମ୍ଭର ପ୍ରିୟ ପାଠକପା[illegible]ନେ ଭାବି ପାରନ୍ତି, ଚଉରାଅଶୀ ବର୍ଷ ବୟସ୍କା ଜଣେ ବୃଦ୍ଧା ଚଳଚ୍ଚିତ୍ର ଅଭିନେତ୍ରୀର ମୃତ୍ୟୁ ସମ୍ବାଦ ମୋତେ ଏପରି ଆଚ୍ଛନ୍ନ କରି ରଖିବାର କୌଣସି ଯୁକ୍ତିସିଦ୍ଧ କାରଣ ନଥାଇ ପାରେ । କାରଣ ଚଉରାଅଶୀ ବର୍ଷ ବୟସରେ ଜଣଙ୍କର ମୃତ୍ୟୁଟା ଅବା କେଉଁ ସମ୍ବାଦ ?

ଚତୁର୍ଥ ଦଶକରେ ମୁଁ ଗ୍ରେଟା ଗାର୍‌ବୋଙ୍କର ଦୁଇଟି ଚଳଚ୍ଚିତ୍ର ମାତ୍ର ଦେଖିଥିଲି- କଟକର ପ୍ରଭାତ ସିନେମାରେ, ମ୍ୟାଟିନି ଶୋ'ରେ । ମାତ୍ର ସେଇ ଚତୁର୍ଥ ଦଶକ ପରଠାରୁ ଗ୍ରେଟା ଗାର୍‌ବୋଙ୍କର ଅନ୍ୟ କୌଣସି ଫିଲ୍ମ ମୁଁ ଅବଶ୍ୟ ଆଉ ଦେଖିନାହିଁ । ମୁଁ ତାଙ୍କର ଜଣେ ଫ୍ୟାନ୍ ହୋଇଥିବାରୁ, ତାଙ୍କର କୌଣସି ନୂଆ ଫିଲ୍ମ ପ୍ରଯୋଜିତ ହେଲା କି ନାହିଁ ଅଥବା କେଉଁ ହଲ୍‌କୁ ଆସିଲା ସେ ସଂପର୍କରେ ବରାବର ଆଗ୍ରହ ରଖିଥାଏ । ୧୯୪୧ରେ ଅବଶ୍ୟ ତାଙ୍କର 'ଟୁ ଫେସ୍‌ଡ଼ ଓମ୍ୟାନ୍' ଶୀର୍ଷକ ଗୋଟିଏ ଫିଲ୍ମ ପ୍ରଯୋଜିତ ହୋଇଥିଲା, ମାତ୍ର ସେ ଫିଲ୍ମଟି ମୁଁ କେଉଁଠି ଦେଖିବାର ସୁଯୋଗ ପାଇନଥିଲି । ଏଇ ଫିଲ୍ମରେ ଅଭିନୟ କରିବା ପରେ ମାତ୍ର ଛତିଶ ବର୍ଷ ବୟସରେ ସେ ଔଜ୍ଜଲ୍ୟମୟୀ ହଲିଉଡ୍‌ର ଫିଲ୍ମ ଦୁନିଆରୁ ବିଦାୟ ନେଇ ଯାଇଥିଲେ । ବିଦାୟ ନେବାବେଳେ ସେ କୁଆଡ଼େ କହିଥିଲେ, "I want to be alone" ସେ ଚାହୁଁଥିଲେ ନିଃସଙ୍ଗତା ଓ ନିର୍ଜନତା। ତାଙ୍କ ମୃତ୍ୟୁ ପରେ ବିଭିନ୍ନ ପତ୍ରପତ୍ରିକାମାନଙ୍କରେ ଯେଉଁସବୁ ସମ୍ବାଦ ବାହାରିଥିଲା, ସେ ମ୍ୟାନ୍‌ହାଟାନ୍‌ର ଅଭିଜାତ ଇଷ୍ଟ ସାଇଡ୍ ଅଞ୍ଚଳରେ ସାତ କୋଠରି ବିଶିଷ୍ଟ ଏକ ଘରେ ଏକାକୀ ରହୁଥିଲେ ଓ ତାଙ୍କ ନାମକୁ ବଦଳାଇ ଦେଇଥିଲେ ହାରିଏଟ୍ ବ୍ରାଉନ୍ । ଯେଉଁ ଗ୍ରେଟା ଗାର୍‌ବୋ ଏକଦା ଯୌନତାର ପ୍ରତୀକ (Sex Symbol) ରୂପେ କୋଟି କୋଟି ଦର୍ଶକ ଓ ଫ୍ୟାନ୍‌ଙ୍କୁ ସମ୍ମୋହିତ କରି ରଖିଥିଲେ ଯାହାଙ୍କ ମାଳଞ୍ଚର ମାଳାକାର ହେବାପାଇଁ ସେଦିନ ବହୁ

ପ୍ରଣୟୀ ପାଗଳ ହୋଇ ଉଠିଥିଲେ, ଯୌବନର ମଧ୍ୟାହ୍ନରେ ସେ ଗ୍ରେଟା ଗାର୍‌ବୋଙ୍କର ମୃତ୍ୟୁ ହୋଇଯାଇଛି । ଏବେ ମ୍ୟାନ୍‌ହାଟାନ୍ ଇଷ୍ଟସାଇଡ୍‌ର ରାସ୍ତାରେ ଗ୍ରେଟା ଗାର୍‌ବୋଙ୍କ ଚେହେରାର ଯେଉଁ ମହିଳା ଆଖିରେ କଳା ସନ୍‌ଗ୍ଲାସ୍ ପିନ୍ଧି, କଦବା କ୍ୱଚିତ୍ ପଦାକୁ ବାହାରନ୍ତି, ସେ ଗ୍ରେଟା ଗାର୍‌ବୋ ନୁହନ୍ତି । ସେ ହାରିଏଟ୍ ବ୍ରାଉନ୍ । ମୁଁ ତେଣୁ ତାଙ୍କୁ ସ୍ୱାଭାବିକ ଭାବରେ ଧରି ନେଇଥିଲି ଗ୍ରେଟା ଗାର୍‌ବୋଙ୍କର ମୃତ୍ୟୁ କେବେଠାରୁ ହୋଇଯାଇଛି । ମାତ୍ର ସିଏ ଚଉରାଅଶୀ ବର୍ଷ ପର୍ଯ୍ୟନ୍ତ ବଞ୍ଚି ଅବଶେଷରେ ନ୍ୟୁୟର୍କର ଗୋଟିଏ ହସ୍‌ପିଟାଲ୍‌ରେ ପ୍ରାଣ ତ୍ୟାଗ କଲେ । ସେ ସମ୍ବାଦ ପ୍ରକୃତରେ ମୋତେ ସ୍ତବ୍ଧ କରି ଦେଇଥିଲା । ଜୀବନରେ ସେ ଯେପରି ମାୟାବିନୀ ଥିଲେ, ମୃତ୍ୟୁରେ ମଧ୍ୟ ରହିଗଲେ ସେହିପରି ମାୟାବିନୀ ହୋଇ । କେଉଁ ବ୍ୟାଧିରେ ପୀଡ଼ିତ ହୋଇ ସେ ଅବଶେଷରେ ପ୍ରାଣତ୍ୟାଗ କଲେ, ତାହା ମଧ୍ୟ ଡାକ୍ତରମାନେ ତାଙ୍କର ଇଚ୍ଛା ପ୍ରତି ସମ୍ମାନ ପ୍ରଦର୍ଶନ କରି କାହାକୁ ଜଣାଇଲେ ନାହିଁ ।

ସେଦିନୁ ମୁଁ ଭାବୁଛି, ସାତ କୋଠରି ବିଶିଷ୍ଟ ଏକ ନିର୍ଜନ ବଙ୍ଗଳା ଭିତରେ ଗ୍ରେଟା ଗାର୍‌ବୋ ଓରଫ୍ ହାରିଏଟ୍ ବ୍ରାଉନ୍ ଏକାକିନୀ ସମୟ କଟାଉଥିଲେ କିପରି ? ହୋଇପାରେ ଯିଏ ଯେତେ ହାତ ପାଆନ୍ତାରୁ ଦୂରବର୍ତ୍ତୀ ହୋଇଯାଏ, ତାକୁ କେନ୍ଦ୍ରକରି ଗଢ଼ି ଉଠେ ସେତେ ଉପକଥା ଓ କିମ୍ବଦନ୍ତୀ । ଗ୍ରେଟା ଗାର୍‌ବୋ ସମ୍ଭବତଃ ସେଥିପାଇଁ ଦୁନିଆଠାରୁ ଦୂରେଇ ଯାଇ ନିଜକୁ ଉପକଥାର ଏକ ନାୟିକାରେ ପରିଣତ କରିବାକୁ ଚାହିଁଥିଲେ ।

ତଥାପି ଚଳଚ୍ଚିତ୍ର ଦୁନିଆରେ ତାଙ୍କର ପ୍ରତୁଳ ଯଶଖ୍ୟାତିକୁ ପାଦରେ ଆଡ଼େଇ ଦେଇ ସେ କାହିଁକି ଏକାକିନୀ ହେବାପାଇଁ ମନ ବଳାଇଲେ ? ମ୍ୟାନହାଟ୍‌ନ୍ ଇଷ୍ଟ ସାଇଡ୍‌ର ନିଃସଙ୍ଗ ମୁହୂର୍ତ୍ତମାନଙ୍କରେ ଏକାକିନୀ ସେ କ'ଣ ବା କରୁଥିବେ ? କେବେ କେବେ ହୁଏତ ଭାବୁଥିବେ, ତାଙ୍କର ଅତୀତ ପ୍ରଣୟୀମାନଙ୍କ କଥା, ଯେଉଁମାନେ ସେଦିନ ତାଙ୍କର ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ତାଙ୍କ ପାଖକୁ ଆସିଥିଲେ, ପ୍ରେମ ନିବେଦନର ଗୁଚ୍ଛଗୁଚ୍ଛ ରକ୍ତଗୋଲାପ ଘେନି । ମାତ୍ର ଗ୍ରେଟା ଗାର୍‌ବୋଙ୍କର ହିମଶୀତଳ ରୂପ ଲାବଣ୍ୟ ଯେ ଥିଲା ଏକ ଅଗ୍ନିଶିଖା ଓ ତାହା ସେମାନଙ୍କୁ ଦଗ୍ଧ କରି ଦେଇଥିଲା, ତାହା ସେମାନେ ବହୁ ବିଳମ୍ବରେ ବୁଝିଥିଲେ ନିଜର ତିକ୍ତ ଅଭିଜ୍ଞତାରୁ । ମାୟାବିନୀ ଗ୍ରେଟା ଗାର୍‌ବୋ ଅନେକଙ୍କୁ ପ୍ରଲୁବ୍ଧ କରିଥିଲେ, ମାତ୍ର ହୁଏତ କାହାରି ପାଖରେ ଧରାଦେଇ ନଥିଲେ । ଗ୍ରେଟା ଗାର୍‌ବୋ ତାଙ୍କର ନିଃସଙ୍ଗ ମୁହୂର୍ତ୍ତମାନଙ୍କରେ କ'ଣ ସେହି ପ୍ରତାରିତ ଓ ପ୍ରବଞ୍ଚିତମାନଙ୍କ ଉଦ୍ଦେଶ୍ୟରେ କରୁଥିଲେ ସ୍ମୃତିଚାରଣ ? ଏହା ମଧ୍ୟ ହୋଇପାରେ, ସବୁ ଯଶଖ୍ୟାତି ସତ୍ତ୍ୱେ ସେ ଜୀବନରେ କ'ଣ ପାଇଲେ ଓ କ'ଣ ବା ନପାଇଲେ, ତାହାର କରୁଥିଲେ ହିସାବ ନିକାଶ । ସେଇଥିରେ ବିତିଗଲା ଅର୍ଦ୍ଧଶତାବ୍ଦୀ ।

ଓସ୍କାର ପୁରସ୍କାର ପାଇଁ ତାଙ୍କର ନାମ ତିନିଥର ପ୍ରସ୍ତାବିତ ହୋଇଥିଲେ ସୁଦ୍ଧା ସେ ଏହି ବହୁବାଞ୍ଛିତସମ୍ମାନ ପାଇପାରି ନଥିଲେ । ପରେ ଅବଶ୍ୟ ଚଳଚ୍ଚିତ୍ର କ୍ଷେତ୍ରରେ ତାଙ୍କର ବିଶେଷ ଅବଦାନ ପାଇଁ ତାଙ୍କୁ ସ୍ପେଶାଲ ଓସ୍କାର ଆୱାର୍ଡ଼ରେ ସମ୍ମାନିତ କରାଯାଇଥିଲା । ମାତ୍ର ଏହା ତ ତାଙ୍କ ପାଇଁ ସ୍ୱୀକୃତି ନଥିଲା, ଏହା ଥିଲା ସହାନୁଭୂତି । ସେଇ ବ୍ୟର୍ଥତାବୋଧ ଗ୍ରେଟା ଗୋର୍‌ବୋଙ୍କୁ ଫିଲ୍ମ ଦୁନିଆରୁ କ'ଣ ସନ୍ନ୍ୟାସିନୀ କରିଦେଇଥିଲା ? କିନ୍ତୁ ଆୱାର୍ଡ଼ ନ ପାଇବା ସତ୍ତ୍ୱେ କେବଳ ଗ୍ରେଟା ଗାର୍‌ବୋ ନାଁ ଇ ଥିଲା ବକ୍ସ ଅଫିସ୍ ହିଟ୍ ପାଇଁ ଯଥେଷ୍ଟ । କାରଣ ଲକ୍ଷ ଲକ୍ଷ ଦର୍ଶକ ଓ ଫ୍ୟାନ୍‌ଙ୍କ ଦୃଷ୍ଟିରେ ସେ ଥିଲେ Sex Symbol, ଯୌନତାର ପ୍ରତୀକ । ଏହା କ'ଣ ତାଙ୍କ ନାରୀତ୍ୱର ଅଭିମାନକୁ ଆହତ କରିଥିଲା ? ସେଇ ଆଘାତରେ କ'ଣ ସେ ଦୁନିଆଠାରୁ ନିଜକୁ ଦୂରେଇ ରଖି, ହୋଇଥିଲେ ସନ୍ନ୍ୟାସିନୀ !

ଏବେ ବି ଭାବୁଛି, ଗ୍ରେଟା ଗାର୍‌ବୋଙ୍କର ସେଇ ନିଃସଙ୍ଗ ଜୀବନ ଓ ନିଃଶବ୍ଦ ବିଦାୟ । ମାତ୍ର ମୁଁ ତାର କୌଣସି ଉତ୍ତର ଖୋଜି ପାଉନାହିଁ ।

୨୯/୦୪/୯୦

# ଆଜିର ମଣିଷ

କାଲି ଦିନବେଳା ଉତ୍ତାପ ଥିଲା ଛତିଶ ଡିଗ୍ରୀ ସେଲ୍‌ସିୟସ୍ । ଆଜି ବୋଧହୁଏ ବଢ଼ିଛି । ଖରାବେଳେ ମୁଁ ପ୍ରବଳ ଅସ୍ୱସ୍ତିରେ ବିଛଣାରେ ପଡ଼ି ଛଟପଟ ହେଉଛି, ଆଉ ଦୁଇ ଭ୍ରୂଲତା ମଧ୍ୟରେ କପାଳ ଉପରେ ତୁଷାରାଚ୍ଛନ୍ନ ଗିରିଶୃଙ୍ଗମାନଙ୍କର ଧ୍ୟାନ କରୁଛି । ଏହିପରି ଆଖି ବୁଜି ଧ୍ୟାନ କଲେ ବାହାରର ଉତ୍ତାପ ଟିକିଏ ଊଣା ଲାଗୁଛି ।

ଏହି ସମୟରେ ବ୍ରଜ ଆସି ଖବର ଦେଲା, ଆପଣଙ୍କର କିଏ ଜଣେ ପଢ଼ା ବେଳର ସାଙ୍ଗ ନାରାୟଣବାବୁ ଦେଖା କରିବାପାଇଁ ଆସିଛନ୍ତି । ଭିତରେ ଭିତରେ ମୁଁ ବାରୁଦ ସ୍ତୂପ ପରି ବିସ୍ଫୋରଣ କରି ଉଠିଲି । ଏମାନଙ୍କର ସମୟ ଜ୍ଞାନ ବିଚିତ୍ର ! ତଥାପି ଯେତେବେଳେ ଭଦ୍ରଲୋକ ଆସିଛନ୍ତି, ଛତିଶି ଡିଗ୍ରୀ ସେଲ୍‌ସିଅସ୍ ଉତ୍ତାପ ଭିତରେ, ଏଇ ଖରାବେଳେ, ତାଙ୍କୁ ଫେରାଇ ଦେବା ମୋ ପକ୍ଷରେ ଅପରାଧ ହେବ । ସହଜେ ପୁଣି ନାରାୟଣ ଥିଲା ହାଇସ୍କୁଲ୍‌ଠାରୁ କଲେଜ ପର୍ଯ୍ୟନ୍ତ ମୋର ସତୀର୍ଥ । ପାଞ୍ଚବର୍ଷ ତଳେ ଭୁବନେଶ୍ୱରରେ ଗୋଟାଏ ବିବାହ ଭୋଜିରେ ତା' ସହିତ ମୋର ସାକ୍ଷାତ ହୋଇଥିଲା । ସେତେବେଳେ ସେ କହୁଥିଲା, ବର୍ଷେ ଦୁଇ ବର୍ଷ ଭିତରେ ସେ ଚାକିରିରୁ ରିଟାୟାର୍ଡ଼ କରି ତା'ପରେ ଆସି କଟକରେ ରହିବ । ତା' ଘରର ଉପର ମହଲଟା ସେ ଭଡ଼ାରେ ଦେଇଛି ବୋଲି କହୁଥିଲା । ତା' ନହେଲେ ଦୁଇ ହଜାର ଟଙ୍କା ପେନ୍‌ସନ୍‌ରେ ସେ ଚଳିପାରିବ କିପରି ? ସିଆଡୁ ଅସ୍ତବ୍ୟସ୍ତ ଭାବରେ ନାରାୟଣ, ଘାଘଡ଼ା ଗଳାରେ ଚିତ୍କାର କରି ମୋ ପାଖକୁ ଆସିବା ବେଳେ, ମୋତେ ଶୁଣାଇବା ପାଇଁ କହୁଥିଲା, "ଭାଇରେ, ତମ ଖବର ମୁଁ ବରାବର ଅଳୁ ପାଖରୁ ରଖିଥାଏ । ଅଳୁ ସାଙ୍ଗରେ ଯେତେବେଳେ ଦେଖାହୁଏ, ଆଗେ ତମ କଥା ପଚାରେ । ଯା ଭିତରେ ତମ ଆଖି ଅପରେସନ୍ ହେଲା, ତା'ପରେ ପଡ଼ିଲ ପ୍ରୋସ୍‌ଟ୍ରେଟ୍‌ରେ । ସବୁ ଖବର ମୁଁ ପାଇଛି । ହେଲେ ସତରେ ଭାଇ, ମୁଁ ସବୁବେଳେ ଏତେ ବ୍ୟସ୍ତ ଯେ ମୋତେ ମରିବାକୁ ସୁଦ୍ଧା ଦଣ୍ଡେ ଫୁରସତ ମିଳୁ ନାହିଁ ।"

ଜିଭଟା ଚଞ୍ଚଳ ହୋଇ ଉଠୁଥିଲା କହିବାପାଇଁ ମୃତ୍ୟୁ ଯେତେବେଳେ ଆସେ, ସେ କାହାକୁ ଫୁରୁସତ ଦିଏ ନାହିଁ । ଏଇପରି ବ୍ୟସ୍ତ ବିବ୍ରତ ଲୋକମାନେ କିପରି ଆଳାପ କରିବାକୁ ହୁଏ ଜାଣନ୍ତି ନାହିଁ । କେବଳ ନିଜ କଥା ଛଡ଼ା ଏମାନଙ୍କପାଇଁ ଅନ୍ୟ କିଛି ଯେପରି ନଥାଏ । କିନ୍ତୁ ଏ ବୟସରେ ନାରାୟଣକୁ ଆଉ ସେ କଥା ବୁଝାଇ ଲାଭ ନାହିଁ । ନାରାୟଣ ପାଇଁ ଗିଲାସେ ସରବତ ଆଣିବାକୁ ବ୍ରଜକୁ କହି ମୁଁ ପଚାରିଲି, "ତୁ ତ ଚାକିରିରୁ ରିଟାୟାର କରିବୁଣି । ଆଉ ତୋର ଏତେ ବ୍ୟସ୍ତତା କେଉଁଥିପାଇଁ ?" ନାରାୟଣ କହିଚାଲିଲା, "ବଡ଼ ଝିଅ ମାଳିନୀ ତ ଟ୍ରମ୍ବେରେ ରହେ ଜାଣିଛ । ଜ୍ୱାଇଁ ସେଠି ଇଞ୍ଜିନିୟର । ଝିଅକୁ କଟକରେ ଖଣ୍ଡେ ଜାଗା ଦେଇଥିଲି ଯୌତୁକ । ଆରବର୍ଷ ଆସିଥିଲା, ମୋତେ ଟଙ୍କା ଧରେଇ ଦେଇଯାଇଛି, ସେଇ ଜାଗା ଉପରେ ତା' ପାଇଁ ଗୋଟାଏ ଘର ତୋଳାଇବାପାଇଁ । ତମେ ବୋଧେ ଜାଣିଥିବ, ଆଜିକାଲି ଭଗବାନ ଯାହାକୁ ଅଭିଶାପ ଦିଅନ୍ତି, ତାକୁ କହନ୍ତି, ଗୋଟାଏ ଘର ତୋଳିବା ପାଇଁ । ମୂଲିଆ, ମିସ୍ତ୍ରୀ ଜଗିବାଠାରୁ ଆରମ୍ଭ କରି ସିମେଣ୍ଟ, ରଡ଼ ଯୋଗାଡ଼ କରିବା" ସବୁ ମୋତେ ବୁଝିବା ପାଇଁ ପଡୁଛି । ଇତ୍ୟାଦି । ମୁଁ ପ୍ରବଳ ବିରକ୍ତିରେ ପଚାରିଲି, "ତା'ପରେ ?" ନାରାୟଣ ଇତି ମଧ୍ୟରେ ସରବତ ଗିଲାସଟା ଶେଷ କରି ସାରିଥିଲା । ମୁଁ ପଚାରିଲି, "ହଠାତ୍ ଏଇ ନିର୍ଧୂମ୍ ଖରାବେଳେ ମୁଁ ତୁମର ମନେ ପଡ଼ିଗଲି କିପରି ?" ନାରାୟଣ କହିଲା, "ବଡ଼ ଝିଅକୁ ଯେତେବେଳେ ଖଣ୍ଡେ ଜାଗା ଦେଇଛି, ସାନଝିଅ ନଳିନୀକୁ ତ ନିଶ୍ଚୟ ଖଣ୍ଡେ ଜାଗା ଦେବି । ତମର ଏଇ ଆଡ଼େ ଖଣ୍ଡେ ଜାଗା ଦେଖିବି ବୋଲି ଆସିଥିଲି ଯେ ଦେଢ଼ ଗୁଣ୍ଠ ଜମିକୁ ସେ ହାଙ୍କୁଛି ଦେଢ଼ ଲକ୍ଷ ଟଙ୍କା ।"

କହିବା ପାଇଁ ଇଚ୍ଛା ହେଉଥିଲା, ଝିଅମାନଙ୍କ ନାଁରେ ଏସବୁ ତ ବେନାମି ସମ୍ପତ୍ତି ଅର୍ଜୁଛୁ । ଦୁଃଖ କରିବାର କ'ଣ ଅଛି ? କିଣି ପକା ।" କିନ୍ତୁ ନିରବ ରହିଲି । ଖରାବେଳର ଉତ୍ତାପ ସାଙ୍ଗକୁ ନାରାୟଣର ଏସବୁ ସଂସାରୀ କଥାବାର୍ତ୍ତା ମୋର ଅସ୍ୱସ୍ତିକୁ ଆଉରି ବଢ଼ାଇ ଦେଇଥିଲା । ନାରାୟଣ ମୋ ଖଟପାଖକୁ ଚଉକୀଟା ଟାଣିଆଣି, ଏକାନ୍ତ ବିଶ୍ୱାସରେ କହିବା ପରି ମୋତେ କହିଲା, "ହେଇଟି ସାନ ଝିଅ ନଳିନୀ ପାଇଁ ଗୋଟଏ ଭଲ ପାତ୍ର ଖୋଜୁଛି । ସବୁ ଦେବି । କଲର ଟି.ଭି., ରେଫ୍ରିଜେରେଟର, ଫର୍ଣ୍ଣିଚର, ସୁନା, ଗୋଟିଏ ମାରୁତି ଗାଡ଼ି ବି ବୁକିଂ କରି ରଖିଛି ।" ମୁଁ କହିଲି, "ଗୋଟାଏ ଆଇ.ଏ.ଏସ୍. ପାତ୍ର ଯୋଗାଡ଼ କର । ଆଇ.ଏ.ଏସ୍. ପାତ୍ର ତ ଆଜିକାଲି ଅଭାବ ନାହାନ୍ତି ।" ନାରାୟଣ କହିଲା, "ନାହିଁ ଭାଇ, ଆଇ.ଏ.ଏସ୍. ପାତ୍ରଙ୍କ ଭାଉ ଅନେକ ବଢ଼ିଯାଇଛି । ନଗଦ କ୍ୟାସ୍ ପାଞ୍ଚ ଲକ୍ଷ, ଦଶ ଲକ୍ଷ ଛଡ଼ା କଥାବାର୍ତ୍ତା କରୁନାହାନ୍ତି ।"

ମୁଁ ନିରବ ରହିଲି । ନାରାୟଣ ଟିକିଏ ଅଟକି ଯାଇ କହିଲା, "ମୁଁ ଶୁଣିଲି ତୁମର କିଏ ପିଉସୀ ପୁଅ ଭାଇର ପୁଅ ବମ୍ବେରେ ମର୍ଚ୍ଚାଣ୍ଟ ନାଭିରେ ଇଞ୍ଜିନିୟର ଅଛି । ନଳିନୀପାଇଁ ତା' କଥା ଟିକିଏ ବୁଝି ଦିଅନ୍ତ ନାହିଁ ?"

ବିରକ୍ତିରେ ମୋ ଦେହର ପ୍ରତି ଲୋମକୂପ ଯେପରି ଜଳି ଉଠିଲା । ନାରାୟଣ ତା'ହେଲେ ଇଆଡ଼େ ଜମି କିଣିବାପାଇଁ ଆସି ବନ୍ଧୁ ସଙ୍ଖୋଳା ନାଁରେ ମୋତେ ତା' ସାନ ଝିଅ ପାଇଁ ଘଟକାଳି କରିବା ପାଇଁ କହିବାକୁ ଆସିଛି ! ମୁଁ କହିଲି, "ନାରାୟଣ, ତୁମ ପ୍ରସ୍ତାବ ମନ୍ଦ ନୁହେଁ । କିନ୍ତୁ ମୋର ବ୍ଲଡ଼୍‌ପ୍ରେସର ହଠାତ୍ ଦଶ ମିଲିମିଟର ବଢ଼ି ଯାଇଥିବା ପରି ଲାଗୁଛି । ମୁଁ ବର୍ତ୍ତମାନ କାମ୍ପୋଜ୍ ଖାଇ ଶୋଇବି ।" ନାରାୟଣ ପଚାରିଲା, "ତାହେଲେ ପରେ ମୁଁ ତୁମକୁ ଟେଲିଫୋନ୍ କରି ବୁଝିବି ।" ମୁଁ କହିଲି, "ନା ନା, ମୋତେ ଟେଲିଫୋନ୍ କରିବା ଦରକାର ନାହିଁ । ମୁଁ ବରଂ ତୋତେ ଟେଲିଫୋନ୍ କରି ଜଣାଇବି ।" ନାରାୟଣ ଗଲାବେଳେ, ସେଇପରି, ଘାଘଡ଼ା ଗଳାରେ କହିଗଲା, "ମୋ କଥା ଭୁଲିବ ନାହିଁ, ଯାଉଛି ।"

ସେ ଯିବା ପରେ ପରେ ମନର ସବୁ ବିରକ୍ତି ଓ କ୍ରୋଧ ଓଜାଡ଼ି ଦେବା ପାଇଁ ମୁଁ ବ୍ରଜକୁ ଅକାରଣରେ ଗାଳିଗୁଲଜ କଲି ଓ ନାରାୟଣର ସେଇ ସ୍ଲିପ୍‌ଟାକୁ ଟିକିଟିକି କରି ଚିରି ଫିଙ୍ଗିଦେଲି । କିନ୍ତୁ ପର ମୁହୂର୍ତ୍ତରେ ମନେହେଲା, ଏମାନେ ସବୁ ଆଜିର ମଣିଷ । ବିନା ମତଲବ୍‌ରେ ଆଜିକାଲି କିଏ ବା କାହାକୁ ଆଉ ଶଙ୍ଖୋଳିବାପାଇଁ ଆସେ !

୦୬/୦୫/୯୦

# ଅବଳା କିନ୍ତୁ ଦୁର୍ବଳା ନୁହେଁ

ଅନ୍ୟମନସ୍କ ଭାବରେ ଟେଲିଭିଜନରେ ଜାତୀୟ ସମ୍ବାଦ ପ୍ରସାରଣ ଦେଖୁ ଦେଖୁ ହଠାତ୍ ଆଖିରେ ପଡ଼ିଲା ଗୋଟିଏ ବେଶ୍ ଲମ୍ବା ପଟୁଆରର ଫଟୋଚିତ୍ର। ପଟୁଆରଟି ଥିଲା, ଅବିମିଶ୍ରିତ ଭାବରେ ପୁରୁଷମାନଙ୍କର। ସମସ୍ତେ ପ୍ରାୟ ପଚାଶ ବର୍ଷର ଏପାଖେ ନୋହେଲେ ସେପାଖେ। କେହି କେହି ହାତରେ ପ୍ଲାକାର୍ଡ ଇତ୍ୟାଦି ଧରି କ'ଣ ସବୁ ସ୍ଲୋଗାନ୍ ମଧ୍ୟ ଦେଉଥିଲେ। କିନ୍ତୁ କେଉଁଥିପାଇଁ ଏ ପଟୁଆରର ଆୟୋଜନ, ତାହା ମୁଁ ଅନୁମାନ କରିପାରୁ ନଥିଲି। ଏହାର ପୃଷ୍ଠଭୂମିରେ ସୁଭାଷିନୀ ଘୋଷିକା ଜଣକ ଘୋଷଣା କରିଚାଲିଥିଲେ। ପୁରୁଷ-ଶାସିତ ସମାଜରେ ପତ୍ନୀମାନେ ନିର୍ଯାତିତ ବୋଲି ସମସ୍ତଙ୍କର ଗୋଟିଏ ଧାରଣା ରହିଛି। ମାତ୍ର ନାରୀ-ଶାସିତ ପରିବାରରେ ପୁରୁଷମାନେ ନାରୀମାନଙ୍କ ଦ୍ୱାରା ବହୁ ନିର୍ଯାତିତ ବୋଲି, ତାଙ୍କ ବିରୁଦ୍ଧରେ ପ୍ରତିବାଦ କରି ଏଇ ପଟୁଆର ବାହାରିଥିଲା। କିନ୍ତୁ କେଉଁ ସହରରେ, କେଉଁଠି, କେଉଁ ଅନୁଷ୍ଠାନର ଆନୁକୂଲ୍ୟରେ ଏ ପ୍ରତିବାଦ ପଟୁଆରର ଆୟୋଜନ ହୋଇଥିଲା ଓ ତା'ପରେ କ'ଣ ହେଲା, ଘୋଷିକାଙ୍କ ଘୋଷଣାରେ ତାହାର କୌଣସି ବୃତ୍ତାନ୍ତ ନଥିଲା।

ଆମ ସମାଜ ପୁରୁଷଶାସିତ ବୋଲି ନିଶ୍ଚୟ ସ୍ୱୀକାର କରିବାକୁ ପଡ଼ିବ। କିନ୍ତୁ ଆମର ପୁରାଣମାନଙ୍କରେ ପରିସ୍ଥିତି ଅଲଗା। ଦୁର୍ଗା ଓ ଚଣ୍ଡୀ ପ୍ରଭୃତି ଆରାଧ୍ୟା ଦେବୀମାନେ ମହିଷାସୁର, ଚଣ୍ଡ ଓ ପ୍ରଚଣ୍ଡ ପ୍ରଭୃତି ଅସୁରମାନଙ୍କୁ ବିନାଶ କରି, ପୁରୁଷ ଦେବତାମାନଙ୍କୁ ପରିତ୍ରାଣ କରିଅଛନ୍ତି। ଶ୍ରୀରାମଚନ୍ଦ୍ର ଦଶଶିର ରାବଣକୁ ନିହତ କଲେ ସତ; ମାତ୍ର ଆମ ଆଦିକବି ସାରଳା ଦାସ ସୃଷ୍ଟିକରେ ବିଲଙ୍କା ଅସୁର ଓ ରାବଣ ନିଧନକାରୀ ରାମଚନ୍ଦ୍ରଙ୍କୁ ଆହ୍ୱାନ ଦେଲେ ବିଲଙ୍କାର ନିଧନପାଇଁ ! କିନ୍ତୁ ତାହା ଶ୍ରୀରାମଚନ୍ଦ୍ରଙ୍କର ସାଧ୍ୟାତୀତ ହୋଇପଡ଼ିବାରୁ ଶକ୍ତି ସ୍ୱରୂପିଣୀ ସୀତା ହିଁ ବିଲଙ୍କା ଅସୁରକୁ ନିଧନ କରିଥିଲେ। ଆପାତଃ ଦୃଷ୍ଟିରେ ଆମର ସମାଜ ପୁରୁଷ ଶାସିତ ହୋଇପାରେ, କିନ୍ତୁ ଆମ ପୌରାଣିକ ପରମ୍ପରା

ଅନୁସାରେ ନାରୀମାନେ ଇ ପ୍ରବଳା। ନାରୀମାନଙ୍କୁ ଯେ ଅବଳା କୁହାଯାଏ, ସେଥିସହିତ ମୁଁ ଆଦୌ ଏକମତ ନୁହେଁ। ରାଣୀ ଦୁର୍ଗାବାଈ, ରାଣୀ ଲକ୍ଷ୍ମୀବାଈଠାରୁ ଆରମ୍ଭ କରି ଉତ୍କଳରେ ଭୌମ୍ୟ ରାଜତ୍ୱ କାଳରେ ଦଣ୍ଡୀ ମହାଦେବୀ, ବକୁଳ ମହାଦେବୀ ଓ ତ୍ରିଭୁବନ ମହାଦେବୀ, ପୁଣି ଅଷ୍ଟାଦଶ ଶତାବ୍ଦୀ ବାଙ୍କିରାଣୀ ଶୁକଦେଇଙ୍କ ପର୍ଯ୍ୟନ୍ତ ବହୁ ନାରୀଙ୍କର ବୀରତ୍ୱ କାହାଣୀ ଆମ ଐତିହାସର ପୃଷ୍ଠାରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ରହିଛି।

ସହଜେ ପୁଣି ପୁରୁଷଶାସିତ ସମାଜରେ ଗୃହସ୍ଥ ସ୍ୱାମୀମାନେ ଯେ ନାରୀଶାସିତ, ତାହା କୌଣସି ଗୃହସ୍ଥ ସ୍ୱାମୀ ହଲଫ୍ କରି ଅସ୍ୱୀକାର କରିପାରିବ ନାହିଁ। ତଥାପି ଆଇନ୍ ଓ ପୁଲିସ୍ ଦୃଷ୍ଟିରୁ ପୁରୁଷ ହିଁ ହେଉଛି, ନାରୀ ନିର୍ଯାତକ ! ସେଥିପାଇଁ ଇଣ୍ଡିଆନ୍ ପେନାଲ କୋଡ୍‌ରେ ୪୯୮ (କ, ଧାରାର ବ୍ୟବସ୍ଥା ଏଇ ବିଚରା ପୁରୁଷମାନଙ୍କୁ ଯେ ଆହୁରି ଅସୁବିଧାରେ ପକାଇଛି, ସେଥିରେ ସନ୍ଦେହ ନାହିଁ। ଏହାର ପ୍ରତିବାଦରେ ସେଦିନ ନାଗପୁର ସହରରେ "ଅଖିଳ ଭାରତୀୟ ପତ୍ନୀ ଅତ୍ୟାଚାର ବିରୋଧୀ ମୋର୍ଚ୍ଚା" ନାମରେ ଏକ ସଂଗଠନ ପକ୍ଷରୁ ଏଇ ପଟୁଆର ଓ ତା'ପରେ ଏକ ସଭାର ଆୟୋଜନ କରାଯାଇଥିଲାବୋଲି ଖବରକାଗଜରେ ପଢ଼ିଲି। କିନ୍ତୁ ଏଇ ସଭାର ପରିଣତି ହୋଇଥିଲା ହାସ୍ୟୋଦ୍ଦୀପକ। ମୋର୍ଚ୍ଚାର ବିଶିଷ୍ଟ ଉଦ୍ୟୋକ୍ତା ଶ୍ରୀ ଏମ୍.ସି. ଗୁପ୍ତା ନାରୀ ନିର୍ଯାତିତ ସ୍ୱାମୀମାନଙ୍କୁ ଐକ୍ୟବଦ୍ଧ ହୋଇ ଜାଗି ଉଠିବାପାଇଁ ଜ୍ୱାଳାମୟୀ ଭାଷଣ ଦେଉଥିବାବେଳେ, 'ସ୍ତ୍ରୀ ଚେତନା' ନାମକ ଏକ ସଂଘର ନେତ୍ରୀ, ଶ୍ରୀମତୀ ଚନ୍ଦ୍ରା ତାଙ୍କ ଉଗ୍ରପନ୍ଥୀ ଅନୁଗାମିନୀମାନଙ୍କୁ ନେଇ ସଭାରେ ସମବେତ ସ୍ୱାମୀମାନଙ୍କ ଉପରେ ପଚାଅଣ୍ଡା, ବିଲାତି ବାଇଗଣଠାରୁ ଆରମ୍ଭ କରି ଆଉରି ନାନା ପ୍ରକାର କ୍ଷେପଣାସ୍ତ୍ରରେ ଯେପରି ଆକ୍ରମଣ କଲେ, ସେଥିରେ ସ୍ତ୍ରୈଣ ସ୍ୱାମୀମାନଙ୍କୁ ସଭାମଣ୍ଡପରୁ ପୃଷ୍ଠଭୂମି ଦେଇ ପଳାଇଯିବାପାଇଁ ବେଶି ବିଳମ୍ବ ଲାଗିନଥିଲା। ଅବଶେଷରେ ଉଦ୍ୟୋକ୍ତା ଶ୍ରୀ ଗୁପ୍ତା ମହାଶୟ ନାରୀବ୍ୟୂହ ମଧ୍ୟରେ ପଡ଼ି, ଜୋତାମାଳ ପିନ୍ଧି, ଝାଳ ଓ ଲୁହରେ ଏକାକାର ହୋଇ ସଭା ଶେଷକଲେ।

ପୁରୁଷ ଦିଗ୍‌ବିଜୟୀ ହୋଇପାରେ। ମାତ୍ର ପରିବାରରେ ସେ ସଂପୂର୍ଣ୍ଣ ଭାବରେ ସ୍ତ୍ରୀ ବଶୀଭୂତ। ଏହାର କାରଣ ମୁଁ ଯେତେ ଚିନ୍ତାକଲେ ସୁଦ୍ଧା ତା'ର କୌଣସି ସଦୁତ୍ତର ଖୋଜିପାଏନାହିଁ। ବୋଧହୁଏ ନାରୀ ସଂପର୍କରେ ପୁରୁଷର ଏକ ସ୍ନାୟବିକ ଦୁର୍ବଳତା ରହିଛି, ତା'ନହେଲେ ସମ୍ରାଟ ନେପୋଲିଅନ୍ ତାଙ୍କ ପ୍ରଣୟିନୀ ଜୋସେଫିନ୍‌ଙ୍କ ପାଦତଳେ ତାଙ୍କର ମୁକୁଟ ଅର୍ପଣ କରିଦେଇ ନଥାନ୍ତେ ! ଦିଗ୍‌ବିଜୟୀ ସମ୍ରାଟ ନେପୋଲିଅନ୍‌ଙ୍କର ଯେଉଁଠି ଏପରି ହାଲତ୍, ସେଠି ଅନ୍ୟ ପୁରୁଷମାନଙ୍କ କଥା ଉଠିବା ଇ ଉଚିତ୍ ନୁହେଁ। ପରିବାରରେ ମଧ୍ୟ ନାରୀମାନେ ବହୁ ପ୍ରହରଣ ଧାରିଣୀ– ଛାଞ୍ଚୁଣୀ, ବେଲଣାପେଡ଼ିର କାଠିଠାରୁ ଆରମ୍ଭ କରି ହେମଦସ୍ତାପୁଆ ଓ ଚୁମୁଟା ପର୍ଯ୍ୟନ୍ତ ବହୁ ଅସ୍ତ୍ରଶସ୍ତ୍ର ସେମାନଙ୍କର ଅସ୍ତ୍ର ଭଣ୍ଡାରରେ

ରହିଛି । କୌଣସି ପାଷାଣ୍ଡ ସ୍ୱାମୀ ଉପରେ ଏସବୁ ପ୍ରହରଣ ବ୍ୟର୍ଥ ହୋଇଗଲେ, ଶେଷକୁ ରହିଛି ନାରୀର ଅମୋଘ ଅସ୍ତ୍ର- ଲୁହ ! ପୁରୁଷ ଶେଷକୁ ଲୋକଲଜ୍ଜା ଭୟରେ ଏଇ ଅମୋଘ ଅସ୍ତ୍ର ଆଗରେ ନତି ସ୍ୱୀକାର କରି ସନ୍ଧି ସ୍ୱାକ୍ଷରପାଇଁ ବାଧ ହେବାଛଡ଼ା ବିଚରା ପୁରୁଷର ଆଉ କି ଚାରା ଅଛି ।

୧୯/୦୫/୯୦

# ମୁହୂର୍ତ୍ତ

ବାହାର ଅଗଣାରେ କାଲି କୃଷ୍ଣଚୂଡ଼ା ଗଛର ଶାଖରେ ଶାଖାରେ ଲାଗିଥିଲା ରଙ୍ଗର ହୋରିଖେଳ। ପତ୍ରସବୁ ସୁଦ୍ଧା ଲାଲ ହୋଇ ଉଠିଥିଲା ! ଆଜି ସେହି ଲୋଭରେ ମୁଁ ବାହାର ବାରଣ୍ଡାରେ ଆସି ବସିଲି। ଅପରାହ୍ନ ଗଡ଼ି ଯାଇଥିଲା। ସେତେବେଳକୁ ଗୋଧୂଳିର ଛାୟା କ୍ରମେ ଲମ୍ବି ଆସୁଥିଲା। କିନ୍ତୁ ନିର୍ମେଘ ନୀଳ ଆକାଶର ପୃଷ୍ଠଭୂମିରେ କୃଷ୍ଣଚୂଡ଼ା ଗଛର ଶାଖାସବୁ ଦିଶୁଥିଲା ସଦ୍ୟ ବିଧବାର ହାତ ପରି ରିକ୍ତ। କାଲି ଯେଉଁଠି ଅସୁମାରି ଲାଲ୍‌ଫୁଲରେ ଗଛଟା ଭାଙ୍ଗି ପଡୁଥିଲା, ଏବେ ସେଠାରେ ଫୁଲର ପାଖୁଡ଼ାଟିଏ ସୁଦ୍ଧା ଆଖିରେ ପଡୁ ନଥିଲା।

ମୁଁ ଚିତ୍କାର କରିବା ପରି କଣ୍ଠରେ ପଚାରିଲି, "ଆରେ, ଏବେ ଫୁଲ ଗଲା କୁଆଡ଼େ ?" ...ବ୍ରଜ କହିଲା, "କାଲି ରାତିରେ ଝଡ଼ ବର୍ଷାରେ ଗଛଟାଯାକର ଫୁଲ ଝଡ଼ିପଡ଼ିଲା।" ମୁଁ ନିର୍ବୋଧ ପରି ପଚାରିଲି, "ତା'ପରେ ?" ଏଇଟା ଯେପରି ଗୋଟାଏ ନିତାନ୍ତ ମାମୁଲି ଘଟଣା; ସେହିପରି କଣ୍ଠରେ ବ୍ରଜ ଉତ୍ତର ଦେଲା, "ତା'ପରେ ଆଉ କ'ଣ ? ମେହେନ୍ତର ଓଳାଇ ନେଇ ଖତକୁଡ଼ରେ ଫିଙ୍ଗିଦେଲା।"

ଘଟଣାଟି ଅବଶ୍ୟ ମାମୁଲି, ତଥାପି ମୋ' ଭିତରେ କେଉଁଠି ଚେଇଁ ଉଠିଥିଲା ଗୋଟାଏ ବେଦନା ! ସୁନ୍ଦର ଏତେ କ୍ଷଣଜୀବୀ କାହିଁକି ? ଆନନ୍ଦର ମୁହୂର୍ତ୍ତ ସବୁ ଏତେ ସଂକ୍ଷିପ୍ତ କାହିଁକି ? ସୃଷ୍ଟି ଆଉ ବିଲୟ ଏ ଚିରନ୍ତନ ରହସ୍ୟର ଉତ୍ତର ବା ମୋତେ ଦେବ କିଏ ?

ବିଷଣ୍ଣ, ଅନ୍ୟମନସ୍କ ଭାବରେ ଏହିପରି ଭାବିଚାଲିଛି; ମୋର ନାତୁଣୀ ଖଣ୍ଡେ ତଉଲିଆ ଉପରେ ଗୋଟେ ବଡ଼ ପ୍ଲାଷ୍ଟିକ୍ କଣ୍ଢେଇ ଦୁଇ ହାତରେ ଧରି ମୋ ପାଖକୁ ଆସୁଥିଲା। ଝିଅଟା ଫିଫ୍ଥ ନା ସିକ୍‌ସ୍‌ଥ ଷ୍ଟାଣ୍ଡାର୍ଡରେ କ'ଣ ପଢ଼ିଲାଣି। ତଥାପି କଣ୍ଢେଇ ଖେଳର ମୋହ ତା'ର ଯାଇନାହିଁ। ଭାବୁଛି, ଆଉ ବିସ୍ମିତ ହେଉଛି। ନାତୁଣୀ ମୋ କୋଳ ଉପରେ ଗୋଟିଏ ପ୍ରାୟ ତିନି/ଚାରି ମାସର ଶିଶୁକୁ ଶୁଆଇ ଦେଇ କହିଲା, "ଖୁଡ଼ୀ ତାଙ୍କର

ଛୁଆ ପୁଅକୁ ଆଣିଛନ୍ତି ତମକୁ ଦେଖାଇବାପାଇଁ।" ମୁହୂର୍ତ୍ତକ ପୂର୍ବର ସବୁ ବିଷର୍ଣ୍ଣତା କୁଆଡ଼େ ଉଭେଇ ଗଲା। ହୋ ହୋ ହସି ଉଠି କହିଲି, "ଆରେ ଆରେ, ଇଏ ମୋର ଗୋଟାଏ ନାତି। ମୁଁ ଯାକୁ କହୁଥିଲି ଗୋଟାଏ ପ୍ଲାଷ୍ଟିକ୍ କଣ୍ଢେଇ।" ଶିଶୁଟି ପ୍ରକୃତରେ ଗୋଟାଏ କଣ୍ଢେଇ ପରି ଦିଶୁଥିଲା।

ଏପରି ପିଲାମାନେ ମୋ' କୋଳକୁ ଆସିଲେ, ପ୍ରାୟ କାନ୍ଦି ଥାଆନ୍ତି। ଏ ଶିଶୁଟି କିନ୍ତୁ ଆଦୌ କାନ୍ଦିଲା ନାହିଁ। ମୋ' ଆଡ଼େ କେବଳ ବଲ୍ ବଲ୍ କରି ଚାହିଁ ରହିଲା। ମୁଁ ତା'ର କଅଁଳ ଦେହ ଉପରେ ହାତ ବୁଲାଇ ବୁଲାଇ କହିଲି, "ବାବୁ ତମେ କେଉଁଦିନ ଏ ଦୁନିଆକୁ ଆସିଲ ? ମୋର ତ ପ୍ରଥମ କର୍ତ୍ତବ୍ୟ ଥିଲା, ତମକୁ ଯାଇ ସଙ୍ଗୋଳିବାପାଇଁ, ତମକୁ ଆଶୀର୍ବାଦ ଦେବାପାଇଁ। କିନ୍ତୁ ଯାଇ ପାରିଲିନାହିଁ। ମୋର ତ୍ରୁଟି କ୍ଷମା କରିବ।" ଶିଶୁଟି ମୋ' କଥାରୁ କ'ଣ ବୁଝିଲା କେଜାଣି, ହାତଗୋଡ଼ ହଲାଇ କେବଳ କିରିକିରି ହୋଇ ହସିଲା। ମୋତେ ଲାଗିଲା, ଚହଲା ପାଣି ଉପରେ ଯେପରି ଜହ୍ନ ଆଲୁଅ ନାଚିଲା। କୃଷ୍ଣଚୂଡ଼ାର ରିକ୍ତ ଶାଖାମାନଙ୍କରେ ଯେପରି ଫୁଟି ଉଠିଲା ରାଶିରାଶି ଲାଲ କୃଷ୍ଣଚୂଡ଼ା। ମୁଁ ଚିତ୍କାର କରି କହିଲି, "ଆରେ ଦେଖ ଏ ପିଲାଟା କିପରି ହସୁଛି। ମୁଁ ଯେତିକି ଯେତିକି ତା'ର କଅଁଳ ଦେହ ଉପରେ ହାତ ବୁଲାଉଥିଲି, ସେ ସେତିକି କିରିକିରି ହସି ଉଠୁଥିଲା। ନାତୁଣୀ କିନ୍ତୁ ଏତେ ସମୟ ତାକୁ ହାତଛଡ଼ା କରିବାକୁ ନାରାଜ। ସେ ତା'କୁ ମୋ କୋଳରୁ ଉଠାଇ ନେଇ ଭିତରକୁ ଚାଲିଗଲା।

ସେତେବେଳକୁ ସନ୍ଧ୍ୟା ପ୍ରାୟ ହୋଇଆସିଥିଲା। ବାରଣ୍ଡାରୁ ଉଠି ଘର ଭିତରକୁ ଆସି ପୁଣିଥରେ ସେ ନବଜାତ ଶିଶୁର ହସ ଦେଖିବାର ଲୋଭ ସମ୍ବରଣ କରିପାରିଲି ନାହିଁ। ମୁଁ ବଡ଼ ପାଟି କରି ନାତୁଣୀକୁ ଡାକିଲି, ପୁଣିଥରେ ତାକୁ ମୋ' ପାଖକୁ ଆଣିବାପାଇଁ। ଏଥର ମୋ ସ୍ତ୍ରୀ ତାକୁ ଦୁଇ ହାତରେ ଧରି ମୋ' ପାଖକୁ ଆଣିଲେ ଓ ମୋ' କୋଳରେ ଶୁଆଇ ଦେଲେ। ଏଥର କିନ୍ତୁ ଶିଶୁଟି ଆଉ ହସିଲା ନାହିଁ। ସେ ଘରର ଚାରିଆଡ଼କୁ ଆବାକାବା ହେଇ ଅନାଇଁ କେବଳ କାନ୍ଦିବାରେ ଲାଗିଲା। ମୁଁ ତା'ର ହାତ ପାପୁଲିକୁ ଆଉଁସି ଆଉଁସି ଯେତେ ପଚାରିଲି "ବାବୁ କାନ୍ଦୁଛ କାହିଁକି, ବାବୁ କାନ୍ଦୁଛ କାହିଁକି", ସେ କ୍ରମେ ସେତିକି ସେତିକି ଜୋରରେ କାନ୍ଦିବାପାଇଁ ଲାଗିଲା। ମୋ ସ୍ତ୍ରୀ ତାକୁ କୋଳରୁ ଉଠାଇ ଧରି କହିଲେ, "ସିଏ ଆମକୁ ବାରୁଛି।" ସ୍ତ୍ରୀ ତାକୁ କୋଳରେ ଉଠାଇନେଇ ଚାଲିଗଲେ।

କିନ୍ତୁ ସେଦିନ ରାତିରେ ଅନେକ ସମୟ ପର୍ଯ୍ୟନ୍ତ ବିଛଣାରେ ପଡ଼ି ମୁଁ କେବଳ ଭାବୁଥିଲି ସନ୍ଧ୍ୟାବେଳର ସେଇ କଥା। ଯେଉଁ ଶିଶୁଟି ବାରଣ୍ଡାରେ ମୁଁ ବସିଥିବାବେଳେ ମୋ' କୋଳରେ ଶୋଇ ଏତେ ହସୁଥିଲା, ସିଏ ପୁଣି ଭିତରେ ମୋ' କୋଳରେ ଶୋଇ

ଏତେ କାନ୍ଦିଲା କାହିଁକି ? ସେ ପୁଣି ସେହିପରି ହସିଲାନାହିଁ କାହିଁକି ? କିଛିଟା ରହସ୍ୟବାଦୀ ଛାପ ମୋ'ଠାରେ ତଥାପି ରହିଯାଇଛି। ମୁଁ ମନେ ମନେ ଭାବିଲି, ତା'ର ଜେଜେ ଓ ଗୋସେଇଁ ଜେଜେ ଯେପରି ଆସିଥିଲେ, ମୋତେ ଆଜି ସନ୍ଧ୍ୟାରେ ସଙ୍ଖୋଳିବା ପାଇଁ। ସେମାନେ ଥିଲେ ମୋର ପରମ ଆତ୍ମୀୟ। ବହୁ ଦିନପରେ ମୋତେ ଦେଖି ଚତୁର୍ଥ ପ୍ରଜନ୍ମର ଏଇ ନବଜାତ ଶିଶୁ ମୁହଁରେ ସେମାନେ ଯେପରି ମୋ' ଆଡ଼େ ଚାହିଁ ହସୁଥିଲେ। ସେମାନେ ଯେପରି ଆସିଥିଲେ, ସେଇପରି ଚାଲିଗଲେ। ନବଜାତ ଶିଶୁକୁ ମୁଁ ଯେତେ ସାଉଁଳେଇଲେ ବି ସେ ଆଉ ହସନ୍ତା କିପରି ? ଯେଉଁ ମୁହୂର୍ତ୍ତଟି ଚାଲିଯାଏ ସେ ମୁହୂର୍ତ୍ତଟି ଆଉ ଫେରେନି।

୨୬/୦୪/୯୦

# ସାହିତ୍ୟ ଓ ରାଷ୍ଟ୍ର

ଖବରକାଗଜରେ ସମ୍ବାଦଟା ପଢ଼ି ପ୍ରଥମେ ନିଜ ଆଖିକୁ ବିଶ୍ୱାସ କରିପାରିଲି ନାହିଁ।

ହଙ୍ଗେରୀରେ ଦୀର୍ଘ କମ୍ୟୁନିଷ୍ଟ ଶାସନର ଅବସାନ ପରେ ନବଗଠିତ ପାର୍ଲିଆମେଣ୍ଟର ଅନ୍ତର୍ବର୍ତ୍ତୀକାଳୀନ ରାଷ୍ଟ୍ରପତି ରୂପେ ନିର୍ବାଚିତ ହୋଇଛନ୍ତି, ହଙ୍ଗେରୀର ଜଣେ ବିଖ୍ୟାତ ଲେଖକ, ଶ୍ରୀ ଆର୍ପଡ଼୍ ଗନସ୍‌ଥ। ୧୯୫୬ ମସିହାରେ ୱାର୍ସ ପ୍ୟାକ୍ଟର ନାଗବନ୍ଧନରୁ ମୁକ୍ତିପାଇଁ ହଙ୍ଗେରୀରେ ଯେଉଁ ବିରାଟ ଗଣଅଭ୍ୟୁତ୍‌ଥାନ ଘଟିଥିଲା, ସେଥିରେ ଅଂଶଗ୍ରହଣ କରିଥିଲେ ଏଇ ଖ୍ୟାତନାମା ଲେଖକ ଓ ସେଥିପାଇଁ ଛଅବର୍ଷ ମଧ୍ୟ କାରାଦଣ୍ଡ ଭୋଗିଥିଲେ। ମାତ୍ର ହଙ୍ଗେରୀରୁ ଏବେ କମ୍ୟୁନିଷ୍ଟ ଶାସନର ବିଲୋପ ପରେ ସେଦିନ ଦେଶଦ୍ରୋହୀ ରୂପେ ନିନ୍ଦିତ ବିଦ୍ରୋହୀ ଲେଖକ ଗନସ୍‌ଥ ଆଜି ଜନଗଣଙ୍କର ପରମ ଶ୍ରଦ୍ଧେୟ ଏବଂ ହଙ୍ଗେରୀର ରାଷ୍ଟ୍ରପତି। ଆମେ ଲେଖକ ନାମରେ ପରିଚିତ ଯେଉଁ 'ମାର୍ଜିନାଲ' ମଣିଷମାନେ ଆମ ଦେଶର ସମସାମୟିକ କାଳରେ ବଞ୍ଚି ରହିଛୁ, ସେଇ ଅନୁଭୂତିରୁ ଜଣେ ଲେଖକ ଗୋଟିଏ ରାଷ୍ଟ୍ରର ରାଷ୍ଟ୍ରପତି ଆସନରେ ବରିତ ହେବା ମୋତେ ପ୍ରକୃତରେ ବିସ୍ମିତ କରିଦେଇଥିଲା। ଏହାର କିଛିଦିନ ପୂର୍ବେ ଖବରକାଗଜରେ ମଧ୍ୟ ପଢ଼ିଥିଲି ଚେକୋସ୍ଲୋଭାକିଆର ଗଣଅଭ୍ୟୁତ୍‌ଥାନର ଆଘାତ ସେ ଦେଶରୁ କମ୍ୟୁନିଷ୍ଟ ଶାସନର ବିଲୋପ କରିବାପରେ ସେଠାରେ ମଧ୍ୟ ରାଷ୍ଟ୍ରପତି ରୂପେ ବରିତ ହେଇ ପ୍ରଖ୍ୟାତ ନାଟ୍ୟକାର ଭାକ୍‌ଲାଭ ହାଭେଲ୍। ବସ୍ତୁତଃ ପୂର୍ବ ୟୁରୋପରେ ମସ୍କୋର ଆଧିପତ୍ୟ ବିରୁଦ୍ଧରେ ଯେଉଁ ସ୍ୱତଃସ୍ଫୂର୍ତ୍ତ ଗଣ ଆନ୍ଦୋଳନ ତେଜିଥିଲା, ସେଥିରେ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ ଲେଖକ ଓ ଶିଳ୍ପୀମାନେ। ଏ ସମ୍ବାଦଟି ମଧ୍ୟ ପଢ଼ି ସାରିବାପରେ ମୁଁ ସେତେବେଳେ କମ୍ ବିସ୍ମିତ ହୋଇ ନଥିଲି। କିନ୍ତୁ ସବୁଠାରୁ ବିସ୍ମିତ ହୋଇଥିଲି ଯେଉଁଦିନ ଖବରକାଗଜରେ ପଢ଼ିଲି ମସ୍କୋର ଆଧିପତ୍ୟ ବିରୁଦ୍ଧରେ ବିଦ୍ରୋହ ଘୋଷଣା କରି ଲିଥନିଆର ଶହଶହ ଯୁବକ ପ୍ରସିଦ୍ଧ ଶାସ୍ତ୍ରୀୟ ସଙ୍ଗୀତଜ୍ଞ ବିଥୋଭେନ୍‌ଙ୍କର 'ନାଇନଥ୍ ସିମ୍ଫୋନୀ' ଗାଇ ଗାଇ

ସାଇକେଲ ପଟୁଆରରେ ବାହାରିଥିଲେ। ଆମ ଦେଶ ହୋଇଥିଲେ ଏପରି ଏକ ବିକ୍ଷୋଭ ପଟୁଆରରେ ଶୁଣିବାକୁ ମିଳିଥାଆନ୍ତା, 'ଜିନ୍ଦାବାଦ... ମୁର୍ଦ୍ଦାବାଦ' ପ୍ରଭୃତି କେତେକ ଅଶ୍ଳୀଳ ଧ୍ୱନି ଓ ଦେଖିବାକୁ ମିଳିଥାଆନ୍ତା ଅନେକ ହାଙ୍ଗାମାର ବୀଭତ୍ସ ଦୃଶ୍ୟ। କିନ୍ତୁ କମ୍ୟୁନିଜିମ୍‌ର ସବୁ ଦାଆ ଓ ହାତୁଡ଼ି ପ୍ରହାର କମ୍ୟୁନିଷ୍ଟ ଶାସିତ ଦେଶମାନଙ୍କରେ ଜନଗଣଙ୍କର ମାନସିକ ସୌକୁମାର୍ଯ୍ୟ ଓ କଳାଗତ ବା ଶୈଳ୍ପିକ ଅବବୋଧକୁ ତଥାପି ଭାଙ୍ଗି ଚୂରମାର କରିପାରି ନାହିଁ। ଏହାର ଅଭ୍ୟୁଦୟ ଏବଂ ସୋଭିଏତ ରୁଷିଆର ରାଷ୍ଟ୍ରପତି ଗୋର୍ବାଚୋଭଙ୍କର ଗ୍ଲାସ୍‌ନସ୍ତ ଥିଲା କେବଳ ନିମିତ୍ତ ମାତ୍ର।

ମୋର ନିଜର ଅନୁଭୂତିରୁ ମନେପଡ଼ିଗଲା, ଓଡ଼ିଶାର ଗୋଟିଏ ରାଜନୈତିକ ଦଳର ଦଳପତିଙ୍କ କଥା। ମୁଁ ନିର୍ବାଚନରେ ଲଢ଼ିବାପାଇଁ ଦଳ ପକ୍ଷରୁ ଟିକେଟ ପାଇବା ଲାଗି ଆଗ୍ରହୀ ବୋଲି ଶୁଣିବାମାତ୍ରେ ସେ ତାଙ୍କର ପାରିଷଦମାନଙ୍କୁ କହିଥିଲେ, "ସେଇଟା ଗୋଟାଏ ରାଇଟର। ରାଜନୀତିରେ ରାଇଟର, ଇଣ୍ଟେଲେକ୍‌ଚ୍ୟୁଆଲମାନେ କରିବେ କ'ଣ ?" ସେଇ ଦଳର ଆଉ ଜଣେ ପୂର୍ବତନ ମୁଖ୍ୟମନ୍ତ୍ରୀଙ୍କର ଲେଖକମାନଙ୍କ ପ୍ରତି ଥିଲା ଘୋର ଅଶ୍ରଦ୍ଧା। ସେ ମୋତେ ବେଳେବେଳେ କହୁଥିଲେ, ମୁଁ ଗୋଟାଏ ସ୍କ୍ରାଇବ୍। କେବଳ ଓଡ଼ିଶା ବୋଲି ନୁହେଁ, ମୋର ମନେହୁଏ ସାରା ଦେଶରେ ଲେଖକମାନଙ୍କ ପ୍ରତି ରାଜନୀତିକ ହୋଲ୍‌ସେଲର ବେପାରୀମାନଙ୍କର ପ୍ରାୟ ଏଇପରି ଦୃଷ୍ଟିଭଙ୍ଗୀ। ଏଇ ସ୍ତମ୍ଭର ପାଠକପାଠିକାମାନେ ବିସ୍ମିତ ହୋଇପାରନ୍ତି, ମାତ୍ର ପ୍ରେମଚନ୍ଦଙ୍କ ଯୁଗର ଜଣେ ବିଖ୍ୟାତ ହିନ୍ଦୀ ଔପନ୍ୟାସିକ (ବୋଧହୁଏ ଯଶପାଲ) ଘୋର ପୀଡ଼ିତ ହୋଇ ଦିଲ୍ଲୀର ଓକ୍ଲାଠାରେ ଜଣେ ଆତ୍ମୀୟଙ୍କର ଏକ ସନ୍ତସନ୍ତିଆ କୋଠରିରେ ପଡ଼ି ଚିକିତ୍ସିତ ହେଉଥିବାବେଳେ, ଅଲ୍ ଇଣ୍ଡିଆ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ମେଡ଼ିକାଲ ସାଇନ୍‌ସରେ ଚିକିତ୍ସାପାଇଁ ଭର୍ତ୍ତି ହେବାଲାଗି ତାଙ୍କୁ ସେଠାରେ ଜାଗା ମିଳି ନଥିଲା। ପରେ 'ନବଭାରତ ଟାଇମ୍‌ସ' ଏ ସମ୍ବାଦକୁ ଏକ ହାଙ୍ଗର ଷ୍ଟୋରୀ କରି ପ୍ରଥମ ପୃଷ୍ଠାରେ ଛପାଇବା ପରେ ସେ ସେ ଇଣ୍ଡିଆ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ମେଡ଼ିକାଲ ସାଇନ୍‌ସରେ ଭର୍ତ୍ତି ହୋଇପାରିଥିଲେ। କିନ୍ତୁ ସେ ରାଜନୀତିର ଜଣେ ଖୁଚୁରା ବ୍ୟବସାୟୀ ହୋଇଥିଲେ ସୁଦ୍ଧା, ଅଲ୍ ଇଣ୍ଡିଆନ୍ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ମେଡ଼ିକାଲ ସାଇନ୍‌ସରେ ତାଙ୍କପାଇଁ ଗୋଟିଏ ସ୍ୱତନ୍ତ୍ର କ୍ୟାବିନ୍ ମିଳିବା ଅସମ୍ଭବ ହୋଇନଥାନ୍ତା !

ନିଜର ଅନୁଭୂତିରୁ ମୁଁ ଏ ଦେଶର ଲେଖକମାନଙ୍କୁ 'ମାର୍ଜିନାଲ' ମଣିଷ ବୋଲି ଯେଉଁ ଆଖ୍ୟା ଦେଇଛି, ସେଇ ବାକ୍ୟାଂଶଟି କିନ୍ତୁ ମୋର ନିଜସ୍ୱ ମୌଳିକ ସର୍ଜନା ନୁହେଁ। ପୃଥିବୀର ବେକାର, ଅର୍ଦ୍ଧବେକାର ଓ ପ୍ରଚ୍ଛଦ ବେକାରମାନଙ୍କୁ ବିଶ୍ୱବ୍ୟାଙ୍କର ଜଣେ ପୂର୍ବତନ ଅଧ୍ୟକ୍ଷ ମ୍ୟାକ୍‌ନାମରା 'ମାର୍ଜିନାଲ ମ୍ୟାନ୍' ଆଖ୍ୟା ଦେଇଥିଲେ। ଅର୍ଥାତ୍ ଏମାନେ ନାମକୁ ମାତ୍ର ମଣିଷ। କୌଣସି ପ୍ରକାରେ ବଞ୍ଚି ରହିଛନ୍ତି। ଆମ ଦେଶରେ

ସାହିତ୍ୟ ନାମରେ ବହୁ ହଟ୍ଟଗୋଳ ଶୁଣାଯାଉଥିଲେ ସୁଦ୍ଧା ଆମ ଦେଶରେ ଲେଖକମାନେ ରହିଛନ୍ତି, ସେଇ 'ମାର୍ଜିନାଲ ମ୍ୟାନ' ସ୍ତରରେ।

ମୋର ମନେହୁଏ ଏଥିପାଇଁ ମୁଖ୍ୟତଃ ଦାୟୀ ଆମ ଦେଶର ଲେଖକମାନେ। ଆମେ ସତ୍ତା ବା ଏଷ୍ଟାବ୍ଲିଶ୍‌ମେଣ୍ଟଠାରୁ ଛୋଟଛୋଟ ଅନୁଗ୍ରହ ପାଇବାପାଇଁ ନିଜକୁ ଏଷ୍ଟାବ୍ଲିଶ୍‌ମେଣ୍ଟ୍ ପାଖରେ ଅତି ନ୍ୟୂନ କରି ଦେଇଥାଉ। ହଟଚମଟ ସୃଷ୍ଟି କରିବାପାଇଁ ଆମର ଲେଖାରେ ଥାଏ ଏକ୍‌ସପେରିମେଣ୍ଟେସନ ନାମରେ ଅନେକ ଜରିଜମୁରା କାମ। ଜନଗଣଙ୍କୁ ସ୍ପର୍ଶ କରିବା ଭଳି ଅଥବା ସେମାନଙ୍କର ଚେତନାକୁ ଦୋହଲାଇ ଦେବାଭଳି ଆମ ଲେଖାରେ ଉପାଦାନ ଅତ୍ୟନ୍ତ ବିରଳ।

ଏ ପରିସ୍ଥିତିରେ ଆମ ଦେଶରେ ଲେଖକ ଓ ସାହିତ୍ୟିକମାନେ ରାଷ୍ଟ୍ର ଉପରେ କୌଣସି ରେଖାପାତ କରିପାରିବେ କିପରି ? ଲେଖାସବୁ ଆଜି କେବଳ ରଚନାର ନାମାନ୍ତର ମାତ୍ର। କିନ୍ତୁ ବିସ୍ମିତ ହେଉଛି, ଗଣତାନ୍ତ୍ରିକ ସମାଜରେ ଲେଖ... ...ଲେଖକପାଇଁ ଅବାଧ ସ୍ୱାଧୀନତା ରହିଥିବାବେଳେ ସମାଜତାନ୍ତ୍ରିକ କମ୍ୟୁନିଷ୍ଟ ଦେଶମାନଙ୍କରେ ଲେଖକମାନେ ବରଂ ଅଧିକ ଦୁର୍ବାର। ସେଥିପାଇଁ ହଙ୍ଗେରୀ ବା ଚେକୋସ୍ଲୋଭାକିଆରେ ଲେଖକମାନେ ରାଷ୍ଟ୍ରପତି ପଦରେ ବରିତ ହୋଇ ପାରୁଛନ୍ତି। ଅଥଚ ଆମେ ରହିଯାଇଛୁ ବ୍ୟଞ୍ଜନାର୍ଥରେ ସମାଜରେ ମାର୍ଜିନାଲ ମ୍ୟାନ୍ ତାଲିକାରେ।

୦୨/୦୬/୯୦

# ଗୋଟିଏ ସେମିକୋଲନ୍

ଗୋଟିଏ ଦୈନିକ ସମ୍ବାଦପତ୍ରରେ ଜଣେ ଫଟୋ-ରିପୋର୍ଟର ମୋତେ ଯେତେବେଳେ ଆସି କହିଲେ, କଟକଠାରୁ ପଇଁଚାଳିଶି କିଲୋମିଟର ଦୂରବର୍ତ୍ତୀ ଗୋଟିଏ ଗ୍ରାମକୁ ସେ ଯାଉଛନ୍ତି, ସେ ଅଞ୍ଚଳର କୌଣସି ସମ୍ବାଦ ଓ ଫଟୋଗ୍ରାଫ୍ ସଂଗ୍ରହପାଇଁ- ମୁଁ ପ୍ରକୃତରେ ଆବେଗବିହ୍ୱଳ ହୋଇଉଠିଥିଲି। ଏହାର କାରଣ ହେଉଛି, ମୋର ଆଦ୍ୟ ଯୌବନର ବହୁ ସ୍ୱପ୍ନିଳ ସ୍ମୃତି ଏଇ ସ୍ଥାନଟି ସହିତ ଜଡ଼ିତ ରହିଥିଲା। ମୋର ମନର ମାନଚିତ୍ରରେ ଏବେ ବି ସେ ସ୍ଥାନଟି ରହିଛି ସବୁଜ।

କେନ୍ଦ୍ରାପଡ଼ା କେନାଲର ଉତ୍ତର ପଟରେ ଏହାର ଛୋଟିଆ ବଜାରଟି ଥିଲା ମୋର ନିତ୍ୟ ଆଡ୍‌ଡ଼ାସ୍ଥଳୀ। ବଜାର କହିଲେ ଆଠ ଦଶଟି ଚାଳଛପର ଦୋକାନ ଓ ତା' ପଛରେ ଗୋଟିଏ ଘଞ୍ଚ ଆମ୍ବତୋଟା। ବଜାରରେ ଗୋଟାଏ ଲୁଗାଦୋକାନ, ଗୋଟାଏ ତେଜରାତି ଦୋକାନ ଓ ଗୋଟିଏ ଗୁଡ଼ିଆ ଦୋକାନକୁ ଛାଡ଼ିଦେଲେ ବାକିଦୋକାନଗୁଡ଼ିକର ମିଞ୍ଜିମିଞ୍ଜି ଅବସ୍ଥା। ସେତେବେଳେ ଚା ବା ପାନ ବିଡ଼ି ଦୋକାନ ଖୋଲିବାର ରେୱାଜ ଏପରି ଛୋଟଛୋଟ ଗାଉଁଲି ବଜାରଗୁଡ଼ିକରେ ନଥିଲା। ତଥାପି ସେ ଅଞ୍ଚଳରେ ଏ ବଜାର ଓ ଘାଟର ନାମ ଥିଲା ବେଶ୍ ଜଣାଶୁଣା। କଟକରୁ କେନ୍ଦ୍ରାପଡ଼ା ପର୍ଯ୍ୟନ୍ତ ସେଦିନ ଷ୍ଟିମ୍ ଲଞ୍ଚରେ ଯାତ୍ରୀମାନେ ଯିବାଆସିବା କରୁଥିଲେ। ଏଇ ଘାଟରେ ମଧ୍ୟ ଲଞ୍ଚ୍ ଅଟକୁ ଥିଲା। ବଡ଼ ବଡ଼ ପଟତନ ଡଙ୍ଗାମାନଙ୍କରେ ତଳହଟୀ ଅଞ୍ଚଳରୁ ଗଣ୍ଡିଗଣ୍ଡି ଝୋଟ କଟକ ଯାଉଥିଲା, ସେଠାରୁ କଲିକତାକୁ ଟ୍ରେନ୍‌ରେ ରପ୍ତାନି ହେବାପାଇଁ, ପୁଣି କଟକରୁ ବଡ଼ବଡ଼ ମହାନଦୀ ଡଙ୍ଗାମାନଙ୍କରେ ବିଭିନ୍ନ ଖାଉଟି ମାଲ୍ ଲଦା ହୋଇ ତଳହଟୀ ଅଞ୍ଚଳକୁ ମହାଜନମାନେ ନେଉଥିଲେ ବିକ୍ରି କରିବାପାଇଁ। ସେଦିନ ଏଇ କେନାଲ୍‌ଟି ଥିଲା ଚଳଚଞ୍ଚଳ। କେନାଲ ଆରପଟେ ଲୁଣାନଈ। ସେ ନଈ ବାଲି ମଧ୍ୟ ଥିଲା ମୋର ଅତି ପ୍ରିୟ, ଅତି ଆପଣାର। ଏ ଅଞ୍ଚଳଟି ମୋର ନିର୍ବାଚନମଣ୍ଡଳୀର ଅନ୍ତର୍ଭୁକ୍ତ ଥିବାରୁ ୧୯୭୧ ମସିହା ପର୍ଯ୍ୟନ୍ତ ସ୍ଥାନଟି ସହିତ ମୋର ସଂପର୍କ ବେଶ୍ ଘନିଷ୍ଠ ରହିଥିଲା। କିନ୍ତୁ ସେଇଦିନୁ ଇତି ମଧ୍ୟରେ ମୁଁ ଆଉ

ସେଠାକୁ ଯାଇନାହିଁ କିମ୍ବା ଯିବାର ସମ୍ଭାବନା ମଧ୍ୟ ନାହିଁ। ସେଥିପାଇଁ ମୁଁ ସେ ଫଟୋ-ରିପୋର୍ଟରଙ୍କୁ ଅନୁରୋଧ କରିଥିଲି, ମୋପାଇଁ ସେ ସ୍ଥାନଟିର କେତେଖଣ୍ଡ ଫଟୋଗ୍ରାଫ୍ ଆଣିଦେବାପାଇଁ। ସେ ମଧ୍ୟ ମୋତେ ସେ ସ୍ଥାନର ଚାରିଖଣ୍ଡ ରଙ୍ଗିନ ଫଟୋଗ୍ରାଫ୍ ଆଣିଦେଲେ।

ମୋର ଆଦ୍ୟ ଯୌବନ ଦିନରୁ ଅର୍ଦ୍ଧଶତାବ୍ଦୀ ମଧ୍ୟରେ ଯେଉଁସବୁ ପରିବର୍ତ୍ତନ ଘଟିଯାଇଥିଲା ତା' ଭିତରେ ମୁଁ ସେଇ ବହୁ ପ୍ରଚାରିତ ସ୍ଥାନକୁ ଫଟୋଗ୍ରାଫ୍‌ରେ ଯେପରି ବୁଝିପାରୁ ନଥିଲି ! କେନାଲର ସେଇ ଚପଳଛନ୍ଦା ଚେହେରା ଆଉ ନଥିଲା ! ଏହା ଦିଶୁଥିଲା ଏକ ନିଷ୍ପ୍ରାଣ ଜଳ ପ୍ରଣାଳୀ ପରି ବ୍ୟଞ୍ଜନ ହୀନ। ଟ୍ରକ୍ ବସ୍ ଯୁଗରେ ଲଞ୍ଚ୍ ଆଉ ଡଙ୍ଗାର ପ୍ରୟୋଜନ ବା କ'ଣ ? କେନାଲ ଉପରେ ତେଣୁ ତିଆରି ହୋଇ ଗଲାଣି ଗୋଟାଏ କାଠ ଆଉ ବାଉଁଶ ପୋଲ। ବଜାରଟି ମଧ୍ୟ ବେଶ୍ ଲମ୍ବି ଗଲାଣି। ଅଧିକାଂଶ ଦୋକାନ ଆଜବେଷ୍ଟସ୍ ଛାଉଣୀ ପକ୍‌କା ଘର। ସବୁଠାରୁ ହେଲି କେନାଲର ଆରପାଖରେ ଗୋଟିଏ ବଡ଼ ଆଜବେସ୍‌ଷ୍ଟସ୍ ଛାଉଣୀ ପକ୍କା ଘର ଦେଖି। ମୁଁ ବିସ୍ମିତ କଣ୍ଠରେ ପଚାରିଲି, "ଏ ଘରଟା କ'ଣ ? କୋଡ଼ିଏ ବର୍ଷ ତଳେ ସୁଦ୍ଧା ଏ ଘରଟା ତ ଏଠାରେ ନଥିଲା !" ଫଟୋ ରିପୋର୍ଟର କହିଲେ, "ସେଇଟା ଗୋଟାଏ ଇଂଲିଶ୍ ମିଡ଼ିୟମ୍ ପବ୍ଲିକ୍ ସ୍କୁଲ୍ !" ହାଏ ହରି ! ଉତ୍ତର ଭାରତରେ ଇଂଲିଶ୍ ହଟାଓର ଝଡ଼ ବୋହୁଥିବା ବେଳେ ଏଇ ନିପଟ ପଲ୍ଲୀ ଗ୍ରାମରେ ପୁଣି ଗୋଟାଏ ଇଂଲିଶ୍ ମିଡ଼ିୟମ୍ ପବ୍ଲିକ୍ ସ୍କୁଲ୍। ଏ ସ୍କୁଲ୍ ସଂପର୍କରେ ଅଧିକ ତଥ୍ୟ ଜାଣିବାପାଇଁ ଚାହୁଁଥିଲି, ମାତ୍ର ଫଟୋ ରିପୋର୍ଟର ସେ ସଂପର୍କରେ କୌଣସି ଅନୁଧ୍ୟାନ କରିନଥିଲେ। ନିର୍ବୋଧ ପରି ସେଇ ରଙ୍ଗିନ ଫଟୋଚିତ୍ରଗୁଡ଼ିକ ଆଡ଼େ ଚାହିଁ ମୋର ମନେ ହେଉଥିଲା, ମୁଁ ଯେପରି କୌଣସି ଅଜଣା ଅଚିହ୍ନା ସ୍ଥାନର ଫଟୋଚିତ୍ର ଦେଖୁଥିଲି, କୌଣସି ମ୍ୟାଗାଜିନ୍‌ର ପୃଷ୍ଠାରେ: ଏ ସ୍ଥାନଟି ସହିତ ଯେପରି ମୋର କୌଣସି ଯୋଗସୂତ୍ର ନଥିଲା। ହଠାତ୍ ମୋ ଆଖିରେ ପଡ଼ିଲା କେନାଲ୍ ବନ୍ଧ ଉପରକୁ ଗୋଟିଏ ଚାଳଘର ଆଉ ତା' ସାମନାକୁ ଗୋଟିଏ ମୁଖଚାଳିଆର ଚିତ୍ର। ଏଇ ଚାଳଘରଟି ମଧ୍ୟ ସେଇଠାରେ ଠିକ୍ ଏଇପରି ଥିଲା ଆଜକୁ ପଚାଶ ବା ତହିଁରୁ ଊର୍ଦ୍ଧ୍ୱ ବର୍ଷ ତଳେ। ସେଇ ଚାଳ ଘରଟି ଥିଲା ଯେପରି ସେ ଦିନର ବହୁ ପରିଚିତ ପରିବେଶ ସହିତ ମୋର ଏକମାତ୍ର ଯୋଗସୂତ୍ର !

ସେ ଘରେ କୌଣସି ଦୋକାନ ନଥିଲା କିମ୍ବା ଗରାଖମାନଙ୍କୁ ମୁଁ କେବେ ସେ ଘର ଆଗରେ ଦେଖି ନଥିଲି। ତଥାପି କାହିଁକି ଯେ ସେ ଘରକୁ କୌଣସି ମହାଜନର ଗୋଦାମ ବୋଲି କହୁଥିଲେ, ତା'ର ରହସ୍ୟ ମୁଁ ଜାଣି ନଥିଲି, କିମ୍ବା ସେ ସଂପର୍କରେ ମଧ୍ୟ କାହାକୁ ପଚାରି ନଥିଲି। ମୁଖଚାଳିଆ ଭିତରେ ଖଣ୍ଡେ ପୁରୁଣାକାଳିଆ ତକ୍ତପୋଷ ପଡ଼ିଥିଲା।

ଗୋଦାମ ବୋଲି କୁହାଯାଉଥିବା ଘର ଭିତରଟା ଦିନବେଳେ ଦିଶୁଥିଲା କିଟିକିଟି ଅନ୍ଧାର। କିନ୍ତୁ ମୁଖଚାଳିଆରେ ସେଇ ତକ୍ତପୋଷ ଉପରେ ଅନେକ ସମୟରେ ଜଣେ ବୁଢ଼ାଳିଆ ଲୋକ-ବୋଧହୁଏ ମହାଜନ ଏକୁଟିଆ କେନାଲ୍ ଆଡ଼େ ଚାହିଁ ବସି ରହୁଥିଲେ। ଆଉ କେବେ କେବେ ବା ତାଙ୍କରି ବୟସର ଆଉ କେତେଜଣ ଲୋକ ସେଠାରେ ବସି ଗପସପ ଜମଉଥିଲେ। ଶୁଣିଥିଲି, କଟକ ମାଲ୍‌ଗୋଦାମରୁ ଡଙ୍ଗାରେ ସେ ମୋଟା ଦରରେ କିଛିକିଛି ମାଲ ଖର୍ଦ୍ଦି କରି ବେପାରୀମାନଙ୍କୁ ବିକ୍ରି କରୁଥିଲେ। ତାଙ୍କର ମଧ୍ୟ କୁଆଡ଼େ ଛୋଟ ବ୍ୟବସାୟ ଥିଲା। ଦୁଇ ତିନିଖଣ୍ଡ ଡଙ୍ଗା ତାଙ୍କର କୁଆଡ଼େ କେନାଲରେ ଚାଲୁଥିଲା। ମାତ୍ର ଟ୍ରକ୍ ଯୁଗରେ ସେ ବ୍ୟବସାୟ କେବେଠାରୁ ଲୋପ ପାଇଗଲାଣି। ତଥାପିସେ ଦିନର ସେଇ ଗୋଦାମ ଓ ତାର ମୁଖଚାଳୀଟି ଗତ ଅର୍ଦ୍ଧଶତାବ୍ଦୀର ବହୁ ଝଡ଼ଝଞ୍ଜା ମଧ୍ୟରେ ଅଚଳାୟତନ ପରି ତିଷ୍ଠି ରହିଛି। କେନ୍ଦ୍ରାପଡ଼ା କେନାଲ୍ ମନ୍ଦାକାନ୍ତା ଛନ୍ଦରେ ତା'ର ସାମନା ଦେଇ ବୋହିଚାଲିଛି। କିନ୍ତୁ ମୁଖଚାଳିଆର ସେହି ତକ୍ତପୋଷ ଉପରେ କିଏ ବା କେଉଁମାନେ ବସୁଛନ୍ତି, ଫଟୋଗ୍ରାଫ୍‌ରୁ ତାହା ଜାଣିବାର ଉପାୟ ନଥିଲା।

ସବୁ ପରିବର୍ତ୍ତନ ଭିତରେ କିଛି କିଛି ରହିଯାଏ, ଅପରିବର୍ତ୍ତନୀୟ ହୋଇ, କାଳର ବାକ୍ୟ ପ୍ରବାହରେ ସେସବୁ ଯେପରି ଗୋଟିଏଗୋଟିଏ ସେମିକୋଲନ।

କିନ୍ତୁ ତାରି ଭିତରେ ମୁଁ ଖୋଜି ପାଇଲି, ଅର୍ଦ୍ଧଶତାବ୍ଦୀ ତଳର ମୋର ହଜିଲା ପୃଥିବୀ।

୦୯/୦୬/୯୦

# କୁହୁ ନା ବିଳାପ

ଓଡ଼ିଶାରେ କଥା ଅଛି, "କାନ ଥିଲେ ନୋଳି ନାହିଁ; ନୋଳି ଥିଲେ କାନ ନାହିଁ।" ଏ ଓଡ଼ିଶାର ଜନସମାଜରେ ଏ କଥନୀର ପ୍ରଚଳନ ଅଛି କି ନାହିଁ, ମୁଁ ଜାଣେନାହିଁ, କାରଣ ନୋଳି ନାମକ କର୍ଣ୍ଣଭୂଷଣଟି ଅଧୁନା ଆଉ ପ୍ରାୟ କେହି ବ୍ୟବହାର କରୁନାହାନ୍ତି। ତଥାପି 'କାନ ଥିଲେ ନୋଳି ନାହିଁ, ନୋଳି ଥିଲେ କାନ ନାହିଁ' କଥାଟି ଜୀବନର ଗୋଟିଏ କଠୋର ବାସ୍ତବତା। ...ଗତବର୍ଷ ବଉଳ ଅମାବାସ୍ୟ ପୂର୍ବରୁ ସୁଦ୍ଧା ଆମ୍ବଗଛ ସବୁ ରାଶିରାଶି ବଉଳରେ ଭାଙ୍ଗି ପଡୁଥିଲେ। ସେମାନଙ୍କର ଥିଲା କୋଇଲି ପାଇଁ ପ୍ରତୀକ୍ଷା। କିନ୍ତୁ ଭୁଲରେ ସୁଦ୍ଧା କୋଇଲିଟିଏ ଆସିଲା ନାହିଁ। ଫାଲଗୁନ ଗଲା। ଚୈତ୍ର ଗଲା। ତଥାପି କୋଇଲିର କୁହୁ ରବ କାନରେ ପଡ଼ିଲା ନାହିଁ। ଦକ୍ଷିଣାପବନରେ ଆମ୍ବବଉଳର ସୌରଭ ବେଳେବେଳେ ଭାସି ଆସିଲା ସିନା, କିନ୍ତୁ ଦୂର ଦିଗ୍‌ବଳୟ ଆଡୁ କୋଇଲିର କୁହୁ ରବ ନୁହେଁ। କୁହୁ ଡାକ ନଶୁଣି ମୁଁ ଅବଶେଷରେ ଗୋଟିଏ ବିଷଣ୍ଣ ସିଦ୍ଧାନ୍ତରେ ପହଞ୍ଚିଥିଲି ଯେ କାପ୍ତା, କଜଳପାତି ଆଉ ହଳଦୀବସନ୍ତମାନଙ୍କ ପରି କୋଇଲି-କୁଳ ମଧ୍ୟ କେଉଁଆଡ଼େ ହଜିଗଲେଣି। ଅଧିକ ପ୍ରଦୂଷିତ ପରିବେଶର ପ୍ରକୋପରୁ ରକ୍ଷାପାଇବାପାଇଁ ସେମାନେ କେଉଁ ଅଜଣାରାଇଜକୁ ଉଡ଼ିଗଲେଣି। କିନ୍ତୁ ବୈଶାଖ ଅଧା ଭୋଗ ହୋଇଯିବା ପରେ କାଁଭାଁ କେଉଁଠି କୋଇଲିମାନେ ରାବିବାପାଇଁ ଆରମ୍ଭ କଲେ, ମାତ୍ର ତାହା ବେଶିଦିନ ପାଇଁ ନୁହେଁ। ଜ୍ୟେଷ୍ଠ ମାସ ବେଳକୁ କୋଇଲି ପୁଣି ନୀରବ ହୋଇଗଲା। ପଛରେ କେବଳ ଛାଡ଼ି ଦେଇଗଲା ତା'ର କୁହୁର ମୂର୍ଚ୍ଛନା ଓ ପ୍ରତିଧ୍ୱନି।

ଏବର୍ଷ କିନ୍ତୁ ମାଘ ମାସର ଆରମ୍ଭରେ ଦିନେ ସକାଳୁ କୋଇଲିଟିଏ କେଉଁଠି ଥରେ ରାବି ଉଠି ନୀରବ ହୋଇଗଲା। ଅଥଚ ଏବେ ଆମ୍ବଗଛମାନଙ୍କରେ ପେନ୍ଥାଏ ବଉଳ ସୁଦ୍ଧା ନଥିଲା। ମୁଁ ବିଭ୍ରାନ୍ତ ହୋଇପଡ଼ିଲି। କାଳେ ମୋର ଶୁଣିବାରେ ଭୁଲ ନା ପ୍ରକୃତରେ କୋଇଲିଟିଏ କେଉଁଠି ରାବି ଉଠିଥିଲା। ପବନରେ କିନ୍ତୁ ଦକ୍ଷିଣାର ହିଲ୍ଲୋଳ ନଥିଲା। ଜଳକଣା ସିକ୍ତ ପୁବେଇ ପବନରେ ଦକ୍ଷିଣର ଚପଳତା ନଥିଲା। ଆକାଶରେ ମେଳା

ମେଳା ମେଘ। ଆମ୍ବଗଛମାନଙ୍କରେ ବଉଳଟିଏ କେଉଁଠି ଆଖିରେ ପଡୁନଥିଲା। ଚୈତ୍ର ମଧ୍ୟ କଟିଗଲାଣି, ସେହିପରି ମେଘ ଆଉ ପୂବେଇ ପବନ ଭିତରେ। କୋଇଲିର କୁହୁରବପାଇଁ ଇଏତ ଆଦୌ ପରିବେଶ ନଥିଲା।

ମନେପଡ଼ିଗଲା, ଉଚ୍ଚାଙ୍ଗ ଶାସ୍ତ୍ରୀୟ ସଙ୍ଗୀତର କଣ୍ଠଶିଳ୍ପୀ ମୋର ଜଣେ ବନ୍ଧୁଙ୍କ କଥା। ଥରେ ଜଣେ ଧନାଢ଼୍ୟ ବ୍ୟକ୍ତିଙ୍କର ମଜଲିସ୍‌କୁ ସେ ଆମନ୍ତ୍ରିତ ହୋଇଥିଲେ, ଗୀତ ଗାଇବାପାଇଁ। ମାତ୍ର କଣ୍ଠଶିଳ୍ପୀ ବନ୍ଧୁ ଲକ୍ଷ୍ୟ କରି ଦେଖିଲେ, ସେ ଖେଆଲର ଆଳାପ ଆରମ୍ଭ କରିବାମାତ୍ରେ ସେଇ ଧନାଢ଼୍ୟ ବ୍ୟକ୍ତି ଓ ତାଙ୍କର ବନ୍ଧୁମାନେ ନିଜ ଭିତରେ ହୁକାଟାଣି କ'ଣ ସବୁ ଗପସପ ହେଉଛନ୍ତି। କଣ୍ଠଶିଳ୍ପୀ ମୋର ବନ୍ଧୁ ସେଥିରେ ହଠାତ୍ ଉତ୍‌କ୍ଷିପ୍ତ ହୋଇ ତାବଲଚୀ ପାଖରୁ ଡୁବିତାବଲା ଝିଙ୍କିଆଣି ସେଠାରେ କଚାଡ଼ି ଦେଇ ମାରଣାନ୍ତକ ମଜଲିସ୍‌ରୁ ବାହାରି ଚାଲିଗଲେ। ପରେ ମୋତେ ସେ କହିଲେ, ଯେଉଁମାନେ ସଙ୍ଗୀତର ରସ ବୁଝନ୍ତି ନାହିଁ, ସେମାନଙ୍କ ମଜଲିସରେ ସଙ୍ଗୀତ ଗାଇବା, ସଙ୍ଗୀତ ପ୍ରତି ଏକ ଅପମାନ। ...ମୋର ମନେହେଲା, ଆକାଶରେ ମାଳମାଳ ମେଘ ଆଉ ଶୀତୁଳିଆ ପୂବେଇ ପବନ କୋଇଲିମାନଙ୍କୁ ହୁଏତ ସେହିପରି ବୀତଶ୍ରଦ୍ଧ କରିଦେଇଥିବ। ଏମାନଙ୍କପାଇଁ ଭେକରଡ଼ି ହେଉଛି ଉପଯୁକ୍ତ ସଙ୍ଗୀତ। ଏମାନେ କୁହୁର କଦର୍ ବୁଝିବେ କିପରି ?

କିନ୍ତୁ ଆଶ୍ଚର୍ଯ୍ୟ, ଏବର୍ଷ ଫଗୁଣ ଓ ଚୈତ୍ରର ସେଇ ମାଳମାଳ ମେଘ ଓ ପୂବେଇ ପବନ ଭିତରେ ସେମାନଙ୍କର କୁହୁ ଧ୍ୱନିରେ ଦିଗନ୍ତ ମୁଖରିତ ହୋଇଉଠିଲା। କିନ୍ତୁ କୋଇଲିମାନଙ୍କର ସେ ବୋବେଇବା ମଧ୍ୟରେ କୁହୁର ଇନ୍ଦ୍ରଜାଲ ନଥିଲା। ...ଜ୍ୟେଷ୍ଠ ଭୋଗ ହୋଇଯିବା ଉପରେ। କୋଇଲିମାନେ ଏତେବେଳକୁ କ୍ରମେ ନୀରବ ହେଇଯିବା କଥା, କିନ୍ତୁ କୋଇଲିଟିଏ ଏବେ କେଉଁଠି ସକାଳୁ ସନ୍ଧ୍ୟା ପର୍ଯ୍ୟନ୍ତ ରାବୁଛି। ଅନ୍ୟ କୋଇଲି ତା'ର ପ୍ରତ୍ୟୁତ୍ତର ଦେଉନାହିଁ। ସେ କେବଳ ଏକା ଏକା ରାବି ଚାଲିଛି। ତା'ର କଣ୍ଠସ୍ୱରରୁ ଜଣା ହେଉଛି, ମାଈ କୋଇଲିଟିଏ। କେତେବେଳେ ପୂର୍ବରୁ କେତେବେଳେ ଦକ୍ଷିଣରୁ କେତେବେଳେ ପଶ୍ଚିମରୁ ଆଉ କେତେବେଳେ ବା ଉତ୍ତରରୁ ସେ ଦିନସାରା ରଡ଼ିକରି ଚାଲିଛି ! ସିଏ ତ କୁହୁରବ ନୁହେଁ, ଗୋଟାଏ ଅତୃପ୍ତ ଆତ୍ମାର ଅଶାନ୍ତ ଚିତ୍କାର। ଗଛକୁ ଗଛ ଖୋଜି ଖୋଜି ବୁଲୁଛି। ସେ କୌଣସି ପ୍ରତ୍ୟୁତ୍ତର ଦେଉନାହିଁ। ତଥାପି ସିଏ କୁହୁର ମୂର୍ଚ୍ଛନା ତୋଳି ତା'କୁ ଖୋଜୁଛି। ଆଉ କେତେଦିନ ସେ ଏହିପରି ଖୋଜି ବୁଲିବ କେଜାଣି ? କିନ୍ତୁ ଏ ନିର୍ବୋଧ କୋଇଲିକୁ ମୁଁ କିପରି ବା ବୁଝାଇବି, ଗୋଟିଏ କୋଇଲିରେ ବସନ୍ତ ଆସେନାହିଁ।

୨୩/୦୬/୯୦

# ତିଆନାନ୍‌ମେନ୍ ସ୍କୋୟାର୍‌ରେ ବିଠୋବେନ୍

ଚଳିତ ଜୁନ୍ ମାସ ୪ ତାରିଖ ଦିନ ବେଜିଂର ରକ୍ତ କଳଙ୍କିତ ତିଆନାନ୍‌ମେନ୍ ସ୍କୋୟାର୍‌ରେ ଚୀନ୍‌ର ଗଣତନ୍ତ୍ର ଓ ମାନବିକ ଅଧିକାର ଦାବି କରି ଅହିଂସ ଛାତ୍ର ଓ ଜନତା ସତ୍ୟାଗ୍ରହୀମାନଙ୍କ ଉପରେ ସୈନ୍ୟବାହିନୀ ଯେଉଁ ନୃଶଂସ ଦମନଲୀଳା ଓ ହତ୍ୟାକାଣ୍ଡ ଚଳାଉଥିଲା ତାହାର ପ୍ରଥମ ସ୍ମୃତିବାର୍ଷିକୀ ପାଳିତ ହୋଇଯାଇଛି। ଏହି ଉପଲକ୍ଷ୍ୟରେ, ସେଦିନ ସେହି ଅହିଂସା ସତ୍ୟାଗ୍ରହରେ ଯୋଗଦେଇଥିବା ଓ ତିଆନାନ୍‌ମେନ୍ ସ୍କୋୟାର୍‌ରେ ଉପସ୍ଥିତ ଥିବା ଜଣେ ଛାତ୍ରନେତା ଲୀ ରୁଇ୍ ତାଙ୍କର ଜୀବନସ୍ମୃତିରେ ସେଦିନର ସେଇ ଲୋମହର୍ଷକ ଘଟଣାବଳୀ ଲିପିବଦ୍ଧ କରିଅଛନ୍ତି। ସେ ବହି ଏପର୍ଯ୍ୟନ୍ତ ମୁଁ ଦେଖିନାହିଁ। କିନ୍ତୁ ତାହାର କେତେକ ଅଂଶ 'ଟାଇମ୍‌ସ ଅଫ୍ ଇଣ୍ଡିଆ'ରେ ପ୍ରକାଶିତ ହୋଇଥିଲା।...

"ସନ୍ଧ୍ୟା ! ଜୁନ୍ ୨ ତାରିଖ। ସତ୍ୟାଗ୍ରହୀମାନେ ଘଡ଼ିକୁ ଘଡ଼ି ଖବରପାଇଛନ୍ତି ସେମାନଙ୍କ ଆଡ଼କୁ ମାଡ଼ିଆସୁଛନ୍ତି ସୈନ୍ୟବାହିନୀ ଟ୍ୟାଙ୍କଗୁଡ଼ିକରୁ ଗୁଳିଗୋଳା ବୃଷ୍ଟି କରି ସେମାନଙ୍କୁ ମାଟିରେ ମିଶାଇଦେବାପାଇଁ। ଏହିପରି ସମ୍ବାଦ ତିଆନାନ୍‌ମେନ୍ ସ୍କୋୟାରରେ ସୃଷ୍ଟି କରି ଦେଇଥିଲା ଆଶଙ୍କା, ଆତଙ୍କ ଓ ଉଦ୍‌ବେଗର ଏକ ଉତ୍ପୀଡ଼କ ବାତାବରଣ।" ଲି ରୁଇ୍ ଲେଖିଛନ୍ତି, "ମନରୁ ସବୁ ଆଶଙ୍କା ଓ ଉଦ୍‌ବେଗ ଦୂରକରି ସ୍ଥିର ଭାବରେ ସେହି ଚରମ ମୁହୂର୍ତ୍ତର ମୁକାବିଲାପାଇଁ ତିଆନାନ୍‌ମେନ୍ ସ୍କୋୟାରରେ ଖଞ୍ଜାଯାଇଥିବା ଲାଉଡ୍ ସ୍ପିକରମାନଙ୍କରୁ ହଠାତ୍ ବାଜି ଉଠିଲା ପ୍ରସିଦ୍ଧ ସ୍ୱରଶିଳ୍ପୀ ବିଠୋବେନ୍‌ଙ୍କର 'ନାଇନ୍‌ଥ ସିମ୍ଫୋନୀ'ର ସଙ୍ଗୀତ ଝଙ୍କାର। ନାଇନ୍‌ଥ ସିମ୍ଫୋନୀର ଗାମ୍ଭୀର୍ଯ୍ୟପୂର୍ଣ୍ଣ ଓ ରହସ୍ୟମୟ ସ୍ୱରଲହରୀ ଯେପରି ଭାସି ଆସୁଥିଲା, ଅନ୍ୟ ଏକ ଜଗତରୁ। ତାହା ଆମ ମନରୁ ସବୁ ଉଦ୍‌ବେଗ ଓ ଆତଙ୍କ ଦୂର କରିଦେବା ସଙ୍ଗେ ସଙ୍ଗେ ମୃତ୍ୟୁର ସବୁ ଆଶଙ୍କା ଦୂରକରିଦେଲା।"

ଏହା ପୂର୍ବରୁ ପଢ଼ିଥିଲି, ଲିଥୁନିଆ ମସ୍କୋର ଆଧିପତ୍ୟରୁ ସ୍ୱାଧୀନତା ଘୋଷଣା କରିବା ପରେ, ସୋଭିଏତ୍ ସୈନ୍ୟବାହିନୀ ଲିଥୁନିଆ ଆଡ଼େ ମାଡ଼ି ଆସୁଥିବାବେଳେ,

ଲିଥୁନିଆର ଯୁବକମାନେ ସାଇକେଲ୍ ଚଢ଼ି ବିଠୋବେନ୍‌ଙ୍କର ଏହି ନାଇନ୍‌ଥ ସିମ୍ଫୋନୀ ଗାଇ ଗାଇ ଏକ ବିରାଟ ପ୍ରତିବାଦ ପଟୁଆରରେ ବାହାରିଥିଲେ। ବିଠୋବେନ୍‌ଙ୍କର ସଙ୍ଗୀତର ଏ ଅଦ୍ଭୁତ ଶକ୍ତି ମୋତେ ପ୍ରକୃତରେ ବିସ୍ମିତ କରିଦେଇଥିଲା।

କେତେଥର ଆକସ୍ମିକ ଭାବରେ ଆକାଶବାଣୀର କ୍ଲାସିକାଲ୍ ପାଶ୍ଚାତ୍ୟ ସଙ୍ଗୀତ କାର୍ଯ୍ୟକ୍ରମରେ ମୁଁ ଅବଶ୍ୟ ଶୁଣିଥିଲି, ବିଠୋବେନ୍‌ଙ୍କର ବୋଧହୁଏ ପଞ୍ଚମ ଓ ସପ୍ତମ ସିମ୍ଫୋନୀ। କିନ୍ତୁ ତାଙ୍କ ନାଇନ୍‌ଥ ସିମ୍ଫୋନୀ ଶୁଣିବାର ସୁଯୋଗ କେବେ ମୁଁ ପାଇନଥିଲି। କିନ୍ତୁ ବିଠୋବେନ୍‌ଙ୍କର ଏଇ ନାଇନ୍‌ଥ ସିମ୍ଫୋନୀକୁ ପାଶ୍ଚାତ୍ୟ ସଙ୍ଗୀତର ଆଲୋଚକମାନେ ସେକ୍‌ସପିୟରଙ୍କ ସାହିତ୍ୟ କୃତି ପରି ସର୍ବକାଳୀନ ଓ କାଳଜୟୀ ରୂପେ ଅଭିହିତ କରିଅଛନ୍ତି।

ଲୁଡ୍‌ଉଇଧ୍ ଭାନ୍ ବିଠୋବେନ୍ (୧୭୭୦-୧୮୨୭)ଙ୍କର ଜନ୍ମ ଜର୍ମାନୀର ରାଇନ୍ ନଦୀ କୂଳରେ, ବନ୍ ସହରରେ। କଠୋର ପରିସ୍ଥିତି ମଧ୍ୟରେ ତାଙ୍କର ଶୈଶବ ଓ କୈଶୋର ଅତିବାହିତ ହୋଇଥିଲା। ମାତ୍ର ଶୈଶବରୁ ହିଁ ତାଙ୍କର ସାଙ୍ଗୀତିକ ପ୍ରତିଭା ଉନ୍ମେଷିତ ହୋଇଥିଲା। ତାଙ୍କ ଜୀବଦ୍ଦଶାରେ କିନ୍ତୁ ସେ ପରିଚିତ ଥିଲେ ଜଣେ ସୁପ୍ରସିଦ୍ଧ ପିଆନୋବାଦକ ରୂପେ। ତାଙ୍କର ବିଶେଷତ୍ୱ ଥିଲା, କୌଣସି ସ୍ୱରଲିପିର ସାହାଯ୍ୟ ନନେଇ ତାତ୍କାଳିକ ଭାବରେ ସେ ମନେମନେ ସ୍ୱରଲିପି ରଚନାକରି, ତାହାକୁ ପିଆନୋରେ ବଜାଇ ଶ୍ରୋତାମାନଙ୍କୁ ମନ୍ତ୍ରମୁଗ୍ଧ କରି ରଖିପାରୁଥିଲେ। କିନ୍ତୁ ଆଜି ବିଶ୍ୱରେ ସେ ଅମର ହୋଇଛନ୍ତି ତାଙ୍କର ସିମ୍ଫୋନୀମାନଙ୍କ ଯୋଗୁଁ। ସିମ୍ଫୋନୀର ଅର୍ଥ ହେଉଛି ବିଭିନ୍ନ ବାଦ୍ୟଯନ୍ତ୍ର ସାହାଯ୍ୟରେ ସୁର-ସମାହାର। ଏହି ସିମ୍ଫୋନୀଗୁଡ଼ିକର ସ୍ୱରଲିପି ସେ କିନ୍ତୁ ନିଜ ହାତରେ ରଚନା କରିଥିଲେ। ବିଠୋବେନ୍ ଜୀବିତ ଥିବା କାଳରେ ତାଙ୍କର ଏହି ସିମ୍ଫୋନୀଗୁଡ଼ିକର ବିଶେଷ ଆଦର ନଥିଲା, କାରଣ ସେତେବେଳେ କେହି ତାହାକୁ ବୁଝି ପାରୁନଥିଲେ। ମାତ୍ର ତାଙ୍କର ମୃତ୍ୟୁର ଦୁଇ ଶତାବ୍ଦୀ ପରେ ଏଇ ସିମ୍ଫୋନୀଗୁଡ଼ିକ ଆଜି ବିବେଚିତ ହେଉଛି ଶ୍ରେଷ୍ଠ କଳାକୃତି ରୂପେ। ନିୟତିର ପରିହାସରେ ନାଇନ୍‌ଥ ସିମ୍ଫୋନୀ ରଚନା କରିବା ପୂର୍ବରୁ ବିଠୋବେନ୍ ଶୁଣିବାର ଶକ୍ତି ହରାଇ ବଧିର ହୋଇପଡ଼ିଥିଲେ। ଜଣେ ଲେଖକ ବା ଚିତ୍ରଶିଳ୍ପୀ ଦୃଷ୍ଟିଶକ୍ତି ହରାଇ ଅନ୍ଧ ହେବା ଯାହା, ଜଣେ ସଙ୍ଗୀତଶିଳ୍ପୀ ବଧିର ହୋଇପଡ଼ିବା ସେୟା। ବିଠୋବେନ୍ ତେଣୁ ତାଙ୍କର ହୃଦୟ ଭିତରେ ତାଙ୍କର ଶେଷ ନାଇନ୍‌ଥ ସିମ୍ଫୋନୀର ମୂର୍ଚ୍ଛନା ଶୁଣଥିଲେ ସିନା, କିନ୍ତୁ ନିଜ କାନରେ ନୁହେଁ। ନିଜର ସୃଷ୍ଟିରୁ ସ୍ରଷ୍ଟା ନିର୍ବାସିତ ହେବା ପରି ବିଠୋବେନ୍ ତାଙ୍କ ପ୍ରସିଦ୍ଧ ସିମ୍ଫୋନୀଗୁଡ଼ିକୁ ନିଜେ କେବେ ଶୁଣିପାରି ନଥିଲେ, ମାତ୍ର କୋଟିକୋଟି ପ୍ରାଣରେ ତାହା ଆଜି ଯେଉଁ ତରଙ୍ଗ ସୃଷ୍ଟିକରୁଛି, ଚୀନ୍‌ର ଛାତ୍ରନେତା ଲି ରୁଙ୍ଗ୍‌ଙ୍କ ଉପରୋକ୍ତ ଅନୁଭୂତି ମଧ୍ୟରେ ତାହା ସୁସ୍ପଷ୍ଟ।

ସାହିତ୍ୟ ପରି ସଙ୍ଗୀତ କେବଳ ମନୋରଞ୍ଜନଧର୍ମୀ ନୁହେଁ। ଆଧୁନିକ ସଙ୍ଗୀତ ନାମରେ ଯେଉଁ ସବୁ ସଙ୍ଗୀତ ପ୍ରାୟତଃ ଶୁଣିବାକୁ ମିଳିଥାଏ, ତା' ମଧ୍ୟରେ ମୁଁ ଶୁଣି ପାରିଛି, ଯେପରି ସଙ୍ଗୀତର ତୋଟି ଚିପି କେହି ତାକୁ ହତ୍ୟା କଲାବେଳେ, ଆତ୍ମରକ୍ଷାପାଇଁ ସଙ୍ଗୀତର ଆର୍ତ୍ତନାଦ। କିନ୍ତୁ ଉଚ୍ଚାଙ୍ଗ ଶାସ୍ତ୍ରୀୟ ସଙ୍ଗୀତ ମନୁଷ୍ୟ ହୃଦୟର ଗଭୀର ତନ୍ତ୍ରୀଗୁଡ଼ିକୁ ସ୍ପର୍ଶ କରି ତାକୁ ଯେପରି ନବଜୀବନ ଓ ଉପଲବ୍ଧିରେ ସଞ୍ଜୀବିତ କରିଦିଏ, ବିଠୋବେନ୍‌ଙ୍କର ନାଇନ୍‌ଥ ସିମ୍ଫୋନୀ ତାହାର ଏକ ଉଦାହରଣ। ତା' ନହେଲେ ଲିଥୁନିଆଠାରୁ ବେଜିଂ ପର୍ଯ୍ୟନ୍ତ ମୁକ୍ତିପାଗଳ ଜନତା ତା' ମଧ୍ୟରେ ପାଇପାରୁ ନଥାନ୍ତେ ସଂଗ୍ରାମପାଇଁ ନୂତନ ସଂକଳ୍ପ।

୩୦/୦୬/୯୦

# ବୈଜ୍ଞାନିକର ଜିଜ୍ଞାସା

୧୯୫୨ ମସିହା। ରାଜ୍ୟସଭାକୁ ମୁଁ ପ୍ରଥମ ନିର୍ବାଚିତ ହୋଇଥାଏ। ରାଜ୍ୟସଭା ଲବିରେ ଦିନେ ଜଣେ ଭଦ୍ରଲୋକଙ୍କୁ ଦେଖି ବିସ୍ମିତ ହୋଇପଡ଼ିଲି। ଭଦ୍ରଲୋକ ଟିକିଏ ମୋଟା, ପେଟ ବାହାରିପଡ଼ିଛି। ମଧ୍ୟବୟସୀ ନ ହେଲେ ହେଁ ମଧ୍ୟବୟସର ସୀମା ଅତିକ୍ରମ କରିଗଲେଣି। ପିନ୍ଧିଥିଲେ ଖଣ୍ଡେ ଧୋତି ଓ ଇସ୍ତ୍ରୀ ହୋଇ ନଥିବା ଧଳା ହାଫ୍ ସାର୍ଟ। ମୁଣ୍ଡରେ ବୋଧହୁଏ ସେଦିନ ଚିରୁଣୀ ବାଜି ନଥିଲା। ସେଥିପାଇଁ ସ୍ଥାନେସ୍ଥାନେ ମୁଣ୍ଡବାଳ ଝିଙ୍କଙ୍କ ପରି ଉପରକୁ ଉଠିଥିଲା। ଭଦ୍ରଲୋକ ଖଣ୍ଡେ ସୋଫା ଉପରେ ଚୁପ୍‌ଚାପ୍ ବସି ଉପର ଛାତ ଆଡ଼େ ଚାହିଁ ବିଡ଼ି ଟାଣୁଥିଲେ।

ରାଜ୍ୟସଭା ଲବି ଭିତରକୁ କୌଣସି ଆଗନ୍ତୁକ ବା ବାହାର ଲୋକ ଆସିବା ନିଷିଦ୍ଧ। ଲବିର ପ୍ରତ୍ୟେକ ପ୍ରବେଶ ପଥରେ ଜଗି ରହିଛନ୍ତି ୱାର୍ଡ଼ର ପ୍ରହରୀମାନେ। ତେବେ ଏ ଭଦ୍ରଲୋକ ନିଶ୍ଚିତ ଭାବରେ କ'ଣ ରାଜ୍ୟସଭାର ଏମ୍.ପି.। ତାଙ୍କୁ ମୁଁ ଧରି ନେଇଥିଲି କୌଣସି ରାଜ୍ୟର ଆଦିବାସୀ ସଭ୍ୟ ରୂପେ। କିନ୍ତୁ ତା' ପରେ ଦିନେ ଦେଖିଲି, ସେ ରାଜ୍ୟସଭାକୁ ଆସନ୍ତି, ସୁଟ୍ ଟାଇ, ପୂରା ବିଦେଶୀ ସାହେବୀ ପୋଷାକ ପିନ୍ଧି। କ୍ରମେ ଭଦ୍ରଲୋକଙ୍କ ସଂପର୍କରେ ମୁଁ କୌତୂହଳୀ ହୋଇ ଉଠିଲି। ବେଳେବେଳେ ଲକ୍ଷ୍ୟ କରି ଦେଖେ, ପଶ୍ଚିମବଙ୍ଗର କୌଣସି କୌଣସି ସଦସ୍ୟ ଲବିରେ ଯାଉଥିବା ବେଳେ ତାଙ୍କୁ ବେଶ୍ ଭକ୍ତିର ସହିତ ପ୍ରଣାମ ଜଣାନ୍ତି। ସେ କିନ୍ତୁ କାହା ସହିତ ପ୍ରାୟ ବାକ୍ୟାଳାପ କରନ୍ତି ନାହିଁ। "କେମିତି ଅଛ ?" ଛଡ଼ା ସେ କାହାକୁ କେବେ କିଛି କହିଥିବା ମୁଁ ଶୁଣିନାହିଁ। ରାଜ୍ୟସଭାକୁ ସେ ନିୟମିତ ଭାବରେ ମଧ୍ୟ ଆସନ୍ତି ନାହିଁ। କ୍ୱଚିତ୍ ଚାମ୍ବର ଭିତରକୁ ଯାଆନ୍ତି। ପୁଣି କିଛି ସମୟ ଚାମ୍ବର ଭିତରେ ବସି, ପୁଣି ଲବିକୁ ଫେରିଆସି ସୋଫା ଉପରେ ଚୁପ୍‌ଚାପ୍ ବସି ବିଡ଼ି ଟାଣନ୍ତି।

ଦିନେ ପଶ୍ଚିମବଙ୍ଗର ଜଣେ ଏମ୍.ପି.ଙ୍କୁ ତାଙ୍କ ସଂପର୍କରେ ପଚାରିଲି। ସେ ଆକାଶରୁ ତଳେ ଖସିପଡ଼ିବା ପରି କଣ୍ଠରେ କହିଲେ, "ଆରେ, ତୁମେ ତାଙ୍କୁ ଜାଣିନ ! ସେ ବିଖ୍ୟାତ୍

ମ୍ୟାଥ୍‌ମେଟିସିଆନ୍ ସତ୍ୟେନ୍ ବୋଷ। ଆଇନ୍‌ଷ୍ଟାଇନ୍‌ଙ୍କ ଥିଓରି ଅଫ୍ ରିଲେଟିଭିଟିର ଗଣିତ ସୂତ୍ରରେ କେତେକ ତ୍ରୁଟି ସେ ସଂଶୋଧନ କରିଛନ୍ତି। ବିଜ୍ଞାନ ଜଗତରେ ସେ ବେଶ୍ ପ୍ରସିଦ୍ଧ। ରାଷ୍ଟ୍ରପତିଙ୍କ ମନୋନୀତ ସଭ୍ୟରୂପେ ସେ ରାଜ୍ୟସଭାକୁ ଆସିଛନ୍ତି। ତାଙ୍କର ଏଇ ପରିଚୟ ପାଇବା ପରେ ତାଙ୍କ ପ୍ରତି ମୁଁ ଖୁବ୍ ସମ୍ଭ୍ରମଶୀଳ ହୋଇଉଠିଲି। ଦିନେ ଲବିରେ ସେ ଏକୁଟିଆ ବସିଥିବା ବେଳେ ମୁଁ ତାଙ୍କ ପାଖକୁ ଯାଇ ମୁଣ୍ଡନୁଆଁଇ ନମସ୍କାର କଲି। ସେ "କିପରି ଅଛ" ବୋଲି ବଙ୍ଗଳାରେ ପଚାରି ପୁଣି ନିରବ ହୋଇଗଲେ। ତାଙ୍କ ସହିତ ଦୁଇପଦ କଥାବାର୍ତ୍ତା ମୋର ଉଦ୍ଦେଶ୍ୟ ଥିବାରୁ, ମୁଁ ସେହିଠାରେ ଠିଆହୋଇ ରହିଲି। ମୋ ଆଡ଼େ କିଛି ସମୟ ଚାହିଁ ସେ ବଙ୍ଗଳାରେ କହିଲେ, "ବସ"।

ମୁଁ ତାଙ୍କ ପାଖରେ ବସିବା ପରେ ସେ ମୋର ଉପସ୍ଥିତି ଯେପରି ପୂରାପୂରି ଭୁଲିଗଲେ। କିଛିକ୍ଷଣ ପରେ ମୋତେ ହଠାତ୍ ବଙ୍ଗଳାରେ ମୋ ନାଆଁ କ'ଣ ବୋଲି ପଚାରିଲେ। ମୁଁ ମୋ ନାଆଁ ତାଙ୍କୁ କହିଲି। ତା'ପରେ ହଠାତ୍ ସେ ମୋ ହାତପାପୁଲିଟାକୁ ଟାଣିନେଇ ନିରବରେ କେବଳ ଆଉଁସିବାକୁ ଲାଗିଲେ। ତାଙ୍କ ହାତର କୋମଳ ସ୍ପର୍ଶ ମୋତେ ଅଭିଭୂତ କରିଦେଲା। ଝିଅମାନଙ୍କ ହାତଠାରୁ ସୁଦ୍ଧା ତାଙ୍କ ହାତ ଥିଲା ଆହୁରି କୋମଳ। ତା'ପରେ "ମୁଁ ତାହାହେଲେ ଆସେ" ବୋଲି କହି ଲବିରୁ ସେ ବାହାରକୁ ଚାଲିଗଲେ। ଏହିପରି ଘଟଣା ଆଉ କେତେଥର ମଧ୍ୟ ଘଟିଛି। ସବୁଥର ତାଙ୍କ ପାଖରେ ସୋଫା ଉପରେ ବସିଲେ ସେ ମୋ ନାଆଁ ପଚାରନ୍ତି ଓ ହାତ ଆଉଁସନ୍ତି। କେଉଁ ଇନ୍ଦ୍ରିୟାତୀତ ଭାବଜଗତରେ ସବୁବେଳେ ସେ ଯେପରି ବୁଡ଼ି ରହିଛନ୍ତି। ମୁଁ ନିରବରେ ଉଠି ଚାମ୍ବର ଭିତରକୁ ଚାଲିଯାଏ।

ସେଦିନ ସିମଲାରେ ଆନ୍ଦୋଳନକାରୀ ରେଳଶ୍ରମିକ ଓ ପୋଲିସ୍ ମଧ୍ୟରେ ସଂଘର୍ଷ ଲାଗିଯିବାରୁ ପୋଲିସ୍‌କୁ ଗୁଳି ଚଳାଇବାକୁ ପଡ଼ିଥିଲା ଓ ସେଥିରେ ଆଠଜଣ ଶ୍ରମିକଙ୍କ ମୃତ୍ୟୁ ଘଟିଥିଲା ଓ ସେଥିପାଇଁ ରାଜ୍ୟସଭାରେ ମୁଲତବୀ ପ୍ରସ୍ତାବ (କଲ୍ ଫର ପେପର) ଉପରେ ବିତର୍କ ଚାଲିଥିଲା। ଡକ୍ଟର ରାଧାକ୍ରିଷ୍ଣନ୍ ସେତେବେଳେ ଅଧ୍ୟକ୍ଷ ଭାବରେ କାର୍ଯ୍ୟ ପରିଚାଳନା କରୁଥିଲେ। ହଠାତ୍ ସମସ୍ତଙ୍କ ଦୃଷ୍ଟି ପଡ଼ିଲା ସବା ପଛ ବେଞ୍ଚରେ ପ୍ରଫେସର ସତ୍ୟେନ୍ ବୋଷଙ୍କ ଉପରେ। ସେଦିନ ସେ ରାଜ୍ୟସଭାକୁ ଆସିଥିଲେ ସୁଟ୍ ଓ ଟାଇ ପିନ୍ଧି। ହଠାତ୍ ସେଇ ପଛସିଟ୍‌ରୁ କାନ୍ଦି କାନ୍ଦି ସେ ବଡ଼ ପାଟିରେ କହିବା ଆରମ୍ଭ କଲେ, "ମଣିଷର ସବୁ ଜ୍ଞାନବିଜ୍ଞାନ ଯଦି ଗୋଟିଏ ଜୀବନ ସୃଷ୍ଟି କରିନପାରେ ତା'ହେଲେ ସେ ଗୁଳିଚଳାଇ ମଣିଷର ଜୀବନ ନାଶ କରିବ, କେଉଁ ଅଧିକାରରେ! କାନ୍ଦି କାନ୍ଦି କେବଳ ଏତିକି କଥା ବାରମ୍ବାର କହି ସେ ସିଧା ଚେୟାରମ୍ୟାନ୍‌ଙ୍କୁ ସମ୍ବୋଧନ କରି ସେଇ ପ୍ରଶ୍ନର ପୁନରାବୃତ୍ତି କଲେ। ପ୍ରଫେସର ସତ୍ୟେନ୍ ବୋଷଙ୍କର ଏ କାଣ୍ଡରେ ବିତର୍କ ହଠାତ୍ ବନ୍ଦ ହୋଇଗଲା।

ଡକ୍ଟର ରାଧାକ୍ରିଷନ୍ ତାଙ୍କୁ ବୁଝାଇଲେ, "ଗୁଳିକାଣ୍ଡ ସଂପର୍କରେ ବିଚାର ବିଭାଗୀୟ ତଦନ୍ତ ପାଇଁ ଦାବି ଉଠିଛି। ସରକାର ହୁଏତ ଏ ସଂପର୍କରେ ଯଥାବିଧି ତଦନ୍ତ କରାଇବେ। ଆପଣ ନିଜ ସ୍ଥାନକୁ ଫେରିଯାଆନ୍ତୁ ପ୍ରଫେସର ବୋଷ। ଆପଣଙ୍କର ଯଦି କିଛି କହିବାର ଥାଏ ତା'ହେଲେ ଆପଣଙ୍କ ସିଟ୍‌ରୁ ଆପଣ କୁହନ୍ତୁ। ମୁଁ ଅନୁମତି ଦେବି। ମାତ୍ର ପ୍ରଫେସର ବୋଷ୍‌ଙ୍କର କୋହ କ୍ରମେ ଯେପରି ବୃଦ୍ଧି ପାଉଥିଲା ଓ ତାଙ୍କର ସେଇ ଜିଜ୍ଞାସାର ବିରତି ନଥିଲା। ଡକ୍ଟର ରାଧାକ୍ରିଷନ୍ ପ୍ରଫେସର ସତ୍ୟେନ୍ ବୋଷ୍‌ଙ୍କୁ ଘେନି କ'ଣ କରିବେ ବୁଝି ପାରୁନଥିଲେ। ହଠାତ୍ ପ୍ରଫେସର ସତ୍ୟେନ୍ ବୋଷ ସେହିପରି କାନ୍ଦି କାନ୍ଦି ଓ ମଣିଷ ମଣିଷକୁ ମାରିବାରେ କି ଅଧିକାର ଅଛି ବୋଲି ପଚାରି ପଚାରି ଚାମ୍ବର ଭିତରୁ ବାହାରକୁ ଚାଲିଗଲେ।

ସେଇଦିନ ପରଠାରୁ ମୁଁ ସତ୍ୟେନ ବୋଷଙ୍କୁ ଲବିରେ କିମ୍ବା ଚାମ୍ବରରେ ଆଉ ଦେଖିନାହିଁ।

୦୭/୦୭/୯୦

# କଦମ୍ବ ଓ କେତକୀ

ସକାଳେ ଆକାଶର ଚେହେରା ଥିଲା ସତେଯେପରି କିଏ ତା'ର ଶହେ ଷାଠିଏ ଖାଇଯାଇଛି। ମୁହଁ ହାଣ୍ଡି କରିଛି।

ମୁଁ କିନ୍ତୁ କବି ହୋଇଥିଲେ କହନ୍ତି, ଅଭିମାନିନୀର ଲୁହ ଛଳଛଳ ଚେହେରା। ଗାଲରେ କି ଓଠରେ ଟିପଟିଏ ଛୁଇଁଦେଲେ ଆଖିରୁ ଲୁହର ଝରଣା ଫିଟିବ। ତା'ପରେ ନିଅ ସମ୍ଭାଳ।

ତା'ପରେ ସିଏ ନିଜେ କିନ୍ତୁ ଆଖିରୁ ଲୁହ ପୋଛି ହସିବ, ମାତ୍ର ମାନଭଞ୍ଜନର ଅନେକ ପାଲା ପରେ।

କିନ୍ତୁ କବିମାନେ ସବୁ ଉପମେୟର ଉପମାପାଇଁ କାହିଁକି ନାରୀକୁ ଖଞ୍ଜନ୍ତି, ତା'ର ରହସ୍ୟ ମୁଁ ଏ ପର୍ଯ୍ୟନ୍ତ ବୁଝିପାରିଲି ନାହିଁ। ବୋଧହୁଏ କବିତା ହୋଇପାରେ ବିକଳ୍ପ ଯୌନ ପରିତୃପ୍ତି ! ଲୋକାୟତ କବିମାନଙ୍କ କଥା ଛାଡ଼। ବୈଦିକ କବିମାନେ ସୁଦ୍ଧା ବର୍ଷାକୁ ଦ୍ୟାବ୍ୟା ଓ ପୃଥିବୀର ମିଳନର ପ୍ରତୀକରେ ବର୍ଣ୍ଣନା କରିଅଛନ୍ତି।

ହଠାତ୍ ମଧ୍ୟାହ୍ନରୁ ଆକାଶ କାନ୍ଦିବା ଆରମ୍ଭ କରିଛି। ତୁଚ୍ଛାଟାରେ କାନ୍ଦୁଛି। ବେଳେବେଳେ ଜୋର୍‌ରେ ଆଉ ବେଳେବେଳେ ଆସ୍ତେ ଆସ୍ତେ। ମୋତେ ଲାଗୁଛି ବାହାରେ ମେଘ ଯେପରି ଝୁମର୍ ନାଚୁଛି। ସେ ବିରାମ ନାହିଁ।

ନାଚିନାଚି ମେଘ କ୍ଳାନ୍ତ ହୋଇଗଲା। ସୂର୍ଯ୍ୟାସ୍ତ ପାଇଁ ତଥାପି ବିଳମ୍ବ ଅଛି। ଆକାଶର ଚେହେରା ଏବେ ଆଉ ଅଭିମାନିନୀର ନୁହେଁ, ଅଭିମାନ ଭାଙ୍ଗି ସେ ହସିବାପାଇଁ ଆରମ୍ଭ କରିଛି। ମାନଭଞ୍ଜନ ଅନେକ ପାଲା ହୋଇଗଲା।

ମୋତେ କିନ୍ତୁ ଏ ଅଷାଢ଼ ଭାରି ଅପୂର୍ଣ୍ଣ ଲାଗୁଛି, କଦମ୍ବ ଆଉ କେତକୀ ଅଭାବରୁ। ବର୍ଷାସିକ୍ତ ପବନରେ କଦମ୍ବ ଆଉ କେତକୀର ଗନ୍ଧ ନଥିଲେ, ଆଷାଢ଼ଟା ମୋତେ ଆଷାଢ଼ ପରି ଲାଗେନାହିଁ କିମ୍ବା ମନରେ ରୋମାଞ୍ଚ ଜାଗେ ନାହିଁ। ସେଥିପାଇଁ ଆଷାଢ଼ ଆସିବା ପୂର୍ବରୁ ମୁଁ କଦମ୍ବ ଆଉ କେତକୀ ପାଇଁ ଅନେକଙ୍କୁ ଅନୁରୋଧ କରିଥାଏ।

ଏଠାରେ ମୋର ଜଣେ ଆତ୍ମୀୟଙ୍କ ବଗିଚାରେ କଦମ୍ବ ଗଛ ଅଛି। ତାଙ୍କ ଘରକୁ ଲୋକ ପଠାଇଥିଲି କଦମ୍ବର ଗୋଟାଏ ଗୁଚ୍ଛପାଇଁ। ମାତ୍ର ସେ କହି ପଠାଇଲେ, ପ୍ରଥମେ ପ୍ରଥମେ କେତେବର୍ଷ କଦମ୍ବ ଫୁଟିବା ପରେ ସେ ଗଛରେ କାହିଁକି ଆଉ କଦମ୍ବ ଫୁଟୁନାହିଁ। ଫୁଲ କଢ଼ି ହୋଇ ଝରିପଡୁଛି। ବୋଧହୁଏ ଇଏ କୌଣସି ପାରିବେଶିକ କାରଣରୁ। ସଭ୍ୟତାର ବିକାଶ ଏବେ ପ୍ରତ୍ୟହ ବିଭିନ୍ନ କଳକାରଖାନା ମାନଙ୍କରୁ ଏପରି କି ଚାଷ କ୍ଷେତରୁ ସୁଧା ଯେଉଁସବୁ ବିଷାକ୍ତ ଗ୍ୟାସ୍ ବାହାରି ପରିମଣ୍ଡଳରେ ମିଶୁଛି, ତାହା କେବଳ ଓଜନକୁ କ୍ରମେ ଧ୍ୱଂସ କରୁନାହିଁ, ତା' ସହିତ ମଧ୍ୟ କ୍ରମେ ଧ୍ୱଂସ କରି ଚାଲିଛି, ଆମକୁ, ଆମ ପରିବେଶକୁ ଓ ସେଥିସହିତ ଆମ ଜୀବନର ଛୋଟଛୋଟ ଆନନ୍ଦଗୁଡ଼ିକୁ। ତେଣୁ ଆତ୍ମୀୟଙ୍କ ବଗିଚାରେ କଦମ୍ବ ନଫୁଟୁଣୁ ଯେ ଝରି ପଡୁଛି ସେଥିରେ ବିସ୍ମିତ ହେଲିନାହିଁ, କିନ୍ତୁ ଦୁଃଖିତ ହେଲି।

ମୋ ଘର ପାଖରେ ଜଣେ ପୁରୁଣା ଜମିଦାରଙ୍କ ପ୍ରାୟ ପରିତ୍ୟକ୍ତ କୋଠୀର ସୁବିସ୍ତୀର୍ଣ୍ଣ ବଗିଚାରେ ମୁଁ ଥରେ ଦେଖିଥିଲି, ରାଶି ରାଶି କଦମ୍ବ ଫୁଲରେ ଗଛଟାଏ ଭରିଯାଇଥିଲା। ବ୍ରଜକୁ ସେଠାକୁ ପଠାଇଲି କଦମ୍ବ ତୋଳି ଆଣିବାପାଇଁ। କିନ୍ତୁ ଯେଉଁଠି କଦମ୍ବ ଗଛ ଥିଲା, ସେଠି କିଏ ଏବେ ଘର ତୋଳିବାପାଇଁ ନିଅଁ ପକାଇଛି। ସେଠାରେ ଆଉ କଦମ୍ବଗଛ ନଥିଲା।

ଏହି ସମୟରେ ହଠାତ୍ ଆସି ପହଞ୍ଚିଲେ ଗୋଟାଏ ମଫସଲ ଗାଁରୁ ମୋ'ର ସାହିତ୍ୟପ୍ରେମୀ ଜଣେ କନିଷ୍ଠ ଅନୁରାଗୀ। ଗୋଟିଏ କଲେଜରେ ସେ ଲେକ୍‌ଚରର। କେତେବର୍ଷ ତଳେ ଥରେ ତାଙ୍କ ଗାଁରେ ଏକ ଆଷାଢ଼ ମାସରେ ସେ ମୋତେ ଉପହାର ଦେଇଥିଲେ କେତକୀ ଓ କଦମ୍ବ। ତାଙ୍କ ଗାଁରେ ଗୋଟାଏ ଘଞ୍ଚକିଆ କେତକୀ ବଣ ମଧ୍ୟ ଦେଖିଥିଲି, ଗୋଟିଏ ପୋଖରୀ ହୁଡ଼ାତଳେ। ସେ ଏକ ଅବିସ୍ମରଣୀୟ ଆଷାଢ଼। ତାଙ୍କ ଚାଳଘର ମଥାନ ଉପରେ କଖାରୁଲଟା ଉପରେ ଥପ୍‌ଥପ୍ ହୋଇ ପଡୁଥିଲା ମେଘ। ସେହି ଶବ୍ଦରେ ଆଖି ମୁଦି ହୋଇ ଆସୁଥିଲା, ଅଳସ ଚନ୍ଦ୍ରାରେ। ଭେକରଡ଼ି ମଧ୍ୟ ମୁଁ ସେଦିନ ସନ୍ଧ୍ୟାରେ ଶୁଣିଥିଲି ବିଲଗହୀରମାନଙ୍କରୁ। ଏପରି ପରିପୂର୍ଣ୍ଣ ଆଷାଢ଼ ମୁଁ ଇତିମଧ୍ୟରେ ଆଉ କେବେ ଉପଭୋଗ କରି ନଥିଲି। ତାଙ୍କୁ ସେଥିପାଇଁ ଲେଖିଥିଲି, ତାଙ୍କ ଗାଁରୁ ମୋ'ପାଇଁ କଦମ୍ବ ଆଉ କେତକୀ ପଠାଇବାପାଇଁ।

କିନ୍ତୁ ସିଏ ଯେ ଅନହୂତି। ଏବେ ହଠାତ୍ ଆସି ପହଞ୍ଚିଯିବେ ମୁଁ ଆଦୌ ଆଶା କରିନଥିଲି। ଜୀବନରେ ବେଳେବେଳେ କେତେକ ଆକସ୍ମିକ ଘଟଣା ଘଟିଥାଏ। ଇଏ ବୋଧହୁଏ ଥିଲା ସେହିପରି ଏକ ଆକସ୍ମିକ ଘଟଣା। ସେ କିନ୍ତୁ ମୋତେ ଉତ୍ତରରେ ଲେଖିଥିଲେ, ବାହୁଡ଼ା ବେଳକୁ ସେ ପୁରୀ ଯିବେ ! ଯେତିକିବେଳେ ମୋ' ପାଇଁ କେତକୀ ଆଉ କଦମ୍ବ ଆଣି ଦେବେ।

"ମୁଁ ଉଦ୍‌ଗ୍ରୀବ କଣ୍ଠରେ ପଚାରିଲି, ମୋ'ପାଇଁ କଦମ୍ବ ଆଉ କେତକୀ ଆଣିଛ ।"

ସେ ଉଦାସ କଣ୍ଠରେ ଉତ୍ତର ଦେଲେ, "କିଆକେତକୀ ବଣ ପୋଡ଼ାହୋଇ ସେଠାରେ ଚାଷଜମି ହେଲାଣି। କଦମ୍ବ କାଇଁ ଆଉ ଫୁଟୁନାହିଁ।"

ମୁଁ ପଚାରିଲି, "ମୁଁ ବହୁବର୍ଷ ହେଲା, ମେଘରାତିରେ ଭେକରଡ଼ି ଆଉ ଶୁଣିନାହିଁ। ତୁମଆଡ଼େ ମେଘ ରାତିରେ ଭେକମାନେ ଏବେ ରଡ଼ୁଛନ୍ତି ? "ସେ ମୋ' ଆଡ଼େ ବିସ୍ମିତ ଦୃଷ୍ଟିରେ କିଛିକ୍ଷଣ ନିରବରେ ଚାହିଁ ଉତ୍ତର ଦେଲେ, "ବିଲମାନଙ୍କରେ ଯେବେ ସବୁ ଇନ୍‌ସେକ୍ଟିସାଇଡ୍ ପଡ଼ୁଛି ସେଥିରେ ଭେକବଂଶ ନିର୍ମୂଳ ହୋଇଗଲେଣି।"

"ଆଉ ତମଘର ଚାଳମଥାନରେ କଖାରୁ ଲଟାପତ୍ର ଉପରେ ମେଘବିନ୍ଦୁ ଝରିବା ତୁମେ ଶୁଣୁଛ ?" ସେ ଉତ୍ତର ଦେଲେ, "ଆପଣ ସେଥର ଯେଉଁ ଚାଳଘରେ ରହିଥିଲେ, ଆଉ ସେ ଚାଳଘର ନାହିଁ। ଏବେ ଆମଘର ଆଜ୍‌ବେଷ୍ଟସ୍ ଛପର। ଏବେ ତା' ଉପରେ ଆଉ କଖାରୁ ଲଟା ମାଡୁନାହିଁ।"

ବିଷଣ୍ଣ କଣ୍ଠରେ ମୁଁ ପଚାରିଲି, "ତା'ହେଲେ, ସେ ତାଙ୍କପାଇଁ ଦିଆଯାଇଥିବା ଚା' କପ୍‌ରେ ଗୋଟାଏ ଚୁମୁକ୍ ଦେଇ କହିଲେ, "ଆଜ୍ଞା ଆପଣଙ୍କୁ ଗୋଟେ କଥା କହିବି, ଯଦି କିଛି ନଭାବନ୍ତି।"

ମୁଁ ଉତ୍ତର ଦେଲି, "ନିଃସଙ୍କୋଚରେ କୁହ। ତୁମ କଥା ମୁଁ ମନରେ ଘେନିବି କାହିଁକି ? ତୁମେ ତ ମୋର ଭାରି ପ୍ରିୟ।"

ସେ କିଛିକ୍ଷଣ ନିରବ ରହି ଚା' କପ୍‌ଟା ଶେଷ କରିବାପରେ ମତେ କହିଲେ, ମୁସ୍କିଲ ହେଉଛି। ଆପଣ ବଞ୍ଚିଛନ୍ତି, ସେ ଅର୍ଦ୍ଧଶତାବ୍ଦୀ ତଳର ପରିବେଶରେ। ଆଜିର ପରିବେଶ ସହିତ, ଆପଣ ନିଜକୁ ଖାପଖୁଆଇ ପାରୁନାହାନ୍ତି। ଆପଣଙ୍କ ଚିଠି ପାଇବାପରେ ଇ ମୋ ମନରେ ଏଇ ଧାରଣା ହୋଇଥିଲା। ଏ କାଳରେ ପୁଣି ଆପଣ ଖୋଜୁଛନ୍ତି କଦମ୍ବ ଆଉ କେତକୀ।"

୧୪/୦୭/୯୦

# ଶେଷସ୍ତମ୍ଭ ଓ କଦମ୍ବ

ଅପରାହ୍ଣ। ବାହାର ଘରେ ବସି ଖଣ୍ଡେ ମ୍ୟାଗାଜିନ୍‌ର ପୃଷ୍ଠା ଓଲଟାଉଛି। କିନ୍ତୁ ମ୍ୟାଗାଜିନ୍ ପଢ଼ିବାରେ ମନୋନିବେଶ ନାହିଁ। ଖୋଲା ଝରକାବାଟେ ଆଖିରେ ପଡୁଛି ବିସ୍ତୃତ ନୀଳ ନିର୍ମେଘ ଆକାଶ। ଆଉ ମୁଁ ଅପେକ୍ଷା କରୁଛି ଦେଖିବାପାଇଁ ନିର୍ମେଘ ଆକାଶ ପୃଷ୍ଠଭୂମିରେ 'ବକାଳିକା ମାଳିକା'। ମୋର ଅବଚେତନରେ ଆଷାଢ଼ ସହିତ ବଳାକାମାନଙ୍କର ସଂପୃକ୍ତି ରହିଆସିଛି ବୋଧହୁଏ କବି ଉପେନ୍ଦ୍ର ଭଞ୍ଜଙ୍କ ପ୍ରସାଦରୁ। ଯେତେ ଯାହା ହେଲେ ବି ଆମେ ସବୁ ରହିଗଲୁ ସେହି ସଂଶୋଧନାତୀତ ରୋମାଣ୍ଟିକ୍ ମାନବୀୟ ତାଲିକାରେ। କିନ୍ତୁ ଏହି ଆଷାଢ଼ର ବଳାକାମାନେ ଧାଡ଼ିବାନ୍ଧି ଡେଣା ମେଲାନ୍ତି କେଉଁ ଲକ୍ଷ୍ୟରେ ? କେଉଁ ଗନ୍ତବ୍ୟ ପଥରେ ? ଅନ୍ୟ ଋତୁମାନଙ୍କରେ କାହିଁକି ସେମାନେ ବକଧ୍ୟାନୀମାନଙ୍କ ପରି ପୋଖରୀର ବଗଚରାମାନଙ୍କ ଉପରେ ବସିଥାଆନ୍ତି ଚୁପ୍‌ଚାପ୍ ଆଖି ବୁଜି ଅଥବା ଆଖି ଅଧାମେଲି ? କିନ୍ତୁ ଆଷାଢ଼ ଆସିଲେ ସେମାନଙ୍କ ସ୍ତବ୍ଧ ଡେଣାରେ କାହିଁକି ଲାଗିଯାଏ ଉଡ଼ିବାର ନିଶା- ଏ ରହସ୍ୟର ଉତ୍ତର ମୁଁ କେବେ କାହାକୁ ପଚାରି ନାହିଁ। କିମ୍ବା ନିଜେ ତାହାର ଉତ୍ତର କେବେ ମୁଁ ଖୋଜି ପାଇନାହିଁ।... ଆକାଶ ଆଡୁ ଆଖି ଫେରାଇ ପୁଣି ସୁଧୀର ସୋନାଲକାରଙ୍କ ସେହି ଅଧାପଢ଼ା ନିବନ୍ଧ ପଢ଼ିବାପାଇଁ ଚେଷ୍ଟାକଲି। ସେ ଲେଖିଛନ୍ତି, ଭିକୋ ନାମଧେୟ କୌଣସି ଐତିହାସିକଙ୍କ ମତରେ କୁଆଡ଼େ ଇତିହାସର ଗୋଟିଏ ଚକ୍ର ଥାଏ। ସଂସ୍କୃତିର ଯୁଗ ଶେଷରେ ଆସେ ବର୍ବରତା (Vulgarity)ର ଯୁଗ । ବର୍ବରତାର ଯୁଗ କ୍ଷୟ ପାଇଲେ ପୁଣି ଆସେ ନୂଆ ପ୍ରଭାତ, 'New Dawn'। ଐତିହାସିକ ଭିକୋ କହନ୍ତି, ଏହି ଯୁଗାନ୍ତର ନେପଥ୍ୟରେ ଥାଏ,ଐଶୀ ଇଚ୍ଛା, "The Resu of Providence"। ଏ ଐତିହାସିକ ଭିକୋ କିଏ ମୁଁ ଜାଣି ନଥିଲି। କିମ୍ବା ତାଙ୍କର କୌଣସି ଲେଖା ମୁଁ କେବେ ପଢିନଥିଲି। ତାଙ୍କର ନାମ ସହିତ ଏ ମୋର ପ୍ରଥମ ପରିଚୟ। ମୋର ମନେହେଲା, ଏଇ କଥାତ ପ୍ରାୟ ଦେଢ଼ହଜାର ବର୍ଷ ତଳୁ ଗୀତାରେ ଭଗବାନ ଶ୍ରୀକୃଷ୍ଣ କହିଛନ୍ତି। ଧର୍ମର ଗ୍ଲାନି ଘଟିଲେ ପୁଣି ଧର୍ମର ସଂସ୍ଥାପନ ପାଇଁ, "ସମ୍ଭବାମି ଯୁଗେ

ଯୁଗେ”  !... ଆଜି ଆମେ ଯେଉଁ ଯୁଗରେ ଦିନ କଟାଉଛୁ, ତା'ହେଉଛି ସେଇ ବର୍ବରତାର ଯୁଗ। ଆକାଶ ପୃଥିବୀ ସବୁ ଆଜି ପ୍ରଦୂଷିତ ! ତା' ସହିତ ମଣିଷର ଚିନ୍ତା ଓ ଚରିତ୍ର, ତା'ର କଳା ଓ ସାହିତ୍ୟ, ତା'ର ରାଜନୀତି ଓ ସମାଜ। ଆମେ ଭିକୋଙ୍କ କଳ୍ପିତ ଯୁଗାନ୍ତରର ଏଇ ନୂତନ ପ୍ରଭାତ ଦେଖିବାପାଇଁ ହୁଏତ ବଞ୍ଚି ନଥିବୁ। ଆଖି ପୁଣି ଟାଣି ହୋଇଗଲା, ସେ ଆକାଶ ଆଡ଼େ। ଏଇ ସମୟରେ ଶୁଭିଲା, ବାହାରେ କିଏ ପଚାରୁଛି, “ଏଇଟା କ'ଣ ସୁରେନ୍ଦ୍ରବାବୁ, ସୁରେନ୍ଦ୍ର ମହାନ୍ତିଙ୍କ ଘର !” ଲୋକଟି ବୋଧହୁଏ ଏ ଅଞ୍ଚଳକୁ ବାହାରୁ କେଉଁଆଡୁ ପ୍ରଥମ ଥରପାଇଁ ଆସିଛି। ମୋର ମୁହଁର ରେଖାସବୁ ହଠାତ୍ କଠୋର ହୋଇଉଠିଲା। ଇଏ ହୋଇଥିବେ ନିଶ୍ଚୟ ନୂଆ ପ୍ରକାଶ ପାଇବାକୁ ଯାଉଥିବା କୌଣସି ପତ୍ରିକାର ସଂପାଦକ। ଆସିଛନ୍ତି, ହୁଏତ ମୋ'ଠାରୁ ଗୋଟାଏ ସାକ୍ଷାତ୍କାର ସଂଗ୍ରହ କରିବାପାଇଁ, ଯାହାକି କେବେ ପ୍ରକାଶ ପାଇବ ନାହିଁ ! ମୋର ସାନପୁଅ ସିଆଡୁ ବେଶ୍ ଉତ୍ଫୁଲ୍ଲ ଭାବରେ ପହଞ୍ଚିଗଲେ, ହାତରେ କଦମ୍ବଫୁଲର [illegible] ତୋଡ଼ ଧରି ! ମୁଁ ଆଶ୍ଚର୍ଯ୍ୟ ହୋଇ ପଚାରିଲି, “ତୁମେ କଦମ୍ବ ପାଇଲ କେଉଁଠୁ ? ଯାହାରି ପାଇଁ ତ ଥିଲା ମୋର ବ୍ୟାକୁଳ ପ୍ରତୀକ୍ଷା !” ସେ କହିଲେ, “ଭୁବନେଶ୍ୱରରୁ ବାବୁଭାଇ ତୁମପାଇଁ ଗୋଟିଏ ଲୋକ ହାତରେ ଏ କଦମ୍ବ ପଠାଇଛନ୍ତି !” ସେଦିନ ସକାଳେ, 'ଶେଷସ୍ତମ୍ଭ'ରେ ପ୍ରକାଶ ପାଇଥିଲା “କଦମ୍ବ ଓ କେତକୀ” ! କଦମ୍ବର ସ୍ତବକ ଗୋଟେ ହାତରେ ଧରି ମୁଁ କହିଲି, “ଡାକ୍ ଡାକ୍ ଡାକ୍ଟୁ, କପେ ଚା' ନପିଇ ସେ ଏପରି ଚାଲିଯିବେ।” କିନ୍ତୁ ସେ କୁଆଡ଼େ ବାଦାମବାଡ଼ିରେ ବସ୍‌ରୁ ଓହ୍ଲାଇ ଅନେକ ଖୋଜାଖୋଜି କରି ଏଠାକୁ ଆସିଥିଲେ। ଗୋଟିଏ ରିକ୍ସାରେ। ଫୁଲ ତୋଡାଟା ଦେଇ ସେ ପୁଣି ରିକ୍ସାରେ ଚାଲିଗଲେଣି ! ଭାବିଲି, ଇଏ ବୋଧହୁଏ ସେଇ 'Resu of Providence' ନୁହେଁ ତ ଆଉ କ'ଣ ? ବାବୁ ମୋର ପୁତ୍ର ପ୍ରତିମ ! କିନ୍ତୁ, ସେ ବିଜ୍‌ନେସ୍ ଲାଇନ୍‌ରେ ଥିବାରୁ, 'କେତକୀ ଓ କଦମ୍ବ' ପଢ଼ି ତା' ଭିତରେ ମୋ' ମନର ବ୍ୟାକୁଳତା ସିଏ ଅନୁଭବ କରିପାରିଥିବେ ବୋଲି, ମୁଁ ଆଶା କରିନଥିଲି। ଇଏ ନିଶ୍ଚୟ ସେଇ 'Resu of Providence'। ମୋର ଭୃତ୍ୟକୁ କହିଲି, ଗୋଟିଏ ଫୁଲଦାନୀରେ କଦମ୍ବର ସ୍ତବକକୁ ସାବଧାନରେ ରଖିବାପାଇଁ। ସେତେବେଳକୁ ଘର ଭିତରେ ରାଷ୍ଟ୍ର ହୋଇଗଲାଣି, ବାବୁ ମୋ ପାଖକୁ କଦମ୍ବଫୁଲ ପଠାଇଛି ବୋଲି ! ବୁବୁନ୍ ସିଆଡୁ ଧାଇଁଧାଇଁ ଆସି ଫୁଲତୋଡ଼ାରୁ ଗୋଟାଏ କଦମ୍ବ ଉଠାଇ ନେଉଥିଲା। ମୁଁ ତାକୁ ପ୍ରଥମେ ମନାକଲି। କିନ୍ତୁ ତା'ପରେ ଭାବିଲି, ସେ ନେଉ, ନେଉ, କାରଣ କଦମ୍ବ ସହିତ ତା' ପିଢ଼ିର ତ ଆଉ କେବେ ପରିଚୟ ଘଟିବ ନାହିଁ କିମ୍ବା କଦମ୍ବର ରୋମାଞ୍ଚ ସେ ତ ଆଉ କେବେ ଅନୁଭବ କରିପାରିବ ନାହିଁ।

୨୧/୦୭/୯୦

# ଏକ ଉପେକ୍ଷିତ ଜୀବନର ମୂଲ୍ୟ

ହଲାଣ୍ଡର ପ୍ରଖ୍ୟାତ ଚିତ୍ରଶିଳ୍ପୀ ଭ୍ୟାନ୍ ଗୋଙ୍କ ଜୀବନୀ ଉପରେ ଆଧାରିତ ସମର୍‌ସେଟ୍‌ମମଙ୍କ 'ଦି ମୁନ୍ ଏଣ୍ଡ ସିକ୍‌ସ ପେନ୍‌ସ' ବହୁବର୍ଷ ପୂର୍ବେ ପଢ଼ିବା ଦିନୁ ଭ୍ୟାନ୍ ଗୋଙ୍କ ପ୍ରତି ମୁଁ ଆକୃଷ୍ଟ ହୋଇପଡ଼େ। ଆଜକୁ ଗୋଟିଏ ଶତାବ୍ଦୀ ପୂର୍ବେ (୨୯ ଜୁଲାଇ ୧୮୯୦ରେ) ତାଙ୍କର ଯନ୍ତ୍ରଣା ଦଗ୍ଧ, ଉପେକ୍ଷିତ, ନିଃସଙ୍ଗ ଜୀବନର ଅବସାନ ଘଟିଥିଲା ଗୋଟାଏ ପାଗଳା ଗାରଦରେ। ସେ ବଞ୍ଚିଥିଲେ ମାତ୍ର ସଇଁତିରିଶ ବର୍ଷ। କିନ୍ତୁ ଯୌବନ ଆରମ୍ଭରୁ ହିଁ ତାଙ୍କର ଜୀବନ ତିଳେ ତିଳେ ଦଗ୍ଧ ହୋଇଥିଲା, ଉପେକ୍ଷା, ଲାଞ୍ଛନା, ଅନାଦର ଓ ଘୋର ଦାରିଦ୍ର୍ୟ ମଧ୍ୟରେ। ଏପରିକି କେବେକେବେ ସାରାଦିନରେ ତାଙ୍କୁ ଖଣ୍ଡେ ରୁଟି ସୁଦ୍ଧା ମିଳୁ ନଥିଲା। ଶସ୍ତା ଅପମିଶ୍ରିତ ମଦ ଆଉ ସବୁବେଳେ ପାଇପ୍ ଟାଣି ତାଙ୍କର ମସ୍ତିଷ୍କ ବିକୃତି ଘଟିଥିଲା। ଭ୍ୟାନ୍ ଗୋ ଆରମ୍ଭରୁ ଥିଲେ ଖାପଛଡ଼ା ଆଡ଼ପାଗଳା ପ୍ରକୃତିର। କୌଣସିଥିରେ ସେ ମନୋନିବେଶ କରିପାରୁ ନଥିଲେ। ତା'ରି ଭିତରେ ସେ ମାନସିକ ଶାନ୍ତି ଫେରି ପାଇବାପାଇଁ ଛବି ଆଙ୍କୁଥିଲେ। କିନ୍ତୁ ସମୟର ମୂଲ୍ୟରେ କେତୋଟି ସ୍କେଚ୍ ଛଡା ତାଙ୍କ ଜୀବଦ୍ଦଶାରେ ତାଙ୍କର ଅନ୍ୟ କୌଣସି ଛବି ବିକ୍ରି ହୋଇ ନଥିଲା। କିନ୍ତୁ ତାଙ୍କ ମୃତ୍ୟୁପରେ ଗୋଟିଏ ଶତାବ୍ଦୀ ମଧ୍ୟରେ ଭ୍ୟାନ୍ ଗୋଙ୍କ ଚିତ୍ରପାଇଁ ପଶ୍ଚିମୀ ଧନୀଦେଶମାନଙ୍କରେ ଗୋଟାଏ 'କ୍ରେଜ୍' ଆରମ୍ଭ ହୋଇଯାଇଛି।

ଗୋଟିଏ ମ୍ୟାଗାଜିନ୍‌ର ପୃଷ୍ଠାରେ ପଢ଼ିଲି, ଆମେରିକାର ଗେଟୀ ମ୍ୟୁଜିୟମ୍ ଭ୍ୟାନ୍ ଗୋଙ୍କର ପ୍ରସିଦ୍ଧ ତୈଳଚିତ୍ର 'ଇରିସିସ୍' ଏବେ କିଣିଛନ୍ତି ଷାଠିଏ ମିଲିୟନ ଡଲାର ବା ଭାରତୀୟ ମୁଦ୍ରାରେ ଶହେକୋଟି ଟଙ୍କା ମୂଲ୍ୟଦେଇ! ଆମ ଦେଶରେ ଯେଉଁଠି ସାହିତ୍ୟ ଓ କଳା ଇତ୍ୟାଦି ବେକାରମାନଙ୍କର ଧନ୍ଦା ରୂପେ ବିବେଚିତ ହୋଇଥାଏ, ସେଠାରେ ଖଣ୍ଡେ ତୈଳଚିତ୍ରର ମୂଲ୍ୟ ଶହେକୋଟି ଟଙ୍କା! ପ୍ରଥମେ ମୋର ଦୃଷ୍ଟିଶକ୍ତିର ଭ୍ରମ ବୋଲି ମନେହେଲା। କିନ୍ତୁ ଚଷମା ପୋଛି ପୋଛି ବାରମ୍ବାର ପଢ଼ି ଦେଖିଲି, ଛବିଟି ଗେଟୀ

ମ୍ୟୁଜିୟମ ଅଷ୍ଟ୍ରେଲିଆର ଜଣେ ଧନପତି ମିଷ୍ଟର ବତ୍‌ଙ୍କଠାରୁ କିଣିଛନ୍ତି ଷାଠିଏ ମିଲିୟନ ଡଲାର ମୂଲ୍ୟ ଦେଇ। ଏହା ପୂର୍ବରୁ ନ୍ୟୁୟର୍କର ଜଣେ ଧନୀ ମହିଳା ଜୋୟାନ୍ସ ପେସଙ୍ଗ୍ ୧୯୪୭ ସାଲ୍‌ରେ ଏହି ଛବିଟିକୁ କିଣିଥିଲେ ଅଶି ହଜାର ଡଲାର ମୂଲ୍ୟଦେଇ। ଶ୍ରୀମତୀ ପେସଙ୍ଗ୍‌ଙ୍କ ମୃତ୍ୟୁପରେ ତାଙ୍କ ପୁତ୍ର ଏହି ଛବିଟିକୁ ଅଷ୍ଟ୍ରେଲିଆର ଧନକୁବେର ୟାଲାନ୍ ବତ୍‌ଙ୍କୁ ବିକ୍ରି କରିଥିଲେ ପାଞ୍ଚଶହ ଅଣଚାଳିଶ ଲକ୍ଷ ଡଲାର ଦାମ୍ ଦେଇ।

ଇତିମଧ୍ୟରେ ବତ୍‌ଙ୍କର ଭାଗ୍ୟ ବିପର୍ଯ୍ୟୟ ଘଟିବାରୁ ସେ ଏକ କମ୍ପାନୀ ଜରିଆରେ ଏଇ ଚିତ୍ରକୁ ଗେଟୀ ମ୍ୟୁଜିୟମ୍‌କୁ ବିକ୍ରି କରିଦେଲେ ଷାଠିଏ ମିଲିୟନ୍ ଡଲାରରେ। ଏକ ପାଗଳା ଗାରଦର କୋଠରି ଭିତରେ ଯାହା ଥିଲା ଉନ୍ମାଦଗ୍ରସ୍ତ ଜଣେ ଶିଳ୍ପୀର ଶେଷ ଅଭିବ୍ୟକ୍ତି, ଧନକୁବେରମାନଙ୍କ ହାତରେ ତାହା ଆଜି ହୋଇଛି ବ୍ୟବସାୟର ଏକ ପଣ୍ୟ ସାମଗ୍ରୀ।

ମ୍ୟାଗାଜିନ୍‌ର ପୃଷ୍ଠାରେ ଏଇ ଚିତ୍ରର ଏକ ରଙ୍ଗୀନ ପ୍ରତି[illegible] ପ୍ରକାଶ ପାଇଥିଲା। ସେଇ ପ୍ରତିଲିପିକୁ ବହୁବାର ଦେଖିବାପରେ ସୁଦ୍ଧା କେଉଁଥିପାଇଁ [illegible] ଏ ଅମୂଲମୂଲ ତା' ମୁଁ ସ୍ଥିର କରିପାରୁ ନଥିଲି। ଏଇ ଚିତ୍ରଟିରେ ମୁକ୍ତ ଆକାଶର ସାମାନ୍ୟତମ ଅଂଶ ସୁଦ୍ଧା ଆଖିରେ ପଡ଼େ ନାହିଁ... ଏକ ପାଗଳା ଗାରଦ ଭିତରେ ଅବରୁଦ୍ଧ ଜୀବନର ଇଏ ବୋଧହୁଏ ପ୍ରତୀକ। ଚିତ୍ରର ପୃଷ୍ଠଭୂମିରେ ସ୍ଥାନେ ସ୍ଥାନେ ଦେଖାଯାଏ ଉଜ୍ଜ୍ୱଳ ହଳଦିଆ ରଙ୍ଗର କେତେଗୋଟି ଡାଫୋଡିଲ୍। ହଳଦିଆ ରଙ୍ଗର ଡାଫୋଡିଲ୍ ଥିଲା ଭ୍ୟାନ୍ ଗୋଙ୍କର ଭାରି ପ୍ରିୟ ଓ ମସ୍ତିଷ୍କ ବିକୃତି ପୂର୍ବରୁ ତାଙ୍କର ଅଙ୍କିତ ଚିତ୍ରମାନଙ୍କରେ ସେ ଉଜ୍ଜ୍ୱଳ ହଳଦିଆ ରଙ୍ଗର ପ୍ରଚୁର ବ୍ୟବହାର କରୁଥିଲେ। ଶିଳ୍ପୀଙ୍କର ଅବଚେତନରେ ରହିଯାଇଛି ସେଇ ଉଜ୍ଜ୍ୱଳ ଦିନଗୁଡ଼ିକର ସ୍ମୃତି। ତା'ପର ସାରା ଛବିଟା ଗାଢ଼ ନୀଳରଙ୍ଗର ଫୁଲ ଆଉ ଘନ ସବୁଜ ରଙ୍ଗର ପତ୍ରରେ ଭର୍ତ୍ତି। ଏଇ ଗାଢ଼ ନୀଳରଙ୍ଗର ଫୁଲ ସବୁ ଯେପରି ଥିଲା ତାଙ୍କ ବେଦନାଦଗ୍ଧ ଜୀବନର ନୀଳ ଉପତ୍ୟକା। କିନ୍ତୁ ଏଇ ନୀଳ ଉପତ୍ୟକାର ଗୋଟିଏ କୋଣରେ ଗୋଟିଏ କ୍ଲାନ୍ତ, ଶୁଭ୍ର 'ଇରିସେସ' ଫୁଲ ବେଶ୍ ସ୍ପଷ୍ଟ ଭାବରେ ଲକ୍ଷ୍ୟ କରି ହେଉଥିଲା। ଇଏ ଥିଲା ବୋଧହୁଏ ସବୁ ବେଦନା, ନିଃସଙ୍ଗତା ଓ ଯନ୍ତ୍ରଣା ମଧ୍ୟରେ ଆତ୍ମିକ ସୁଖର ଜୀବନପାଇଁ ଏକ ନୀରବ ପ୍ରାର୍ଥନା।

ଚିତ୍ରଟିକୁ ବାରମ୍ବାର ଦେଖିବାପରେ ମୋର ମନେହେଲା, ଏହା ଯେପରି ଥିଲା ଭ୍ୟାନ୍ ଗୋଙ୍କ ଜୀବନର ବେଦନା ଦଗ୍ଧ ଜୀବନର ପ୍ରତୀକ। ପାଗଳା ଗାରଦରେ ମୃତ୍ୟୁ ପୂର୍ବରୁ ତାଙ୍କର ଶେଷ ଉଚ୍ଚାରଣ ଥିଲା- ମୁଁ ମରିବାକୁ ଚାହେ। କିନ୍ତୁ ଏହି ଶୁଭ୍ର ପ୍ରସ୍ଫୁଟିତ 'ଇରିସେସ୍' ବେଦନାର ସେଇ ନୀଳ ଉପତ୍ୟକା ମଧ୍ୟରେ ଯେପରି ଥିଲା ଶିଳ୍ପୀଭାବେ ଗୋଙ୍କ ମୁକ୍ତି ଓ ଆଲୋକପାଇଁ ଶେଷ ପ୍ରାର୍ଥନା। ଶିଳ୍ପୀ ଭ୍ୟାନ ଗୋ

ବଞ୍ଚିଥିଲାବେଳେ ତ ପେଟଭରି ଖାଇବାପାଇଁ ଖଣ୍ଡେ ରୁଟି ପାଇ ନଥିଲେ କିମ୍ବା ନିଶ୍ଚିନ୍ତରେ ରହିବାପାଇଁ ନିର୍ଭରଯୋଗ୍ୟ ଆଶ୍ରୟ ଟିକିଏ ପାଇପାରି ନଥିଲେ; କିନ୍ତୁ ତାଙ୍କର ମୃତ୍ୟୁର ଗୋଟିଏ ଶତାବ୍ଦୀ ପରେ ଆଜି ତାଙ୍କର ଚିତ୍ରସବୁ ହୋଇଛି, 'ଇରିସେସ୍' ପରି ଧନପତିମାନଙ୍କର ବ୍ୟବସାୟର ପଣ୍ୟ।

୨୮/୦୭/୯୦

# ବଈଁକୋଳି ସାହୁ ଦଣ୍ଡା

କୁଳବୃଦ୍ଧ ମଧୁସୂଦନଙ୍କ ସଂପର୍କରେ ଦୀର୍ଘ ଦିନ ଧରି, ମୁଁ ତାଙ୍କର ସମସାମୟିକ କେତେକ ବୟୋଜ୍ୟେଷ୍ଠ ଆଡ଼୍‌ଭୋକେଟ୍‌ଙ୍କଠାରୁ ତଥ୍ୟ ସଂଗ୍ରହ କରି ବୁଲୁଥିଲି । ସେଇ ପ୍ରସଙ୍ଗରେ ଅତୀତରେ ମଧୁସୂଦନଙ୍କର ଜୁନିୟର ରୂପେ କାର୍ଯ୍ୟ କରିଥିବା ଜଣେ ଆଡ଼୍‌ଭୋକେଟ୍‌ଙ୍କ ସହିତ ସାକ୍ଷାତ ଅବସରରେ ସେ ମୋତେ ଊନବିଂଶ ଶତାବ୍ଦୀର କଟକର କୋର୍ଟ କଚେରୀମାନଙ୍କରେ ପ୍ରଚଳିତ ବିଧିବ୍ୟବସ୍ଥା ସଂପର୍କରେ କହୁ କହୁ କହିଥିଲେ, ସେତେବେଳେ ଗୋରା ସାହେବମାନଙ୍କ ଇଜିଲାସରେ ସୁଦ୍ଧା ସାକ୍ଷୀ କାଠଗଡ଼ାରେ ଠିଆହୋଇ, ଗୀତା ଅଥବା କୋରାନ୍ ଅଥବା ବାଇବେଲ୍ ଛୁଇଁ, ସେ ଯାହା କହୁଛି ସତ କହୁଛି ବୋଲି ଶପଥ ନେବା ପରିବର୍ତ୍ତେ, ସେ ଇଚ୍ଛାକଲେ 'ବଈଁକୋଳି ସାହୁ ଦଣ୍ଡା' ମାଟି ଛୁଇଁ ମଧ୍ୟ ଶପଥ ନେବାର ବିଧି ପ୍ରଚଳିତ ଥିଲା ।

କାଠଯୋଡ଼ି ନଦୀର ଦକ୍ଷିଣ ପାଖରେ ବେଣ୍ଟକାର ଗାଁରେ 'ବଈଁକୋଳି ସାହୁ ଦଣ୍ଡା' । କିନ୍ତୁ କେଉଁଥିପାଇଁ ଏଇ ଦଣ୍ଡାର ମାଟି ଏତେ ପବିତ୍ର ବିବେଚିତ ହେଉଥିଲା, ତାହାର କାରଣ ସଂପର୍କରେ କିନ୍ତୁ ସେ ମୋତେ କୌଣସି ତଥ୍ୟ ଦେଇପାରି ନଥିଲେ । ବଈଁକୋଳି ଦଣ୍ଡାର ଇତିହାସ ସଂପର୍କରେ ବେଣ୍ଟକାର ଅଞ୍ଚଳର ମୋର କେତେକ ବନ୍ଧୁଙ୍କୁ ପଚାରିଥିଲି । ମାତ୍ର ସେମାନେ ଏହାର କୌଣସି ବୃତ୍ତାନ୍ତ ଜାଣି ନଥିଲେ । ଦୈବାତ୍ ପ୍ରାୟ ୭୫ ବର୍ଷ ବୟସ ଅତିକ୍ରମ କରିଯାଇଥିବା ବେଣ୍ଟକାର ଅଞ୍ଚଳର ଜଣେ ବୃଦ୍ଧ ଭଦ୍ରବ୍ୟକ୍ତିଙ୍କ ସହିତ ମୋର ସାକ୍ଷାତ ହେଲା । କିନ୍ତୁ କୌତୂହଳବଶତଃ ବଈଁକୋଳି ସାହୁ ଦଣ୍ଡା ସଂପର୍କରେ ପଚାରିବାରୁ ସେ ମୋତେ ଯେଉଁ ବୃତ୍ତାନ୍ତ ଦେଇଥିଲେ ତା'ରି ଉପରେ ଇ ଲେଖାଟି ଆଧାରିତ ।

ବଈଁକୋଳି ସାହୁ ଥିଲେ ଜଣେ ସାମାନ୍ୟ ବ୍ୟବସାୟୀ । ଦୁଇଟି ଥୋରିଆ ବଳଦ ଉପରେ ସେ ଲୁଣ ବୋଝ ଧରି ପ୍ରତିବର୍ଷ ଜଙ୍ଗଲ, ପାହାଡ଼ ଅଞ୍ଚଳକୁ ବେପାର ପାଇଁ ବାହାରୁଥିଲେ । ଲୁଣ ବଦଳରେ ସେ ଜଙ୍ଗଲ ପାହାଡ଼ ଅଞ୍ଚଳରୁ ସୋରିଷ, ହଳଦୀ ଓ

ଝୁଣା ପ୍ରଭୃତି ଜିନିଷ ସେ ଥୋରିଆ ବଳଦମାନଙ୍କ ପିଠିରେ ଲଦି ଗାଁକୁ ଫେରୁଥିଲେ । ସେଇ ଜିନିଷସବୁ ମୋଗଲବନ୍ଦୀ ଅଞ୍ଚଳରେ ବିକ୍ରିକରି ସେ ପ୍ରଚୁର ଅର୍ଥ ଉପାର୍ଜନ କରୁଥିଲେ । କ୍ରମେ ତାଙ୍କର ଥୋରିଆ ବଳଦମାନଙ୍କର ସଂଖ୍ୟା ଯେତିକି ବଢ଼ିଲା, ସେଇ ଅନୁସାରେ ତାଙ୍କର ଆୟ ଉପାର୍ଜନର ପରିମାଣ ବହୁଗୁଣରେ ବୃଦ୍ଧିପାଇଲା । ପ୍ରତିବର୍ଷ ସେ ଅମୂଲ ମୂଲ ଦେଇ ତାଙ୍କ ଘର ଆଖପାଖରେ ଅନ୍ୟମାନଙ୍କଠାରୁ ଜମି କିଣିବା ଆରମ୍ଭ କଲେ । ଏଥିପାଇଁ ସେ ଅଞ୍ଚଳରେ କ୍ରମେ ସେ ହୋଇ ଉଠିଲେ, ଅନ୍ୟମାନଙ୍କ ପାଇଁ ଏକ ଆତଙ୍କ । ଲୋକେ ଭାବିଲେ, ବଇଁକୋଳି ସାହୁ ଟଙ୍କା ବଳରେ କାହାର ଆଉ ଗୋବାଏ ଜମି ସୁଦ୍ଧା ରଖିଦେବ ନାହିଁ ।

ଏହିପରି ବହୁବର୍ଷ ବିତିଯିବା ପରେ ବଇଁକୋଳି ସହୁ ଦିନେ ଦେଖିଲେ, ଇତି ମଧ୍ୟରେ ସେ ଗୋଟାଏ ବିରାଟ ଚକର ମାଲିକ ହୋଇଗଲେଣି । ତା'ପରେ ସେ ହଠାତ୍ ତାଙ୍କର ଥୋରିଆ ବଳଦ ବ୍ୟବସାୟ ବନ୍ଦ କରିଦେଲେ । ଏଡ଼େ ବଡ଼ ଚକଟାକୁ ନେଇ ବଇଁକୋଳି ସାହୁ କ'ଣ କରିବ ବୋଲି ଲୋକେ ଯେତେବେଳେ ବଇଁକୋଳି ସାହୁଙ୍କୁ ପଚାରନ୍ତି, ସେ ତାହାର କୌଣସି ଉତ୍ତର ନଦେଇ କେବଳ ମୁରୁକେଇ ମୁରୁକେଇ ହସନ୍ତି । ବଇଁକୋଳି ସାହୁର ଅସଲ ମତଲବ୍ ସଂପର୍କରେ ଲୋକଙ୍କ ମଧ୍ୟରେ ଆରମ୍ଭ ହୋଇଯାଏ ନାନା ପ୍ରକାର କଳ୍ପନା ଜଳ୍ପନା ।

ଏହିପରି ସମୟରେ ହଠାତ୍ ଦିନେ ସେ ଅଞ୍ଚଳରେ ଖବର ରଟିଗଲା, ବଇଁକୋଳି ସାହୁ ଗୋଟାଏ ବଡ଼ ଯଜ୍ଞ କରିବ । ଚକରେ ସେ ପ୍ରଥମେ ଗୋଟାଏ ବଡ଼ ପୋଖରୀ ଖୋଳାଇଲେ । ପୋଖରୀ ଖୋଳାଯିବା ପରେ ଯଜ୍ଞ ସେହିଠାରେ କରାଯିବ ବୋଲି ସ୍ଥିର ହେଲା । କିନ୍ତୁ ସେ ଯଜ୍ଞ ଅଦ୍ଭୁତ ପ୍ରକାରର । ଯଜ୍ଞକୁ ଆମନ୍ତ୍ରିତ ହୋଇ ଆସିଲେ ସେ ଅଞ୍ଚଳର ଯେତେକ ଗୋରୁ,ଗାଈ, ବଳଦ । ସବୁ ଗାଈ ବଳଦଙ୍କୁ ପୋଖରୀରେ ଗାଧୁଆ ପାଧୁଆ କରାଇ ସମସ୍ତଙ୍କ ଗଳାରେ ଫୁଲମାଳ ପିନ୍ଧାଇ ଓ ଶିଙ୍ଗରେ ନୂଆ ଲୁଗା ବାନ୍ଧି ସେମାନଙ୍କୁ ଭୂରି ଭୋଜନ ଦିଆଗଲା । ତା'ପରେ ସେହିଠାରେ ବଇଁକୋଳି ସାହୁ ଘୋଷଣା କଲେ, ଏ ଚକ ବା ଦଣ୍ଡା କେବଳ ଗୋଚର ହୋଇ ରହିବ । ଏହାକୁ କେହି ନିଜର ବୋଲି ଦାବି କରିପାରିବ ନାହିଁ । ଏପରିକି ତା'ର ଉତ୍ତରାଧିକାରୀ ସୁଦ୍ଧା ନୁହନ୍ତି । "ବଇଁକୋଳି ସାହୁ ଦଣ୍ଡା, ଯେ କହିବ ମୋର ବୋଲି ତା' ବଂଶ ହେବ ନଣ୍ଡା ।"- ଏହାଥିଲା ବଇଁକୋଳି ସାହୁଙ୍କର ଶେଷ ନିର୍ଦ୍ଦେଶ ।

ଏଇ ଯଜ୍ଞ ବାସି ଦିନ ସେ ଅଞ୍ଚଳରେ ବଇଁକୋଳି ସାହୁ ଆଉ ଦେଖା ନଥିଲେ । ସେ ହଠାତ୍ କେଉଁଆଡ଼େ ନିଖୋଜ ହୋଇଗଲେ । କେତେବର୍ଷ ପରେ ମୁଁ ଥରେ ବେଣ୍ଟକାର ଅଞ୍ଚଳକୁ ଯାଇଥିଲି ଏହି ଦଣ୍ଡାକୁ ଦେଖିବା ପାଇଁ । ମାତ୍ର ସେତେବେଳକୁ ତା' ଆଉ

ଗୋଚର ହୋଇ ନଥିଲା । କିଏ କେତେ ପ୍ରକାର ଉପାୟରେ ବଙ୍କିଁକୋଳି ସାହୁ ଦଣ୍ଡାକୁ ନିଜ ନାଁରେ ବନ୍ଦୋବସ୍ତରେ ଦଖଲ କରିଯାଇଥିଲେ । କିନ୍ତୁ ସେଦିନର ଆମ୍ବଗଛ ସବୁ ତଥାପି ରହିଥିଲା । ବେଣ୍ଟକାର ଅଞ୍ଚଳର ଏ ଆମ୍ବସବୁ ଥିଲା ଖୁବ୍ ସୁସ୍ୱାଦୁ । ସେଥିପାଇଁ ଏଇ ଆମ୍ବର ମଧ୍ୟ ଥିଲା ଏକ ପ୍ରସିଦ୍ଧି । ଗୋଟାଏ ଉତ୍ସର୍ଗୀତ ଜୀବନର ତ୍ୟାଗ ଓ ତିତିକ୍ଷା ଯେପରି ସେହି ବଙ୍କିଁକୋଳି ସାହୁ ଦଣ୍ଡା ଆମ୍ବଗଛର ଫଳମାନଙ୍କରେ ସଂପୁଟିତ ହୋଇ ରହିଥିଲା । ସେହିଦିନୁ ପ୍ରବାଦ ପଡ଼ିଆସୁଥିଲା, ବଙ୍କିଁକୋଳି ସାହୁ ଦଣ୍ଡାମାଟି ଅତି ପବିତ୍ର ବୋଲି ବିବେଚିତ ହେଉଥିଲା । ଏବଂ ଏହି ଦଣ୍ଡାମାଟି କୋର୍ଟ କଚେରୀମାନଙ୍କରେ ସୁଦ୍ଧା କୋଥଳୀମାନଙ୍କରେ ସଂଗୃହୀତ ହୋଇ ରହୁଥିଲା । କେହି ଇଚ୍ଛା କଲେ, କୌଣସି ଧର୍ମଗ୍ରନ୍ଥ ପରିବର୍ତ୍ତେ ବଙ୍କିଁକୋଳି ସାହୁ ଦଣ୍ଡା ମାଟି ଛୁଇଁ ସାକ୍ଷ୍ୟ ଦେଇପାରୁଥିଲା ।

କାଳ ବା ଯୁଗର ପରିବର୍ତ୍ତନ ସଙ୍ଗେସଙ୍ଗେ ସେଦିନର ମୂଲ୍ୟବୋଧ ମଧ୍ୟ ବଦଳିଯାଏ । ବଦଳିଯିବା ହିଁ ସ୍ୱାଭାବିକ । କାରଣ କାଳ ନିଜକୁ ମଧ୍ୟ ଗ୍ରାସ କରିଥାଏ ଓ ତା' ସହିତ ସେହି କାଳର ସବୁ ସମ୍ମାନିତ ମୂଲ୍ୟବୋଧ । ମାତ୍ର ତା'ରି ମଧ୍ୟରେ ଅଜେୟ ହୋଇ ରହିଯାଏ ଗୋଟିଏ ଗୋଟିଏ ନାମ ଆଉ ଗୋଟିଏ ଗୋଟିଏ କିଂବଦନ୍ତି ।

୦୪/୦୮/୯୦

# ପଲ୍ ଗଗେ ଓ ଭ୍ୟାନ୍ ଗୋ

ଚଳିତବର୍ଷ ଜୁଲାଇ ୨୮ ତାରିଖ ଦିନ, ପ୍ରସିଦ୍ଧ ଶିଳ୍ପୀ ଭ୍ୟାନ୍ ଗୋଙ୍କର ମୃତ୍ୟୁ ଶତବାର୍ଷିକୀ ବିଭିନ୍ନ ଚିତ୍ରକଳାମୋଦୀ ଅନୁଷ୍ଠାନ ଦ୍ୱାରା ପାଳିତ ହୋଇ ଯାଇଛି । ସେଇ ଉପଲକ୍ଷ୍ୟରେ ଗୋଟିଏ ମ୍ୟଗାଜିନ୍‌ରେ ଭ୍ୟାନ୍ ଗୋଙ୍କର ପ୍ରସିଦ୍ଧ ଚିତ୍ର 'ଦି ଇରସିସ୍'ର ଏକ ପ୍ରତିଛବି ଦେଖିଲାବେଳେ ମୋ ମନରେ ଯେଉଁ ସ୍ପନ୍ଦନ ସୃଷ୍ଟି ହୋଇଥିଲା, ତାହାକୁ ମୁଁ ଜୁଲାଇ ୨୮ ତାରିଖ 'ସମ୍ବାଦ'ର 'ଶେଷସ୍ତମ୍ଭ'ରେ ଗୋଟିଏ ଉପେକ୍ଷିତ ଜୀବନର ମୂଲ୍ୟ ଶିରୋନାମାରେ ପ୍ରକାଶ କରିଥିଲି । ମାତ୍ର ପ୍ରାୟ ସବୁ 'ଶେଷସ୍ତମ୍ଭ' ହଠାତ୍ ବିହ୍ୱଳିତ ମୁହୂର୍ତ୍ତମାନଙ୍କରେ ଲେଖାଯାଉଥିବାରୁ ସେଇ ଲେଖାରେ ଗୋଟିଏ ଗୁରୁତର ପ୍ରମାଦ ଲକ୍ଷ୍ୟକରି, ଭୁବନେଶ୍ୱରରୁ ଜଣେ ପାଠକ ଶ୍ରୀ ତାପସ ପାତ୍ର ମୋତେ ଏକ ବ୍ୟକ୍ତିଗତ ପତ୍ର ଲେଖିଛନ୍ତି । ସେଥିପାଇଁ ତାଙ୍କୁ ଧନ୍ୟବାଦ ଦେବା ସଙ୍ଗେ ସଙ୍ଗେ ତାଙ୍କର ପତ୍ରଟିକୁ ମୁଁ ଏଠାରେ ଅବିକଳ ଉଦ୍ଧାର କରିଦେଉଛି-

'ସମ୍ବାଦ'ର ଜୁଲାଇ ୨୮ ତାରିଖ ସଂସ୍କରଣରେ ଏକ ଗୁରୁତର ତ୍ରୁଟି ଦେଖି ଆପଣଙ୍କ ଗୋଚରାର୍ଥେ ଏ ପତ୍ରଟି ଲେଖୁଛି । ସମ୍ବାଦ ଜନ୍ମ ନେବାଠାରୁ ତା'ର ଏକ ନିୟମିତ ପାଠକ ଭାବେ ମୁଁ ଏହାକୁ ବିନମ୍ର ଭାବେ ସୂଚାଇ ଦେବାକୁ ଚାହେଁ, ମୋର ଓ ମୋପରି ବହୁ ପାଠକଙ୍କର ଅତିପ୍ରିୟ ଲେଖକ ସମ୍ମାନନୀୟ ସୁରେନ୍ଦ୍ର ମହାନ୍ତିଙ୍କ ଲେଖା 'ଏକ ଉପେକ୍ଷିତ ଜୀବନର ମୂଲ୍ୟ'ରେ ଏକ ତ୍ରୁଟି ପରିଲକ୍ଷିତ ହୋଇଛି ।

ସେ ଏଠାରେ ସମରସେଟ୍ ମମ୍‌ଙ୍କର ପ୍ରସିଦ୍ଧ ଉପନ୍ୟାସ 'ମୁନ୍ ଆଣ୍ଡ୍ ସିକ୍ସ ପେନ୍ସ', ଶିଳ୍ପୀ ଭ୍ୟାନ୍ ଗୋଙ୍କ ଜୀବନୀକୁ ନେଇ ରଚିତ ବୋଲି ଲେଖିଛନ୍ତି । କିନ୍ତୁ ଏହା ସଂପୂର୍ଣ୍ଣ ଭୁଲ । ଏହା ପ୍ରସିଦ୍ଧ ଶିଳ୍ପୀ ପଲ ଗଗେଙ୍କର ଜୀବନୀ ଉପରେ ଚରିତ ।

'ମୁନ୍ ଆଣ୍ଡ ସିକ୍ସପେନ୍ସ'ର ମୁଖ୍ୟ ଚରିତ୍ର 'Charles Strickland' ଜୀବନର ପ୍ରଥମାର୍ଦ୍ଧରେ ଜଣେ ଷ୍ଟକ୍‌ବ୍ରୋକର ଥିଲେ । ତା'ପରେ ସେ ଷ୍ଟକ୍ ଏକ୍ସଚେଞ୍ଜ କାମ ଏପରିକି ନିଜ ପରିବାରର ମୋହ ମଧ୍ୟ ତ୍ୟାଗ କରିଥିଲେ, ଏବଂ ଶିଳ୍ପୀ ଭାବରେ ନିଜ ଜୀବନକୁ

ଉତ୍ସର୍ଗୀକୃତ କରିଥିଲେ । ତାଙ୍କର ଶେଷ ଜୀବନ 'ତାହିତି' (Tahiti)ରେ କଟିଥିଲା । ସେଇଠି ହିଁ ସେ ମାନସିକ ଶାନ୍ତି ପାଇଥିଲେ । ଶେଷରେ ସିଫିଲିସ୍ ରୋଗରେ ମୃତ୍ୟୁବରଣ କରିଥିଲେ । ଏହାହିଁ ପଲ୍ ଗଗେଙ୍କ ଜୀବନରେ ଘଟିଥିଲା । ଏହାକୁ ନେଇ 'ମୁନ୍ ଆଣ୍ଡ୍ ସିକ୍ସ ପେନ୍ସ' ଉପନ୍ୟାସ ଲେଖା ହୋଇଛି । ଏହି ବହିର ଶେଷ ପୃଷ୍ଠାରେ ଏହା ପରିଷ୍କାର ଭାବରେ ଉଲ୍ଲେଖ କରାଯାଇଛି ।

ଭ୍ୟାନ୍ ଗୋଙ୍କ ଉପରେ କୌଣସି ଉପନ୍ୟାସ ଲେଖା ହୋଇନାହିଁ । ବରଂ ଏକ ଜୀବନୀ ରଚିତ ହୋଇଛି । ଏହାର ନାମ 'Lust For Life' ଏବଂ ଏହା ପ୍ରସିଦ୍ଧ ଲେଖକ Iribing Stoneଙ୍କ ଦ୍ୱାରା ରଚିତ ।

ଏହି ତ୍ରୁଟିକୁ ଯଥାଶୀଘ୍ର ସଂଶୋଧନ କଲେ ପାଠକବର୍ଗ ହୃଦୟ ତାଡ଼ନାରୁ ମୁକ୍ତି ପାଇବେ । କାରଣ ଏହା ଦୁଇଜଣ ବିଶିଷ୍ଟ ଶିଳ୍ପୀ ପଲ୍ ଗଗେ, ଭ୍ୟାନ୍ ଗୋ ଓ ଜଣେ ପ୍ରସିଦ୍ଧ ଲେଖକ ସମରସେଟ ମମ୍‌ଙ୍କ କାର୍ଯ୍ୟକୁ ନେଇ ଏକ ଭ୍ରମ ଧାରଣା ସୃଷ୍ଟି କରିଛି । ଶ୍ରୀଯୁକ୍ତ ମହାନ୍ତି ଭ୍ୟାନ୍ ଗୋଙ୍କ ଉପରେ ଯାହା ଲେଖିଛନ୍ତି, ସେଥିରେ ଆମେ ସହମତ, କିନ୍ତୁ 'ମୁନ୍ ଏଣ୍ଡ ସିକ୍‌ସପନ୍‌ସ' ସହିତ ଏହାର କୌଣସି ସଂପର୍କ ନାହିଁ ।

ମୋର ଏହି ବିଭ୍ରାନ୍ତିର ପ୍ରଧାନ କାରଣ ହେଉଛି, ପଲ୍ ଗଗେ (୧୮୪୮-୧୯୦୩) ଓ ଭ୍ୟାନ୍ ଗୋ (୧୮୫୩-୧୮୯୦) ଉଭୟ ପ୍ରାୟ ସମସାମୟିକ ଥିଲେ ଓ ଉଭୟ ଥିଲେ ପୋଷ୍ଟ ଇମ୍‌ପ୍ରେସ୍‌ନିଜିମ୍ କାଳର ଦୁଇଜଣ ବିଶିଷ୍ଟ ଚିତ୍ରଶିଳ୍ପୀ ଯଦ୍ୟପି; ମୃତ୍ୟୁପରେ, ପଲ୍ ଗଗେଙ୍କ ତୁଳନାରେ ଭ୍ୟାନ୍ ଗୋ ଅଧିକତର ପ୍ରସିଦ୍ଧି ଲାଭ କରିବାରେ ସଫଳ ହୋଇ ପାରିଛନ୍ତି । ଦୁହେଁ ପୁଣି ଥିଲେ, ଘୋର ଖିଆଲି ପ୍ରକୃତିର । ଭ୍ୟାନ୍ ଗୋ ଓ ପଲ୍ ଗଗେ କିଛି କାଳ ଆର୍ଲେସଠାରେ ଏକାଠି ରହିଥିଲେ ହେଁ ଦୁହିଁଙ୍କ ମଧ୍ୟରେ ଏକ ମୌଳିକ ପାର୍ଥକ୍ୟ ଯୋଗୁଁ ସେମାନେ ବେଶି କାଳ ଏକାଠି ରହିପାରି ନଥିଲେ । ପଲ୍ ଗଗେ ଥିଲେ ଅହଂକାରୀ, କିନ୍ତୁ ଭ୍ୟାନ୍ ଗୋ ଥିଲେ ନିର୍ଲିପ୍ତ ଆଡ଼ପାଗଳା ପ୍ରକୃତିର । ଭ୍ୟାନ୍ ଗୋଙ୍କ ଚିତ୍ରକଳା ଥିଲା ଜୀବନଧର୍ମୀ; ମାତ୍ର ପଲ୍ ଗଗେ ଥିଲେ ସ୍ୱପ୍ନବାଦୀ ଓ ସଭ୍ୟତା ପ୍ରତି ତାଙ୍କର ଥିଲା ଘୋର ବିତୃଷ୍ଣା । ସେଥିପାଇଁ ସେ ତାଙ୍କର ଶେଷ ଜୀବନ ତାହିତି ଦ୍ୱୀପରେ ଅତିବାହିତ କରିଥିଲେ । ଭ୍ୟାନ୍ ଗୋ ମଧ୍ୟ ସଭ୍ୟତା ପ୍ରତି ଥିଲେ ବିମୁଖ; କିନ୍ତୁ ତାହା ତାଙ୍କର ଜୀବନ ଚର୍ଯ୍ୟାରେ ପରିଲକ୍ଷିତ ହେଉ ନଥିଲା । ଆର୍ତ୍ତ ଓ ପୀଡ଼ିତମାନଙ୍କ ପାଇଁ ତାଙ୍କର ଗଭୀର ସମବେଦନା ତାଙ୍କର ଚିତ୍ରକଳା ମାଧ୍ୟମରେ ପ୍ରକାଶ ପାଇଥିଲା ।

ଔପନ୍ୟାସିକ ସମରସେଟ ମମ୍ ପଲ୍ ଗଗେଙ୍କ ଜୀବନୀ ଉପରେ ଆଧାରିତ 'ଦି ମୁନ୍ ଆଣ୍ଡ ସିକ୍ସ ପେନ୍ସ' ଉପନ୍ୟାସ ଲେଖିଥିବା ବେଳେ ଇରଭିଙ୍ଗ୍ ଷ୍ଟୋନ୍ ଭ୍ୟାନ୍ ଗୋଙ୍କ ଜୀବନୀ ଉପରେ ଆଧାରିତ 'ଦି ଲଷ୍ଟ ଫର ଲାଇଫ୍' ଚରିତୋପନ୍ୟାସ ଲେଖିଥିଲେ ।

ମୋର ଲେଖାରେ ଇରଭିଙ୍ଗ୍ ଷ୍ଟୋନ୍‌ଙ୍କର 'ଦି ଲଷ୍ଟ ଫର ଲାଇଫ୍ ଉପନ୍ୟାସ ପରିବର୍ତ୍ତେ, ସମରସେଟ୍ ମମ୍‌ଙ୍କର 'ଦି ମୁନ୍ ଆଣ୍ଡ ସିକ୍ସ ପେନ୍ସ' ଉପନ୍ୟାସ ହୋଇଯାଇଛି । ଏ ତ୍ରୁଟି ମୋ ଦୃଷ୍ଟିକୁ ଆଣିଥିବା ହେତୁ ପତ୍ରଲେଖକଙ୍କୁ ମୁଁ ଅଶେଷ ଧନ୍ୟବାଦ ଜଣାଉଅଛି ।

ମୋର ସ୍ମୃତି ବର୍ତ୍ତମାନ ଏକ କୁହୁଡ଼ିଆ ସକାଳ । ଧୂଆଁଳିଆ କୁହୁଡ଼ି ଭିତରେ ସବୁ ବାରି ହେଉଛି, ସବୁ ଦେଖି ହେଉଛି, ସବୁ ଜାଣି ହେଉଛି, କିନ୍ତୁ କେଉଁଟା କ'ଣ ଠିକ୍ ନିର୍ଦ୍ଦିଷ୍ଟ ଭାବରେ ବାରି ହେଉନାହିଁ । ଯେଉଁ ସ୍ମୃତି ଦିନେ ଥିଲା, କ୍ୟାମେରାର ଲେନ୍ସ ପରି ବିଶ୍ୱସ୍ତ ଆଜି ତା' ଉପରେ ଅନେକ ଧୂଳି ଜମି ଗଲାଣି । ତେଣୁ ଚିତ୍ରସବୁ ଠିକ୍ ଧରାପଡୁ ନାହାନ୍ତି । ଆବେଗର ବିହ୍ୱଳତା ପୁଣି ମାନସିକ ଏକାଗ୍ରତାରେ ଅନେକ ବାଧା ସୃଷ୍ଟି କରିଛି । ସେଥିପାଇଁ ଭ୍ୟାନ୍ ଗୋ ଓ ପଲ୍ ଗଗେ ଘେନି ଏ ବିଭ୍ରାନ୍ତି ।

୧୧/୦୮/୯୦

# କେଶବ ବାରିକ ଓ ସେଲୁନ୍

କେଶବ ବାରିକ, ପ୍ରତି ମାସରେ ଆସିବା ବନ୍ଦ କରିଦେବା ଦିନୁ ମୋତେ ନିର୍ଭର କରିବାକୁ ପଡୁଥିଲା, ସେଲୁନ୍‌ର ଭଣ୍ଡାରୀମାନଙ୍କ ଉପରେ । କେଶବ ବାରିକ ନିଜ ଇଚ୍ଛାରେ ଯେ ଆସିବା ବନ୍ଦ କରିଦେଲା, ତା' ନୁହେଁ । ସିଏ ବହୁ ଦିନର ବାରିକ । ତେଣୁ ମୋତେ ଛାଡ଼ିବାପାଇଁ ତା'ର ଇଚ୍ଛା ନଥିଲା । କିନ୍ତୁ ବାର୍ଦ୍ଧକ୍ୟ ହେତୁ ତା'ର ହାତ କମ୍ପିବା ଦିନୁ ସେ ପୂର୍ବପରି ଆଉ ଠିକ୍ ଖିଅର କରିପାରିଲା ନାହିଁ । ଫଳରେ ମୁଣ୍ଡବାଳରେ କତୁରୀ ଚଳାଇବା ବେଳେ ଅରାଏ ଅରାଏ ଜାଗା କାଉ ଖୁମ୍ପିଲା ପରି ଦିଶେ ଓ ତାହା ପରିବାରରେ ସମସ୍ତଙ୍କ ପକ୍ଷରେ ହାସ୍ୟୋଦ୍ଦୀପନା ପାଇଁ ଗୋଟାଏ ଅବକାଶ ସୃଷ୍ଟି କରେ । ତଥାପି ସେ ଓ ମୁଁ କେହି କାହାକୁ ଛାଡ଼ିବାପାଇଁ ପ୍ରସ୍ତୁତ ନଥିଲୁ । କେଶବର ଗରାଖମାନେ ଏମିତି ସେମିତି ଲୋକ ନଥିଲେ । ଜଣେ ମୁଖ୍ୟମନ୍ତ୍ରୀଙ୍କର ସେ ଏକଦା ଥିଲା ଖାସ୍ ବାରିକ । ଯେଉଁ କାନ୍‌ଭାସ୍ ବ୍ୟାଗ୍‌ରେ ସିଏ ତା'ର ମୁଠି ଧରି ଆସୁଥିଲା, ତାହା ଛିଣ୍ଡି ଛିଣ୍ଡି କ୍ରମେ କ୍ଷୟପ୍ରାପ୍ତ ହୋଇଥିଲା । ତଥାପି ସିଏ ଆସୁଥିଲା; ମାତ୍ର ତା' ହାତ କମ୍ପିବାରୁ ଅବଶେଷରେ ନିଜ ନିରାପତ୍ତା ରକ୍ଷା ଦୃଷ୍ଟିରୁ ଆଉ ଆସିବା ପାଇଁ ମୁଁ ତାକୁ ବାରଣ କରିଥିଲି ।

ସେଲୁନର ବାରିକ କିନ୍ତୁ ବେଶ୍ ସ୍ମାର୍ଟ । ବହୁଥର ଖବର ପଠାଇବା ପରେ ସେ ଦିନେ ଦିନେ ଆସି ହାଜର ହୋଇଯାଏ । ସେଲୁନ୍‌ରେ ତା'ର ବେଶ୍ ଭିଡ଼ । ସେଥିପାଇଁ ତାକୁ ସମୟ ମାପି କାମ କରିବା ପାଇଁ ପଡ଼େ । ପ୍ରଥମେ ଆସି ଗୋଟାଏ ଜୁହାର ପକାଇବା, ଅଥବା ଦଣ୍ଡେ ଘଡ଼ିଏ ଆରାମରେ ବସି ଆଖପାଖରେ କୋଉ ବାବୁ କେମିତି ଅଛନ୍ତି, ସେମାନଙ୍କ ଘରର ଖବର କ'ଣ ଅଥବା ତାଙ୍କ ସାଇରେ କି କି ଘଟଣା ବା ଅଘଟଣ ଘଟିଲା, ସେ ସବୁର ଗୋଟାଏ ବିବରଣୀ କେଶବ ବାରିକ ପରି ସିଏ ଦିଏ ନାହିଁ । ସିଏ ଗୋଟାଏ ରୋବଟ୍ ପରି ଆସିବା ମାତ୍ରେ ସଙ୍ଗେ ସଙ୍ଗେ ତା' କାମ ଆରମ୍ଭ କରିଦେଇ, ପାଞ୍ଚ, ସାତ ମିନିଟ୍ ଭିତରେ ଚାଲିଯାଏ । ନଖ କାଟିବା ପାଇଁ ସୁଦ୍ଧା ହୁଏତ ତାକୁ ବେଳ

ନଥାଏ କିମ୍ବା ତା' ପାଖରେ ନହୁରୁଣୀଟିଏ ନଥାଏ । ସିଏ ସୁଦ୍ଧା ନିୟମିତ ଭାବରେ ଆସିବା ବନ୍ଦ କରିଦେଲା ।

ଭୃତ୍ୟ ଥରେ ଆସି କହିଲା, ସିଏ ଏବେ ତା'ର ସେଲୁନ୍‌କୁ ବେଶ୍ ବଢ଼ାଇଲାଣି । ସିନେମା ଷ୍ଟାର୍‌ମାନଙ୍କ ଛବି ସେଲୁନ୍ କାନ୍ଥମାନଙ୍କରେ ଅଠାରେ ଲଗାଇଛି । ଯିଏ ଯୋଉ ଷ୍ଟାଇଲ୍‌ରେ ବାଳ ବନେଇବାପାଇଁ ଇଚ୍ଛା କରୁଛି, ସେଇ ଷ୍ଟାଇଲ୍‌ରେ ସିଏ ବାଳ ବନେଇ ଦେଉଛି । ଆଉ ସେଇ ଅନୁସାରେ ପଇସା ବି ନେଉଛି । ଏବେ ତା'ର ଦୁଇ ଭାଇଙ୍କୁ ଗାଁରୁ ଆଣି ସେଲୁନ୍‌ରେ ବସାଇଲାଣି । କିଏ ଅମିତାଭ ବଚ୍ଚନ୍ ହେବାକୁ ଚାହୁଁଚି ତ କିଏ ଚାହୁଁଚି ଶଶିକାପୁର ବା ରିଷିକାପୁର, ଏଇ ପରି କିଛି ଗୋଟାଏ ଷ୍ଟାଇଲ୍‌ରେ ବାଳ ବନେଇବା ପାଇଁ । ଘରକୁ ଆସିବା ପାଇଁ ତାକୁ ଆଉ ଫୁରସତ ନାହିଁ ।

ତା'ପରେ ଗୋଟିଏ, ଦୁଇଟି, ଲୁଙ୍ଗି ପିନ୍ଧା ଭଣ୍ଡାରୀ କାଖତଳେ ମୁଠି ଜାକି କେଉଁଆଡୁ ଖୋଜା ହୋଇ ଆସିଲେ । ପଚାରି ବୁଝିଲି, ସେମାନେ ରାସ୍ତା କଡରେ ବସି, ଯିଏ ଆସିଲା ତା'ର କେଶ ଅଥବା ନିଶ ଦାଢ଼ି କର୍ତ୍ତନ କରନ୍ତି । ସେମାନଙ୍କ ଚେହେରା ଦେଖି ମୁଁ ସେମାନଙ୍କୁ ଫେରାଇ ଦିଏ । ଭୃତ୍ୟ ନାଚାର । ଆଜିକାଲି ଯୁବବାରିକମାନେ, ସମସ୍ତେ ଖଣ୍ଡେ ଖଣ୍ଡେ ସେଲୁନ୍ ଖୋଲି ବସିଛନ୍ତି । ଆଉ ଘରକୁ ଆସୁଚି କିଏ ? ସେଥିପାଇଁ ଅବଶେଷରେ ମୁଁ ମୁଣ୍ଡବାଳ ନକାଟି ତାହାକୁ ସେହିପରି ଲମ୍ୱେଇ ଛାଡ଼ିଦେବାପାଇଁ ମନେ ମନେ ଗୋଟାଏ ସିଦ୍ଧାନ୍ତ ନେଇଥିଲି । କିନ୍ତୁ ଅସୁବିଧା ହେଲା, ମୁଣ୍ଡବାଳ ପଛକୁ ନଲମ୍ୱି ମୋ କାନ ଉପରକୁ ଲମ୍ୱିବା ପାଇଁ ଲାଗିଲା । ସବୁବେଳେ ଗୋଟାଏ ଅସ୍ୱସ୍ତିକର ପରିସ୍ଥିତି । ସେଇ ରାସ୍ତାକଡ଼େ ବସି ଖିଅର କରୁଥିବା ଭଣ୍ଡାରି ହେଲେ ସୁଦ୍ଧା ଚଳିବ । ମାତ୍ର ସେଲୁନ୍‌ମାନଙ୍କର ସଂଖ୍ୟା ବଢ଼ିବା ସଙ୍ଗେସଙ୍ଗେ ସେମାନେ ଆଉ ମଧ୍ୟ ମିଳିଲେ ନାହିଁ । ଏଇପରି ସମୟରେ ମୁଁ ଯେତେବେଳେ କେଶ କର୍ତ୍ତନ ସଂପର୍କରେ ସବୁ ଆଶା ଭରସା ଛାଡ଼ିଦେଇ, ପୂରାପୂରି ଲମ୍ୱା ହୋଇଯିବା ପାଇଁ ସ୍ଥିର ସିଦ୍ଧାନ୍ତରେ ପହଞ୍ଚିଥିଲି ।

ହଠାତ୍ ଦିନେ ସକାଳେ ଲୋକଟିଏ ଆସି ମୋତେ ଗୋଟାଏ ଜୁହାର ପକାଇଲା । ମୁଁ ସେତେବେଳେ ଖବରକାଗଜ ଉପରେ ମୁଣ୍ଡ ନୁଆଇ ବସିଥିବାରୁ ସିଏ କିଏ ଜଣେ ହୋଇଥିବ ଭାବି, ତାକୁ ବସିବାକୁ କହିଲି । ସିଏ କିନ୍ତୁ ଆଦୌ ବାରିକ ପରି ଦିଶୁ ନଥିଲା । ବୟସ ନିଶ୍ଚୟ ଷାଠିଏ ଟପି ଯାଇଛି । କୁଞ୍ଚ ଅଣ୍ଟାରେ ଖୋସି ସେ ଧୋତି ଖଣ୍ଡେ ପିନ୍ଧିଥିଲା । ଅଧାହାତ ଆଉ କଲର ନଥିବା ଖଣ୍ଡେ ଜାମା ପିନ୍ଧି ହାତରେ ଗୋଟିଏ ପ୍ଲାଷ୍ଟିକ୍ ବ୍ୟାଗ୍ ଧରି ସିଏ ଆସିଥିଲା । ମୁଁ ତାକୁ ଆସିବାର ଉଦ୍ଦେଶ୍ୟ ପଚାରିବାରୁ, ସିଏ କହିଲା, ଆପଣଙ୍କ ଲୋକ ମୋତେ ବାଳକାଟି ଦେଇ ଯିବାପାଇଁ କହିଥିଲା । ମୁଁ ତାକୁ ଚାରିଦିନ ତଳେ ଆସିବାପାଇଁ କଥା ଦେଇଥିଲି । ହେଲେ ସେଦିନ ମୋ ଝିଅ ଘରକୁ

ଖୁଦୁରୁକୁଣୀ ଭାର ନେଇ ଚାଲିଗଲି । ପୁଅମାନଙ୍କୁ କହିଲି, କେହି ଜଣେ ହେଲେ ଖୁଦୁରୁକୁଣୀ ଭାରଟା ନେଇ ଚାଲିଯାଅ । କିନ୍ତୁ ସେମାନେ ଗୋଟିଏ ସେଲୁନ୍ ଖୋଲି ବସିଥିବାରୁ କେହି ଆଉ ରାଜି ହେଲେ ନାହିଁ । ମୁଁ ଆଉ କ'ଣ କରନ୍ତି ? ଝିଅ ଘରକୁ ଭାର ନେଇ ଗଲି । ସାତ ଶହ ଆଠ ଶହ ଟଙ୍କା ପଡ଼ିଗଲା । ଇତ୍ୟାଦି ଇତ୍ୟାଦି । ସିଏ ଯେପରି ତା' ଝିଅ ଘର ଆଡ଼ର କଥା ଓ ଆଜିକାଲି ବଜାର ଦରଦାମ୍ ପରିସ୍ଥିତିଠାରୁ ଆରମ୍ଭ କରି, ତାଙ୍କ ସାଇ ଆଡ଼ର କଥା ବନେଇ ଚୁନେଇ ଗପିବା ଆରମ୍ଭ କରିଥିଲା, ସେସବୁ ଶୁଣିଥିଲେ, ଘଣ୍ଟାକରେ ବି ସୁଦ୍ଧା ତାହା ଶେଷ ହୋଇ ନଥାନ୍ତା । ମୁଁ ତାକୁ ଅଗତ୍ୟା ତା' କାମ ଆରମ୍ଭ କରିବା ପାଇଁ କହିଲି । ମୁଣ୍ଡରେ କତୁରୀ ଚଳାଇବା ବେଳେ ସୁଦ୍ଧା ତା' କଥା ବିରାମ ନଥିଲା, ଢିଙ୍କିଶାଳରୁ ଢେଙ୍କାନାଳ ଯାଏ ।

ମୁଁ ତାକୁ ପଚାରିଲି, "ତମେ ଏ ବୁଢ଼ା ଦିନେ ଏଠି ସେଠି ବୁଲି, ଏତେ ପରିଶ୍ରମ କରୁଛ କାହିଁକି ? ତମେ ବି ଗୋଟାଏ ସେଲୁନ୍ ଖୋଲି ବସୁନା ?" ସିଏ ଉତ୍ତର ଦେଲା, "ମୁଁ ସେଲୁନ୍ ଖୋଲି ବସିଲେ ସେଠିକି ଆସିବ କିଏ ? ତା' ଛଡ଼ା ମୁଁ ଯେଉଁ ବୁନିଆଦି ଘରସବୁ ଧରିଛି, ସେମାନଙ୍କୁ ଛାଡ଼ି ଯିବାପାଇଁ ମୋର ଇଚ୍ଛା ହେଉନାହିଁ । ଏମିତି ତ ସବୁ ମାସରେ ସେମାନଙ୍କୁ ଥରେ ଥରେ ଦେଖିବାର ଯୋଗ ମିଳୁଛି ।" ଇତ୍ୟାଦି ଇତ୍ୟାଦି । ସେତେବେଳକୁ ମୁଣ୍ଡବାଳଠାରୁ ଆରମ୍ଭ କରି ନଖ ପର୍ଯ୍ୟନ୍ତ ସବୁ କଟା ସରିଥିଲା । ମୁଁ କହିଲି, "ହଉ, ସେତିକି ଥାଉ । ପୁଣି ଆର ମାସରେ ଠିକ୍ ଏଇ ତାରିଖରେ ଆସିବ ।" ତା' ପରେ ସେ ଗୋଟାଏ ଛାଞ୍ଚୁଣୀ ମାଗି ନେଇ ଘରଟାଯାକ ଓଳାଇ କଟାବାଳ ଯେଉଁଠି ସବୁ ପଡ଼ିଥିଲା, ସେତକ ଝାଡ଼ି ଖଣ୍ଡେ କାଗଜରେ ପୂରାଇ ବାହାରକୁ ନେଇ ପୁଣି ଗୋଟାଏ ଜୁହାର ପକାଇ ଚାଲିଗଲା ।

ତା'ର ନାଁ ଓ ଠିକଣା ପଚାରି ପାରିଲି ନାହିଁ । କିନ୍ତୁ ସେ ଚାଲିଯିବା ପରେ ବହୁ ସମୟ ଧରି ଭାବିଲି, ବିଂଶ ଶତାବ୍ଦୀର ଶେଷ ଭାଗରେ ଏ ଊନବିଂଶ ଶତାବ୍ଦୀର ଶେଷଭାଗ ଆସିଲା କୁଆଡ଼ୁ ? ବିବର୍ତ୍ତନ ଧାରା ଅବଶ୍ୟ ନିତ୍ୟ ଗତିଶୀଳ । କିନ୍ତୁ ସବୁ ପରିବର୍ତ୍ତନ ମଧ୍ୟରେ କିଛି ରହିଯାଏ ଅପରିବର୍ତ୍ତନୀୟ ହୋଇ । ଅପରିବର୍ତ୍ତନୀୟତା ମଧ୍ୟରେ ଆମେ ଜ୍ଞାତସାରରେ ହେଉ ଅଥବା ଅଜ୍ଞାତସାରରେ ହେଉ ମୁହୂର୍ତ୍ତକ ପାଇଁ ଉପଲବ୍ଧି କରିଥାଉ- ସମୟ ଯେପରି ମୁହୂର୍ତ୍ତକ ପାଇଁ କେଉଁଠି ଅଟକି ଯାଇଛି ଓ ତା'ରି ମଧ୍ୟରେ ଆମେ ମୁହୂର୍ତ୍ତକ ପାଇଁ ହେଉ ସୁଦ୍ଧା ଫେରିପାଉ ବିଶ୍ୱାସ ଓ ପ୍ରତ୍ୟୟ ।

୧୮/୦୮/୯୦

# ଲାଇବ୍ରେରୀ

ଦିନେ ମୋ ନାତୁଣୀ ହଠାତ୍ ମୋ ପାଖକୁ ଆସି କହିଲା, "ପ୍ରମିଜ୍, ପ୍ରମିଜ୍ !" ମୁଁ ଟିକିଏ ଗୁମ୍ ମାରି କହିଲି, କେଉଁଥିପାଇଁ, ପୁଣି କ'ଣ, ନଜାଣି ପ୍ରମିଜ୍ କରିବସିବି କିପରି ?" ସେ ଆଉ କେତେବାର କେବଳ ସେଇ ପ୍ରମିଜ୍, ପ୍ରମିଜ୍ ଦୋହରାଇବା ପରେ ମୁଁ କହିଲି, "ଠିକ୍ ଅଛି, ପ୍ରମିଜ୍ କରୁଛି । ଏବେ କେଉଁ କଥା ପାଇଁ ପ୍ରମିଜ୍ ମୋତେ କହ ।" ସେ ଉତ୍ତର ଦେଲା, "ତୁମ ଲାଇବ୍ରେରୀରେ ଇର୍‌ଭିଙ୍ଗ୍ ଷ୍ଟୋନ୍‌ର ଦୁଇଖଣ୍ଡ ବହି ଦେଖିଲି- 'ଆଗୋନି ଏଣ୍ଡ ଏକ୍‌ଟାସୀ' ଆଉ 'ଲଷ୍ଟ ଫର ଲାଇଫ୍', ମୁଁ ସେହି ବହି ଦୁଇଖଣ୍ଡ ନେବି ।" ଇଂରାଜୀ ସାହିତ୍ୟ ପ୍ରତି ତା'ର ଭାରି ଶ୍ରଦ୍ଧା ଓ ସେ ଇଂରାଜୀ ସାହିତ୍ୟର ଅକ୍ଳାନ୍ତ ପାଠିକା । ମୁଁ ତାର ହାତ ଆଉଁସି ଆଉଁସି କହିଲି, "ଏବେ ନେଇ କ'ଣ କରିବୁ । ମୁଁ ମରିଯିବା ପରେ ସେ ବହି ଦୁଇଖଣ୍ଡ ତୋ ପାଇଁ ରହିଲା ।" ସେ ମୁହଁ ଫୁଲେଇ କହିଲା, "ତୁମେ ମରିଗଲା ପରେ ସେଗୁଡ଼ିକ ତ କିଏ କୁଆଡ଼େ ନେଇଯିବ । ଆଉ ମୁଁ ପାଇବି କେଉଁଠୁ ?" କଥାଟା ନିଷ୍ଠୁର ଭାବରେ ସତ୍ୟ । ସେଥିପାଇଁ ମନେମନେ ଟିକିଏ ଆଘାତ ପାଇଲି । ଏ ଆଘାତ ମୋର ଅବଶ୍ୟମ୍ଭାବୀ ମୃତ୍ୟୁ ପାଇଁ ନୁହେଁ । କାରଣ ଭକ୍ତକବି ମଧୁସୂଦନଙ୍କ ଭାଷାରେ "ମରଣକୁ କରିଅଛି ଅମୃତ ସୋପାନ ।" କିନ୍ତୁ ମୋର ମୃତ୍ୟୁ ପରେ ମୋର ସବୁଠାରୁ ପ୍ରିୟ ଛୋଟିଆ ଲାଇବ୍ରେରୀଟିର ଭବିଷ୍ୟତ ସଂପର୍କରେ ନାତୁଣୀର ଆଶଙ୍କା ଘେନି ।

ମୋ ଆଖି ଆଗରେ ଦେଖିଛି, ଏଇପରି କେତେକ ବ୍ୟକ୍ତିଗତ ଲାଇବ୍ରେରୀ ବା ସଂଗ୍ରହର ପରିଣତି । ମୋର ପ୍ରିୟ ବହିସବୁ ଦିନେ ବେଓ୍ୱାରିସ୍ ମାଲ୍ ପରି ସେଇପରି କୁଆଡ଼େ ହଜିଯିବ । ଏଇ ସମ୍ଭାବନା ମୋତେ ପୀଡ଼ିତ କରିଥିଲା... । ବ୍ୟକ୍ତିଗତ ଲାଇବ୍ରେରୀ ବା ସଂଗ୍ରହ ତ କେବଳ ଲାଇବ୍ରେରୀ ବା କିଛି ବହିର ସଂଗ୍ରହ ନୁହେଁ । ମୋ ପାଇଁ ସେ ବହି ସବୁ ମୋ ଜୀବନର ଗୋଟିଏ ଗୋଟିଏ ସ୍ମରଣୀୟ ମୁହୂର୍ତ୍ତ । ମୋ ସଂଗ୍ରହରେ ଥିବା ଖଣ୍ଡେ ଖଣ୍ଡେ ବହିକୁ ଦେଖିବା ମାତ୍ରେ ମୋ ଆଖି ଆଗରେ ଭାସିଉଠେ ହଜିଲା ଦିନର

ବହୁ ସ୍ମୃତି । ସପ୍ତମ ଦଶକରେ ଏ ଦେଶରେ ହରମାନ୍ ହେସ୍ ଓ ନୁଟ୍ ହାମ୍‌ସୁନ ପ୍ରମୁଖ କେତେକ ପ୍ରସିଦ୍ଧ ୟୁରୋପୀୟ ଲେଖକଙ୍କର ଘଟିଥିଲା ନୂତନ ଅଭ୍ୟୁଦୟ ବା ରିଭାଇଭାଲ୍ । ମୁଁ ସେତେବେଳେ ନୂଆଦିଲ୍ଲୀରେ ଫୁଟ୍‌ପାଥ୍ ପେପରବ୍ୟାକ୍ ବହି ଦୋକାନମାନଙ୍କରେ ବୁଲି ବୁଲି ବହୁ କଷ୍ଟରେ ହରମାନ ହେସ୍‌ଙ୍କର ପ୍ରାୟ ସବୁ ବହି ସଂଗ୍ରହ କରିଥିଲି । ଟେନିସ୍ ଉଇଲିୟମ୍ ଓ ଉଗୁଇନ ଓ ନୀଲ୍ ମୋର ପ୍ରିୟ ନାଟ୍ୟକାର ଥିଲେ ଓ ନୀଲ୍‌ଙ୍କର ପ୍ରସିଦ୍ଧ ନାଟକ 'ଲଙ୍ଗ୍ ଡେଜ୍ ଜର୍ଣ୍ଣି ଇନ୍ ଟୁ ନାଇଟ୍' ଖଣ୍ଡେ ସଂଗ୍ରହ କରିବାପାଇଁ କେତେ ଟ୍ୟାକ୍ସି ଭଡ଼ା ମୁଁ ନିଜେ ନଗଣିଛି । ସେହିପରି ଟେନିସ୍ ଉଇଲିୟମ୍‌ଙ୍କର ନାଟକ 'ଏ ଷ୍ଟ୍ରିଟ୍ କାର୍ ନେମ୍‌ଡ୍ ଡିଜାୟାର' ଅତି ଆକସ୍ମିକ ଭାବରେ ମୁଁ ସଂଗ୍ରହ କରିପାରିଥିଲି ନାଗପୁର ଏୟାର୍‌ପୋର୍ଟର ଗୋଟିଏ ବହି ଦୋକାନରୁ । ସେହିପରି ଭାବରେ ବୌଦ୍ଧଧର୍ମ ଓ ସଂସ୍କୃତି ସଂପର୍କରେ କେତେକ ଦୁଷ୍ପ୍ରାପ୍ୟ ବହି ମୁଁ ସଂଗ୍ରହ କରିପାରିଥିଲି ସେକେଣ୍ଡ ହ୍ୟାଣ୍ଡ୍ ଦୋକାନମାନଙ୍କରେ ବୁଲି ବୁଲି । ଏଇପରି ଭାବରେ ମୋର ଲାଇବ୍ରେରୀରେ ଥିବା ପ୍ରତ୍ୟେକ ବହି ସହିତ ମୋର ରହିଛି ଏକ ନିବିଡ଼ ସଂପର୍କ । ସେ ବହି ସବୁ ମୋ ଦୃଷ୍ଟିରେ କେବଳ ବହି ନୁହେଁ, ସେସବୁ ମୋ ଜୀବନର ଗୋଟିଏ ଗୋଟିଏ ସ୍ପର୍ଶାତୁର ମୁହୂର୍ତ୍ତ । ଅନେକ ବହି ତ ନଷ୍ଟ ହୋଇଗଲା । କିନ୍ତୁ ଯାହା କିଛି ଅବଶିଷ୍ଟ ରହିଛି, ମୋର ମୃତ୍ୟୁ ପରେ ସେ ସବୁର ଅବସ୍ଥା କ'ଣ ହେବ, ସେ ଚିନ୍ତା ସେଇଦିନୁ ମୋତେ ଏବେ ସବୁବେଳେ ଘାରୁଛି । ବେଳେବେଳେ ଦାର୍ଶନିକ ସୁଲଭ ଅନାସକ୍ତିରେ ଭାବୁଛି, କାଳ ଯେତେବେଳେ ମୋତେ ଗ୍ରାସ କରିଯିବ, ସେତେବେଳେ ମୋର ବହି ସବୁ ତା ଦାଉରୁ ବର୍ତ୍ତି ପାରିବେ ବା କିପରି ?

ଆଖି ଆଗରେ ଭାସିଉଠେ, କଲିକତା କଲେଜ ଷ୍ଟ୍ରିଟ୍‌ର ଦୀର୍ଘ ଫୁଟ୍‌ପାଥ୍‌ର ଦୁଇକଡ଼େ ଧାଡ଼ି ଧାଡ଼ି ପୁରୁଣା ବହି ଦୋକାନ । ଥରେ ଚାର୍ଲସ୍ ଡିକେନ୍‌ସ୍‌ଙ୍କର କେତେଖଣ୍ଡ ଉପନ୍ୟାସର ଅରିଜିନାଲ ଏଡ଼ିସନ୍ ମୁଁ କିଣିଥିଲି, ଖରାରେ ବୁଲିବୁଲି ସେହିପରି ବହିଦୋକାନମାନଙ୍କରୁ ପ୍ରାୟ ନାମମାତ୍ର ମୂଲ୍ୟରେ । ଏଇପରି ମୂଳ ବହି ମାଲିକମାନଙ୍କର ପରବର୍ତ୍ତୀକାଳୀନ ଉତ୍ତରାଧିକାରୀମାନେ ହୁଏତ ଅଭାବରେ ପଡ଼ି, ନୋଇଲେ ଏ ବହି ସବୁ ଅଯଥା ଜଞ୍ଜାଳ ଭାବି ବିକ୍ରୀ କରି ଦେଇଛନ୍ତି ପୁରୁଣା ବହି ବ୍ୟବସାୟୀମାନଙ୍କୁ, ହଡ଼ା ବିକିବା ପରି । ସେ ସମ୍ଭାବନା ବା ଆଶଙ୍କା ମୋ କ୍ଷେତ୍ରରେ ଯେ ନାହିଁ, ତା' କିଏ କହିବ ? ତେଣୁ ଯେଉଁ ବହି ସବୁ ଥିଲା ଦିନେ ମୋର ନିଃସଙ୍ଗ ମୁହୂର୍ତ୍ତମାନଙ୍କର ସାଥୀ ସେହି ବହି ସବୁ ଏବେ ମୋ ପାଇଁ ହୋଇଉଠିଛନ୍ତି ବୃଶ୍ଚିକ ଦଂଶନ...

ମନେ ପଡ଼ିଯାଏ ରାଜାସାହେବ ନାମରେ ପରିଚିତ ଜଣେ ଜମିଦାରଙ୍କ କଥା । ତାଙ୍କ ଲାଇବ୍ରେରୀରେ ଥିଲା ଅନେକ ଦୁଷ୍ପ୍ରାପ୍ୟ ଓ ପୁରୁଣା ବହି । ବହୁ ବିଷୟରେ ତାଙ୍କର

ଆଗ୍ରହ ଥିବାରୁ ତାଙ୍କ ଲାଇବ୍ରେରୀଟି ସବୁ ଦୃଷ୍ଟିରୁ ଥିଲା ମୂଲ୍ୟବାନ । ଥରେ ତାଙ୍କ ଘରକୁ ଯାଇଥିଲି ମାଡ୍‌କ୍‌ସ ସେଟଲମେଣ୍ଟ ରିପୋର୍ଟସବୁରୁ କିଛି ଅଂଶ ଦେଖିବାପାଇଁ । ସେତେବେଳେ ଏ ବହି ଥିଲା ଦୁଷ୍ପ୍ରାପ୍ୟ । କିନ୍ତୁ ରାଜା ସାହେବ କହିଲେ, "ମୋ ଲାଇବ୍ରେରୀର କିଛି ଗୋଟାଏ ବ୍ୟବସ୍ଥା ନକରିବା ପର୍ଯ୍ୟନ୍ତ ମୁଁ ଆଉ କାହାକୁ ବହି ଛୁଇଁବାକୁ ସୁଦ୍ଧା ଦେବି ନାହିଁ ।" କାରଣ ପଚାରିବାରୁ ସେ କହିଲେ, ତାଙ୍କର ଅନେକ ବହି ଏମିତି ହଜି ଗଲାଣି । ସେଥିପାଇଁ ସେ ଲାଇବ୍ରେରୀ ଘର ତାଲା ପକାଇ ଦେଇଛନ୍ତି । ମୁଁ କହିଲି, "ଆପଣଙ୍କର ବୟସ ହେଲାଣି । ଆପଣ ଲାଇବ୍ରେରୀପାଇଁ ଗୋଟିଏ ଟ୍ରଷ୍ଟ ହାତରେ ସେ ବହି ସବୁ ଦେଇ ଦିଅନ୍ତୁ । ଅନେକ ମୂଲ୍ୟବାନ ବହି ଅଛି ଆପଣଙ୍କ ଲାଇବ୍ରେରୀରେ ।" ରାଜା ସାହେବ ହୋ ହୋ ହସିଉଠି କହିଲେ, "ସବୁ ଟ୍ରଷ୍ଟ ଏଠି ବିଚ୍ ଅଫ୍ ଟ୍ରଷ୍ଟ । କୋଉ ଟ୍ରଷ୍ଟ ହାତରେ ବା ଦେବି ! ମିଷ୍ଟର ଦାସ, ତାଙ୍କର ଲାଇବ୍ରେରୀ ସେସନ କୋର୍ଟ ଲାଇବ୍ରେରୀକୁ ଦାନ କରି ଯାଇଥିଲେ । ମାତ୍ର ଆଜି ହାଇକୋର୍ଟ ଲାଇବ୍ରେରୀରେ ସେ ବହି ସବୁର ଖଣ୍ଡେ ପୃଷ୍ଠା ଖୋଜିଲେ ସୁଦ୍ଧା ମିଳିବ ନାହିଁ । ତେଣୁ ଆଉ କୋଉ ଲାଇବ୍ରେରୀକୁ ବା ଦେବି ?"

"ତା'ହେଲେ" ମୁଁ ପଚାରିଲି ।

ସେ ନିର୍ଲିପ୍ତ କଣ୍ଠରେ ଉତ୍ତର ଦେଲେ... "These books will go alongwith me to the pyres" ( ଏ ବହିସବୁ ମୋ ସହିତ ମୋ ଚିତାକୁ ହିଁ ଯିବ!) ରାଜା ସାହେବଙ୍କ ଚେହେରା ସେତେବେଳେ ଭାରି ବିଷଣ୍ଣ ଦିଶୁଥିଲା । ଏବେ ମୋର ଉଜୁଡ଼ା ଲାଇବ୍ରେରୀ ଆଡ଼େ ଚାହିଁଲେ, ମୋ ଆଖି ଆଗରେ ଭାସିଉଠେ ସ୍ୱର୍ଗତଃ ରାଜା ସାହେବଙ୍କର ସେଇ ବିଷଣ୍ଣ ଚେହେରା ।

୨୪/୦୮/୯୦

# ବୁଲୁ ସିନେମା

ସେଇ ଜିନ୍‌ପ୍ୟାଣ୍ଟ ଆଉ ଗୋଲାପୀ ରଙ୍ଗର ଟି-ସାର୍ଟ ପିନ୍ଧା ଯୁବକଟିକୁ ଦେଖି ପ୍ରଥମେ ମୁଁ ଜାଣି ପାରିଲି ନାହିଁ ଯେ ସିଏ ତଳହଟୀ ଅଞ୍ଚଳର ଜଣେ ଘନିଷ୍ଠ ରାଜନୈତିକ ସହକର୍ମୀ, କସ୍ତୁରୀ ସାମଲଙ୍କ ପୁଅ ବୋଲି । କସ୍ତୁରୀ ସାମଲଙ୍କ ଦେ... ...ଏ ପୁରୁଣାକାଳିଆ ଫତେଇ ଆଉ ଖଣ୍ଡେ ପଖାଳକରିଆ ଗାମୁଛା, ଆଉ କାନ୍ଧରେ ଖୋ... ...ଲାମୁଣି ଛଡ଼ା ମୁଁ ଆଉ କେବେ କିଛି ଦେଖିନାହିଁ । ଅତୀତରେ ବହୁ ସୁଦିନ; ଦୁର୍ଦ୍ଦିନ ଭିତରେ ସିଏ ରହି ଆସିଥିଲେ ମୋର ବିଶ୍ୱସ୍ତ ସାଥୀ ଓ ସହକର୍ମୀ ! ସାଂପ୍ରତିକ କାଳରେ ବିଶ୍ୱସ୍ତତା ଏକ ତମାଦୀପ୍ରାପ୍ତ ପୁରୁଣା ମୂଲ୍ୟବୋଧ ହୋଇଥିଲେ ହେଁ କସ୍ତୁରୀ ସାମଲ କିନ୍ତୁ ଥିଲେ ତା'ର ଜୀବନ୍ତ ପ୍ରତିନିଧି, ବୋଧହୁଏ ଶେଷ ପ୍ରତିନିଧି । ତାଙ୍କ ପୁତ୍ର ଶ୍ରୀମାନ୍‌ଙ୍କୁ ମୁଁ ଏପ୍ରକାର ପୋଷାକ ପରିଚ୍ଛେଦରେ ଦେଖି ବିସ୍ମିତ ହେବାର ସ୍ୱାଭାବିକ ଥିଲା । ମୁଁ ରାଜନୀତିରୁ ବିଦାୟ ନେବା ପରେ ସୁଦ୍ଧା, କସ୍ତୁରୀ ସାମଲ କଦବା କେମିତି କଟକ-ଭୁବନେଶ୍ୱର ଆସିଲେ ମୋ ପାଖକୁ ଦେଖା କରିବାପାଇଁ ଆସିଥାଆନ୍ତି । ଆଜକୁ କେତେ ବର୍ଷ ତଳେ ମୁଁ ଭୁବନେଶ୍ୱରରେ ଥିବାବେଳେ ସିଏ ଥରେ ଆସିଥିଲେ ଓ ତାଙ୍କର ବି.ଏ. ଫେଲ୍ ପୁଅ ପାଇଁ ସେଠି ଚାକିରିଟିଏ ବୁଝି ଦେବାପାଇଁ ଅନେକ ଅନୁରୋଧ କରିଯାଇଥିଲେ । ମୁଁ ତାଙ୍କୁ ଆସ୍ତି ନାସ୍ତି କିଛି କହିନଥିଲି । ବିଚରା ସରଳ ମଣିଷଟିଏ, ସିଏ ବା କ'ଣ ବୁଝି ପାରିବ, ଆଜିକାଲି ଚାକିରିର ବଜାର, ସେଥିରେ ପୁଣି ମୂଲଚାଲର କାରବାର ! ତା'ର କେତେ ମାସ ପରେ ସେ ପୁଣି ଥରେ ଆସିଥିଲେ ପୁଅର ଚାକିରି କଥା ବୁଝିବାପାଇଁ । ମୁଁ ତାଙ୍କୁ କହିଥିଲି, ତୁମ ପୁଅକୁ ଥରେ ମୋ ପାଖକୁ ପଠାଇ ଦେବ । ତା' ସାଙ୍ଗରେ ମୁଁ କଥାବାର୍ତ୍ତା କରିବି । ସେଥିପାଇଁ ତା'ର ପ୍ରାୟ ବର୍ଷକ ପରେ ମୁକୁନ୍ଦପୁର ଗାଁରୁ ଦିନେ ନିର୍ଦ୍ଧୁମ ଖରାବେଳେ ହଠାତ୍ ଆସି ପହଞ୍ଚିଥିଲେ ସେଇ ଜିନ୍ ପିନ୍ଧା ଯୁବକ । ମୁଣ୍ଡବାଳ ବାବୁରୀ ଫେସନରେ କଟା ହୋଇଛି । ଦେହରୁ ବାହାରୁଛି ଶସ୍ତା ଅତରର ବାସନା । ଜିନ୍‌ର ରଂଗ ଆକାଶୀ । କିନ୍ତୁ ଟି-ଶାର୍ଟର ରଙ୍ଗ ଗାଢ଼ ଗୋଲାପୀ । କୋଉ ରେଡ଼ିମେଡ୍

ପୋଷାକ ଦୋକାନରୁ କିଣା । ମଡ଼ର୍ଣ୍ଣ ହେବା ପାଇଁ ସବୁ ଚେଷ୍ଟା ସତ୍ତ୍ୱେ ତା' ଚେହେରାରେ ଛାଗି ରହିଥିଲା, ନିପଟ ମଫସଲି ରୁଚି । ସିଏ କିଏ ବୋଲି ପଚାରିବାରୁ ସିଏ ଖୁବ୍ ବ୍ୟସ୍ତ ଥିବାପରି କଣ୍ଠରେ ଉତ୍ତର ଦେଲା, "ବାପା ପଠେଇଥିଲେ ବୋଲି ଆସିଲି । ମୋ ଘର ମୁକୁନ୍ଦପୁର ।" ମୁଁ ବିସ୍ମିତ କଣ୍ଠରେ ପଚାରିଲି, "ତୁମେ କସ୍ତୁରୀ ସାମଲଙ୍କ ପୁଅ ?" ସିଏ ହଁ ବୋଲି ଉତ୍ତର ଦେବାରୁ ମୁଁ ତାକୁ କହିଲି, "ତୁମେ ପଛକୁ ଆସ କଥାବାର୍ତ୍ତା ହେବା ।" ସିଏ ଲମ୍ବା ଲମ୍ବା ପାହୁଲ ପକାଇ ଚାଲିଗଲା । ମାତ୍ର ସେଦିନ ସେ ଆଉ ଆସିଲା ନାହିଁ, କିମ୍ବା ତା' ପରେ ସୁଦ୍ଧା ନୁହେଁ ।

ଏହାର ଆଉ କେତେ ମାସ ପରେ ଦିନେ ଆସିଲେ ସାମଲ । ପୁଅ ବର୍ତ୍ତମାନ କ'ଣ କରୁଛି ବୋଲି ତାଙ୍କୁ ପଚାରିଲି । କସ୍ତୁରୀ ସାମଲ ଉତ୍ତର ଦେଲେ, "ସିଏ ଏବେ ବୁଲୁ ସିନେମା ବେପାର ଆରମ୍ଭ କରିଛି । ଏଥିରେ ଭଲ ପଇସା ଅଛି ଆଜ୍ଞା ! କୋଉ ରାତିରେ ତିନି ଶହ ତ କୋଉ ରାତିରେ ଚାରି ଶହ । ଯା ଭିତରେ ଗୋଟାଏ ହିରୋହୋଣ୍ଡା ମଟର ସାଇକେଲ୍ ଆଉ ଟି.ଭି. କିଣିଲାଣି । ତା'ର ଆଉ ଚାକିରି ଦରକାର ନାହିଁ । ଚାକିରିରୁ ସେ କ'ଣ ବା ପାଆନ୍ତା ?" କିନ୍ତୁ ବୁଲୁ ସିନେମା କଥାଟା ଭୁଲି ପାରିଲି ନାହିଁ । ବୋଧହୁଏ କୌଣସି ଲୋକପ୍ରିୟ ଫିଲ୍ମର ନାମ ହୋଇଥିବ । କିନ୍ତୁ ସେଇ ଗୋଟାଏ ଫିଲ୍ମକୁ ରାତି ରାତି ଧରି ମଫସଲ ଗାଁରେ କିପରି ଦେଖାଉଚି, ଆଉ ସେଥିରୁ ଏତେ ପଇସା ରୋଜଗାର କରୁଛି, ଯେତିକି ଭାବିଲି କ୍ରମେ ସେତିକି ବିସ୍ମିତ ହେଲି । କସ୍ତୁରୀ ସାମଲ ମଧ୍ୟ ତା'ର କୌଣସି ବ୍ୟାପାର ବୃତ୍ତାନ୍ତ ମୋତେ ଦେଇପାରିଲେ ନାହିଁ । କସ୍ତୁରୀ ସାମଲ ଯିବାବେଳେ ମୁଁ ତାଙ୍କୁ ଆଉଥରେ ଅନୁରୋଧ କଲି, ତାଙ୍କ ପୁଅକୁ ମୋ ପାଖକୁ ଦିନେ ପଠାଇବାପାଇଁ । ଏତେବେଳକୁ ମୁଁ କଟକ ଚାଲିଆସିଲିଣି । ଦିନେ ସକାଳେ ତାଙ୍କର ସେଇ ଜିନ୍‌ପିନ୍ଧା ପୁଅ ମୋ ଘରେ ଆସି ହାଜର । ପିନ୍ଧିଥିଲା ଗୋଟାଏ ନେଳିଆ ରଂଗର ଜିନ୍ ପ୍ୟାଣ୍ଟ ଆଉ ତା' ଉପରେ ଗୋଟାଏ ଛିଟ ଟି-ସାର୍ଟ । ରୁଚିଜ୍ଞାନର ସେଇ ଶୋଚନୀୟ ଅଭାବ । ମୁଁ ତାକୁ କପେ ଚା' ଦେଇ ତାଙ୍କ ଆଡ଼ର କଥା ସବୁ ପଚାରିଗଲି । ସେଦିନ ସିଏ ଯାଉଥିଲା, କଲିକତା । ସେଥିପାଇଁ ବୋଧହୁଏ ଭାରି ତରତର ଥିଲା । ମୁଁ ପଚାରିଲି, "ବାପା କହୁଥିଲେ ତମେ କ'ଣ ବୁଲୁ ସିନେମା କାରବାର ଆରମ୍ଭ କରୁଛ । କିନ୍ତୁ ବୁଲୁ ସିନେମା କ'ଣ ?" ସିଏ ସଙ୍କୁଚିତ ଭାବରେ ଉତ୍ତର ଦେଲା, "ଆପଣ ଆଜ୍ଞା ସେଥିରୁ କ'ଣ ପାଇବେ ?" ଏ ପ୍ରକାର ଉତ୍ତର ମୋର କୌତୂହଳକୁ ଆହୁରି ବଢ଼ାଇବାରୁ ମୁଁ ତାକୁ ବାରମ୍ବାର ସେଇ ପ୍ରଶ୍ନ ପଚାରିଲି । ଅବଶେଷରେ ସେ ଉତ୍ତର ଦେଲା, "ସିଏ ଆଜ୍ଞା ବ୍ଲୁ ସିନେମା ! ଭିଡ଼ିଓ କ୍ୟାସେଟ୍‌ରେ ଦେଖଉଛି । ଗାଁ ଲୋକେ ବ୍ଲୁକୁ କହୁଛନ୍ତି ବୁଲୁ ।" ମୁଁ ଅବଶ୍ୟ ବ୍ଲୁ ସିନେମା ଥରେ ଦୁଇଥର ନଦେଖିଛି ଯେ ନୁହେଁ । କିନ୍ତୁ ଘନିଷ୍ଠ ବନ୍ଧୁଙ୍କ ଘରେ ଡିନର ପାର୍ଟିରେ ବା

ସେହିପରି ଅବକାଶରେ । କିନ୍ତୁ ସେହି ବ୍ଲୁ ସିନେମାକୁ ନେଇ ନିପଟ ମଫସଲ ଅଞ୍ଚଳରେ ଯେ ବେପାର ଖଞ୍ଜାଯାଇପାରେ, ଏହା ମୁଁ ଆଦୌ କଳ୍ପନା କରିପାରୁ ନଥିଲି । ସେ ସଂପର୍କରେ ପୁଣି ତାକୁ ବାରମ୍ବାର ପଚାରିବାରୁ ସିଏ କହିଲା, "ଆମ ଆଡ଼େ ଆଉରି ଦି ତିନିଜଣ ମଧ୍ୟ ଏଇ ବ୍ଲୁ ଧନ୍ଦା କରୁଛନ୍ତି । ଫିଲ୍ମ ଅନୁସାରେ ଟିକଟର ଦାମ୍ । ୱାନ୍ ଏକ୍ସ ହେଇଥିଲେ, ପାଞ୍ଚଟଙ୍କା । ଟୁ ଏକ୍ସ ହେଇଥିଲେ ଦଶଟଙ୍କା । ଥ୍ରୀ ଏକ୍ସ ହେଇଥିଲେ କୋଡ଼ିଏ ଟଙ୍କା । କିନ୍ତୁ ୱାନ୍ ଏକ୍ସ, ଟୁ ଏକ୍ସ, ଥ୍ରୀ ଏକ୍ସ ଶୁଣି ମୋର ମନେ ହେଲା ଏସବୁ ତ ହୋମିଓପ୍ୟାଥି ନୋଇଲେ ବାଇଓକେମିକ୍ ଗ୍ଲୋବୁଲ୍ସ ପରି ଶୁଭୁଛି । ଏଇ ସିନେମା ଆଉ କ'ଣ ? ସିଏ ମୋର ନିର୍ବୋଧତା ପ୍ରତି ଦୟା ପ୍ରଦର୍ଶନ କରିବା ପରି କଣ୍ଠରେ କହିଲା, "ୱାନ୍ ଏକ୍ସ ହେଲା ମାମୁଲି । ଛବିରେ ବେଳେବେଳେ ଆଉ ସ୍ଥାନେସ୍ଥାନେ ସେଇପରି ସିନ୍ ସବୁ ରହିଛି । ଟୁ ଏକ୍ସରେ ଆହୁରି ବେଶି । ଥ୍ରୀ ଏକ୍ସରେ ମୂଳରୁ ଶେଷ ପର୍ଯ୍ୟନ୍ତ ଖାଲି ସେୟା ।" ମୁଁ ବିସ୍ମିତ କଣ୍ଠରେ ପଚାରିଲି, "[illegible]ଳର ଲୋକେ କ'ଣ ଏସବୁ ଦେଖୁଛନ୍ତି ?" ସେ ଉତ୍ତର ଦେଲା, "ଥ୍ରୀ ଏକ୍ସ କ୍ୟାସେଟ୍ ପଡ଼ିବ ବୋଲି ଆଗରୁ ଖବର ପାଇ ଦରବୁଢ଼ା ଲୋକମାନେ ସୁଦ୍ଧା ତିନିମାଇଲ ଚାରିମାଇଲ ବାଟରୁ ଆସୁଛନ୍ତି, ସିନେମା ଦେଖିବାପାଇଁ ।"

ମୁଁ କହିଲି, "ଦେଖ ବାବୁ, ଆମେ ଏକ ସଂସ୍କୃତିବନ୍ତ ଜାତି ବୋଲି ଆମର ଅହଂକାର ଅଛି । ଗାଏଁ ଗାଏଁ ତମେ ସବୁ ଏ ବ୍ଲୁ ସିନେମା ଚଳାଇ ଆମର ରୁଚି, ସଂସ୍କୃତି ଓ ପରମ୍ପରାକୁ ଏମିତି ଧ୍ୱଂସ କରୁଛ କାହିଁକି ?" ସିଏ ହସି ହସି ଉତ୍ତର ଦେଲା, "ସେସବୁ କଥା ଆପଣମାନଙ୍କୁ ଇ ସାଜେ । ଆଗେ ଆମ ପେଟ ପୂରୁ, ତା' ପରେ ଆମେ ସବୁ କଥା ଚିନ୍ତା କରିବୁ ।" ଏହା କହିବାରେ ତା'ର କୌଣସି କୁଣ୍ଠା ଅଥବା ସଙ୍କୋଚ ନଥିଲା । ମୁଁ ପଚାରିଲି, "ତୁମେ ଏବେ ଯାଉଚ କୁଆଡ଼େ ?" ସିଏ ଉତ୍ତର ଦେଲା, ସିଏ ଯାଉଚି କଲିକତା, ନୂଆ ଟୁ ଏକ୍ସ ଆଉ ଥ୍ରୀ ଏକ୍ସ କ୍ୟାସେଟ୍ ପାଇଁ । ସିଏ ଚାଲିଗଲା । କିନ୍ତୁ ମୋ ପାଇଁ ଛାଡ଼ିଗଲା, ଅକଳିତ ବିସ୍ମୟ ଓ ବିଭ୍ରାନ୍ତି । ପରେ ଭାବି ଦେଖିଲି ସାଂପ୍ରତିକ ଯୁଗର ମଣିଷମାନେ ଇ ବିକୃତ, ସେମାନଙ୍କ ରୁଚି ଓ ମୂଲ୍ୟବୋଧ ମଧ୍ୟ ବିକୃତ । ସେମାନଙ୍କ ରୁଚି ଅନୁସାରେ ବ୍ଲୁ ସିନେମାର ଯୌନ ବିକୃତି ଓ ବ୍ୟଭିଚାର ଭିଡ଼ିଓରେ ଦେଖାଇ ଏଥିରୁ ଯଦି କିଛି ରୋଜଗାର କରାଯାଇ ପାରିଲା, ତା'ହେଲେ ମନ୍ଦ କ'ଣ ?

୦୮/୦୯/୯୦

# ସେଇ ଅସାମାଜିକ ଲୋକଟି

ଏବେ 'ଅସାମାଜିକ ବ୍ୟକ୍ତି' ନାମରେ ଗୋଟିଏ ଗୋଷ୍ଠୀ, ଆମ ସମାଜରେ ଜନ୍ମଲାଭ କରିଥିବା, ଖବରକାଗଜ ସ୍ତମ୍ଭମାନଙ୍କରେ ପ୍ରତ୍ୟହ ପ୍ରାୟ ଦେଖିବାକୁ ମିଳୁଛି । ଗାଁ ଗହଳଠାରୁ ଆରମ୍ଭକରି ସହର ପର୍ଯ୍ୟନ୍ତ ପ୍ରାୟ କିଛି ନା କିଛି ଗୋଟିଏ ହୁଜୁଗ ଲାଗି ରହିଛି ଓ ପ୍ରତି ହୁଜୁଗର ନେପଥ୍ୟରେ ରହିଛନ୍ତି, ରିପୋର୍ଟରମାନଙ୍କ ଭାଷାରେ ଏହି ଅସାମାଜିକ ବ୍ୟକ୍ତିମାନେ । ସେ ପର୍ଯ୍ୟନ୍ତ କିନ୍ତୁ ମୁଁ ଗୋଟିଏ ଅସାମାଜିକ ଲୋକକୁ ଆଖିରେ କେବେ ଦେଖି ନଥିଲି, ଯଦ୍ୟପି ଘଟଣାବଳୀରୁ ମନେହେଉଛି, ଅସାମାଜିକମାନଙ୍କର ସଂଖ୍ୟା ଆମ ସମାଜରେ ଦିନୁ ଦିନ ବଢ଼ିବଢ଼ି ଚାଲିଛି । କିନ୍ତୁ ଏ ଅସାମାଜିକମାନେ କିଏ ?... ମୁଁ ଭୁବନେଶ୍ୱରରେ ଥିଲାବେଳେ ମୋର ସରକାରୀ ବାସଭବନରେ ଦିନେ ସକାଳେ ପ୍ରାୟ ଦଶଟାବେଳେ ଅଫିସ ଘରେ ବିଡ଼ାଏ ଖବରକାଗଜ ଉପରେ ମୁହଁମାଡ଼ି ବସିଛି । ହଠାତ୍ ଜଣେ ପ୍ରାୟ ପଚିଶ ଛବିଶ ବର୍ଷର ଯୁବକ ବାହାରୁ ଦଉଡ଼ି ଦଉଡ଼ି ଧଇଁସଇଁ ହୋଇ ମୋ ଅଫିସ୍ ଭିତରକୁ ପଶି ଆସିଲା । ଖବରକାଗଜ ଉପରୁ ମୁହଁ ଉଠାଇ ତା' ଆଡ଼େ ଚାହିଁ ଦେଖିଲି- ଗୋଟାଏ ହରିଣ ଯେପରି, ବାଘ ହାବୁଡ଼ରୁ ଆତ୍ମରକ୍ଷା କରୁକରୁ ବ୍ୟାଧ ହାତରେ ପଡ଼ିଯାଇଛି- ଯୁବକଟିର ଅବସ୍ଥା ଲକ୍ଷ୍ୟ କରି ଦେଖିଲି, ସେଇପରି ଦୟନୀୟ ଓ କିଂକର୍ତ୍ତବ୍ୟବିମୂଢ଼ । ମୁଁ ତାକୁ ଚୌକିରେ ବସିବାପାଇଁ ଇଙ୍ଗିତଦେଇ ପୁଣି ଖବରକାଗଜ ଉପରକୁ ମୁଣ୍ଡ ନୁଆଁଇନେଲି, ଯେପରି କୌଣସି ଅସ୍ୱାଭାବିକ ଘଟଣା ଘଟି ନାହିଁ । କିନ୍ତୁ ମୁଁ ଖବରକାଗଜରେ ମୁହଁ ଢାଙ୍କିଥିବା ସତ୍ତ୍ୱେ ତା' ଆଡ଼େ କୋଣେଇ କୋଣେଇ ଚାହୁଁଥିଲି ଓ ତାକୁ ଲକ୍ଷ୍ୟ କରୁଥିଲି । ସେ ପିନ୍ଧିଥିଲା, ଖଣ୍ଡେ ପ୍ୟାଣ୍ଟ୍ ଆଉ ଟି-ସାର୍ଟ । ପାଦରେ ହଳେ ବାଟାର ରବର ଚଟି । ମୁଣ୍ଡର ବାଳ ସବୁ ଅଯତ୍ନବର୍ଦ୍ଧିତ ହୋଇ ନଥିଲେ ହେଁ ବେଶ ଲମ୍ବା ଓ କପାଳ ଉପରକୁ କିଛି ବାଳ ସାପ ପରି ଓହଳି ଆସିଥିଲା । ଆଖି ଦୁଇଟାରେ ଭରି ରହିଥିଲା ଯେପରି ଅଶରୀରୀ ଭୟ ଓ ଆତଙ୍କ । ନାକ ତଳେ ଦୁଇପଟ ନିଶ ଓ ଗୋଟିଏ ଛୋଟିଆ ଦାଢ଼ି ନଥିଲେ, ତା'ର ଚେହେରାଟା ଏତେ କ୍ରୂର ମନେ ହେଉନଥାନ୍ତା... ।

ସିଏ ବଡ଼ କରୁଣ କଣ୍ଠରେ କହିଲା, ମୋତେ ରକ୍ଷା କରନ୍ତୁ ସାର୍ । ତା'ର କଥା ଶେଷ ହୋଇଛି କି ନାହିଁ, ସେଠାରେ ଆସି ପହଞ୍ଚିଗଲେ ଥାନାର ଜଣେ ପୋଲିସ ସବ୍-ଇନ୍‌ସପେକ୍ଟର । ମୁଁ ତାଙ୍କୁ ପଚାରିଲି, ଆପଣ ହଠାତ୍ । ସବ୍-ଇନିସ୍ପେକ୍ଟର କହିଲେ, ମୁଁ ଏ ଲୋକଟାକୁ ଆରେଷ୍ଟ କରି ଥାନାକୁ ନେଉଥିଲି, ଇଏ ଦଉଡ଼ି ପଳାଇ ଆସିଛି । ମୁଁ ପଚାରିଲି, ଇଏ କ'ଣ କେଉଁଠି ଚୋରି ଚପାଟି କରିଥିଲା ବା ସେହିପରି କିଛି ? ପୋଲିସ୍ ସବ୍-ଇନିସପେକ୍ଟଙ୍କ କଥାରୁ ବୁଝିଲି, ଇଏ ଆଉ ଇଆରି ପରି ଦଳେ ଅସାମାଜିକ ଲୋକ ୟୁନିଟ୍ ସିକ୍‌ସ ଗାର୍ଲ ସ୍କୁଲ୍‌ର ରାସ୍ତାରେ ଗୋଟାଏ କଲ୍‌ଭର୍ଟ ଉପରେ ବସନ୍ତି । ଆଉ ସେ ରାସ୍ତାରେ ଯାଉଥିବା ସ୍କୁଲ୍ ଝିଅମାନଙ୍କ ପ୍ରତି ଅଶ୍ଳୀଳ ଇଙ୍ଗିତ କରନ୍ତି, ମାନେ ଇଭଟିଜିଙ୍ଗ । ଏମାନଙ୍କ ବିରୁଦ୍ଧରେ ପୋଲିସ୍ ଗୋଟିଏ ଡ୍ରାଇଭ୍ ଆରମ୍ଭ କରିଛି, ଇତ୍ୟାଦି । ମୁଁ ସବ-ଇନ୍‌ସପେକ୍ଟରଙ୍କୁ କହିଲି, ଦେଖନ୍ତୁ ସିଏ ମୋର ଜଣେ ପରିଚିତ ବନ୍ଧୁଙ୍କର ପୁଅ । ତାକୁ ଏଥରଟା ଛାଡ଼ି ଦିଅନ୍ତୁ । ଭବିଷ୍ୟତରେ ସିଏ ଆଉ ଏପରି କରିବ ନାହିଁ । ମୁଁ ତା'ର ଜାମିନ୍‌ଦାର ହେଉଛି । ହଉ ଆପଣ ଯେତେବେଳେ କହୁଛନ୍ତି, ମୁଁ ତାକୁ ଏଥରଟା ଛାଡ଼ି ଦେଉଛି । ପୋଲିସ୍ ସବ୍-ଇନ୍‌ସପେକ୍ଟର ଚାଲିଗଲେ । ...ସେଇ ଲୋକଟା ତା' ପରେ ସ୍ୱସ୍ତିର ଗୋଟାଏ ଦୀର୍ଘଶ୍ୱାସ ପକାଇ ମୋତେ ନମସ୍କାର ଜଣାଇ ଚାଲି ଯାଉଥିଲା । ଯେତେବେଳେ ଗୋଟାଏ ଜୀବନ୍ତ ଅସାମାଜିକକୁ ସାମନାରେ ପାଇଛି, ତା'କୁ ଏତେ ଶୀଘ୍ର ଛାଡ଼ିଦେବା ମୋର ଅଭିପ୍ରାୟ ନଥିଲ। ମୁଁ ପଚାରିଲି, ଚା ପିଇବ ? ଭୃତ୍ୟକୁ ଦୁଇକପ୍ ଚା ଆଣିବା ପାଇଁ କହିଲି । ଚା' ପିଉପିଉ ପଚାରିଲି, ତା' ନିଜ କଥା ଓ ତା' ନିଜ ଘର କଥା । ସିଏ ଯାହା କହିଗଲା, ତା'ର ସାରାଂଶ ହେଉଛି, ତା'ର ବାପା କୌଣସି ସରକାରୀ ଅଫିସ୍‌ରେ ଜଣେ ଦ୍ୱିତୀୟ ଗ୍ରେଡ୍‌ର କିରାଣୀ । ତା' ତଳେ ଆଉ ଦୁଇଟି ଭାଇ, ଦୁଇଟି ଭଉଣୀ ମଧ୍ୟ ଅଛନ୍ତି । ଛୋଟ କ୍ୱାଟର୍ସରେ ରହିବାପାଇଁ ଜାଗା ଅଣ୍ଟେ ନାହିଁ । ରାତିରେ ସିଏ ଶୁଏ ବାହାର ବାରଣ୍ଡାରେ । ବି.ଏ, ପାଶ କରିଥିଲା ତିନିବର୍ଷ ତଳେ । ଅବଶ୍ୟ କପି କରି । ମୋ ପାଖରେ ସେକଥା ଲୁଚାଇବ ବା କାହିଁକି ? ଆଜିକାଲି ବିଦ୍ୟା ତ କେହି ଖୋଜୁନାହିଁ । ସମସ୍ତେ ଖୋଜୁଛନ୍ତି ଖଣ୍ଡେ ଖଣ୍ଡେ ସାର୍ଟିଫିକେଟ । କିନ୍ତୁ ସେ ସାର୍ଟିଫିକେଟ୍ କିଛି କାମ ଦେଲା ନାହିଁ । ଚାକିରି ପାଇଁ ଅନେକ ଧରାଧରି ହେଲା । କିନ୍ତୁ ଚାକିରି ମିଳିଲା ନାହିଁ । ଘରେ ବେକାର ବସିଥିବାରୁ ବାପାମାଆ ସବୁବେଳେ କଟ୍‌କଟ୍ ହୁଅନ୍ତି । ଆଉ ଅନ୍ନଧ୍ୱଂସ କରୁଛି ବୋଲି କହନ୍ତି । ଘରେ ଶାନ୍ତି ନଥାଏ । ସେଥିପାଇଁ ବାହାରେ ବାହାରେ ବୁଲେ । ଆଉ ସୁବିଧା ପାଇଲେ କିଛି ରୋଜଗାର କରିବାକୁ ଚେଷ୍ଟା କରେ । କିନ୍ତୁ କିପରି ? ମୁଁ ପଚାରିଲି । ସିଏ କହିଲା, ଆମ ଦଳର ଗୋଟାଏ ଏରିଆ ଅଛି । ସେଇ ଏରିଆରୁ ପ୍ରତି ହପ୍ତାରେ ଦୋକାନୀମାନଙ୍କଠାରୁ ଦାଦା

ଚାନ୍ଦା ଆଦାୟ କରୁ । ପୂଜାପାର୍ବଣରେ ସାର୍ବଜନୀନ ପୂଜାକମିଟି ନାମରେ ଘର ଘର ବୁଲି ଚାନ୍ଦା ଆଦାୟ କରୁ । ଇଲେକ୍‌ସନ ହେଲେ ଯୋଉ ଦଳ ଆମକୁ ପ୍ରଚାର କରିବାପାଇଁ ଡାକିଲେ, ସେ ଦଳର ଜୀପରେ ବସି ଜିନ୍ଦାବାଦ, ଜିନ୍ଦାବାଦ କରୁ । ସେଥିରେ ଭଲ ରୋଜଗାର । ଖାଇପିଇ ଦିନକୁ ପଚିଶ ଟଙ୍କା । ଆଉ କ'ଣ କରିବୁ କହନ୍ତୁ ? କିନ୍ତୁ ଇଭଟିଜିଙ୍ଗରୁ ତୁମକୁ ମିଳେ କ'ଣ ? ସେମାନେ ତ ସବୁ ତୁମର ଭଉଣୀ ପରି, ମୁଁ ଅଭିଭାବକ ସୁଲଭ କଣ୍ଠରେ କହିଲି । ସିଏ ଅମ୍ଳାନ କଣ୍ଠରେ ଉତ୍ତର ଦେଲା, ଜୀବନଟା ବଡ଼ ବୋରିଙ୍ଗ୍ ତ । ଏମିତି ଇଭିଟିଜିଙ୍ଗ୍ କରି ବେଳେ ବେଳେ କିଛିଟା ଏକ୍‌ସାଇଟ୍‌ମେଣ୍ଟ ମିଳେ । ଆଉ କ'ଣ ? କିନ୍ତୁ ସାର୍ ଜଣେ ଜଣେ ଝିଅ ବେଳେବେଳେ ପାଦରୁ ଚଟି ଖୋଲି ଆମକୁ ଆକ୍ରମଣ କରିବାପାଇଁ ଆସନ୍ତି । ଆମେ କିଏ କୁଆଡ଼େ ପଳାଉ । ଅବସୋସ କେବଳ ଜୀବନଟା ଶେଷକୁ ଏଇପରି ଭାବରେ କଟିଯିବ । ଏହା ପୂର୍ବରୁ କେହି ବୋଧହୁଏ ତାକୁ ଶ୍ରଦ୍ଧା ଓ ବିଶ୍ୱାସରେ ପାଖରେ ବସାଇ ତା' ସହିତ ଏତେ ସମୟ କଥାବାର୍ତ୍ତା ହୋଇ ନଥିଲେ । ସେଥିପାଇଁ ଜଣେ ଦରଦୀ ମଣିଷକୁ ପାଖରେ ପାଇ ତା' ନିଜ ଜୀବନର ସବୁ କଥା ଓ ଗ୍ଲାନି ନିଃସଙ୍କୋଚରେ ମୋ ଆଗରେ ପ୍ରକାଶ କରିଯିବା ପାଇଁ ତା'ର ସଙ୍କୋଚ ବା କୁଣ୍ଠା ନଥିଲା । ସିଏ ଉଠି ଚାଲିଗଲା ।

ଏଇମାନେ ଆଜିର ଅସାମାଜିକ । ଏମାନେ ସମାଜରେ ସାମିଲ ହୋଇପାରି ନାହାନ୍ତି । କାରଣ ଏମାନଙ୍କର ନିଶ୍ଚିତ ରୋଜଗାରର ପନ୍ଥା ନାହିଁ, ଅର୍ଥ ନାହିଁ । ସେଥିପାଇଁ ଅର୍ଥସର୍ବସ୍ୱ ସମାଜରୁ ଏମାନେ ବିତାଡ଼ିତ । ମାତ୍ର ଯେଉଁମାନେ ଦୋ ନମ୍ବରୀ ଧନ୍ଦା କରି, ଖାଦ୍ୟଠାରୁ ଔଷଧ ପର୍ଯ୍ୟନ୍ତ ସବୁଥିରେ ଅପମିଶ୍ରଣ କରାଇ ଧନପତି ହୋଇଛନ୍ତି, ଲାଞ୍ଚ ରିସଓ୍ୱତରେ ଯେଉଁମାନେ ସହରରେ ମହଲ ପରେ ମହଲ ବନାଇଛନ୍ତି, ଇଏ ହେଉଛି ସେଇମାନଙ୍କର ସମାଜ ଆଉ ସେଇମାନଙ୍କର ସହର । ସମାଜରେ ଏଇମାନେ ଇ ହେଉଛନ୍ତି ତୁଙ୍ଗଭଦ୍ର । ବାକିମାନେ ତେଣୁ ଅସାମାଜିକ ତାଲିକାରେ ଯିବେ ନାହିଁ ତ, ଯିବେ ଆଉ କେଉଁ ତାଲିକାରେ ?

୧୫/୦୯/୯୦

# ପହିଲେ ଆପ୍

ଲକ୍ଷ୍ନୋୟୀ ଅର୍ଥାତ୍ ଲକ୍ଷ୍ନୌର ଅଧିବାସୀମାନଙ୍କର ସୌଜନ୍ୟବୋଧ ହାସ୍ୟୋଦ୍ଦୀପକ କାହାଣୀ ପ୍ରବାଦ ରୂପେ ଭାରତରେ ପ୍ରଚଳିତ ଅଛି । ସେଥିମଧ୍ୟରୁ ଗୋଟିଏ କାହାଣୀ ହେଲା- ଥରେ ଦୁଇଜଣ ମୁସଲମାନ ଭଦ୍ରଲୋକ ଟ୍ରେନ୍‌ରେ ଚଢ଼ିବାପାଇଁ ପ୍ଲାଟ୍‌ଫର୍ମ ଉପରେ ଅପେକ୍ଷା କରି ଠିଆହୋଇଥିଲେ । ଟ୍ରେନ୍ ନିର୍ଦ୍ଦିଷ୍ଟ ସମୟରେ ଆସି ପହଞ୍ଚିଲା । କିନ୍ତୁ ଟ୍ରେନ୍ ଭିତରକୁ ଆଗେ ଉଠିବ କିଏ ? ଦୁହିଁଙ୍କ ମଧ୍ୟରେ ଚାଲିଲା ସୌଜନ୍ୟ ବିନିମୟ- "ପହିଲେ ଆପ୍"- ପରସ୍ପର ମଧ୍ୟରେ ଏହିପରି "ପହିଲେ ଆପ୍" ... "ପହିଲେ ଆପ୍" ଚାଲୁଚାଲୁ ଟ୍ରେନ୍ ପ୍ଲାଟ୍‌ଫର୍ମ ଛାଡ଼ି ଚାଲିଗଲା । ଭଦ୍ରଲୋକ ଦୁଇଜଣ "ପହିଲେ ଆପ୍"... "ପହିଲେ ଆପ୍" ହୋଇ ଶେଷକୁ ଆଉ ଟ୍ରେନ୍‌ରେ ଉଠି ପାରିଲେ ନାହିଁ ।

ଏହି କାହାଣୀଟି ଅବଶ୍ୟ ଅତିରଞ୍ଜିତ ହୋଇପାରେ । କିନ୍ତୁ ୧୯୫୪ ମସିହାରେ ମୁଁ ପ୍ରଥମ ଥର ପାଇଁ ଲକ୍ଷ୍ନୌ ଷ୍ଟେସନ୍‌ରେ ପହଞ୍ଚି ସହର ଭିତରକୁ ଯିବା ପାଇଁ ଗୋଟାଏ ଟ୍ୟାକ୍ସିର ସନ୍ଧାନରେ ଷ୍ଟେସନ୍ ବାହାରକୁ ଆସିବା ପରେ ମୋର ଯେଉଁ ଅଭିଜ୍ଞତା ହେଲା, ସେଥିରୁ ମନେହେଲା, "ପହିଲେ ଆପ୍" କାହାଣୀଟି ହୁଏତ ପୂରାପୂରି ଅତିରଞ୍ଜିତ ନୁହେଁ । ଟ୍ୟାକ୍ସି ତ ନଥିଲା; କିନ୍ତୁ ଅନେକଗୁଡ଼ିଏ ଘୋଡ଼ାଟଣା ବଗି ଗାଡ଼ି ଯାତ୍ରୀମାନଙ୍କ ଅପେକ୍ଷାରେ ରାସ୍ତାକଡ଼ରେ ଅପେକ୍ଷା କରି ଠିଆ ହୋଇଥିଲା । କିନ୍ତୁ ଯାତ୍ରୀ ଧରିବାପାଇଁ ସେମାନଙ୍କ ମଧ୍ୟରେ ପ୍ରତିଯୋଗିତା ନଥିଲା । ଅଥବା ସେଥିପାଇଁ ଅହେତୁକ ଆଗ୍ରହ ମଧ୍ୟ ନଥିଲା । ମୁଁ ଗୋଟାଏ ଘୋଡ଼ାଗାଡ଼ି ଆଡ଼େ ଯାଉଥିବା ଲକ୍ଷ୍ୟ କରି, ସେଇ ଗାଡ଼ିର କଚୁଆନ୍ ତା' ସିଟ୍‌ରୁ ଓହ୍ଲାଇପଡ଼ି ଗାଡ଼ି ଦରଜା ଖୋଲି କହିଲା, "ପଧାରିୟେ ହଜୁର୍" । ଘୋଡ଼ାଗାଡ଼ିବାଲାର ଏହି ସାମାନ୍ୟ ସୌଜନ୍ୟ ଓ ସମ୍ଭାଷଣ ମୋତେ ଲାଗିଲା, ମୁଁ ଯେପରି ହଠାତ୍ କେଉଁ ଏକ ବିଗତ ଶତାବ୍ଦୀର ବିସ୍ମୃତ ଦୁନିଆରେ ଆସି ପହଞ୍ଚିଛି- ଯେଉଁଠି ଥିଲା ପାରସ୍ପରିକ ସୌଜନ୍ୟ ଓ ମୈତ୍ରୀ । ସେ ଦୁନିଆରେ ପ୍ରତିଦ୍ୱନ୍ଦ୍ୱିତାର ରୁକ୍ଷତା ଓ କର୍କଶତା ନଥିଲା । କଚୁଆନ୍‌ଟି ଜଣେ ମଧ୍ୟବୟସୀ ମୁସଲମାନ । ମୁଣ୍ଡର ବାବୁରୀ ବାଳ ଠାଏଠାଏ ପାଚି ଆସିଥିଲା । ମୁଣ୍ଡରେ ଗୋଟାଏ ଧଳା ଗୋଲ୍ ଟୋପି । ଦୁଇ ଆଖିରେ ସୁର୍‌ମାର୍

ରେଖା ବେଶ୍ ବାରି ହୋଇପଡୁଥିଲା । କାନରେ ଅତରଭିଜା ତୁଳାରୁ ମୃଦୁ ମୃଦୁ ସୁଗନ୍ଧି ସ୍ଥାନଟିକୁ ଈଷତ୍ ଆମୋଦିତ କରି ଦେଇଥିଲା । ପିନ୍ଧିଥିଲା ଖଣ୍ଡେ ଲୁଙ୍ଗି ଆଉ ଚିକନ୍‌କରା ଗୋଲାପୀ ରଙ୍ଗର ଖଣ୍ଡେ ଲକ୍ଷ୍ନୋୟୀ ପଞ୍ଜାବୀ । ପାଦର ନାଏଗ୍ରା ଯୋତା ହଳକ ଅବଶ୍ୟ ପୁରୁଣା ଦିଶୁଥିଲା ।

ମୁଁ ଗାଡ଼ି ଭିତରେ ବସିବା ପରେ ସେ ବିନୀତ କଣ୍ଠରେ ପଚାରିଲା, "ହଜୁର୍‌ଙ୍କ ଅମୀରଖାନା କେଉଁଠି ?" ମୁଁ ଉତ୍ତର ଦେଲି, "ନାଇ ଭାଇ ମୋର ଅମୀରଖାନା କାହିଁ ? ସରୋଜିନୀ ନାଇଡୁ ମାର୍ଗ ନୋହିଲେ ତା' ପାଖାପାଖି କୌଣସି ଗୋଟାଏ ହୋଟେଲ୍‌ରେ ମୋତେ ପହଞ୍ଚାଇ ଦିଅ ।" ଏମିତି ତ ମୋର ଯିବା କଥା, ତିରିଶ ସରୋଜିନୀ ନାଇଡୁ ମାର୍ଗ । କିନ୍ତୁ ପରେ ସ୍ଥିର କଲି ମୁଁ ବାହାରେ ପାଖାପାଖି କୌଣସି ଗୋଟାଏ ହୋଟେଲ୍‌ରେ ରହିଲେ ବରଂ ଭଲ ହେବ ।

ଗାଡ଼ିବାଲା ସରୋଜିନୀ ନାଇଡୁ ମାର୍ଗରେ ମୋତେ ଗୋଟାଏ ହୋଟେଲ୍‌ରେ ଓହ୍ଲାଇ ଦେଲା । ପୁରୁଣା ଲକ୍ଷ୍ନୋୟୀ କାଇଦାରେ ତିଆରି ଗୋଟାଏ ଦୋତାଲା ଘର । ତା' କୋଠରିମାନଙ୍କରେ ପରଦା ପରିବର୍ତ୍ତେ ଚିକ୍ ସବୁ ଝୁଲୁଥିଲା । ହୋଟେଲ୍ ଭିତରକୁ ପଶିଯିବା ମାତ୍ରେ ଉଠି ଆସିଲା ଅଗରବତୀର ମିଠା ବାସନା । ବଗିବାଲାକୁ ତା'ର ଭଡ଼ା ଛିଣ୍ଡାଇ ଦେଇ ରିସେପ୍‌ସନ କାଉଣ୍ଟରକୁ ଯିବାବେଳେ ବଗିବାଲା କହିଲା, "ହଜୁର ତ ନିଶ୍ଚୟ ଲକ୍ଷ୍ନୌରେ ଘୂରାଘୂରି କରିବେ । ମୋ ଗାଡ଼ି ସବୁବେଳେ ହୋଟେଲ୍ ଫାଟକ ପାଖରେ ରହିଥିବ ।" କିନ୍ତୁ ତା'ର ଗାଡ଼ିଟିକୁ ଦିନ ରାତି ସେଠାରେ ଅଟକାଇ ଭଡ଼ା ଗଣିବା ମୋର ଉଦ୍ଦେଶ୍ୟ ନଥିଲା । ଗାଡ଼ିବାଲା ତାହା ଠିକ୍ ଅନୁମାନ କରି ମୋତେ କହିଲା, "ଆପଣ ଫିକର କରନ୍ତୁ ନାହିଁ ହଜୁର । ଆପଣ ଗାଡ଼ିରେ ସବାରୀ ହେଲେ କିରାୟା ଦେବେ । ତା' ନହେଲେ ଏଠି ମୁଁ ଅଟକି ରହିବା ପାଇଁ କିରାୟା ଦେବା ଦରକାର ପଡ଼ିବ ନାହିଁ । ଅନ୍ୟ ପାସେଞ୍ଜର ସୁଦ୍ଧା ତ ମିଳିବେ ।"

ଲକ୍ଷ୍ନୌରେ ଦୁଇଦିନ ରହିବା ପରେ ମୋର ତୃତୀୟ ଦିନ ଦିଲ୍ଲୀ ଫେରିଆସିବା କଥା । ଦ୍ୱିତୀୟ ଦିନ ମୁଁ ତାକୁ ସେହି କଥା କହିଲି । ସେ କହିଲା, "ଠିକ୍ ଅଛି ହଜୁର୍ । ଦିଲ୍ଲୀ ଏକ୍ସପ୍ରେସ୍ ଛାଡ଼ିବ ସନ୍ଧ୍ୟା ସାତଟାରେ । ମୁଁ ଆପଣଙ୍କୁ ଠିକ୍ ସମୟରେ ନେଇ ଷ୍ଟେସନରେ ପହଞ୍ଚାଇ ଦେବି ।" ତା'ପରେ ଦଣ୍ଡେ ଅଟକି ଯାଇ କହିଲା, "ମୋ ଗରିବ ଖାନାରେ ଥରେ ପାଦ ପକାଇବେ ନାହିଁ ହଜୁର ।" ମୁଁ ରାଜି ହେଲି ଓ ତା' ପରଦିନ ଖରାବେଳେ ତା' ଘରେ ଖାଇବି ବୋଲି ସ୍ଥିର ହେଲା । ପୁରୁଣାକାଳିଆ ଲକ୍ଷ୍ନୋୟୀ ଇଟାରେ ତିଆରି ଏକ ଜୀର୍ଣ୍ଣ ଘର । ଘରଟାର ଚେହେରା ବାହାରୁ ଦେଖି ମନେ ହେଉଥିଲା, ଏକଦା ଏଘର ହୁଏତ ଦେଖିଥିଲା ବହୁ ସୁଦିନ । ତା' କଥାରୁ ବୁଝିଲି, ଘରଟାକୁ

ଭାଙ୍ଗିଦେବାପାଇଁ କର୍ପୋରେସନ୍ ତା' ଉପରେ ନୋଟିସ୍ ଦେଲାଣି । କିନ୍ତୁ ସିଏ ତ ନାଚାର । ତା' ବଡ଼ପୁଅ ରସୀଦ୍ ଗୋଟାଏ ଦର୍ଜୀ ଦୋକାନ ଖୋଲିଛି । ସେଥିରୁ ବା କେତେ ରୋଜଗାର ? ଆଉ ମୁଁ ଏମିତି ଗାଡ଼ି ଚଲେଇ ଦୁଇ ବକତର ଡାଲ୍ ରୋଟି ଯୋଗାଡ଼ କରୁଛି । ବାପଦାଦା ଅମଳର ଏ ଘର ଛାଡ଼ିଲେ, ଆଉ ଘର ମିଳିବ ବା କୋଉଠୁ ? ନସୀବ୍‌ରେ ଯାହା ଥିବ ଇତ୍ୟାଦି... । କିନ୍ତୁ ତା'ର ଆଚରଣ କିମ୍ବା ବ୍ୟବହାରରେ ଦାରିଦ୍ର୍ୟର ଲେଶ ମାତ୍ର ନଥିଲା । ଅଗରବତୀ ଧୂଆଁରେ ଘର ଭିତରଟା କୁହୁଡ଼ିଆ ଦିଶୁଥିଲା । ଭିତରେ ଖଣ୍ଡେ ପୁରୁଣାକାଳିଆ ଟେବୁଲ୍ ଉପରେ ଖଣ୍ଡେ ଧଳାଚଦ୍ଦର ବିଛା ହୋଇଥିଲା ଓ ତା' ପାଖରେ ପଡ଼ିଥିଲା ଖଣ୍ଡେ ପୁରୁଣାକାଳିଆ ଚୌକି । ମୁଁ କହିଲି, "ମୁଁ କ'ଣ ଏକୁଟିଆ ଖାଇବି ? ତୁମେ ବି ପାଖରେ ବସନା ମିଆଁ ସାହେବ ।" ସିଏ ବିନୀତ କଣ୍ଠରେ ଉତ୍ତର ଦେଲା, ତା'ର ଖାଇବାପାଇଁ ଆଉରି ଅନେକ ଡେରି ଅଛି । ତା'ପରେ ସିଏ ଭିତରକୁ ଯାଇ ମୋ ପାଇଁ କଲେଇକରା ପ୍ଲେଟ୍‌ରେ ଆଣି ଦେଲା ବଡ଼ବଡ଼ ରୁମାଲୀ ରୁଟି ଆଉ ସାମିକବାବ୍ । ସେ ପର୍ଯ୍ୟନ୍ତ ରୁମାଲୀ ରୁଟିର ନାଁ ମୁଁ ଶୁଣିଥିଲେ ମଧ୍ୟ ପ୍ରକୃତରେ ରୁମାଲୀ ରୁଟି ଦିଲ୍ଲୀରେ ସୁଦ୍ଧା କେଉଁଠି ପାଇନଥିଲି କିମ୍ବା ଖାଇନଥିଲି । ଏ ରୁଟି ସବୁ ରୁମାଲ୍ ପରି ପତଳା । ଆଉ ସେ ପ୍ରକାର ସାମିକବାବ୍ ଦିଲ୍ଲୀର ନାମଯାଦା ହୋଟେଲ୍‌ମାନଙ୍କରେ ସୁଦ୍ଧା ମୁଁ କେବେ ପାଇନଥିଲି । ତା'ପରେ ଆଉ ଗୋଟାଏ ପ୍ଲେଟରେ ଆଣିଦେଲେ ସିମେଇ । ମଧ୍ୟାହ୍ନ ଭୋଜନଟି ଅତ୍ୟନ୍ତ ତୃପ୍ତିଦାୟକ ଥିଲା ।

ମଧ୍ୟାହ୍ନ ଭୋଜନ ପରେ ମୁଁ ପୁଣି ହୋଟେଲ୍‌କୁ ଫେରି ଆସିଲି ବିଶ୍ରାମ ପାଇଁ । ଇମାମ୍‌ବାଡ଼ା ଓ ମ୍ୟୁଜିୟମ୍ ପ୍ରଭୃତି ଲକ୍ଷ୍ନୌରେ ସବୁ ଦର୍ଶନୀୟ ସ୍ଥାନ ଏଇ ଦୁଇଦିନ ଭିତରେ ଦେଖା ସରିଥିଲା । ମୁଁ କହିଲି, "ମୋର ବର୍ତ୍ତମାନ ଆଉ ଗାଡ଼ି ଦରକାର ନାହିଁ । ଆପଣ କେବଳ ଟ୍ରେନ୍ ଟାଇମ୍‌କୁ ଆସି ମୋତେ ଷ୍ଟେସନରେ ପହଞ୍ଚାଇ ଦେବେ । ତା'ପରେ ହୋଟେଲ୍‌ରୁ ପୁରୁଣା ଲକ୍ଷ୍ନୌ ଅଞ୍ଚଳରେ ତାଙ୍କ ଘରକୁ ଯିବା ଆସିବା ପାଇଁ ଭଡ଼ା ବାବଦକୁ ପାଞ୍ଚଟଙ୍କିଆ ନୋଟ୍ ଖଣ୍ଡିଏ ବଢ଼ାଇଦେଲି । ଏଥିରେ ବୋଧହୁଏ ସେ ଅପମାନିତ ବୋଧ କଲେ କି କ'ଣ ! ଅନ୍ତତଃ ତାଙ୍କ କଣ୍ଠସ୍ୱରରୁ ମୋର ସେଇପରି ମନେ ହେଲା । ସେ କହିଲେ, "ମୋର ଗରିବଖାନାକୁ ଆପଣ ମେହେମାନ୍ ହୋଇ ଯାଇଥିଲେ ପାଦଧୂଳି ପକାଇବାପାଇଁ । ସେଥିପାଇଁ ମୁଁ ଆପଣଙ୍କ ପାଖରୁ କିରାୟା ନେବି ?" ମୁଁ କୌଣସି ଉତ୍ତର ଦେବା ପୂର୍ବରୁ ସେ ଗାଡ଼ି ବୁଲାଇ ନେଇ ସାରିଥିଲେ । ମୁଁ ନିର୍ବାକ୍ ଦୃଷ୍ଟିରେ ତାଙ୍କର ଗାଡ଼ି ଆଡ଼େ ଚାହିଁ ରହିଥିଲି । ଆଉ ଭାବୁଥିଲି, ଲକ୍ଷ୍ନୌର "ପହିଲେ ଆପ୍" କଥାଟା ହୁଏତ ନିତାନ୍ତ ମନଗଢ଼ା କାହାଣୀ ନୁହେଁ ।

୨୨/୦୯/୯୦

# ନିଷିଦ୍ଧ ପୃଥିବୀ ଆଡ଼େ ଆଉ ଗୋଟିଏ ପାହାଚ !

ଏବେ ସେଦିନ ଆମ ପଡ଼ାରେ ଏକମାତ୍ର ଚର୍ଚ୍ଚାର ବିଷୟ ଥିଲା, ସେଦିନ ସକାଳେ ଖବରକାଗଜରେ ବାହାରିଥିବା ଗୋଟିଏ ଘଟଣା । ବାଲେଶ୍ୱର ଜିଲ୍ଲାର କୌଣସି ଏକ ଗ୍ରାମରେ ଅଷ୍ଟ ପ୍ରହରୀ ସଂକୀର୍ତ୍ତନ ପରେ ଜଣେ ବାବାଜୀ ତୁଳସୀ ପତ୍ର ଓ ଖଣ୍ଡ ଖଣ୍ଡ ପାଚିଲା କଦଳୀ ପ୍ରସାଦ ବାଣ୍ଟିବା ପରେ, ସଂକୀର୍ତ୍ତନିଆ ଭକ୍ତମାନଙ୍କ ମଧ୍ୟରୁ କେତେଜଣ ସେଇ ପ୍ରସାଦ ଖାଇ ବେହୋସ୍ ହୋଇ ପଡ଼ିଲେ । ଅନୁସନ୍ଧାନରୁ ଜଣାପଡ଼ିଲା, ପ୍ରସାଦରେ କୁଆଡ଼େ ବ୍ରାଉନ୍‌ସୁଗାର ମିଶିଥିଲା । ଠାକୁରଙ୍କ ପ୍ରସାଦରେ ପୁଣି ବ୍ରାଉନ୍‌ସୁଗାର ? କଳିକାଳ ଶେଷ ହେବାର ଏହା ପୂର୍ବ ଲକ୍ଷଣ ହୋଇପାରେ । ପଡ଼ାରେ ସମସ୍ତେ ପ୍ରାୟ ଏ ବିଷୟରେ ଏକମତ ହୋଇଗଲେ । ମାତ୍ର ଏ ଘଟଣା କିମ୍ବା କଳିକାଳ ଶେଷ ହେଉଥିବାର ଭବିଷ୍ୟତବାଣୀ ମୋତେ ଆଦୌ ବିସ୍ମିତ କରୁନଥିଲା । ମୋ ସ୍ମୃତିରେ ଚେଇଁ ଉଠୁଥିଲା, ମୁଁ ଏଣ୍ଟ୍ରାନ୍‌ସ ପଢ଼ିବାବେଳର ଗୋଟାଏ ଘଟଣା ।

ଆମ ପ୍ରାଥମିକ ସ୍କୁଲ୍‌ର ଶିକ୍ଷକ ପଣ୍ଡିତ ହରେକୃଷ୍ଣ ଶତପଥୀଙ୍କ ସବୁଆଡ଼େ ବୁଲିବୁଲି ଆର୍ତ୍ତନାଦ... କଳିକାଳ ଶେଷ ହୋଇଗଲା । ଗତ ରାତିରେ କେହି ପାଷାଣ୍ଡ ସ୍କୁଲ୍ ଘରେ କୁକୁଡ଼ା ମାଂସ ରାନ୍ଧି ଖାଇଛନ୍ତି । କୁକୁଡ଼ାପର ସବୁ ସ୍କୁଲ୍ ଘରେ ଏଣେତେଣେ ବିଛେଇ ହେଇ ପଡ଼ିଛି । ଘର ଭିତରେ ପୁଣି ଭଣ ଭଣ ତାଡ଼ି ବାସନା । ଖଣ୍ଡ ଖଣ୍ଡ କୁକୁଡ଼ା ହାଡ଼ ସୁଦ୍ଧା ଏଣେତେଣେ ବିଛେଇ ହେଇ ପଡ଼ିଥିଲା । ପଣ୍ଡିତେ ଏ ଖବର ପାଇବା ମାତ୍ରେ ସେଦିନ ସ୍କୁଲ୍ ଛୁଟି କରିଦେଲେ । ସ୍କୁଲ୍ ଘର ଗୋବରରେ ଲିପାପୋଛା ହୋଇ ଗଙ୍ଗାଜଳ ଛିଞ୍ଚା ନ ହେବା ପର୍ଯ୍ୟନ୍ତ ସ୍କୁଲ୍ ବନ୍ଦ ରହିବ । ଏ ଘଟଣାଟି ସେ ଅଞ୍ଚଳରେ ସେଦିନ ପ୍ରବଳ ଆଲୋଡ଼ନ ସୃଷ୍ଟି କରିଥିଲା । ସବର୍ଣ୍ଣମାନେ କାହିଁକି, ହରିଜନମାନେ ସୁଦ୍ଧା ସେତେବେଳେ କୁକୁଡ଼ା ମାଂସ ସ୍ପର୍ଶ କରୁ ନଥିଲେ । କେହି କେହି ଅବଶ୍ୟ ଥଣ୍ଡା ସର୍ଦ୍ଦିରେ ଔଷଧ ରୂପେ କଞ୍ଚା କୁକୁଡ଼ା ଅଣ୍ଡା ଭାଙ୍ଗି ଔଷଧ ଖାଇବା ପରି ଗିଳି ଦେଉଥିଲେ । ତା' ନହେଲେ କୁକୁଡ଼ା ମାଂସ ଓ ଅଣ୍ଡା ସେଦିନ କେବଳ ମୁସଲମାନମାନଙ୍କର ଖାଦ୍ୟ ରୂପେ ବିବେଚିତ

ହେଉଥିଲା । ମାତ୍ର ସେ ଆଖପାଖରେ କୌଣସି ମୁସଲମାନ ବସ୍ତି ନଥିବାରୁ ଏହା ଯେ କେତେଜଣ ନଷ୍ଟଗାମୀ ସବର୍ଣ୍ଣ ହିନ୍ଦୁ ଯୁବକମାନଙ୍କର କାଣ୍ଡ, ସେଥିରେ ଆଉ କାହାରି ସନ୍ଦେହ ରହିଲା ନାହିଁ । ମୁଁ ମ୍ୟାଥ୍‌ମ୍ୟାଟିକ୍ସ, ଚଳତି ଭାଷାରେ (ମାଥ୍)ରେ ଭାରି ଦୁର୍ବଳ ଥିଲି । ଏଣ୍ଟ୍ରାନ୍ସ ପରୀକ୍ଷା ପାଇଁ ମୁଁ ସେଦିନ ଖରାବେଳେ ଦାଣ୍ଡଘରେ ବସି ମଡ଼େଲ୍ କ୍ୱେଷ୍ଚିନମାନଙ୍କର ଆଲଜେବ୍ରା କଷୁଛି । ଏହି ସମୟରେ ରାଜୁ ମୋ' ପାଖକୁ ଆସି ମୋ କାନରେ ଚୁପ୍ ଚୁପ୍ କହିଲା, "ଆଜି ରାତିରେ ଉଦ୍ଧବ ଭାଇ କୁକୁଡ଼ା ଭୋଜି ଦେବେ, ତୁ ଆସିବୁ । କିନ୍ତୁ ଆମ ଘରେ ବା ସମାଜରେ କୁକୁଡ଼ା ମାଂସ ଖାଇବାର ଚଳଣି ନଥିବାରୁ, ମୁଁ ନିର୍ବୋଧ ପରି ପଚାରିଲି, "ସିଏ ତ କୁକୁଡ଼ାମାନଙ୍କୁ ଭୋଜି ଖୁଆଇବେ, ମୁଁ ସେଠାକୁ ଯିବି କାହିଁକି ?" ରାଜୁ ଉତ୍ତର ଦେଲା, "ଓଲଟା କିରେ, କୁକୁଡ଼ା ମାଂସ ତରକାରୀ ଭୋଜି ହେବ ।" ଖବରଟା ଦେଇସାରି ରାଜୁ ସେଠାରୁ ପଳାଇଲା । ନିଷିଦ୍ଧ କୁକୁଡ଼ା ମାଂସ ଖାଇବାର ଗୋଟାଏ ଉତ୍ତେଜନାରେ ସେଦିନ ମୁଁ ଭଲକରି ସନ୍ଧ୍ୟା ନହେଉଣୁ, ଉଦ୍ଧବ ଭାଇଙ୍କ ଲୁଗା ଦୋକାନରେ ପହଞ୍ଚିଗଲି । ଏଇ ଲୁଗା ଦୋକାନଟା ଥିଲା, ଆମର ଆଡ୍‌ଡ଼ାର ଜାଗା। ଆଉ ସବୁ କର୍ମ, ଅପକର୍ମରେ ଆମର ନେତା ଥିଲେ ଉଦ୍ଧବ ଭାଇ । "କୁକୁଡ଼ା ମାଂସ ଭୋଜି କେତେବେଳେ ବୋଲି" ମୁଁ ପଚାରିବାରୁ ଉଦ୍ଧବ ଭାଇ କହିଲେ, "ଆରେ ରୁହ ଗାଁ ଲୋକେ ଆଗେ ଶୋଇ ପଡ଼ନ୍ତୁ । ଚାଟଶାଳୀ ଘରେ ପରମା ବଢ଼େଇ କୁକୁଡ଼ା ତରକାରୀ ଆଉ ପରଟା ତିଆରି କରିବ, ତା' ପରେ ସିନା ଭୋଜି ।" ପରମାନନ୍ଦଙ୍କର ବୟସ ସେତେବେଳକୁ ପ୍ରାୟ ପଚାଶ ହୋଇଥିଲା । କିନ୍ତୁ ନିଷିଦ୍ଧ କାର୍ଯ୍ୟମାନ କରିବା ପାଇଁ ଆଗଭର ହେବାରେ ସେ ଥିଲା ଯୁବକ ପରି ବେପରୁଆ । ପୁଣି ମାଂସ ତରକାରୀ ଆଉ ପରଟା ତିଆରିରେ ତା'ର ଗୋଟାଏ ଭାରି ସୁନାମ ଥିଲା । ରାତି ନଅଟା ପରେ ଛୋଟ ବଜାରଟି ନିଶୂନ ହୋଇଗଲା । ଗାଁ ଲୋକେ ମଧ୍ୟ କବାଟ କିଳି ଶୋଇଶାଇ ପଡ଼ିଲେ । ଉଦ୍ଧବ ଭାଇ ତାଙ୍କ ଦୋକାନରେ ତାଲା ପକାଇ ହାତରେ ଗୋଟାଏ ପାଞ୍ଚ ସେଲିଆ ଟର୍ଚ୍ଚ ଲାଇଟ୍ ଧରି କହିଲେ, "ଏଥର ଉଠ ଯିବା ।"

ଆମେ ଚାରି ଜଣ ତାଙ୍କ ପଛେ ପଛେ ଗାଁ ମୁଣ୍ଡ ନିମ୍ନ ପ୍ରାଥମିକ ସ୍କୁଲ୍ ଆଡ଼େ ବାହାରିଲୁ । ସେତେବେଳକୁ ପରମାନନ୍ଦ ଇଟାରେ ଚୁଲି ତିଆରି କରି ତା' ଉପରେ ଗୋଟିଏ ଡେକ୍‌ଚିରେ କୁକୁଡ଼ା ମାଂସ ରନ୍ଧା ଆରମ୍ଭ କରିଦେଇ, ପରଟା ତିଆରି ପାଇଁ ପରଟା ବେଲୁଥିଲା । ଆମକୁ ଦେଖି ସେ ହସି ହସି କହିଲା, ଆଉ ଅଧଘଣ୍ଟା ଖଣ୍ଡେ ସବୁର କର; ପାଣ୍ଡବା ଚମାର ସେଠି ତମ ପାଇଁ ଦି' ଠେକି ରଖି ଦେଇଯାଇଛି । ଖଜୁରି ତାଡ଼ିର ଗନ୍ଧରେ ଚାଟଶାଳୀ ଘରର ଗୋଟାଏ କ'ଣ ଫାଟି ପଡୁଥିଲା । ଉଦ୍ଧବ ଭାଇ ନିର୍ବିକାର ଭାବରେ ଗୋଟାଏ ଆଲୁମିନିୟମ୍ ଗ୍ଲାସ୍‌ରେ ଦୁଇ ଗ୍ଲାସ୍ କାଢ଼ି ଶେଷ କରିଦେବା

ପରେ, ଆମକୁ ଗିଲାସେ ଗିଲାସେ ତେଣ୍ଡିବାପାଇଁ କହିଲେ । ମୋତେ କିନ୍ତୁ ତାଡ଼ି ପିଇବାପାଇଁ ଭାରି ଭୟ ଲାଗୁଥିଲା । ଇଏ ଥିଲା, ଗୋଟିଏ ନିଷିଦ୍ଧ ପୃଥିବୀ ଭିତରକୁ ପଶିବାର ଆଦିମ ଭୟ । ରାଜୁର ବାରମ୍ବାର ତାଡ଼ନାରେ ମୁଁ ଗୋଟାଏ ଗ୍ଲାସ୍ ତାଡ଼ି ଶେଷ କରିଦେଲି । ଉଦ୍ଧବ ଭାଇ ମୋତେ ଉତ୍ସାହିତ କରି କହିଲା, "ଆରେ ଆଉ ଟୋପାଏ ନେ, ତାଡ଼ି ସାଙ୍ଗକୁ କୁକୁଡ଼ା ମାଂସ ଭଲ ଜମିବ ।" ମୁଁ ଆଉ ଅଧ ଗ୍ଲାସ୍ ତାଡ଼ି ନିଃସଙ୍କୋଚରେ ସାଫ୍ କରିଦେଲି । ରନ୍ଧା ସରିବା ପାଇଁ ତଥାପି ଡେରି । ଦେଢ଼ ଗ୍ଲାସ୍ ତାଡ଼ି ପିଇବା ପରେ, ମୋ ମୁଣ୍ଡଟା ଘାରି ହେଉଥିଲା । ମୁଁ ଚୁପ୍‌ଚାପ୍ ବାହାରକୁ ଆସି ଖଣ୍ଡେ କାଠଗଡ଼ ଉପରେ ଚିତ୍‌ହୋଇ ଶୋଇ ବିଡ଼ି ଟାଣିଲି । ମୋ ମନ ଭିତରେ ଚେଇଁ ଉଠୁଥିଲା, ଗୋଟିଏ ଅନୁଶୋଚନା । ସଂସ୍କାରବଶତଃ ଖଜୁରୀ ତାଡ଼ି ପିଇ କୁକୁଡ଼ା ମାଂସ ଖାଇବା ମୋତେ ଗୋଟାଏ ମହାପାପ କରିବା ପରି ଲାଗୁଥିଲା । ଅନ୍ଧକାର ଆକାଶରେ ଉଜ୍ଜ୍ୱଳ ତାରା ସବୁ ଟିକିଟିକି ହେଉଥିଲେ । ସେଇମାନେ ଯେପରି ଥିଲେ, ମୋର ଏସବୁ କୁ-କର୍ମର ସାକ୍ଷୀ । କିନ୍ତୁ ସେଥିମଧ୍ୟରୁ କେତେଟା ତାରା ମଧ୍ୟ ମୋତେ ଯେପରି କହୁଥିଲେ, "ତୁ'ଟା ନିହାତି ଭୀରୁ । ଖାସି ମାଂସ ଖାଉଛୁ, ଆଉ କୁକୁଡ଼ା ମାଂସ ଖାଇବାପାଇଁ ଭୟ କରୁଛୁ କାହିଁକି ? ତାଡ଼ି ଟୋପାଏ ପିଇଛୁ ତ କ'ଣ ହୋଇଗଲା ?" ମୁଁ ସେଠାରୁ ଉଠି ପଳାଇଯିବା ପାଇଁ ଭାବୁଛି, ମାତ୍ର ଗଲି ନାହିଁ । କେତେବେଳେ ନିଶା ଭୋଳରେ ମୋତେ ନିଦ ଲାଗି ଯାଇଥିଲା । ରାଜୁ ମୋତେ ଉଠାଇ କହିଲା, "ଚାଲ୍ ଚାଲ୍, ସମସ୍ତେ ଖାଇବାକୁ ବସିଲେଣି ।"

ଇଏ ଥିଲା ନିଷିଦ୍ଧ ପୃଥିବୀକୁ ଓହ୍ଲାଇବାର ଅଥବା ଚଢ଼ିବାର ପ୍ରଥମ ପାହାଚ । ସେଇଦିନୁ ନିଷିଦ୍ଧ ପୃଥିବୀ ଆଡ଼େ ଆମେ ଅନେକ ପାହାଚ ଉଠି ଗଲୁଣି ଅଥବା ଓହ୍ଲାଇ ଗଲୁଣି । ସବୁଥର କଳିଯୁଗ ଶେଷ ହୋଇଯିବାର ଆର୍ତ୍ତନାଦ ଶୁଣୁଛୁ । କଳିଯୁଗ କିନ୍ତୁ କେବେ ଶେଷ ହେବ ନାହିଁ । କଳିଯୁଗର ମଞ୍ଚରେ ଦୃଶ୍ୟ ପରେ ଦୃଶ୍ୟାନ୍ତରର ପର୍ଦ୍ଦା ଉଠି ଚାଲିଥିବ, ତା'ର ଯବନିକା ଆଉ ପଡ଼ିବ ନାହିଁ । ସେଥିପାଇଁ କଦଳୀ ଆଉ ତୁଳସୀପତ୍ରରେ ବ୍ରାଉନ୍ ସୁଗାର ମିଶାଇ ପ୍ରସାଦ ବିତରଣ ମୋତେ ଆଦୌ ବିସ୍ମିତ କରିନଥିଲା । ଏହା ମଧ୍ୟ ଥିଲା, ନିଷିଦ୍ଧ ପୃଥିବୀ ଭିତରକୁ ଓହ୍ଲାଇବାର ଆଉ ଗୋଟାଏ ପାହାଚ ।

# କବି ଓ ରସିକ

ସେଦିନ ମଧ୍ୟ ମୁଁ ବିନୋଦବିହାରୀରେ ପହଲି ସାହୁଙ୍କ ଦୋକାନକୁ ଆସିଥିଲି ବୁଟଛତୁ କିଣିବାପାଇଁ । ଆଜକୁ ୫୦ ବର୍ଷ ତଳେ ବିନୋଦବିହାରୀ ଛକରେ ମାର୍କେଟ ନଥିଲା କିମ୍ବା ଲୋକଗହଳି ନଥିଲା । ବିନୋଦବିହାରୀ ଛକ ରଙ୍ଗିଆଙ୍କ ରାବିଡ଼ି ଦୋକାନ ପାଇଁ ଯାହା କିଛି ଥିଲା ପ୍ରସିଦ୍ଧ । ବିନୋଦବିହାରୀ ଚଉମୁହାଣୀ ଛକରୁ ଗୋଟିଏ ରାସ୍ତା ପଡ଼ିଥିଲା କୁଖ୍ୟାତ ମସ୍‌ଜିଦ୍ ଗଳି ଭିତରକୁ... ସେଦିନର ରେଡ୍ ଲାଇଟ୍ ଏରିଆ, ବେଶ୍ୟାପଲ୍ଲୀ । ସେଇ ଗଳି ମୋଡ଼ରେ ଗୋଟାଏ ଦୋ'ତାଲା କୋଠାରେ ଥିଲା ହରନାଥ ପ୍ରେସ୍ । ହରନାଥ ପ୍ରେସ୍ କୋଠାକୁ ଲାଗି ଗୋଟିଏ ଛୋଟିଆ ପକ୍କା ଘରେ ପହଲି ସାହୁଙ୍କ ଦୋକାନ । ଚାଉଳ, ଡାଲି, ଜିରା, ଧନିଆଠାରୁ ଆରମ୍ଭ କରି ଛୋଟ ଛୋଟ ଜାଳେଣି କାଠ ବିଡ଼ା ପର୍ଯ୍ୟନ୍ତ ହରେକ୍ ଜିନିଷ ମିଳୁଥିଲା ସେଠି । ସାଧାରଣତଃ ଛୋଟ କୁଟୁରିଆ ଗରାଖମାନେ ପହଲି ସାହୁଙ୍କ ଦୋକାନକୁ ଆସି ଥାଆନ୍ତି ସଉଦାପାଇଁ । ଆଠଣା ବା ଟଙ୍କାଏ ପଇସାରେ କୌଣସି କୌଣସି ଗରାଖ ତାଙ୍କ ଦୋକାନରୁ ଚାଉଳ, ଡାଲି, ତେଲ, ଲୁଣଠାରୁ ଆରମ୍ଭକରି କାଠବିଡ଼ା ପର୍ଯ୍ୟନ୍ତ କିଣିବା ମୁଁ ଆଖିରେ ଦେଖିଛି । ପହଲି ସାହୁ ଦେଖିବାକୁ ଥିଲେ ଟକ୍‌ଟକ୍ ଗୋରା । ପିନ୍ଧା ଧୋତି ଓ ଦେହର ଗେଞ୍ଜି ମଧ୍ୟ ସବୁବେଳେ ସଫା, ଚକ୍‌ଚକ୍ । ଦୋକାନ ସାମନାରେ ଖଣ୍ଡେ ଚୌକି ଉପରେ ବସି ସେ ବିକ୍ରୀବଟା କରନ୍ତି । ପାଖରେ ପଡ଼ିଥାଏ ଖଣ୍ଡେ କୁଲା । କିଏ ଛଟାଙ୍କିଏ ଜିରା କି ସୋରିଷ ମାଗିଲେ ସୁଦ୍ଧା, ସେ ତାକୁ କୁଲାରେ ପାଛୁଡ଼ି ଦେଇଥାଆନ୍ତି । ସେଥିରେ ଯେପରି କୌଣସ ମଳିଧୂଳି ବା କାଠିକୁଟା ନ ରହେ । ଆଜିର ଅପମିଶ୍ରଣ ଯୁଗରେ ପହଲି ସାହୁଙ୍କ କଥା ମନେ ପଡ଼ିଲେ, ମୋତେ ପ୍ରକୃତରେ ଅବାକ୍ ଲାଗେ । ସେଇ ପହଲି ସାହୁ ଥିଲେ ମଧ୍ୟ କବି ବୈଷ୍ଣବ ପାଣିଙ୍କ ଗୀତିନାଟ୍ୟମାନଙ୍କର ପ୍ରକାଶକ । ପାଣି କବିଙ୍କ ଚଟିଚଟି ବହି ସବୁ ତାଙ୍କ ଦୋକାନରେ ମଧ୍ୟ ବିକ୍ରିପାଇଁ ରଖାଯାଇଥାଏ ।

ସେଦିନ ପହଲି ସାହୁଙ୍କ ଦୋକାନକୁ ଆସି ଦେଖେ, ପହଲି ସାହୁ ଦୋକାନରେ ନାହାନ୍ତି । କିନ୍ତୁ ଆଉ ଜଣେ କିଏ ଲୋକ, ଖଣ୍ଡେ ଅଧା ମଇଳା ଧୋତି ଆଉ ହାଫ୍ ସାର୍ଟ ପିନ୍ଧି ଦୋକାନ ଆଗରେ ଖଣ୍ଡେ ବେଞ୍ଚ୍ ଉପରେ ବସିଛନ୍ତି । ତାଙ୍କ ଦୁଇ ଆଖିର ଦୀପ୍ତି ମୋତେ ତାଙ୍କ ପ୍ରତି ଆକୃଷ୍ଟ କରିଦେଲା । ସେ ଦୃଷ୍ଟି ଯେପରି ଅତଳଭେଦୀ । ମୁଁ ପହଲି ସାହୁଙ୍କ ଅପେକ୍ଷାରେ ଦୋକାନ ଧାରରେ ଗୋଟାଏ ଗୋଡ଼ ଢିରା ଦେଇ ସାଇକେଲ୍ ଉପରେ ବସି ରହିଲି ଓ ସେ ଭଦ୍ରଲୋକ ମୋ ଆଡ଼େ ନ ଚାହିଁବା ବେଳେ ମୁଁ ତାଙ୍କ ଆଡ଼େ ଚାହିଁ ତାଙ୍କୁ ଲକ୍ଷ୍ୟ କରୁଥିଲି । ଏଇ ସମୟରେ ପହଲି ସାହୁ ଗୋଟାଏ ହାତରେ ଗିଲାସେ ଚାହା ଓ ଅନ୍ୟ ହାତରେ ବିଡ଼ାଏ ଖିଲିପାନ ଧରି ପହଞ୍ଚି ଗଲେ । ଚାହା ଗ୍ଲାସ ଆଉ ଖିଲିପାନ ବିଡ଼ାଟା ସେଇ ଭଦ୍ରଲୋକଙ୍କୁ ଧରାଇ ଦେଇ କହିଲେ, "କେତକୀ ଖଇର କୋଉ ପାନଦୋକାନରେ ମିଳିଲା ନାହିଁ । ଏଇ ସାଧା ଖଇରଦିଆ ପାନରେ ଅବିକା ଚଳାଇ ଦିଅନ୍ତୁ । ଆର ଓଳିକୁ ମୁଁ କେତକୀ ଖଇର କୋଉଠୁ ଖୋଜି ଆଣିବି ।" ସେ ଭଦ୍ରଲୋକ ଚା' ଗ୍ଲାସ୍‌ରୁ ଢୋକେ ପିଇସାରି କହିଲେ, "କିରେ ଭୁବନ ଘରକୁ ଗଲୁ ନାହିଁ । ତା' ପାଖରେ କେତକୀ ଖଇର ଥାଏ ।" କିନ୍ତୁ ଭୁବନ ଘରକୁ ଯିବା କଥା ଶୁଣି ପହଲି ସାହୁ କିପରି ଲାଜେଇ ଯାଇ କହିଲେ, "ଏ ଦିନ ବେଳଟାରେ ଭୁବନ ଘରକୁ ଯାଇ ତାକୁ ଡାକିବି ?" ଭୁବନ ଥିଲା, ସେତେବେଳର ମସ୍‌ଜିଦ୍ ଗଳିରେ ଜଣେ ନାମ ଡାକ ବେଶ୍ୟା । ସେ ଭଦ୍ରଲୋକ କହିଲେ, "ଆରେ ପହଲି ! ତୁ ଜାଣିଛୁ, ବେଶ୍ୟା ଘର ଦୁଆରୁ ମାଟି ନ ଆସିଲେ ଦେବୀ ପୂଜା ହୁଏ ନାହିଁ । ଆଉ ତତେ ଲାଜ ମାଡୁଛି ?" ପହଲି ସାହୁ କୌଣସି ଉତ୍ତର ଦେଲେ ନାହିଁ । ସେ ଭଦ୍ରଲୋକ ଚା' ପିଇସାରି ପାନ ଖିଲେ ଚୋବାଇ ଚୋବାଇ ମସ୍‌ଜିଦ୍ ଗଳି ଆଡ଼େ ଚାଲିଗଲେ ।

ସେ ଯିବା ପରେ ମୁଁ ପହଲି ସାହୁଙ୍କୁ କୌତୂହଳରେ ପଚାରିଲି, "ସେ ଲୋକଟି କିଏ ?" ପହଲି ସାହୁ ଉତ୍ତର ଦେଲେ, "ସିଏ ପରା ପାଣି କବି ବୈଷ୍ଣବ ପାଣି । ସିଏ କଟକ ଆସିଲେ ପହିଲେ ମୋର ଦୋକାନକୁ ଆସନ୍ତି । ରୁହନ୍ତି ବାଙ୍କାବଜାର ମାରୁଓ୍ୱାଡ଼ି ଧର୍ମଶାଳାରେ । ଯୋଉ ତିନି ଚାରି ଦିନ ସିଏ କଟକରେ ରୁହନ୍ତି, ସେ ତିନି ଚାରି ଦିନ ତାଙ୍କ ଫାଇ ଫରମାସରେ ମୋର କଟିଯାଏ ।" ପହଲି ସାହୁଙ୍କ କଥାରୁ ବୁଝିଲି, ସିଏ ଥିଲେ ପାଣି କବିଙ୍କର ଜଣେ ବଡ଼ ଫ୍ୟାନ୍ ବା ରସିକ ।

ପାଣି କବିଙ୍କ ଅଞ୍ଚଳର ଲୋକ ମୁଁ । ପିଲାଦିନେ ଅନେକ ସ୍ଥାନରେ ମୁଁ ତାଙ୍କର ଯାତ୍ରା ମନ୍ତ୍ରମୁଗ୍ଧ ପରି ସାରା ରାତି ଉଜାଗର ରହି ଦେଖିଛି । ମାତ୍ର ସେ ପର୍ଯ୍ୟନ୍ତ ତାଙ୍କୁ କେବେ ଏତେ ନିକଟରେ ଓ ଏପରି ଭାବରେ ଦେଖିନଥିଲି । ଲୋକଟି କିପରି ସଂସାରମୁକ୍ତ ଥିଲେ ଓ ସମାଜର କୌଣସି ବିଧି ନିଷେଧ ପ୍ରତି ତୋୟାକା କରୁ ନଥିଲେ, ସେଇଦିନ ମୁଁ

ତାହାର ପ୍ରଥମ ସୂଚନା ପାଇଥିଲି । ଏଇପରି ସଂସାରମୁକ୍ତ ଚରିତ୍ରମାନେ ମୋତେ ସେତେବେଳେ ଆକୃଷ୍ଟ କରୁଥିଲେ ବେଶି ।

ସେଦିନ ସନ୍ଧ୍ୟାବେଳେ ମୁଁ ପୁଣି ପାଣି କବିଙ୍କୁ ଦେଖିବା ଲୋଭରେ ପହଲି ସାହୁଙ୍କ ଦୋକାନକୁ ଆସିଲି । ମାତ୍ର ଦୋକାନ ବନ୍ଦ । ଭାବିଲି ପହଲି ସାହୁ ବୋଧହୁଏ ବାଙ୍କାବଜାର ଧର୍ମଶାଳାରେ ପାଣି କବିଙ୍କ ପାଖରେ ଥିବେ । ସେଠାରୁ ତେଣୁ ବାଙ୍କାବଜାର ଧର୍ମଶାଳାକୁ ଆସିଲି । ଧର୍ମଶାଳା ତଳମହଲାର ଗୋଟିଏ କୋଠରିରେ ସ୍ଥାନୀୟ ଗୋଟିଏ ସ୍କୁଲ୍‌ର ଜଣେ ଭି.ଏମ୍. ଶିକ୍ଷକ ରହନ୍ତି । ମାରୱାଡ଼ି ପଟିରେ କିଛି ଘରେ ଟିଉସନ୍ ମଧ୍ୟ କରନ୍ତି । କିନ୍ତୁ କବି ବୈଷ୍ଣବ ପାଣି ଆସିଗଲେ, ତାଙ୍କ ଟିଉସନ ବନ୍ଦ । ସେ ଥିଲେ ଜଣେ ଆଶୁକବି । ବୋଧେ ଏହା ହିଁ ଥିଲା ଦୁହିଁଙ୍କ ମଧ୍ୟରେ ଘନିଷ୍ଠତାର ବନ୍ଧନ । ସେ ପୁଣି ଥିଲେ, ସେଇ ଅଞ୍ଚଳରେ ମାଇଚିଆମାନଙ୍କ ସଂଘର ସଭାପତି । କବି ବୈଷ୍ଣବ ପାଣି ଧର୍ମଶାଳାର ଯେଉଁ କୋଠରିରେ ରହୁଥିଲେ, ସେଇ କୋଠରି ଭିତରକୁ ଯାଇ ଦେଖେ, ଖଣ୍ଡେ ଖଟ ଉପରେ ବସିଛନ୍ତି, କବି ବୈଷ୍ଣବ ପାଣି ଓ ତାଙ୍କ ପାଖରେ ତାଙ୍କ ଆତିଥେୟ ସେଇ ଆଶୁକବି ଭି.ଏମ୍ ଶିକ୍ଷକ । ସେମାନଙ୍କଠାରୁ ଅଳ୍ପ ଛଡ଼ାରେ ଖଣ୍ଡେ ଟୁଲ୍ ଉପରେ ବସିଥିଲେ ପହଲି ସାହୁ । ଚଟାଣ ଉପରେ କବି ବୈଷ୍ଣବ ପାଣିଙ୍କ ସଙ୍ଗୀତ ଶୁଣିବାପାଇଁ ବସିଥିଲେ, ସେଇ ଅଞ୍ଚଳର କେତେ ଜଣ ଘରୋଇ ମାଇଚିଆ ଚାକର ।

ପହଲି ସାହୁ କହିଲେ, "ଆଜ୍ଞା ! ଗୋଟିଏ ସଙ୍ଗୀତ ହେଉ । ସମସ୍ତେ ଆଶା କରି ବସିଛନ୍ତି, ଆପଣଙ୍କ ସଂଗୀତ ଶୁଣିବାପାଇଁ ।" ...ବୈଷ୍ଣବ ପାଣି ସ୍ମିତହସି ଦେଇ ଉତ୍ତର ଦେଲେ, "ଆରେ, ପହଲି, ଶୁଖିଲା କଣ୍ଠରେ କ'ଣ ସଙ୍ଗୀତ ଫୁଟିବ ?" ପହଲି ସାହୁ ଏହାର ଇଙ୍ଗିତ ବୁଝି ବାହାରକୁ ଉଠି ଯାଉଥିଲେ; ବୈଷ୍ଣବ ପାଣି କହିଲେ, "ହରିଣ ମାର୍କା ଅସଲି ମାଲ ଆଣିବୁ ।"

ଏ ଘଟଣାର କିଛିଦିନ ପରେ ମୁଁ ଆଉ ଦିନେ ପହଲି ସାହୁଙ୍କ ଦୋକାନକୁ ଯାଇଥିଲି, ବୁଟଛତୁ କିଣିବା ପାଇଁ । ମନେ ପଡୁଛି, ସେଦିନ ବୈଷ୍ଣବ ପାଣିଙ୍କ 'ପ୍ରହ୍ଲାଦ ଚରିତ' ଆଉ ସେମିତି ଖଣ୍ଡେ ଦି'ଖଣ୍ଡ ଚଟି ବହି କିଣିଥିଲି । ପହଲି ସାହୁଙ୍କୁ ପଚାରିଲି, "ମୁଁ ତ ଦେଖୁଛି, ତମେ କବି ବୈଷ୍ଣବ ପାଣିଙ୍କ ଜଣେ ବଡ଼ ଭକ୍ତ । ତାଙ୍କ ପାଇଁ ନକରିବା କଥା ସୁଦ୍ଧା କରୁଛ ।" ପହଲି ସାହୁ କେଉଁ ଗୋଟାଏ ଗରାଖ ପାଇଁ ମୁଗଜାଇ କୁଲାରେ ପାଛୁଡୁ ପାଛୁଡୁ ଉତ୍ତର ଦେଲେ, "କେଜାଣି କାହିଁକି, ପାଣି କବିଙ୍କ ସଂଗୀତ ସବୁ ମତେ ଭୋଳ କରିଦିଏ ।" ଏଇ ପହଲି ସାହୁ ଥିଲେ କବି ବୈଷ୍ଣବ ପାଣିଙ୍କ ପ୍ରକାଶକ । କବିଙ୍କର ଶେଷ ବାର୍ଦ୍ଧକ୍ୟ ଅବସ୍ଥାରେ ସେ ତାଙ୍କର ଚିକିତ୍ସାର ଭାର ବହନ କରିବା ସଙ୍ଗେ ସଙ୍ଗେ ତାଙ୍କ ପାଖକୁ ପ୍ରତି ମାସରେ ଅଶୀଏ ଟଙ୍କା କରି ପଠାଉଥିବା, କବି ବୈଷ୍ଣବ ପାଣି ତାଙ୍କ

ନିଜ ଆତ୍ମଚରିତରେ ଲେଖିଯାଇଛନ୍ତି । ସଂପ୍ରତି ଗଣକବି ବୈଷ୍ଣବ ପାଣି ଜୟନ୍ତୀ, ତାଙ୍କ ଅଞ୍ଚଳରେ ତ ଏକ ଉତ୍ସବରେ ପରିଣତ ହେଲାଣି । ପୂର୍ବେ ତାଙ୍କର ବହୁ ଜୟନ୍ତୀ ଉତ୍ସବରେ ମୁଁ ଯୋଗ ଦେଉଥିଲି । ଉତ୍ସବରେ ଯୋଗଦେବାପାଇଁ ଆଖପାଖ ଅଞ୍ଚଳରୁ ବହୁ ଲୋକ ଜମନ୍ତି । ସେମାନଙ୍କ ଆଡ଼େ ଚାହିଁ ମୁଁ ଭାବେ, ଏହି ଗ୍ରାମୀଣ ଗଣକବିର କବିତ୍ୱର ଇନ୍ଦ୍ରଜାଲ ପହଲି ସାହୁଙ୍କ ପରି ଚିହ୍ନିଛି କିଏ, ବୁଝୁଛି କିଏ, ଆଉ ତା'କୁ ସମ୍ମାନ ଦେଇଛି ବା କିଏ ? ଜୟନ୍ତୀ ଉତ୍ସବ ସବୁ ତ କେବଳ ଉପଚାର ମାତ୍ର ।

୧୩/୧୦/୯୦

# ରଶ୍ମି ବଳୟ ନୁହେଁ: ପ୍ରୟୋଜନ ରଞ୍ଜନରଶ୍ମି

ତଥ୍ୟ ଦୃଷ୍ଟିରୁ ସଂପ୍ରତି ମଣ୍ଡଳ-ବିରୋଧୀ ଆନ୍ଦୋଳନରେ ଆତ୍ମାହୁତିର ଯେଉଁ ବିୟୋଗାନ୍ତକ ପର୍ବ ଚାଲିଛି, ତାହାର ପ୍ରଥମ ଶହୀଦ ହେଉଛନ୍ତି, ରାଜୀବ ଗୋସ୍ୱାମୀ ନାମକ ଜଣେ ଛାତ୍ର । ଗତ ସେପ୍ଟେମ୍ବର ମାସ ୧୯ ତାରିଖ [illegible] ର୍ଦ୍ଧଦଗ୍ଧ ଅବସ୍ଥାରେ ତାଙ୍କୁ ସଫଦରଜଙ୍ଗ ହାସପାତାଳରେ ଭର୍ତ୍ତି କରାଯିବା ପରେ, ପୋ[illegible]କୁ ଯେଉଁ ବୟାନ ଦେଇଥିଲେ, ସେଥିରେ ସେ ସ୍ପଷ୍ଟ କହିଥିଲେ ଯେ ମଣ୍ଡଳ-ରିପୋର୍ଟର ସୁପାରିଶ ବିରୁଦ୍ଧରେ ପ୍ରତିବାଦ ସ୍ୱରୂପ ସେ ନିଜ ଦେହରେ ଅଗ୍ନି ସଂଯୋଗକରି, ଆତ୍ମାହୁତି ଦେବାପାଇଁ ଉଦ୍ୟମ କରିଥିଲେ । କିନ୍ତୁ ଠିକ୍ ତା' ପରଦିନ, ଅର୍ଥାତ୍ ସେପ୍ଟେମ୍ବର ୨୦ ତାରିଖ ଦିନ ସେ ପୋଲିସ୍‌କୁ ଆଉ ଏକ ବୟାନ ଦେଇ କହିଲେ ଯେ ତାଙ୍କ ଦେହରେ କେହି ନିଆଁ ଲଗାଇ ଦେଇଥିଲା । ସେ ନିଜେ ଆତ୍ମାହୁତି କରିନଥିଲେ । ପ୍ରଧାନମନ୍ତ୍ରୀଙ୍କ ଦପ୍ତର ଏ ଖବର ପାଇଯିବା ମାତ୍ରେ ରାଜୀବ ଗୋସ୍ୱାମୀଙ୍କ ବୟାନର ଭି.ଡି.ଓ. ରେକଡିଙ୍ଗ୍ ପାଇଁ ପୋଲିସକୁ ଆଦେଶ ଦେଲେ । ତାଙ୍କୁ ପୋଡ଼ିଦେବାପାଇଁ ତାଙ୍କ ଦେହରେ କେହି କିରୋସିନି ଢାଳି ନିଆଁ ଲଗାଇ ଦେଇଥିଲା ବୋଲି, ଗୋସ୍ୱାମୀଙ୍କର ବୟାନର ଭି.ଡି.ଓ. ରେକଡ଼ିଙ୍ଗ୍ ହୋଇ ପାରିଥିଲେ ମିଡ଼ିଆ ମାଧ୍ୟମରେ ସରକାର ହୁଏତ ତାହାକୁ ପ୍ରଚାର କରାଇ ମଣ୍ଡଳ ବିରୋଧୀ ଛାତ୍ରମାନଙ୍କ ବିରୁଦ୍ଧରେ ଏହାକୁ ଏକ ଅସ୍ତ୍ର ରୂପେ ବ୍ୟବହାର କରିପାରି ଥାଆନ୍ତେ । ମାତ୍ର ତାହା ସମ୍ଭବ ହୋଇ ପାରିଲା ନାହିଁ ।

ସେପ୍ଟେମ୍ବର ୨୪ ତାରିଖ ଦିନ ପୋଲିସ ଭି.ଡି.ଓ. ରେକଡ଼ିଂ ପାଇଁ ସଫଦରଜଙ୍ଗ ହାସପାତାଳକୁ ଆସିବାବେଳକୁ ରାଜୀବ ଗୋସ୍ୱାମୀର ପ୍ରାୟ ଚରମ ଅବସ୍ଥା । ସେଇ ଅବସ୍ଥାରେ ତାଙ୍କ ପାଖରୁ ବୟାନ ରେକଡ଼ିଂ କଲାବେଳେ ସେ ଯାହା କହିଲେ, ତାହା ଥିଲା ଅବୋଧ୍ୟ । ସେଥିରୁ କୌଣସି ଅର୍ଥ ସ୍ପଷ୍ଟ ଭାବରେ ନିଷନ୍ନ ହେଉ ନଥିଲା । ଗୋସ୍ୱାମୀଙ୍କର ଏଇ ଶେଷକାଳୀନ ବୟାନ ପ୍ରଧାନମନ୍ତ୍ରୀଙ୍କ ଦପ୍ତରରେ କୌଣସି କାମରେ ଆସିଲା ନାହିଁ । ଯାହା ହେଉ ପୋଲିସ୍ ବର୍ତ୍ତମାନ NSUI (ଜାତୀୟ ଛାତ୍ର ୟୁନିୟନ)ର

ତିନିଜଣ କର୍ମକର୍ତ୍ତାଙ୍କ ବିରୁଦ୍ଧରେ, ରାଜୀବ ଗୋସ୍ୱାମୀଙ୍କ ସେପ୍ଟେମ୍ବର ୨୦ ତାରିଖ ବୟାନ ଅନୁସାରେ ହତ୍ୟା ମୋକଦ୍ଦମା ଦାୟର କରିଛି ।

ଏହାର ଫଳାଫଳ ଯାହା ହେଉନା କାହିଁକି, ରାଜୀବ ଗୋସ୍ୱାମୀଙ୍କ ସହିଦତ୍ୱରେ ବର୍ତ୍ତମାନ ଯେ ଏକ ପ୍ରଶ୍ନବାଚକ ଚିହ୍ନ ଲାଗିଗଲା, ସେଥିରେ ସନ୍ଦେହର ଅବକାଶ ନାହିଁ । ଏ ପରିସ୍ଥିତିରେ NSUI ରାଜୀବ ଗୋସ୍ୱାମୀଙ୍କୁ ସହିଦ ବୋଲି ଦାବି କଲେ । ଅନ୍ୟମାନେ ଭିନ୍ନମତ ପୋଷଣ କରିପାରନ୍ତି । ପ୍ରସଙ୍ଗତଃ ଏଠାରେ ଉଲ୍ଲେଖ କରାଯାଇପାରେ, ରାଜୀବ ଗୋସ୍ୱାମୀଙ୍କୁ ଜଣେ ସହିଦ ରୂପେ ଘୋଷଣା କରି, ଇତିମଧ୍ୟରେ NSUI ସେ ଯେଉଁସ୍ଥାନରେ ଆତ୍ମାହୁତି କରିଥିଲେ, ସେ ସ୍ଥାନକୁ 'କୁର୍ବାନୀଚୌକ' ଓ ସେ ରାସ୍ତାକୁ ତାଙ୍କ ନାମରେ ନାମିତ କରିସାରିଥିଲେ ।

ଏହାର ବହୁ ବର୍ଷ ପରେ କେହି ଐତିହାସିକ ରାଜୀବ ଗୋସ୍ୱାମୀଙ୍କ ଦ୍ୱିତୀୟ ବୟାନ, ଅର୍ଥାତ୍ ସେପ୍ଟେମ୍ବର ୨୦ ତାରିଖର ବୟାନ ଉପରେ ନିର୍ଭର କରି ରାଜୀବ ଗୋସ୍ୱାମୀ ପ୍ରକୃତରେ ଆତ୍ମାହୁତି ଦେଇ ନଥିଲେ, ତାଙ୍କ ଦେହରେ କେହି ଅଗ୍ନି ସଂଯୋଗ କରି ତାଙ୍କୁ ଜଳାଇ ଦେଇଥିଲା ବୋଲି ଯଦି ଲିପିବଦ୍ଧ କରେ, ତା'ହେଲେ ସେ ଇତିହାସକୁ ବିକୃତ କରିଛନ୍ତି ବୋଲି ଆକ୍ଷେପ କରିବା, କଦାପି ଯୁକ୍ତିଯୁକ୍ତ କିମ୍ବା ସମୀଚୀନ ହେବ ନାହିଁ । କାରଣ ରାଜୀବ ଗୋସ୍ୱାମୀ ତାଙ୍କର ଦ୍ୱିତୀୟ ବୟାନରେ ସେପ୍ଟେମ୍ବର ୨୦ ତାରିଖ ଦିନ ନିଜେ ଏହା ସ୍ୱୀକାର କରିଛନ୍ତି । ଏ ବ୍ୟାପାରରେ ପୁଣି ଅନ୍ୟତମ 'ସୋର୍ସ' ବା ସୂତ୍ର ରୂପେ ପୋଲିସ୍‌ର ଏଫ୍.ଆଇ.ଆର୍. ଓ କୋର୍ଟର କାଗଜପତ୍ର ତାଙ୍କ ପକ୍ଷରେ ଯିବ । ଏ ଘଟଣାରେ ଏସବୁ ଯେ 'ପ୍ରାଇମେରୀ ସୋର୍ସ' ଅର୍ଥାତ୍ ମୂଳତତ୍ତ୍ୱ ନୁହେଁ, ଏହାକୁ କୌଣସି ଗବେଷକ କଦାପି ଅସ୍ୱୀକାର କରିପାରିବେ ନାହିଁ । ରାଜୀବ ଗୋସ୍ୱାମୀଙ୍କର ଆତ୍ମାହୁତି ସଂପର୍କରେ ଅନ୍ୟ ଯିଏ ଯାହାସବୁ କହୁ ଘଟଣାର କେହି ପ୍ରତ୍ୟକ୍ଷଦର୍ଶୀ ନଥିବାରୁ ସବୁ 'ସେକେଣ୍ଡାରୀ ସୋର୍ସ' ବା ପରୋକ୍ଷ ସୂତ୍ର ରୂପେ ବିବେଚିତ ହେବ । ଏହା ଯେକୌଣସି ଐତିହାସିକ ବା ଲେଖକ ପକ୍ଷରେ ଏକ ସଂକଟ ସୃଷ୍ଟିକରିବା ସ୍ୱାଭାବିକ । କୌଣସି ଐତିହାସିକ ବା ଲେଖକ ରାଜୀବ ଗୋସ୍ୱାମୀଙ୍କ ସେପ୍ଟେମ୍ବର ୧୯ ତାରିଖ ବୟାନ ଭିତ୍ତିରେ ତାଙ୍କୁ ମଣ୍ଡଳ ବିରୋଧୀ ଆନ୍ଦୋଳନର ପ୍ରଥମ ସହିଦ ବୋଲି ଘୋଷଣା କରିବାବେଳେ ଅନେକ ଐତିହାସିକ ଅଥବା ଲେଖକ ତାଙ୍କୁ ପୋଡ଼ି ହତ୍ୟା କରାଯାଇଥିଲା ବୋଲି ଲେଖିବା ମଧ୍ୟ ସମ୍ଭବ । ଏପରି ଘଟଣାମାନଙ୍କରେ ଆବେଗ ଅଥବା ପୂର୍ବକଳ୍ପିତ ଧାରଣା ଅଥବା ନିଛକ ଅନୁମାନକୁ ଭିତ୍ତି ନକରି ତର୍କସମ୍ମତ ହେତୁବାଦ ଉପରେ ନିର୍ଭର କରିବା ହିଁ ଯେ କୌଣସି ଐତିହାସିକ ଅଥବା ଲେଖକ ପକ୍ଷରେ ଏକମାତ୍ର ସମୀଚୀନ ପନ୍ଥା ହେବ ।

ଦୂରଦର୍ଶନରେ ବର୍ତ୍ତମାନ ପ୍ରସାରିତ ହେଉଥିବା 'ଦି ସୋର୍ଡ଼ ଅଫ୍ ଟିପୁ ସୁଲତାନ' ଘେନି, ସେଇପରି ଏକ ବାଦ ବିସମ୍ବାଦ ସୃଷ୍ଟି ହୋଇଛି । ତଥ୍ୟ ଦୃଷ୍ଟିରୁ ଟିପୁ ସୁଲତାନ, ବ୍ରିଟିଶ ଶକ୍ତି ବିରୁଦ୍ଧରେ ସ୍ୱାଧୀନତା ସଂଗ୍ରାମର ପ୍ରଥମ ସେନାପତି ଥିଲେ ବୋଲି କଦାପି ଅସ୍ୱୀକାର କରିହେବ ନାହିଁ । ବ୍ରିଟିଶ ବିରୁଦ୍ଧରେ ତାଙ୍କର ସଂଗ୍ରାମ ଥିଲା, ସଂକଳ୍ପବଦ୍ଧ ଓ ସେ ପ୍ରାୟ ଧର୍ମନିରପେକ୍ଷ ଥିଲେ । କିନ୍ତୁ ଏହି ସିରିଏଲଟି ବହୁଦିନ ଧରି ପ୍ରସାରିତ ହୋଇପାରିନଥିଲା ବି.ଜେ.ପି.ର ଜିଦ୍‌ରୁ । ବି.ଜେ.ପି.ର ଅଭିଯୋଗ ଥିଲା ଯେ ଟିପୁ ସୁଲତାନ ଥିଲେ ଜଣେ କଟ୍ଟର ସାଂପ୍ରଦାୟିକତାବାଦୀ । କାରଣ ମାଲାବାରରେ ସେ ହିନ୍ଦୁମାନଙ୍କୁ କୁଆଡ଼େ ଜୋର ଜବରଦସ୍ତ ଇସଲାମ ଧର୍ମରେ ଧର୍ମାନ୍ତରିତ କରାଇଥିଲେ । ଅବଶେଷରେ ଏହାର ପ୍ରଯୋଜକ ସଂଜୟ ଖାଁ ଏ ବିବାଦର ଗୋଟିଏ ସମାଧାନ କଲେ । ଯାହା ଫଳରେ ଏବେ ସିରିଏଲ୍‌ର ପ୍ରତି ଏପିସୋଡ୍ ଆରମ୍ଭରେ ଟି.ଭି. ପରଦାରେ ଘୋଷଣା କରାଯାଉଛି ଯେ ଏହାର ବିବରଣୀ ନିର୍ଭଳା ଐତିହାସିକ ସତ୍ୟ [illegible] ଆଧାରିତ ନୁହେଁ କିମ୍ବା ଏହା ଟିପୁ ସୁଲତାନଙ୍କ ରାଜତ୍ୱ କାଳର ଐତିହାସିକ ବିବରଣୀ ମଧ୍ୟ ନୁହେଁ । ଏହା ଟିପୁଙ୍କ ପ୍ରତି ସମ୍ମାନ କି ଅସମ୍ମାନ ତାହା ଏହି ସିରିଏଲର ଦର୍ଶକମାନେ ବିଚାର କରିପାରନ୍ତି ।

କିନ୍ତୁ ମୋର ଏକ ଅନୁଭୂତିରୁ ମୁଁ ଜାଣେ ଟିପୁ ସୁଲତାନ ସାଂପ୍ରଦାୟିକତାବାଦୀ ନଥିଲେ । ସପ୍ତମ-ଅଷ୍ଟମ ଦଶକରେ ମୁଁ ରାଜ୍ୟସଭାର ସଭ୍ୟ ଥିବାବେଳେ ଥରେ ଏକ କମିଟି ସଂକ୍ରାନ୍ତରେ ଅନ୍ୟ କେତେକ ଏମ୍.ପି.ଙ୍କ ସହିତ ବାଙ୍ଗାଲୋର ଆସିଥିଲି । କମିଟିର କାର୍ଯ୍ୟ ଶେଷ ହେବା ପରେ ଆମେ କର୍ଣ୍ଣାଟକର କେତେକ ଦର୍ଶନୀୟ ସ୍ଥାନ ବୁଲି ଦେଖିବା ପାଇଁ ପ୍ରୋଗ୍ରାମ ସ୍ଥିର ହେଲା । ସେତେବେଳେ ଆମେ ଦିନେ ଆସିଥିଲୁ ସେରିଙ୍ଗାପଟ୍ଟନମ । ସେଦିନକୁ ଏଠାରେ ଟିପୁ ସୁଲତାନଙ୍କର ପ୍ରାସାଦ ବା ଦୁର୍ଗ ବୋଲି କୁହାଯାଉଥିବା ପଥରରେ ତିଆରି ଏକ ବିରାଟ ଅଟ୍ଟାଳିକାର ସାମନା ପଟର କେତେ ଅବଶେଷ ଅକ୍ଷତ ରହିଥିଲା । ଏହି ପ୍ରାସାଦର ନାମ ଥିଲା 'ଦରିଆ-ଦୌଲତ୍' । ବାହାର ପଟେ ଏହାର କାନ୍ଥମାନଙ୍କରେ ଅଙ୍କିତ ହୋଇଥିବା ସେଦିନର ଫ୍ରେସକୋ ବା ଭିତ୍ତିଚିତ୍ରମାନ ତଥାପି ଅମ୍ଳାନ ରହିଥିଲା । ଏଇ ଦୁର୍ଗ ବା ପ୍ରାସାଦର ଅନ୍ଧକାର ଗହ୍ୱର ପରି ଦିଶୁଥିବା କେତେକ କୋଠରିରେ କମ୍ପାନୀ ଫଉଜମାନେ ବନ୍ଦୀ ହୋଇ ରହିଥିଲେ ଓ ରୁଦ୍ଧଶ୍ୱାସ ହୋଇ ସେମାନେ ମୃତ୍ୟୁମୁଖରେ ପଡ଼ିଥିଲେ । ସେଦିନକୁ ସୁଦ୍ଧା ଏଇ ଅନ୍ଧକାର କୋଠରିମାନଙ୍କର ବାତାବରଣ ପ୍ରାଣ ହରାଇଥିବା ସେଇ ମୃତ ବ୍ରିଟିଶ ସୈନିକମାନଙ୍କର ଶେଷ ନିଃଶ୍ୱାସରେ ଯେପରି ଭାରି ହୋଇ ରହିଥିଲା ।

ଟିପୁ ସୁଲତାନଙ୍କ ଦୁର୍ଗ ବା ପ୍ରାସାଦଠାରୁ ଅଦୂରରେ ଶ୍ରୀରଙ୍ଗଙ୍କ ପୁରାତନ ମନ୍ଦିର । ଆମ୍ଭେମାନେ ଦର୍ଶନପାଇଁ ମନ୍ଦିରକୁ ଆସିଲୁ । ଦର୍ଶନ ପରେ ଦକ୍ଷିଣ ଭାରତୀୟ ବିଧିରେ

ମନ୍ଦିରର ପୂଜକ ଆମ ପ୍ରତ୍ୟେକଙ୍କ ମୁଣ୍ଡରେ ରୂପାର ଗୋଟିଏ ଶିରସ୍ତ୍ରାଣ ପିନ୍ଧାଇ ଆଶୀର୍ବାଦ ଶ୍ଳୋକ ବୋଲିଲେ । ଦର୍ଶନ ଶେଷ ହେବା ପରେ ପୂଜକ କହିଲେ, ରୂପାର ଏ ଶିରସ୍ତ୍ରାଣ ଟିପୁ ସୁଲତାନ ଏ ମନ୍ଦିରକୁ ଦେଇଥିଲେ । ଏ ଶିରସ୍ତ୍ରାଣଟି ହେଉଛି ଟିପୁ ସୁଲତାନଙ୍କର ।

ମୁଁ ବିସ୍ମିତ କଣ୍ଠରେ ପଚାରିଲି, ଟିପୁ ପରା ଥିଲେ ମୁସଲମାନ । ଶ୍ରୀରଙ୍ଗ ମନ୍ଦିର ସହିତ ତାଙ୍କର ସଂପର୍କ କ'ଣ ? ପୂଜାରୀ ଉତ୍ତର ଦେଲେ, ଶ୍ରୀରଙ୍ଗ ମନ୍ଦିରରେ ସେବାପୂଜାପାଇଁ ଟିପୁ ସୁଲତାନ ଏ ମନ୍ଦିରକୁ ବହୁ ସଂପତ୍ତି ଦାନ କରିଯାଇଥିଲେ । ଶ୍ରୀରଙ୍ଗଙ୍କ ପ୍ରତି ଟିପୁଙ୍କର କୁଆଡ଼େ ଅଚଳ ଶ୍ରଦ୍ଧା ଓ ଭକ୍ତି ରହିଥିଲା ।

ଦିଲ୍ଲୀରେ ପହଞ୍ଚିବା ପରେ ମୁଁ ଏଇ ଘଟଣା ପାର୍ଲିଆମେଣ୍ଟ ଲବିରେ କେତେକ ବନ୍ଧୁଙ୍କୁ କହୁଥିବା ବେଳେ, ଜଣେ ବନ୍ଧୁ, ଏସବୁ ବାଜେ ଗପ କହି ଉଡ଼ାଇ ଦେଲେ । ଟିପୁ ସୁଲତାନ ଜଣେ ମୁସଲମାନ, ସେ ହିନ୍ଦୁ ମନ୍ଦିରକୁ ସଂପତ୍ତି ଦାନ କରନ୍ତେ କିପରି ? ମୁଁ ଅବଶ୍ୟ ନିରବ ରହିଥିଲି । କାରଣ ବିତଣ୍ଡାର ଉତ୍ତର ଯୁକ୍ତିରେ ନାହିଁ । କିନ୍ତୁ ଜଣେ ଐତିହାସିକ ବା ଲେଖକ ଏ ପ୍ରକାର ପରିସ୍ଥିତିରେ ଟିପୁଙ୍କୁ ରୂପାୟିତ କରିବ କିପରି ? ଧର୍ମନିରପେକ୍ଷ ବା ସଂପ୍ରଦାୟିକତାବାଦୀ ବୋଲି ? କୁହାଯାଇପାରେ ଶ୍ରୀରଙ୍ଗ ମନ୍ଦିରର ପୂଜକ ଟିପୁ ସୁଲତାନଙ୍କ ଅମଳର ଲୋକ ନୁହନ୍ତି । ତେଣୁ ସେ କଦାପି ଏକ ନିର୍ଭରଯୋଗ୍ୟ ସୂତ୍ର ବା ସୋର୍ସ ରୂପେ ବିବେଚିତ ହେବା ଉଚିତ ନୁହେଁ । ମାତ୍ର ଜଣେ ହିନ୍ଦୁ ପୂଜକ, ଜଣେ ମୁସଲମାନ ଶାସକର ପ୍ରଶସ୍ତିଗାନ କରନ୍ତା ବା କାହିଁକି ?

ଏପରି ଘଟଣା ସବୁ ପ୍ରତ୍ୟେକ ଅନାସକ୍ତ ଐତିହାସିକ ଅଥବା ଲେଖକ ପାଇଁ ଗୋଟିଏ ସମସ୍ୟା ବା ସଙ୍କଟ । ଆବେଗ ସ୍ପନ୍ଦିତ ଭାବରେ ଚରିତ୍ରମାନଙ୍କର ଚାରିପଟେ ଜ୍ୟୋତି ବଳୟ ସୃଷ୍ଟି କରିବା ପରିବର୍ତ୍ତେ ରଞ୍ଜନ ରଶ୍ମିରେ ପ୍ରତ୍ୟେକ ଚରିତ୍ର ଓ ଘଟଣାକୁ ପରୀକ୍ଷା କରିବା ପ୍ରତ୍ୟେକ ଐତିହାସିକ ବା ଲେଖକ ପକ୍ଷରେ ଆବଶ୍ୟକ ।

୨୦/୧୦/୯୦

# ଗୋଟିଏ ଛିଣ୍ଡା ଯୂଇଫୁଲର କାହାଣୀ

ଦିଲ୍ଲୀ ସହରରେ ଆଡ଼୍‌ଭାନୀଙ୍କ ରାମରଥ-ଯାତ୍ରା ପଛରେ ଛାଡ଼ିଯାଇଛି ସାଂପ୍ରଦାୟିକ ହିଂସା ଓ ଉତ୍ତେଜନାର ବିଷାକ୍ତ ଘୂର୍ଣ୍ଣି । ପୁରୁଣା ଦିଲ୍ଲୀ ଅଞ୍ଚଳରେ ରାତି ସବୁ ଯେପରି ଘନୀଭୂତ ବିଷପାତ୍ର ! ମୁହୂର୍ତ୍ତ ସବୁ ଯେପରି ଗୋଟିଏ ଗୋଟିଏ ଜୀବନ୍ତ ଡିନାମାଇଟ୍ । ଫ୍ୟୁଜ୍ ଦେହରେ କେଉଁଠି ସାମାନ୍ୟ ଅଗ୍ନି ସଂଯୋଗ ହେଲେ ଡିନାମାଇଟ୍ ବିସ୍ଫୋରଣ କରି ଉଠିବ ! ପୁରୁଣା ଦିଲ୍ଲୀର ରାସ୍ତା, ଗଳି ଓ ଉପଗଳିମାନଙ୍କରେ ସଶସ୍ତ୍ର ପୋଲିସ୍ ବାହିନୀ ବନ୍ଧୁକ ଓ ଲୁହବୁହା ଗ୍ୟାସ୍ ଧରି ଜାଗତିଆର ରହିଛନ୍ତି, କେଉଁଠି ସାଂପ୍ରଦାୟିକ ବିସ୍ଫୋରଣ ଘଟିଲେ, ତାହାକୁ ଚପାଇ ଦେବାପାଇଁ । ଦେଶରେ ତ ଆଜି ଲହୁ ଆଉ ଲୁହର ଅଭାବ ନାହିଁ । ତଥାପି ଦେଶ ଆଜି ପାଲଟିଛି, କରାଳୀ ଛିନ୍ନମସ୍ତା ! ଦରକାର ଆହୁରି ଲହୁ, ଆଉରି ଲୁହ । ଛିନ୍ନମସ୍ତାଙ୍କର ରକ୍ତତୃଷା ନିବାରଣ ପାଇଁ ତାନ୍ତ୍ରିକ, କାପାଳିକମାନଙ୍କର ମଧ୍ୟ ଅଭାବ ନାହିଁ ।

ସେଦିନ ବିଳମ୍ବିତ ସନ୍ଧ୍ୟାରେ ପୁରୁଣା ଦିଲ୍ଲୀର ତାଲୀ ସକନ୍‌ୱାଲୀ କତ୍ରା ଓ ସାହାଗଞ୍ଜ ପ୍ରଭୃତି ଅଞ୍ଚଳରେ ଦୁଇ ସଂପ୍ରଦାୟର କାପାଳିକମାନେ ତିଆର ହୋଇ ରହିଛନ୍ତି, ବଳିଦାନ ପାଇଁ ରକ୍ତ କ୍ଷରଣ ମୁହୂର୍ତ୍ତରେ ପ୍ରତୀକ୍ଷାରେ । ବିଳମ୍ବିତ ସନ୍ଧ୍ୟା ଯେତିକି ଯେତିକି କ୍ରମେ ରାତିରେ ପରିଣତ ହେଉଛି, ଉତ୍ତେଜନା ଓ ଉତ୍କଣ୍ଠା କ୍ରମେ ସେତିକି ସେତିକି ବୃଦ୍ଧି ପାଇବାରେ ଲାଗିଛି ।

ରାତି ନ'ଟା ପନ୍ଦର ମିନିଟ୍ ।

ସାଂପ୍ରଦାୟିକ ହିଂସା ଓ ଉତ୍ତେଜନାର ବିଷ ଜର୍ଜରିତ ସେଇ ବିଳମ୍ବିତ ସନ୍ଧ୍ୟାରେ ଆଖପାଖ କେଉଁ ବସ୍ତିରୁ କୌଣସି ଏକ ସଂପ୍ରଦାୟର ଝିଅ ସାହାଗଞ୍ଜ ଆସୁଥିଲା, ଅନ୍ୟ ଏକ ସଂପ୍ରଦାୟର ତା'ର ବୟଫ୍ରେଣ୍ଡ ସହିତ ମିଳନପାଇଁ । ମିଳନର ଏଇ ଲଗ୍ନ ସ୍ଥିର କରିବା ପୂର୍ବରୁ ସେମାନେ ତ ଆଉ ଜାଣି ନଥିଲେ, ସେଦିନ ରାମରଥ ଘେନି ବାତାବରଣ

ସାଂପ୍ରଦାୟିକ ଉତ୍ତେଜନାରେ ଏପରି ବିଷ ଜର୍ଜରିତ ହୋଇଉଠିବ । ହୃଦୟର ଆବେଗ ପୁଣି ବୁଝେନାହିଁ, କିଏ କେଉଁ ସଂପ୍ରଦାୟର ! ହୃଦୟ ପୁଣି ବୁଝେ ନାହିଁ ମନ୍ଦିର ଓ ମସ୍‌ଜିଦ୍ ମଧ୍ୟରେ ପାର୍ଥକ୍ୟ । ତାହା କେବଳ ସମବେଦନଶୀଳ, ଦୁଇଟି ହୃଦୟ । ହୃଦୟର ସେଇ ଆବେଗରେ ଝିଅଟି ଚାଲିଥିଲା, ତା'ର ପ୍ରେମିକବନ୍ଧୁ ସହିତ ମିଳନପାଇଁ ।

ମାତ୍ର ସାହାଗଞ୍ଜରେ ପହଞ୍ଚିବା ପରେ, ତାକୁ ଠିକ୍ ଲକ୍ଷ୍ୟ କରିପାରିଲେ, ତା' ନିଜ ସଂପ୍ରଦାୟର କେତେକ ଯୁବକ । ସେମାନେ ମଧ୍ୟ ବୁଝି ପାରିଲେ, ଝିଅଟି ଚାଲିଛି ଅନ୍ୟ ସଂପ୍ରଦାୟର ତା'ର ସେଇ ପ୍ରେମିକ ବନ୍ଧୁ ସହିତ ମିଳନ ପାଇଁ ।

କିନ୍ତୁ ସେମାନେ ଏହାକୁ ବରଦାସ୍ତ କରିପାରିବେ ବା କିପରି ? ଦୁଇ ସଂପ୍ରଦାୟର କାପାଳିକମାନେ ଯେତେବେଳେ ପରସ୍ପରକୁ ଛିନ୍ନମସ୍ତାଙ୍କ ଉଦ୍ଦେଶ୍ୟରେ ବଳି ପକାଇବା ପାଇଁ କଟାରୀ ଧରି ପ୍ରସ୍ତୁତ, ବଳିଦାନର ମନ୍ତ୍ର ଯେତେବେଳେ ଉଚ୍ଚାରିତ ହେଉଛି, ସେତେବେଳେ ଗୋଟିଏ ସଂପ୍ରଦାୟର ଝିଅ ଯିବ ପୁଣି ଅନ୍ୟ ସଂପ୍ରଦାୟର ପ୍ରେମିକ ସହିତ ମିଳନ ପାଇଁ ।

ଆରମ୍ଭ ହୋଇଗଲା ଉତ୍ତେଜନା । ସେଇ ଉତ୍ତ୍ୟକ୍ତ ଯୁବକମାନେ, ନିକଟବର୍ତ୍ତୀ ଥାନାରେ ଖବର ଦେଲେ, ଭୟଙ୍କର ଦୁର୍ଘଟଣାର ସମ୍ବାଦ । ତାଙ୍କ ସଂପ୍ରଦାୟର ଝିଅଟିଏ ସାହାଗଞ୍ଜ ଆସିଛି, ଅନ୍ୟ ସଂପ୍ରଦାୟର ତା'ର ପ୍ରେମିକ ବନ୍ଧୁ ସହିତ ସାକ୍ଷାତପାଇଁ । ଥାନା ଅଫିସର ଉତ୍ତେଜନା ଏଡ଼ାଇବା ପାଇଁ ଝିଅଟିକୁ ଘେନି ଗଲେ ଥାନାକୁ ।

ଆମ ସଂପ୍ରଦାୟର ଝିଅକୁ ପୋଲିସ୍ କାହିଁକି ଥାନାକୁ ନେଲା ? ଡିନାମାଇଟ୍ ଫ୍ୟୁଜ୍‌ରେ ନିଆଁ ଧରିଲା । ଏହାପରେ ଅନିବାର୍ଯ୍ୟ ବିସ୍ଫୋରଣ । ସେଇ ଅଞ୍ଚଳରେ ଗଳି ଓ ଉପଗଳିମାନଙ୍କରେ କୋଠା ଛାତ ଉପରେ ଆଗରୁ ସଂଗୃହୀତ ହୋଇ ରହିଥିଲା ଢେଲା ଓ ବୋତଲ ପ୍ରଭୃତି ବିଭିନ୍ନ ଆୟୁଧ । ଗଳି ଉପଗଳିମାନଙ୍କର ରାସ୍ତାରେ ଦୁଇ ସଂପ୍ରଦାୟ ମଧ୍ୟରେ ଖଣ୍ଡଯୁଦ୍ଧ ଆରମ୍ଭ ହୋଇଯିବା ମାତ୍ରେ, ଛାତମାନଙ୍କର ଉପରୁ ତଳକୁ ବୃଷ୍ଟି ହେଲା, ସେଇ ଆୟୁଧ ସବୁ । ଦୀର୍ଘ ଘଣ୍ଟାଏ କାଳ ବ୍ୟାପୀ ଯୁଦ୍ଧ ଚାଲିବା ପରେ ଅବସ୍ଥା ସମ୍ଭାଳିବା ପାଇଁ ସେଠାକୁ ଆଇଲେ, ଆଉରି ନିରାପତ୍ତାରକ୍ଷୀ ବାହିନୀ । ସଂଘର୍ଷକାରୀମାନଙ୍କୁ ଘଉଡ଼ାଇବା ପାଇଁ ପଚାଶରୁ ଅଧିକ ରାଉଣ୍ଡ ଲୁହବୁହା ଗ୍ୟାସ୍ ସେଲ୍ ଫୁଟିଲା । କେତେ ରାଉଣ୍ଡ ଫାଙ୍କା ଗୁଳି ଯେ ଫୁଟିଲା, ତା'ର ସଠିକ କଳନା ପୋଲିସ ପାଖରେ ନାହିଁ । କିନ୍ତୁ ଢେଲା ଓ ବୋତଲ ଫିଙ୍ଗାଫିଙ୍ଗିରେ ବହୁ ଲୋକ ଆହତ ହୋଇଥିବା ପ୍ରକାଶ । ରାତି ଅଧକୁ ଅବସ୍ଥା ସମ୍ଭାଳ ପଡ଼ିଲା ।

ସାହାଗଞ୍ଜ ଅଞ୍ଚଳର ଜଣେ ବାସିନ୍ଦା କହନ୍ତି, ଅବସ୍ଥା ଶାନ୍ତ ପଡ଼ିବା ପରେ, ସେ ବାହାରକୁ ଆସି ଦେଖିଲେ, ନିର୍ଜନ ରାସ୍ତା ଉପରଯାକ ଢେଲା, ପଥର, ବୋତଲର

ଭଙ୍ଗାକାଚ, ଟିଅର ଗ୍ୟାସ୍ ଖୋଳ ଆଉ ତା'ରି ଭିତରେ ହଠାତ୍ ସେ ଲକ୍ଷ୍ୟ କରିପାରିଲେ ଯୂଇଫୁଲର ଗୋଟିଏ ଛିଣ୍ଡାମାଳ ।

ଏତେ ଦଳାଚକଟା ଭିତରେ ସେଇ ଫୁଲମାଳଟି ତଥାପି କିପରି ଅକ୍ଷତ ରହିପାରିଲା କେଜାଣି ?

୨୭/୧୦/୯୦

# ତଣ୍ଡିପଦର ଠିକଣା

ପାଣ୍ଡବ-ବର୍ଜିତ ସେଇ ଅଞ୍ଚଳରେ ଏପରି ଏକ ଡାକବଙ୍ଗଳା ଆଶ୍ରୟ ପାଇଁ ମିଳିଯିବ ବୋଲି, ମୋର ବିଶ୍ୱାସ ନଥିଲା । ବିଗତ ଶତାବ୍ଦୀର ମୋଟା ଚାଳଛପର କଟେଜ୍ ଟାଇପ୍ ବଙ୍ଗଳା । କିନ୍ତୁ ବେଶ୍ ପରିଷ୍କାର ପରିଚ୍ଛନ୍ନ । ଆସବାବପତ୍ର ବି ସେଇ ବିଗତ ଶତାବ୍ଦୀର । ବଙ୍ଗଳା ହତା ଭିତରେ କେତେଟା ବୁଢ଼ା ଶାଳଗଛ । ଇଲେକ୍‌ଟ୍ରିକ୍ ନାହିଁ । ଖଣ୍ଡେ ଗୋଲ୍ ଟେବୁଲ୍ ଉପରେ ଗୋଟାଏ ଲଣ୍ଠନ ଘର ଭିତରେ ଛାଇ ଓ ଆଲୁଅର ଖେଳ ଖେଳୁଥିଲା । କ୍ଳାନ୍ତ ଭାବରେ ମୁଁ ବିଛଣା ଉପରେ ଗଡ଼ିପଡ଼ି ବଙ୍ଗଳା ଚୌକିଦାରକୁ କହିଥିଲି, ଠିକ୍ ସକାଳ ଛଅଟାବେଳେ କେବଳ ମୋର କପେ ଚା ଦରକାର । ରାତି ଖାଇବାର ଝିନ୍‌ଝଟ୍ ମୁଁ ଶେଷ କରି ଆସିଛି । ଚୌକିଦାର କହିଲା, ଏଠି ତ ଚା'ର ଯୋଗାଡ଼ ନାହିଁ । ଚା', ଚିନି ଆଉ କ୍ଷୀର ଯୋଗାଡ଼ କରି ଚା' ତିଆରି କରିବା ସକାଳ ନଅଟା ଆଗରୁ ନୁହେଁ । ଶେଷ ଆଶ୍ୱିନର ଶୀତୁଳିଆ ପବନରେ ଥିଲା, ସାମନ୍ୟ ଚପଳତା । ଭଲ ଲାଗୁଥିଲା । ମୁଣ୍ଡ ଉପର ଝରକାଟା ତେଣୁ ବନ୍ଦ ନ କରି ଶୋଇପଡ଼ିଲି । ପୃଥିବୀର ସବୁ କୋଳାହଳ ହଠାତ୍ ଯେପରି ସ୍ତବ୍ଧ ହୋଇଯାଇଛି ଓ ତା' ସହିତ ସମୟ ଚକ୍ରର ଘର୍ଘର ଶବ୍ଦ ମଧ୍ୟ । ନିସ୍ତବ୍ଧ ରାତ୍ରି । ଝିଙ୍କାରୀମାନଙ୍କର ସଂଗୀତ ଶୁଣୁଶୁଣୁ ମୁଁ କେତେବେଳେ ଶୋଇପଡ଼ିଛି । ସକାଳେ ଉଠି, ଚା' ପାଇଁ ଅପେକ୍ଷା ନକରି, ମୁଁ ବାହାରି ପଡ଼ିଛି ଶରତର ଅରୁଣ ଆଲୋକର ସମ୍ମୋହନୀ ଆହ୍ୱାନରେ ।

ମାଟି ରାସ୍ତା । ମଝିରେ ମଝିରେ ଯେଉଁଠି ଶଗଡ଼ଗୁଳାରେ ଖାତ, ଖଣା ସବୁ ହୋଇଥିଲା, ଭୋଦୁଅର ବର୍ଷା ସେଠାରେ ସୃଷ୍ଟି କରିଯାଇଥିଲା, ପଙ୍କ ଆଉ କାଦୁଅର ଦହ । ଏ ରାସ୍ତା କେଉଁଠିକି ପଡ଼ିଛି, ଏହାର ଶେଷ କେଉଁ ଠିକଣାରେ, ତାହା ମୁଁ ଜାଣିନଥିଲି କିମ୍ବା ପଚାରିବା ପାଇଁ ସେ ରାସ୍ତାରେ କେହି ଲୋକଟିଏ ସୁଦ୍ଧା ଆଖିରେ ପଡୁନଥିଲେ । ରାସ୍ତା ଦୁଇ କଡ଼େ ଏଠି ସେଠି ଛଡ଼ାଛଡ଼ା ହୋଇ ଆକାଶକୁ ମୁଣ୍ଡ ଟେକି ଶରତ ସକାଳର ପାନପତ୍ରରୁ ସୂର୍ଯ୍ୟାଲୋକ ପିଉଥିବା ତାଳଗଛ ସବୁ ମୋ ପ୍ରଶ୍ନର ବା କି ଉତ୍ତର ଦିଅନ୍ତେ ?

କିଛି ବାଟ ଯିବା ପରେ ରାସ୍ତା ଦୁଇକଡ଼େ କେବଳ କାଶତଣ୍ଡୀ, ଆଉ କାଶତଣ୍ଡୀ । କାଶତଣ୍ଡୀର ଅରଣ୍ୟ ଉପରେ ସକାଳର ପବନ ଭାସି ଆସିବା ବେଳେ, ଫେନବୃତ ଲହରୀ ସବୁ କୂଳ ଉପରେ ଭାଙ୍ଗି ପଡ଼ିବା ପରି ଲାଗୁଛନ୍ତି । ଶରତର ନିର୍ମେଘ ଆକାଶ ଓ ସୂର୍ଯ୍ୟ ଉଦ୍ଦେଶ୍ୟରେ ଇଏ ଯେପରି କାଶତଣ୍ଡୀର ମହାକାବ୍ୟ । ମୁଁ ତାକୁ ପଢ଼ିପାରୁ ନାହିଁ । କିନ୍ତୁ ଉପଲବ୍ଧି କରିପାରୁଛି, ତା'ର ଶାବ୍ଦିକ ବିଳାସ ଓ ଛନ୍ଦ ।

ମେଘ ଓ ବର୍ଷାର ଅତ୍ୟାଚାର ମଧ୍ୟରେ ବସୁନ୍ଧରାର ହୃଦୟରେ ଯେଉଁ ଚେତନା ସ୍ତବ୍ଧ ଓ ମୂର୍ଚ୍ଛିତ ହୋଇ ରହିଥିଲା, ଶରତର ମୋହନ ସ୍ପର୍ଶରେ ତାହା ହଠାତ୍ ଯେପରି କାଶତଣ୍ଡୀର ଏଇ ମହାକାବ୍ୟରେ ଆତ୍ମପ୍ରକାଶ କରିଅଛି । ମୁଁ ଚାଲିଛି, ଆଉ ଚାଲିଛି । ହାତ ଘଡ଼ି ବଙ୍ଗଳାରୁ ଆସିବା ବେଳେ ତକିଆ ତଳେ ଛାଡ଼ିଦେଇ ଆସିଛି । ତେଣୁ ସମୟ କେତେ ଜାଣିବାର ଉପାୟ ନାହିଁ । ମାତ୍ର କ୍ରମେ ଚା' ପାଇଁ ମୋର ଦେହରୁ ସ୍ନାୟୁ ସବୁ ଆର୍ତ୍ତଚିତ୍କାର ଆରମ୍ଭ କଲେଣି । ଆଉରି କିଛିବାଟ ଆଗକୁ ଯିବା ପରେ, ଦୁଇ ତିନିଟି ଚାଳଘର ଆଖିରେ ପଡ଼ିଲା । ଗୋଟିଏ ଚାଳଘର ମଥାନରୁ କୁଣ୍ଡଳୀ ମୋଡ଼ ଧୂଆଁ ଉପରକୁ ଉଠୁଛି । ସାମନାରେ ଗୋଟିଏ ନିର୍ଜନ ହାଟର ଛୋଟ ଛୋଟ ଚାଳିଆ ସବୁ କଙ୍କାଳ ମେଲି ଠିଆ ହୋଇଛନ୍ତି । ଏଇଠି ନିଶ୍ଚୟ ଚା' ମିଳିପାରେ । ପାଦର ଗତିକୁ ମୁଁ ଟିକିଏ ଚଞ୍ଚଳ କରିଦେଲି । ମୋର ଅନୁମାନ ମିଥ୍ୟା ନଥିଲା । ଗୋଟିଏ ଗୁଡ଼ିଆ ଦୋକାନରେ ବୁଢ଼ା ଦୋକାନୀଟିଏ ଗୋଟା କଡ଼େଇରେ ଜିଲିପି ଛାଣୁଥିଲା । ସେଦିନ ବୋଧେ ମୁଁ ଥିଲି, ତା' ଦୋକାନର ପ୍ରଥମ ଗରାଖ । ଦୋକାନ ଆଗରେ ସଡ଼କ ଉପରେ ପଡ଼ିଥିଲା ହାତଭଙ୍ଗା ଖଣ୍ଡେ ଚୌକି । ଗୋଟିଏ ପିଲାକୁ ଦୋକାନୀ ବୁଢ଼ା ଡାକି କହିଲା, ଠିଆହୋଇ ଦେଖୁଛୁ କ'ଣ, ଚୌକିଟା ଝାଡ଼ିଦେ, ବାବୁ ବସିବେ । ସତେ ଯେପରି ହାତଭଙ୍ଗା ପୁରୁଣା ଚୌକିଟାକୁ ତା' କାନ୍ଧ ଉପରେ ପଡ଼ିଥିବା ମଇଳା ଗାମୁଛାରେ ଥରେ ପୋଛିଦେଲେ, ଚୌକି ଉପରୁ କୋଉ କାଳର ଚିଟା ଆଉ ଧୂଳି ସବୁ ଛାଡ଼ିଯିବ । ମୁଁ ସେ ଚୌକି ଉପରେ ବସିପଡ଼ିବା ମାତ୍ର, ବୁଢ଼ା କହିଲା, "ଜିଲିପି ଖାଇବେ ବାବୁ ?" ଏଇତ ତମ ଆଗରେ ଛାଣୁଛି ।

ମୋତେ ପ୍ରକୃତରେ ଭୋକ ଲାଗୁଥିଲା । ଶାଳପତ୍ର ଠୁଙ୍ଗାରେ ଦୁଇ ଠୁଙ୍ଗା ଜିଲିପି ଖାଇଗଲି । ତା' ପରେ ଗିଲାସେ ଚା' ମାଗିଲି । ସିଏ ଚା' ଗିଲାସେ ବି ଦେଲା । ଚା' ପିଉପିଉ ପଚାରିଲି, ଏ ଜାଗାଟାର ନାଁ କ'ଣ ? ବୁଢ଼ା ତା' ପାକୁଆ ପାଟିରେ ଉତ୍ତର ଦେଲା, "ଏ ଗାଁ ନାଁ ଆଜ୍ଞା ତଣ୍ଡୀପଦର ।" ମୋର ଚା' ପିଆ ଶେଷ ହୋଇଥିଲା । ବୁଢ଼ା କହିଲା, "ଚା'କୁ ମିଶାଇ ଆପଣଙ୍କର ହେଲା ପାଞ୍ଚଟଙ୍କା ଆଠଣା ।" ବୁଢ଼ାକୁ ପଇସା ଦେବାପାଇଁ ପକେଟ ଉଣ୍ଡାଳିଲି । କିନ୍ତୁ ପକେଟ୍‌ରେ ପର୍ସ ନଥିଲା । ଘଣ୍ଟା ସଙ୍ଗରେ

ପର୍ସଟି ତକିଆ ତଳେ ଛାଡ଼ିଦେଇଆସିଛି । ଏବେ କରିବି କ'ଣ ? ହଠାତ୍ ନିଦ ଭାଙ୍ଗିଗଲା । ଖୋଲା ଝରକା ବାଟେ ସକାଳ ଆଲୁଅ ବିଛଣା ଉପରେ ପଡ଼ିଲାଣି । କିନ୍ତୁ ଇଏତ ମୋର ଶୋଇବା ଘର । ଏ ଚାରିକାନ୍ଥ ତ ମୋର ଅତି ପରିଚିତ । ଏହାରି ଭିତରେ ମୁଁ ବନ୍ଦୀ । କିନ୍ତୁ ସେ ତଣ୍ଡିପଦର ଗାଁ କାହିଁ ? କାହିଁ କାଶତଣ୍ଡୀର ସେ ଅରଣ୍ୟ ? ସ୍ୱପ୍ନ ତଥାପି ମୋ ଆଖିରୁ କଟି ନଥିଲା । ମୁଁ ଭୃତ୍ୟକୁ ପଚାରିଲି, "ତକିଆ ତଳେ ମୋ ପର୍ସ କାହିଁ ? ପାଞ୍ଚ ଟଙ୍କା ଆଠଣା କାଢ଼୍ ମୁଁ ତାକୁ ଦେବି ।"

ଭୃତ୍ୟ ବିସ୍ମିତ କଣ୍ଠରେ ଉତ୍ତର ଦେଲା, "କୋଉ ପର୍ସ ? ପାଞ୍ଚଟଙ୍କା ଆଠଣା ଦେବେ କାହାକୁ ?" ମୁଁ ସମ୍ବିତ୍ ଫେରିପାଇଲି । ତଣ୍ଡିପଦର ଗାଁ ଆଉ କାଶତଣ୍ଡୀର ଅରଣ୍ୟ ତା'ହେଲେ ଥିଲା କେବଳ ଗୋଟାଏ ସ୍ୱପ୍ନ । କିନ୍ତୁ ମୋର ଦୃଢ଼ ପ୍ରତ୍ୟୟ ତଣ୍ଡୀପଦର ବୋଲି କେଉଁଠି ଗୋଟାଏ ଗାଁ ନିଶ୍ଚୟ ଅଛି । ଆଉ ସେ ଗାଁକୁ ଯିବା ବାଟରେ ପଡ଼େ, ମାଇଲ ପରେ ମାଇଲ ଧରି ମାଟି ରାସ୍ତା ଦୁଇକଡ଼େ କାଶତଣ୍ଡୀର ଅରଣ୍ୟ । କିନ୍ତୁ ସେ ତଣ୍ଡିପଦର ଗାଁ କେଉଁଠି ? ତା'ର ଠିକଣା ମୁଁ ଜାଣେନା । ତଥାପି ଏବେ ମଧ୍ୟ ସେହି ରାସ୍ତାକଡ଼ରେ କାଶତଣ୍ଡିର ଅରଣ୍ୟରେ ଶରତର ଶୀତୁଳିଆ ପବନ ଲହଡ଼ି ଭାଙ୍ଗୁଥିବ । ଯଦ୍ୟପି ମୁଁ କେବେ ଆଉ ତା'ର ସନ୍ଧାନ ପାଇବି ନାହିଁ ।

୧୦/୧୧/୯୦

# ସ୍ୱର୍ଣ୍ଣମଣି

ସନାତନ, ମାତ୍ର ଦିନ କେତଟା ଜ୍ୱର ଭୋଗି ଚାଲିଗଲେ । ତାଙ୍କ ବ୍ୟାଧିର ନିଦାନ ହୋଇ ପାରିଲା ନାହିଁ । ଚିକିତ୍ସାତ ଦୂରର କଥା । ଅଥଚ ଆରମ୍ଭରୁ ସହରର ଜଣେ ଖ୍ୟାତି ସଂପନ୍ନ ଡାକ୍ତର ଚିକିତ୍ସାର ଦାୟିତ୍ୱ ନେଇଥିଲେ । ସବୁ ପ୍ରକାର କ୍ଲିନିକାଲ୍ ଟେଷ୍ଟ ସତ୍ତ୍ୱେ କିଛି ନ ବାହାରିବାରୁ ଡାକ୍ତର ଶେଷକୁ କହିଲେ, ଭାଇରାଲ୍ ଫିଭର । ଚାଲିଯିବ । କିନ୍ତୁ ଜର ତ ଗଲା ନାହିଁ, ସନାତନ ଚାଲିଗଲେ । ସନାତନ କଲେଜରେ ମୋର ସହପାଠୀ ଥିଲେ ହେଁ ମୋଠାରୁ ଥିଲେ ଦୁଇ କ୍ଲାସ୍ ସିନିଅର । ତାହା ସତ୍ତ୍ୱେ ଆମ ଦୁହିଁଙ୍କ ମଧ୍ୟରେ ଗଢ଼ି ଉଠିଥିଲା, ବନ୍ଧୁତ୍ୱ । ମାତ୍ର ସନାତନ ଏପରି ଗମ୍ଭୀର ପ୍ରକୃତିର ମଣିଷ ଥିଲେ ଯେ ତାଙ୍କ ସହିତ ଅନ୍ତରଙ୍ଗ ହେବା, ମୋ ପକ୍ଷରେ କଠିନ ଥିଲା । ତାଙ୍କ ମୁହଁ, କେବେ ଚିନ୍ତା କଲାବେଳେ, ଆଖିଆଗରେ ଭାସି ଉଠେ ପଥରରେ ଖୋଳା ଏକ ମୁହଁର ଚେହେରା । ସେଥିରେ, ଭାବୋଚ୍ଛ୍ୱାସର ଲେଶ ମାତ୍ର ନ ଥିଲା । ଦୁଃଖରେ ଅଧିର ହେବା, ଅଥବା ଆନନ୍ଦରେ ବିହ୍ୱଳ ହେବାର ମୁଁ ତାଙ୍କୁ କେବେ ଦେଖିନାହିଁ । ଗୋଟିଏ ପରେ ଗୋଟିଏ ତାଙ୍କର ଦୁଇଟି ପୁତ୍ରସନ୍ତାନ ଶୈଶବରେ ମୃତ୍ୟୁ ମୁଖରେ ପଡ଼ିଲେ । ସେତେବେଳେ ସୁଦ୍ଧା ମୁଁ ତାଙ୍କର ମୁହଁରେ କୌଣସି ଭାବାନ୍ତର ଲକ୍ଷ୍ୟ କରିନାହିଁ । ଜୀବନ-ମୃତ୍ୟୁ ସବୁ ନିୟତିର ଖେଳ । ସେଥିରେ ଦୁଃଖ କରିବାର ନାହିଁ ।

ସେଇପରି ସେ ଯେଉଁଦିନ ଡିଷ୍ଟ୍ରିକ୍ଟ ଜଜ୍ ପାହ୍ୟାକୁ ଉନ୍ନୀତ ହେଲେ, ସେଦିନ ସଫଳତାର ସେଇ ମୁହୂର୍ତ୍ତରେ ସୁଦ୍ଧା ସେ ଖୁବ୍ ଉତ୍‌ଫୁଲ୍ଲ ନଥିଲେ । ହଃ, ଚାକିରିରେ ପ୍ରମୋଶନ କୋଉ ବଡ଼ କଥା । ମୁଁ ମନେ ମନେ ତାଙ୍କୁ ଧରି ନେଇଥିଲି, ସେ ଜଣେ ଗୁପ୍ତଯୋଗୀ । ଚାକିରିରୁ ଅବସର ନେବା ପରେ, ପ୍ରତିଦିନ ସକାଳେ ସେ ମୋ ଘରବାଟେ ନଈକୂଳ ଆଡ଼େ ବୁଲି ଯାଆନ୍ତି । ଅକସ୍ମାତ୍ କେବେକେବେ ଫେରିବା ବେଳେ ମୋ ପାଖକୁ ଆସନ୍ତି । କପେ ଚା' ଦେଲେ, ମନା କରନ୍ତି ନାହିଁ । ଚୁପ୍‌ଚାପ୍ ଖଣ୍ଡେ ସିଗାରେଟ୍‌ରେ ନିଆଁ ଲଗାଇ, ପାଖରେ ପଡ଼ିଥିବା କେତେ ଖଣ୍ଡ ଖବରକାଗଜର ଶିରୋନାମା

ଉପରେ କେବଳ ଆଖି ବୁଲାଇ ନେଇ ଯେପରି ଆକସ୍ମିକ ଭାବରେ ଆସିଥିଲେ, ସେଇପରି ଆକସ୍ମିକ ଭାବରେ ଚାଲିଯାଆନ୍ତି । ସେ କିନ୍ତୁ କାହିଁକି ଯେ ଆସନ୍ତି ଓ କାହିଁକି ଚାଲିଯାଆନ୍ତି, ମୁଁ ତା'ର ବିନ୍ଦୁବିସର୍ଗ ବୁଝିପାରେ ନାହିଁ । କିନ୍ତୁ ଯୌବନରୁ ମୁଁ ତାଙ୍କର ପ୍ରକୃତି ଜାଣିଥିବାରୁ ଆଦୌ ବିସ୍ମିତ ହୁଏ ନାହିଁ ।

ମାସଟା ବୋଧହୁଏ ଚୈତ୍ର । କାରଣ ପବନରେ ଥିଲା, ଝରା ପତ୍ରର ମର୍ମର । ହଠାତ୍ ସନାତନ ଦିନେ ସକାଳେ ଆସି, ତାଙ୍କ ଅଭ୍ୟସ୍ତ ରୀତିରେ ପହଞ୍ଚିଗଲେ । ମୁଁ ତାଙ୍କ ପାଇଁ କପେ ଚା' ମଗାଇଲି । ନିରବରେ ଚା' କପ୍‌ଟା ଶେଷ କରି ଖଣ୍ଡେ ସିଗାରେଟ୍‌ରେ ନିଆଁ ଲଗାଇ, ସେ ମୋତେ କହିଲେ, "କାଲି ରାତିରେ ନିପୁ (ତାଙ୍କ ସାନଝିଅ)ର ଗୋଟେ ପୁଅ ହୋଇଛି । ତୁମେ କହି ପାରିବ, ଶିଶୁ ଜନ୍ମ ହେବା ମାତ୍ରେ କାନ୍ଦେ କାହିଁକି ? ବାହାରେ ଥିଲା ସୁନ୍ଦର ଚଇତାଳି ପବନ । ରାତିଟା ଲାଗୁଥିଲା ଗୋଟିଏ ରେଶମୀ ଓଢ଼ଣା ପରି । ମାତୃଗର୍ଭର ଅନ୍ଧକାର ଭିତରୁ ଏ ସୁନ୍ଦର ପୃଥିବୀକୁ ଆସି ନିପୁର ପୁଅଟା ସେପରି କାନ୍ଦିଲା କାହିଁକି ? ବିଚିତ୍ର ପ୍ରଶ୍ନ । ଏହାର ଉତ୍ତର କ'ଣ ହୋଇପାରେ, ତାହା ମୁଁ ତ କେବେ ଭାବି ନଥିଲି । ମୁଁ କହିଲି, "ଗର୍ଭରେ ଭ୍ରୁଣ ଅବସ୍ଥାରେ ସେ ରହିଥିଲା, ଅନ୍ଧକାର ଭିତରେ । ହଠାତ୍ ଗୋଟିଏ ନୂଆ ଆଲୋକିତ ପରିବେଶ ସହିତ ସେ ନିଜକୁ ଅଭ୍ୟସ୍ତ କରି ନପାରି, କାନ୍ଦେ । କିନ୍ତୁ, କିଛିକ୍ଷଣ ପରେ ପୁଣି ଚୁପ୍ ହୋଇଯାଏ ।"

ମୋର ଉତ୍ତର ସନାତନଙ୍କ ମନକୁ ପାଇଲା ନାହିଁ । ସିଏ ଟିପ୍‌ପଣୀ କଲେ, "ତାର ଉତ୍ତରଟା ନିତାନ୍ତ ଅପାତ । ତା' ହେଲେ ତ ପ୍ରତ୍ୟେକ କଏଦୀ ଜେଲ୍‌ଖାନାର ଅନ୍ଧାର ସେଲ୍ ଭିତରୁ ଛୁଟି ପାଇ ବାହାରର ଆଲୁଅ ଓ ମୁକ୍ତି ଭିତରକୁ ଆସିବା ବେଳେ କାନ୍ଦନ୍ତେ ।" ସନାତନ ଉଠି ଚାଲିଗଲେ । ଗଲାବେଳେ ମୋତେ କହିଲେ, "ମଣିଷ ଶିଶୁ ବୋଧହୁଏ କାନ୍ଦେ ଶୋକଦୁଃଖପୂର୍ଣ୍ଣ ଏ ସଂସାର ଭିତରକୁ ଆସିଲା ବୋଲି । ସେ କାନ୍ଦେ ଦୁଃଖରେ ।" ସନାତନଙ୍କର ଏଇ କଥାଟା ମୁଁ ଆଦୌ ଭୁଲି ପାରିନାହିଁ । କିନ୍ତୁ ମୁଁ ତାଙ୍କୁ ଯେତେଦୂର ଜାଣିଛି, ସେ ତ ଆଦୌ ଦୁଃଖବାଦୀ ନଥିଲେ । ସନାତନଙ୍କ ମୃତ୍ୟୁ ପରେ ତାଙ୍କର ସେଇ କଥା ବାରମ୍ବାର ମୋ ମନକୁ ଆସୁଥିଲା । ପରେ ତାଙ୍କର ଆତ୍ମୀୟ ସ୍ୱଜନମାନଙ୍କ ପାଖରୁ ଶୁଣିଲି, ସିଏ ମରିବାର ଦୁଇଦିନ ପୂର୍ବରୁ ସବୁବେଳେ କାନ୍ଦୁଥିଲେ । କେହି ଆତ୍ମୀୟସ୍ୱଜନ ତାଙ୍କ ରୋଗଶଯ୍ୟା ପାଖକୁ ଆସିଲେ, ତାଙ୍କ ଆଖିରୁ ଧାରଧାର ଲୁହ ଝରି ପଡୁଥିଲା । ସେ କ'ଣ ଜାଣି ପାରିଥିଲେ, ଏ ସଂସାରରୁ ତାଙ୍କ ବିଦାୟର ମୁହୂର୍ତ୍ତ ନିକଟତର ହୋଇ ଆସିଲାଣି ? ହୋଇପାରିଥାଏ । କାରଣ ମୋ ଦୃଷ୍ଟିରେ ସେ ଥିଲେ ଜଣେ ଗୁପ୍ତଯୋଗୀ । କିନ୍ତୁ ସେ କାନ୍ଦୁଥିଲେ କାହିଁକି ? ଏଇ ଶୋକଦୁଃଖପୂର୍ଣ୍ଣ ସଂସାରରୁ ବିଦାୟ ନେବାର ଆଖର ମୁହୂର୍ତ୍ତରେ ସିଏତ ଶାନ୍ତ ଓ ପ୍ରସନ୍ନ ରହିବା କଥା । ଅନେକ ଥର ମୁଁ ମୃତ୍ୟୁ ପୂର୍ବରୁ

ସନାତନଙ୍କର କାନ୍ଦିବାର କାରଣ ସଂପର୍କରେ ଚିନ୍ତା କରିଛି । ମୋର ମନେ ହୋଇଛି, ସଂସାର ଶୋକ, ଦୁଃଖପୂର୍ଣ୍ଣ ହୋଇପାରେ, ମାତ୍ର ଜୀବନର ସ୍ପର୍ଶମଣି, ସଂସାରର ଶୋକ, ଦୁଃଖକୁ ଆନନ୍ଦରେ ପରିଣତ କରିଦିଏ । ସେଇଥିପାଇଁ ତ ମଣିଷ ସବୁ ଶୋକ, ଦୁଃଖ, ଗ୍ଲାନି ଓ ପରାଜୟ ମଧ୍ୟରେ ସୁଦ୍ଧା ଚାହେଁ ଆହୁରି କିଛିଦିନ ବଞ୍ଚିବା ପାଇଁ । ସନାତନ ବୋଧହୁଏ ଚାହୁଁଥିଲେ ଏଇ ଶୋକ ଦୁଃଖପୂର୍ଣ୍ଣ ନଶ୍ୱର ସଂସାରରେ ଆଉରି କିଛିଦିନ ବଞ୍ଚିବାପାଇଁ । ସେଥିପାଇଁ ସେ ରୋଗଶଯ୍ୟାରେ ପଡ଼ି ସେପରି କାନ୍ଦୁଥିଲେ ।

ସନାତନ ଯେଉଁଦିନ ଶେଷନିଃଶ୍ୱାସ ଛାଡ଼ି ଏ ସଂସାରରୁ ଚିରବିଦାୟ ନେଲେ, ସେଦିନ ମଧ୍ୟ ଥିଲା, ଝରାପତ୍ର ମର୍ମରିତ ଏକ ଚୈତ୍ରରାତ୍ରି ।

୧୭/୧୧/୯୦

# ନୂତନ ଈଶ୍ୱର

ମହାଭାରତରୁ ମୁଁ ଜାଣିଥିଲି, କୁରୁକ୍ଷେତ୍ରର ଧର୍ମଯୁଦ୍ଧ ଥିଲା, ହସ୍ତିନାର ସିଂହାସନ ଅକ୍ତିଆର ପାଇଁ । ସେ ଯୁଦ୍ଧ ଉପରେ କିନ୍ତୁ ଦିଆଯାଇଥିଲା, ଧର୍ମର ବାର୍ଣ୍ଣିସ୍ । ଧର୍ମର ସବୁ ମହାନ ନୀତି ସୂକ୍ତି ଭାସିଯାଇଥିଲା, ରକ୍ତନଦୀର ଜୁଆରରେ । ପଛରେ ଅବଶ୍ୟ ଛାଡ଼ି ଯାଇଥିଲା, ଅସ୍ଥିସ୍ତୂପ ଉପରେ ଏକ ରାଜ ସିଂହାସନ ।

ସେ ସିଂହାସନ ଉପରେ ମହାରାଜା ଯୁଧିଷ୍ଠିର ରାଜଦଣ୍ଡ ଧରି ବସି ପାରିଲେ ବା କେତେଦିନ ? ପରୀକ୍ଷିତଙ୍କୁ ହସ୍ତିନାର ସିଂହାସନରେ ବସାଇ, ସେ ଚାଲିଲେ ମହାପ୍ରସ୍ଥାନ ପଥରେ ।

ମହାରାଜା ପରୀକ୍ଷିତ କେତେଦିନ ବା ଭୋଗକଲେ, ସେଇ ରକ୍ତ କଳଙ୍କିତ ସିଂହାସନ ? ତକ୍ଷକର ଦଂଶନରେ ମହାରାଜ ପରୀକ୍ଷିତ ପ୍ରୟାଣ ଭଜିଲେ । ଯେଉଁ ସିଂହାସନ ରକ୍ତପାତ ଓ ଧର୍ମଦ୍ୱାହିରେ ଶତ ଶଠତା ଓ ଧୂର୍ତ୍ତତା ମଧ୍ୟରେ ଆଭରଣ କରାଯାଇଥାଏ, ସେ ସିଂହାସନ ମଧ୍ୟ ଦିନେ ହାତଛଡ଼ା ହୋଇଯାଏ, ଏହିପରି ବିୟୋଗାନ୍ତକ ଭାବରେ ।

କିନ୍ତୁ ସେଦିନ କେଉଁଠି ଥିଲ ଧର୍ମ ମହାରାଜ, ଯେଉଁଦିନ ବାଳକ ଅଭିମନ୍ୟୁଙ୍କୁ ଚକ୍ରବ୍ୟୂହ ମଧ୍ୟରେ ପକାଇ ହତ୍ୟା କରିଥିଲେ ମହାରଥୀମାନେ ? କେଉଁଠି ପୁଣି ତୁମେ ଥିଲ ଧର୍ମ ମହାରାଜ, ଯେଉଁଦିନ ନିରସ୍ତ୍ର କର୍ଣ୍ଣ ଭୂମିଗର୍ତ୍ତରୁ ରଥଚକ ଉଠାଇବା ବେଳେ ଶ୍ରୀକୃଷ୍ଣଙ୍କ ମନ୍ତ୍ରଣାରେ କର୍ଣ୍ଣଙ୍କୁ ହତ୍ୟା କଲେ ଅର୍ଜୁନ ?

ସବୁ ତ ସିଂହାସନ ପାଇଁ; ନା ତା'ର ଥିଲା ଅନ୍ୟ କିଛି ମହତ୍ତର ଉଦ୍ଦେଶ୍ୟ ? ମର୍ଯ୍ୟାଦା ପୁରୁଷୋତ୍ତମ ଶ୍ରୀରାମଙ୍କର ମର୍ଯ୍ୟାଦା ରହିଲା ବା କେଉଁଠି, ଯେଉଁଦିନ ସେ ଶୁଦ୍ରଶମ୍ବୁକୁ ହତ୍ୟା କରିଥିଲେ, ତପସ୍ୟାଚରଣରେ ଶୁଦ୍ରର ଅଧିକାର ନଥିଲା ବୋଲି ?

ଧର୍ମରାଜ ସେଦିନ କ'ଣ ଆଖି ବୁଜି ଦେଇଥିଲ ? ଆଉ ଯେଉଁଦିନ ଶ୍ରୀରାମଚନ୍ଦ୍ର ନିରପରାଧ ବାଳୀକୁ ହତ୍ୟା କରିଥିଲେ, ସୁଗ୍ରୀବ କଥାରେ; ସେଦନି କେଉଁଠି ବା ଥିଲ ଧର୍ମ ମହାରାଜ ?

ମୁଁ ମହାଭାରତରୁ ଜାଣିଥିଲି, ସବୁ ଧର୍ମ କେବେଠାରୁ ଭାସି ଯାଇଥିଲା । କୁରୁକ୍ଷେତ୍ରରେ ରକ୍ତନଦୀର ଜୁଆର ଭିତରେ । ଧର୍ମ ନାମରେ ମାତିଥିଲେ, ଦଳ ଦଳ କ୍ଷମତା ଲାଳସୀ । ଅଥବା ମୃଗୟା ବିଳାସୀ ଶିକାରୀ !

ତା'ପରେ ଆସିଥିଲେ, ଜୈନ ମହାବୀର, ଜୀବେ ଦୟା ଓ କରୁଣାର ବାର୍ତ୍ତା ପ୍ରଚାର କରି । କିନ୍ତୁ ଜୀନ ପରମ୍ପରାରେ ସେ ଥିଲେ ଶେଷ ତୀର୍ଥଙ୍କର । ତାଙ୍କ ପରେ ଆସିଲେ, ଗୌତମ ବୁଦ୍ଧ, ନିର୍ବାଣ ସାଧନାର ମନ୍ତ୍ର ପ୍ରଚାର କରିବାପାଇଁ । ମାତ୍ର ସେ ମଧ୍ୟ ଥିଲେ ଶେଷ ବୁଦ୍ଧ । ତାଙ୍କ ପ୍ରଚାରିତ ବୌଦ୍ଧଧର୍ମ ମଧ୍ୟରୁ ଜନ୍ମଲାଭ କରିଥିଲେ, ଅଶୋକଙ୍କ ପରି ବିସ୍ତାରବାଦୀ ରକ୍ତପିପାସୁ ସମ୍ରାଟମାନେ । ବୁଦ୍ଧ ଶେଷକୁ ହୋଇଗଲେ, ଭ୍ରଷ୍ଟାଚାରୀ ସହଜିଆ ଅଥବା ବଜ୍ରଯାନୀ ମହାକାଳ ।

ତା'ପରେ ଆସିଲେ, ଆଦିଶଙ୍କର । ସର୍ବ ଧର୍ମର ସମନ୍ୱୟରେ ସନାନତ ଧର୍ମର ଅଭ୍ୟୁଦୟ ପାଇଁ । ତାଙ୍କର ସାରା ଜୀବନ କଟିଲା, ଚାରି ଚାରି ଥର ଭାରତର ଏକ ପ୍ରାନ୍ତରୁ ଅପରପ୍ରାନ୍ତ ପର୍ଯ୍ୟନ୍ତ ପ୍ରବଜ୍ୟାରେ । ଅଥଚ ସେଇ ଶଙ୍କରାଚାର୍ଯ୍ୟଙ୍କ ନାମରେ ଆଜି ବହୁ ମଠବାଡ଼ି, ବହୁ ଜଗତ୍‌ଗୁରୁ ଓ ମହନ୍ତ ।

ସେଥିପାଇଁ, ମୁଁ ବୁଝିଛି, ସବୁଧର୍ମ ବହୁ କାଳରୁ ଭାସି ଯାଇଛି, ମହାଭାରତ ଯୁଦ୍ଧର ରକ୍ତନଦୀ ସ୍ରୋତରେ । ରହିଛି କେବଳ, ସିଂହାସନ ଓ ସେଥିପାଇଁ ଧର୍ମ ଅଥବା ନୀତିର ଦ୍ୱାହି ଦେଇ ବହୁ ଶ୍ୱାନଯୁଦ୍ଧ । ଶକୁନିର ପଶାଖେଳ ଓ ସେଥିରେ ହାରଜିତ୍ ଆଜିର ଏକମାତ୍ର ଧର୍ମ । ଶକୁନିର ପଶାଖେଳ ଆଜି ସୁଦ୍ଧା ଚାଲିଛି ହସ୍ତିନାରେ । ସେ ଯୁଦ୍ଧ ସହିତ ସାମିଲ ହୋଇଯାଇଛନ୍ତି, ପୁରୋହିତ, ଇମାମ୍ ଓ ପାଦ୍ରୀମାନେ ! ମହାଭାରତରେ ମନୁଷ୍ୟର ସବୁଠାରୁ ବଡ଼ ବିପଦ ଆଜି ହେଉଛନ୍ତି ଧର୍ମ ଓ ଈଶ୍ୱରଙ୍କ ଭିନ୍ନଭିନ୍ନ ନାମ ।

ସେଥିପାଇଁ ମୁଁ ଭାବୁଛି, ଭୁଲିଯାଅ ମନୁଷ୍ୟସୃଷ୍ଟ ଈଶ୍ୱରଙ୍କୁ ଓ ତାଙ୍କୁ କେନ୍ଦ୍ରକରି ଗଢ଼ିଉଠିଥିବା, ଧର୍ମ ସଂପ୍ରଦାୟମାନ । ମନୁଷ୍ୟସୃଷ୍ଟ ଈଶ୍ୱରଙ୍କ ସ୍ଥାନରେ ଆବାହନ କର ଈଶ୍ୱରସୃଷ୍ଟ ମନୁଷ୍ୟଙ୍କୁ ।

ମନୁଷ୍ୟର ହୃଦୟ ହେଉ ମନ୍ଦିର, ମସ୍‌ଜିଦ୍ ଅଥବା ଗୀର୍ଜା ।

୨୪/୧୧/୯୦

# ମହାନ୍ତି ଅଙ୍କଲ୍

ପାର୍ଲିଆମେଣ୍ଟ ସେସନ୍ ବନ୍ଦ । କିନ୍ତୁ ଗୋଟାଏ କମିଟି ଚାଲିଥିବାରୁ, ସେଇ ଉପଲକ୍ଷରେ ମୁଁ ଆସିଥିଲି ଦିଲ୍ଲୀ । କମିଟି ଆରମ୍ଭ ହୁଏ, ସକାଳ ୧୦ଟାରୁ, ଉଠିଯାଏ ଲଞ୍ଚ୍ ବେଳକୁ । ତେଣୁ ଲଞ୍ଚ୍ ପରେ ବଙ୍ଗଳାରେ ଏକୁଟିଆ ପଡ଼ି ଦିବାନିଦ୍ରା ପାଇଁ ଚେଷ୍ଟା କରିବା, ଅଥବା କୌଣସି ମ୍ୟାଗାଜିନ୍ ବା ବହିର ପୃଷ୍ଠା ଓଲଟାଇବା ଛଡ଼ା ଅନ୍ୟ କାର୍ଯ୍ୟ ନଥାଏ । ଦିଲ୍ଲୀରେ ମୌସୁମ୍‌ଟା ଜୁଲାଇ ମାସରେ ଭାରି ଉତ୍ପୀଡ଼କ । ବାହାରେ ସୂର୍ଯ୍ୟର ଉତ୍ତାପ ନାହିଁ; କିନ୍ତୁ ଭିତରେ ଅସହ୍ୟ ଗୁଳୁଗୁଳି । ଆକାଶରୁ ମୁନିଆଁ ମୁନିଆଁ ଛୁଞ୍ଚି ସବୁ ଝରି ଦେହରେ ଟପ୍ ଟପ୍ ଯେପରି ଗଳି ଯାଉଛି । ପାର୍ଲିଆମେଣ୍ଟର ବାତାନୁକୂଳିତ ସ୍ନିଗ୍ଧ ପରିବେଶ ଭିତରୁ ଆସି ଜୁଲାଇ ମାସର ଏଇ ଗୁଳୁଗୁଳି ଆଉ ଆର୍ଦ୍ର ଉତ୍ତାପ ଭାରି କ୍ଳାନ୍ତିକର ଲାଗୁଛି । ପଙ୍ଖା ପବନରେ ସୁଦ୍ଧା ସ୍ୱସ୍ତି ନାହିଁ । ବିଛଣାରେ ମୁଣ୍ଡ ପାଖକୁ ରହିଥିବା ଟେଲିଫୋନ୍‌ଟା ହଠାତ୍ ଚିତ୍କାର କରି ଉଠିଲା । ଭୃତ୍ୟ ସାଧାରଣତଃ ଟେଲିଫୋନ୍ କଲ୍ ଆସିଲେ ଧରିଥାଏ; ମାତ୍ର ଲଞ୍ଚ୍ ପରେ ସେ ଟେଲିଫୋନ୍‌ଟା ମୋ ବିଛଣା ପାଖରେ ରଖିଦେଇ ଆଡ୍‌ଡ଼ା ମାରିବା ପାଇଁ ଚାଲିଯାଏ । ଅଗତ୍ୟା ମୁଁ ପ୍ରବଳ ବିରକ୍ତିରେ ଟେଲିଫୋନ୍‌ଟା ଉଠେଇ ଧରିଲି । ଏହିପରି ସମୟମାନଙ୍କରେ ମୋର ମନେ ହୋଇଥାଏ, ଟେଲିଫୋନ୍ ସଭ୍ୟତାର ଆଶୀର୍ବାଦ ନୁହେଁ, ଏହା ବରଂ ଏକ ଅଭିଶାପ ! ଗୋଟାଏ ନୁଇସେନ୍ସ । ଟେଲିଫୋନ୍ ରିସିଭରଟା ଉଠାଇ ଧରି ମୁଁ ଅପ୍ରସନ୍ନ କଣ୍ଠରେ କହିଲି, "ମହାନ୍ତି ସ୍ପିକିଙ୍ଗ୍" ।

ଆଶ୍ଚର୍ଯ୍ୟ ! ଆର ପାଖରୁ ଗୋଟିଏ ଶିଶୁର କଣ୍ଠ ଭାସି ଉଠିଲା, "ଗୁଡ୍ ଆଫ୍‌ଟର ନୁନ୍ ମହାନ୍ତି ଅଙ୍କଲ ।" ବିସ୍ମିତ ହେଲି, ମୁଁ ଏଠାରେ ହଠାତ୍ କାହାର ଅଙ୍କଲ ହୋଇଗଲି ? କିଏ ଏହି ବାଳକ ? କଣ୍ଠସ୍ୱର ନରମ ହୋଇଗଲା । ସେ ପାଖରୁ ପିଲାଟି ଇଂରାଜୀରେ କହିଚାଲିଲା, "ତୁମେ ଭାରି ଭଲ ମଣିଷ ମହାନ୍ତି ଅଙ୍କଲ । ଟେଲିଫୋନ୍‌ରେ ଯେଉଁ ନମ୍ବର ଲଗାଉଛି ସେ ମୋତେ ଗାଳି ଦେଉଛି । ତୁମେ କିନ୍ତୁ ଗାଳି ଦେଲ ନାହିଁ । ଆଇ

ଲଭ୍ ୟୁ ଅଙ୍କଲ୍ ।" ମୋତେ ଲାଗିଲା, ଇଏ ଯେପରି ଏକ ଉଦ୍ଭଟ ନାଟକର ସଂଳାପ । କିଏ ମୋର ତାରିଫ୍ କରି, ମୋ ସହିତ ଏପରି ଆତ୍ମୀୟ ଭାବରେ କଥାବାର୍ତ୍ତା କରୁଛି, ତାକୁ ମୁଁ ଚିହ୍ନେ ନାହିଁ, କିମ୍ବା ଜାଣେ ନାହିଁ । ଅଥଚ ସେ ମୋତେ ଡାକୁଛି ମହାନ୍ତି ଅଙ୍କଲ୍ । ତା'ର ନାମ ସେ ମୋତେ କହିଲା, "ରାଉଲ୍ ଚାଉଲା । ମଡ଼ର୍ଣ୍ଣ ପବ୍ଲିକ୍ ସ୍କୁଲ୍‌ରେ ଥାର୍ଡ଼ ଷ୍ଟାଣ୍ଡାର୍ଡ଼ରେ ପଢ଼େ । ମୁଁ ପଚାରିଲି, "ତୁମର ଡ୍ୟାଡ଼ି ମମି କାହାନ୍ତି ?" ସେ କହିଲା, "ସେମାନେ ଯାଇଛନ୍ତି ସେମାନଙ୍କ ଦପ୍ତରକୁ । ଫେରିବେ ଚାରିଟା ପରେ ।" ରାହୁଲ୍‌ର ସ୍କୁଲ୍ ଛୁଟି ହୋଇଯାଏ, ଗୋଟାଏ ପଇଁଚାଳିଶରେ । ସେ ଘରକୁ ଫେରିବା ପରେ ସର୍ଭାଣ୍ଟ ତାକୁ ଖାଇବାକୁ ଦେଇସାରି ବାହାରେ ତାଲା ପକେଇ ଚାଲିଯାଏ ବୁଲିବା ପାଇଁ । ଡ୍ୟାଡ଼ି ମମି ଫେରିବା ପୂର୍ବରୁ ସିଏ ଫେରିଆସି ତାଲା ଫିଟାଏ । ରାହୁଲ୍ ତେଣୁ ମୋରି ପରି ନିର୍ଜନତା ଆଉ ଶୂନ୍ୟତାର ବନ୍ଦୀ ।

ତା' ପ୍ରତି ସହାନୁଭୂତି ଆସିଲା । ପଚାରିଲି, "ତୁମେ ଟେଲିଫୋନ୍ ନମ୍ବର ଜାଣିଲ କିପରି ?" ସେ ହସିହସି ଉତ୍ତର ଦେଲା, "ଏମିତି ଟେଲିଫୋନ୍ ଡାଏଲ୍ ଘୂରାଉ ଘୂରାଉ କେତେ ନମ୍ବର ମିଳିଯାଏ । ସମସ୍ତେ ଗାଳି ଦିଅନ୍ତି । ତୁମେ କିନ୍ତୁ ଭାରି ଭଲ ମହାନ୍ତି ଅଙ୍କଲ୍ ।" ମୋର ଠିକଣା କ'ଣ ବୋଲି ସିଏ ପଚାରିଲା । ମୁଁ କହିଲି, "ମୁଁ ରହେ ୧୩ ବି-ଫିରୋଜସାହା ରୋଡ଼୍‌ରେ ।" ତା' ଠିକଣା କ'ଣ ବୋଲି ପଚାରିବାରୁ ସେ କହିଲା, "ସେ ରହେ ରାମକୃଷ୍ଣପୁରମ୍‌ରେ, ଗୋଟାଏ ଫ୍ଲାଟ୍‌ରେ ।" ମୁଁ କହିଲି, "ଅନେକ ଦୂର ବାଟ, ତମେ ଏଠାକୁ ଆସିପାରିବ ନାହିଁ । ଟେଲିଫୋନ୍‌ରେ ଏମିତି କଥାବାର୍ତ୍ତା କଲେ ଚଳିବ ।" ହଠାତ୍ ଗୋଟାଏ ଟ୍ରଙ୍କକଲ୍ ଆସିବାରୁ ଲାଇନ୍‌ଟା କଟିଗଲା ।

ରାହୁଲର ଟେଲିଫୋନ୍ ନମ୍ବର ଟିପି ରଖିବାପାଇଁ ଇଚ୍ଛା ଥିଲେ ହେଁ ସେଥିପାଇଁ ଆଉ ସୁବିଧା ନଥିଲା । ରାହୁଲ୍ ବୋଧହୁଏ ମୋର ଟେଲିଫୋନ୍ ନମ୍ବର ଟିପି ରଖିବା ପାଇଁ ଚେଷ୍ଟା କରି ନଥିଲା । ସେଥିପାଇଁ ପ୍ରତିଦିନ ମୁଁ ଲଞ୍ଚ୍ ପରେ ତା'ଠାରୁ ଟେଲିଫୋନ୍ ପାଇବା ପାଇଁ ଅପେକ୍ଷା କରୁଥିଲେ ହେଁ କେବେ ତା'ଠାରୁ ଟେଲିଫୋନ୍ ପାଇନାହିଁ । ଆମେ ଦୁହେଁ ଦୁହିଁଙ୍କ ପାଇଁ ହଜିଗଲୁ, ସିମେଣ୍ଟ କଂକ୍ରିଟ୍‌ର ଏଇ ମହାରଣ୍ୟର ନିଃସଙ୍ଗତା ଆଉ ଶୂନ୍ୟତା ଭିତରେ ।

ଦିନେ ହଠାତ୍ ଇଚ୍ଛା ହେଲା, ରାହୁଲର ଫର୍ମୁଲା ଅନୁସାରେ ଏଣୁତେଣୁ ଗୁଡ଼ାଏ ନମ୍ବର ଡାଏଲ୍ କରି, କାହା ସହିତ ଆକସ୍ମିକ ଯୋଗାଯୋଗ ପାଇଁ । ଦୁଇ ତିନି ଥର ଚେଷ୍ଟା କରିବା ପରେ ହଠାତ୍ ଗୋଟାଏ ନମ୍ବର ମିଳିଗଲା । ସେ ପାଖରୁ କେହି ଜଣେ ଗର୍ଜନ କରି ଇଂରାଜୀରେ ପଚାରୁଥିଲା, "ହୁ ଦି ହେଲ୍ ସ୍ପିକିଙ୍ଗ୍ ?" ମୁଁ ବୋଧେ ତା'ର ଦିବାନିଦ୍ରାରେ ଅକାରଣରେ ବ୍ୟାଘାତ ସୃଷ୍ଟି କଲି । କୌଣସି ଉତ୍ତର ନ ଦେଇ, ମୁଁ ନିରବ

ରହିଲି । ସେପାଖରୁ ସେ ଲୋକଟା କିନ୍ତୁ ବଛାବଛା ଇଂରାଜୀରେ ମୋତେ ଗାଳି ଦେଉଥିଲା, "ସ୍କାଉଣ୍ଡ୍ରେଲ୍ ! ସ୍ୱାଇନ୍, ଇଡ଼ିଅଟ୍ ଇତ୍ୟାଦି ।" ତା'ପରେ ଟେଲିଫୋନ୍‌ଟା କ୍ରେଡ଼ଲ୍ ଉପରେ ଯେପରି ଜୋର୍‌ରେ ସେ କଚିଦେଲା, ସେଥିରେ ମୋ କାନର ଅତଡ଼ା ପ୍ରାୟ ଖସି ପଡ଼ିଲା । "ମହାନ୍ତି ଅଙ୍କଲ୍" ସମ୍ବୋଧନଟା ତା'ପରଠାରୁ ମୁଁ ଆଉ କେବେ ଶୁଣିନାହିଁ, ଟେଲିଫୋନ୍‌ରେ ।

୦୧/୧୨/୯୦

# ମାର୍ଗଶିରର ଆହ୍ୱାନ

ମାସଟା ଯେ ମାର୍ଗଶିର, ତାହା ମୋର ଜାଣିବାର ଉପାୟ ନଥିଲା ।

ଏ ସହରରେ କାକରଭିଜା ପାଚିଲା ଧାନକିଆରୀର ଅମୃତ ସୁରଭି ଆସିବ କୁଆଡୁ ? ପବନରେ ପାଚିଲା ଧାନ କ୍ଷେତର ସେ ସୁବାସ ନଥିଲେ ତ [illegible] ଆସିଲାଣି ବୋଲି ଜାଣିବାର ଉପାୟ ନଥାଏ । ପୁଣି ଏ ବର୍ଷର ସାଲ ତମାମି କଲାବେଳେ, ମୋର ମନେହୁଏ, ଏ ବର୍ଷରେ ଯେ ଥିଲା, କେବଳ ଗୋଟିଏ ଋତୁର ଆଧିପତ୍ୟ-ବର୍ଷା । ଫାଲଗୁନ୍ ପ୍ରାୟ ଆରମ୍ଭ ହୋଇ ଆସିଥିଲା, ବଗିଚାରେ ଆମ୍ବଗଛ ଦୁଇଟା ମୁଣ୍ଡରେ ଆମ୍ବବଉଳର ମୁକୁଟ ପିନ୍ଧିବା ପାଇଁ ଆରମ୍ଭ କରିଥିଲେ । ହଠାତ୍ ଆକାଶରେ ଘୋଟି ଆସିଥିଲା ମେଘ । କିନ୍ତୁ ସେଇ ମେଘମେଦୁର ଆକାଶ ତଳେ କେଉଁଠି କେଜାଣି ଅଦିନ କୋଇଲିଟାଏ ହଠାତ୍ ରାବି ଉଠି, ପୁଣି ନିରବ ହୋଇଯାଇଥିଲା ।

ତା'ପରେ ବର୍ଷା ଆଉ ବର୍ଷା । ଝରାପତ୍ର ମର୍ମରିତ ଚୈତାଳୀ ନିରବ ହୋଇଯାଇଥିଲା, ଜଳକଣାସିକ୍ତ ମେଘୁଆ ପବନର ଆକ୍ରମଣରେ । ଋତୁରାଜ ବସନ୍ତ ଏ ବର୍ଷ ଆମ ସହରକୁ ଆସିଥିଲେ ବୋଲି ମୁଁ ଜାଣିପାରିନାହିଁ । ଜାଣିବାର ତ ଉପାୟ ନଥିଲା । ଗ୍ରୀଷ୍ମ ଅବଶ୍ୟ ଆସିଥିଲା ଦିନ କେଇଟା ପାଇଁ । ମାତ୍ର ପରିଣାମ ରମଣୀୟ । ଗ୍ରୀଷ୍ମ ସଂଧ୍ୟାର ସ୍ପର୍ଶ ଦିନକ ପାଇଁ ସୁଦ୍ଧା ମୁଁ ପାଇ ନଥିଲି । ମଧ୍ୟାହ୍ନର ଉତ୍ତାପ ଓ ଗୁଳୁଗୁଳି ପରେ ସନ୍ଧ୍ୟା ବେଳକୁ ଆକାଶରେ ବାଜି ଉଠେ, ମେଘର ପଖୋଜ । ଆଉ ବର୍ଷାର ଝୁମୁରା ଖାଲି ବର୍ଷା ଆଉ ବର୍ଷା । କେଉଁଦିନ ଜ୍ୟେଷ୍ଠ ଶେଷ ହୋଇ ପ୍ରଥମ ଆଷାଢ଼ ଆସିଲା, ମୁଁ ଅନ୍ତତଃ ତାହାର ପତ୍ତା ପାଇନାହିଁ । ଆଶ୍ୱିନର ନୀଳ ଆକାଶରେ ଏ ବର୍ଷ ଛିନ୍ନମେଘସବୁ, ଯାଯାବରମାନଙ୍କ ପରି ଆଉ ଦେଖା ଦେଲେ ନାହିଁ । ଆକାଶରେ ମେଳାମେଳା ଧୂଆଁଟିଆ ମେଘ ଆଉ ମେଘ । ଭାଦ୍ରବରେ ମଧ୍ୟ ତା'ର ସେଇ ପୁନରାବୃତ୍ତି । କାର୍ତ୍ତିକରେ କମଳାଲେମ୍ବୁ ରଙ୍ଗର ଖରା ଦେଖିବାପାଇଁ, ଅନେକ ଥର ବାହାର ବାରଣ୍ଡାରେ ଆସି ବସିଥିଲି । କିନ୍ତୁ କାର୍ତ୍ତିକ ମାସରେ ଖରାର ଚେହେରା ଥିଲା ଅଲଗା । ଦେହରେ ତାହାର ସ୍ପର୍ଶ ମଧ୍ୟ ଥିଲା ଉତ୍ପୀଡ଼କ ।

କାର୍ତ୍ତିକର ଖରାରେ ଥିଲା, ଭାଦ୍ରବର ଆର୍ଦ୍ର ଉତ୍ତାପ । ସେଥିରେ ପୁଣି ବେଳେବେଳେ ଅଝର ଝର ବର୍ଷା । ଏଇ ପରିସ୍ଥିତିରେ ମାର୍ଗଶିର ଆସିବ ବୋଲି ମୋର ପ୍ରତ୍ୟୟ ନଥିଲା । ଦିନେ ରାତିରେ ଦେଖିଲି, ଶ୍ରୀମତୀ ରାତି ଦଶଟାରେ ଘର ଘର ବୁଲି ଚଟାଣ ଉପରେ ଚିତା ଆଙ୍କୁଛନ୍ତି । ବ୍ୟାପାର କ'ଣ ବୋଲି ପଚାରିଲି । ସେ ଉତ୍ତର ଦେଲେ, "କାଲି ପରା ମାର୍ଗଶିର ଗୁରୁବାର ।"

ମୁଁ କହିଲି, "ଏବର୍ଷ ପାଚିଲା ଶାରଦ ଧାନର କେଣ୍ଡାଟିଏ ସୁଦ୍ଧା ଏ ଘରକୁ ଆସିବ ନାହିଁ । ମାଣ ଅପୂରା ରହିଯିବ । ଚିତା ପକାଉଛ ଆଉ କାହାପାଇଁ ?" ଶ୍ରୀମତୀ ଉତ୍ତର ଦେଲେ, "ମାର୍ଗଶିର ଗୁରୁବାରରେ ଚିତା ପକାଇବା ହେଉଛି ବିଧି ।" ମୁଁ କୌଣସି ଉତ୍ତର ନଦେଇ ଶୋଇବାପାଇଁ ଚେଷ୍ଟା କଲି ।

ସକାଳେ ଉଠି ଦେଖେ, ଚାରିଆଡ଼େ ଫୁଟନ୍ତା ପଦ୍ମଫୁଲ, ଆଉ ଯୋଡ଼ି ଯୋଡ଼ି ଲକ୍ଷ୍ମୀପାଦର ଚିତା । କେବଳ ଆଙ୍ଗୁଠି ଆଉ ପିଠଉର ଏପରି ପରିମିତି ସୁଷମା ଯେ ଫୁଟିପାରେ, ଦେଖି ଆଶ୍ଚର୍ଯ୍ୟ ଲାଗିଲା । ଚିତା ସବୁ ଦେଖି ମନେହେଲା, ଏଇ ଲକ୍ଷ୍ମୀଛଡ଼ା ସଂସାରକୁ ଲକ୍ଷ୍ମୀ ପ୍ରକୃତରେ ଯେପରି ଆସିଛନ୍ତି । ଯଦ୍ୟପି ଶାରଦ ଫସଲ ସବୁ ଉଜୁଡ଼ି ଯାଇଛି ବାତ୍ୟା ଆଉ ବନ୍ୟାରେ । ତଥାପି ଘରେ ଲକ୍ଷ୍ମୀଙ୍କ ଆବାହନ । କ୍ଷେତରେ ଫସଲ ଉଜୁଡ଼ି ଯାଇପାରିଥାଏ; କିନ୍ତୁ ମଣିଷ ମନରେ ତ ନୁହେଁ । ଏଇ ମନର ପ୍ରାଚୁର୍ଯ୍ୟ ତାକୁ ବଞ୍ଚାଇ ରଖିଛି, ପ୍ରକୃତିର ଶତ ପୀଡ଼ନ ଓ ଦୁର୍ବିପାକ ମଧ୍ୟରେ । ସକାଳେ ସେଇ ଚିତାସବୁ ଦେଖି ମୁଁ ହଠାତ୍ ଯେପରି ଆଘ୍ରାଣ କରିପାରିଲି, ଶିଶିରଭିଜା ପାଚିଲା ଧାନକିଆରିର ସ୍ୱାସ । ମୋର ମନେ ପଡ଼ିଗଲା, ଗୀତାରେ ଭଗବାନ ଶ୍ରୀକୃଷ୍ଣଙ୍କର ଗୋଟିଏ ବାଣୀ, "ମାସାନାଂ ମାର୍ଗଶୀର୍ଷୋଽହଂ"- ମାସମାନଙ୍କ ମଧ୍ୟରେ ମୁଁ ହେଉଛି, ମାର୍ଗଶିର ।

ମାର୍ଗଶିର ଉଦ୍ଦେଶ୍ୟରେ ମୁଁ ପ୍ରଣାମ ଜଣାଇଲି ।

୦୮/୧୨/୯୦

# ଲାଇଟ୍ ହାଉସ୍‌ରେ ଶାଳଭଞ୍ଜିକା

ଲାଇଟ୍ ହାଉସ ଅଞ୍ଚଳରେ ୧୯୭୧ ମସିହା ଲୋକସଭା ନିର୍ବାଚନରେ ମୋର ଥିଲା ଦୁଇଗୋଟି ବୁଥ୍ । ଲାଇଟ୍ ହାଉସ୍ ମୋ ପାର୍ଲିଆମେଣ୍ଟ ନିର୍ବାଚନମଣ୍ଡଳୀର ଅନ୍ତର୍ଭୁକ୍ତ ଥିଲା । ଦିନେ ଇମ୍ଫୁଠାରୁ ଗୋଟିଏ ଲଞ୍ଚରେ ଖରନାସୀ କୂଳେକୂଳେ କେତେକ ଅଞ୍ଚଳ ବୁଲାବୁଲି ସାରି ଲାଇଟ୍ ହାଉସ୍‌ରେ ପହଞ୍ଚିବା ବେଳକୁ ଅପରାହ୍ଣ ଗଡ଼ିଯାଇଥିଲା । ସେଠାରେ ସଭା ଶେଷ କରି ଫେରିବା ବେଳକୁ ସେ ଅଞ୍ଚଳର କର୍ମୀମାନେ କହିଲେ, "ବର୍ତ୍ତମାନ ତ ଭଟ୍ଟା ପଡ଼ିଗଲାଣି । ଆପଣ ଲଞ୍ଚରେ ଆଉ ପାରାଦୀପ ଫେରି ପାରିବେ ନାହିଁ । ଜୁଆର ଆସୁ ଆସୁ ରାତି ପାହାନ୍ତା ହୋଇଯିବ ।" ତା'ପରେ ଉଠିଲା, କେଉଁଠି ରାତ୍ରୀ ଯାପନର ସମସ୍ୟା । କେତେଜଣ ସ୍ଥାନୀୟ କର୍ମୀ, ଲାଇଟ୍ ହାଉସ୍ ସୁପରିଣ୍ଟେଣ୍ଡେଣ୍ଟଙ୍କ ସାହାଯ୍ୟ ପ୍ରାର୍ଥୀ ହେଲେ । ମନେପଡୁଛି, ସୁପରିଣ୍ଟେଣ୍ଡେଣ୍ଟ ମହାଶୟ ଜଣେ ବୃଦ୍ଧ ଅମାୟିକ ଭଦ୍ରଲୋକ, ଅଣ ଓଡ଼ିଆ । ସେ ମୋତେ ଇଂରାଜୀରେ କହିଲେ, "ଲାଇଟ୍ ହାଉସ୍‌ର ସବା ଉପର ମହଲାରେ ଆମର ଗୋଟିଏ ଗେଷ୍ଟ ହାଉସ୍ ପରି ଅଛି । ରାତିଟା ସେଠାରେ ରହିଯିବାପାଇଁ ଆପଣଙ୍କର କୌଣସି ଅସୁବିଧା ହେବ ନାହିଁ । କିନ୍ତୁ ଡାଇନାମାର ଘର୍ଘର ଶବ୍ଦରେ ଆପଣ ଦଣ୍ଡେ ଶୋଇ ପାରିବେ କି ନାହିଁ ସନ୍ଦେହ ।" ଲାଇଟ୍ ହାଉସ୍‌ର ଶକ୍ତିଶାଳୀ ଆଲୋକପାଇଁ ସେଠାରେ ଏକ ପ୍ରକାଣ୍ଡ ଡାଇନାମା ଖଞ୍ଜାଯାଇଛି । ତାହାର ଘର୍ଘର ଶବ୍ଦ ଆମେ ଝାଉଁବଣ ଭିତରେ ସୁଦ୍ଧା ଶୁଣି ପାରୁଥିଲୁ । ତେଣୁ ଲାଇଟ୍ ହାଉସ୍ ପାଖରେ ଏ ଶବ୍ଦ ଆଉରି କି କର୍ଣ୍ଣଭେଦୀ ହୋଇଥିବ, ତାହା ମୁଁ ସହଜରେ ଅନୁମାନ କରି ପାରୁଥିଲି । ତଥାପି ସେ ଅପନ୍ତରା ଅଞ୍ଚଳରେ ଲାଇଟ୍ ହାଉସ୍ ଗେଷ୍ଟ ହାଉସ୍‌ରେ ରାତି କଟାଇବା ବ୍ୟତୀତ ଅନ୍ୟ ଉପାୟ ନଥିଲା ।

ସୁପରିଣ୍ଟେଣ୍ଡେଣ୍ଟଙ୍କ ପଛେ ପଛେ ମୁଁ ଲାଇଟ୍ ହାଉସ୍ ଉପରକୁ ଯିବାପାଇଁ ପଥର ଶିଡ଼ିରେ ଆପେ ଆପେ ଉଠିଲି । ଶିଡ଼ିଟି ଫାୟାର୍ ଏସ୍‌କେପ୍ ସିଁଡ଼ି ପରି କୁଣ୍ଡଳୀ ମୋଡ଼ି

ମୋଡ଼ି ଉପରକୁ ଉଠି ଯାଇଛି । ଖଞ୍ଜା ଯାଇଥିବା ଇଲେକ୍‌ଟ୍ରିକ୍ ବଲବ୍‌ମାନଙ୍କର ମଳିନ ଆଲୋକରେ ମୋର ମନେ ହେଉଥିଲା, ଶିଡ଼ିର ପଥର ସବୁ ଅତି ପୁରୁଣା । କଳା ମୁଗୁନି ପଥରର କେତେଟା ପାହାଚ ମଧ୍ୟ ସେହି ପାବଚ୍ଛ ଶ୍ରେଣୀ ମଧ୍ୟରେ ମୁଁ ଲକ୍ଷ୍ୟ କରିପାରିଲି । କିନ୍ତୁ ଏ ପୁରୁଣା ପଥର ସବୁ କେଉଁଠୁ ଲାଇଟ୍ ହାଉସ୍ ତିଆରି ପାଇଁ ସଂଗ୍ରହ କରାଯାଇ ପାରିଲା ବୋଲି, ମନେମନେ ମୁଁ ବିସ୍ମିତ ହେଉଥିଲି ।

ହଠାତ୍ ମୋ ଆଖିରେ ପଡ଼ିଲା ଡାଳିମ୍ବ ପଥରରେ ଖୋଳା ଯାଇଥିବା ଗୋଟିଏ ଅନିନ୍ଦ୍ୟ ସୁନ୍ଦର ଶାଳଭଞ୍ଜିକା ମୂର୍ତ୍ତି । ମୋର ମନେ ହେଲା, ଏ ମୂର୍ତ୍ତିଟି ନିଶ୍ଚୟ ଦିନେ ଖଞ୍ଜାଯାଇଥିଲା, କୌଣସି ମନ୍ଦିର ଦେହରେ । ମାତ୍ର ଏଠାରେ ଲାଇଟ୍ ହାଉସ୍‌କୁ ଏ ଶାଳଭଞ୍ଜିକା ମୂର୍ତ୍ତି କିପରି ଆସିଲା, ତାହାର ରହସ୍ୟ ମୁଁ ବୁଝିପାରିଲି ନାହିଁ ।

ମୁଁ ସୁପରିଣ୍ଟେଣ୍ଡେଣ୍ଟଙ୍କୁ ପଚାରିଲି, "ଏ ଶାଳଭଞ୍ଜିକା ମୂର୍ତ୍ତି ଏଠି ଲାଇଟ୍ ହାଉସ୍‌କୁ ଆସିଲା କିପରି ?" ଏ ପଥର ସବୁ ବା ଆସିଲା କୁଆଡୁ ? ଏ ଖଣ୍ଡ ମଣ୍ଡଳରେ କୌଣସି ପ୍ରାଚୀନ ମନ୍ଦିର ଥିବା, ମୁଁ ଜାଣେ ନାହିଁ; ଯଦ୍ୟପି ଏ ଅଞ୍ଚଳରେ ମୁଁ କୋଣେ କୋଣେ ବୁଲିଛି ।"

ସୁପରିଣ୍ଟେଣ୍ଡେଣ୍ଟ ମହାଶୟ ଉତ୍ତର ଦେଲେ, "ଲାଇଟ୍ ହାଉସ୍ ସଂପର୍କରେ ଯେଉଁସବୁ ପୁରୁଣା ରେକର୍ଡ଼ପତ୍ର ରହିଛି ସେଥିରୁ ଜଣାପଡ଼େ, କଟକ ବାରବାଟୀ ଦୁର୍ଗର ପଥରମାନଙ୍କରେ ଏଇ ଲାଇଟ୍ ହାଉସ୍ ତିଆରି ହୋଇଛି । ଆଉ ଆପଣ ଯେଉଁ ମୂର୍ତ୍ତି କଥା କହୁଛନ୍ତି, ତାହା ମଧ୍ୟ ଆସିଥିବ, ସେଇ ବାରବାଟୀ ଦୁର୍ଗରୁ ।"

ଡାଇନାମାର ଘୋର ଘର୍ଘର ଶବ୍ଦରେ ରାତିରେ ତ ଆଦୌ ନିଦ ହେଲା ନାହିଁ, ଲାଇଟ୍ ହାଉସ୍‌ରେ ସେଇ ଶାଳଭଞ୍ଜିକା ମୂର୍ତ୍ତିର ରହସ୍ୟ ମୋତେ ପୁଣି ଆଉରି ବିନିଦ୍ର କରି ଦେଲା ।

ବାରବାଟୀ ଥିଲା ଏକ ସାମରିକ ଦୁର୍ଗ । ଏଥିରେ ଲାସ୍ୟମୟୀ ଏକ ଶାଳଭଞ୍ଜିକା ମୂର୍ତ୍ତି ଖୋଦିତ ହେବାପାଇଁ କୌଣସି ଅବକାଶ ତ ନଥିଲା । ଅଥଚ ଲାଇଟ୍ ହାଉସ୍‌ର ଶିଡ଼ିରେ ଉପରକୁ ଉଠିବା ବେଳେ ତାହା ଯେ ବାରବାଟୀ ଦୁର୍ଗର ପଥରରେ ଖୋଦିତ ହୋଇଥିଲା, ସେଥିରେ ମୋର ସନ୍ଦେହ ନଥିଲା । କିନ୍ତୁ ଏଇ ଶାଳଭଞ୍ଜିକା ?

ସେଇ ଦିନୁ ମୋ ମନରେ ଗୋଟିଏ ଧାରଣା ଜନ୍ମିଥିଲା, ବାରବାଟୀ ଦୁର୍ଗ ମଧ୍ୟରେ ନିଶ୍ଚୟ କୌଣସି ମନ୍ଦିର ଥିଲା । ସେ ମନ୍ଦିର ହୁଏ ତ ଅଷ୍ଟାଦଶ ଊନବିଂଶ ଶତାବ୍ଦୀ ବେଳକୁ ଏକ ଭଗ୍ନସ୍ତୂପରେ ପରିଣତ ହୋଇଥିଲା । ସେଇ ଭଗ୍ନସ୍ତୂପରୁ ଶାଳଭଞ୍ଜିକା ଖୋଦିତ ହୋଇଥିବା ପଥର ଖଣ୍ଡିକ କିପରି ଅନ୍ୟ ପଥରମାନଙ୍କ ସହିତ ଆକସ୍ମିକ ଭାବରେ ଲାଇଟ୍ ହାଉସ୍‌ର କାନ୍ଥରେ ଖଞ୍ଜା ହୋଇ ଯାଇଛି ।

ସକାଳେ ଶିଡ଼ିରେ ପୁଣି ତଳକୁ ଓହ୍ଲାଇବା ବେଳେ ଶାଳଭଞ୍ଜିକା ମୂର୍ତ୍ତି ଆଗରେ ମୁଁ କିଛିକ୍ଷଣ ଠିଆ ହୋଇ ରହିଲି । ତା'ର ଓଠରେ ମୁଁ ଯେପରି ସ୍ମିତ ହସର କ୍ଷୀଣ ରେଖାଟିଏ ଲକ୍ଷ୍ୟ କରି ପାରିଲି । ସେ ଯେପରି ମୋତେ କହୁଥିଲା, ପାଷାଣୀ ଶାଳଭଞ୍ଜିକା କ'ଣ କେବେ କଥା କହେ ? କହିଲେ ତ ସେ ଅନେକ କଥା କହି ପାରନ୍ତା, ଅନେକ ଭଙ୍ଗା ଗଢ଼ା ଅନେକ ଉତ୍‌ଥାନ ପତନର କାହାଣୀ ।

୧୪/୧୨/୯୦

# ଶେଷସ୍ତମ୍ଭ

ବର୍ଷ ବର୍ଷ ଧରି ଏ ପୃଷ୍ଠାରେ ସେ ଲେଖି ଆସୁଥିଲେ 'ଶେଷସ୍ତମ୍ଭ'- ବ୍ୟାଧି ଆଉ ବାର୍ଦ୍ଧକ୍ୟର କ୍ରମାଗତ ପ୍ରତିରୋଧ ସତ୍ତ୍ୱେ। ତାଙ୍କପାଇଁ ଯାହା ଥିଲା 'ଶେଷସ୍ତମ୍ଭ' ଆମ ସମସ୍ତଙ୍କପାଇଁ ତାହା କିନ୍ତୁ ଥିଲା ପ୍ରକୃତରେ ପ୍ରଥମ ସ୍ତମ୍ଭ- 'ସମ୍ବାଦ' ସାହିତ୍ୟ ଫର୍ଦ୍ଦର ଅନ୍ତରଙ୍ଗ ପାଠକ ଭାବରେ।

'ଶେଷସ୍ତମ୍ଭ'ର ସେଇ ଅନବଦ୍ୟ ସ୍ରଷ୍ଟା ସୁରେନ୍ଦ୍ର ମହାନ୍ତି ଆଜି କିନ୍ତୁ ଚିରବିଦାୟ ନେଇଯାଇଛନ୍ତି ଆମ ସମସ୍ତଙ୍କ ନିକଟରୁ। ତାଙ୍କ ଅକାଳ ଅନ୍ତର୍ଦ୍ଧାନରେ 'ସମ୍ବାଦ'ର ସପ୍ତାହାନ୍ତ ସାହିତ୍ୟ ପୃଷ୍ଠାଟି ଦରିଦ୍ରତର ହୋଇପଡ଼ିଛି ନିଶ୍ଚିତ ରୂପେ। 'ଶେଷସ୍ତମ୍ଭ'ର ଶୂନ୍ୟତା ସୃଷ୍ଟି କରିଛି ଏକ ଶୋକାର୍ତ୍ତ ଉପଲବ୍‌ଧି- 'ସମ୍ବାଦ'ପ୍ରେମୀ ପାଠକବର୍ଗଙ୍କପାଇଁ ଏବଂ ସୁରେନ୍ଦ୍ରପ୍ରେମୀ ଭକ୍ତ ଓ ଅନୁରକ୍ତମାନଙ୍କପାଇଁ।

'ଶେଷସ୍ତମ୍ଭ'ର ସେଇ ସ୍ମରଣୀୟ ସ୍ରଷ୍ଟାପୁରୁଷଙ୍କୁ ଆଜି ଆମ ତରଫରୁ ଅଶ୍ରୁସିକ୍ତ ପ୍ରଣିପାତ।

- ପୁରସ୍କାର ମଧ୍ୟରେ ସାହିତ୍ୟକୃତିର ଯଥାର୍ଥ ମୂଲ୍ୟାଙ୍କନ ଆଦୌ ନାହିଁ। ପୁରସ୍କାରପ୍ରାପ୍ତି ଏକ ଆକସ୍ମିକ ବ୍ୟାପାର। ପାଠକମାନଙ୍କର ସ୍ୱତଃସ୍ଫୂର୍ତ୍ତ ଶ୍ରଦ୍ଧା ହେଉଛି ଲେଖକର ଶ୍ରେଷ୍ଠ ଜୟମାଲ୍ୟ।

- କୌଳିନ୍ୟ ରାତାରାତି ଆସେନାହିଁ। ବହୁ ଜନ୍ମର ସାଧ୍ୟସାଧନା ପରେ ଆସିଥାଏ ଏ ଆଭିଜାତ୍ୟ- ଯାହାର ଅନ୍ୟ ନାମ ସଂସ୍କୃତି ! ରାତାରାତି ଜଣେ ଧନୀଲୋକ ବନିଯାଇପାରେ ! ମାତ୍ର ସେ ଯେ କୁଳୀନ, ଅଭିଜାତ ହୋଇଯିବ, ତାହା ଆଦୌ ନୁହେଁ।

- ଡିକ୍ଟେଟର, ରାଷ୍ଟ୍ରପତି, ପ୍ରଧାନମନ୍ତ୍ରୀ, ଜେନେରାଲ୍‌ମାନେ ଆମ ଆଖିକୁ ମୁହୂର୍ତ୍ତକପାଇଁ ଝଲସାଇ ଦେଇଥାନ୍ତି ସିନା, ନୋହିଲେ, ଜୀବନକୁ ଉଜ୍ଜ୍ୱଳ କରିଥାଆନ୍ତି ସାନ ସାନ ମଣିଷମାନଙ୍କର ନିର୍ମଳ ହୃଦୟ।

- ଏକବିଂଶ ଶତାବ୍ଦୀ ଆଡ଼କୁ ଯେଉଁମାନେ ଯିବାର ଯାଆନ୍ତୁ ପଛକେ ମୁଁ କିନ୍ତୁ ଅଟକି ରହିଯିବାକୁ ଚାହେଁ ମୋର ପରିଚିତ ଏଇ ପୃଥିବୀରେ ! ଏକବିଂଶ ଶତାବ୍ଦୀର ପ୍ରତୀକ ଯଦି ହୁଏ କମ୍ପ୍ୟୁଟର, ବିବେକବିହୀନ ବୁଦ୍ଧି, ତା'ହେଲେ ମୋ ପକ୍ଷରେ ଶ୍ରେୟ ବରଂ କୁଟୀରଶିଳ୍ପ, ବରଣୀୟ ବରଂ ଅସମାପ୍ତ ଏଇ ବିଂଶ ଶତାବ୍ଦୀ।

- ସେ କନ୍ୟା, ସେ ଭଗିନୀ, ସେ ଜାୟା, ସେ ମଧ୍ୟ ପ୍ରେମିକା। କିନ୍ତୁ ଏସବୁ ତା'ର ବାହ୍ୟ ପରିଚୟ। ତାର ଶେଷ ପରିଚୟ... ସେ ଜନନୀ! ସନ୍ତାନପାଇଁ, ସୃଷ୍ଟିପାଇଁ ତାର ଶେଷହୀନ ପ୍ରତୀକ୍ଷା।

- ରାଜନୈତିକ ନେତା ବା ଧର୍ମଗୁରୁମାନେ ଯେଉଁସବୁ ଶ୍ରୁତିମଧୁର ଉଦ୍‌ବୋଧନ ଦେଇଥାଆନ୍ତି, ସେମାନଙ୍କ ବ୍ୟକ୍ତିଗତ ଜୀବନରେ ତାହାର ଅନୁଶୀଳନ ନଥାଏ । ସବୁ ଗୋଟାଏ ଅଭିନୟ । ସବୁ ଗୋଟିଏ ଫାଙ୍କି ।





ISBN 9384213179-5
9789384213190